ପ୍ରକାଶକ
ସ୍ୱାମୀ ଆତ୍ମପ୍ରଭାନନ୍ଦ
ଅଧ୍ୟକ୍ଷ, ରାମକୃଷ୍ଣ ମଠ
ବିବେକାନନ୍ଦ ମାର୍ଗ
ଭୁବନେଶ୍ୱର — ୭୫୧ ୦୦୨
ଓଡ଼ିଶା



ଦ୍ୱିତୀୟ ସଂସ୍କରଣ : ମାର୍ଚ୍ଚ ୧୯୮୯
**ଦ୍ୱିତୀୟ ପୁନର୍ମୁଦ୍ରଣ : ୦୩ ଫେବୃଆରୀ ୨୦୧୫**
ସ୍ୱାମୀ ଅଦ୍ଭୁତାନନ୍ଦ ଜୟନ୍ତୀ
୧୦୦୦

**ମୂଲ୍ୟ– ଟ. ୧୫୦.୦୦**

ମୁଦ୍ରାକର :
ହିନ୍ଦୁସ୍ଥାନ ପ୍ରିଣ୍ଟିଙ୍ଗ୍ ଏଣ୍ଡ୍ ବାଇଣ୍ଡିଂ ୱାର୍କ୍ସ
ଏ/୪୮, ରାମେଶ୍ୱର ପାଟଣା
ଭୁବନେଶ୍ୱର — ୭୫୧ ୦୦୨

***SWAMI VIVEKANANDANKA VANI O RACHANA Vol. - IV :*** by Swami Vivekananda; Published by Ramakrishna Math, Vivekananda Marg, Bhubaneswar - 751 002; 2nd Reprint on 3rd February 2015; **Price : ₹. One Hundred-fifty only.**

## ଦ୍ୱିତୀୟ ସଂସ୍କରଣର ପ୍ରକାଶକଙ୍କ ନିବେଦନ

ଶ୍ରୀଭଗବାନଙ୍କ ଅଶେଷ କରୁଣାରୁ 'ସ୍ୱାମୀ ବିବେକାନନ୍ଦଙ୍କ ବାଣୀ ଓ ରଚନା'ର ଚତୁର୍ଥ ଖଣ୍ଡର ଦ୍ୱିତୀୟ(ନୂତନ) ସଂସ୍କରଣ ସ୍ୱାମୀଜୀଙ୍କର ୧୨୫ ତମ ଜନ୍ମବର୍ଷ-ଉତ୍ସବ ଅବସରରେ ଓଡ଼ିଶାବାସୀଙ୍କ ହସ୍ତରେ ଅର୍ପିତ ହୋଇପାରିଲା ।

ଏହି ଖଣ୍ଡରେ 'ଭକ୍ତିଯୋଗ' ସମ୍ବନ୍ଧୀୟ ସ୍ୱାମୀଜୀଙ୍କର ବକ୍ତୃତା ଓ ପ୍ରବନ୍ଧାଦି ସନ୍ନିବେଶିତ ହୋଇଛି । ଅନେକଙ୍କ ଧାରଣା ଯେ, ସ୍ୱାମୀଜୀ ଜ୍ଞାନ ଓ କର୍ମ ଉପରେ ଯେପରି ଗୁରୁତ୍ୱ ଦେଇଛନ୍ତି, ଭକ୍ତି ଉପରେ ସେପରି ଗୁରୁତ୍ୱ ଆରୋପ କରି ନାହାନ୍ତି । ଏକଥା ଅବଶ୍ୟ ସତ୍ୟ ଯେ, ସ୍ୱାମୀଜୀ ଭକ୍ତି ସମ୍ବନ୍ଧରେ ବେଶୀ କଥା କହି ନାହାନ୍ତି; କିନ୍ତୁ ଯେତିକି କହିଛନ୍ତି, ତାହା ଅତୀବ ଗଭୀର — ଏହି ସଂକଳନରେ ତାହା ସ୍ପଷ୍ଟଭାବରେ ଫୁଟିଉଠିଛି । ସ୍ୱାମୀଜୀଙ୍କର ପ୍ରଚାରିତ ଭକ୍ତି ହିଁ ପରାଭକ୍ତି, ଏବଂ ପରାଭକ୍ତି ଓ ପରାଜ୍ଞାନ ଏକ । ସ୍ୱାମୀଜୀଙ୍କର ଏହି 'ଭକ୍ତିଯୋଗ' ସର୍ବପ୍ରକାର ସାମ୍ପ୍ରଦାୟିକ ଭାବର ଊର୍ଦ୍ଧ୍ୱରେ — ସମନ୍ୱୟ ଏହାର ମୂଳତତ୍ତ୍ୱ । ଜ୍ଞାନ ଓ ଭକ୍ତି ମଧ୍ୟରେ ଯେଉଁ ଦ୍ୱନ୍ଦ୍ୱ ତାହା ମାର୍ଗର ଦ୍ୱନ୍ଦ୍ୱ, ଲକ୍ଷ୍ୟର ନୁହେଁ ।

ଏହି ଖଣ୍ଡର ପ୍ରଥମାଂଶରେ ରହିଛି ଭକ୍ତିଯୋଗ-ନାମକ ବିଖ୍ୟାତ ବକ୍ତୃତାଗୁଡ଼ିକର ସଂକ୍ଷିପ୍ତ ବିବରଣ । ପରବର୍ତ୍ତୀ ଅଂଶ 'ଭକ୍ତିରହସ୍ୟ'ରେ ପ୍ରାୟ ସମାନ ବିଷୟ ଆଲୋଚିତ ହୋଇଛି, ମାତ୍ର ବିସ୍ତାରିତ ଓ ସହଜ ଭାବରେ । ସ୍ୱାମୀ ବିବେକାନନ୍ଦଙ୍କର ହୃଦୟରୁ ଉତ୍‌ଥିତ ଶ୍ରୀରାମକୃଷ୍ଣଙ୍କ ପ୍ରତି ଭକ୍ତି-ନିବେଦନର କେତୋଟି ସ୍ତବ 'ଶ୍ରୀରାମକୃଷ୍ଣସ୍ତୋତ୍ରାଣି' ନାମରେ ଏହି ଅଂଶରେ ସଂଯୁକ୍ତ କରାଯାଇଛି ।

ଶେଷ ଅଂଶ 'ଭକ୍ତି ପ୍ରସଙ୍ଗ'ରେ ବିଭିନ୍ନ ସ୍ଥାନରେ ବିଭିନ୍ନ ସମୟରେ ଭକ୍ତି ସମ୍ବନ୍ଧରେ ପ୍ରଦତ୍ତ ବକ୍ତୃତା ଓ କଥୋପକଥନ ଏକତ୍ର ସଂକଳିତ ହୋଇଛି । 'ନାରଦ-ଭକ୍ତିସୂତ୍ର'ର ନିର୍ବାଚିତ ଅଂଶର ଅନୁବାଦ ଏବଂ ଭକ୍ତି-ବିଷୟକ ଗଳ୍ପ-ଦୁଇଟି ସ୍ୱାମୀଜୀଙ୍କର ବହୁମୁଖୀ ପ୍ରତିଭାର ଏକ ଅଜ୍ଞାତ ଦିଗର ପରିଚୟ ବହନ କରେ ।

ଅନ୍ୟାନ୍ୟ ଖଣ୍ଡ ଭଳି ଏହି ଖଣ୍ଡରେ ମଧ୍ୟ ତଥ୍ୟପଞ୍ଜୀ ଓ ନିର୍ଦ୍ଦେଶିକା ସଂଯୁକ୍ତ କରାଯାଇଛି ।

ଅଧ୍ୟାପକ ଶ୍ରୀ ମହାପାତ୍ର ନୀଳମଣି ସାହୁ 'ଭକ୍ତି ପ୍ରସଙ୍ଗ' ଅଂଶଟିର ସମ୍ପୂର୍ଣ୍ଣ ଅନୁବାଦ କରିଛନ୍ତି । ଡକ୍ଟର ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ), ଡକ୍ଟର ରବିନାରାୟଣ ପ୍ରହରାଜ ଓ ଶ୍ରୀ ଉମେଶଚନ୍ଦ୍ର ଦାଶ ଏହି ଖଣ୍ଡର ସମ୍ପାଦନାରେ ବହୁ କଷ୍ଟ ସ୍ୱୀକାର କରିଛନ୍ତି । ଅଧ୍ୟାପକ ଶ୍ରୀ ତତ୍ତ୍ୱକନ୍ଦର ମିଶ୍ର ଅନ୍ୟାନ୍ୟ ଖଣ୍ଡଭଳି ଏହି ଗ୍ରନ୍ଥର ମୁଦ୍ରଣ ସମ୍ବନ୍ଧୀୟ ସମସ୍ତ ଦାୟିତ୍ୱ ନିଃସ୍ୱାର୍ଥପର ଭାବରେ ତୁଲାଇଛନ୍ତି । ଏମାନଙ୍କ ସହିତ ଅନ୍ୟ ଯେଉଁମାନେ ମଧ୍ୟ ଆମକୁ ନାନା ଭାବରେ

ସାହାଯ୍ୟ କରିଛନ୍ତି, ସମସ୍ତଙ୍କୁ ଆମେ ଆନ୍ତରିକ କୃତଜ୍ଞତା ଜଣାଉଛୁ । ସ୍ୱାମୀ ବୈରାଗ୍ୟାନନ୍ଦଙ୍କର ଏହି ପ୍ରକାଶନ ପାଇଁ ବିପୁଳ ଅବଦାନ ଅନସ୍ୱୀକାର୍ଯ୍ୟ ।

ଏହି ଖଣ୍ଡର ପ୍ରକାଶନ କେନ୍ଦ୍ର ସରକାରଙ୍କର ଆର୍ଥିକ ସହାୟତା ଯୋଗୁଁ ହିଁ ସମ୍ଭବପର ହୋଇପାରିଛି; ସେଥିପାଇଁ ଆମେ କେନ୍ଦ୍ର ସରକାରଙ୍କଠାରେ ଗଭୀର ଭାବରେ କୃତଜ୍ଞ ।

ଭକ୍ତିପ୍ରବଣ ଓଡ଼ିଶାବାସୀଙ୍କଦ୍ୱାରା ଏହି ଖଣ୍ଡଟି ବିଶେଷ ଆଦୃତ ହେବ ବୋଲି ଆମର ବିଶ୍ୱାସ ।

ପ୍ରେମସ୍ୱରୂପ ଭଗବାନଙ୍କର କଲ୍ୟାଣରାଶି କିପରି ଅଯାଚିତ ଭାବରେ ଆମମାନଙ୍କ ଉପରେ ବର୍ଷିତ ହେଉଅଛି—ଏକଥା ସ୍ୱାମୀ ବିବେକାନନ୍ଦ ହିଁ ବର୍ତ୍ତମାନ କାଳରେ ବିଶେଷ ଭାବରେ ଦେଖାଇ ଯାଇଛନ୍ତି ।

ଭୁବନେଶ୍ୱର
ମହାଶିବରାତ୍ରି, ୬ । ୩ । ୧୯୮୯

ସ୍ୱାମୀ ସ୍ତୁତ୍ୟାନନ୍ଦ

# ସୂଚୀପତ୍ର

ସ୍ୱାମୀ ବିବେକାନନ୍ଦଙ୍କର
୧୨୫ତମ ଜନ୍ମବାର୍ଷିକୀ ଅବସରରେ
ଆମର ଭକ୍ତିପୂତ ନିବେଦନ

ନମସ୍ତେ ଯତିରାଜାୟ ବିବେକାନନ୍ଦସୂରୟେ ।
ସଚ୍ଚିତ୍ସୁଖସ୍ୱରୂପାୟ ସ୍ୱାମିନେ ତାପହାରିଣେ ॥

# (ଇଂରାଜୀ) ଦ୍ୱିତୀୟ ସଂସ୍କରଣର ଭୂମିକାରୁ

ଏହି ଗ୍ରନ୍ଥର ପାଠକବୃନ୍ଦ ପ୍ରାୟ ଜାଣିଛନ୍ତି ଯେ, ମହାପ୍ରାଣ ସ୍ୱାମୀ ବିବେକାନନ୍ଦଙ୍କର ନାମରେ ଯେଉଁ ସମସ୍ତ ଗ୍ରନ୍ଥ ଅଛି, ଏଗୁଡ଼ିକର ପ୍ରାୟ ସବୁ ତାଙ୍କର କ୍ଷୁଦ୍ର ପରିସର କର୍ମମୟ ଜୀବନରେ ଭାରତରେ ଓ ଭାରତର ବାହାରେ ପ୍ରଦତ୍ତ ବକ୍ତୃତାଗୁଡ଼ିକର ସାଙ୍କେତିକ ଲେଖାରୁ ସଙ୍କଳିତ ହୋଇଛି । ଆଗରୁ ଲେଖାଥିବା ନୋଟ୍‌କୁ ସ୍ୱାମୀଜୀ ଅବଲମ୍ବନ କରି କେବେହେଲେ ବକ୍ତୃତା ଦେଉ ନ ଥିଲେ । ବକ୍ତୃତା ସ୍ଥଳରେ ଦଣ୍ଡାୟମାନ ହୋଇ ଯାହା ମନେ ପଡୁଥିଲା, ତାହା ହିଁ କହି ଯାଉଥିଲେ । ସ୍ୱାମୀଜୀ ଯେତେବେଳେ ଲଣ୍ଡନରେ ପ୍ରଥମ ବକ୍ତୃତା ଆରମ୍ଭ କରିଥିଲେ, ସେତେବେଳେ ବର୍ତ୍ତମାନ ସଂପାଦକ ତାଙ୍କ ସହିତ ରହିବାର ସୌଭାଗ୍ୟ ଲାଭ କରିଥିଲେ; ପ୍ରତିଭାସମ୍ପନ୍ନ ସ୍ୱାମୀଜୀଙ୍କର ଦାର୍ଶନିକ ବକ୍ତୃତାଗୁଡ଼ିକର ସାର ଗ୍ରହଣ କରିବାର ଉପଯୁକ୍ତ ସାଙ୍କେତିକ ଲିପିକାର ପାଇବା ପ୍ରଥମତଃ ଦୁର୍ମୂଲ୍ୟ ଥିଲା—ଏହା ସମସ୍ତେ ବୁଝି-ପାରନ୍ତି । ଏଥିପାଇଁ ସ୍ୱାମୀଜୀଙ୍କର ମାର୍କିନ୍‌ବନ୍ଧୁମାନେ ଏକଦା ତାଙ୍କର ମୂଲ୍ୟବାନ ବକ୍ତୃତାଗୁଡ଼ିକର ସଂରକ୍ଷଣ ନିମନ୍ତେ ହତାଶ ହୋଇଥିଲେ; କିନ୍ତୁ ଭଗବାନଙ୍କର ଇଚ୍ଛା ଥିଲା ଯେ, ବକ୍ତୃତା-ଗୁଡ଼ିକ ମାନବର କଲ୍ୟାଣ ପାଇଁ ଲିପିବଦ୍ଧ ହେଉ, ଏହି ନିଃସ୍ୱାର୍ଥ ଜୀବନର କର୍ମପ୍ରଚେଷ୍ଟାସମୂହ ଚିରସ୍ଥାୟୀ ହୋଇ ମାନବଜାତିକୁ ଶାନ୍ତି ପ୍ରଦାନ କରୁ—ସେଥିପାଇଁ ଅବଶେଷରେ ଇଂଲଣ୍ଡର ବାଥ୍-ନିବାସୀ ସ୍ୱର୍ଗତ ମି. ଜେ. ଜେ. ଗୁଡ୍‌ଉଇନ୍‌ଙ୍କ ପରି ଜଣେ ଜ୍ଞାନୀ ସାଙ୍କେତିକ ଲିପିକାରଙ୍କୁ ପାଇବାର ସୌଭାଗ୍ୟ ହୋଇଥିଲା । ମି. ଗୁଡ୍‌ଉଇନ୍ ପରେ ସ୍ୱାମୀଜୀଙ୍କର ଅନ୍ୟତମ ଅନୁରାଗୀ ଶିଷ୍ୟ ଭାବରେ ପରିଣତ ହେଲେ ଏବଂ ସ୍ୱାମୀଜୀ ଯେଉଁଠାକୁ ଯାଉଥିଲେ ସେ ମଧ୍ୟ ସାଙ୍ଗରେ ଯାଉଥିଲେ । ସ୍ୱାମୀଜୀଙ୍କର ଅନେକ ବନ୍ଧୁ, ଅନୁରାଗୀ ଛାତ୍ର ଓ ଶିଷ୍ୟମାନଙ୍କ ମଧ୍ୟରେ ଅନେକେ ବର୍ତ୍ତମାନ ସୁଦ୍ଧା ଜାଣନ୍ତି ନାହିଁ ଯେ, ଏହି ନିରଳସ କର୍ମୀଙ୍କର ଅମୂଲ୍ୟ ସେବା ନିକଟରେ ସେମାନେ କେତେ ଗଭୀର ଭାବରେ ଋଣୀ । ସ୍ୱାମୀଜୀଙ୍କ ଇହଲୀଳା ସମ୍ବରଣର ପ୍ରାୟ ୩ବର୍ଷ ପୂର୍ବେ ମି. ଗୁଡ୍‌ଉଇନ୍ ଭାରତର ମହୀଶୂର ଅନ୍ତର୍ଗତ ଉଟାକାମଣ୍ଡରେ ଜ୍ୱରରେ ଅକାଳରେ ଦେହତ୍ୟାଗ କରିଥିଲେ । ଗୁଡ୍‌ଉଇନ୍ ଏହି ଶୁଭ କାର୍ଯ୍ୟରେ ଅଗ୍ରସର ହୋଇ ନ ଥିଲେ ସ୍ୱାମୀଜୀଙ୍କ ଇଂରାଜୀରେ ପ୍ରଦତ୍ତ ବକ୍ତୃତାଗୁଡ଼ିକ କେବେହେଲେ ପ୍ରକାଶିତ ହୋଇପାରି ନ ଥାନ୍ତା ଏବଂ ମନୁଷ୍ୟସମାଜ ମଧ୍ୟ ଏହି ଅମୂଲ୍ୟ ସମ୍ପଦରୁ ବଞ୍ଚିତ ହୋଇଥାଆନ୍ତେ ।

ସମ୍ପାଦକଙ୍କର ଧାରଣା ଥିଲା ଯେ, ସାଧାରଣତଃ ସ୍ୱାମୀଜୀଙ୍କ ଗ୍ରନ୍ଥ ଇତ୍ୟାଦି ଯେଉଁ ଭାବରେ ପ୍ରକାଶିତ, ବର୍ତ୍ତମାନ ଗ୍ରନ୍ଥରେ ସେହି ପ୍ରକାର ନିୟମର ବ୍ୟତ୍ୟୟ ଘଟିଅଛି । ୧୮୯୪-୯୫ ଖ୍ରୀ:ରେ ସ୍ୱାମୀଜୀ ଯେତେବେଳେ ପ୍ରଥମଥର ପାଇଁ ଆମେରିକାରେ ଥିଲେ, ସେତେବେଳେ ନିୟମିତ ପ୍ରବନ୍ଧ ରୂପରେ ଏହି ଗ୍ରନ୍ଥ ମାନ୍ଦ୍ରାଜରୁ ପ୍ରକାଶିତ ବେଦାନ୍ତ-ମାସିକ 'ବ୍ରହ୍ମବାଦିନ୍' ପତ୍ରିକାରେ ପ୍ରଥମେ ପ୍ରକାଶ ହେଲା; ଏଥିପାଇଁ ତାଙ୍କର ଧାରଣା ହୋଇଥିଲା, ଏହି ଗ୍ରନ୍ଥ ସ୍ୱାମୀଜୀ

ଉକ୍ତ ପତ୍ରିକା ପାଇଁ ନିଜେ ଲେଖିଥିଲେ; କିନ୍ତୁ ଆହୁରି ପୁଙ୍ଖାନୁପୁଙ୍ଖ ଅନୁସନ୍ଧାନ ଫଳରେ ଜଣା- ଗଲା ଯେ, ପ୍ରଥମ ଯେଉଁ କେତୋଟି ଅଧ୍ୟାୟରେ ସ୍ୱାମୀଜୀ ଶଙ୍କର, ରାମାନୁଜ ଓ ଅନ୍ୟାନ୍ୟ ପ୍ରାଚୀନ ଉପଦେଷ୍ଟାମାନଙ୍କ ଭାଷ୍ୟରୁ ଦୀର୍ଘ ବାଣୀଗୁଡ଼ିକ ଉପସ୍ଥାପନ କରିଥିଲେ, ସେହି ଅଧ୍ୟାୟ- ଗୁଡ଼ିକ ବ୍ୟତୀତ ସମଗ୍ର ଗ୍ରନ୍ଥଟି ସେତେବେଳେ ନିଉୟର୍କର ଶିକ୍ଷାର୍ଥୀମାନଙ୍କ ନିକଟରେ ପ୍ରଦତ୍ତ 'ଭକ୍ତି' ସମ୍ବନ୍ଧରେ ଭାଷଣଗୁଡ଼ିକୁ ଅବଲମ୍ବନ କରି ସଙ୍କଳିତ ହୋଇଛି । ସାଙ୍କେତିକ ଲିପିରେ ଗୃହୀତ ନୋଟ୍‌ସବୁ ସ୍ୱର୍ଗତ ମି: ଗୁଡ୍‌ଉଇନ୍‌ଙ୍କ ପରି ଜଣେ ସୁଦକ୍ଷ ବ୍ୟକ୍ତି ଦ୍ୱାରା ଭାଷାରେ ରୂପାୟିତ ହେବା ପରେ ବି କିଛି କିଛି ବାଦ୍ ପଡ଼ିଯାଇଛି, କିଛି ଭୁଲ୍ ହୋଇଛି ଏବଂ କିଛି ବାକ୍ୟର ସ୍ଥାନଚ୍ୟୁତି ଘଟିଛି । ଏଠି ସେଠି ଶୀଘ୍ର ଶୀଘ୍ର ଆଖି ବୁଲାଇ ଦେଖିବା ବ୍ୟତୀତ ସ୍ୱାମୀଜୀ କେବେହେଲେ ନିଜେ ସାଙ୍କେତିକ ଲିପିରୁ ଆନୀତ ନୋଟ୍‌ଗୁଡ଼ିକୁ ବିଶେଷ ମନଯୋଗ ସହକାରେ ଦେଖୁ ନ ଥିଲେ । କେତେବେଳେ ବିଶେଷ ଭୁଲ୍‌କୁ ସଂଶୋଧନ କରି ଏବଂ କେତେବେଳେ ବା ସଂଶୋଧନ ନ କରି ମୁଦ୍ରଣ ପାଇଁ ପଠାଇ ଦେଉଥିଲେ । ଏହିସବୁ କାରଣରୁ ସ୍ୱାମୀଜୀ ଯେତେବେଳେ ଆଜି ଆମମାନଙ୍କ ମଧ୍ୟରେ ନାହାଁନ୍ତି, ସେତେବେଳେ ତାଙ୍କର ବକ୍ତୃତାଗୁଡ଼ିକୁ ପୁନର୍ବାର ପରୀକ୍ଷା କରିବାର ଆୟାସସାଧ୍ୟ ଗୁରୁଦାୟିତ୍ୱ ସମ୍ପାଦକଙ୍କ ଉପରେ ଆସି ପଡ଼ିଛି ।

* * *

ସୁତରାଂ ଗ୍ରନ୍ଥର ବିଭିନ୍ନ ସ୍ଥଳରେ ଅର୍ଥ ସୁସ୍ପଷ୍ଟ କରିବା ପାଇଁ ସମ୍ପାଦକ ଭାଷା ଓ ବିରାମ- ଚିହ୍ନ ଇତ୍ୟାଦିର ତ୍ରୁଟିଗୁଡ଼ିକୁ ପରିବର୍ତ୍ତନ ଏବଂ ନିଜର କେତୋଟି ଶବ୍ଦ-ଯୋଡ଼ିବା କାର୍ଯ୍ୟରେ ବାସ୍ତବିକ ଅତ୍ୟନ୍ତ ସଂଶୟାକୁଳ ଚିତ୍ତରେ ଅଗ୍ରସର ହୋଇଛନ୍ତି ।

* * *

ଉପସଂହାରରେ ସମ୍ପାଦକ ଜଣାଇଛନ୍ତି ଯେ, ସ୍ୱାମୀଜୀଙ୍କର ଅଭିଭାଷଣର ଅର୍ଥ ଯଥାସମ୍ଭବ ସୁସ୍ପଷ୍ଟ କରିବା ଉଦ୍ଦେଶ୍ୟରେ ଅନୁପ୍ରାଣିତ ହୋଇ ସେ ସମ୍ପାଦନା-କାର୍ଯ୍ୟ କରିଛନ୍ତି । ପାଠକଙ୍କ ନିକଟରେ ଗ୍ରନ୍ଥଟିକୁ ଅଧିକତର ଉପଯୋଗୀ କରିବା ପାଇଁ ଯତ୍ନରେ ସେ ତ୍ରୁଟି କରି ନାହାଁନ୍ତି ଏବଂ ଆଶା କରନ୍ତି, ଏଥିରେ ସେ ସଫଳକାମ ହୋଇଛନ୍ତି ।

ମଠ, ବେଲୁଡ଼, ହାଉଡ଼ା
୧୫ ମାର୍ଚ୍ଚ, ୧୯୦୯

ସମ୍ପାଦକ
**ସାରଦାନନ୍ଦ**

ସ ତନ୍ମୟୋ ହ୍ୟମୃତ ଈଶସଂସ୍ଥୋ
ଜ୍ଞଃ ସର୍ବଗୋ ଭୁବନସ୍ୟାସ୍ୟ ଗୋପ୍ତା ।
ଯ ଈଶେଽସ୍ୟ ଜଗତୋ ନିତ୍ୟମେବ
ନାନ୍ୟୋ ହେତୁର୍ବିଦ୍ୟତେ ଈଶନାୟ ॥
ଯୋ ବ୍ରହ୍ମାଣଂ ବିଦଧାତି ପୂର୍ବଂ
ଯୋ ବୈ ବେଦାଂଶ୍ଚ ପ୍ରହିଣୋତି ତସ୍ମୈ ।
ତଂ ହ ଦେବମାତ୍ମବୁଦ୍ଧିପ୍ରକାଶଂ
ମୁମୁକ୍ଷୁର୍ବୈ ଶରଣମହଂ ପ୍ରପଦ୍ୟେ ॥

—ଶ୍ୱେତାଶ୍ୱେତର ଉପ., ୬।୧୭-୧୮

ସେ ଜଗନ୍ମୟ, ଅମର, ନିୟନ୍ତୃରୂପେ ଅବସ୍ଥିତ, ଜ୍ଞାତା, ସର୍ବବ୍ୟାପୀ, ଏହି ଜଗତର ପାଳୟିତା । ସେ ଅନନ୍ତକାଳ ଜଗତ୍ ଶାସନ କରୁଛନ୍ତି । ଏହି ଜଗତ୍ଶାସନର ଅନ୍ୟ ହେତୁ କେହି ନାହିଁ ।

ଯେ ପ୍ରଥମେ ବ୍ରହ୍ମାଙ୍କୁ ସୃଷ୍ଟି କରିଥିଲେ ଓ ପରେ ତାହାଙ୍କୁ ବେଦ ପ୍ରଦାନ କରିଥିଲେ, ମୋକ୍ଷଲାଭେଚ୍ଛାରେ ମୁଁ ସେହି ଦେବତାଙ୍କର ଶରଣ ପଶୁଛି, ଯାହାଙ୍କର ପ୍ରକାଶ ହିଁ ବୁଦ୍ଧିକୁ ଆତ୍ମାଭିମୁଖୀ କରିଦିଏ ।

# ଭକ୍ତର ଲକ୍ଷଣ

ଅକପଟଭାବରେ ଈଶ୍ୱରାନୁସନ୍ଧାନ ହିଁ ଭକ୍ତିଯୋଗ; ପ୍ରୀତି ଏହାର ଆଦି, ମଧ୍ୟ ଓ ସମାପ୍ତି । ମୁହୂର୍ତ୍ତିସ୍ଥାୟୀ ଭଗବତ୍-ପ୍ରେମୋନ୍ମତ୍ତତା ମଧ୍ୟରୁ ହିଁ ଶାଶ୍ୱତୀ ମୁକ୍ତି ଆସିପାରେ । ନାରଦ ତାଙ୍କର 'ଭକ୍ତିସୂତ୍ର'ରେ କହିଛନ୍ତି, "ଭଗବାନଙ୍କଠାରେ ପରମ ପ୍ରେମ ହିଁ ଭକ୍ତି ।" "ଜୀବ ଏତଲ୍ଲାଭରେ ସର୍ବଭୂତଙ୍କଠାରେ ପ୍ରେମବାନ୍ ଓ ଘୃଣାଶୂନ୍ୟ ହୁଏ ଏବଂ ଅନନ୍ତ କାଳ ପାଇଁ ତୃପ୍ତି ଲାଭ କରେ ।" "ଏହି ପ୍ରେମ ଦ୍ୱାରା କୌଣସି କାମ୍ୟ ବସ୍ତୁ ଲାଭ ହୋଇପାରେ ନାହିଁ, କାରଣ ବିଷୟବାସନା ଥିବାଯାଏ ଏହି ପ୍ରେମର ଉଦୟ ହୁଏ ନାହିଁ ।" "ଭକ୍ତି—କର୍ମ, ଜ୍ଞାନ ଓ ଯୋଗଠାରୁ ମଧ୍ୟ ଶ୍ରେଷ୍ଠତର, କାରଣ ସାଧ୍ୟବିଶେଷ ହିଁ ସେମାନଙ୍କର ଲକ୍ଷ୍ୟ, କିନ୍ତୁ ଭକ୍ତି ସ୍ୱୟଂ-ସାଧ୍ୟ ଓ ସାଧନସ୍ୱରୂପା ।"[୧]

ଅସ୍ମଦ୍ଦେଶୀୟ ସକଳ ମହାପୁରୁଷମାନେ ହିଁ ଭକ୍ତିତତ୍ତ୍ୱର ଆଲୋଚନା କରିଛନ୍ତି । ଶାଣ୍ଡିଲ୍ୟ, ନାରଦାଦି ଭକ୍ତିତତ୍ତ୍ୱର ବିଶେଷ ବ୍ୟାଖ୍ୟାତାଗଣଙ୍କୁ ଛାଡ଼ିଦେଲେ ମଧ୍ୟ, ସ୍ପଷ୍ଟତଃ ଜ୍ଞାନମାର୍ଗ-ସମର୍ଥନକାରୀ ବ୍ୟାସସୂତ୍ରର ମହାନ୍ ଭାଷ୍ୟକାରମାନେ ମଧ୍ୟ ଭକ୍ତି ସମ୍ବନ୍ଧରେ ଅନେକ ଇଙ୍ଗିତ କରିଛନ୍ତି । ସମୁଦାୟ ନ ହେଲେ ମଧ୍ୟ ଅଧିକାଂଶ ସୂତ୍ରଗୁଡ଼ିକ ଶୁଷ୍କ ଜ୍ଞାନସୂଚକ ଅର୍ଥରେ ବ୍ୟାଖ୍ୟା କରିବାର ଆଗ୍ରହ ଭାଷ୍ୟକାରମାନଙ୍କର ଥିଲେ ହେଁ ସୂତ୍ରଗୁଡ଼ିକର—ବିଶେଷତଃ ଉପାସନା-ବିଷୟକ ସୂତ୍ରମାନଙ୍କର ଅର୍ଥ ନିରପେକ୍ଷଭାବରେ ଅନୁସନ୍ଧାନ କଲେ ସହଜରେ ସେଗୁଡ଼ିକର ସେହିପ୍ରକାର ଯଥେଚ୍ଛ ବ୍ୟାଖ୍ୟା ଚଳିପାରେ ନାହିଁ ।

ସାଧାରଣତଃ ଲୋକେ ଭାବନ୍ତି ଯେ, ଜ୍ଞାନ ଓ ଭକ୍ତି ପୃଥକ୍ ବସ୍ତୁ; ବାସ୍ତବିକ ତାହା ନୁହେଁ । ପରେ ବୁଝିହେବ, ଜ୍ଞାନ ଓ ଭକ୍ତି ଶେଷରେ କିପରି ଗୋଟିଏ ଲକ୍ଷ୍ୟସ୍ଥଳକୁ ନେଇଯାଆନ୍ତି । ଦୁର୍ଭାଗ୍ୟବଶତଃ ଜୁଆଚୋର ଓ ଗୁପ୍ତବିଦ୍ୟା ନାମରେ ଛଳନାକାରୀମାନଙ୍କ ହସ୍ତରେ ପଡ଼ି ରାଜଯୋଗ ପ୍ରାୟ ଅସାବଧାନ ବ୍ୟକ୍ତିମାନଙ୍କ ଆଖିରେ ଧୂଳି ନିକ୍ଷେପ ଉଦ୍ଦେଶ୍ୟରେ ବ୍ୟବହୃତ ହୋଇଥାଏ । ମୁକ୍ତିଲାଭ ଉଦ୍ଦେଶ୍ୟରେ ଅନୁଷ୍ଠିତ ହେଲେ ରାଜଯୋଗ ମଧ୍ୟ ସେହି ଗୋଟିଏ ଲକ୍ଷ୍ୟରେ ପହଞ୍ଚାଇ ଦେଇଥାଏ ।

ଭକ୍ତିଯୋଗରେ ଗୋଟିଏ ବିଶେଷ ସୁବିଧା ଯେ, ଏହା ଆମମାନଙ୍କର ଚରମ ଲକ୍ଷ୍ୟ ଈଶ୍ୱରଙ୍କ ନିକଟରେ ପହଞ୍ଚିବାର ଅତି ସହଜ ଓ ସ୍ୱାଭାବିକ ପନ୍ଥା । କିନ୍ତୁ ଏଥିରେ ବିଶେଷ ବିପଦାଶଙ୍କା ଏହି ଯେ, ନିମ୍ନସ୍ତରର ଭକ୍ତି ଅନେକ ସମୟରେ ଭୟାନକ ମତାନ୍ଧତାରୂପ ଧାରଣ

---

[୧] ଓଁ ସା କସ୍ମୈ ପରମପ୍ରେମରୂପା । —ନାରଦ-ସୂତ୍ର, ୧ମଅନୁବାକ୍, ୨ୟ ସୂତ୍ର
ଓଁ ସା ନ କାମୟମାନା ନିରୋଧରୂପତ୍ୱାତ୍ । — ,, ୨ୟ ,, ୭ମ ,,
ଓଁ ସା ତୁ କର୍ମଜ୍ଞାନଯୋଗେଭ୍ୟୋଽପ୍ୟଧିକତରା— ,, ୪ର୍ଥ ,, ୨୫ଶ ,,
ଓଁ ସ୍ୱୟଂ ଫଳରୂପତେତି ବ୍ରହ୍ମକୁମାରାଃ । — ,, ,, ,, ୩୦ଶ ,,

କରେ । ହିନ୍ଦୁ, ମୁସଲମାନ ଓ ଖ୍ରୀଷ୍ଟଧର୍ମାନୁବର୍ତ୍ତୀ ଧର୍ମାନ୍ଧଦଳ ଏହି ନିମ୍ନସ୍ତରର ଭକ୍ତସାଧକମାନଙ୍କ ମଧ୍ୟରେ ପ୍ରାୟ ଅନେକ ସମୟରେ ଦେଖାଯାଆନ୍ତି । ଯେଉଁ ଇଷ୍ଟନିଷ୍ଠା ବ୍ୟତୀତ ପ୍ରକୃତ ପ୍ରେମର ଉତ୍ପତ୍ତି ମଧ୍ୟ ଅସମ୍ଭବ, ଅନେକ ସମୟରେ ତାହା ହିଁ ଅନ୍ୟ ସମସ୍ତ ମତ ଉପରେ ତୀବ୍ର ଆକ୍ରମଣ ଓ ଦୋଷାରୋପର ମଧ୍ୟ କାରଣ । ସବୁ ଧର୍ମ ଓ ସବୁ ଦେଶର ଦୁର୍ବଳ ଅବିକଶିତ-ମସ୍ତିଷ୍କ ବ୍ୟକ୍ତି-ମାନେ ଗୋଟିଏ ମାତ୍ର ଉପାୟରେ ହିଁ ସେମାନଙ୍କ ଆଦର୍ଶ ସତ୍ୟକୁ ଭଲ ପାଇଥାଆନ୍ତି । ସେ ଉପାୟଟି ହେଉଛି —ଅପର ସମୁଦାୟ ଆଦର୍ଶ ପ୍ରତି ଘୃଣା ପୋଷଣ କରିବା । ନିଜ ଈଶ୍ୱରାଦର୍ଶ, ନିଜ ଧର୍ମାଦର୍ଶ ପ୍ରତି ଏକାନ୍ତ ଅନୁରକ୍ତ ବ୍ୟକ୍ତିଗଣ ଅନ୍ୟ କୌଣସି ଆଦର୍ଶ ବିଷୟ ଶୁଣିଲେ କାହିଁକି ନାନା ପ୍ରକାର ମତାନ୍ଧତା କରି ଚିତ୍କାର କରିଥାଆନ୍ତି, ତାହାର କାରଣ ଏଥିରୁ ବୁଝାଯାଏ । ଏହି-ପରି ପ୍ରେମ ହେଲା—ପ୍ରଭୁଙ୍କ ସମ୍ପତ୍ତିରେ ଅନ୍ୟର ହସ୍ତକ୍ଷେପ ନିବାରଣ ଲାଗି କୁକ୍କୁରସୁଲଭ ସହଜ ପ୍ରବୃତ୍ତି ସଦୃଶ । ତେବେ ପ୍ରଭେଦ ଏହି ଯେ, କୁକ୍କୁରର ଏହି ସହଜ ପ୍ରବୃତ୍ତି ମାନବଯୁକ୍ତିଠାରୁ ଶ୍ରେଷ୍ଠତର । ପ୍ରଭୁ ଯେଉଁ ବେଶଧାରୀ ହୋଇ ତା' ସମ୍ମୁଖକୁ ଆସନ୍ତୁ ନା କାହିଁକି, କୁକ୍କୁର ତାଙ୍କୁ କଦାପି ଶତ୍ରୁ ବୋଲି ଭୁଲ କରେ ନାହିଁ । ଧର୍ମାନ୍ଧ କିନ୍ତୁ ସମୁଦାୟ ବିଚାରଶକ୍ତି ହରାଇ ବସେ । ବ୍ୟକ୍ତିଗତ ବିଷୟରେ ତାହାର ଏତେ ଅଧିକ ଦୃଷ୍ଟି ଯେ, କେଉଁ ବ୍ୟକ୍ତି କଅଣ କହୁଛି, ତାହା ସତ୍ୟ କି ମିଥ୍ୟା, ତାହାର ମତରେ ତାକୁ ଶୁଣିବାର ବା ବୁଝିବାର କିଛି ପ୍ରୟୋଜନ ନାହିଁ; କିନ୍ତୁ କିଏ ଏ କଥା କହୁଛି, ସେହି ବିଷୟରେ ତାହାର ବିଶେଷ ଦୃଷ୍ଟି । ଯେଉଁ ବ୍ୟକ୍ତି ନିଜ ସମ୍ପ୍ରଦାୟର ବ୍ୟକ୍ତିମାନଙ୍କ ଉପରେ ଦୟାଶୀଳ, ନ୍ୟାୟପର ଓ ପ୍ରେମଯୁକ୍ତ, ସେହି ପୁଣି ନିଜ ସମ୍ପ୍ରଦାୟବହିର୍ଭୂତ ଲୋକମାନଙ୍କର ଅନିଷ୍ଟ କରିବାକୁ ପଛାଏ ନାହିଁ ।

ତେବେ ଏ ଆଶଙ୍କା କେବଳ ଭକ୍ତିର ନିମ୍ନସ୍ତରରେ ଥାଏ—ଏହି ଅବସ୍ଥାର ନାମ ଗୌଣୀ । ଏହା ଠିକ୍ ଏ ପରିପକ୍ୱ ହୋଇ ପରାଭକ୍ତିରୂପେ ପରିଣତ ହେଲେ ଆଉ ଏପରି ଭୟା-ନକ ଧର୍ମାନ୍ଧତା ଆସିବାର ଆଶଙ୍କା ନ ଥାଏ । ଏହି ପରାଭକ୍ତିରେ ଅଭିଭୂତ ବ୍ୟକ୍ତି ପ୍ରେମସ୍ୱରୂପ ଭଗବାନଙ୍କର ଏତେ ନିକଟରେ ପହଞ୍ଚିଥାଆନ୍ତି ଯେ, ସେ ଆଉ ଅନ୍ୟପ୍ରତି ଘୃଣାଭାବ ବିସ୍ତାର କରିବାର ଯନ୍ତ୍ରସ୍ୱରୂପ ହୋଇପାରନ୍ତି ନାହିଁ ।

ଏ ଜୀବନରେ ସମସ୍ତେ ଯେ ସାମଞ୍ଜସ୍ୟର ସହିତ ଚରିତ୍ର ଗଠନ କରିବେ, ତାହା ସମ୍ଭବ ନୁହେଁ । ତେବେ ଆମେମାନେ ଜାଣୁ, ଯେଉଁ ଚରିତ୍ରରେ ଜ୍ଞାନ, ଭକ୍ତି ଓ ଯୋଗ ସମଭାବରେ ବିରାଜମାନ, ସେହି ଚରିତ୍ର ହିଁ ସର୍ବାପେକ୍ଷା ଉଚ୍ଚସ୍ତରର । ପକ୍ଷୀଟି ଉଡ଼ିବାକୁ ହେଲେ ତିନୋଟି ଜିନିଷ ଆବଶ୍ୟକ -- ଦୁଇଟି ପକ୍ଷ ଓ ଚଳାଇବା ପାଇଁ ଆହୁଲସ୍ୱରୂପ ଗୋଟିଏ ପୁଚ୍ଛ । ଜ୍ଞାନ ଓ ଭକ୍ତି ଦୁଇଟି ପକ୍ଷ, ଯୋଗ ଏଥିମଧ୍ୟରେ ସାମଞ୍ଜସ୍ୟ ରକ୍ଷା ପାଇଁ ପୁଚ୍ଛସ୍ୱରୂପ । ଯେଉଁମାନେ ଏହି ତିନୋଟି ସାଧନପ୍ରଣାଳୀ ଏକସଙ୍ଗରେ ସାମଞ୍ଜସ୍ୟ ସହିତ ଅନୁଷ୍ଠାନ କରି ନ ପାରି ଭକ୍ତିକୁ କେବଳ ଏକମାତ୍ର ପଥସ୍ୱରୂପ ବୋଲି ଗ୍ରହଣ କରନ୍ତି, ସେମାନଙ୍କ ପକ୍ଷରେ ଏହା ସର୍ବଦା ସ୍ମରଣ ରଖିବା ଆବଶ୍ୟକ ଯେ, ବାହ୍ୟ ଅନୁଷ୍ଠାନ ଓ କ୍ରିୟାକଳାପ ପ୍ରଥମ ଅବସ୍ଥାରେ ସାଧକପକ୍ଷରେ ଅତ୍ୟାବଶ୍ୟକ ହେଲେ ହେଁ ଭଗବାନଙ୍କ ପ୍ରତି ପ୍ରଗାଢ଼ ପ୍ରେମ ଜାତ କରାଇବା ବ୍ୟତୀତ ସେଗୁଡ଼ିକର ଅନ୍ୟ କୌଣସି ପ୍ରକାର ଉପଯୋଗିତା ନାହିଁ ।

ଜ୍ଞାନମାର୍ଗ ଓ ଭକ୍ତିମାର୍ଗର ଉପଦେଷ୍ଟାମାନଙ୍କ ଭିତରେ ଟିକିଏ ସାମାନ୍ୟ ମତଭେଦ ଅଛି, ଯଦ୍ୟପି ଉଭୟେ ଭକ୍ତିର ପ୍ରଭାବରେ ବିଶ୍ୱାସୀ। ଜ୍ଞାନୀମାନେ ଭକ୍ତିକୁ ମୁକ୍ତିର ଉପାୟମାତ୍ର ବୋଲି ବିଶ୍ୱାସ କରନ୍ତି; କିନ୍ତୁ ଭକ୍ତମାନେ ଏହାକୁ ଉପାୟ ଓ ଉଦ୍ଦେଶ୍ୟ ଉଭୟ ବୋଲି କହି-ଥାଆନ୍ତି। ମୋର ମନେହୁଏ, ଏ ପ୍ରଭେଦ କେବଳ ନାମମାତ୍ର। ପ୍ରକୃତ ପକ୍ଷରେ, ଭକ୍ତିକୁ ସାଧନସ୍ୱରୂପ ଧରିଲେ ନିମ୍ନସ୍ତରର ଉପାସନାମାତ୍ର ବୁଝାଏ। ଆଉ ଏହି ନିମ୍ନସ୍ତରର ଉପାସନା ଟିକିଏ ଅଗ୍ରସର ହେଲେ ଉଚ୍ଚ ସ୍ତରର ଭକ୍ତି ସହିତ ଅଭେଦଭାବ ଧାରଣ କରେ। ସମସ୍ତେ ହିଁ ବୋଧହୁଏ ଯେପରି କି ନିଜ ନିଜ ସାଧନପ୍ରଣାଳୀ ଉପରେ ଜୋର୍ ଦେଇଥାଆନ୍ତି। ପୂର୍ଣ୍ଣଭକ୍ତି ସହିତ ପ୍ରକୃତ ଜ୍ଞାନ ଅଯାଚିତ ହେଲେ ମଧ୍ୟ ଆସିବ ହିଁ ଆସିବ ଏବଂ ପୂର୍ଣ୍ଣ ଜ୍ଞାନ ସହିତ ପ୍ରକୃତ ଭକ୍ତି ଅଭେଦ—ଏ ସତ୍ୟ ସେମାନେ ଯେପରି ଭୁଲି ନ ଯାଆନ୍ତି।

ଏହା ମନେରଖି ଏ ବିଷୟରେ ପୂଜନୀୟ ବେଦାନ୍ତଭାଷ୍ୟକାରମାନେ କଅଣ କହିଛନ୍ତି, ଦେଖାଯାଉ। 'ଆବୃତ୍ତିରସକୃଦୁପଦେଶାତ୍' ଏହି ସୂତ୍ର ବ୍ୟାଖ୍ୟା କରିବାକୁ ଯାଇ ଭଗବାନ୍ ଶଙ୍କର କହିଛନ୍ତି, "ଲୋକେ ଏପରି କହନ୍ତି—ଅମୁକ ଗୁରୁର ଭକ୍ତ, ଅମୁକ ରାଜାର ଭକ୍ତ। ଯିଏ ଗୁରୁର ବା ରାଜାର ନିର୍ଦ୍ଦେଶାନୁବର୍ତ୍ତୀ ହୁଏ ଏବଂ ସେହି ନିର୍ଦ୍ଦେଶାନୁବର୍ତ୍ତିତାକୁ ଏକମାତ୍ର ଲକ୍ଷ୍ୟ ରଖି କାର୍ଯ୍ୟ କରେ, ତାହାକୁ ହିଁ ଏହିପରି କହିଥାଆନ୍ତି। ଆଉ ମଧ୍ୟ ଏହିପରି ଲୋକେ କହନ୍ତି—ପତିପ୍ରାଣା ସ୍ତ୍ରୀ ବିଦେଶଗତ ପତିର ଧ୍ୟାନ କରୁଛି। ଏଠାରେ ମଧ୍ୟ ଏକ ପ୍ରକାର ସାଗ୍ରହ ଅବିଚ୍ଛିନ୍ନ ସ୍ମୃତି ଲକ୍ଷିତ ହେଉଛି।"[୧] ଶଙ୍କରଙ୍କ ମତରେ ଏହା ହିଁ ଭକ୍ତି।

ଆଉ ମଧ୍ୟ ଭଗବାନ୍ ରାମାନୁଜ 'ଅଥାତୋ ବ୍ରହ୍ମଜିଜ୍ଞାସା' ସୂତ୍ରର ବ୍ୟାଖ୍ୟାରେ କହିଛନ୍ତି, "ଏକ ପାତ୍ରରୁ ଅପର ପାତ୍ରକୁ ନିକ୍ଷିପ୍ତ ଅବିଚ୍ଛିନ୍ନ ତୈଳଧାରା ପରି ପ୍ରବାହିତ ଧ୍ୟେୟ ବସ୍ତୁର ନିରନ୍ତର ସ୍ମରଣର ନାମ ଧ୍ୟାନ।" ଯେତେବେଳେ ଭଗବତ୍ ସମ୍ବନ୍ଧରେ ଏହିପରି ଅବିଚ୍ଛିନ୍ନ ସ୍ମୃତିର ଅବସ୍ଥା ଲାଭ ହୁଏ, ସେତେବେଳେ ସକଳ ବନ୍ଧନର ନାଶ ହୁଏ। ଏହି ଭାବରେ ଶାସ୍ତ୍ର ଏହି ନିରନ୍ତର ସ୍ମରଣକୁ ମୁକ୍ତିର କାରଣ ବୋଲି କହିଛନ୍ତି। ଏହି ସ୍ମରଣ ପୁଣି ଦର୍ଶନ କରିବା ସହିତ ସମାନ। କାରଣ, 'ସେହି ପର ଓ ଅବର (ଦୂର ଓ ସନ୍ନିହିତ) ପୁରୁଷଙ୍କୁ ଦେଖିଲେ ହୃଦୟଗ୍ରନ୍ଥି ନାଶ ହୁଏ, ସମୁଦାୟ ସଂଶୟ ଛିନ୍ନ ହୋଇଯାଏ ଏବଂ କର୍ମକ୍ଷୟ ହୁଏ।' ଏହି ଶାସ୍ତ୍ରୋକ୍ତ ବାକ୍ୟରେ 'ସ୍ମରଣ' ଦର୍ଶନ ସହିତ ସମାନାର୍ଥକରୂପେ ବ୍ୟବହୃତ ହୋଇଛି। ଯେ ନିକଟବର୍ତ୍ତୀ ତାହାକୁ ଦେଖାଯାଇପାରେ, କିନ୍ତୁ ଯେ ଦୂରବର୍ତ୍ତୀ ତାହାକୁ କେବଳ ସ୍ମରଣମାତ୍ର କରାଯାଇପାରେ, ତଥାପି ଶାସ୍ତ୍ର ଆମମାନଙ୍କୁ ସନ୍ନିହିତ ଓ ଦୂରସ୍ଥ ଉଭୟଙ୍କୁ ଦେଖିବାକୁ କହିଛନ୍ତି; ସୁତରାଂ ଏପରି ସ୍ମରଣ ଓ ଦର୍ଶନ ଏକ ପର୍ଯ୍ୟାୟର କାର୍ଯ୍ୟ ବୋଲି ସୂଚିତ ହେଲା। ଏହି ସ୍ମୃତି ପ୍ରଗାଢ଼ ହେଲେ ଦର୍ଶନ ଭଳି ହୋଇଯାଏ।...ଆଉ ମଧ୍ୟ ଉପାସନା ଅର୍ଥରେ ସର୍ବଦା ସ୍ମରଣ,

---

[୧] ତଥା ହି ଲୋକେ ଗୁରୁମୁପାସ୍ତେ ଇତି ଚ ଯସ୍ତାତ୍ପର୍ଯ୍ୟେଣ ଗୁର୍ବାଦୀନନୁବର୍ତତେ ସ ଏବମୁଚ୍ୟତେ। ତଥା ଧ୍ୟାୟତି ପ୍ରୋଷିତନାଥା ପତିମିତି ବା ନିରନ୍ତରସ୍ମରଣା ପତିଂ ପ୍ରତି ସୋତ୍କଣ୍ଠା ସୈବମଭିଧୀୟତେ—ଶାଙ୍କରଭାଷ୍ୟ, ବ୍ରହ୍ମସୂତ୍ର, ୪।୧।୧

ଏହା ଶାସ୍ତ୍ରର ପ୍ରଧାନ ପ୍ରଧାନ ଶ୍ଳୋକରୁ ଦୃଷ୍ଟ ହୁଏ । ଜ୍ଞାନ—ଯାହା ନିରନ୍ତର ଉପାସନା ସହିତ ଅଭେଦ, ତାହା ମଧ୍ୟ ନିରନ୍ତର ସ୍ମରଣ ଅର୍ଥରେ ବ୍ୟାଖ୍ୟାତ ହୋଇଛି ।...ସୁତରାଂ ସ୍ମୃତି ଯେତେବେଳେ ପ୍ରତ୍ୟକ୍ଷାନୁଭୂତିର ଆକାର ଧାରଣ କରେ, ତାହାକୁ ହିଁ ଶାସ୍ତ୍ରରେ ମୁକ୍ତିର ଉପାୟ ବୋଲି କୁହାଯାଇଛି । 'ନାନାବିଧ ବିଦ୍ୟାଦ୍ୱାରା, ବୁଦ୍ଧିଦ୍ୱାରା କିମ୍ବା ବହୁ ବେଦାଧ୍ୟୟନ ଦ୍ୱାରା ଆତ୍ମା ଲଭ୍ୟ ନୁହନ୍ତି । ଯାହାଙ୍କୁ ଏହି ଆତ୍ମା ବରଣ କରନ୍ତି, ସେ ଏକା ଏହି ଆତ୍ମାଙ୍କୁ ଲାଭ କରନ୍ତି ।' ତାଙ୍କ ନିକଟରେ ଆତ୍ମା ଆପଣାର ସ୍ୱରୂପ ପ୍ରକାଶ କରନ୍ତି—ଏ ସ୍ଥଳରେ ପ୍ରଥମେ ଶ୍ରବଣ, ମନନ ଓ ନିଦିଧ୍ୟାସନଦ୍ୱାରା ଆତ୍ମା ଲବ୍ଧ ହୁଅନ୍ତି ନାହିଁ ବୋଲି କହି ପରେ କହୁଛନ୍ତି, 'ଆତ୍ମା ଯାହାଙ୍କୁ ବରଣ କରନ୍ତି, ତାହାଙ୍କଦ୍ୱାରା ହିଁ ଆତ୍ମା ଲବ୍ଧ ହୁଅନ୍ତି ।' ଅତ୍ୟନ୍ତ ପ୍ରିୟ ବ୍ୟକ୍ତିକୁ 'ବରଣ' କରିବା ସମ୍ଭବ । ଯେଉଁ ବ୍ୟକ୍ତି ଆତ୍ମାଙ୍କୁ ଅତିଶୟ ଭଲପାଆନ୍ତି, ଆତ୍ମା ତାହାଙ୍କୁ ହିଁ ଅତିଶୟ ଭଲ ପାଆନ୍ତି । ଏହି ପ୍ରିୟ ବ୍ୟକ୍ତି ଯେଉଁରୂପେ ଆତ୍ମାଙ୍କୁ ଲାଭ କରିପାରିବେ, ସେ ବିଷୟରେ ଭଗବାନ ସ୍ୱୟଂ ତାହାଙ୍କୁ ସାହାଯ୍ୟ କରନ୍ତି । କାରଣ, ଭଗବାନ୍ ସ୍ୱୟଂ କହିଛନ୍ତି, 'ଯେଉଁମାନେ ମୋଠାରେ ନିରନ୍ତର ଆସକ୍ତ ଏବଂ ମୋତେ ପ୍ରେମର ସହିତ ଉପାସନା କରନ୍ତି, ମୁଁ ସେମାନଙ୍କର ବୁଦ୍ଧିକୁ ଏପରି ଭାବରେ ଚାଳିତ କରେ, ଯାହାଦ୍ୱାରା ସେମାନେ ମୋତେ ଲାଭ କରିପାରିବେ ।'
(ଧ୍ୟାନଂ ତୈଳଧାରାବଦବିଚ୍ଛିନ୍ନସ୍ମୃତିସନ୍ତାନରୂପା ଧ୍ରୁବା ସ୍ମୃତିଃ । 'ସ୍ମୃତିଲମ୍ଭେ ସର୍ବଗ୍ରନ୍ଥୀନାଂ ବିପ୍ରମୋକ୍ଷଃ' ଇତି ଧ୍ରୁବାୟାଃ ସ୍ମୃତେରପବର୍ଗୋପାୟତ୍ୱଶ୍ରବଣାତ୍ । ସା ଚ ସ୍ମୃତିର୍ଦର୍ଶନସମାନାକାରା; 'ଭିଦ୍ୟତେ ହୃଦୟଗ୍ରନ୍ଥିଶ୍ଛିଦ୍ୟନ୍ତେ ସର୍ବସଂଶୟାଃ । କ୍ଷୀୟନ୍ତେ ଚାସ୍ୟ କର୍ମାଣି ତସ୍ମିନ୍ ଦୃଷ୍ଟେ ପରାବରେ' ଇତ୍ୟନେନୈକାର୍ଥ୍ୟାତ୍ ଏବଂ ଚ ସତି 'ଆତ୍ମା ବାରେ ଦ୍ରଷ୍ଟବ୍ୟଃ' ଇତ୍ୟନେନ ନିଦିଧ୍ୟାସନସ୍ୟ ଦର୍ଶନରୂପତା ବିଧୀୟତେ । ଭବତି ଚ ସ୍ମୃତେର୍ଭାବନାପ୍ରକର୍ଷାଦ୍ଦର୍ଶନରୂପତା । ବାକ୍ୟକାରେଣୈତତ୍ ସର୍ବଂ ପ୍ରପଞ୍ଚିତମ୍ । 'ବେଦନମୁପାସନମ୍ ସ୍ୟାତ୍ ତଦ୍ୱିଷୟେ ଶ୍ରବଣାଦିତି ।' ସର୍ବାସୁପନିଷତ୍ସୁ ମୋକ୍ଷସାଧନତୟା ବିହିତଂ 'ବେଦନମୁପାସନମ୍' ଇତ୍ୟୁକ୍ତଂ 'ସକୃତ୍ପ୍ରତ୍ୟୟଂ କୁର୍ଯ୍ୟାଚ୍ଛବ୍ଦାର୍ଥସ୍ୟ କୃତତ୍ୱାତ୍ ପ୍ରଯାଜାଦିବତ୍' ଇତି ପୂର୍ବପକ୍ଷଂ କୃତ୍ୱା 'ସିଦ୍ଧଂ ତୂପାସନଶବ୍ଦାତ୍' ଇତିବେଦନମସକୃଦାବୃତ୍ତଂ ମୋକ୍ଷସାଧନମିତି ନିର୍ଣ୍ଣୀତମ୍ । 'ଉପାସନଂ ସ୍ୟାଦ୍ଧ୍ରୁବାନୁସ୍ମୃତିଦର୍ଶନାନ୍ନିର୍ବଚନାଚ୍ଚେତି' ତସ୍ୟୈବ ବେଦନସ୍ୟୋପାସନରୂପସ୍ୟାସକୃଦାବୃତ୍ତସ୍ୟ ଧ୍ରୁବାନୁସ୍ମୃତିତ୍ୱମୁପବର୍ଣ୍ଣିତମ୍ । ସେୟଂ ସ୍ମୃତିର୍ଦର୍ଶନରୂପା ପ୍ରତିପାଦିତା, ଦର୍ଶନରୂପା ଚ ପ୍ରତ୍ୟକ୍ଷତାପତ୍ତିଃ । ଏବଂ ପ୍ରତ୍ୟକ୍ଷତାପନ୍ନାମପବର୍ଗସାଧନଭୂତାଂ ସ୍ମୃତିଂ ବିଶିନଷ୍ଟି—'ନାୟମାତ୍ମା ପ୍ରବଚନେନ ଲଭ୍ୟୋ ନ ମେଧୟା ନ ବହୁନା ଶ୍ରୁତେନ ଯମେବୈଷ ବୃଣୁତେ ତେନ ଲଭ୍ୟସ୍ତସ୍ୟୈଷ ଆତ୍ମା ବିବୃଣୁତେ ତନୂଂ ସ୍ୱାମ୍' ଇତି ଅନେନ କେବଲଶ୍ରବଣମନନନିଦିଧ୍ୟାସନାନାମାତ୍ମପ୍ରାପ୍ତ୍ୟନୁପାୟତାମୁକ୍ତ୍ୱା 'ଯମେବୈଷ ବୃଣୁତେ ତେନୈବ ଲଭ୍ୟଃ' ଇତ୍ୟୁକ୍ତମ୍ । ପ୍ରିୟତମ ଏବ ହି ବରଣୀୟୋ ଭବତି, ଯସ୍ୟାୟଂ ନିରତିଶୟପ୍ରିୟଃ ସ ଏବାସ୍ୟ ପ୍ରିୟତମୋ ଭବତି । ଯଥାୟଂ ପ୍ରିୟତମ ଆତ୍ମାନଂ ପ୍ରାପ୍ନୋତି, ତଥା ସ୍ୱୟମେବ ଭଗବାନ୍ ପ୍ରଯତତ ଇତି ଭଗବତୈବୋକ୍ତଂ—'ତେଷାଂ ସତତଯୁକ୍ତାନାଂ ଭଜତାଂ ପ୍ରୀତିପୂର୍ବକଂ । ଦଦାମି ବୁଦ୍ଧିଯୋଗଂ ତଂ ଯେନ ମାମୁପଯାନ୍ତି ତେ' ଇତି 'ପ୍ରିୟୋ ହି ଜ୍ଞାନିନୋଽତ୍ୟର୍ଥମହଂ ସ ଚ ମମ ପ୍ରିୟଃ' ଇତି ଚ । ଅତଃ ସାକ୍ଷାତ୍କାରରୂପା ସ୍ମୃତିଃ

ସ୍ମର୍ଯ୍ୟମାଣାତ୍ୟର୍ଥପ୍ରିୟତ୍ୱେନ ସ୍ୱୟମପ୍ୟତ୍ୟର୍ଥପ୍ରିୟା ଯସ୍ୟ ସ ଏବ ପରମାତ୍ମନା ବରଣୀୟୋ ଭବତୀତି ତେନୈବ ଲଭ୍ୟତେ ପରମାତ୍ମେତ୍ୟୁକ୍ତଂ ଭବତି, ଏବଂରୂପା ଧ୍ରୁବାନୁସ୍ମୃତିରେବ ଭକ୍ତିଶବ୍ଦେନାଭିଧୀୟତେ । – ବ୍ରହ୍ମସୂତ୍ର, ପ୍ରଥମ ସୂତ୍ରର ରାମାନୁଜଭାଷ୍ୟ । )

ଅତଏବ କଥିତ ଅଛି ଯେ, ପ୍ରତ୍ୟକ୍ଷ ଅନୁଭବାତ୍ମକ ଏହି ସ୍ମୃତି ଯେଉଁମାନଙ୍କର ଅତି ପ୍ରିୟ ( ତାହା ସେହି ସ୍ମୃତିର ବିଷୟୀଭୂତ ପୁରୁଷଙ୍କର ଅତି ପ୍ରିୟ ବୋଲି ) ତାହାଙ୍କୁ ସେହି ପରମାତ୍ମା ବରଣ କରନ୍ତି, ତାଙ୍କ ଦ୍ୱାରା ସେହି ପରମାତ୍ମା ଲବ୍ଧ ହୁଅନ୍ତି । ଏହି ନିରନ୍ତର ସ୍ମରଣ 'ଭକ୍ତି' ଶବ୍ଦ ଦ୍ୱାରା ଲକ୍ଷିତ ହୋଇଛି ।

ପତଞ୍ଜଳିଙ୍କର 'ଈଶ୍ୱରପ୍ରଣିଧାନାଦ୍ୱା' ସୂତ୍ରଟିର ବ୍ୟାଖ୍ୟାରେ ଭୋଜ କହନ୍ତି— 'ପ୍ରଣିଧାନ ଅର୍ଥରେ ସେହିପରି ଭକ୍ତି, ଯାହାଦ୍ୱାରା ସମୁଦାୟ ଫଳାକାଙ୍କ୍ଷା ( ଯଥା ଇନ୍ଦ୍ରିୟମାନଙ୍କର ଭୋଗାଦି ) ତ୍ୟକ୍ତ ହୋଇ ସମୁଦାୟ କର୍ମ ସେହି ପରମ ଗୁରୁଙ୍କ ଉପରେ ସମର୍ପିତ ହୁଏ ।'[୧] ପୁନଶ୍ଚ ଭଗବାନ୍ ବ୍ୟାସ ଏହାର ବ୍ୟାଖ୍ୟାରେ କହିଛନ୍ତି, 'ପ୍ରଣିଧାନ ଅର୍ଥରେ ଭକ୍ତିବିଶେଷ, ଯଦ୍ଦ୍ୱାରା ଯୋଗୀ ନିକଟରେ ସେହି ପରମପୁରୁଷଙ୍କ କୃପାର ଆବିର୍ଭାବ ହୁଏ ଏବଂ ତାଙ୍କର ବାସନାସକଳ ପୂରଣ ହୁଏ ।'[୨] ଶାଣ୍ଡିଲ୍ୟଙ୍କ ମତରେ, 'ଈଶ୍ୱରଙ୍କଠାରେ ପରମାନୁରକ୍ତି ହିଁ ଭକ୍ତି ।'[୩] ଭକ୍ତରାଜ ପ୍ରହ୍ଲାଦ କିନ୍ତୁ ଭକ୍ତିର ଯେଉଁ ସଂଜ୍ଞା ଦେଇଛନ୍ତି, ତାହା ହିଁ ସର୍ବାପେକ୍ଷା ସମୀଚୀନ ବୋଧହୁଏ । 'ଅଜ୍ଞ ଲୋକମାନଙ୍କର ଇନ୍ଦ୍ରିୟ ବିଷୟରେ ଯେପରି ମହାନ୍ ଆଗ୍ରହ ଦେଖିବାକୁ ମିଳେ, ତୁମକୁ ସ୍ମରଣ କରିବା ସମୟରେ ତୁମ ପ୍ରତି ସେହିପରି ତୀବ୍ର ଆସକ୍ତି ଯେପରି ମୋର ହୃଦୟରୁ ଅପସାରିତ ନ ହୁଏ ।'[୪] ଆସକ୍ତି କାହା ପାଇଁ ? ପରମ ପ୍ରଭୁ ଈଶ୍ୱରଙ୍କ ନିମିତ୍ତ । ଆଉ କୌଣସି ପୁରୁଷଙ୍କ ( ସେ ଯେତେ ବଡ଼ ହୁଅନ୍ତୁ ନା କାହିଁକି ) ପ୍ରତି ଆସକ୍ତି କଦାପି 'ଭକ୍ତି' ହୋଇପାରେ ନାହିଁ । ଏହାର ପ୍ରମାଣସ୍ୱରୂପ ରାମାନୁଜ ଶ୍ରୀଭାଷ୍ୟରେ ଜଣେ ପ୍ରାଚୀନ ଆଚାର୍ଯ୍ୟଙ୍କ ଉକ୍ତି ଉଦ୍ଧୃତ କରିଛନ୍ତି, ଯଥା—ବ୍ରହ୍ମାଙ୍କଠାରୁ କ୍ଷୁଦ୍ର ତୃଣ ପର୍ଯ୍ୟନ୍ତ ଜଗଦନ୍ତର୍ଗତ ସକଳ ପ୍ରାଣୀ କର୍ମହେତୁ ଜନ୍ମ ଓ ମୃତ୍ୟୁର ବଶୀଭୂତ; ସେମାନେ ଅଜ୍ଞାନର ଅନ୍ତର୍ଗତ ଓ ପରିବର୍ତ୍ତନଶୀଳ ବୋଲି ସାଧକର ଧ୍ୟାନର ସହାୟକ ନୁହନ୍ତି ।' ଶାଣ୍ଡିଲ୍ୟସୂତ୍ରସ୍ଥ

---

୧ ପ୍ରଣିଧାନଂ ତତ୍ର ଭକ୍ତିବିଶେଷୋ ବିଶିଷ୍ଟମୁପାସନଂ ସର୍ବକ୍ରିୟାଣାମପି ତତ୍ରାର୍ପଣଂ । ବିଷୟସୁଖାଦିକଂ ଫଳମନିଚ୍ଛନ୍ ସର୍ବାଃ କ୍ରିୟାସ୍ତସ୍ମିନ୍ ପରମଗୁରାବର୍ପୟତି ।—ପାତଞ୍ଜଳଦର୍ଶନ, ୧ମ ଅଧ୍ୟାୟ, ସମାଧିପାଦ, ୨୩ଶ ସୂତ୍ରର ଭୋଜବୃତ୍ତି ।

୨ ପ୍ରଣିଧାନାଦ୍‌ଭକ୍ତିବିଶେଷାଦାବର୍ଜ୍ଜିତ ଈଶ୍ୱରସ୍ତମନୁଗୃହ୍ଣାତ୍ୟଭିଧ୍ୟାନମାତ୍ରେଣ ଇତ୍ୟାଦି । —ପାତଞ୍ଜଳଦର୍ଶନ, ୧ମ ଅଧ୍ୟାୟ, ସମାଧିପାଦ, ୨୩ଶ ସୂତ୍ର, ବ୍ୟାସଭାଷ୍ୟ ।

୩ ସା ପରାନୁରକ୍ତିରୀଶ୍ୱରେ—ଶାଣ୍ଡିଲ୍ୟସୂତ୍ର, ୧ମ ଅ., ୨ୟ ସୂତ୍ର ।

୪ ଯା ପ୍ରୀତିରବିବେକାନାଂ ବିଷୟେଷ୍ୱନପାୟିନୀ ।
ତ୍ୱାମନୁସ୍ମରତଃ ସା ମେ ହୃଦୟାନ୍ମାପସର୍ପତୁ ॥
—ବିଷ୍ଣୁପୁରାଣ, ୧ମ ଅଂଶ, ୨୦ ଅଧ୍ୟାୟ, ୧୯ ଶ୍ଳୋକ ।

'ଅନୁରକ୍ତି'[୧] ଶବ୍ଦବ୍ୟାଖ୍ୟା କରିବାକୁ ଯାଇ ସ୍ୱପ୍ନେଶ୍ୱର କହନ୍ତି, ଏହାର ଅର୍ଥ : ଅନୁ —ପଶ୍ଚାତ୍ ଓ ରକ୍ତି—ଆସକ୍ତି, ଅର୍ଥାତ୍ 'ଭଗବାନଙ୍କ ସ୍ୱରୂପ ଓ ମହିମାଜ୍ଞାନ ପରେ ତାଙ୍କ ପ୍ରତି ଯେଉଁ ଆସକ୍ତି ଆସେ।'[୨] ତାହା ନ ହେଲେ ଯେକୌଣସି ବ୍ୟକ୍ତି ପ୍ରତି, ଯେପରି ସ୍ତ୍ରୀ-ପୁତ୍ରାଦିଙ୍କ ପ୍ରତି ଅନ୍ଧ ଆସକ୍ତି ମଧ୍ୟ ଭକ୍ତି ହୋଇଯାନ୍ତା । ଅତଏବ ଆମେ ସ୍ପଷ୍ଟ ଦେଖୁଛୁଁ ଯେ, ସାଧାରଣ ପୂଜାପାଠାଦି-ଠାରୁ ଆରମ୍ଭ କରି ଈଶ୍ୱରଙ୍କଠାରେ ପ୍ରଗାଢ଼ ଅନୁରାଗପୂର୍ଣ୍ଣ ଆଧ୍ୟାତ୍ମିକ ଅନୁଭୂତି ପାଇଁ ଚେଷ୍ଟା-ପରମ୍ପରାର ନାମ ଭକ୍ତି ।

## ଈଶ୍ୱରଙ୍କ ସ୍ୱରୂପ

ଈଶ୍ୱର କିଏ ? 'ଯାହାଙ୍କ ଦ୍ୱାରା ଜନ୍ମ, ସ୍ଥିତି ଓ ଲୟ ହେଉଛି'[୩] ସେ ଈଶ୍ୱର— 'ଅନନ୍ତ, ଶୁଦ୍ଧ, ନିତ୍ୟମୁକ୍ତ, ସର୍ବଶକ୍ତିମାନ୍, ସର୍ବଜ୍ଞ, ପରମକାରୁଣିକ, ଗୁରୁଙ୍କ ଗୁରୁ ।'[୪] ଆଉ ମଧ୍ୟ ସବୁର ଉପରେ 'ସେ ଅନିର୍ବଚନୀୟ ପ୍ରେମସ୍ୱରୂପ ।'[୫]

ଏଗୁଡ଼ିକ ଅବଶ୍ୟ ସଗୁଣ ଈଶ୍ୱରଙ୍କର ସଂଜ୍ଞା । ତେବେ କଅଣ ଈଶ୍ୱର ଦୁଇ ଜଣ ? ଜ୍ଞାନୀ 'ନେତି ନେତି' କରି ଯେଉଁ ସଚ୍ଚିଦାନନ୍ଦଙ୍କଠାରେ ଉପନୀତ ହୁଅନ୍ତି, ସେ କ'ଣ ଜଣେ ଏବଂ ଭକ୍ତର ପ୍ରେମମୟ ଭଗବାନ ଆଉ ଜଣେ ? ନା, ସେହି ଜଣେ ସଚ୍ଚିଦାନନ୍ଦ ପ୍ରେମମୟ ଭଗବାନ ହିଁ ଅଟନ୍ତି; ସେ ସଗୁଣ ଓ ନିର୍ଗୁଣ, ଉଭୟ । ସର୍ବଦା ମନେ ରଖିବାକୁ ହେବ ଯେ, ଭକ୍ତର ଉପାସ୍ୟ ସଗୁଣ ଈଶ୍ୱର, ବ୍ରହ୍ମଙ୍କଠାରୁ ସ୍ୱତନ୍ତ୍ର ବା ପୃଥକ୍ ନୁହନ୍ତି । ସବୁ ସେହି 'ଏକମେବାଦ୍ୱିତୀୟମ୍ ବ୍ରହ୍ମ ।' ତେବେ ବ୍ରହ୍ମଙ୍କର ଏହି ନିର୍ଗୁଣ ସ୍ୱରୂପ ଅତି ସୂକ୍ଷ୍ମ ବୋଲି ପ୍ରେମ ବା ଉପାସନାର ପାତ୍ର ହୋଇପାରନ୍ତି ନାହିଁ । ଏହି କାରଣରୁ ଭକ୍ତ ବ୍ରହ୍ମଙ୍କର ସଗୁଣ ଭାବ ଅର୍ଥାତ୍ ପରମନିୟନ୍ତା ଈଶ୍ୱରଙ୍କୁ ଉପାସ୍ୟରୂପେ ସ୍ଥିର କରନ୍ତି । ଗୋଟିଏ ଉପମାଦ୍ୱାରା ବୁଝାଇ ଦିଆଯାଉ—

ବ୍ରହ୍ମ ଯେପରି ମୃତ୍ତିକା ବା ଉପାଦାନ—ସେଥିରୁ ଅନେକ ବସ୍ତୁ ନିର୍ମିତ ହୋଇଛି । ମୃତ୍ତିକା ରୂପେ ସେଗୁଡ଼ିକ ଏକ ସତ୍ୟ, କିନ୍ତୁ ରୂପ ବା ପ୍ରକାଶ ସେମାନଙ୍କୁ ପୃଥକ୍ କରିଛି ।

---

୧ ଆବ୍ରହ୍ମସ୍ତମ୍ବପର୍ଯ୍ୟନ୍ତା ଜଗଦନ୍ତର୍ବ୍ୟବସ୍ଥିତାଃ ।
ପ୍ରାଣିନଃ କର୍ମଜନିତସଂସାରବଶବର୍ତ୍ତିନଃ ॥
ଯତସ୍ତତୋ ନ ତେ ଧ୍ୟାନେ ଧ୍ୟାନିନାମୁପକାରକାଃ ।
ଅବିଦ୍ୟାନ୍ତର୍ଗତାଃ ସର୍ବେ ତେ ହି ସଂସାରଗୋଚରାଃ ॥

୨ ଭଗବନ୍ମହିମାଦିଜ୍ଞାନାଦନୁପଶ୍ଚାଜ୍ଜାୟମାନତ୍ୱାଦନୁରକ୍ତିରିତ୍ୟୁକ୍ତମ୍ ।—ଶାଣ୍ଡିଲ୍ୟସୂତ୍ର, ୧ମ ଆହ୍ନିକ, ୨ୟ ସୂତ୍ର, ସ୍ୱପ୍ନେଶ୍ୱରଟୀକା ।

୩ ଜନ୍ମାଦ୍ୟସ୍ୟ ଯତଃ । — ବ୍ରହ୍ମସୂତ୍ର, ୧ମ ଅଧ୍ୟାୟ, ୧ମ ପାଦ, ୨ୟ ସୂତ୍ର ।

୪ ପାତଞ୍ଜଳ ଯୋଗସୂତ୍ର—ସମାଧିପାଦ, ୨୪-୨୬ ।

୫ ସ ଈଶ୍ୱରୋଽନିର୍ବଚନୀୟପ୍ରେମସ୍ୱରୂପଃ ।—ଶାଣ୍ଡିଲ୍ୟସୂତ୍ର ।

ଉତ୍ପତ୍ତି ପୂର୍ବରୁ ସେଗୁଡ଼ିକ ସେହି ମୃତ୍ତିକାରେ ହିଁ ଗୂଢ଼ ଭାବରେ ଥିଲେ । ଉପାଦାନ ହିସାବରେ ସେମାନେ ଏକ, କିନ୍ତୁ ଯେତେବେଳେ ସେମାନେ ବିଶେଷ ବିଶେଷ ରୂପ ଧାରଣ କରନ୍ତି ଏବଂ ଯେତେଦିନଯାଏ ସେହି ରୂପ ଥାଏ, ସେତେଦିନଯାଏ ସେମାନେ ପୃଥକ୍ ପୃଥକ୍ । ମାଟିର ମୂଷିକ କଦାପି ମାଟିର ହସ୍ତୀ ହୋଇପାରେ ନାହିଁ । କାରଣ, ଗଠିତାବସ୍ଥାରେ ବିଶେଷ ଆକୃତି ହିଁ ସେମାନଙ୍କ ବିଶେଷତ୍ୱର ଜ୍ଞାପକ । ବିଶେଷ ଆକୃତିହୀନ ମୃତ୍ତିକା ହିସାବରେ ଅବଶ୍ୟ ଏମାନେ ଏକ । ଈଶ୍ୱର ସେହି ପୂର୍ଣ୍ଣ ସତ୍ୟସ୍ୱରୂପର ଉଚ୍ଚତମ ଅଭିବ୍ୟକ୍ତି ଅଥବା ମନୁଷ୍ୟମନର ସର୍ବୋଚ୍ଚ ଉପଲବ୍‌ଧି । ସୃଷ୍ଟି ଅନାଦି, ଈଶ୍ୱର ମଧ୍ୟ ଅନାଦି ।

ବେଦାନ୍ତସୂତ୍ରର ଚତୁର୍ଥ ଅଧ୍ୟାୟର ଚତୁର୍ଥ ପାଦରେ ମୁକ୍ତିଲାଭ ପରେ ମୁକ୍ତାତ୍ମାର ଯେ ଏପରି ଅନନ୍ତ ଶକ୍ତି ଓ ଜ୍ଞାନ ଆସେ, ତାହା ବର୍ଣ୍ଣନା କରି ବ୍ୟାସ ଆଉ ଏକ ସୂତ୍ରରେ କହିଛନ୍ତି, 'କିନ୍ତୁ କେହିହେଲେ ସୃଷ୍ଟି, ସ୍ଥିତି, ପ୍ରଳୟର ଶକ୍ତି ଲାଭ କରିବେ ନାହିଁ, ତାହା କେବଳ ଈଶ୍ୱରଙ୍କର ।'[୧] ଏହି ସୂତ୍ର ବ୍ୟାଖ୍ୟା କରିବା ସମୟରେ ଦ୍ୱୈତବାଦୀ ଭାଷ୍ୟକାରଗଣ ପରତନ୍ତ୍ର ଜୀବ ପକ୍ଷରେ ଈଶ୍ୱରଙ୍କର ଅନନ୍ତଶକ୍ତି ଓ ପୂର୍ଣ୍ଣ ସ୍ୱତନ୍ତ୍ରତା ଲାଭ କରିବା ଯେ କୌଣସି କାଳରେ ସମ୍ଭବ ନୁହେଁ, ତାହା ଅନାୟାସରେ ଦେଖାଇପାରନ୍ତି । ଘୋର ଦ୍ୱୈତବାଦୀ ଭାଷ୍ୟକାର ମଧ୍ୱାଚାର୍ଯ୍ୟ ବରାହପୁରାଣରୁ ଗୋଟିଏ ଶ୍ଳୋକ ଦେଖାଇ ତାଙ୍କର ପ୍ରିୟ ସଂକ୍ଷିପ୍ତ ଉପାୟରେ ଏହି ସୂତ୍ରଟିର ବ୍ୟାଖ୍ୟା କରିଛନ୍ତି ।

ଏହି ସୂତ୍ରକୁ ବ୍ୟାଖ୍ୟା କରିବାକୁ ଯାଇ ବିଶିଷ୍ଟାଦ୍ୱୈତ-ଭାଷ୍ୟକାର ରାମାନୁଜ କହିଛନ୍ତି, ସଂଶୟ ଉପସ୍ଥିତ ହୁଏ ଯେ, ମୁକ୍ତାତ୍ମାମାନଙ୍କର ଶକ୍ତି ମଧ୍ୟରେ ପରମପୁରୁଷଙ୍କର ଅସାଧାରଣ ଶକ୍ତି ଅର୍ଥାତ୍ ଜଗତର ସୃଷ୍ଟି-ସ୍ଥିତି-ଲୟ-ଶକ୍ତି ଓ ସର୍ବନିୟନ୍ତୃତ୍ୱ କ'ଣ ଅନ୍ତର୍ଭୁକ୍ତ । ଅଥବା ତା' ଅଭାବରେ ପରମପୁରୁଷଙ୍କ ସାକ୍ଷାତ୍ ଦର୍ଶନ ହିଁ କେବଳ ସେମାନଙ୍କର ଐଶ୍ୱର୍ଯ୍ୟ ? ଏହି ସଂଶୟ ଉପସ୍ଥିତ ହେଲେ ପୂର୍ବପକ୍ଷ ଉପସ୍ଥିତ ହୁଏ ଯେ, ମୁକ୍ତାତ୍ମା ଜଗତର ନିୟନ୍ତୃତ୍ୱ ଲାଭ କରନ୍ତି, ଏହା ଯୁକ୍ତିଯୁକ୍ତ; କାରଣ 'ମୁକ୍ତାତ୍ମା ପରମ ଏକତ୍ୱ ଲାଭ କରନ୍ତି' ( ମୁଣ୍ଡକ ଉପନିଷଦ୍ ୩ । ୧ ୩ ) । ଏହି ଶାସ୍ତ୍ରବାକ୍ୟ ଦ୍ୱାରା ଏହା କଥିତ ହୋଇଛି ଯେ, ସେ ପରମପୁରୁଷଙ୍କ ସହିତ ଏକତ୍ୱ-ପ୍ରାପ୍ତ ହୁଅନ୍ତି । ଅନ୍ୟ ସ୍ଥଳରେ ଏହା ମଧ୍ୟ ଉକ୍ତ ହୋଇଛି ଯେ, 'ତାଙ୍କର ସମସ୍ତ ବାସନା ପୂର୍ଣ୍ଣ ହୁଏ ।' ବର୍ତ୍ତମାନ କଥା ହେଉଛି, ପରମ ଏକତ୍ୱ ଓ ସମୁଦାୟ ବାସନାର ପରିପୂରଣ ପରମପୁରୁଷଙ୍କ ଅସାଧାରଣ ଶକ୍ତି ଜଗନ୍ନିୟନ୍ତୃତ୍ୱ ବ୍ୟତୀତ ହୋଇପାରେ ନାହିଁ । ଅତଏବ ସମସ୍ତ ବାସନାର ପରିପୂରଣ ଓ ପରମ ଏକତ୍ୱ ଲାଭ ହୁଏ ବୋଲି ମାନିବାକୁ ହେବ ଯେ, ମୁକ୍ତାତ୍ମା ସମୁଦାୟ ଜଗତ୍‌ର ନିୟନ୍ତୃତ୍ୱ ଲାଭ କରନ୍ତି । ଏହାର ଉତ୍ତରରେ ଆମେ କହିବୁ, ମୁକ୍ତାତ୍ମା କେବଳ ଜଗନ୍ନିୟନ୍ତୃତ୍ୱ ବ୍ୟତୀତ ଆଉ ସମୁଦାୟ ଶକ୍ତି ଲାଭ କରନ୍ତି । ଜଗନ୍ନିୟମନ ଅର୍ଥରେ— ଜଗତ୍‌ର ସମୁଦାୟ ସ୍ଥାବରଜଙ୍ଗମଙ୍କର ବିଭିନ୍ନ ପ୍ରକାର ସ୍ୱରୂପ, ସ୍ଥିତି ଓ ବାସନାର ନିୟନ୍ତୃତ୍ୱ । ମୁକ୍ତାତ୍ମାମାନଙ୍କର କିନ୍ତୁ ଏହି ଜଗନ୍ନିୟମନ-ଶକ୍ତି ନାହିଁ, ସେମାନଙ୍କର ଅବଶ୍ୟ ପରମାତ୍ମଦୃଷ୍ଟିର

[୧] ଜଗଦ୍‌ବ୍ୟାପାରବର୍ଜଂ ପ୍ରକରଣାଦସନ୍ନିହିତତ୍ୱାଚ୍ଚ ।—ବ୍ରହ୍ମସୂତ୍ର, ୪।୪।୧୭

ଆବରଣ ଘୁଞ୍ଚିଯାଇଛି ଏବଂ ସେମାନଙ୍କର ପ୍ରତ୍ୟକ୍ଷ ବ୍ରହ୍ମାନୁଭୂତି ହୁଏ—ଏହା ହିଁ ସେମାନଙ୍କର ଏକମାତ୍ର ଐଶ୍ୱର୍ଯ୍ୟ । ଏହା କିପରି ଜାଣିଲ ? ଶାସ୍ତ୍ରବାକ୍ୟ ବଳରେ ଏହା ଜଣାଯାଏ । ନିଖିଳ ଜଗନ୍ନିୟନ୍ତୃତ୍ୱ କେବଳ ପରବ୍ରହ୍ମଙ୍କର ହିଁ ଗୁଣ ବୋଲି ଶାସ୍ତ୍ରରେ କଥିତ ଅଛି; ଯଥା—'ଯାହାଠାରୁ ସମୁଦାୟ ବସ୍ତୁ ଜନ୍ମେ, ଯାହାଙ୍କଠାରେ ଅବସ୍ଥାନ କରେ ଏବଂ ଯାହାଙ୍କଠାରେ ପ୍ରଳୟକାଳରେ ସମସ୍ତେ ପ୍ରବେଶ କରନ୍ତି, ତାଙ୍କ ସମ୍ବନ୍ଧରେ ଜାଣିବାକୁ ଇଚ୍ଛା କର, ସେ ବ୍ରହ୍ମ ।' ( ତୈତ୍ତିରୀୟ ଉପ., ୩।୧ ) ଯଦି ଜଗନ୍ନିୟନ୍ତୃତ୍ୱ ମୁକ୍ତାତ୍ମାମାନଙ୍କର ମଧ୍ୟ ସାଧାରଣ ଗୁଣ ହୁଏ, ତେବେ ଉଦ୍ଧୃତ ଶ୍ଳୋକ ବ୍ରହ୍ମଙ୍କର ଲକ୍ଷଣ ହୋଇପାରେ ନାହିଁ, କାରଣ ତାଙ୍କର ନିୟନ୍ତୃତ୍ୱ ଗୁଣଦ୍ୱାରା ତାଙ୍କର ଲକ୍ଷଣ କରାହୋଇଛି । ଅସାଧାରଣ ଗୁଣଗୁଡ଼ିକୁ ହିଁ ବିଶେଷ ଲକ୍ଷଣ ବୋଲି କୁହାଯାଏ । ଅତଏବ, ନିମ୍ନୋଦ୍ଧୃତ ଶାସ୍ତ୍ରବାକ୍ୟ-ସମୂହରେ ପରମପୁରୁଷଙ୍କୁ ଜଗନ୍ନିୟମନର କର୍ତ୍ତାରୂପେ ବ୍ୟାଖ୍ୟା କରାଯାଇଛି, ଆଉ ସେହି ସ୍ଥଳରେ ମୁକ୍ତାତ୍ମାର ଏପରି ବର୍ଣ୍ଣନା ନାହିଁ, ଯାହା ଫଳରେ ଜଗନ୍ନିୟନ୍ତୃତ୍ୱ ସେମାନଙ୍କ ଉପରେ ଆରୋପିତ ହୋଇପାରେ । ଶାସ୍ତ୍ରବାକ୍ୟଗୁଡ଼ିକ ଏହି—'ବତ୍ସ, ଆଦିରେ ଏକମେବାଦ୍ୱିତୀୟମ୍ ଥିଲେ । ସେ ଆଲୋଚନା କଲେ, ମୁଁ ବହୁ ସୃଷ୍ଟି କରିବି । ସେ ତେଜ ସୃଷ୍ଟି କଲେ । କେବଳ ବ୍ରହ୍ମ ହିଁ ଆରମ୍ଭରେ ଥିଲେ । ସେ ପରିଣତ ହେଲେ । ସେ କ୍ଷତ୍ର ନାମରେ ଗୋଟିଏ ସୁନ୍ଦର ରୂପ ସୃଷ୍ଟି କଲେ । ସକଳ ଦେବତା ଯଥା—ବରୁଣ, ସୋମ, ରୁଦ୍ର, ପର୍ଜ୍ଜନ୍ୟ, ଯମ, ମୃତ୍ୟୁ, ଈଶାନ—ଏମାନେ ସମସ୍ତେ କ୍ଷତ୍ର ।' 'ଆଦ୍ୟରେ ଆତ୍ମା ହିଁ ଥିଲେ । କ୍ରିୟାଶୀଳ ଆଉ କିଛି ମାତ୍ର ନ ଥିଲା । ସେ ଆଲୋଚନା କଲେ, ମୁଁ ଜଗତ୍ ସୃଷ୍ଟି କରିବି—ପରେ ସେ ଏହି ଜଗତ୍ ସୃଜନ କରିଥିଲେ ।' 'ଏକମାତ୍ର ନାରାୟଣହିଁ ଥିଲେ । ବ୍ରହ୍ମା, ଈଶାନ, ଦ୍ୟାବା-ପୃଥିବୀ, ତାରା, ଜଳ, ଅଗ୍ନି, ସୋମ କିମ୍ବା ସୂର୍ଯ୍ୟ କେହି ନଥିଲେ । ସେ ଏକାକୀ ସୁଖୀ ହେଲେ ନାହିଁ । ଧ୍ୟାନ ପରେ ତାଙ୍କର ଗୋଟିଏ କନ୍ୟା ଓ ଦଶ ଇନ୍ଦ୍ରିୟ ଜନ୍ମିଲା ।' 'ଯେ ପୃଥିବୀରେ ନିବାସ କରି ପୃଥିବୀଠାରୁ ସ୍ୱତନ୍ତ୍ର', 'ଯେ ଆତ୍ମାରେ ବାସ କରି' ଇତ୍ୟାଦି । ( କିଂ ମୁକ୍ତସ୍ୟୈଶ୍ୱର୍ଯ୍ୟଂ ଜଗତ୍ସୃଷ୍ଟ୍ୟାଦି ପରମପୁରୁଷସାଧାରଣଂ ସର୍ବେଶ୍ୱରତ୍ୱମପି ଉତ ତଦ୍ରହିତଂ କେବଲପରମପୁରୁଷାନୁଭବବିଷୟମିତି ସଂଶୟଃ, କିଂ ଯୁକ୍ତଂ ଜଗଦୀଶ୍ୱରତ୍ୱମପୀତି, କୁତଃ, ନିରଞ୍ଜନଃ ପରମଂ ସାମ୍ୟମୁପୈତୀତି ପରମପୁରୁଷେଣ ପରମସାମ୍ୟାପତ୍ତିଶ୍ରୁତେଃ, ସତ୍ୟସଙ୍କଳ୍ପତ୍ୱଶ୍ରୁତେଶ୍ଚ, ନ ହି ପରମସାମ୍ୟସତ୍ୟସଙ୍କଳ୍ପତ୍ୱେ ସର୍ବେଶ୍ୱରାସାଧାରଣଜଗଦ୍ବ୍ୟାପାର-ରୂପ-ଜଗନ୍ନିୟମନେନ ବିନୋପପଦ୍ୟେତେ ଅତଃ ସତ୍ୟସଙ୍କଳ୍ପତାପରମସାମ୍ୟାପତ୍ତ୍ୟୋ ସମସ୍ତଜଗନ୍ନିୟମନରୂପମପି ମୁକ୍ତୈଶ୍ୱର୍ଯ୍ୟମିତ୍ୟେବଂ ପ୍ରାପ୍ତେଃ, ପ୍ରଚକ୍ଷ୍ମହେ, ଜଗଦ୍ବ୍ୟାପାରବର୍ଜ୍ଜମିତି, ଜଗଦ୍ବ୍ୟାପାରୋ ନିଖିଳଚେତନାଚେତନସ୍ୱରୂପସ୍ଥିତିପ୍ରବୃତ୍ତିଭେଦନିୟମନନ୍ତଦ୍ବର୍ଜ୍ଜଂ ନିରସ୍ତନିଖିଳତିରୋଧାନସ୍ୟ ନିର୍ବ୍ୟାଜବ୍ରହ୍ମାନୁଭବରୂପଂ ମୁକ୍ତସ୍ୟୈଶ୍ୱର୍ଯ୍ୟଂ, କୁତଃ ପ୍ରକରଣାତ୍ ନିଖିଳଜଗନ୍ନିୟମନଂ ହି ପରଂବ୍ରହ୍ମ ପ୍ରକୃତ୍ୟାମ୍ନାୟତେ, 'ଯତୋ ବା ଇମାନି ଭୂତାନି ଜାୟନ୍ତେ, ଯେନ ଜାତାନି ଜୀବନ୍ତି, ଯତ୍ ପ୍ରୟନ୍ତ୍ୟଭିସଂବିଶନ୍ତି ତଦ୍ବିଜିଜ୍ଞାସସ୍ୱ ତଦ୍ବ୍ରହ୍ମେତି' । ଯଦ୍ୟେତନ୍ନିଖିଳଜଗନ୍ନିୟମନଂ ମୁକ୍ତାନାମପି ସାଧାରଣଂ ସ୍ୟାତ୍, ତତଶ୍ଚେଦଂ ଜଗଦୀଶ୍ୱରତ୍ୱରୂପଂ ବ୍ରହ୍ମଲକ୍ଷଣଂ ନ ସଂଗଚ୍ଛତେ । ଅସାଧାରଣସ୍ୟ ହି ଲକ୍ଷଣତ୍ୱଂ ତଥା 'ସଦେବ ସୌମ୍ୟେଦମଗ୍ର ଆସୀଦେକମେବାଦ୍ୱିତୀୟଂ ତଦୈ-

କ୍ଷତ ବହୁ ସ୍ୟାଂ ପ୍ରଜାୟେୟେତି ତତ୍ତେଜୋଽସୃଜତେତି’ ‘ବ୍ରହ୍ମ ବା ଇଦମେକମେବାଗ୍ର ଆସୀତ୍-ତଦେକଂ ସନ୍ନବ୍ୟଭବତ୍, ତଚ୍ଛ୍ରେୟୋରୂପମତ୍ୟସୃଜତ କ୍ଷତ୍ରଂ ଯାନ୍ୟେତାନି ଦେବକ୍ଷତ୍ରାଣୀନ୍ଦ୍ରୋ ବରୁଣଃ ସୋମଃ ରୁଦ୍ରଃ ପର୍ଜ୍ଜନ୍ୟୋ ଯମୋ ମୃତ୍ୟୁରୀଶାନ’ ଇତି ‘ଆତ୍ମା ବା ଇଦମେକ ଏବାଗ୍ର ଆସୀତ୍ ନାନ୍ୟତ୍ କିଞ୍ଚନମିଷତ୍ ସ ଐକ୍ଷତ ଲୋକାନ୍ନୁ ସୃଜା’ ଇତି ‘ସ ଇମାଁଲ୍ଲୋକାନସୃଜତ’ ଇତି । ‘ଏକୋ ହ ବୈ ନାରାୟଣ ଆସୀନ୍ନ ବ୍ରହ୍ମା ନେଶାନୋ ନେମେ ଦ୍ୟାବାପୃଥିବୀ ନ ନକ୍ଷତ୍ରାଣି ନାପୋ ନାଗ୍ନିର୍ନ ସୋମୋ ନ ସୂର୍ଯ୍ୟଃ ସ ଏକାକୀ ନ ରମତେ ତସ୍ୟ ଧ୍ୟାନାନ୍ତଃସ୍ଥସ୍ୟୈକା କନ୍ୟା ଦଶେନ୍ଦ୍ରିୟାଣି’ ଇତ୍ୟାଦିଷୁ ‘ଯଃ ପୃଥିବ୍ୟାଂ ତିଷ୍ଠନ୍ ପୃଥିବ୍ୟା ଅନ୍ତରଃ’ ଇତ୍ୟାରଭ୍ୟ ‘ଯ ଆତ୍ମନି ତିଷ୍ଠନ୍ ଇତ୍ୟାଦିଷୁ ଚ ନିଖିଳଜଗନ୍ନିୟମନଂ ପରମପୁରୁଷଂ ପ୍ରକୃତ୍ୟୈବ ଶ୍ରୂୟତେ’ ଅହନ୍ନିହିତତ୍ୱାଚ, ନ ଚୈତେଷୁ ନିଖିଳଜଗନ୍ନିୟମନପ୍ରସଙ୍ଗେଷୁ ମୁକ୍ତସ୍ୟ ସନ୍ନିଧାନମସ୍ତି ଯେନ ଜଗଦ୍-ବ୍ୟାପାରସ୍ତସ୍ୟାପି ସ୍ୟାତ୍ । —ବ୍ରହ୍ମସୂତ୍ର, ୪ର୍ଥ, ଅ., ୪ର୍ଥ ପା., ୧୭ ସୂତ୍ର, ରାମାନୁଜଭାଷ୍ୟ )

ପରସୂତ୍ର ବ୍ୟାଖ୍ୟାରେ ରାମାନୁଜ କହୁଛନ୍ତି, ‘ଯଦି କହ ଏହା ସତ୍ୟ ନୁହେଁ, କାରଣ ବେଦରେ ଏହାର ବିପରୀତାର୍ଥପ୍ରତିପାଦକ ଅନେକ ଶ୍ଳୋକ ଅଛି, ତେବେ କହିବ ଯେ, ତାହା ନିମ୍ନଦେବଲୋକରେ ମୁକ୍ତାତ୍ମାର ଐଶ୍ୱର୍ଯ୍ୟବର୍ଣ୍ଣନା ମାତ୍ର ।’[୧] ଏହା ଏକପ୍ରକାର ସହଜ ମୀମାଂସା ହେଲା । ଯଦିଚ ରାମାନୁଜଙ୍କ ମତରେ ସମଷ୍ଟିର ଏକତା ସ୍ୱୀକୃତ ହୋଇଛି, ତଥାପି ତାଙ୍କ ମତରେ ଏହି ସମଷ୍ଟି ମଧ୍ୟରେ ନିତ୍ୟ ଭେଦସମୂହ ଅଛି । ଅତଏବ ଏହି ମତ ମଧ୍ୟ କାର୍ଯ୍ୟତଃ ଦ୍ୱୈତ ବୋଲି ଜୀବାତ୍ମା ଓ ସଗୁଣ ଈଶ୍ୱରଙ୍କ ଭେଦ ରକ୍ଷା କରିବା ରାମାନୁଜଙ୍କ ମତରେ ସହଜ ହୋଇଅଛି ।

ବର୍ତ୍ତମାନ ଆମେ ଅଦ୍ୱୈତମତର ପ୍ରସିଦ୍ଧ ବ୍ୟାଖ୍ୟାତା ଏ ବିଷୟରେ, କ’ଣ କହୁଛନ୍ତି, ତାହା ବୁଝିବାକୁ ଚେଷ୍ଟା କରିବା । ଆମେ ଦେଖିବା, ଅଦ୍ୱୈତମତ କିପରି ଦ୍ୱୈତବାଦୀଙ୍କର ସମସ୍ତ ଆଶା-ଆକାଙ୍କ୍ଷାକୁ ଅକ୍ଷୁଣ୍ଣ ରଖି ତତ୍ ସଙ୍ଗେସଙ୍ଗେ ମାନବଜାତିର ମହୋଚ୍ଚ ଦିବ୍ୟଭାବ ସହିତ ସାମଞ୍ଜସ୍ୟ ରଖି ନିଜ ସିଦ୍ଧାନ୍ତଟି ସ୍ଥାପନ କରୁଛନ୍ତି । ଯେଉଁମାନେ ମୁକ୍ତିଲାଭ ପରେ ମଧ୍ୟ ଆପଣାର ବ୍ୟକ୍ତିତ୍ୱ ରକ୍ଷା କରିବାକୁ ଇଚ୍ଛା କରନ୍ତି ଓ ଭଗବାନଙ୍କଠାରୁ ସ୍ୱତନ୍ତ୍ର ରହିବାକୁ କାମନା କରନ୍ତି, ସେମାନଙ୍କର ଆକାଙ୍କ୍ଷା ଚରିତାର୍ଥ କରିବା ଓ ସଗୁଣ ବ୍ରହ୍ମଙ୍କୁ ସମ୍ଭୋଗ କରିବାର ଯଥେଷ୍ଟ ଅବସର ଅଛି । ଏମାନଙ୍କର କଥା ଭାଗବତପୁରାଣରେ ଏହି ପ୍ରକାରେ ବର୍ଣ୍ଣିତ ହୋଇଛି—‘ହେ ରାଜନ୍, ହରିଙ୍କର ଏତାଦୃଶ ଗୁଣରାଶି ଯେ, ଯେଉଁସବୁ ମୁନି, ଆତ୍ମାରାମ, ଯେଉଁମାନଙ୍କର ସମୁଦାୟ ବନ୍ଧନ ଖୋଲିଯାଇଛି, ସେମାନେ ମଧ୍ୟ ଭଗବାନଙ୍କ ପ୍ରତି ଅହୈତୁକୀ ଭକ୍ତି କରିଥାଆନ୍ତି ।’[୨]

---

୧ ପ୍ରତ୍ୟକ୍ଷୋପଦେଶାନ୍ନେତିଚେନ୍ନାଧିକାରିମଣ୍ଡଳସ୍ଥୋକ୍ତେଃ । ଏହି ସୂତ୍ରର ( ବ୍ରହ୍ମସୂତ୍ର, ୪।୪।୧୮ ) ରାମାନୁଜଭାଷ୍ୟ ଦେଖ ।

୨ ଆତ୍ମାରାମାଶ୍ଚ ମୁନୟୋ ନିର୍ଗ୍ରନ୍ଥା ଅପ୍ୟୁରୁକ୍ରମେ ।
କୁର୍ବନ୍ତ୍ୟହୈତୁକୀଂ ଭକ୍ତିମିତ୍ଥମ୍ଭୂତଗୁଣୋ ହରିଃ ॥—ଶ୍ରୀମଦ୍ଭାଗବତ, ୧ମ ସ୍କନ୍ଧ, ୭।୧୦

ସାଂଖ୍ୟରେ ଏମାନେ 'ପ୍ରକୃତଲୀନ' ବୋଲି ବର୍ଣ୍ଣିତ ହୋଇଛନ୍ତି। ସିଦ୍ଧିଲାଭ କରି ଏମାନେ ପରକଳ୍ପରେ କେତେଗୁଡ଼ିଏ ଜଗତର ଶାସନକର୍ତ୍ତା ରୂପେ ଆବିର୍ଭୂତ ହୁଅନ୍ତି। କିନ୍ତୁ ଏମାନଙ୍କ ମଧ୍ୟରେ କେହି ହେଲେ କୌଣସି ସମୟରେ ଈଶ୍ୱରଙ୍କ ତୁଲ୍ୟ ହୋଇପାରନ୍ତି ନାହିଁ। ଯେଉଁମାନେ ଏପରି ଗୋଟିଏ ଅବସ୍ଥାରେ ଉପନୀତ ହୁଅନ୍ତି, ଯେଉଁଠାରେ କି ସୃଷ୍ଟି, ସୃଷ୍ଟ ବା ସ୍ରଷ୍ଟା ନାହିଁ, ଯେଉଁଠାରେ ଜ୍ଞାତା, ଜ୍ଞେୟ ବା ଜ୍ଞାନ ନାହିଁ, ଯେଉଁଠାରେ ମୁଁ, ତୁମେ ବା ସେ ନାହିଁ, ଯେଉଁଠାରେ ପ୍ରମାତା, ପ୍ରମେୟ ବା ପ୍ରମାଣ ନାହିଁ, 'ସେଠାରେ କିଏ କାହାକୁ ଦେଖିବ ?' ଏପରି ବ୍ୟକ୍ତି ସମୁଦାୟର ବାହାରକୁ ଯାଇଛନ୍ତି, 'ଯେଉଁଠାକୁ ବାକ୍ୟ ଅଥବା ମନ ମଧ୍ୟ ଯାଇପାରେ ନାହିଁ।' ସେ ବ୍ୟକ୍ତି ଏପରି ସ୍ଥାନକୁ ଯାଇଛନ୍ତି, ଯାହାକୁ ଶ୍ରୁତି 'ନେତି' 'ନେତି' ବୋଲି ବର୍ଣ୍ଣନା କରିଛନ୍ତି; କିନ୍ତୁ ଯେଉଁମାନେ ଏପରି ଅବସ୍ଥା ଲାଭ କରିପାରନ୍ତି ନାହିଁ ବା ଏପରି ଅବସ୍ଥାକୁ ଯିବାକୁ ଇଚ୍ଛା କରନ୍ତି ନାହିଁ, ସେମାନେ ସେହି ଏକ ଅବିଭକ୍ତ ବ୍ରହ୍ମଙ୍କୁ ପ୍ରକୃତି, ଆତ୍ମା ଓ ଏହି ଉଭୟର ଅନ୍ତର୍ଯାମୀ ଈଶ୍ୱର ଏପରି ତ୍ରିଧା ବିଭକ୍ତରୂପରେ ଦେଖିବେ। ଭକ୍ତିର ଅତିଶଯ୍ୟରେ ପ୍ରହ୍ଲାଦ ଯେତେବେଳେ ଆପଣାକୁ ଭୁଲିଗଲେ, ସେତେବେଳେ ସେ ଜଗତ୍ ଓ ତାହାର କାରଣ କିଛିମାତ୍ର ତ ଦେଖିବାକୁ ପାଇଲେ ନାହିଁ, ସମୁଦାୟ ତାଙ୍କ ନିକଟରେ ନାମରୂପରେ ଅବିଭକ୍ତ, ଏପରି ଏକ ଅନନ୍ତ ରୂପରେ ପ୍ରତୀୟମାନ ହୋଇଥିଲା। କିନ୍ତୁ ଯେତେବେଳେ ତାଙ୍କର ବୋଧ ହେଲା 'ମୁଁ ପ୍ରହ୍ଲାଦ', ସେତେବେଳେ ତାଙ୍କ ନିକଟରେ ଜଗତ୍ ଓ ଅଶେଷକଲ୍ୟାଣଗୁଣରାଶିର ଆଧାରସ୍ୱରୂପ ଜଗଦୀଶ୍ୱର ପ୍ରକାଶିତ ହେଲେ। ମହାଭାଗ୍ୟବତୀ ଗୋପୀମାନଙ୍କର ମଧ୍ୟ ଏହି ଅବସ୍ଥା ଘଟିଥିଲା। ଯେତେବେଳଯାଏ ସେମାନେ କୃଷ୍ଣଙ୍କ ପ୍ରତି ଗଭୀର ପ୍ରେମ ହେତୁ ଅହଂଜ୍ଞାନଶୂନ୍ୟ ଥିଲେ, ସେପର୍ଯ୍ୟନ୍ତ ସେମାନେ ସମସ୍ତେ କୃଷ୍ଣରୂପରେ ପରିଣତ ହୋଇଥିଲେ। ପୁଣି ଯେତେବେଳେ ସେମାନେ ତାଙ୍କୁ ଉପାସ୍ୟରୂପେ ପୃଥକ୍ ଭାବରେ ଚିନ୍ତା କରିବାକୁ ଲାଗିଲେ, ସେତେବେଳେ ସେମାନେ ପୁଣି ଗୋପୀଭାବ ପ୍ରାପ୍ତ ହୋଇଥିଲେ। ସେତେବେଳେ 'ତାହାଙ୍କ ସମ୍ମୁଖରେ ମୁଖକମଳରେ ମୃଦୁହାସ୍ୟଯୁକ୍ତ, ପୀତାମ୍ବରଧାରୀ, ମାଲ୍ୟ-ଭୂଷିତ ଓ ସାକ୍ଷାତ୍ ମନ୍ମଥର ମନମନ୍ଥନକାରୀ କୃଷ୍ଣ ଆବିର୍ଭୂତ ହେଲେ।'[୧]

ବର୍ତ୍ତମାନ ଆଚାର୍ଯ୍ୟ ଶଙ୍କରଙ୍କ କଥା ବିଚାର କରାଯାଉ। ଶଙ୍କର କହନ୍ତି, ଯେଉଁମାନେ ସଗୁଣବ୍ରହ୍ମୋପାସନାବଳରେ ପରମେଶ୍ୱରଙ୍କ ସହିତ ଏକୀଭୂତ ହୁଅନ୍ତି, ଅଥଚ ଯାହାଙ୍କର ମନ ଲୟ ହୁଏ ନାହିଁ, ଅବ୍ୟାହତ ଥାଏ, ସେମାନଙ୍କର ଐଶ୍ୱର୍ଯ୍ୟ ସସୀମ କି ଅସୀମ ? ଏହି ସଂଶୟ ଉପସ୍ଥିତ ହେଲେ ଯୁକ୍ତି କରାଯାଏ ଯେ, ସେମାନଙ୍କର ଐଶ୍ୱର୍ଯ୍ୟ ଅସୀମ, କାରଣ ଶାସ୍ତ୍ରରେ ମିଳେ ଯେ 'ସେ ସ୍ୱରାଜ୍ୟ ଲାଭ କରନ୍ତି', 'ସମୁଦାୟ ଦେବତା ତାଙ୍କର ପୂଜା କରନ୍ତି', 'ସମୁଦାୟ ଜଗତରେ ତାଙ୍କ କାମନାର ପୂର୍ତ୍ତି ହୁଏ।' ଏହାର ଉତ୍ତରରେ ବ୍ୟାସ କହନ୍ତି, "ଜଗଦ୍ବ୍ୟାପାର-ବର୍ଜମ୍।" ମୁକ୍ତାତ୍ମାଗଣ ଜଗତ୍ତର ସୃଷ୍ଟି, ସ୍ଥିତି ଓ ପ୍ରଳୟ ବ୍ୟତୀତ ଅଣିମାଦି ଅନ୍ୟାନ୍ୟ ଶକ୍ତି ଲାଭ

---

୧ ତାସାମାବିରଭୂଚ୍ଛୌରିଃ ସ୍ମୟମାନମୁଖାମ୍ବୁଜଃ।
ପୀତାମ୍ବରଧରଃ ସ୍ରଗ୍ବୀ ସାକ୍ଷାନ୍ମନ୍ମଥମନ୍ମଥଃ॥ ଶ୍ରୀମଦ୍ଭାଗବତ, ୧୦।୩୨।୨

କରନ୍ତି । ଜଗତ୍ତର ନିୟନ୍ତୃତ୍ୱ କେବଳ ନିତ୍ୟଶୁଦ୍ଧ ଈଶ୍ୱରଙ୍କର । କାରଣ ସୃଷ୍ଟି ସମ୍ବନ୍ଧରେ ଯେତେସବୁ ଶାସ୍ତ୍ରୀୟ ବଚନ ଅଛି, ସେସବୁଥିରେ କେବଳ ଈଶ୍ୱର କଥିତ ହୋଇଛନ୍ତି । ସେହି ସ୍ଥଳରେ ମୁକ୍ତାତ୍ମାର କୌଣସି ପ୍ରସଙ୍ଗ ନାହିଁ । ସେହି ପରମ ପୁରୁଷ ହିଁ କେବଳ ଜଗନ୍ନିୟନ୍ତୃତ୍ୱରେ ନିଯୁକ୍ତ । ସୃଷ୍ଟ୍ୟାଦି ବିଷୟରେ ଯେତେଗୁଡ଼ିଏ ଶ୍ରୁତି ଅଛି, ସେସମସ୍ତ ହିଁ ତାହାଙ୍କୁ ଲକ୍ଷ୍ୟ କରୁଛି । ଆଉ ମଧ୍ୟ 'ନିତ୍ୟଶୁଦ୍ଧ' ଏହି ବିଶେଷଣଟି ଦିଆଯାଇଛି । ପୁଣି ଶାସ୍ତ୍ର କହନ୍ତି ଯେ, ଅନ୍ୟମାନଙ୍କର ଅଣିମାଦିଶକ୍ତି ଈଶ୍ୱରଙ୍କ ଉପାସନା ଓ ଈଶ୍ୱରାନ୍ୱେଷଣରୁ ଲବ୍ଧ ହୁଏ । ସେହି ଶକ୍ତିଗୁଡ଼ିକ ଅସୀମ ନୁହେଁ । ସୁତରାଂ ଜଗତର ନିୟନ୍ତୃତ୍ୱ ବିଷୟରେ ସେମାନଙ୍କର କୌଣସି ସ୍ଥାନ ନାହିଁ । ପୁଣି, ସେମାନଙ୍କ ନିଜ ମନର ଅସ୍ତିତ୍ୱବଶତଃ ଏପରି ସମ୍ଭବ ଯେ, ପରସ୍ପରର ଇଚ୍ଛା ଭିନ୍ନ ଭିନ୍ନ ହୋଇପାରେ । ଜଣେ ହୁଏତ ସୃଷ୍ଟି ଇଚ୍ଛା କଲେ, ଅନ୍ୟ ଜଣେ ପ୍ରଳୟ କରିବାକୁ ଇଚ୍ଛା କଲେ । ଏହି ଗଣ୍ଡଗୋଳ ଦୂର କରିବାର ଏକମାତ୍ର ଉପାୟ—ସମୁଦାୟ ଇଚ୍ଛା ଗୋଟିଏ ମହତ୍ତ୍ୱ ଇଚ୍ଛାର ଅଧୀନ ହେବା । ଅତଏବ ସିଦ୍ଧାନ୍ତ ଏହି ଯେ, ମୁକ୍ତ ପୁରୁଷମାନଙ୍କର ଇଚ୍ଛା ସେହି ପରମପୁରୁଷଙ୍କର ଅଧୀନ । [ ଯେ ସଗୁଣବ୍ରହ୍ମୋପାସନାତ୍ ସହୈବ ମନସେଶ୍ୱରସାଯୁଜ୍ୟଂ ବ୍ରଜନ୍ତି କିନ୍ତେଷାଂ ନିରବଗ୍ରହମୈଶ୍ୱର୍ଯ୍ୟଂ ଭବତ୍ୟାହୋସ୍ୱିତ୍ ସାବଗ୍ରହମିତି ସଂଶୟଃ । କିନ୍ତାବତ୍ ପ୍ରାପ୍ତମ୍ ? ନିରଙ୍କୁଶମେବୈଷାମୈଶ୍ୱର୍ଯ୍ୟଂ ଭବିତୁମର୍ହତି 'ଆପ୍ନୋତି ସ୍ୱାରାଜ୍ୟମ୍' 'ସର୍ବେଽସ୍ମୈ ଦେବା ବଳିମାବହନ୍ତି' 'ତେଷାଂ ସର୍ବେଷୁ ଲୋକେଷୁ କାମଚାରୋ ଭବତି' ଇତ୍ୟାଦିଶ୍ରୁତିଭ୍ୟଃ ଇତ୍ୟେବଂ ପ୍ରାପ୍ତେ ପଠତି—ଜଗଦ୍‌ବ୍ୟାପାରବର୍ଜମିତି । ଜଗଦୁତ୍ପତ୍ତ୍ୟାଦିବ୍ୟାପାରଂ ବର୍ଜୟିତ୍ୱାଽନ୍ୟଦଣିମାଦ୍ୟାତ୍ମକମୈଶ୍ୱର୍ଯ୍ୟଂ ମୁକ୍ତାନାଂ ଭବିତୁମର୍ହତି, ଜଗଦ୍‌ବ୍ୟାପାରସ୍ତୁ ନିତ୍ୟସିଦ୍ଧସ୍ୟୈବେଶ୍ୱରସ୍ୟ । କୁତଃ ? ତସ୍ୟ ତତ୍ର ପ୍ରକୃତତ୍ୱାଦସନ୍ନିହିତତ୍ୱାଚ୍ଚେତରେଷାମ୍ । ପର ଏବ ହୀଶ୍ୱରୋ ଜଗଦ୍‌ବ୍ୟାପାରେଽଧିକୃତଃ ତମେବ ପ୍ରକୃତ୍ୟୋତ୍ପତ୍ତ୍ୟାଦ୍ୟୁପଦେଶାନ୍ନିତ୍ୟଶବ୍ଦନିବନ୍ଧନତ୍ୱାଚ୍ଚ । ତଦନ୍ୱେଷଣବିଜିଜ୍ଞାସନପୂର୍ବକମିତରେଷାମଣିମାଦ୍ୟୈଶ୍ୱର୍ଯ୍ୟଂ ଶ୍ରୂୟତେ । ତେନାସନ୍ନିହିତାସ୍ତେ ଜଗଦ୍‌ବ୍ୟାପାରେ । ସମନସ୍କତ୍ୱାଦେବ ଚୈଷାମନୈକମତ୍ୟେ କସ୍ୟଚିତ୍ ସ୍ଥିତ୍ୟଭିପ୍ରାୟଃ, କସ୍ୟଚିତ୍ ସଂହାରାଭିପ୍ରାୟ ଇତ୍ୟେବଂ ବିରୋଧୋଽପି କଦାଚିତ୍ ସ୍ୟାତ୍ । ଅଥ କସ୍ୟଚିତ୍ ସଂକଳ୍ପମନ୍ୱନ୍ୟସ୍ୟ ସଂକଳ୍ପ ଇତ୍ୟବିରୋଧ ସମର୍ଥ୍ୟେତ, ତତଃ ପରମେଶ୍ୱରାକୂତତନ୍ତ୍ରତ୍ୱମେବେତରେଷାମିତି ବ୍ୟବତିଷ୍ଠତେ ।—ବ୍ରହ୍ମସୂତ୍ର, ୪।୪।୧୭, ଶାଙ୍କରଭାଷ୍ୟ । ]

ଅତଏବ ସଗୁଣ ବ୍ରହ୍ମଙ୍କ ପ୍ରତି ଭକ୍ତି ପ୍ରୟୋଗ ହିଁ ସମ୍ଭବ । 'ଯେଉଁମାନେ ଅବ୍ୟକ୍ତ ନିର୍ଗୁଣ ବ୍ରହ୍ମଙ୍କର ଉପାସକ ସେମାନଙ୍କର କ୍ଲେଶ ଅଧିକତର ।'[୧] ଭକ୍ତି ଆମମାନଙ୍କର ପ୍ରକୃତି ଅନୁକୂଳରେ ସହଜଭାବରେ ପ୍ରବାହିତ । ଆମେମାନେ ବ୍ରହ୍ମଙ୍କର ମାନବୀୟ ଭାବ ବ୍ୟତୀତ ଅନ୍ୟ କୌଣସି ଭାବ ଧାରଣା କରିପାରୁ ନାହିଁ, ଏହା ସତ୍ୟ କଥା । କିନ୍ତୁ ବାସ୍ତବିକ ଆମମାନଙ୍କ ଜ୍ଞାତ ଅନ୍ୟ ସକଳ ବସ୍ତୁ ସମ୍ବନ୍ଧରେ କ'ଣ ଏହା ସତ୍ୟ ନୁହେଁ ? ଜଗତର ସର୍ବୋଚ୍ଚ ମନୋବିଜ୍ଞାନବିତ୍ ଭଗବାନ କପିଳ ସହସ୍ର ବର୍ଷ ପୂର୍ବେ ପ୍ରମାଣ କରିଛନ୍ତି ଯେ, ଆମମାନଙ୍କର ବାହ୍ୟ ବା ଆନ୍ତର ସର୍ବପ୍ରକାର ବିଷୟର ଜ୍ଞାନ ବା ଧାରଣା ମଧ୍ୟରେ ମାନବୀୟ ଚେତନା ବା ବୁଦ୍ଧି ଗୋଟିଏ

୧ ଅବ୍ୟକ୍ତା ହି ଗତିର୍ଦୁଃଖଂ ଦେହବଦ୍‌ଭିରବାପ୍ୟତେ ।—ଭଗବଦ୍‌ଗୀତା, ୧୨।୫

ଉପାଦାନ । ଶଷ୍ପଠାରୁ ଆରମ୍ଭ କରି ଈଶ୍ୱରଙ୍କ ପର୍ଯ୍ୟନ୍ତ ବିଚାର କଲେ ଦେଖିବାକୁ ମିଳିବ, ଆମମାନଙ୍କର ଅନୁଭୂତ ସମୁଦାୟ ବସ୍ତୁ ହିଁ ବୁଦ୍ଧି ଓ ତା' ସହିତ ଅପର ଗୋଟିଏ ବସ୍ତୁର ମିଶ୍ରଣ, ତାହା ଯାହା ହେଉ ନା କାହିଁକି । ପୁଣି ଏହି ଅବଶ୍ୟମ୍ଭାବୀ ମିଶ୍ରଣ ତାହା ହିଁ—ଯାହାକୁ ଆମେମାନେ ସଚରାଚର ସତ୍ୟ ବୋଲି ବୋଧ କରୁଁ । ବାସ୍ତବିକ ବର୍ତ୍ତମାନ ବା ଭବିଷ୍ୟତ୍ ମାନବମନ ପକ୍ଷରେ ସତ୍ୟର ଜ୍ଞାନ ଯେତେ ଦୂର ସମ୍ଭବ, ତାହା ଏହାର ଅତିରିକ୍ତ ଆଉ କିଛି ନୁହେଁ । ଅତଏବ ଈଶ୍ୱର ମାନବଧର୍ମିକ ବୋଲି ତାହାଙ୍କୁ ଅସତ୍ୟ ବୋଲିବା ଅସମ୍ବନ୍ଧ ପ୍ରଳାପ ମାତ୍ର । ଏହା ଯେପରି ପାଶ୍ଚାତ୍ୟ ବିଜ୍ଞାନବାଦ ( Idealism ) ଓ ବାସ୍ତବବାଦ ( Realism ) ମଧ୍ୟରେ ବିଚାରସଦୃଶ । ଏହି ବିବାଦ ଆପାତତଃ ଶୁଣିବାକୁ ଅତି ଭୟଙ୍କର ବୋଧ ହେଲେ ମଧ୍ୟ 'ସତ୍ୟ' ଶବ୍ଦର ଅର୍ଥ ଘେନି ମାରପେଞ୍ଚ ଉପରେ ସ୍ଥାପିତ । 'ସତ୍ୟ' ଶବ୍ଦ ଦ୍ୱାରା ଯେତେ ପ୍ରକାର ଭାବ ସୂଚିତ ହୋଇଛି, 'ଈଶ୍ୱର' ଭାବଟି ତତ୍ସମୁଦାୟଭାବବ୍ୟଞ୍ଜକ । ଜଗତ୍ର ଅନ୍ୟାନ୍ୟ ବସ୍ତୁ ଯେତେଦୂର ସତ୍ୟ, ଈଶ୍ୱର ମଧ୍ୟ ସେତେଦୂର ସତ୍ୟ । ପୁଣି ବାସ୍ତବିକ 'ସତ୍ୟ' ଶବ୍ଦ ଏଠାରେ ଯେଉଁ ଅର୍ଥରେ ପ୍ରଯୁକ୍ତ ହେଲା, ସତ୍ୟ ଶବ୍ଦ ଦ୍ୱାରା ତଦପେକ୍ଷା ଅଧିକ କିଛି ବୁଝାଯାଏ ନାହିଁ । ଏହା ହିଁ ଆମମାନଙ୍କର ଈଶ୍ୱରସମ୍ବନ୍ଧୀୟ ଦାର୍ଶନିକ ଧାରଣା ।

## ପ୍ରତ୍ୟକ୍ଷାନୁଭୂତ ହିଁ ଧର୍ମ

ଭକ୍ତ ପକ୍ଷରେ ଏହି ସକଳ ଶୁଷ୍କ ବିଷୟ ଜାଣିବାର ପ୍ରୟୋଜନ—କେବଳ ନିଜର ଇଚ୍ଛାଶକ୍ତିକୁ ଦୃଢ଼ କରିବା ମାତ୍ର । ଏତଦ୍ବ୍ୟତୀତ ସେସବୁର ଆଉ କୌଣସି ଉପଯୋଗିତା ନାହିଁ । କାରଣ ସେ ଏପରି ଏକ ପଥରେ ବିଚରଣ କରନ୍ତି, ଯାହା ଶୀଘ୍ର ତାଙ୍କୁ ଯୁକ୍ତିର କୁହେଳିକାମୟ ଓ ଅଶାନ୍ତିପ୍ରଦ ରାଜ୍ୟର ସୀମା ଛାଡ଼ି ପ୍ରତ୍ୟକ୍ଷାନୁଭୂତିର ରାଜ୍ୟକୁ ଘେନିଯାଏ । ସେ ଶୀଘ୍ର ଈଶ୍ୱରଙ୍କ କୃପାରୁ ଏପରି ଏକ ଅବସ୍ଥାରେ ଉପନୀତ ହୁଅନ୍ତି, ଯେଉଁଠାରେ ପାଣ୍ଡିତ୍ୟାଭିମାନୀମାନଙ୍କର ଶୁଷ୍କ ଯୁକ୍ତି ଅନେକ ପଛରେ ପଡ଼ିରହେ, ପୁଣି ବୁଦ୍ଧି ସାହାଯ୍ୟରେ ଅନ୍ଧକାର ମଧ୍ୟରେ ବୃଥାନ୍ୱେଷଣ ସ୍ଥାନରେ ପ୍ରତ୍ୟକ୍ଷାନୁଭୂତିର ଉଜ୍ଜ୍ୱଳ ଦୀପାଲୋକ ପ୍ରକାଶିତ ହୁଏ । ସେତେବେଳେ ସେ ବିଚାର ବା ବିଶ୍ୱାସ କିଛି କରନ୍ତି ନାହିଁ । ସେ ଏକ ପ୍ରକାର ପ୍ରତ୍ୟକ୍ଷ ଅନୁଭବ କରନ୍ତି । ସେ ଆଉ ତର୍କ ନ କରି ପ୍ରତ୍ୟକ୍ଷ କରନ୍ତି । ଏହି ଭଗବାନଙ୍କୁ ଦେଖିବା, ତାଙ୍କୁ ଉପଲବ୍ଧି କରିବା ଓ ତାଙ୍କୁ ସମ୍ଭୋଗ କରିବା, କଅଣ ଅନ୍ୟାନ୍ୟ ସମୁଦାୟ ବିଷୟଠାରୁ ଶ୍ରେଷ୍ଠ ନୁହେଁ ? କେବଳ ଏତିକି ନୁହେଁ, ଅନେକ ଭକ୍ତ ଅଛନ୍ତି, ଯେଉଁମାନେ ଭକ୍ତିକୁ ମୁକ୍ତିଠାରୁ ଶ୍ରେଷ୍ଠ ବୋଲି ବର୍ଣ୍ଣନା କରିଛନ୍ତି । ଆଉ ଏହା କ'ଣ ଆମମାନଙ୍କ ଜୀବନର ସର୍ବୋଚ୍ଚ ପ୍ରୟୋଜନ ନୁହେଁ ? ଏପରି ଲୋକ ଜଗତ୍ରେ ଅଛନ୍ତି, ସେମାନଙ୍କର ସଂଖ୍ୟା ମଧ୍ୟ ଅନେକ, ଯେଉଁମାନେ ସ୍ଥିରସିଦ୍ଧାନ୍ତ କରିଛନ୍ତି, ଯାହା ମନୁଷ୍ୟକୁ ଶାରୀରିକ ସୁଖ ପ୍ରଦାନ କରିପାରେ, ତହିଁରେ ହିଁ ବାସ୍ତବିକ୍ ପ୍ରୟୋଜନ ଓ ଉପକାରିତା ଅଛି । ଧର୍ମ, ଈଶ୍ୱର, ପରକାଳ ଓ ଆତ୍ମା ଏହିପରି ଅନ୍ୟାନ୍ୟ

ବିଷୟଗୁଡ଼ିକ କୌଣସି କାର୍ଯ୍ୟର ନୁହେଁ । କାରଣ ଏମାନଙ୍କ ଦ୍ୱାରା ଅର୍ଥ ବା ଦୈହିକ ସୁଖ ମିଳେ ନାହିଁ । ଏପରି ଲୋକଙ୍କ ମତରେ ଯେଉଁ ପଦାର୍ଥ ଦ୍ୱାରା ସେମାନଙ୍କର ଇନ୍ଦ୍ରିୟ ଚରିତାର୍ଥ ନ ହୁଏ, ତହିଁରେ କୌଣସି ପ୍ରୟୋଜନ ନାହିଁ । ଯେଉଁ ବ୍ୟକ୍ତିର ପୁଣି ଯେଉଁ ବିଷୟରେ ଆଗ୍ରହ ପ୍ରବଳ, ତାହାର ତହିଁରେ ଅଧିକ ଲାଭବୋଧ । ସୁତରାଂ ଯେଉଁମାନେ ପାନଭୋଜନ, ଅପତ୍ୟୋତ୍ପାଦନ ଓ ତତ୍ପରେ ମୃତ୍ୟୁ—ଏଗୁଡ଼ିକର ଉପରକୁ ଉଠିପାରନ୍ତି ନାହିଁ, ସେମାନଙ୍କ ପକ୍ଷରେ ଲାଭବୋଧ କେବଳ ଇନ୍ଦ୍ରିୟସୁଖରେ । ସେମାନଙ୍କ ହୃଦୟରେ ଉଚ୍ଚତର ବିଷୟ ପ୍ରତି ସାମାନ୍ୟ ବ୍ୟାକୁଳତା ପର୍ଯ୍ୟନ୍ତ ଜନ୍ମିବାକୁ ଅନେକ ଜନ୍ମ ଲାଗିବ । ଯେଉଁମାନଙ୍କ ଚକ୍ଷୁରେ କିନ୍ତୁ ଆତ୍ମାର ଉନ୍ନତିସାଧନ ଐହିକ ଜୀବନର କ୍ଷଣିକ ସୁଖାପେକ୍ଷା ଗୁରୁତର ବୋଲି ବୋଧହୁଏ, ଯେଉଁମାନଙ୍କ ଚକ୍ଷୁରେ ଇନ୍ଦ୍ରିୟପରିତୃପ୍ତି କେବଳ ଅବୋଧ ଶିଶୁର କ୍ରୀଡ଼ାପରି ବୋଧହୁଏ, ସେମାନଙ୍କ ନିକଟରେ ଭଗବାନ୍ ଓ ଭଗବତ୍ପ୍ରେମ ହିଁ ମାନବଜୀବନର ସର୍ବୋଚ୍ଚ ଓ ଏକମାତ୍ର ପ୍ରୟୋଜନ ବୋଲି ବିବେଚିତ ହୁଏ । ଈଶ୍ୱରେଚ୍ଛାରେ ଏହି ଘୋର ଭୋଗଲିପ୍ସାପୂର୍ଣ୍ଣ ଜଗତ୍ରେ ଏପରି ମହାତ୍ମା ଏବେ ମଧ୍ୟ ବିରଳ ନୁହନ୍ତି ।

ପୂର୍ବରୁ କହିଛି, ଭକ୍ତି ପରା ଓ ଗୌଣୀ ଏହି ଦୁଇ ଭାଗରେ ବିଭକ୍ତ । ଗୌଣୀ ଅର୍ଥ ସାଧନଭକ୍ତି; ପରାଭକ୍ତି ତାହାର ପରିପକ୍ୱାବସ୍ଥା । କ୍ରମଶଃ ବୁଝାଯିବ, ଏହି ଭକ୍ତିମାର୍ଗରେ ଅଗ୍ରସର ହେବାକୁ ହେଲେ ସାଧନାବସ୍ଥାରେ କେତେଗୁଡ଼ିଏ ବାହ୍ୟ ସାହାଯ୍ୟ ନ ନେଲେ ଚଳିବ ନାହିଁ । ବାସ୍ତବିକ ସବୁ ଧର୍ମର ପୌରାଣିକ ଓ ରୂପକ ଭାଗ ହିଁ ପ୍ରଥମାବସ୍ଥାରେ ଉନ୍ନତିକାମୀ ଆତ୍ମାକୁ ଭଗବାନଙ୍କ ଆଡ଼କୁ ଅଗ୍ରସର ହେବାରେ ସାହାଯ୍ୟ କରେ । ଆହୁରି ମଧ୍ୟ ଏହା ଗୋଟିଏ ବିଶେଷ ଲକ୍ଷ୍ୟ କରିବାର ବିଷୟ ଯେ, ଯେଉଁସବୁ ଧର୍ମପ୍ରଣାଳୀ ପୌରାଣିକ ଭାବବହୁଳ ଓ ଅନୁଷ୍ଠାନ-ପ୍ରଚୁର, ସେହିସବୁ ଧର୍ମ-ସମ୍ପ୍ରଦାୟରେ ହିଁ ବଡ଼ ବଡ଼ ଧର୍ମବୀର ଜନ୍ମିଥିଲେ । ଧର୍ମ-ପ୍ରଣାଳୀରେ ଯାହା କିଛି କବିତ୍ୱମୟ, ଯାହା କିଛି ସୁନ୍ଦର, ଯାହା କିଛି ମହାନ୍, ଯାହା କିଛି ଭଗବତ୍ପଥରେ ସ୍ଖଳିତ ପଦରେ ଅଗ୍ରସର ସୁକୁମାର ମନର ଦୃଢ଼ ଅବଲମ୍ବନସ୍ୱରୂପ, ସେହିସବୁ ଭାବଗୁଡ଼ିକୁ ଯେଉଁ ସବୁ ଶୁଷ୍କ ମତାନ୍ଧତାପୂର୍ଣ୍ଣ ଧର୍ମପ୍ରଣାଳୀ ଏକାଥରକେ ଉତ୍ପାଟନ କରି ଫିଙ୍ଗି ଦେବାକୁ ଇଚ୍ଛା କରିଥାଏ—ଯେଉଁସବୁ ଧର୍ମପ୍ରଣାଳୀରେ ଧର୍ମରୂପ ଗୃହର ଅବଲମ୍ବନସ୍ତମ୍ଭଗୁଡ଼ିକ ପର୍ଯ୍ୟନ୍ତ ଭାଙ୍ଗି-ଦେବାକୁ ଚେଷ୍ଟା କରାଯାଏ, ଏବଂ ସତ୍ୟସମ୍ବନ୍ଧରେ ଅଜ୍ଞାନ ଓ ଭ୍ରମପୂର୍ଣ୍ଣ ଧାରଣା ନେଇ ଯାହା କିଛି ଜୀବନୀଶକ୍ତିସଞ୍ଚାରକ, ଯାହା କିଛି ମାନବହୃଦୟରେ କ୍ରମବର୍ଦ୍ଧମାନ ଆଧ୍ୟାତ୍ମିକ ଜୀବନରୂପ ଲତିକାର ଗଠନୋପଯୋଗୀ ଉପାଦାନ, ସେଗୁଡ଼ିକୁ ପର୍ଯ୍ୟନ୍ତ ଦୂର କରିଦେବାକୁ ଇଚ୍ଛା କରେ, ସେହିସବୁ ଧର୍ମରେ ଶୀଘ୍ର ଦେଖିବାକୁ ମିଳେ ଯେ, କେବଳ ଅନ୍ତଃସାରଶୂନ୍ୟ ଅନନ୍ତ ଶବ୍ଦରାଶି ଓ ତର୍କାଡ଼ମ୍ବର ସ୍ତୂପମାତ୍ର ରହିଅଛି; ହୁଏତ ଟିକିଏ ସାମାଜିକ ଆବର୍ଜନା-ନିଷ୍କରଣ ବା ତଥା-କଥିତ ସଂସ୍କାରପ୍ରିୟତାର ଆଭାସମାତ୍ର ହୋଇପଡ଼ିଛି । ଯେଉଁମାନଙ୍କର ଧର୍ମ ଏପରି, ସେମାନଙ୍କ ମଧ୍ୟରେ ଅନେକେ ଜ୍ଞାତସାରରେ ବା ଅଜ୍ଞାତସାରରେ ଜଡ଼ବାଦୀ; ସେମାନଙ୍କର ଐହିକ ପାର-ତ୍ରିକ ଜୀବନର ଲକ୍ଷ୍ୟ କେବଳ ଭୋଗ; ତାହା ହିଁ ସେମାନଙ୍କ ମତରେ ମାନବଜୀବନର ସର୍ବସ୍ୱ, ତାହା ହିଁ ସେମାନଙ୍କର ଇଷ୍ଟାପୂର୍ତ୍ତି । ମନୁଷ୍ୟର ଐହିକ ସ୍ୱାଚ୍ଛନ୍ଦ୍ୟ ନିମିତ୍ତ ଅଭିପ୍ରେତ ରାସ୍ତାରେ

ଝାଡ଼ୁ ଦେବା ପ୍ରଭୃତି କାର୍ଯ୍ୟ ଏମାନଙ୍କ ମତରେ ମାନବଜୀବନର ସର୍ବସ୍ୱ । ଏହି ଅଜ୍ଞାନ ଓ ମତାନ୍ଧତାର ଅଦ୍ଭୁତ ମିଶ୍ରଣରୂପ ମତାବଲମ୍ବୀଗଣ ଯେତେ ଶୀଘ୍ର ସେମାନଙ୍କର ପ୍ରକୃତ ବେଶରେ ବାହାରି ନାସ୍ତିକ ଜଡ଼ବାଦୀମାନଙ୍କ ଦଳରେ ଯୋଗ ଦିଅନ୍ତି ( ଏହା ହିଁ ସେମାନଙ୍କ ପକ୍ଷରେ ଉପଯୁକ୍ତ ) ସେତେ ହିଁ ସଂସାର ପକ୍ଷରେ ମଙ୍ଗଳ । ଏକବିନ୍ଦୁ ଧର୍ମାନୁଷ୍ଠାନ ଓ ଅପରୋକ୍ଷାନୁଭୂତି ରାଶି ରାଶି ବାକ୍‌ପ୍ରପଞ୍ଚ ଓ ମୂର୍ଖସୁଲଭ ଭାବୋଚ୍ଛ୍ୱାସ ଅପେକ୍ଷା ସହସ୍ରଗୁଣରେ ଶ୍ରେଷ୍ଠତର । ଅଜ୍ଞାନ ଓ ମତାନ୍ଧତାର ଏହି ଶୁଷ୍କ ଧୂଳିମୟ କ୍ଷେତ୍ରରେ ଜଣେ—କେବଳ ଜଣେ ଅମିତତେଜ ଧର୍ମବୀର ଜନ୍ମିଛନ୍ତି, ଦେଖାଇ ପାରିବ କି ? ନ ପାରିବ ତ ତୁନି ହୋଇ ରହ । ହୃଦୟ-କପାଟ ଖୋଲି-ଦିଅ, ସତ୍ୟର ବିମଳାଲୋକ ପ୍ରବେଶ କରୁ, ସେହି ଭାରତୀୟ ତତ୍ତ୍ୱଦର୍ଶୀ ସାଧୁମାନଙ୍କ ପଦତଳେ ବାଳକପରି ବସି ସେମାନେ କଅଣ କହୁଛନ୍ତି ଶୁଣ ।

## ଗୁରୁଙ୍କର ପ୍ରୟୋଜନୀୟତା

ଜୀବାତ୍ମାମାନେ ପୂର୍ଣ୍ଣତା ଲାଭ କରିବେ ହିଁ କରିବେ—ଶେଷରେ ସମସ୍ତେ ସିଦ୍ଧାବସ୍ଥା ଲାଭ କରିବେ । ଆମେମାନେ ବର୍ତ୍ତମାନ ଯାହା ହୋଇଅଛୁ, ତାହା ଆମମାନଙ୍କର ଅତୀତ କାର୍ଯ୍ୟ ଓ ଚିନ୍ତାରାଶିର ଫଳସ୍ୱରୂପ । ଆଉ ବର୍ତ୍ତମାନ ଯେପରି ଚିନ୍ତା ଓ କାର୍ଯ୍ୟ କରୁଛୁ, ତାହାର ଫଳ-ସ୍ୱରୂପ ଭବିଷ୍ୟତରେ ତାହା ହେବୁ । କିନ୍ତୁ ଆମେ ନିଜେ ହିଁ ନିଜର ଅଦୃଷ୍ଟ ଗଠନ କରୁଛୁଁ ବୋଲି ଯେ ବାହାରୁ ଆମର କୌଣସି ସହାୟତାର ଆବଶ୍ୟକତା ନାହିଁ, ତାହା ନୁହେଁ; ବରଂ ଅଧିକାଂଶ ସ୍ଥଳରେ ଏପରି ସହାୟତା ସମ୍ପୂର୍ଣ୍ଣ ପ୍ରୟୋଜନ । ଯେତେବେଳେ ଆମେ ଏହି ସହାୟତା ପ୍ରାପ୍ତ ହେଉ, ସେତେବେଳେ ଆତ୍ମାର ଉଚ୍ଚତର ଶକ୍ତି ଓ ଆପାତଅବ୍ୟକ୍ତ ଭାବଗୁଡ଼ିକ ଫୁଟିଉଠେ, ଆଧ୍ୟାତ୍ମିକ ଜୀବନ ସତେଜ ହୋଇଉଠେ, ତାହାର ଉନ୍ନତି ତ୍ୱରାନ୍ୱିତ ହୁଏ, ସାଧକ ଶେଷରେ ଶୁଦ୍ଧସ୍ୱଭାବ ଓ ସିଦ୍ଧ ହୋଇଯାଏ ।

ଏହି ସଞ୍ଜୀବନୀ-ଶକ୍ତି ଗ୍ରନ୍ଥରୁ ମିଳେ ନାହିଁ । ଆତ୍ମା କେବଳ ଅପର ଏକ ଆତ୍ମାଠାରୁ ଶକ୍ତି ପ୍ରାପ୍ତ ହୋଇପାରେ, ଆଉ କୌଣସିଠାରୁ ନୁହେଁ । ଜଣେ ସାରାଜୀବନ ପୁସ୍ତକ ପାଠ କରି-ପାରେ, ଖୁବ୍ ବୁଦ୍ଧିମାନ ହୋଇପାରେ, କିନ୍ତୁ ଶେଷରେ ଦେଖିବ ଆଧ୍ୟାତ୍ମିକ ଉନ୍ନତି କିଛି ହୋଇ ନାହିଁ । ବୁଦ୍ଧିବୃତ୍ତିର ଉନ୍ନତି ହେଲେ ଯେ ସଙ୍ଗେ ସଙ୍ଗେ ଆଧ୍ୟାତ୍ମିକ ଉନ୍ନତି ମଧ୍ୟ ଖୁବ୍ ହେବ, ତାହାର କୌଣସି ଅର୍ଥ ନାହିଁ । ଗ୍ରନ୍ଥ ପାଠ କରୁ କରୁ ଅନେକ ସମୟରେ ଭ୍ରମବଶତଃ ଆମେ ଭାବୁ, ଆମର ଆଧ୍ୟାତ୍ମିକ ଉପକାର ହେଉଛି; କିନ୍ତୁ ଯଦି ଗ୍ରନ୍ଥପାଠରେ ଆମର କି ଫଳ ହୋଇଛି, ତାହା ଧୀର ଭାବରେ ଆଲୋଚନା କରିବୁଁ, ତେବେ ଦେଖିବୁଁ, ଖୁବ୍ ବେଶୀ ହେଲେ ଆମର ବୁଦ୍ଧିବୃତ୍ତି ଟିକିଏ ସତେଜ ହୋଇଛି, ଅନ୍ତରାତ୍ମାର କିଛି ହେଲେ ହୋଇ ନାହିଁ । ଆମମାନଙ୍କ ମଧ୍ୟରେ ପ୍ରାୟ ସମସ୍ତଙ୍କର ଆଧ୍ୟାତ୍ମିକ ବାକ୍ୟବିନ୍ୟାସରେ ଅଦ୍ଭୁତ ନୈପୁଣ୍ୟ ଥିଲେ ମଧ୍ୟ କାର୍ଯ୍ୟ ବେଳେ—ପ୍ରକୃତ ଧର୍ମ ଭାବରେ ଜୀବନଯାପନ କରିବା ସମୟରେ—କାହିଁକି ଏତେ ଭୟାନକ

ତ୍ରୁଟି ଅତ୍ୟନ୍ତ ଲକ୍ଷିତ ହୁଏ, ତାହାର କାରଣ, ଗ୍ରନ୍ଥରାଶି ଆଧ୍ୟାତ୍ମିକ ଜୀବନର ଉନ୍ନତି ପକ୍ଷରେ ପର୍ଯ୍ୟାପ୍ତ ନୁହେଁ । ଜୀବାତ୍ମାର ଶକ୍ତି ଜାଗ୍ରତ କରିବାକୁ ହେଲେ ଅପର ଏକ ଆତ୍ମାର ଶକ୍ତିସଞ୍ଚାର ଆବଶ୍ୟକ ।

ଯେଉଁ ବ୍ୟକ୍ତିଙ୍କ ଆତ୍ମାରୁ ଅପର ଏକ ଆତ୍ମାଠାରେ ଶକ୍ତି ସଞ୍ଚାରିତ ହୁଏ, ତାହାଙ୍କୁ ଗୁରୁ କହନ୍ତି ଏବଂ ଯେଉଁ ବ୍ୟକ୍ତିର ଆତ୍ମାରେ ଶକ୍ତି ସଞ୍ଚାରିତ ହୁଏ, ତାହାକୁ ଶିଷ୍ୟ କହନ୍ତି । ଏହିପରି ଶକ୍ତିସଞ୍ଚାର କରିବାକୁ ହେଲେ ପ୍ରଥମେ ଯେ ସଞ୍ଚାର କରିବେ, ତାଙ୍କର ଏହି ସଞ୍ଚାର କରିବାର ଶକ୍ତି ଥିବା ଆବଶ୍ୟକ । ଆଉ ଯାହାଙ୍କଠାରେ ସଞ୍ଚାରିତ ହେବ, ତାଙ୍କର ମଧ୍ୟ ଗ୍ରହଣ କରିବାର ଶକ୍ତି ଥିବା ଆବଶ୍ୟକ । ବୀଜ ସତେଜ ହେବା ଆବଶ୍ୟକ, ଭୂମି ମଧ୍ୟ ଉର୍ବର ଥିବା ଆବଶ୍ୟକ । ଯେଉଁଠାରେ ଏହି ଉଭୟ ବିଦ୍ୟମାନ, ସେହିଠାରେ ପ୍ରକୃତ ଧର୍ମର ଅପୂର୍ବ ବିକାଶ ଦୃଷ୍ଟ ହୁଏ । "ଧର୍ମର ପ୍ରକୃତ ବକ୍ତା ଅବଶ୍ୟ ଆଶ୍ଚର୍ଯ୍ୟ ପୁରୁଷ ହେବେ ଓ ଶ୍ରୋତା ସୁନିପୁଣ ହେବା ମଧ୍ୟ ଆବଶ୍ୟକ ।"[୧] ଯେତେବେଳେ ଉଭୟେ ଆଶ୍ଚର୍ଯ୍ୟ ଓ ସୁନିପୁଣ ହୁଅନ୍ତି, ସେତେବେଳେ ଆଶ୍ଚର୍ଯ୍ୟ ଆଧ୍ୟାତ୍ମିକ ଉନ୍ନତି ଘଟେ, ଅନ୍ୟ ସ୍ଥଳରେ ନୁହେଁ । ଏହିପରି ବ୍ୟକ୍ତି ହିଁ ପ୍ରକୃତ ଗୁରୁ, ଏହିପରି ବ୍ୟକ୍ତି ହିଁ ପ୍ରକୃତ ଶିଷ୍ୟ—ମୁମୁକ୍ଷୁ ସାଧକ । ଆଉ ସମସ୍ତେ ଧର୍ମକୁ ଧରି ପିଲାଖେଳ କରନ୍ତି ମାତ୍ର । ସେମାନଙ୍କର କେବଳ ଟିକିଏ କୌତୂହଳ, ଟିକିଏ ଜାଣିବାର ଇଚ୍ଛାମାତ୍ର ହୋଇଛି । କିନ୍ତୁ ସେମାନେ ବର୍ତ୍ତମାନ ସୁଦ୍ଧା ଧର୍ମଚକ୍ରବାଳର ବହିର୍ଦ୍ଦେଶରେ ଅଛନ୍ତି । ଅବଶ୍ୟ ଏହାର କିଛି ମୂଲ୍ୟ ଅଛି, କାରଣ ଉପଯୁକ୍ତ ସମୟରେ ଏଥିରୁ ପ୍ରକୃତ ଧର୍ମପିପାସା ଆସିପାରେ । ଆଉ ପ୍ରକୃତିର ଏହି ବିଚିତ୍ର ନିୟମ ଯେ, ଯେତେବେଳେ କ୍ଷେତ୍ର ଉପଯୁକ୍ତ ହୁଏ, ସେତେବେଳେ ବୀଜ ନିଶ୍ଚୟ ଆସିବ, ଆସିଥାଏ ମଧ୍ୟ । ଯେତେବେଳେ ଆତ୍ମାର ଧର୍ମପିପାସା ପ୍ରବଳ ହେବ ସେତେବେଳେ ଧର୍ମଶକ୍ତିସଞ୍ଚାରକ ପୁରୁଷ ସେହି ଆତ୍ମାର ସହାୟତା ନିମିତ୍ତ ନିଶ୍ଚୟ ଆସିବେ, ଆସିଥାଆନ୍ତି ମଧ୍ୟ । ଯେତେବେଳେ ଗ୍ରହୀତାର ଧର୍ମାଲୋକାକର୍ଷିଣୀ ଶକ୍ତି ପୂର୍ଣ୍ଣ ଓ ପ୍ରବଳା ହୁଏ, ସେତେବେଳେ ସେହି ଆକର୍ଷଣଦ୍ୱାରା ଆକୃଷ୍ଟ ଆଲୋକଦାୟିନୀ ଶକ୍ତି ଅବଶ୍ୟ ଆସିଥାଏ ।

ତଥାପି ପଥରେ କେତେଗୁଡ଼ିଏ ମହାବିପଦ ରହିଅଛି, ଯଥା—କ୍ଷଣସ୍ଥାୟୀ ଭାବୋଚ୍ଛ୍ୱାସକୁ ପ୍ରକୃତ ଧର୍ମପିପାସା ବୋଲି ଭ୍ରମ ହେବାର ସମ୍ଭାବନା । ଆମେମାନେ ନିଜ ନିଜ ଜୀବନରେ ଏହା ପର୍ଯ୍ୟବେକ୍ଷଣ କରି ପାରିବା । ଆମ ଜୀବନରେ ଅନେକ ସମୟରେ ଏପରି ଦେଖାଯାଏ—ହୁଏତ କାହାକୁ ଖୁବ୍ ଭଲପାଉ, ତାର ମୃତ୍ୟୁ ହେଲା, ଆଘାତ ପାଇଲୁଁ । ମନରେ ହେଲା, ଯାହାକୁ ଧରୁଛୁଁ ତାହା ହାତରୁ ଖସି ଚାଲିଯାଉଛି । ବର୍ତ୍ତମାନ କୌଣସି ଦୃଢ଼ତର, ଉଚ୍ଚତର ଆଶ୍ରୟ ଆବଶ୍ୟକ—ଆମକୁ ନିଶ୍ଚୟ ଧର୍ମ କରିବାକୁ ହେବ । କେତେଦିନ ମଧ୍ୟରେ ଏହି ଭାବତରଙ୍ଗ ଲୁଆଡ଼େ ଚାଲିଗଲା । ଆମେ ଯେଉଁଠାରେ ଥିଲୁଁ ସେହିଠାରେ ପଡ଼ି ରହିଲୁଁ । ଆମେ ସମସ୍ତେ ଏହିପରି ଭାବୋଚ୍ଛ୍ୱାସକୁ ପ୍ରକୃତ ଧର୍ମପିପାସା ବୋଲି ଅନେକ ସମୟରେ ଭ୍ରମରେ ପଡ଼ିଥାଉ । କିନ୍ତୁ ଯେତେଦିନଯାଏ ଏହି କ୍ଷଣସ୍ଥାୟୀ ଭାବୋଚ୍ଛ୍ୱାସଗୁଡ଼ିକୁ ଭ୍ରମବଶତଃ ପ୍ରକୃତ ଧର୍ମପିପାସା

୧ ଆଶ୍ଚର୍ଯ୍ୟୋ ବକ୍ତା କୁଶଳୋଽସ୍ୟ ଲବ୍ଧା ଇତ୍ୟାଦି ।

—କଠ ଉପନିଷତ୍, ୧ମ ଅଧ୍ୟାୟ, ୨ୟ ବଲ୍ଲୀ, ୭ମ ଶ୍ଳୋକ ।

ବୋଲି ମନେକରନ୍ତି, ସେତେଦିନ ଧର୍ମ ପାଇଁ ପ୍ରାଣରେ ଯଥାର୍ଥ ସ୍ଥାୟୀ ବ୍ୟାକୁଳତା ଜନ୍ମିବ ନାହିଁ, ଆଉ ସେତେଦିନ ପର୍ଯ୍ୟନ୍ତ ଶକ୍ତିସଞ୍ଚାରକାରୀ ପୁରୁଷଙ୍କର ମଧ୍ୟ ସାକ୍ଷାତ୍କାର ଲାଭ ହେବ ନାହିଁ । ଏହି କାରଣରୁ ଯେତେବେଳେ ଆମର ମନରେ ଆସେ ଯେ, 'ଆମର ସତ୍ୟ ଲାଭ ପାଇଁ ଏହି ଚେଷ୍ଟାସମୂହ ବୃଥା ହେଉଛି, ସେତେବେଳେ ଏପରି ମନେକରିବା ଅପେକ୍ଷା ନିଜ ନିଜର ଅନ୍ତରର ଅନ୍ତସ୍ଥଳକୁ ଅନ୍ୱେଷଣ କରି ଦେଖିବା ଉଚିତ, ହୃଦୟରେ ପ୍ରକୃତ ଆଗ୍ରହ ଜନ୍ମିଛି କି ନାହିଁ । ଏପରି କଲେ ଅଧିକାଂଶ ସ୍ଥଳରେ ଆମେ ଦେଖିବା, ଆମେ ସତ୍ୟଗ୍ରହଣର ଉପଯୁକ୍ତ ନୋହୁଁ — ଆମର ପ୍ରକୃତ ଧର୍ମପିପାସା ହୋଇ ନାହିଁ ।

ପୁନଶ୍ଚ ଶକ୍ତିସଞ୍ଚାରକ ଗୁରୁ ସମ୍ବନ୍ଧରେ ଆହୁରି ଅନେକ ବିପଦ ଅଛି । ଅନେକେ ଅଛନ୍ତି, ଯେଉଁମାନେ ସ୍ୱୟଂ ଅଜ୍ଞାନାଚ୍ଛନ୍ନ ହୋଇ ମଧ୍ୟ ଅହଂକାରରେ ଆପଣାକୁ ସର୍ବଜ୍ଞ ମନେ କରନ୍ତି । କେବଳ ତାହା ନୁହେଁ, ଅନ୍ୟକୁ ମଧ୍ୟ ନିଜ ସ୍କନ୍ଧରେ ନେଇଯିବେ ବୋଲି ଘୋଷଣା କରନ୍ତି । ଏହିପରି ଅନ୍ଧ ଅନ୍ଧକୁ ପଥ ଦେଖାଇ ନେଇ ଯାଇ ଯାଇ ଉଭୟେ ଖାଲରେ ପଡ଼ିଯାଆନ୍ତି । "ଅଜ୍ଞାନରେ ଆଚ୍ଛନ୍ନ, ଅତି ନିର୍ବୋଧ ହେଲେହେଁ ଆପଣାକୁ ମହାପଣ୍ଡିତ ମନେ କରି ମୂଢ଼ ବ୍ୟକ୍ତିଗଣ ଅନ୍ଧଦ୍ୱାରା ନୀୟମାନ ଅନ୍ଧପରି ପ୍ରତି ପଦବିକ୍ଷେପରେ ସ୍ଖଳିତପଦ ହୋଇ ଚତୁର୍ଦ୍ଦିଗରେ ବିଚରଣ କରନ୍ତି ।"[୧]

ଜଗତ୍ ଏତଦ୍‌ବିଧ ଜନଗଣଙ୍କ ଦ୍ୱାରା ପରିପୂର୍ଣ୍ଣ—ସମସ୍ତେ ଗୁରୁ ହେବାକୁ ଇଚ୍ଛା କରନ୍ତି । "ଭିକାରୀ ମଧ୍ୟ ଏକ ଲକ୍ଷ ଟଙ୍କା ଦାନ କରିବାକୁ ଚାହେଁ ।" ଏପରି ଲୋକ ସମସ୍ତଙ୍କ ନିକଟରେ ହାସ୍ୟାସ୍ପଦ ହେଲାପରି ଏହି ସକଳ ଆଚାର୍ଯ୍ୟଗଣ ମଧ୍ୟ ତଦ୍ରୂପ ।

## ଗୁରୁ ଓ ଶିଷ୍ୟର ଲକ୍ଷଣ

ତାହାହେଲେ ଗୁରୁଙ୍କୁ ଚିହ୍ନିବା କପରି ? ସୂର୍ଯ୍ୟଙ୍କୁ ପ୍ରକାଶ କରିବାକୁ କୌଣସି ମଶାଲର ଆବଶ୍ୟକତା ହୁଏ ନାହିଁ । ତାଙ୍କୁ ଦେଖିବା ନିମିତ୍ତ ଆଉ ପ୍ରଦୀପ ଜଳାଇବାକୁ ପଡ଼େ ନାହିଁ । ସୂର୍ଯ୍ୟ ଉଦିତ ହେଲେ ଆମେ ଆପେ ଆପେ ଜାଣିପାରୁ ଯେ, ଏହା ଉଠିଛି ସେହିପରି ଜାତିବା-ଙ୍କାର ପାଇଁ ଲୋକଗୁରୁଙ୍କର ଆଗମନ ହେଲେ ଆତ୍ମା ସ୍ୱଭାବତଃ ଜାଣିପାରନ୍ତି ଯେ, ତାଙ୍କ ଉପରେ ସତ୍ୟର ସୂର୍ଯ୍ୟାଲୋକ ପତିତ ହେବାକୁ ଆରମ୍ଭ କରିଛି । ସତ୍ୟ ସ୍ୱତଃପ୍ରମାଣ —ଏହାକୁ ପ୍ରମାଣ କରିବାକୁ ଅନ୍ୟ କୌଣସି ସାକ୍ଷ୍ୟର ପ୍ରୟୋଜନ ନାହିଁ—ଏହା ସ୍ୱପ୍ରକାଶ; ଏହା ଆମ-

---

[୧] ଅବିଦ୍ୟାୟାମନ୍ତରେ ବର୍ତ୍ତମାନାଃ
ସ୍ୱୟଂ ଧୀରାଃ ପଣ୍ଡିତମ୍ମନ୍ୟମାନାଃ ।
ଜଙ୍ଘନ୍ୟମାନାଃ ପରିୟନ୍ତି ମୂଢ଼ା
ଅନ୍ଧେନୈବ ନୀୟମାନା ଯଥାନ୍ଧାଃ ।।

—ମୁଣ୍ଡକ ଉପନିଷତ୍, ୧ମ ମୁଣ୍ଡକ, ୨ୟ ଖଣ୍ଡ, ୮ମ ଶ୍ଳୋକ ।

ମାନଙ୍କ ପ୍ରକୃତିର ଅନ୍ତଃସ୍ଥଳରେ ପ୍ରବେଶକରେ—ଏହାର ସମ୍ମୁଖରେ ସମସ୍ତ ଜଗତ୍ ଦଣ୍ଡାୟମାନ ହୋଇ କହେ—'ଏହା ହିଁ ସତ୍ୟ।' ଯେଉଁସବୁ ଆତ୍ମର୍ଷିମାନଙ୍କ ହୃଦୟରେ ଜ୍ଞାନ ଓ ସତ୍ୟ ସୂର୍ଯ୍ୟାଲୋକ ଭଳି ପ୍ରତିଭାତ, ସେମାନେ ଜଗତ୍ ମଧ୍ୟରେ ସର୍ବୋଚ୍ଚ ମହାପୁରୁଷ, ଆଉ ଜଗତର ଅଧିକାଂଶ ଲୋକ ତାଙ୍କୁ ଈଶ୍ୱର ବୋଲି ପୂଜା କରନ୍ତି। କିନ୍ତୁ ଆମେମାନେ ଅପେକ୍ଷାକୃତ ଅଳ୍ପଜ୍ଞମାନଙ୍କ ନିକଟରୁ ମଧ୍ୟ ଆଧ୍ୟାତ୍ମିକ ସାହାଯ୍ୟ ଲାଭ କରିପାରୁ। ତେବେ ଆମର ଏପରି ଅନ୍ତର୍ଦ୍ଦୃଷ୍ଟି ନାହିଁ ଯେ, ଆମେ ଆମର ଆଚାର୍ଯ୍ୟଙ୍କ ସମ୍ବନ୍ଧରେ ଯଥାର୍ଥ ବିଚାର କରିପାରିବା, ଏହି କାରଣରୁ ଗୁରୁଶିଷ୍ୟ ଉଭୟଙ୍କ ସମ୍ବନ୍ଧରେ କେତେଗୁଡ଼ିଏ ପରୀକ୍ଷା ଆବଶ୍ୟକ।

ଶିଷ୍ୟର ଏହି ଗୁଣଗୁଡ଼ିକ ଆବଶ୍ୟକ—ପବିତ୍ରତା, ପ୍ରକୃତ ଜ୍ଞାନପିପାସା ଓ ଅଧ୍ୟବସାୟ। ଅଶୁଦ୍ଧାତ୍ମା ପୁରୁଷ କଦାପି ପ୍ରକୃତ ଧାର୍ମିକ ହୋଇପାରେ ନାହିଁ। କାୟମନୋବାକ୍ୟରେ ପବିତ୍ର ନ ହେଲେ କେହି କଦାପି ଧାର୍ମିକ ହୋଇପାରେ ନାହିଁ। ଆଉ ଜ୍ଞାନତୃଷ୍ଣା ସମ୍ବନ୍ଧରେ ଏହା କୁହାଯାଇପାରେ ଯେ, ଆମେ ଯାହା ଚାହୁଁ ତାହା ପାଉଁ, ଏହା ଗୋଟିଏ ସନାତନ ସତ୍ୟ। ଆମେ ଯେଉଁ ବସ୍ତୁକୁ ଅନ୍ତରର ସହିତ ଅନୁସନ୍ଧାନ ନ କରୁ, ଆମେ ସେହି ବସ୍ତୁ ଲାଭ କରିପାରୁ ନାହିଁ। ଧର୍ମ ଲାଗି ପ୍ରକୃତ ବ୍ୟାକୁଳତା ବଡ଼ କଠିନ ଜିନିଷ—ଆମେ ସଚରାଚର ଏହାକୁ ଯେତେ ସହଜ ବୋଲି ମନେକରୁଁ, ତାହା ସେତେ ସହଜ ନୁହେଁ। କେବଳ ଧର୍ମକଥା ଶୁଣିଲେ ବା ଧର୍ମପୁସ୍ତକ ପଢ଼ିଲେ ଯେ ବାସ୍ତବିକ୍ ହୃଦୟରେ ଧର୍ମଭାବ ପ୍ରବଳ ହୋଇଛି, ତାହାର ପ୍ରମାଣ ହୁଏ ନାହିଁ। ଯେତେଦିନ ପର୍ଯ୍ୟନ୍ତ ପ୍ରାଣରେ ବ୍ୟାକୁଳତା ଜାଗରିତ ନ ହୁଏ ଏବଂ ଆମେ ପ୍ରବୃତ୍ତି ଉପରେ ଜୟଲାଭ କରି ନ ପାରୁ, ସେତେଦିନ ସଦାସର୍ବଦା ଅଭ୍ୟାସ ଓ ଆମର ପାଶବପ୍ରକୃତି ସହିତନିରନ୍ତର ସଂଗ୍ରାମ ଆବଶ୍ୟକ। ଏହା ଦୁଇ ଏକ ଦିନର କାର୍ଯ୍ୟ ନୁହେଁ, କତିପୟ ବର୍ଷ ବା କତିପୟ ଜନ୍ମର କର୍ମ ନୁହେଁ; ଶତ ଶତ ଜନ୍ମ ଧରି ଏହି ସଂଗ୍ରାମ ଚାଲିପାରେ। ସିଦ୍ଧି ଲାଭ କାହା ପକ୍ଷରେ ଅଳ୍ପକାଳ ମଧ୍ୟରେ ଘଟିପାରେ; କିନ୍ତୁ ଯଦି ଅନନ୍ତ କାଳ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ହୁଏ, ଧୈର୍ଯ୍ୟର ସହିତ ସେଥିପାଇଁ ପ୍ରସ୍ତୁତ ଥିବା ଆବଶ୍ୟକ। ଯେଉଁ ଶିଷ୍ୟ ଏପରି ଅଧ୍ୟବସାୟ ସହକାରେ ସାଧନାରେ ପ୍ରବୃତ୍ତ ହୁଏ, ତାହାର ସିଦ୍ଧି ଅବଶ୍ୟମ୍ଭାବୀ।

ଗୁରୁଙ୍କ ସମ୍ବନ୍ଧରେ ଏହା ହିଁ ବୁଝିବା ଆବଶ୍ୟକ ଯେ, ସେ ଯେପରି ଶାସ୍ତ୍ରର ମର୍ମଜ୍ଞ ହୋଇଥାନ୍ତି। ଜଗତ୍‌ରେ ସମସ୍ତେ ବେଦ-ବାଇବେଲ-କୋରାନ ପାଠରେ ଅନୁରକ୍ତ। ଏଗୁଡ଼ିକ ତ ଶବ୍ଦସମଷ୍ଟିମାତ୍ର—ଧର୍ମର କେତେ ଖଣ୍ଡ ଶୁଷ୍କ ଅସ୍ଥିମାତ୍ର। ଯେଉଁ ଗୁରୁ ଶବ୍ଦ ନେଇ ବେଶୀ ଘଣ୍ଟାଘାଣ୍ଟି କରନ୍ତି ଓ ମନକୁ କେବଳ ଶବ୍ଦର ବ୍ୟାଖ୍ୟା ଦ୍ୱାରା ଚାଳିତ କରନ୍ତି, ସେ ଭାବ ହରାଇ ପକାନ୍ତି। ଯେ ଶାସ୍ତ୍ରର ମର୍ମ ଜାଣନ୍ତି, ସେ ଯଥାର୍ଥ ଧର୍ମାଚାର୍ଯ୍ୟ। ଶାସ୍ତ୍ରର ଶବ୍ଦଜାଲ ଯେପରି ମହାବନସ୍ୱରୂପ, ମନୁଷ୍ୟ ଆପଣାକୁ ଏଥିମଧ୍ୟରେ ହରାଇ ଦିଏ, ପଥ ଖୋଜି ପାଏ ନାହିଁ। "ଶବ୍ଦଜାଲ ମହାବନ ସଦୃଶ, ଚିତ୍ତଭ୍ରମଣର କାରଣ।"[୧] "ଶବ୍ଦଯୋଜନା, ସୁନ୍ଦର ଭାଷାରେ ବକ୍ତୃତା ଓ ଶାସ୍ତ୍ରମର୍ମ ବ୍ୟାଖ୍ୟା କରିବାର ବିଭିନ୍ନ ଉପାୟ ପଣ୍ଡିତମାନଙ୍କର ବିଚାର ଓ ଆମୋଦର

[୧] ଶବ୍ଦଜାଲଂ ମହାରଣ୍ୟଂ ଚିତ୍ତଭ୍ରମଣକାରଣମ୍।

—ବିବେକଚୂଡ଼ାମଣି, ୬୦ ଶ୍ଳୋକ

ବିଷୟମାତ୍ର, ତାହାଦ୍ୱାରା ସିଦ୍ଧି ବା ମୁକ୍ତିଲାଭର ସହାୟତା ହୁଏ ନାହିଁ।"[୧] ଯେଉଁମାନେ ଧର୍ମ-ବ୍ୟାଖ୍ୟା ସମୟରେ ଏପରି ପ୍ରଣାଳୀ ଅବଲମ୍ବନ କରନ୍ତି, ସେମାନେ କେବଳ ଆପଣାର ପାଣ୍ଡିତ୍ୟ ଦେଖାଇବାକୁ ଇଚ୍ଛୁକ; ସେମାନଙ୍କର ଇଚ୍ଛା—ଲୋକମାନେ ଆମକୁ ମହାପଣ୍ଡିତ ବୋଲି ସମ୍ମାନ କରନ୍ତୁ। ଜଗତ୍‌ର କୌଣସି ପ୍ରଧାନ ଧର୍ମଗୁରୁ ଏପରି ଶାସ୍ତ୍ରର ନାନାବିଧ ବ୍ୟାଖ୍ୟାରେ ଅଗ୍ରସର ହୋଇ ନାହାନ୍ତି। ସେମାନେ ଶାସ୍ତ୍ରର ଶ୍ଳୋକାର୍ଥ ଯଥେଷ୍ଟ ବ୍ୟାଖ୍ୟା କରିବାକୁ କଦାପି ଚେଷ୍ଟା କରି ନାହାନ୍ତି। ଶବ୍ଦାର୍ଥ ଓ ଧାତ୍ୱର୍ଥ ଯେନ କ୍ରମାଗତ ମାରପେଞ୍ଚ କରି ନାହାନ୍ତି। ସେମାନେ କେବଳ ଜଗତ୍‌କୁ ଶାସ୍ତ୍ରର ମହାନ୍ ଭାବକୁ ଶିକ୍ଷା ଦେଇଛନ୍ତି। ଆଉ ଯେଉଁମାନଙ୍କର କିଛି ଶିଖାଇବାର ନାହିଁ, ସେମାନେ ହୁଏତ ଗୋଟିଏ ଶାସ୍ତ୍ରରୁ ଶବ୍ଦ ନେଇ ତାହା ଉପରେ ତିନି ଖଣ୍ଡ ପୁସ୍ତକ ରଚନା କଲେ। ସେହି ଶବ୍ଦର ଆଦି କିଏ, କିଏ ଏହି ଶବ୍ଦଟି ପ୍ରଥମେ ବ୍ୟବହାର କରିଥିଲେ, ସେ କଅଣ ଖାଉଥିଲେ, କେତେ ସମୟ ଶୋଉଥିଲେ, ଏହିପରି ବିଷୟ ଧରି ସେ ହୁଏତ ଆଲୋଚନା କରିଗଲେ।

ଭଗବାନ ଶ୍ରୀରାମକୃଷ୍ଣ ଗୋଟିଏ ଗଳ୍ପ କହନ୍ତି—"ଗୋଟିଏ ଆମ୍ବବଗିଚାକୁ କେତେଜଣ ଲୋକ ଭ୍ରମଣକରିବାକୁ ଯାଇଥିଲେ; ତାଙ୍କ ଭିତରେ ଯାହାର ବିଷୟବୁଦ୍ଧି ବେଶୀ, ସେ ବଗିଚାରେ ପ୍ରବେଶ କରି କେତୋଟି ଆମ୍ବଗଛ, କେଉଁ ଗଛରେ କେତେ ଆମ୍ବ ହୋଇଛି, ଗୋଟିଏ ଗୋଟିଏ ଡାଳରେ କେତେ ପତ୍ର, ବଗିଚାଟିର ଦାମ କେତେ ହୋଇପାରେ, ଇତ୍ୟାଦି ନାନାପ୍ରକାର ବିଚାର କରିବାକୁ ଲାଗିଲେ। ଅପର ବ୍ୟକ୍ତି ବଗିଚାର ମାଲିକ ସହିତ ଆଳାପ କରି ଗଛତଳେ ବସି ଗୋଟିଏ ଗୋଟିଏ ପଡ଼ୁଥିବା ଆମ୍ବ ଖାଇବାକୁ ଲାଗିଲେ। କହ ଦେଖି, କିଏ ବୁଦ୍ଧିମାନ୍? ଆମ୍ବ ଖାଅ, ପେଟ ପୂରିବ, କେବଳ ପତ୍ର ଗଣି ହିସାବକିତାବକରି ଲାଭ କ'ଣ?" ଏହି ଡାଳ-ପତ୍ରଗଣା ଓ ଅପରକୁ ଏହାଦ୍ୱାରା ସଂଖ୍ୟା ଜଣାଇବାର ଚେଷ୍ଟା ବିଲ୍କୁଲ ଗୁଡ଼ବାଦୁଅ। ଅବଶ୍ୟ ଏହାର ମଧ୍ୟ ଉପଯୋଗିତା ଅଛି, କିନ୍ତୁ ଧର୍ମରାଜ୍ୟରେ ନୁହେଁ। ଯେଉଁମାନେ ଏହିପରି ପତ୍ର ଗଣି ବୁଲନ୍ତି, ସେମାନଙ୍କ ମଧ୍ୟରୁ ଜଣେ ହେଲେ ଧର୍ମବୀରଙ୍କୁ ବାହାର କରିପାରିବା ନାହିଁ। ଧର୍ମ —ଯାହା ମାନବ ଜୀବନର ସର୍ବୋଚ୍ଚ ଲକ୍ଷ୍ୟ, ମନୁଷ୍ୟର ସର୍ବୋଚ୍ଚ ଗୌରବର ଜିନିଷ, ତହିଁରେ ପତ୍ରଗଣିବାରୂପ ଏତେ ପରିଶ୍ରମର ଆବଶ୍ୟକ ହୁଏ ନାହିଁ। ଯଦି ତୁମେ ଭକ୍ତ ହେବାକୁ ଚାହଁ, ତାହାହେଲେ କୃଷ୍ଣ ମଥୁରାରେ କି ବ୍ରଜରେ ଜନ୍ମିଥିଲେ, ସେ କଅଣ କରିଥିଲେ ବା ଠିକ୍ କେଉଁଦିନ ଗୀତା ପ୍ରକାଶ କରିଥିଲେ, ତାହା ଜାଣିବାର କୌଣସି ଆବଶ୍ୟକତା ନାହିଁ। ଗୀତାରେ କର୍ତ୍ତବ୍ୟ ଓ ପ୍ରେମ ସମ୍ବନ୍ଧୀୟ ଯେଉଁ ସୁନ୍ଦର ଶିକ୍ଷା ଅଛି, ଆଗ୍ରହର ସହିତ ତାହାର ଅନୁସରଣ କରିବା ତୁମର ଆବଶ୍ୟକ। ଏହା ସମ୍ବନ୍ଧରେ ବା ଏହାର ପ୍ରଣେତାଙ୍କ ସମ୍ବନ୍ଧରେ ଅନ୍ୟାନ୍ୟ ବିଶେଷ ବିବରଣ ଜାଣିବା କେବଳ ପଣ୍ଡିତମାନଙ୍କର ଆମୋଦର ବିଷୟ। ସେମାନେ ଯାହା ଚାହାଁନ୍ତି ତାହା ଯେନ ରହିଥାଆନ୍ତୁ। ସେମାନଙ୍କର ପାଣ୍ଡିତ୍ୟପୂର୍ଣ୍ଣ ତର୍କ ବିଚାରରେ 'ଶାନ୍ତିଃ

---

[୧] ବାଗ୍‌ବୈଖରୀ ଶବ୍ଦଝରୀ ଶାସ୍ତ୍ରବ୍ୟାଖ୍ୟାନକୌଶଳମ୍।
ବୈଦୁଷ୍ୟଂ ବିଦୁଷାଂ ତଦ୍‌ବତ୍ ଭୁକ୍ତୟେ ନ ତୁ ମୁକ୍ତୟେ॥
—ବିବେକଚୂଡ଼ାମଣି, ୫୮ ଶ୍ଳୋକ।

ଶାନ୍ତିଃ’ କହି ଆସ, ଆମେମାନେ ଆମ୍ବ ଖାଇବାରେ ଲାଗିବା ।

ଦ୍ୱିତୀୟତଃ, ଗୁରୁ ନିଷ୍ପାପ ହେବା ଆବଶ୍ୟକ । ଅନେକ ସମୟରେ ଲୋକେ କହିଥାଆନ୍ତି, “ଗୁରୁଙ୍କ ଚରିତ୍ର, ଗୁରୁ କଅଣ କରନ୍ତୁ ନ କରନ୍ତୁ, ସେସବୁ ଦେଖିବାର ପ୍ରୟୋଜନ କଅଣ ? ସେ ଯାହା କହନ୍ତି, ତାକୁ ଗ୍ରହଣ କରି ଆମକୁ କାର୍ଯ୍ୟ କରିବାକୁ ହେବ,” ଏ କଥା ଠିକ୍ ନୁହେଁ । ଗଣିତବିଜ୍ଞାନ, ରସାୟନ ବା ଅନ୍ୟ କୌଣସି ପଦାର୍ଥବିଜ୍ଞାନ ଶିଖାଇବାକୁ ହେଲେ ଶିକ୍ଷକ ଯାହା ହୁଅନ୍ତୁ ନା କାହିଁକି, କିଛି ଯାଏଆସେ ନାହିଁ । କାରଣ ଏଥିରେ କେବଳ ବୁଦ୍ଧିବୃତ୍ତିର ଚାଳନା —ବୁଦ୍ଧିବୃତ୍ତିକୁ କିଞ୍ଚିତ୍ ସତେଜ କରିବା ହିଁ ପ୍ରୟୋଜନ ହୁଏ । କିନ୍ତୁ ଅଧ୍ୟାତ୍ମବିଜ୍ଞାନର ଆଚାର୍ଯ୍ୟ ଅଶୁଦ୍ଧଚିତ୍ତ ହେଲେ ତାଙ୍କଠାରେ ଆଦୌ ଧର୍ମାଲୋକ ରହିପାରେ ନାହିଁ । ଅଶୁଦ୍ଧଚିତ୍ତ ବ୍ୟକ୍ତି ପୁଣି କି ଧର୍ମ ଶିଖାଇବେ ? ନିଜେ ଆଧ୍ୟାତ୍ମିକ ଶକ୍ତି ଉପଲବ୍ଧି କରିବାର ବା ଅପରଠାରେ ସଞ୍ଚାର କରାଇବାର ଏକମାତ୍ର ଉପାୟ ହୃଦୟ ଓ ମନର ପବିତ୍ରତା । ଯେତେ ଦିନ ଯାଏ ଚିତ୍ତଶୁଦ୍ଧି ହୋଇ ନାହିଁ, ସେତେଦିନଯାଏ ଭଗବଦ୍ଦର୍ଶନ ବା ସେହି ଅତୀନ୍ଦ୍ରିୟ ସତ୍ତାର ଆଭାସଜ୍ଞାନ ମଧ୍ୟ ଅସମ୍ଭବ । ସୁତରାଂ ଧର୍ମାଚାର୍ଯ୍ୟଙ୍କ ସମ୍ବନ୍ଧରେ ପ୍ରଥମେ ସେ କିଭଳି ଚରିତ୍ରର ଲୋକ, ତାହା ଦେଖିବା ଆବଶ୍ୟକ, ତାହାପରେ ସେ କଅଣ କହୁଛନ୍ତି, ତାହା ଦେଖିବାକୁ ହେବ । ତାଙ୍କର ସମ୍ପୂର୍ଣ୍ଣରୂପେ ଚିତ୍ତଶୁଦ୍ଧି ହେବା ଆବଶ୍ୟକ; ତାହାହେଲେ ତାଙ୍କ କଥାରେ ପ୍ରକୃତ ଗୁରୁତ୍ୱ ଥାଏ; କାରଣ ତାହାହେଲେ ସେ ପ୍ରକୃତ ଶକ୍ତିସଞ୍ଚାର କରାଇବାକୁ ଯୋଗ୍ୟ ହୋଇପାରିବେ । ନିଜ ଭିତରେ ଯଦି ଶକ୍ତି ନ ଥାଏ, ତେବେ ସେ ସଞ୍ଚାର କରିବେ କଅଣ ? ଗୁରୁଙ୍କ ମନ ଏପରି ପ୍ରବଳ ଆଧ୍ୟାତ୍ମିକ ସ୍ପନ୍ଦନବିଶିଷ୍ଟ ହେବା ଆବଶ୍ୟକ ଯେ, ତାହା ଯେପରି ସମବେଦନାବଶରେ ଶିଷ୍ୟଠାରେ ସଞ୍ଚାରିତ ହୋଇଯିବ । ଗୁରୁଙ୍କର ବାସ୍ତବିକ ଏହା ହିଁ କାର୍ଯ୍ୟ—କିଛି ସଞ୍ଚାର କରିବା, କେବଳ ଶିଷ୍ୟର ବୁଦ୍ଧିଶକ୍ତି ବା ଅନ୍ୟ କୌଣସି ଶକ୍ତିକୁ ଉତ୍ତେଜିତ କରିଦେବା ନୁହେଁ । ଅତି ସ୍ପଷ୍ଟ ଭାବରେ ବୁଝାଯାଏ ଯେ, ଗୁରୁଙ୍କଠାରୁ ଶିଷ୍ୟ ନିକଟକୁ ଯଥାର୍ଥରେ ଗୋଟିଏ ଶକ୍ତି ଆସୁଛି । ସୁତରାଂ ଗୁରୁଙ୍କର ଶୁଦ୍ଧଚିତ୍ତ ହେବା ଆବଶ୍ୟକ ।

ତୃତୀୟତଃ, ଗୁରୁଙ୍କ ଉଦ୍ଦେଶ୍ୟ କଅଣ, ଦେଖିବା ଆବଶ୍ୟକ । ଗୁରୁ ଯେପରି ଅର୍ଥ, ନାମ ବା ଯଶରୂପକ କୌଣସି ସ୍ୱାର୍ଥସିଦ୍ଧି ପାଇଁ ଧର୍ମଶିକ୍ଷା ଦେବାରେ ପ୍ରବୃତ୍ତ ନ ହୁଅନ୍ତି—ସମୁଦାୟ ମାନବଜାତି ପ୍ରତି ପବିତ୍ର ପ୍ରେମ ହିଁ ଯେପରି ତାଙ୍କର କାର୍ଯ୍ୟର ନିୟାମକ ହୁଏ । ଆଧ୍ୟାତ୍ମିକ ଶକ୍ତି ଶୁଦ୍ଧ ପ୍ରେମସୂତ୍ର ମଧ୍ୟରେ ସଞ୍ଚାରିତ କରାଯାଇପାରେ । କୌଣସି ପ୍ରକାର ସ୍ୱାର୍ଥପୂର୍ଣ୍ଣ ଭାବ, ଯଥା ଲାଭ ବା ଯଶର ଇଚ୍ଛା, ମୁହୂର୍ତ୍ତିକ ମଧ୍ୟରେ ଏହି ସୂତ୍ରକୁ ଛିନ୍ନ କରିପକାଏ । ଭଗବାନ୍ ପ୍ରେମ-ସ୍ୱରୂପ, ଆଉ ଯେ ଭଗବାନଙ୍କୁ ପ୍ରେମସ୍ୱରୂପ ବୋଲି ଜାଣିଛି, ସେ ମନୁଷ୍ୟକୁ ଶୁଦ୍ଧସତ୍ତ୍ୱ ଓ ଈଶ୍ୱର-ତତ୍ତ୍ୱ ଜାଣିବାକୁ ଶିକ୍ଷା ଦେଇପାରନ୍ତି ।

ଯଦି ଦେଖିବ ଗୁରୁଙ୍କଠାରେ ଏହିସବୁ ଲକ୍ଷଣଗୁଡ଼ିକ ବିଦ୍ୟମାନ, ତାହାହେଲେ ଜାଣିବ, ତୁମର କୌଣସି ଆଶଙ୍କା ନାହିଁ । ନଚେତ୍ ତାଙ୍କ ନିକଟରେ ଶିକ୍ଷାରେ ବିପଦ ଅଛି, କାରଣ ସେ ଯଦି ହୃଦୟରେ ସାଧୁଭାବ ସଞ୍ଚାର କରି ନ ପାରନ୍ତି, ତେବେ ହୁଏତ ଅସାଧୁଭାବ ସଞ୍ଚାର କରିବେ । ଏହି ବିପଦଠାରୁ ଆପଣାକୁ ସର୍ବତୋଭାବେ ସାବଧାନରେ ରଖିବାକୁ ହେବ । “ଯେ ବିଦ୍ୱାନ୍,

ନିଷ୍ପାପ, କାମଗନ୍ଧହୀନ ଯେ ଶ୍ରେଷ୍ଠ ବ୍ରହ୍ମବିତ୍,"[୧] ସେ ହିଁ ପ୍ରକୃତ ସଦ୍‌ଗୁରୁ । ଯାହା କୁହାଗଲା, ସେଥିରୁ ଏହା ସହଜରେ ପ୍ରତୀତ ହେବ ଯେ, ଧର୍ମରେ ଅନୁରାଗୀ ହେବାରେ, ଧର୍ମର ମର୍ମବୋଧ କରିବାରେ ଏବଂ ଏହାକୁ ଜୀବନରେ ପରିଣତ କରିବାର ଉପଯୋଗୀ ଶିକ୍ଷା ଯେ କୌଣସି ଲୋକଠାରୁ ମିଳେ ନାହିଁ । "ପର୍ବତ ନିକଟରୁ ଧର୍ମୋପଦେଶ ଶ୍ରବଣ, କଲନାଦିନୀ ସ୍ରୋତସ୍ୱିନୀରେ ଗ୍ରନ୍ଥପାଠ ଓ ସକଳ ବିଷୟରେ ଶୁଭମୟ ଦର୍ଶନ,"[୨] ଆଲଙ୍କାରିକ ବର୍ଣ୍ଣନା ହିସାବରେ ସତ୍ୟ ହୋଇପାରେ; କିନ୍ତୁ ଯେଉଁମାନଙ୍କର ନିଜ ଭିତରେ ଅପରିସ୍ଫୁଟ ଭାବରେ ସୁଦ୍ଧା ଧର୍ମର ବୀଜ ନିହିତ ନାହିଁ, କେହି ହେଲେ ତାକୁ ସାମାନ୍ୟ ଟିକିଏ ତତ୍ତ୍ୱଜ୍ଞାନ ଦେଇପାରେ ନାହିଁ । ପର୍ବତ, ନଦୀ ଆଦି କାହାକୁ କଣ ଶିକ୍ଷା ଦେଇ ପାରନ୍ତି ? ଯାହାଙ୍କର ଅନ୍ତରର ପବିତ୍ର ମନ୍ଦିରାଭ୍ୟନ୍ତରସ୍ଥିତ କମଳ ଫୁଟି ଉଠିଛି, ସେହି ଆତ୍ମାଙ୍କୁ । ଆଉ ଯେଉଁ ଆଲୋକରେ ଏହି କମଳ ସୁନ୍ଦର ରୂପେ ଫୁଟି ଉଠେ ତାହା ବ୍ରହ୍ମବିତ୍ ସଦ୍‌ଗୁରୁଙ୍କର ହିଁ ଜ୍ଞାନାଲୋକ । ଯେତେବେଳେ ହୃତ୍ପଦ୍ମ ଏହି-ରୂପେ ପ୍ରସ୍ଫୁଟିତ ହୁଏ, ସେତେବେଳେ ସେ ପର୍ବତ, ନଦୀ, ତାରା, ସୂର୍ଯ୍ୟ, ଚନ୍ଦ୍ର ଅଥବା ଏହି ବ୍ରହ୍ମମୟ ବିଶ୍ୱରେ ଯାହା କିଛି ଅଛି, ତାହାଠାରୁ ଶିକ୍ଷା ପାଇପାରନ୍ତି । କିନ୍ତୁ ଯାହାଙ୍କର ହୃତ୍ପଦ୍ମ ଅଦ୍ୟାପି ପ୍ରସ୍ଫୁଟିତ ହୋଇ ନାହିଁ, ସେ ଏହି ସକଳ ପର୍ବତାଦି ବ୍ୟତୀତ ଆଉ କିଛି ଦେଖି ପାରିବେ ନାହିଁ । ଅନ୍ଧର ଚିତ୍ରଶାଳିକାକୁ ଯିବାରେ କି ଫଳ ? ପ୍ରଥମେ ତାକୁ ଚକ୍ଷୁଦାନ କର, ତେବେ ସେ ସେଠାର ବସ୍ତୁସମୂହରୁ କି ଶିକ୍ଷା ମିଳିବ, ବୁଝି ପାରିବ ।

ଗୁରୁ ହିଁ ଧର୍ମଶିକ୍ଷାର୍ଥୀର ଚକ୍ଷୁ ଖୋଲି ଦିଅନ୍ତି । ସୁତରାଂ କୌଣସି ବ୍ୟକ୍ତିଙ୍କ ସହିତ ତାଙ୍କ ବଂଶଧରଙ୍କର ଯେଉଁ ସମ୍ବନ୍ଧ, ଗୁରୁଙ୍କ ସହିତ ଆମର ମଧ୍ୟ ଠିକ୍ ସେହି ସମ୍ବନ୍ଧ । ଗୁରୁଙ୍କ ପ୍ରତି ବିଶ୍ୱାସ, ବିନୟନମ୍ର ଆଚରଣ, ତାଙ୍କର ଆଜ୍ଞାବହତା ଓ ତାଙ୍କ ପ୍ରତି ଗଭୀର ଶ୍ରଦ୍ଧା ବ୍ୟତୀତ ଆମ ହୃଦୟରେ ଧର୍ମର ବିକାଶ ହୋଇପାରେ ନାହିଁ । ଆଉ ମଧ୍ୟ ଏହା ବିଶେଷ ଲକ୍ଷ୍ୟ କରିବାର କଥା ଯେ, ଯେଉଁସବୁ ଦେଶରେ ଗୁରୁଶିଷ୍ୟଙ୍କର ଏତଦ୍‌ବିଧ ସମ୍ବନ୍ଧ ଅଛି, କେବଳ ସେହିସବୁ ଦେଶରେ ଅସାଧାରଣ ଧର୍ମବୀରଗଣ ଜନ୍ମିଛନ୍ତି; ଆଉ ଯେଉଁ ଦେଶମାନଙ୍କରେ ଗୁରୁଶିଷ୍ୟର ଏହି ସମ୍ବନ୍ଧ ନାହିଁ, ଗୁରୁ କେବଳ ବକ୍ତାମାତ୍ର—ନିଜର ପ୍ରାପ୍ୟ ଦରକୁ ହିଁ ସବୁବେଳେ ଦୃଷ୍ଟି, ଆଉ ଶିଷ୍ୟ ଗୁରୁଙ୍କ କଥାଗୁଡ଼ିକଦ୍ୱାରା କେବଳ ମସ୍ତକ ପରିପୂର୍ଣ୍ଣ କରନ୍ତି ଏବଂ ଅବଶେଷରେ ଉଭୟେ ନିଜ ନିଜର ପଥ ଦେଖନ୍ତି, ସେହିସବୁ ସ୍ଥଳରେ ଧର୍ମର ଘର ଶୂନ୍ୟ ହୋଇ କହିଲେ ଚଳେ । ଶକ୍ତି ସଞ୍ଚାର କରିବାର କେହି ନାହିଁ, ଗ୍ରହଣ କରିବାର ମଧ୍ୟ କେହି ନାହିଁ । ଧର୍ମ ଏସବୁ ଲୋକଙ୍କ ନିକଟରେ ଯେପରି ବ୍ୟବସାୟରୂପେ ଛିଡ଼ା ହୁଏ । ସେମାନେ ମନେ କରନ୍ତି, ଏହା ଅର୍ଥଦ୍ୱାରା କ୍ରୟ କରିବାର

୧ ଶ୍ରୋତ୍ରିୟୋଽବୃଜିନୋଽକାମହତୋ ଯୋ ବ୍ରହ୍ମବିତ୍ତମଃ ।
—ବିବେକଚୂଡ଼ାମଣି, ୩୩ ଶ୍ଲୋକ ।

୨ And this our life exempt from public haunt
Finds tongues in trees, books in the running brooks
Sermons in stones and good in every thing.
—Shakespeare's 'As You Like It', Act II, Sc. I.

କଠିନ । ଈଶ୍ୱରଙ୍କ ଇଚ୍ଛାରେ ଧର୍ମ ଏତେ ସୁଲଭ ହୋଇଥିଲେ ବଡ଼ ସୁଖର ବିଷୟ ହୋଇଥାଆନ୍ତା । ତେବେ ଦୁର୍ଭାଗ୍ୟକ୍ରମେ ତାହା ହେବାର ନୁହେଁ ।

ଧର୍ମ—ସର୍ବୋଚ୍ଚ ଜ୍ଞାନସ୍ୱରୂପ ଯେ ଧର୍ମ ତାହା ଧନ ବିନିମୟରେ କିଣିବାର ଜିନିଷ ନୁହେଁ, ଗ୍ରନ୍ଥରୁ ମଧ୍ୟ ଏହା ମିଳେ ନାହିଁ । ଜଗତ୍‌ରେ ସବୁଠି ଘୁରି ଆସିପାର, ହିମାଳୟ ଆଲ୍‌ପସ୍ କକେସସ ପ୍ରଭୃତି ଘୋର ଡିଙ୍ଗି ଦେଇ ପାର, ସମୁଦ୍ରର ଅତଳ ତଳ ଆଲୋଡ଼ନ କରିପାର, ତିବ୍ବତର ପ୍ରତିକୋଣରେ ଅଥବା ଗୋବି ମରୁଭୂମିର ଚତୁର୍ଦ୍ଦିଗ ତନ୍ନ ତନ୍ନ କରି ଦେଖିପାର; କିନ୍ତୁ ଯେତେଦିନଯାଏ ତୁମର ହୃଦୟ ଏହାକୁ ଗ୍ରହଣ କରିବାକୁ ଉପଯୁକ୍ତ ହୋଇନାହିଁ ଏବଂ ଯେତେଦିନଯାଏ ତୁମେ ଗୁରୁଲାଭ କରିନାହଁ, କେଉଁଠାରେ ହେଲେ ତାହା ଖୋଜି ପାଇବ ନାହିଁ । ବିଧାତୃନିର୍ଦ୍ଦିଷ୍ଟ ଏହି ଗୁରୁ ଯେତେବେଳେ ଲାଭ କରିବ, ସଙ୍ଗେ ସଙ୍ଗେ ବାଳକବତ୍ ବିଶ୍ୱାସ ଓ ସରଳତାରେ ତାଙ୍କ ନିକଟରେ ପ୍ରାଣ ଖୋଲିଦିଅ । ତାଙ୍କୁ ସାକ୍ଷାତ୍ ଈଶ୍ୱରସ୍ୱରୂପ ଦେଖ । ଯେଉଁମାନେ ଏହିପରି ପ୍ରେମ ଓ ଶ୍ରଦ୍ଧାସମ୍ପନ୍ନ ହୋଇ ସତ୍ୟାନୁସନ୍ଧାନ କରନ୍ତି, ସେମାନଙ୍କ ନିକଟରେ ସତ୍ୟର ଭଗବାନ ସତ୍ୟ, ଶିବ ଓ ସୌନ୍ଦର୍ଯ୍ୟର ଅଲୌକିକ ତତ୍ତ୍ୱସମୂହ ପ୍ରକାଶ କରନ୍ତି ।

## ଅବତାର

ଯେଉଁଠାରେ ଲୋକମାନେ ଈଶ୍ୱରଙ୍କର ନାମାନୁକୀର୍ତ୍ତନ କରନ୍ତି, ସେହି ସ୍ଥାନ ହିଁ ପବିତ୍ର । ଯେଉଁ ବ୍ୟକ୍ତି ତାଙ୍କର ନାମୋଚ୍ଚାରଣ କରନ୍ତି, ସେ ଆହୁରି କେତେ ପବିତ୍ର, ବିବେଚନା କର । ସୁତରାଂ ଯାହାଙ୍କ ନିକଟରୁ ଆମେ ଆଧ୍ୟାତ୍ମିକ ଶିକ୍ଷା ପ୍ରାପ୍ତ ହେଉ, ତାଙ୍କ ନିକଟକୁ କେତେଦୂର ଭକ୍ତିର ସହିତ ଅଗ୍ରସର ହେବା ଉଚିତ । ଏପରି ଶ୍ରେଷ୍ଠତମ ଧର୍ମାଚାର୍ଯ୍ୟଗଣଙ୍କ ସଂଖ୍ୟା ଜଗତରେ ଖୁବ୍ ବିରଳ ସତ୍ୟ, କିନ୍ତୁ ଜଗତ୍ ସମ୍ପୂର୍ଣ୍ଣ ଭାବରେ ଏହି ସକଳ ଆଚାର୍ଯ୍ୟବିରହିତ ନୁହେଁ । ଯେଉଁ ମୁହୂର୍ତ୍ତରେ ଏହା ସମ୍ପୂର୍ଣ୍ଣ ଆଚାର୍ଯ୍ୟଶୂନ୍ୟ ହେବ, ସେହି ମୁହୂର୍ତ୍ତରେ ଏହା ଏକ ଭୟାନକ ନରକକୁଣ୍ଡରେ ପରିଣତ ହେବ ଓ ବିନାଶ ପଥରେ ଅଗ୍ରସର ହେବ । ଏମାନେ ମାନବଜୀବନୋଦ୍ୟାନର ସୁନ୍ଦରତମ ପୁଷ୍ପସ୍ୱରୂପ ଏବଂ 'ଅହେତୁକ ଦୟାସିନ୍ଧୁ ।'[୧] ଶ୍ରୀକୃଷ୍ଣ ଭାଗବତରେ କହିଛନ୍ତି, "ମୋତେ ଆଚାର୍ଯ୍ୟ ବୋଲି ଜାଣ ।"[୨]

ସାଧାରଣ ଗୁରୁଶ୍ରେଣୀଠାରୁ ଉନ୍ନତ ଆଉ ଏକ ଶ୍ରେଣୀର ଗୁରୁ ଅଛନ୍ତି—ଈଶ୍ୱରଙ୍କର ଅବତାରଗଣ । ଏମାନେ ସ୍ପର୍ଶ ଦ୍ୱାରା ଏପରି କି କେବଳମାତ୍ର ଇଚ୍ଛା ଦ୍ୱାରା ହିଁ ଅପର ଭିତରେ ଭଗବଦ୍‌ଭାବ ସଞ୍ଚାର କରାଇ ଦେଇପାରନ୍ତି । ସେମାନଙ୍କ ଇଚ୍ଛାରେ ଅତି ଦୁରାଚାର ବ୍ୟକ୍ତି ମଧ୍ୟ

---

୧ ବିବେକଚୂଡ଼ାମଣି, ୩୫ ଶ୍ଳୋକ ।

୨ ଆଚାର୍ଯ୍ୟଂ ମାଂ ବିଜାନୀୟାତ୍—ଇତ୍ୟାଦି ।

—ଶ୍ରୀମଦ୍‌ଭାଗବତ, ୧୧ଶ ସ୍କନ୍ଧ, ୧୭ ଅଧ୍ୟାୟ, ୨୭ ଶ୍ଳୋକ ।

ମୁହୂର୍ତ୍ତିକ ମଧ୍ୟରେ ସାଧୁରୂପେ ପରିଣତ ହୁଏ । ଏମାନେ ସକଳ ଗୁରୁଙ୍କ ଗୁରୁ, ମନୁଷ୍ୟମାନଙ୍କ ମଧ୍ୟରେ ଭଗବାନଙ୍କର ଶ୍ରେଷ୍ଠ ଅଭିବ୍ୟକ୍ତି । ଆମେମାନେ ସେମାନଙ୍କ ମାର୍ଗ ଛଡ଼ା ଅନ୍ୟ ଉପାୟରେ ଭଗବାନଙ୍କୁ ଦେଖିପାରୁ ନାହିଁ । ଆମେମାନେ ସେମାନଙ୍କୁ ଉପାସନା ନ କରି ରହିପାରିବା ନାହିଁ, ଏବଂ କେବଳ ଏହି ଆତ୍ମର୍ଷିମାନଙ୍କୁ ହିଁ ଆମେ ଉପାସନା କରିବାକୁ ବାଧ୍ୟ ।

ଏହିସବୁ ନରରୂପଧାରୀ ଈଶ୍ୱର ବ୍ୟତୀତ ଭଗବାନଙ୍କୁ ଦେଖିବା ପାଇଁ ଆମମାନଙ୍କର ଅନ୍ୟ କୌଣସି ଉପାୟ ନାହିଁ । ଆମେ ଯଦି ଅନ୍ୟ କୌଣସି ରୂପରେ ତାଙ୍କୁ ଦେଖିବାକୁ ଇଚ୍ଛାକରୁ, ତେବେ ଆମେ ଗୋଟାଏ କିମ୍ଭୂତକିମାକାର ଜୀବ ଗଠନ କରି ପକାଉଁ ଏବଂ ଏହାକୁ ହିଁ ପ୍ରକୃତ ଈଶ୍ୱର ବୋଲି ମନେକରୁଁ । ଗଳ୍ପ ଅଛି—ଜଣେ ଅନାଡ଼ି ବ୍ୟକ୍ତି ଶିବ ଗଢ଼ିବାକୁ ଅନେକ ଦିନ ଚେଷ୍ଟା କରି ଶେଷରେ ଗୋଟିଏ ବାନର ଗଢ଼ିଥିଲା । ସେହିପରି ଭଗବାନଙ୍କୁ ନିର୍ଗୁଣ ପୂର୍ଣ୍ଣସ୍ୱରୂପରେ ଯେତେବେଳେ 'ଆମେ ଭାବିବାକୁ ଯାଉ, ସେତେବେଳେ ସମ୍ପୂର୍ଣ୍ଣ ଅକୃତକାର୍ଯ୍ୟ ହୋଇପଡ଼ୁ, କାରଣ ଯେତେଦିନ ଯାଏ ଆମେ ମନୁଷ୍ୟ ଅଛୁଁ, ସେତେଦିନ ଯାଏ ଆମେ ତାଙ୍କୁ ମନୁଷ୍ୟଠାରୁ ଉଚ୍ଚତର ବୋଲି କଦାପି ଭାବି ପାରିବୁ ନାହିଁ । ଅବଶ୍ୟ ଏପରି ସମୟ ଆସିବ, ଯେତେବେଳେ ଆମେ ମନୁଷ୍ୟପ୍ରକୃତି ଅତିକ୍ରମ କରି ତାଙ୍କର ସ୍ୱରୂପବୋଧ ବିଷୟରେ ସମର୍ଥ ହେବୁ; କିନ୍ତୁ ଯେତେଦିନଯାଏ ମନୁଷ୍ୟ ଥିବୁ, ସେତେଦିନ ମନୁଷ୍ୟ ଭିତରେ ଓ ମନୁଷ୍ୟ-ରୂପରେ ହିଁ ତାଙ୍କୁ ଉପାସନା କରିବାକୁ ହେବ । ଯାହା କୁହ ନା କାହିଁକି, ଯେତେ ଚେଷ୍ଟା କର ନା କାହିଁକି, ଭଗବାନଙ୍କୁ ମନୁଷ୍ୟ ଛଡ଼ା ଅନ୍ୟ କିଛି ଭାବିପାର ନାହିଁ । ଈଶ୍ୱର ସମ୍ବନ୍ଧରେ—ଜଗତର ସକଳ ବସ୍ତୁ ସମ୍ବନ୍ଧରେ ମଧ୍ୟ ଖୁବ୍ ଯୁକ୍ତିତର୍କସମନ୍ୱିତ ବକ୍ତୃତା ଦେଇପାର, ଖୁବ୍ ଯୁକ୍ତିବାଦୀ ହୋଇପାର, ଆଉ "ଭଗବାନଙ୍କର ଏହି ସକଳ ମନୁଷ୍ୟ ଅବତାରର କଥା ସବୁ ଭ୍ରମାତ୍ମକ" ଏହାକୁ ଏପରି ଭାବରେ ପ୍ରମାଣ କରିପାର ଯହିଁରେ ତୁମର ସମ୍ପୂର୍ଣ୍ଣ ତୃପ୍ତି ହେବ; କିନ୍ତୁ ସହଜବୁଦ୍ଧିରେ କଣ କହିବ ଆରେ ଭାବିଲ ଦେଖି । ଏହିପରି ଅଦ୍ଭୁତ ବିଚାରବୁଦ୍ଧିଦ୍ୱାରା କଣ ଲବ୍ଧ ହୁଏ ? କିଛି ନୁହେଁ— ଶୂନ୍ୟ, କେବଳ କେତେଗୁଡ଼ିଏ ବାକ୍ୟାଡ଼ମ୍ବର ମାତ୍ର । ବର୍ତ୍ତମାନ-ଠାରୁ ଯଦି କୌଣସି ଲୋକ ଏହିପରି ଅବତାରପୂଜା ବିରୋଧରେ ମହାଯୁକ୍ତିତର୍କ ସହିତ ବକ୍ତୃତା କରୁଛନ୍ତି ଦେଖ, ତେବେ ତାଙ୍କର ହାତ ଧରି ଜିଜ୍ଞାସା କର—ଭାଇ, ତୁମର ଈଶ୍ୱରଧାରଣା କଅଣ ? ସର୍ବଶକ୍ତିମତ୍ତା, ସର୍ବବ୍ୟାପକତା ଓ ଏତଦ୍‌ବିଧ ଶବ୍ଦଦ୍ୱାରା କଣ ବୁଝାଏ, ତାହା ସେ ଏହି ଶବ୍ଦଗୁଡ଼ିକର ବନାନ ବ୍ୟତୀତ ଆଉ ଅଧିକ କଣ ବୁଝନ୍ତି ? ଏହି ଶବ୍ଦମାନଙ୍କଦ୍ୱାରା ତାଙ୍କ ମନରେ କୌଣସି ଭାବବିଶେଷର ଉଦୟ ହୁଏ ନାହିଁ । ସେ ଏଗୁଡ଼ିକର ଅର୍ଥସ୍ୱରୂପରେ ଏପରି କୌଣସି ଭାବ ବ୍ୟକ୍ତ କରିପାରନ୍ତି ନାହିଁ, ଯହିଁରେ ତାଙ୍କର ମାନବୀୟ ପ୍ରକୃତିର କୌଣସି ସମ୍ପର୍କ ନାହିଁ । ଏ ବିଷୟରେ ରାସ୍ତାରେ ଯେଉଁ ଲୋକଟା ଖଣ୍ଡେ ସୁଦ୍ଧା ପୁସ୍ତକ ପଢ଼େ ନାହିଁ, ତାହା ସହିତ ଏହାଙ୍କର କିଛିମାତ୍ର ପ୍ରଭେଦ ନାହିଁ । ତେବେ ସେ ଲୋକଟା ଶାନ୍ତପ୍ରକୃତି, ଜଗତର ଶାନ୍ତିଭଙ୍ଗ କରେ ନାହିଁ; କିନ୍ତୁ ଏହି ଲମ୍ବା ଚୌଡ଼ା ବାକ୍ୟବ୍ୟୟକାରୀ ବ୍ୟକ୍ତି ସମାଜରେ ଅଶାନ୍ତି ଓ ଦୁଃଖ ଆନୟନ କରନ୍ତି । ବାସ୍ତବିକ୍ ପ୍ରତ୍ୟକ୍ଷାନୁଭୂତି ବ୍ୟତୀତ ଧର୍ମ ଧର୍ମନାମର ଯୋଗ୍ୟ ନୁହେଁ । ସୁତରାଂ ବୃଥା ବାକ୍ୟବ୍ୟୟ ଓ ପ୍ରତ୍ୟକ୍ଷାନୁଭୂତି ମଧ୍ୟରେ ଆମେ ବିଶେଷ ପ୍ରଭେଦ ଦେଖିବା

ଆବଶ୍ୟକ । ଆତ୍ମାର ଗଭୀରତମ ପ୍ରଦେଶରେ ଆମେ ଯାହା ଅନୁଭବ କରୁଁ, ତାହାକୁ ପ୍ରତ୍ୟକ୍ଷାନୁଭୂତି କହୁଁ ; ଏ ବିଷୟରେ 'ସହଜ' ଜ୍ଞାନ ଯେତେ ଦୁର୍ଲଭ, ଆଉ କିଛି ସେତେ ନୁହେଁ ।

ଆମମାନଙ୍କର ବର୍ତ୍ତମାନ ପ୍ରକୃତି ଯେପରି, ସେଥିରେ ଆମମାନଙ୍କୁ ବାଧ୍ୟ ହୋଇ ଭଗବାନଙ୍କୁ ମନୁଷ୍ୟରୂପରେ ଦେଖିବାକୁ ହେବ । ମନେକର, ମହିଷମାନଙ୍କର ଭଗବାନଙ୍କୁ ପୂଜା କରିବାର ଇଚ୍ଛା ହେଲା—ସେମାନଙ୍କର ସ୍ୱଭାବ ଅନୁଯାୟୀ ସେମାନେ ଭଗବାନଙ୍କୁ ଗୋଟିଏ ବୃହତ୍ ମହିଷ ଭାବରେ ଦେଖିବେ । ମତ୍ସ୍ୟ ଭଗବାନଙ୍କ ଆରାଧନେଚ୍ଛୁ ହେଲେ ତାଙ୍କୁ ସେମାନେ ଗୋଟିଏ ବୃହତ୍ ମତ୍ସ୍ୟରୂପେ କଳ୍ପନା କରିବେ । ମନୁଷ୍ୟକୁ ମଧ୍ୟ ଭଗବାନଙ୍କୁ ମନୁଷ୍ୟ ରୂପରେ ଭାବିବାକୁ ହେବ । ଆଉ ମନେକର ନା ଯେ, ଏହି ସକଳ ବିଭିନ୍ନ ଧାରଣା କଳ୍ପନାସମ୍ଭୂତ ମାତ୍ର । ମନୁଷ୍ୟ, ମହିଷ, ମତ୍ସ୍ୟ ଏଗୁଡ଼ିକ ଯେପରି ଭିନ୍ନ ଭିନ୍ନ ପାତ୍ରସ୍ୱରୂପ—ସମସ୍ତେ ଭଗବତ୍-ସମୁଦ୍ରରେ ନିଜ ନିଜର ଜଳଧାରଣ ଶକ୍ତି ଓ ଆକୃତି ଅନୁସାରେ ପୂର୍ଣ୍ଣ ହୋଇଛନ୍ତି । ମନୁଷ୍ୟ-ଠାରେ ଏହି ଜଳ ମନୁଷ୍ୟ ଆକାର ଧାରଣ କଲା, ମହିଷଠାରେ ମହିଷ ଆକାର ଓ ମତ୍ସ୍ୟଠାରେ ମତ୍ସ୍ୟାକାର ଧାରଣ କଲା । ଏହି ପ୍ରତ୍ୟେକ ପାତ୍ରରେ ସେହି ଏକ ଈଶ୍ୱରସମୁଦ୍ରର ଜଳ ରହିଛି । ମନୁଷ୍ୟ ଯାହାକୁ ମନୁଷ୍ୟ ରୂପରେ ଦେଖିବ ଏବଂ ତିର୍ଯ୍ୟଗ୍‌ଜାତିର ଯଦି ଭଗବତ୍‌ସମ୍ବନ୍ଧୀୟ କୌଣସିପ୍ରକାର ଜ୍ଞାନ ଥାଏ, ତେବେ ସେମାନେ ନିଜ ନିଜର ଧାରଣାନୁରୂପ ପଶୁ ଆକାରରେ ତାଙ୍କୁ ଭାବିବେ । ଅତଏବ ଆମେମାନେ ଭଗବାନଙ୍କୁ ମନୁଷ୍ୟରୂପରେ ନ ଦେଖି ରହିପାରିବା ନାହିଁ । ସୁତରାଂ ଆମମାନଙ୍କୁ ତାଙ୍କୁ ମନୁଷ୍ୟରୂପରେ ହିଁ ଉପାସନା କରିବାକୁ ହେବ । ଅନ୍ୟ କୌଣସି ପଥ ନାହିଁ ।

ଦୁଇ ପ୍ରକାରର ଲୋକ ଭଗବାନଙ୍କୁ ମନୁଷ୍ୟରୂପରେ ଉପାସନା କରନ୍ତି ନାହିଁ । ପ୍ରଥମ—ନରପଶୁଗଣ, ଯେଉଁମାନଙ୍କର କୌଣସି ପ୍ରକାର ଧର୍ମଜ୍ଞାନ ନାହିଁ, ଦ୍ୱିତୀୟ—ପରମହଂସଗଣ, ଯେଉଁମାନେ ମନୁଷ୍ୟସୁଲଭ ସମସ୍ତ ଦୌର୍ବଲ୍ୟ ଅତିକ୍ରମ କରି ମାନବପ୍ରକୃତିର ସୀମା ଅତିକ୍ରମ କରିଯାଇଛନ୍ତି । ସମୁଦାୟ ପ୍ରକୃତି ସେମାନଙ୍କର ଆତ୍ମାସ୍ୱରୂପ ହୋଇଯାଇଛି । ସେହିମାନେ କେବଳ ଭଗବାନଙ୍କୁ ନିଜ ନିଜ ସ୍ୱରୂପରେ ପୂଜା କରିପାରନ୍ତି । ଅନ୍ୟସବୁ ବିଷୟରେ ଯେପରି, ଏଠାରେ ମଧ୍ୟ ସେପରି ଦୁଇଟି ଚୂଡ଼ାନ୍ତ ଭାବ ଏକ ରୂପରେ ଦେଖାଯାଏ । ଅତିଶୟ ଅଜ୍ଞାନ ଓ ପରମ ଜ୍ଞାନୀ ଉଭୟେ ଉପାସନା କରନ୍ତି ନାହିଁ; ନରପଶୁଗଣ ଅଜ୍ଞାନ ବୋଲି ଉପାସନା କରନ୍ତି ନାହିଁ, ଆଉ ଜୀବନ୍ମୁକ୍ତ ପୁରୁଷଗଣ ସର୍ବଦା ଆତ୍ମା ମଧ୍ୟରେ ପରମାତ୍ମାଙ୍କୁ ଅନୁଭବ କରୁଛନ୍ତି ବୋଲି ସେମାନଙ୍କର ଆଉ ସ୍ୱତନ୍ତ୍ର ଉପାସନାର ପ୍ରୟୋଜନ ହୁଏ ନାହିଁ । ଯେଉଁ ବ୍ୟକ୍ତି ଏହି ଦୁଇ ଚୂଡ଼ାନ୍ତଭାବର ମଧ୍ୟାବସ୍ଥାରେ ଅବସ୍ଥିତ, ଅଥଚ କହେ ମୁଁ ଭଗବାନଙ୍କୁ ମନୁଷ୍ୟରୂପରେ ପୂଜା କରିବାକୁ ଇଚ୍ଛା କରେ ନାହିଁ, ସେ ବ୍ୟକ୍ତିକୁ ଟିକିଏ ବିଶେଷ ଯତ୍ନର ସହିତ ତତ୍ତ୍ୱାବଧାନ କରିବା ଆବଶ୍ୟକ । ତାହା ପ୍ରତି କଠୋରତାର ଭାଷା ପ୍ରୟୋଗ ନ କଲେ ତାହାକୁ ପ୍ରଳାପ-ଭାଷୀ ବୋଲି କହିବାକୁ ହେବ । ତାହାର ଧର୍ମ ବିକୃତମସ୍ତିଷ୍କ ଓ ମସ୍ତିଷ୍କହୀନ ନରର ଉପଯୁକ୍ତ ।

ଭଗବାନ ମନୁଷ୍ୟର ଦୁର୍ବଳତା ବୁଝନ୍ତି ଏବଂ ମନୁଷ୍ୟର ହିତ ପାଇଁ ମନୁଷ୍ୟରୂପରେ ଅବତୀର୍ଣ୍ଣ ହୁଅନ୍ତି । (ସ୍ୱସ୍ୟ ପରମେଶ୍ୱରସ୍ୟ ଅପି ଇଚ୍ଛାବଶାନ୍ମାୟାମୟଂ ରୂପଂ ସାଧକାନୁଗ୍ରହାର୍ଥମ୍ ।

ଶାଙ୍କରଭାଷ୍ୟ, ବେଦାନ୍ତସୂତ୍ର, ୧।୧।୨୦) "ଯେତେବେଳେ ଧର୍ମର ଗ୍ଲାନି ଓ ଅଧର୍ମର ଅଭ୍ୟୁତ୍ଥାନ ହୁଏ, ସେତେବେଳେ ମୁଁ ଆପଣାକୁ ସୃଜନ କରିଥାଏ । ସାଧୁମାନଙ୍କର ରକ୍ଷା, ପାପୀମାନଙ୍କର ଦୁଷ୍କୃତିନାଶ ଓ ଧର୍ମସଂସ୍ଥାପନ ନିମିତ୍ତ ମୁଁ ଯୁଗେ ଯୁଗେ ଜନ୍ମଗ୍ରହଣ କରିଥାଏ ।"[୧] "ଅଜ୍ଞ ବ୍ୟକ୍ତି-ମାନେ ଜଗତର ଈଶ୍ୱର ମୋର ପ୍ରକୃତ ସ୍ୱରୂପ ନ ଜାଣି ମନୁଷ୍ୟରୂପଧାରୀ ମୋତେ ଉପହାସ କରନ୍ତି ।"[୨]

ଭଗବାନ ଶ୍ରୀକୃଷ୍ଣ ଗୀତାରେ ଅବତାର ସମ୍ବନ୍ଧରେ ଏହି ସକଳ କଥା କହିଛନ୍ତି । ଭଗବାନ ଶ୍ରୀରାମକୃଷ୍ଣଦେବ କହିଛନ୍ତି, "ଯେତେବେଳେ ପ୍ରବଳ ବନ୍ୟା ଆସେ, ସେତେବେଳେ ସମସ୍ତ କ୍ଷୁଦ୍ର କ୍ଷୁଦ୍ର ନଦୀ ଓ ତଡ଼ାଗ ଜଳ ନିଜର ସୀମାପର୍ଯ୍ୟନ୍ତ ପୂର୍ଣ୍ଣ ହୋଇଯାଆନ୍ତି । ସେହିପରି ଯେତେବେଳେ ଅବତାର ଆସନ୍ତି, ସେତେବେଳେ ଜଗତ୍ ଭିତରେ ମହାନ୍ ଆଧ୍ୟାତ୍ମିକ ତରଙ୍ଗ ଉତ୍ଥିତ ହୁଏ । ସେଠାକାର ପବନରେ ଯେପରି ଧର୍ମଭାବ ବହିବାକୁ ଲାଗେ ।"

## ମନ୍ତ୍ର

କିନ୍ତୁ ବର୍ତ୍ତମାନ ଆମେ ଏହି ମହାପୁରୁଷ ଓ ଏହି ଅବତାରଗଣଙ୍କ କଥା ନ କହି ସିଦ୍ଧ ଗୁରୁମାନଙ୍କ ବିଷୟ ଆଲୋଚନା କରିବା । ସେମାନଙ୍କୁ ପରମ୍ପରାଗତ ମନ୍ତ୍ର ସାହାଯ୍ୟରେ ଶିଷ୍ୟମାନଙ୍କ ଭିତରେ ଆଧ୍ୟାତ୍ମିକ ଜ୍ଞାନର ବୀଜ ବପନ କରିବାକୁ ହୁଏ । ଏହି ମନ୍ତ୍ରଗୁଡ଼ିକ କଅଣ ? ଭାରତୀୟ ଦର୍ଶନ ମତରେ ସମୁଦାୟ ଜଗତ୍ ନାମରୂପାତ୍ମକ । ଏହି କ୍ଷୁଦ୍ର ବ୍ରହ୍ମାଣ୍ଡସ୍ୱରୂପ ମନୁଷ୍ୟର ଚିତ୍ତ ମଧ୍ୟରେ ଏପରି ଗୋଟିଏ ତରଙ୍ଗ ରହିପାରେ ନାହିଁ, ଯାହା ନାମରୂପାତ୍ମକ ନୁହେଁ । ଯଦି ଏହା ସତ୍ୟ ହୁଏ ଯେ, ପ୍ରକୃତି ସର୍ବତ୍ର ଏକ ନିୟମରେ ନିର୍ମିତ, ତାହାହେଲେ ଏହି ନାମରୂପାତ୍ମକତା ସମୁଦାୟ ବ୍ରହ୍ମାଣ୍ଡର ନିୟମ ବୋଲି କହିବାକୁ ହେବ । "ଯେପରି ଗୋଟିଏ ମୃତ୍ପିଣ୍ଡକୁ ଜାଣିଲେ ଆଉ ସକଳ ମୃତ୍ତିକାକୁ ମଧ୍ୟ ଜାଣି ହୁଏ ।"[୩] ତଦ୍ରୂପ ଏହି ଦେହପିଣ୍ଡକୁ ଜାଣି-

---

୧ ଯଦା ଯଦା ହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ ।
ଅଭ୍ୟୁତ୍ଥାନମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହମ୍ ॥
ପରିତ୍ରାଣାୟ ସାଧୂନାଂ ବିନାଶାୟ ଚ ଦୁଷ୍କୃତାମ୍ ।
ଧର୍ମସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ॥

—ଗୀତା, ୪ର୍ଥ ଅଧ୍ୟାୟ, ୭ମ ଓ ୮ମ ଶ୍ଳୋକ ।

୨ ଅବଜାନନ୍ତି ମାଂ ମୂଢ଼ା ମାନୁଷୀଂ ତନୁମାଶ୍ରିତମ୍ ।
ପରଂ ଭାବମଜାନନ୍ତୋ ମମ ଭୂତମହେଶ୍ୱରମ୍ ॥

—ଗୀତା, ୯ମ ଅଧ୍ୟାୟ, ୧୧ଶ ଶ୍ଳୋକ ।

୩ ଯଥା ସୌମ୍ୟୈକେନ ମୃତ୍ପିଣ୍ଡେନ ସର୍ବମ୍ମୃଣ୍ମୟଂ ବିଜ୍ଞାତଂ ସ୍ୟାତ୍, ଇତ୍ୟାଦି ।

—ଛାନ୍ଦୋଗ୍ୟ, ୬ଷ୍ଠ ପ୍ର., ୧ମ ଖଣ୍ଡ, ୪ର୍ଥ ମନ୍ତ୍ର ।

ପାରିଲେ ବିଶ୍ୱବ୍ରହ୍ମାଣ୍ଡକୁ ମଧ୍ୟ ଜାଣି ହୁଏ । ରୂପ ଯେପରି ବସ୍ତୁର ବାହାରର ଚମଡ଼ାସ୍ୱରୂପ, ଆଉ ନାମ ବା ଭାବ ଯେପରି ଏହାର ଅନ୍ତର୍ନିହିତ ଶସ୍ୟସ୍ୱରୂପ । ଶରୀର—ରୂପ ଆଉ ମନ ବା ଅନ୍ତଃକରଣ—ନାମ; ଆଉ ବାକ୍‌ଶକ୍ତିଯୁକ୍ତ ପ୍ରାଣିସମୂହ ମଧ୍ୟରେ ଏହି ନାମ ସହିତ ଏମାନଙ୍କ ବାଚକ ଶବ୍ଦଗୁଡ଼ିକର ଗୋଟିଏ ଅଭେଦ୍ୟ ଯୋଗ ରହିଅଛି । ଅଥବା ମନୁଷ୍ୟ ଭିତରେ ବ୍ୟଷ୍ଟି-ମହତ୍ ବା ଚିତ୍ତରେ ଏହି ଚିନ୍ତାତରଙ୍ଗଗୁଡ଼ିକ ଉତ୍ଥିତ ହୋଇ ପ୍ରଥମେ ଶବ୍ଦ, ପରେ ତଦପେକ୍ଷା ସ୍ଥୂଳତର ଆକାର ଧାରଣ କରେ ।

ବୃହତ୍ ବ୍ରହ୍ମାଣ୍ଡରେ ମଧ୍ୟ—ବ୍ରହ୍ମା, ହିରଣ୍ୟଗର୍ଭ ବା ସମଷ୍ଟିମହତ୍ ପ୍ରଥମେ ଆପଣାକୁ ନାମ, ପରେ ରୂପାକାରରେ ଅର୍ଥାତ୍ ପରିଦୃଶ୍ୟମାନ ଜଗତ୍‌ରୂପରେ ଅଭିବ୍ୟକ୍ତ କରନ୍ତି । ଏହି ବ୍ୟକ୍ତ ଇନ୍ଦ୍ରିୟଗ୍ରାହ୍ୟ ଜଗତ୍ ହିଁ ରୂପ, ଏହା ପଛରେ ଅନନ୍ତ ଅବ୍ୟକ୍ତ ସ୍ଫୋଟ ରହିଛି । ସ୍ଫୋଟ ଅର୍ଥ ସମୁଦାୟ ଜଗତ୍‌ର ଅଭିବ୍ୟକ୍ତିର କାରଣ ଶବ୍ଦ ବ୍ରହ୍ମ । ସମୁଦାୟ ନାମ ଅର୍ଥାତ୍ ଭାବରେ ନିତ୍ୟ ସମବାୟୀ ଉପାଦାନସ୍ୱରୂପ ନିତ୍ୟ ସ୍ଫୋଟ ହିଁ ସେହି ଶକ୍ତି, ଯାହାଦ୍ୱାରା ଭଗବାନ ଏହି ଜଗତ୍‌କୁ ସୃଜନ କରନ୍ତି; କେବଳ ସେତିକି ନୁହେଁ, ଭଗବାନ ପ୍ରଥମେ ଆପଣାକୁ ସ୍ଫୋଟରୂପେ ପରିଣତ କରି ପରେ ଅପେକ୍ଷାକୃତ ସ୍ଥୂଳ ଏହି ପରିଦୃଶ୍ୟମାନ ଜଗତରୂପରେ ନିଜକୁ ପରିଣତ କରନ୍ତି । ଏହି ସ୍ଫୋଟର ଏକମାତ୍ର ବାଚକ ଶବ୍ଦ ହେଉଛି ଓଁ । ଆଉ କୌଣସିପ୍ରକାରେ ବିଶ୍ଳେଷଣ ଦ୍ୱାରା ଯେତେବେଳେ ଆମେ ଭାବଠାରୁ ଶବ୍ଦକୁ ପୃଥକ୍ କରିପାରୁ ନାହିଁ, ସେତେବେଳେ ଏହି ଓଁକାର ଓ ନିତ୍ୟ-ସ୍ଫୋଟ ମଧ୍ୟରେ ନିତ୍ୟସମ୍ବନ୍ଧ ବର୍ତ୍ତମାନ । ସୁତରାଂ ଅନାୟାସରେ ମନେ କରାଯାଇପାରେ, ସମୁଦାୟ ନାମରୂପର ଜନକସ୍ୱରୂପ ଓଁକାରରୂପକ ଏହି ପବିତ୍ରତମ ଶବ୍ଦରୁ ସ୍ଥୂଳଜଗତ୍ ସୃଷ୍ଟ ହୋଇଛି । ତେବେ ଯଦି କହ ଯେ, ଶବ୍ଦ ଓ ଭାବ ନିତ୍ୟସମ୍ବନ୍ଧ ଅଟେ, କିନ୍ତୁ ଗୋଟିଏ ଭାବର ବାଚକ ବିବିଧ ଶବ୍ଦ ଆଇପାରେ; ସୁତରାଂ ସମୁଦାୟ ଜଗତର ଅଭିବ୍ୟକ୍ତିର କାରଣସ୍ୱରୂପ ଭାବର ବାଚକ ଯେ ଗୋଟିଏ ମାତ୍ର ଓଁକାର ତାହାର କୌଣସି ଅର୍ଥ ନାହିଁ । ଏ କଥା କହିଲେ ଆମର ଉତ୍ତର ଏହି ଯେ, ଓଁକାର ହିଁ ଏହିରୂପ ସର୍ବଭାବ ପ୍ରକାଶକ ବାଚକ ଶବ୍ଦ; ଆଉ କୌଣସି ଶବ୍ଦ ଏତତ୍‌ତୁଲ୍ୟ ନୁହେଁ । ସ୍ଫୋଟ ହିଁ ସମୁଦାୟ ଭାବର ଉପାଦାନ, ଅଥଚ ଏହା କୌଣସି ପୂର୍ଣ୍ଣବିକଶିତ ଭାବ ନୁହେଁ; ଅର୍ଥାତ୍ ବିଭିନ୍ନ ଭାବଗୁଡ଼ିକ ମଧ୍ୟରେ ପରସ୍ପରର ଯେଉଁ ପ୍ରଭେଦ, ତାହା ଯଦି ଦୂର କରି ଦିଆଯାଏ, ତାହାହେଲେ ଏହି ସ୍ଫୋଟ ହିଁ ଅବଶିଷ୍ଟ ରହିବ । ଆଉ ଯେତେବେଳେ ଯେକୌଣସି ବାଚକ ଶବ୍ଦଦ୍ୱାରା ଅବ୍ୟକ୍ତ ସ୍ଫୋଟକୁ ପ୍ରକାଶ କରିବାକୁ ହେଲେ ଏହା ତାକୁ ଏତେଦୂର ବିଶିଷ୍ଟ କରିପକାଏ ଯେ, ସେଥିରେ ଆଉ ସମଷ୍ଟିଭାବ ରହେ ନାହିଁ, ଏହା ଗୋଟିଏ ବିଶେଷ ଭାବରେ ପରିଣତ ହୁଏ । ସେତେବେଳେ ଯେଉଁ ଶବ୍ଦଦ୍ୱାରା ଏହା ଖୁବ୍ ଅଳ୍ପ ପରିମାଣରେ ବିଶେଷଭାବାପନ୍ନ ହୁଏ ଏବଂ ସଙ୍ଗେ ସଙ୍ଗେ ଏହାର ବିଶ୍ୱବ୍ୟାପୀ ପ୍ରକୃତି ଭାବେ ପ୍ରକାଶ କରେ, ତାହା ହିଁ ଏହାର ସର୍ବାପେକ୍ଷା ଶୁଦ୍ଧ ପ୍ରତୀକ ବା ବାଚକ ।

ଶ୍ରୁତି କହନ୍ତି ଓଁକାର, କେବଳମାତ୍ର ଓଁକାର ହିଁ ଏହିପରି ଶବ୍ଦପ୍ରତୀକ । କାରଣ ଅ, ଉ, ମ—ଏହି ତିନୋଟି ଅକ୍ଷର ଏକତ୍ର 'ଅଉମ' ଏହିପରି ଉଚ୍ଚାରିତ ହେଲେ ଏହା ସର୍ବ-ପ୍ରକାର ଶବ୍ଦର ସାଧାରଣ ବାଚକ ହୋଇପାରେ । 'ଅ' ସମୁଦାୟ ଶବ୍ଦ ମଧ୍ୟରେ ସର୍ବାପେକ୍ଷା

ଅଳ୍ପ ବିଶେଷତ୍ୱବାପନ୍ନ। ଏହି କାରଣରୁ ଶ୍ରୀକୃଷ୍ଣ ଗୀତାରେ କହିଛନ୍ତି, "ମୁଁ ଅକ୍ଷରମାନଙ୍କ ମଧ୍ୟରେ ଅକାର।"[୧] ଆଉ ଅନ୍ୟ ସବୁ ସ୍ପଷ୍ଟୋଚ୍ଚାରିତ ଶବ୍ଦଗୁଡ଼ିକ ମୁଖଗହ୍ୱର ମଧ୍ୟରେ ଜିହ୍ୱାମୂଳ-ଠାରୁ ଆରମ୍ଭ କରି ଓଷ୍ଠ ପର୍ଯ୍ୟନ୍ତ ସ୍ପର୍ଶ କରି ଉଚ୍ଚାରିତ ହୁଏ। 'ଅ' କଣ୍ଠରୁ ଉଚ୍ଚାରିତ, 'ମ' ଶେଷ ଓଷ୍ଠଶବ୍ଦ। ଆଉ 'ଉ' ଜିହ୍ୱାମୂଳରୁ ଯେଉଁ ଶକ୍ତି ଆରମ୍ଭ ହୋଇ ଓଷ୍ଠରେ ଶେଷ ହୁଏ; ସେହି ଶକ୍ତିଟି ଯେପରି ଗଡ଼ି ଗଡ଼ି ଯାଇଛି, ଏହି ଭାବ ପ୍ରକାଶ କରେ। ପ୍ରକୃତରୂପେ ଉଚ୍ଚାରିତ ହେଲେ ଏହି ଓଁକାର ସମୁଦାୟ ଶବ୍ଦୋଚ୍ଚାରଣ ବ୍ୟାପାରଟିର ସୂଚକ; ଆଉ କୌଣସି ଶବ୍ଦର ସେ ଶକ୍ତି ନାହିଁ, ସୁତରାଂ ଏହା ହିଁ ସ୍ଫୋଟର ଠିକ୍ ଉପଯୋଗୀ ବାଚକ, ଏବଂ ଏହି ସ୍ଫୋଟ ହିଁ ଓଁକାରର ପ୍ରକୃତ ବାଚ୍ୟ। ଆଉ ବାଚକ ବାଚ୍ୟଠାରୁ ପୃଥକୀକୃତ ହୋଇପାରେ ନାହିଁ; ସୁତରାଂ ଏହି ଓଁ ଏବଂ ସ୍ଫୋଟ ଗୋଟିଏ ପଦାର୍ଥ। ଏଥିପାଇଁ ସ୍ଫୋଟକୁ 'ନାଦ ବ୍ରହ୍ମ' କୁହାଯାଏ। ଯେହେତୁରୁ ଏହି ସ୍ଫୋଟ ବ୍ୟକ୍ତ ଜଗତର ସୂକ୍ଷ୍ମତମାଂଶ ବୋଲି ଈଶ୍ୱରଙ୍କର ଖୁବ ନିକଟବର୍ତ୍ତୀ ଏବଂ ଈଶ୍ୱରୀୟ ଜ୍ଞାନର ପ୍ରଥମ ପ୍ରକାଶ, ସେହି ହେତୁରୁ ଓଁକାର ହିଁ ଈଶ୍ୱରଙ୍କର ପ୍ରକୃତ ବାଚକ। ସେହି ଏକମାତ୍ର ଅଖଣ୍ଡ ସଚ୍ଚିଦାନନ୍ଦ ବ୍ରହ୍ମଙ୍କୁ ଯେପରି ଅପୂର୍ଣ୍ଣ ଜୀବାତ୍ମାଗଣ ବିଶେଷ ବିଶେଷ ଭାବରେ ଓ ବିଶେଷ ବିଶେଷ ଗୁଣଯୁକ୍ତରୂପେ ଚିନ୍ତା କରିପାରନ୍ତି, ସେହିପରି ତାଙ୍କର ଦେହରୂପ ଏହି ଜଗତକୁ ମଧ୍ୟ ସାଧକର ମନୋଭାବାନୁଯାୟୀ ଭିନ୍ନରୂପରେ ଚିନ୍ତା କରିବାକୁ ହେବ।

ଉପାସକର ମନରେ ଯେତେବେଳେ ଯେଉଁଟି ତମଃରୁ ସତ୍ତ୍ୱ ଓ ରଜଃ ପ୍ରବଳ ଥାଏ, ସେତେବେଳେ ଈଶ୍ୱର ସମ୍ବନ୍ଧରେ ତଦନୁଯାୟୀ ଭାବ ହିଁ ଉଦିତ ହୁଏ। ଏହାର ଫଳ ଏହି ଯେ, ଏକମାତ୍ର ବ୍ରହ୍ମ ଭିନ୍ନରୂପରେ ଭିନ୍ନଭିନ୍ନ ଗୁଣପ୍ରାଧାନ୍ୟରେ ଦୃଷ୍ଟ ହେବେ ଆଉ ସେହି ଏକ ଜଗତ୍ ଭିନ୍ନ ଭିନ୍ନ ରୂପରେ ପ୍ରତିଭାତ ହେବ। ସର୍ବାପେକ୍ଷା ଅଳ୍ପ ବିଶେଷତ୍ୱବାପନ୍ନ ସାର୍ବଭୌମ ବାଚକ ଓଁକାରରେ ଯେପରି ବାଚ୍ୟ ଓ ବାଚକ ଘନିଷ୍ଠ ସମ୍ବନ୍ଧରେ ସମ୍ବଦ୍ଧ, ତଦ୍ରୂପ ଏହି ବାଚ୍ୟ-ବାଚକର ଅବିଚ୍ଛିନ୍ନ ସମ୍ବନ୍ଧ ଭଗବାନଙ୍କର ଓ ଜଗତର ବିଶେଷ ବିଶେଷ ଖଣ୍ଡଭାବ ସମ୍ବନ୍ଧରେ ମଧ୍ୟ ପ୍ରଯୋଜ୍ୟ ହେବ। ଆଉ ଏହି ସମସ୍ତଙ୍କର ବିଶେଷ ବିଶେଷବାଚକ ଶବ୍ଦ ଥିବା ଆବଶ୍ୟକ। ମହାପୁରୁଷମାନଙ୍କର ଗଭୀର ଆଧ୍ୟାତ୍ମିକ ଅନୁଭୂତିରୁ ଉତ୍ଥିତ ଏହି ବାଚକ ଶବ୍ଦସମୂହ ଯଥାସମ୍ଭବ ଭଗବାନ ଓ ଜଗତର ଏହି ବିଶେଷ ବିଶେଷ ଖଣ୍ଡଭାବକୁ ପ୍ରକାଶ କରନ୍ତି। ଯେପରି ଓଁକାର ଅଖଣ୍ଡ ବ୍ରହ୍ମବାଚକ, ଅନ୍ୟାନ୍ୟ ମନ୍ତ୍ରଗୁଡ଼ିକ ମଧ୍ୟ ସେହିପରି ସେହି ପରମପୁରୁଷଙ୍କର ଖଣ୍ଡଭାବଗୁଡ଼ିକର ବାଚକ। ଏହିସବୁ ହେଲା ଭଗବଦ୍‌ଧ୍ୟାନ ଓ ପ୍ରକୃତ ଜ୍ଞାନଲାଭର ସହାୟ।

## ପ୍ରତୀକ ଓ ପ୍ରତିମା-ଉପାସନା

ଏହାପରେ ପ୍ରତୀକୋପାସନା ଓ ପ୍ରତିମାପୂଜା ବିଷୟରେ ଆଲୋଚନା କରିବା। ପ୍ରତୀକ ଅର୍ଥ ଯେଉଁସବୁ ବସ୍ତୁ ଅଳ୍ପବିସ୍ତର ବ୍ରହ୍ମଙ୍କ ପରିବର୍ତ୍ତେ ଉପାସନାର ଯୋଗ୍ୟ। ଭକ୍ତଙ୍କରେ

୧ ଅକ୍ଷରାଣାମକାରୋଽସ୍ମି — ଗୀତା, ୧୦ମ ଅଧ୍ୟାୟ, ୩୩ ଶ୍ଳୋକ।

ଭଗବଦୁପାସନାର ଅର୍ଥ କଅଣ ? ଭଗବାନ ରାମାନୁଜ କହୁଛନ୍ତି, "ବ୍ରହ୍ମ ନୁହନ୍ତି ଏପରି ବସ୍ତୁରେ ବ୍ରହ୍ମବୁଦ୍ଧି କରି ବ୍ରହ୍ମଙ୍କ ଅନୁସନ୍ଧାନକୁ ପ୍ରତୀକୋପାସନା କୁହାଯାଏ ।"[୧] ଶଙ୍କରାଚାର୍ଯ୍ୟ କହୁଛନ୍ତି, "ମନକୁ ବ୍ରହ୍ମରୂପରେ ଉପାସନା କରିବ, ଏହା ଆଧ୍ୟାତ୍ମିକ, 'ଆକାଶବ୍ରହ୍ମ ଏହା ଆଧିଦୈବିକ' । ମନ ଆଧ୍ୟାତ୍ମିକ ପ୍ରତୀକ ଓ ଆକାଶ ବାହ୍ୟ ପ୍ରତୀକ—ଏହି ଉଭୟକୁ ହିଁ ବ୍ରହ୍ମରୂପରେ ଉପାସନା କରିବାକୁ ହେବ । 'ଏହିପରି, ଆଦିତ୍ୟ ହିଁ ବ୍ରହ୍ମ, ଏହା ହିଁ ଆଦେଶ'…'ଯେଉଁ ଲୋକ ନାମକୁ ବ୍ରହ୍ମରୂପରେ ଉପାସନା କରନ୍ତି' ଇତ୍ୟାଦି ସ୍ଥଳରେ ପ୍ରତୀକୋପାସନା ସମ୍ବନ୍ଧରେ ସଂଶୟ ହୁଏ ।"[୨] ପ୍ରତୀକ ଶବ୍ଦର ଅର୍ଥ—ବାହ୍ୟ ଦିଗକୁ ଯିବା, ଆଉ ପ୍ରତୀକୋପାସନା—ଅର୍ଥରେ ବ୍ରହ୍ମଙ୍କ ପରିବର୍ତ୍ତେ ଏପରି ଏକ ବସ୍ତୁର ଉପାସନା, ଯାହା ଏକାଂଶରେ ଅଥବା ଅନେକାଂଶରେ ବ୍ରହ୍ମଙ୍କର ଖୁବ୍ ସନ୍ନିହିତ କିନ୍ତୁ ବ୍ରହ୍ମ ନୁହନ୍ତି । ଶ୍ରୁତିରେ ବର୍ଣ୍ଣିତ ପ୍ରତୀକ ପରି ପୁରାଣ-ତନ୍ତ୍ରରେ ମଧ୍ୟ ଅନେକ ପ୍ରତୀକର ବର୍ଣ୍ଣନା ଅଛି । ସମୁଦାୟ ପିତୃ-ଉପାସନା ଓ ଦେବୋପାସନାକୁ ଏହି ପ୍ରତୀକୋପାସନାର ଅନ୍ତର୍ଭୁକ୍ତ କରାଯାଇପାରେ !

ବର୍ତ୍ତମାନ କଥା ହେଉଛି, ଈଶ୍ୱରଙ୍କ ଏବଂ କେବଳ ଈଶ୍ୱରଙ୍କ ଉପାସନାର ନାମ ହିଁ ଭକ୍ତି । ଦେବ, ପିତୃ ଅଥବା ଅନ୍ୟ କୌଣସି ଉପାସନା ଭକ୍ତିଶବ୍ଦବାଚ୍ୟ ହୋଇପାରେ ନାହିଁ । ଭିନ୍ନ ଭିନ୍ନ ଉପାସନା କର୍ମକାଣ୍ଡର ଅନ୍ତର୍ଭୁକ୍ତ; ଏହା ଉପାସକକୁ କେବଳ କୌଣସି ପ୍ରକାର ସ୍ୱର୍ଗଭୋଗରୂପ ବିଶେଷ ଫଳ ପ୍ରଦାନ କରେ; କିନ୍ତୁ ଏଥିରେ ଭକ୍ତିର ଉଦୟ ହୁଏ ନାହିଁ—ଏହା ମୁକ୍ତି ମଧ୍ୟ ପ୍ରସବ କରିପାରେ ନାହିଁ । ସୁତରାଂ ଗୋଟିଏ କଥା ବିଶେଷରୂପେ ମନେ ରଖିବା ଆବଶ୍ୟକ, ଦାର୍ଶନିକ ଦୃଷ୍ଟିରେ ପରମବ୍ରହ୍ମଙ୍କଠାରୁ ଜଗତ୍କାରଣର ଉଚ୍ଚତମ ଧାରଣା ଆଉ ହୋଇପାରେ ନାହିଁ; ପ୍ରତୀକୋପାସକ କିନ୍ତୁ ଅନେକ ସ୍ଥଳରେ ଏହି ପ୍ରତୀକକୁ ବ୍ରହ୍ମଙ୍କ ଆସନରେ ବସାଇ ତାଙ୍କୁ ଆପଣାର ଆତ୍ମାସ୍ୱରୂପ ଚିନ୍ତା କରିପାରନ୍ତି । କିନ୍ତୁ ଏପରି ସ୍ଥଳେ ସେହି ଉପାସକକୁ ସମ୍ପୂର୍ଣ୍ଣ ଲକ୍ଷ୍ୟଭ୍ରଷ୍ଟ ହେବାକୁ ହେବ, କାରଣ ପ୍ରକୃତ ପ୍ରସ୍ତାବରେ କୌଣସି ପ୍ରତୀକ ହିଁ ଉପାସକର ଆତ୍ମା ହୋଇପାରେ ନାହିଁ; କିନ୍ତୁ ଯେଉଁଠାରେ ବ୍ରହ୍ମ ଉପାସ୍ୟ, ଆଉ ପ୍ରତୀକ ତାଙ୍କର ପ୍ରତିନିଧି-ସ୍ୱରୂପ, ଅଥବା ତାଙ୍କର ଉଦ୍ଦୀପକ କାରଣ ମାତ୍ର, ଅର୍ଥାତ୍ ଯେଉଁଠାରେ ପ୍ରତୀକର ସହାୟତାରେ ସର୍ବବ୍ୟାପୀ ବ୍ରହ୍ମଙ୍କର ଉପାସନା କରାଯାଏ, ପ୍ରତୀକକୁ ପ୍ରତୀକମାତ୍ର ନ ଦେଖି ଜଗତ୍କାରଣରୂପେ ଚିନ୍ତା କରାହୁଏ, ସେହିଠାରେ ଏହିପରି ଉପାସନା ବିଶେଷ ଉପକାରୀ । କେବଳ ତାହା ନୁହେଁ, ପ୍ରବର୍ତ୍ତକମାନଙ୍କ ପକ୍ଷରେ ଏହା ସମ୍ପୂର୍ଣ୍ଣ ଭାବରେ ଅନିବାର୍ଯ୍ୟରୂପେ ପ୍ରୟୋଜନୀୟ । ସୁତରାଂ ଯେତେବେଳେ କୌଣସି ଦେବତା ଅଥବା ଅନ୍ୟ ପ୍ରାଣୀକୁ ଏହି ଦେବତା ଅଥବା ପ୍ରାଣୀରୂପରେ

---

[୧] ଅବ୍ରହ୍ମଣି ବ୍ରହ୍ମଦୃଷ୍ଟ୍ୟାଽନୁସନ୍ଧାନମ୍ ।

—ବ୍ରହ୍ମସୂତ୍ର, ୪ର୍ଥ ଅ, ୧ମ ପାଦ, ୫ମ ସୂତ୍ରର ରାମାନୁଜଭାଷ୍ୟ ।

[୨] ମନୋ ବ୍ରହ୍ମେତ୍ୟୁପାସୀତେତ୍ୟଧ୍ୟାତ୍ମମ୍ । ଅଥାଧିଦୈବତମାକାଶୋ ବ୍ରହ୍ମେତି । ତଥା ଆଦିତ୍ୟୋ ବ୍ରହ୍ମେତ୍ୟାଦେଶଃ । ସ ଯୋ ନାମବ୍ରହ୍ମେତ୍ୟୁପାସ୍ତେ ଇତ୍ୟେବମାଦିଷୁ ପ୍ରତୀକୋପାସନେଷୁ ସଂଶୟଃ ।

—ବ୍ରହ୍ମସୂତ୍ର, ୩ୟ ଅଧ୍ୟାୟ, ୧ମ ପାଦ, ୪ର୍ଥ ସୂତ୍ରର ଶାଙ୍କରଭାଷ୍ୟ ।

ଉପାସନା କରାଯାଏ, ସେତେବେଳେ ଏପରି ଉପାସନାକୁ ଗୋଟିଏ ଧର୍ମମାତ୍ର ବୁଝାଯାଇପାରେ । ଆଉ ଏହା ଗୋଟିଏ ବିଦ୍ୟା ବୋଲି ଉପାସକ ସେହି ବିଶେଷ ବିଦ୍ୟାର ଫଳ ଲାଭ କରିଥାଏ । କିନ୍ତୁ ଯେତେବେଳେ କୌଣସି ଦେବତା ବା ଅନ୍ୟ ପ୍ରାଣୀ ବ୍ରହ୍ମରୂପରେ ଦୃଷ୍ଟ ଓ ଉପାସିତ ହୁଅନ୍ତି, ସେତେବେଳେ ତାହା ଇଷ୍ଟୋପାସନାର ସହିତ ତୁଲ୍ୟଫଳ ହୋଇଯାଏ । ଏଥିରୁ ବୁଝାଯାଏ, ଅନେକ ସ୍ଥଳରେ ଶ୍ରୁତି, ସ୍ମୃତି ସର୍ବତ୍ର କୌଣସି ଦେବତା ବା ମହାପୁରୁଷ ଅଥବା ଅନ୍ୟ କୌଣସି ଅଲୌକିକ ପୁରୁଷଙ୍କର ଦେବତ୍ୱ ପ୍ରଭୃତି ଭୁଲିଯାଇ ସେମାନଙ୍କୁ ବ୍ରହ୍ମରୂପରେ ତାହିଁକି ଉପାସନା କରାଯାଏ । ଅଦ୍ୱୈତବାଦୀ କହନ୍ତି, "ନାମରୂପକୁ ବାଦ ଦେଲେ ସକଳ ବସ୍ତୁ କଅଣ ବ୍ରହ୍ମ ନୁହନ୍ତି ?" ବିଶିଷ୍ଟାଦ୍ୱୈତବାଦୀ କହନ୍ତି, "ସେହି ପ୍ରଭୁ କଅଣ ସକଳର ଅନ୍ତରାତ୍ମା ନୁହନ୍ତି ?" ଶଙ୍କର ତାଙ୍କର ବ୍ରହ୍ମସୂତ୍ର ଭାଷ୍ୟରେ କହିଛନ୍ତି, "ଆଦିତ୍ୟାଦିଙ୍କ ଉପାସନାର ଫଳ ବ୍ରହ୍ମ ହିଁ ଦିଅନ୍ତି, କାରଣ ସେ ସମସ୍ତଙ୍କର ଅଧ୍ୟକ୍ଷ । ଯେପରି ପ୍ରତିମାଦିରେ ବିଷ୍ଣୁ ଆଦି ଦୃଷ୍ଟି ଆରୋପ କରିବାକୁ ହୁଏ, ସେହିପରି ପ୍ରତୀକରେ ମଧ୍ୟ ବ୍ରହ୍ମଦୃଷ୍ଟି ଆରୋପ କରିବାକୁ ହୁଏ; ସୁତରାଂ ଏଠାରେ ପ୍ରକୃତପକ୍ଷରେ ବ୍ରହ୍ମଙ୍କର ଉପାସନା ହେଉଛି ବୋଲି ବୁଝିବାକୁ ହେବ ।"[୧]

ପ୍ରତୀକ ସମ୍ବନ୍ଧରେ ଯେଉଁସବୁ କଥା କୁହାଗଲା, ପ୍ରତିମା ସମ୍ବନ୍ଧରେ ମଧ୍ୟ ସେସବୁ କଥା ପ୍ରଯୋଜ୍ୟ ହେବ; ଅର୍ଥାତ୍ ପ୍ରତିମା ଯଦି କୌଣସି ଦେବତା ବା ସାଧୁଙ୍କର ସୂଚକ ହୁଏ, ତାହାହେଲେ ସେପରି ଉପାସନାକୁ ଭକ୍ତି କୁହାଯିବ ନାହିଁ; ସୁତରାଂ ଏଥିରୁ ମଧ୍ୟ ମୁକ୍ତିଲାଭ ହେବ ନାହିଁ । କିନ୍ତୁ ତାହା ସେହି ଏକ ଈଶ୍ୱରଙ୍କ ସୂଚକ ହେଲେ ତାହାର ଉପାସନାରୁ ଭକ୍ତିମୁକ୍ତି ଉଭୟ ହିଁ ଲାଭ ହୁଏ । ଜଗତର ପ୍ରଧାନ ପ୍ରଧାନ ଧର୍ମଗୁଡ଼ିକ ମଧ୍ୟରେ ବେଦାନ୍ତ, ବୌଦ୍ଧଧର୍ମ ଓ ଖ୍ରୀଷ୍ଟଧର୍ମର କୌଣସି କୌଣସି ସମ୍ପ୍ରଦାୟ ପ୍ରତିମାର ସଦ୍‌ବ୍ୟବହାର କରିଥାଆନ୍ତି । ମୁସଲମାନମାନେ ସେମାନଙ୍କର ସାଧୁସନ୍ଥ ଓ ଶହୀଦ୍‌ମାନଙ୍କର କବରକୁ ସେମାନଙ୍କର ପ୍ରତିମା-ପୂଜାରୂପେ ବ୍ୟବହାର କରିଥାଆନ୍ତି । ପ୍ରୋଟେଷ୍ଟାଣ୍ଟମାନେ ଧର୍ମରେ ବାହ୍ୟସହାୟତାର ଆବଶ୍ୟକତା ଉଡ଼ାଇ ଦେବାକୁ ଯାଇ କ୍ରମଶଃ ଆଧ୍ୟାତ୍ମିକ ଭାବରୁ ବିଚ୍ୟୁତ ହୋଇ ପଡ଼ୁଛନ୍ତି । ଆଉ ଆଜିକାଲି ଖାଣ୍ଟି ପ୍ରୋଟେଷ୍ଟାଣ୍ଟଙ୍କ ସହିତ କେବଳ ନୀତିମାତ୍ରବାଦୀ ଅଗଷ୍ଟ କୋଁତେଙ୍କର ଶିଷ୍ୟ ଓ ଅଜ୍ଞେୟବାଦୀମାନଙ୍କର କୌଣସି ପ୍ରଭେଦ ନାହିଁ । ପୁଣି ଖ୍ରୀଷ୍ଟ ବା ମୁସଲମାନ ଧର୍ମରେ ପ୍ରତିମାପୂଜାର ଯେଉଁଟିକକ ଅବଶିଷ୍ଟ ଅଛି, ସେହିତକ କେବଳ ତାହା ଯହିଁରେ ପ୍ରତୀକ ବା ପ୍ରତିମାମାତ୍ର ଉପାସିତ ହୁଏ, ଅର୍ଥାତ୍ ବ୍ରହ୍ମଦୃଷ୍ଟିସୌକାର୍ଯ୍ୟାର୍ଥେ ନୁହେଁ । ସୁତରାଂ ଏହା ବେଶୀ ହେଲେ କର୍ମକାଣ୍ଡର ଅନ୍ତର୍ଗତମାତ୍ର । ଅତଏବ ଏଥିରୁ ମୁକ୍ତି ବା ଭକ୍ତି କିଛିମାତ୍ର ଲାଭ ହୋଇପାରେ ନାହିଁ । ଏହିପରି ପ୍ରତିମାପୂଜାରେ ସାଧକ ସର୍ବନିୟନ୍ତା ଈଶ୍ୱର ବ୍ୟତୀତ ଅନ୍ୟ ବସ୍ତୁରେ ଆତ୍ମସମର୍ପଣ କରନ୍ତି, ସୁତରାଂ ପ୍ରତିମା, କବର, ମନ୍ଦିର ବା ସ୍ମୃତିସ୍ତମ୍ଭଙ୍କ ଇତ୍ୟାଦିର ଏହିପରି ବ୍ୟବହାରକୁ ହିଁ ପ୍ରକୃତ ପୁତ୍ତଳିକାପୂଜା କୁହାଯାଏ । କିନ୍ତୁ ତାହାହେଲେ ମଧ୍ୟ ଏହା କୌଣସି ପାପକର୍ମ ନୁହେଁ ବା

[୧] ଆଦିତ୍ୟାଦ୍ୟୁପାସନେଽପି ବ୍ରହ୍ମୈବ ଦାସ୍ୟତି ସର୍ବାଧ୍ୟକ୍ଷତ୍ୱାତ୍ ।···ଈଦୃଶଂ ଚାତ୍ର ବ୍ରାହ୍ମଣ ଉପାସ୍ୟତ୍ୱଂ ଯତ୍ ପ୍ରତୀକେଷୁ ତଦ୍‌ଦୃଷ୍ଟ୍ୟଧ୍ୟାରୋପଣଂ—ପ୍ରତିମାଦିଷୁ ଇବ ବିଷ୍ଣ୍ୱାଦୀନାମ୍ ।

—ବ୍ରହ୍ମସୂତ୍ର, ୪ର୍ଥ ଅଧ୍ୟାୟ, ୧ମ ପାଦ, ୫ମ ସୂତ୍ରର ଶାଙ୍କରଭାଷ୍ୟ ।

ଅନ୍ୟାୟ ନୁହେଁ । ଏହା ଗୋଟିଏ କର୍ମ ମାତ୍ର—ଉପାସକମାନେ ଏହାର ଫଳ ନିଶ୍ଚୟ ପାଇ-ଥାଆନ୍ତି ।

## ଇଷ୍ଟନିଷ୍ଠା

ବର୍ତ୍ତମାନ ଆମମାନଙ୍କୁ ଇଷ୍ଟନିଷ୍ଠା ସମ୍ବନ୍ଧରେ ଆଲୋଚନା କରିବାକୁ ହେବ । ଯେ ଭକ୍ତ ହେବାକୁ ଚାହେଁ, ସେ ଜାଣିବା ଉଚିତ, 'ଯେତେ ମତ ସେତେ ପଥ'—ସେ ଜାଣିବା ଉଚିତ ଯେ, ବିଭିନ୍ନ ଧର୍ମସଂପ୍ରଦାୟ ସେହି ଏକ ଭଗବାନଙ୍କ ମହିମାର ବିଭିନ୍ନ ବିକାଶମାତ୍ର । "ହେ ଭଗବାନ, ଲୋକମାନେ ତୁମକୁ କେତେ ବିଭିନ୍ନ ନାମରେ ଡାକଥାଆନ୍ତି—ଲୋକେ ତୁମକୁ ଯେପରି କି ବିଭିନ୍ନ ନାମରେ ଭାଗ ଭାଗ କରି ପକାଇଛନ୍ତି; କିନ୍ତୁ ସେହି ପ୍ରତ୍ୟେକ ନାମରେ ଯେପରି ତୁମର ପୂର୍ଣ୍ଣ ଶକ୍ତି ବିଦ୍ୟମାନ । ଯେଉଁ ଉପାସକ ଯେଉଁ ନାମରେ ଉପାସନା କରିବାକୁ ଭଲପାଆନ୍ତି, ତାଙ୍କ ନିକଟରେ ତୁମେ ସେହି ନାମ ଭିତରେ ପ୍ରକାଶିତ ହୋଇଥାଅ । ତୁମ ପ୍ରତି ଆତ୍ମାର ଐକାନ୍ତିକ ଅନୁରାଗ ଥିଲେ ତୁମକୁ ଡାକିବାର ମଧ୍ୟ କୌଣସି ନିର୍ଦ୍ଦିଷ୍ଟ କାଳ ନାହିଁ । ତୁମ ନିକଟକୁ ଏତେ ସହଜରେ ଯିବାକୁ ହୁଏ, କିନ୍ତୁ ମୋର ଦୁର୍ଦ୍ଦୈବ ଯେ, ତୁମ ପ୍ରତି ମୋର ଅନୁରାଗ ଜନ୍ମିଲା ନାହିଁ ।"[୧]

କେବଳ ସେତିକି ନୁହେଁ, ଭକ୍ତମାନଙ୍କର ଉଚିତ ଯେ ସେମାନେ ଯେପରି ବିଭିନ୍ନ ସଂପ୍ରଦାୟର ପ୍ରତିଷ୍ଠାତା ମହାତେଜସ୍ୱୀ ଜ୍ୟୋତିର ତନୟଗଣଙ୍କୁ ଘୃଣା ନ କରନ୍ତି, ଏପରି କି, ସେମାନଙ୍କର ଦୋଷଦୃଷ୍ଟି ବିଷୟରେ ମଧ୍ୟ ବିଶେଷ ସତର୍କ ରହନ୍ତି, ସେମାନଙ୍କର ନିନ୍ଦା ଶୁଣିବା ମଧ୍ୟ ଏମାନଙ୍କର ଉଚିତ ନୁହେଁ; ଅବଶ୍ୟ ଏପରି ଲୋକ ଅତିଅଳ୍ପ ଅଛନ୍ତି, ଯେଉଁମାନେ ଉଦାର ଓ ସହାନୁଭୂତିସମ୍ପନ୍ନ ଅପରର ଗୁଣ ଗ୍ରହଣ କରିବାରେ ସମର୍ଥ ଅଥଚ ଗଭୀର ଭଗବତ୍-ପ୍ରେମସମ୍ପନ୍ନ । ସଚରାଚର ଦେଖାଯାଏ, ଉଦାରଭାବାପନ୍ନ ସଂପ୍ରଦାୟସବୁ ଆଧ୍ୟାତ୍ମିକ ଗଭୀରତା ହରାଇ ବସନ୍ତି । ସେମାନଙ୍କ ନିକଟରେ ଧର୍ମ ଏକପ୍ରକାର ରାଜନୈତିକ ଓ ସାମାଜିକ ଉଭୟ ଭାବାପନ୍ନ କୌଣସି ସମିତିର ସଭ୍ୟମାନଙ୍କ କର୍ତ୍ତବ୍ୟ ପରି ହୋଇପଡ଼େ । ଆଉ ଖୁବ୍ ସଂକୀର୍ଣ୍ଣ ସାଂପ୍ରଦାୟିକ ବ୍ୟକ୍ତି-ଗଣ ନିଜ ନିଜର ଇଷ୍ଟ ପ୍ରତି ଖୁବ୍ ଭକ୍ତିସମ୍ପନ୍ନ ସତ୍ୟ, କିନ୍ତୁ ସେମାନଙ୍କର ଏହି ଭକ୍ତି ଅପର-ସକଳ ସଂପ୍ରଦାୟର (ଯେଉଁମାନଙ୍କ ମତ ସହିତ ସେମାନଙ୍କର ସାମାନ୍ୟ ଟିକିଏ ସୁଦ୍ଧା ପାର୍ଥକ୍ୟ ଅଛି) ଉପରେ ଘୃଣାରୂପକ ଭିତ୍ତି ଉପରେ ସ୍ଥାପିତ । ଈଶ୍ୱରେଚ୍ଛାରେ ଜଗତ ପରମ ଉଦାର, ଅଥଚ ଗଭୀର ପ୍ରେମସମ୍ପନ୍ନ ଜନଗଣଙ୍କଦ୍ୱାରା ପୂର୍ଣ୍ଣ ହୋଇପାରିଲେ ଖାସା ଭଲ ହୋଇଥାଆନ୍ତା;

---

[୧] ନାମ୍ନାମକାରି ବହୁଧା ନିଜସର୍ବଶକ୍ତିସ୍ତତ୍ରାର୍ପିତା ନିୟମିତଃ ସ୍ମରଣେ ନ କାଲଃ ।
ଏତାଦୃଶୀ ତବ କୃପା ଭଗବନ୍ ମମାପି ଦୁର୍ଦ୍ଦୈବମୀଦୃଶମିହାଜନି ନାନୁରାଗଃ ॥
—ଶିକ୍ଷାଷ୍ଟକ, ଶ୍ରୀକୃଷ୍ଣଚୈତନ୍ୟ

କିନ୍ତୁ ଏପରି ମହାତ୍ମାଙ୍କ ସଂଖ୍ୟା ଅତି ଅଳ୍ପ ଏବଂ ସେମାନେ ମଧ୍ୟ ଅକାଳେ ସକାଳେ ଜନ୍ମଗ୍ରହଣ କରନ୍ତି । ତଥାପି ଆମେ ଜାଣୁ, ଜଗତର ଅନେକ ଲୋକଙ୍କୁ ଏହିପରି ଗମ୍ଭୀରତା ଓ ଉଦାରତାର ଅପୂର୍ବ ସମ୍ମେଳନରୂପ ଆଦର୍ଶରେ ଶିକ୍ଷିତ କରିବା ସମ୍ଭବ ଏବଂ ଏହାର ଉପାୟ ଏହି ଇଷ୍ଟନିଷ୍ଠା । ସକଳ ଧର୍ମ, ସକଳ ସମ୍ପ୍ରଦାୟର ମନୁଷ୍ୟଙ୍କୁ କେବଳ ଗୋଟିଏ ମାତ୍ର ଆଦର୍ଶ ଦେଖାଇ ଦିଏ । କିନ୍ତୁ ସନାତନ ବୈଦାନ୍ତିକ ଧର୍ମ ଭଗବାନଙ୍କର ସେହି ମନ୍ଦିରର ଅଭ୍ୟନ୍ତର ଦେଶରେ ପ୍ରବେଶ କରିବା ପାଇଁ ଅନନ୍ତ ଦ୍ୱାର ଖୋଲି ଦେଇଛନ୍ତି ଏବଂ ମାନବ ସମକ୍ଷରେ ଏକ ପ୍ରକାର ଅସଂଖ୍ୟ ଆଦର୍ଶରାଶି ସ୍ଥାପନ କରିଛନ୍ତି । ସେହି ଆଦର୍ଶଗୁଡ଼ିକରୁ ପ୍ରତ୍ୟେକଟି ସେହି ଅନନ୍ତ ସ୍ୱରୂପର ଗୋଟିଏ ଗୋଟିଏ ବିକାଶମାତ୍ର । ପରମକରୁଣାପରବଶ ହୋଇ ବେଦାନ୍ତ ମୁମୁକ୍ଷୁ ନରନାରୀମାନଙ୍କୁ ଅତୀତ ଓ ବର୍ତ୍ତମାନରେ ମହିମାନ୍ୱିତ ଈଶ୍ୱରତନୟ ବା ଈଶ୍ୱରଙ୍କ ମାନବୀୟ ଅବତାରଗଣଙ୍କଦ୍ୱାରା ମନୁଷ୍ୟଜୀବନର ବାସ୍ତବ ଘଟଣାବଳୀ ପରି କଠିନ ପର୍ବତ କାଟି ବିଭିନ୍ନ ପଥ ଦେଖାଇ ଦେଇଛନ୍ତି । ଆଉ ବାହୁ ପ୍ରସାରିତ କରି ସମସ୍ତଙ୍କୁ, ଏପରି କି ଭବିଷ୍ୟତମାନଙ୍କୁ ମଧ୍ୟ ସେହି ସତ୍ୟ ଓ ଆନନ୍ଦ ଧର୍ମକୁ ଆହ୍ୱାନ କରୁଛନ୍ତି, ଯେଉଁଠାରେ ମାନବାତ୍ମା ମାୟାଜାଲରୁ ମୁକ୍ତ ହୋଇ ସମ୍ପୂର୍ଣ୍ଣ ସ୍ୱାଧୀନତା ଓ ଅନନ୍ତ ଆନନ୍ଦ-ଅବସ୍ଥାକୁ ଉନ୍ନୀତ ହୋଇଥାଏ ।

ଏହିପରି ଭକ୍ତିଯୋଗ ଭଗବତ୍ପ୍ରାପ୍ତିର ବିଭିନ୍ନ ପଥମାନଙ୍କ ମଧ୍ୟରୁ କୌଣସିଟିକୁ ଘୃଣା ବା ଅସ୍ୱୀକାର କରିବାକୁ ପୂର୍ଣ୍ଣତଃ ନିଷେଧ କରନ୍ତି । ତଥାପି ଯେତେ ଦିନ ଗଛଟି ଛୋଟ ଥାଏ, ସେତେଦିନ ତାକୁ ବାଡ଼ ଦେଇ ରକ୍ଷା କରିବାକୁ ହେବ । ଅପକ୍ୱ ଅବସ୍ଥାରେ ଏକାଥରକେ ନାନା ପ୍ରକାର ଭାବ ଓ ଆଦର୍ଶ ସମ୍ମୁଖରେ ରଖିଲେ ଧର୍ମରୂପକ କୋମଳ ଲତିକା ମରିଯିବ । ଅନେକ ଲୋକ ଧର୍ମରେ ଉଦାର ଭାବ ନାମରେ ଅନବରତ ଭାବାଦର୍ଶ ପରିବର୍ତ୍ତନ କରି ନିଜର ବୃଥା କୌତୂହଳମାତ୍ର ଚରିତାର୍ଥ କରନ୍ତି । ସେମାନଙ୍କ ପକ୍ଷରେ ନୂତନ ନୂତନ ବିଷୟ ଶୁଣିବା ଯେପରି ଏକ ରୋଗ, ଏକ ପ୍ରକାର ନିଶାର ମୋହପରି ଛିଡ଼ା ହୁଏ । ସେମାନେ ଟିକିଏ ସାମୟିକ ସ୍ନାୟବୀୟ ଉତ୍ତେଜନା ଚାହାଁନ୍ତି, ତାହା ଛାଡ଼ିଗଲେ ସେମାନେ ଆଉ ଗୋଟିଏ ଲାଗି ପ୍ରସ୍ତୁତ ହୁଅନ୍ତି । ଧର୍ମ ସେମାନଙ୍କ ନିକଟରେ ଅହିଫେନସେବୀ ପରି କାର୍ଯ୍ୟ କରେ ଏବଂ ସେହି ପର୍ଯ୍ୟନ୍ତ ମଧ୍ୟ ସେମାନଙ୍କର ସୀମା । ଭଗବାନ ଶ୍ରୀରାମକୃଷ୍ଣ କହନ୍ତି—“ସମୁଦ୍ରରେ ଏକପ୍ରକାର ଶାମୁକା ଅଛି ତାହା ସଦାସର୍ବଦା ଆଁ କରି ଜଳ ଉପରେ ଭାସୁଥାଏ, କିନ୍ତୁ ସ୍ୱାତୀନକ୍ଷତ୍ରର ବିନ୍ଦୁଏ ଜଳ ମୁଖରେ ପଡ଼ିଲେ ତାହା ମୁଖ ବନ୍ଦ କରି ଏକାଥରକେ ଜଳଗର୍ଭକୁ ଚାଲିଯାଏ, ଆଉ ଉପରକୁ ଆସେ ନାହିଁ । ତତ୍ତ୍ୱପିପାସୁ ବିଶ୍ୱାସୀ ସାଧକ ମଧ୍ୟ ସେହିପରି ଗୁରୁମନ୍ତ୍ରରୂପକ ବିନ୍ଦୁଏ ଜଳ ପାଇଲେ ସାଧନାର ଅଗାଧ ଜଳରେ ଏକାବେଳକେ ବୁଡ଼ିଯାଆନ୍ତି, ଆଉ ଅନ୍ୟ ଆଡ଼କୁ ଅନାଇ ଦେଖନ୍ତି ନାହିଁ ।”

ଏହି ଉଦାହରଣରେ ଇଷ୍ଟନିଷ୍ଠା-ଭାବଟି ଯେପରି ହୃଦୟସ୍ପର୍ଶୀ କବିତ୍ୱର ଭାଷାରେ ପ୍ରସ୍ଫୁଟିତ ହୋଇଛି, ଆଉ ସେପରି କେଉଁଠାରେ ହୋଇ ନାହିଁ । ଭକ୍ତିପଥ-ପ୍ରବର୍ତ୍ତିକଙ୍କର ଏହି ଏକନିଷ୍ଠା ନ ଥିଲେ ଚଳିବ ନାହିଁ । ହନୁମାନପରି ସେମାନଙ୍କର ଜାଣିବା ଉଚିତ, “ଯଦିଚ ଲକ୍ଷ୍ମୀପତି ଓ ସୀତାପତି ପରମାତ୍ମାରୂପେ ଅଭେଦ, ତଥାପି କମଳଲୋଚନ ରାମ ହିଁ ମୋର

ସର୍ବସ୍ୱ ।”[1] ଅଥବା ସାଧୁ ତୁଳସୀ ଦାସ ଯେପରି କହିଛନ୍ତି, “ସମସ୍ତଙ୍କ ସଙ୍ଗରେ ବସ, ସମସ୍ତଙ୍କ ସଙ୍ଗରେ ଆନନ୍ଦ କର, ସମସ୍ତଙ୍କର ନାମ ଗ୍ରହଣ କର, ସେ ଯାହା କହୁନା କାହିଁକି ସମସ୍ତଙ୍କୁ ହଁ ହଁ କର; କିନ୍ତୁ ନିଜର ଭାବ ଦୃଢ଼ ରଖ ।”[2] ସେମାନେ ମଧ୍ୟ ସେହି ଆଦର୍ଶର ଅବଲମ୍ବନ କରିବା ଉଚିତ । ଯଦି ଭକ୍ତସାଧକ ଅକପଟ ହୁଅନ୍ତି, ତେବେ ଗୁରୁଦତ୍ତ ସେହି ବୀଜମନ୍ତ୍ରର ପ୍ରଭାବରେ ପରାଭକ୍ତି ଓ ପରମଜ୍ଞାନରୂପ ସୁବୃହତ୍ ବଟବିଟପୀ ଉତ୍ପନ୍ନ ହୋଇ ଶାଖା ପରେ ଶାଖା ଓ ମୂଳ ପରେ ମୂଳ ବିସ୍ତାର କରି ଧର୍ମରୂପ ସୁବୃହତ୍ କ୍ଷେତ୍ରକୁ ସମ୍ପୂର୍ଣ୍ଣ ରୂପେ ଆଚ୍ଛାଦନ କରିବ । ସେତେବେଳେ ପ୍ରକୃତ ଭକ୍ତ ଦେଖିବେ—ତାଙ୍କ ନିଜର ଇଷ୍ଟଦେବତା ବିଭିନ୍ନ ସମ୍ପ୍ରଦାୟ ମଧ୍ୟରେ ବିଭିନ୍ନ ନାମରେ ବିଭିନ୍ନ ରୂପରେ ଉପାସିତ ।

## ଭକ୍ତିର ସାଧନ

ଭକ୍ତିଲାଭର ଉପାୟ ଓ ସାଧନସମ୍ବନ୍ଧରେ ଭଗବାନ ରାମାନୁଜ ତାଙ୍କର ବେଦାନ୍ତ-ଭାଷ୍ୟରେ ଲେଖିଛନ୍ତି—

“ବିବେକ, ବିମୋକ, ଅଭ୍ୟାସ, କ୍ରିୟା, କଲ୍ୟାଣ, ଅନବସାଦ ଓ ଅନୁଦ୍ଧର୍ଷରୁ ଭକ୍ତିଲାଭ ହୁଏ ।” ବିବେକ ଅର୍ଥରେ ରାମାନୁଜଙ୍କ ମତରେ ଖାଦ୍ୟାଖାଦ୍ୟ ବିଚାର । ତାଙ୍କ ମତରେ ଖାଦ୍ୟ ଦ୍ରବ୍ୟର ଅଶୁଦ୍ଧିର କାରଣ ତିନୋଟି : (୧) ଜାତିଦୋଷ ଅର୍ଥାତ୍ ଖାଦ୍ୟର ପ୍ରକୃତିଗତ ଦୋଷ, ଯଥା—ରସୁଣ, ପିଆଜ ପ୍ରଭୃତି ସ୍ୱଭାବତଃ ଅଶୁଚି ଖାଦ୍ୟର ଯେଉଁ ଦୋଷ; (୨) ଆଶ୍ରୟଦୋଷ ଅର୍ଥାତ୍ ପତିତ ଓ ଅଭିଶପ୍ତ ବ୍ୟକ୍ତିର ହସ୍ତରେ ଖାଇଲେ ଯେଉଁ ଦୋଷ; (୩) ନିମିତ୍ତଦୋଷ ଅର୍ଥାତ୍ କୌଣସି ଅଶୁଚି ବସ୍ତୁର, ଯଥା—କେଶ, ଧୂଳି ଆଦି ସଂସ୍ପର୍ଶଜନିତ ଦୋଷ । ଶ୍ରୁତି କହନ୍ତି, “ଶୁଦ୍ଧ ଆହାର କଲେ ଚିତ୍ତ ଶୁଦ୍ଧ ହୁଏ, ଚିତ୍ତ ଶୁଦ୍ଧ ହେଲେ ଭଗବାନଙ୍କୁ ସର୍ବଦା ସ୍ମରଣ କରିହୁଏ ।”[3] ରାମାନୁଜ ଛାନ୍ଦୋଗ୍ୟ ଉପନିଷଦ୍‌ରୁ ଏହି ବାକ୍ୟ ଉଦ୍ଧୃତ କରିଛନ୍ତି ।

ଏହି ଖାଦ୍ୟାଖାଦ୍ୟ ବିଚାର ଭକ୍ତିମାର୍ଗାବଲମ୍ବୀଗଣଙ୍କ ମତରେ ଚିରକାଳ ଗୋଟିଏ ଗୁରୁତର ବିଷୟ ବୋଲି ପରିଗଣିତ ହୋଇଛି । ଅନେକ ଭକ୍ତସମ୍ପ୍ରଦାୟ ଏ ବିଷୟଟିକୁ ଅନେକ ରୂପେ ଅସ୍ୱାଭାବିକ କରିପକାଇଛନ୍ତି ସତ୍ୟ, କିନ୍ତୁ ଏହା ମଧ୍ୟରେ ଗୋଟିଏ ଗୁରୁତର ସତ୍ୟ

---

୧ ଶ୍ରୀନାଥେ ଜାନକୀନାଥେ ଅଭେଦଃ ପରମାତ୍ମନି ।
ତଥାପି ମମ ସର୍ବସ୍ୱଃ ରାମଃ କମଲଲୋଚନଃ ॥

୨ ସବ୍‌ସେ ବସିୟେ ସବ୍‌ସେ ରସିୟେ ସବ୍‌କା ଲିଜିୟେ ନାମ୍ ।
ହାଁଜି ହାଁଜି କର୍‌ତେ ରହିୟେ ବୈଠିୟେ ଆପ୍‌ନା ଠାମ୍ ॥
—ତୁଳସୀ ଦାସଜୀଙ୍କ କୃତ ଦୋହା ।

୩ ଆହାରଶୁଦ୍ଧୌ ସତ୍ତ୍ୱଶୁଦ୍ଧିଃ ସତ୍ତ୍ୱଶୁଦ୍ଧୌ ଧ୍ରୁବା ସ୍ମୃତିଃ ।
—ଛାନ୍ଦୋଗ୍ୟ ଉପନିଷଦ୍, ୭ମ ପ୍ର., ୨୬ ଖଣ୍ଡ ।

ଅନ୍ତର୍ନିହିତ ଅଛି । ଆମର ମନେରଖିବା ଉଚିତ, ସାଂଖ୍ୟଦର୍ଶନ ମତରେ ସତ୍ତ୍ୱ, ରଜଃ, ତମଃ ଏହି ତିନିଗୁଣର ସାମ୍ୟାବସ୍ଥା । ପ୍ରକୃତି ଏବଂ ଏହି ତିନୋଟି ଗୁଣ ବୈଷମ୍ୟାବସ୍ଥା ପ୍ରାପ୍ତ ହୋଇ ଜଗତ୍ ରୂପେ ପରିଣତ ହୁଅନ୍ତି, ସେମାନେ ପ୍ରକୃତିର ଗୁଣ ଓ ଉପାଦାନ ଉଭୟ, ସୁତରାଂ ସେହି ସକଳ ଉପାଦାନ ଦ୍ୱାରା ସମୁଦାୟ ନରଦେହ ନିର୍ମିତ । ଏମାନଙ୍କ ମଧ୍ୟରେ ସତ୍ତ୍ୱପଦାର୍ଥର ପ୍ରାଧାନ୍ୟ ହିଁ ଆଧ୍ୟାତ୍ମିକ ଉନ୍ନତି ପକ୍ଷରେ ଅତ୍ୟାବଶ୍ୟକ । ଆମେ ଆହାରଦ୍ୱାରା ଶରୀର ଭିତରେ ଯେଉଁ ଉପାଦାନ ଗ୍ରହଣ କରୁଁ, ସେଥିରେ ଆମମାନଙ୍କର ମାନସିକ ଗଠନରେ ଅନେକ ସାହାଯ୍ୟ ହୁଏ, ସୁତରାଂ ଆମମାନଙ୍କୁ ଖାଦ୍ୟାଖାଦ୍ୟ ବିଷୟରେ ବିଶେଷ ଦୃଷ୍ଟି ରଖିବାକୁ ହେବ । କିନ୍ତୁ ଅନ୍ୟାନ୍ୟ ବିଷୟ ପରି ଏ ବିଷୟରେ ମଧ୍ୟ ଶିଷ୍ୟମାନେ ଚିରକାଳ ଯେପରି ମତାନ୍ଧତା କରିଆଆନ୍ତି, ତାହା ଯେପରି ଆଚାର୍ଯ୍ୟମାନଙ୍କ ସ୍କନ୍ଧରେ ଆରୋପିତ ନ ହୁଏ ।

ବାସ୍ତବିକ ଖାଦ୍ୟର ଶୁଦ୍ଧି-ଅଶୁଦ୍ଧି ବିଚାର ଗୌଣମାତ୍ର । ପୂର୍ବୋକ୍ତ ସେହି ବାକ୍ୟଟି ଶଙ୍କର ତାଙ୍କର ଉପନିଷଦ୍‌ଭାଷ୍ୟରେ ଅନ୍ୟ ପ୍ରକାରେ ବ୍ୟାଖ୍ୟା କରିଛନ୍ତି । ସେହି ବାକ୍ୟସ୍ଥ 'ଆହାର' ଶବ୍ଦଟି ଯାହା ସଚରାଚର ଖାଦ୍ୟ ଅର୍ଥରେ ଗୃହୀତ ହୋଇଥାଏ, ତାହା ସେ ଅନ୍ୟ ଅର୍ଥରେ ବ୍ୟାଖ୍ୟା କରିଛନ୍ତି । ତାଙ୍କ ମତରେ, "ଯାହା ଆହୃତ ହୁଏ, ତାହା ହିଁ ଆହାର । ଶବ୍ଦାଦି ବିଷୟର ଜ୍ଞାନ ଭୋକ୍ତାର ଅର୍ଥାତ୍ ଆତ୍ମାର ଉପଭୋଗ ନିମିତ୍ତ ଭିତରେ ଆହୃତ ହୁଏ । ଏହି ବିଷୟାନୁଭୂତିରୂପକ ଜ୍ଞାନର ଶୁଦ୍ଧିକୁ ଆହାରଶୁଦ୍ଧି କୁହାଯାଏ । ସୁତରାଂ ଆହାରଶୁଦ୍ଧି ଅର୍ଥରେ ଆସକ୍ତି, ଦ୍ୱେଷ ବା ମୋହଶୂନ୍ୟ ହୋଇ ବିବେକର ଜ୍ଞାନ ଆହରଣ । ସୁତରାଂ ଏହି ପ୍ରକାର ଜ୍ଞାନ ବା 'ଆହାର' ଶୁଦ୍ଧ ହେଲେ ଏହିପରି ବ୍ୟକ୍ତିର ସତ୍ତ୍ୱ ଅର୍ଥାତ୍ ଅନ୍ତରିନ୍ଦ୍ରିୟ ଶୁଦ୍ଧ ହୋଇଯିବ । ସତ୍ତ୍ୱଶୁଦ୍ଧି ହେଲେ ଅନନ୍ତ ପୁରୁଷଙ୍କର ଯଥାର୍ଥ ସ୍ୱରୂପଜ୍ଞାନ ଓ ଅବିଚ୍ଛିନ୍ନ ସ୍ମୃତି ଆସିବ ।"[୧]

ଏ ଦୁଇଟି ବ୍ୟାଖ୍ୟା ଆପାତବିରୋଧୀ ବୋଲି ବୋଧ ହେଲେ ମଧ୍ୟ ଉଭୟେ ହିଁ ସତ୍ୟ ଓ ପ୍ରୟୋଜନୀୟ । ସୂକ୍ଷ୍ମ ଶରୀର ବା ମନର ସଂଯମ ମାଂସପିଣ୍ଡମୟ ସ୍ଥୂଳ ଶରୀରର ସଂଯମଠାରୁ ଉଚ୍ଚତର କାର୍ଯ୍ୟ ସତ୍ୟ; କିନ୍ତୁ ସୂକ୍ଷ୍ମର ସଂଯମ କରିବାକୁ ହେଲେ ଆଗ ସ୍ଥୂଳର ସଂଯମ କରିବା ବିଶେଷ ଆବଶ୍ୟକ । ଅତଏବ ପ୍ରବର୍ତ୍ତକ ପକ୍ଷରେ ତାଙ୍କର ଗୁରୁପରମ୍ପରାରେ ଆହାର ସମ୍ବନ୍ଧରେ ଯେଉଁ ସକଳ ନିୟମ ପ୍ରଚଳିତ ଅଛି, ସେଗୁଡ଼ିକୁ ପାଳନ କରିବା ଆବଶ୍ୟକ । କିନ୍ତୁ ଆଜିକାଲି ଆମମାନଙ୍କର ଅନେକ ସମ୍ପ୍ରଦାୟରେ ଏହି ଆହାରାଦିର ବିଚାରରେ ଏତେ ଅଧିକ ବିଭ୍ରାଟ, ଏତେ ଅର୍ଥହୀନ ନିୟମର ଧରାବନ୍ଧା, ଏ ବିଷୟରେ ଏତେ ମତାନ୍ଧତା ଯେ, ସେମାନେ ଯେପରି

---

୧ ଆହ୍ରିୟତେ ଇତ୍ୟାହାରଃ ଶବ୍ଦାଦିବିଷୟଜ୍ଞାନଂ ଭୋକ୍ତୁର୍ଭୋଗାୟାହ୍ରିୟତେ । ତସ୍ୟ ବିଷୟୋପଲବ୍ଧିଲକ୍ଷଣସ୍ୟ ବିଜ୍ଞାନସ୍ୟ ଶୁଦ୍ଧିରାହାରଶୁଦ୍ଧିଃ, ରାଗଦ୍ୱେଷମୋହଦୋଷୈରସଂସୃଷ୍ଟଂ ବିଷୟବିଜ୍ଞାନମିତ୍ୟର୍ଥଃ । ତସ୍ୟାମାହାରଶୁଦ୍ଧୌ ସତ୍ୟାଂ ତଦ୍‌ବତୋଽନ୍ତଃକରଣସ୍ୟ ସତ୍ତ୍ୱସ୍ୟ ଶୁଦ୍ଧି-ନୈର୍ମଲ୍ୟଂ ଭବତି; ସତ୍ତ୍ୱଶୁଦ୍ଧୌ ଚ ସତ୍ୟାଂ ଯଥାବଗତେ ଭୂମାତ୍ମନି ଧ୍ରୁବାବିଚ୍ଛିନ୍ନାସ୍ମୃତିର-ବିସ୍ମରଣଂ ଭବତି ।

—ଛାନ୍ଦୋଗ୍ୟ ଉପନିଷତ୍, ୭ମ ପ୍ରପାଠକ, ୨୬ ଖଣ୍ଡର ଶାଙ୍କରଭାଷ୍ୟ ।

ଧର୍ମଟିକୁ ପାକଶାଳା ଭିତରେ ରଖିଛନ୍ତି । କେବେ ଯେ ସେହି ଧର୍ମର ମହାନ୍ ସତ୍ୟସମୂହ ସେଠାରୁ ବାହାରି ଆସି ଆଧ୍ୟାତ୍ମିକତାର ସୂର୍ଯ୍ୟାଲୋକରେ ଉଦ୍ଭାସିତ ହେବ, ତାହାର କୌଣସି ନିଶ୍ଚୟତା ନାହିଁ । ଏପରି ଧର୍ମ ଏକ ବିଶେଷ ପ୍ରକାର ଖାଣ୍ଟି ଜଡ଼ବାଦମାତ୍ର । ତାହା ଜ୍ଞାନ ନୁହେଁ, ଭକ୍ତି ନୁହେଁ, କର୍ମ ମଧ୍ୟ ନୁହେଁ । ଏହା ଏକ ବିଶେଷ ପ୍ରକାରର ବାତୁଳତା ମାତ୍ର । ଯେଉଁମାନେ ଏହି ଖାଦ୍ୟାଖାଦ୍ୟ ବିଚାରକୁ ଜୀବନର ସାର କାର୍ଯ୍ୟ ବୋଲି ସ୍ଥିର କରିଛନ୍ତି, ସେମାନଙ୍କର ବ୍ରହ୍ମଲୋକକୁ ଗତି ନ ହୋଇ ବାତୁଳାଳୟକୁ ହିଁ ଗତି ଅଧିକ ସମ୍ଭବ । ସୁତରାଂ ଏହା ଯୁକ୍ତିସିଦ୍ଧ ବୋଧ ହେଉଛି ଯେ, ଖାଦ୍ୟାଖାଦ୍ୟର ବିଚାର ମନର ସ୍ଥିରତାରୂପ ଉଚ୍ଚାବସ୍ଥା ଲାଭ କରିବା ନିମିତ୍ତ ବିଶେଷ ଆବଶ୍ୟକ । ନତୁବା ସହଜରେ ଏହି ସ୍ଥିରତା ଲାଭ କରାଯାଏ ନାହିଁ ।

ତା'ପରେ 'ବିମୋକ' । ବିମୋକ ଅର୍ଥରେ ଇନ୍ଦ୍ରିୟମାନଙ୍କର ବିଷୟାଭିମୁଖୀ ଗତି ନିବାରଣ ଓ ସେମାନଙ୍କୁ ସଂଯତ କରି ନିଜ ଇଚ୍ଛାଧୀନକୁ ଆଣିବା ଏବଂ ଏହା ସକଳ ଧର୍ମ-ସାଧନର ଭିତ୍ତିସ୍ୱରୂପ ।

ତାହାପରେ 'ଅଭ୍ୟାସ' ଅର୍ଥାତ୍ ଆତ୍ମସଂଯମ ଓ ଆତ୍ମତ୍ୟାଗର ଅଭ୍ୟାସ । ପରମାତ୍ମାଙ୍କୁ ଆମେ ଆତ୍ମା ମଧ୍ୟରେ କେତେ ବିଚିତ୍ର ରୂପରେ ଓ କେତେ ଗଭୀର ଭାବରେ ସମ୍ଭୋଗ କରି-ପାରୁଁ, ତାହାର କଅଣ ଇୟତ୍ତା ଅଛି ? କିନ୍ତୁ ସାଧକର ପ୍ରାଣପଣ ଚେଷ୍ଟା ଓ ପ୍ରବଳ ସଂଯମର ଅଭ୍ୟାସ ବ୍ୟତୀତ କଦାପି ତାହା କାର୍ଯ୍ୟରେ ପରିଣତ କରାଯାଇପାରେ ନାହିଁ । "ମନ ଯେପରି ସର୍ବଦା ସେହି ଈଶ୍ୱରଙ୍କ ଚିନ୍ତାରେ ନିବିଷ୍ଟ ଥାଏ ।" ପ୍ରଥମେ ପ୍ରଥମେ ଏହା ଅତି କଠିନ ବୋଧହୁଏ । କିନ୍ତୁ ଅଧ୍ୟବସାୟ ସହକାରେ ଚେଷ୍ଟା କରି କରି ଏହି ଚିନ୍ତାର ଶକ୍ତି କ୍ରମଶଃ ବର୍ଦ୍ଧିତ ହୁଏ । ଶ୍ରୀକୃଷ୍ଣ ଗୀତାରେ କହିଛନ୍ତି, "ହେ କୌନ୍ତେୟ, ଅଭ୍ୟାସ ଓ ବୈରାଗ୍ୟ ଦ୍ୱାରା ମନ ନିଗୃହୀତ ହୋଇଥାଏ ।"[୧]

ତାହାପରେ 'କ୍ରିୟା' ଅର୍ଥାତ୍ ଯଜ୍ଞ । ପଞ୍ଚମହାଯଜ୍ଞର ନିୟମିତ ରୂପେ ଅନୁଷ୍ଠାନ କରିବାକୁ ହେବ ।

'କଲ୍ୟାଣ' ଅର୍ଥରେ ପବିତ୍ରତା ଏବଂ ଏକମାତ୍ର ଏହି ପବିତ୍ରତାରୂପକ ଭିତ୍ତି ଉପରେ ଭକ୍ତି-ପ୍ରାସାଦ ପ୍ରତିଷ୍ଠିତ । ବାହ୍ୟ ଶୌଚ ଅଥବା ଖାଦ୍ୟାଖାଦ୍ୟ ସମ୍ବନ୍ଧରେ ବିଚାର ଏହି ଉଭୟ ହିଁ ସହଜ; କିନ୍ତୁ ଅନ୍ତଃଶୁଦ୍ଧି ବ୍ୟତିରେକେ ଏମାନଙ୍କର କୌଣସି ମୂଲ୍ୟ ନାହିଁ । ରାମାନୁଜ ଅନ୍ତଃଶୁଦ୍ଧି-ଲାଭର ଉପାୟସ୍ୱରୂପ ନିମ୍ନଲିଖିତ ଗୁଣଗୁଡ଼ିକର କଥା ବର୍ଣ୍ଣନା କରିଛନ୍ତି; (୧) ସତ୍ୟ, (୨) ଆର୍ଜ୍ଜବ—ସରଳତା, (୩) ଦୟା—ନିଃସ୍ୱାର୍ଥ ପରୋପକାର, (୪) ଦାନ, (୫) ଅହିଂସା—କାୟମନୋବାକ୍ୟରେ ଅପରକୁ ହିଂସା ନ କରିବା, (୬) ଅନଭିଧ୍ୟା—ପରଦ୍ରବ୍ୟରେ ଲୋଭ, ବୃଥା ଚିନ୍ତା ଓ ପରକୃତ ଅନିଷ୍ଟାଚରଣର କ୍ରମାଗତ ଚିନ୍ତା ପରିତ୍ୟାଗ । ଏହି ତାଲିକା ମଧ୍ୟରେ ଅହିଂସା ଗୁଣଟି ସମ୍ବନ୍ଧରେ ଦୁଇ ଗୋଟିଏ କଥା କହିବା ଆବଶ୍ୟକ । ସକଳ ପ୍ରାଣୀ ସମ୍ବନ୍ଧରେ ଏହି ଅହିଂସାଭାବ ଅବଲମ୍ବନ କରିବାକୁ ହେବ । କେହି କେହି ଯେପରି ମନେ କରନ୍ତି, ମନୁଷ୍ୟ-

---

[୧] ଅଭ୍ୟାସେନ ତୁ କୌନ୍ତେୟ ବୈରାଗ୍ୟେଣ ଚ ଗୃହ୍ୟତେ ।

—ଗୀତା, ୬ଷ୍ଠ ଅଧ୍ୟାୟ ୩୫ ଶ୍ଲୋକ ।

ଜାତି ପ୍ରତି ଅହିଂସାଭାବ ପୋଷଣ କଲେ ଯଥେଷ୍ଟ; ଅନ୍ୟାନ୍ୟ ପ୍ରାଣୀମାନଙ୍କୁ ହିଂସା କଲେ କୌଣସି କ୍ଷତି ନାହିଁ, ଅହିଂସା ବାସ୍ତବିକ୍ ତାହା ନୁହେଁ । ଆଉ କେହି କେହି ଯେପରି କୁକ୍କୁର ବିରାଡ଼ିଙ୍କୁ ଲାଳନପାଳନ କରନ୍ତି ବା ପିପିଲିକାମାନଙ୍କୁ ଚିନି ଖୁଆନ୍ତି; କିନ୍ତୁ ନିଜ ଭ୍ରାତାର ଗଳା କାଟିବାକୁ ଦ୍ୱିଧା ବୋଧ କରନ୍ତି ନାହିଁ, ଅହିଂସା କହିଲେ ତାହାକୁ ମଧ୍ୟ ବୁଝାଏ ନାହିଁ । ଏହା ଗୋଟିଏ ବିଶେଷ ଲକ୍ଷ୍ୟ କରିବା ବିଷୟ ଯେ, ଜଗତରେ ଯେତେ ମହତ୍ ଭାବ ଅଛି, ସେଗୁଡ଼ିକ ଯଦି ଦେଶ କାଳ ପାତ୍ର ବିଚାରଶୂନ୍ୟ ହୋଇ ଅନ୍ଧ ଭାବରେ ଅନୁଷ୍ଠାନ କରାଯାଏ, ତେବେ ସେଗୁଡ଼ିକ ସ୍ପଷ୍ଟ ଦୋଷ ରୂପରେ ଦେଖାଦେବ । କେତେଗୁଡ଼ିଏ ଧର୍ମସମ୍ପ୍ରଦାୟର ଅପରିଷ୍କାର ସନ୍ନ୍ୟାସୀମାନେ, କାଳେ ସେମାନଙ୍କ ଦେହର ପୋକ ମରିଯିବେ, ଏ ଭୟରେ ସେମାନେ ସ୍ନାନ କରନ୍ତି ନାହିଁ; କିନ୍ତୁ ସେଥିପାଇଁ ସେମାନଙ୍କ ମନୁଷ୍ୟ ଭାଇମାନଙ୍କୁ ଯେ ଯଥେଷ୍ଟ ଅଶାନ୍ତି ଓ ଅସୁଖ ଭୋଗ କରିବାକୁ ହୁଏ, ସେ ଦିଗକୁ ସେମାନଙ୍କର ମୋଟେ ଦୃଷ୍ଟି ନ ଥାଏ । ତେବେ ସେମାନେ ବୈଦିକ ଧର୍ମାବଲମ୍ବୀ ନୁହନ୍ତି ।

ଯଦି ଦେଖାଯାଏ, କୌଣସି ଲୋକ ଭିତରେ ଈର୍ଷାଭାବ ମୋଟେ ନାହିଁ, ତେବେ ବୁଝିବାକୁ ହେବ, ତା'ଭିତରେ ଅହିଂସାଭାବ ପ୍ରତିଷ୍ଠିତ ହୋଇଛି । ଯେ କୌଣସି ଲୋକ ସାମୟିକ ଉତ୍ତେଜନାରେ ଅଥବା କୌଣସି ପ୍ରକାର କୁସଂସ୍କାର ବା ପୁରୋହିତକୁଳର ପ୍ରେରଣାରେ କୌଣସି ସତ୍କର୍ମ ଅଥବା ଦାନ କରିପାରେ; କିନ୍ତୁ ଯେ ଯଥାର୍ଥ ଲୋକପ୍ରେମିକ, ସେ କାହାରି ପ୍ରତି ହେଲେ ଈର୍ଷାଭାବ ପୋଷଣ କରନ୍ତି ନାହିଁ । ଜଗତରେ ଯେଉଁମାନଙ୍କୁ ସଚରାଚର ବଡ଼ଲୋକ ବୋଲି କହନ୍ତି, ସେମାନେ ସାମାନ୍ୟ ନାମ, ଯଶ ବା ଦୁଇଟି ଗୋଟିଏ ସାମାନ୍ୟ ସ୍ୱର୍ଣ୍ଣଖଣ୍ଡ ପାଇଁ ପରସ୍ପର ପ୍ରତି ଈର୍ଷାନ୍ୱିତ ହୋଇ ଥାଆନ୍ତି । ଯେତେଦିନ ଯାଏ ଅନ୍ତରରେ ଏହି ଈର୍ଷାଭାବ ଥାଏ, ସେତେଦିନ ଅହିଂସାସିଦ୍ଧି ବହୁଦୂର । ଗୋଜାତି ନିରାମିଷଭୋଜୀ, ମେଷ ମଧ୍ୟ ସେହିପରି । ତେବେ କଅଣ ସେମାନେ ପରମଯୋଗୀ, ପରମ ଅହିଂସକ ? ଯେ କୌଣସି ମୂର୍ଖ ଇଚ୍ଛାନୁସାରେ କୌଣସି ବିଶେଷ ଖାଦ୍ୟ ବର୍ଜନ କରିପାରେ । ଉଦ୍ଭିଦଭୋଜୀ ଜନ୍ତୁଗଣ ଯେପରି ଖାଲି ଏହି ଉଦ୍ଭିଦ ଭୋଜନ ନିମିତ୍ତ ବିଶେଷ ଉନ୍ନତ ପଦବୀରେ ଆରୂଢ଼ ନୁହନ୍ତି, ଏମାନେ ମଧ୍ୟ ସେହିପରି ଖାଦ୍ୟବିଶେଷର ତ୍ୟାଗଗୁଣରୁ ଜ୍ଞାନୀ ହୋଇଯାଆନ୍ତି ନାହିଁ । ଯେଉଁ ବ୍ୟକ୍ତି ନିର୍ଦ୍ଦୟଭାବରେ ବିଧବା ଓ ଅନାଥ ବାଳକବାଳିକାମାନଙ୍କୁ ଠକି ଦେଇପାରେ, ଅର୍ଥ ପାଇଁ ଯେ କୌଣସି ଅନ୍ୟାୟ କାର୍ଯ୍ୟ କରିବାକୁ ଯାହାର ଦ୍ୱିଧା ନାହିଁ, ସେ ଯଦି କେବଳ ତୃଣଭୋଜନ କରି ଜୀବନଧାରଣ କରେ, ତଥାପି ସେ ପଶୁଠାରୁ ମଧ୍ୟ ଅଧମ । ଯାହାର ହୃଦୟରେ କଦାପି ଅପରର ଅନିଷ୍ଟଚିନ୍ତା ପର୍ଯ୍ୟନ୍ତ ଉଦିତ ହୁଏ ନାହିଁ, ଯେ କେବଳ ବନ୍ଧୁର ନୁହେଁ, ପରମ ଶତ୍ରୁର ସୌଭାଗ୍ୟରେ ସୁଦ୍ଧା ଆନନ୍ଦିତ, ସାରା ଜୀବନ ଶୂକରମାଂସ ଖାଇଲେ ହେଁ ସେ ପ୍ରକୃତ ଭକ୍ତ, ପ୍ରକୃତ ଯୋଗୀ; ସେ ଯଥାର୍ଥରେ ସମସ୍ତଙ୍କର ଗୁରୁ । ସୁତରାଂ ସର୍ବଦା ସ୍ମରଣ ରଖିବା ଉଚିତ ଯେ, ବାହ୍ୟ କ୍ରିୟାକଳାପ କେବଳ ଅନ୍ତଃଶୁଦ୍ଧିର ସହାୟକମାତ୍ର; ଯେଉଁଠାରେ ବାହ୍ୟ ବିଷୟରେ ଏତେ ଟିକିନିଖି ବିଚାର ଅସମ୍ଭବ ହୋଇପଡ଼େ, ସେଠାରେ କେବଳ ଅନ୍ତଃଶୌଚ ଅବଲମ୍ବନ ହିଁ ଯଥେଷ୍ଟ । ସେହି ଲୋକକୁ ଧିକ୍, ସେହି ଜାତିକୁ ଧିକ୍, ଯେଉଁ ଲୋକ ବା ଜାତି ଧର୍ମର ସାରମର୍ମ ଭୁଲିଯାଇ ଅଭ୍ୟାସବଶରୁ ବାହ୍ୟ

ଅନୁଷ୍ଠାନଗୁଡ଼ିକୁ ଦୃଢ଼ଭାବରେ ଧରିଥାଏ, କୌଣସି ପ୍ରକାରେ ଛାଡ଼ିବାକୁ ଇଚ୍ଛା କରେ ନାହିଁ । ଯଦି ଏହି ଅନୁଷ୍ଠାନଗୁଡ଼ିକ ଆଧ୍ୟାତ୍ମିକ ଜୀବନର ବିଶେଷ ସହାୟକ ହୁଏ, ତେବେ ଏଗୁଡ଼ିକର ଉପଯୋଗିତା ଅଛି ବୋଲି ବୁଝିବାକୁ ହେବ । ପ୍ରାଣଶୂନ୍ୟ ଆନୁଷ୍ଠାନିକତାପୂର୍ଣ୍ଣ ସେଗୁଡ଼ିକୁ ନିର୍ଦ୍ଦୟଭାବରେ ଉତ୍ପାଟନ କରି ପକାଇବାକୁ ହେବ ।

'ଅନବସାଦ' ବା ବଳ ଭକ୍ତିଲାଭର ପରବର୍ତ୍ତୀ ସାଧନ । ଶ୍ରୁତି କହନ୍ତି, "ବଳହୀନ ବ୍ୟକ୍ତି ତାହାଙ୍କୁ ଲାଭ କରିପାରେ ନାହିଁ ।" ଏଠାରେ ଶାରୀରିକ ଓ ମାନସିକ ଉଭୟ ପ୍ରକାର ଦୌର୍ବଲ୍ୟ ଲକ୍ଷିତ ହୋଇଛି । 'ବଳିଷ୍ଠ, ଦ୍ରଢ଼ିଷ୍ଠ' ବ୍ୟକ୍ତିମାନେ ପ୍ରକୃତ ଶିଷ୍ୟ ହେବାର ଉପଯୁକ୍ତ । ଦୁର୍ବଳ, ଶୀର୍ଣ୍ଣକାୟ, ଜରାଜୀର୍ଣ୍ଣ ବ୍ୟକ୍ତି କି ସାଧନ କରିବ ? ଶରୀର ଓ ମନ ମଧ୍ୟରେ ଯେ ଅଦ୍ଭୁତ ଶକ୍ତିସମୂହ ଲୁକ୍କାୟିତ ଅଛି, କୌଣସି ପ୍ରକାର ଯୋଗାଭ୍ୟାସଦ୍ୱାରା ସେଗୁଡ଼ିକ କିଞ୍ଚିତ୍ ପରିମାଣରେ ଜାଗ୍ରତ ହେଲେ ମଧ୍ୟ ଦୁର୍ବଳ ବ୍ୟକ୍ତି ଏକାବେଳକେ ନଷ୍ଟ ହୋଇଯାଏ । 'ଯୁବା, ସୁସ୍ଥକାୟ, ସବଳ ବ୍ୟକ୍ତିମାନେ ସିଦ୍ଧ ହୋଇପାରନ୍ତି, ସୁତରାଂ ଶାରୀରିକ ବଳ ନ ଥିଲେ ଚଳିବ ନାହିଁ । ଇନ୍ଦ୍ରିୟସଂଯମର ପ୍ରତିକ୍ରିୟା ଖୁବ୍ ସବଳ ଦେହ ବିନା ସହ୍ୟ କରିପାରିବ । ଅତଏବ ଭକ୍ତ ହେବାକୁ ଯାହାଙ୍କର କାମନା, ତାଙ୍କର ସବଳ ସୁସ୍ଥକାୟ ହେବା ଆବଶ୍ୟକ । ଯେଉଁମାନେ ଅତି ଦୁର୍ବଳ, ସେମାନେ ଯଦି କୌଣସିପ୍ରକାର ଯୋଗାଭ୍ୟାସର ଚେଷ୍ଟା କରନ୍ତି, ତେବେ ସେମାନେ ହୁଏତ କୌଣସି ଦୁରାରୋଗ୍ୟ ବ୍ୟାଧିଗ୍ରସ୍ତ ହୋଇପଡ଼ିବେ, ନଚେତ୍ ମନକୁ ଭୟାନକ ଦୁର୍ବଳ କରି ପକାଇବେ । ଇଚ୍ଛାପୂର୍ବକ ଶରୀରକୁ ଦୁର୍ବଳ କରିବା ଭକ୍ତି ବା ଜ୍ଞାନଲାଭ ନିମିତ୍ତ ଅତ୍ୟାବଶ୍ୟକ ବ୍ୟବସ୍ଥା ନୁହେଁ ।

ଯାହାର ଚିତ୍ତ ଦୁର୍ବଳ, ସେ ମଧ୍ୟ ଆତ୍ମଲାଭରେ କୃତକାର୍ଯ୍ୟ ହୁଏ ନାହିଁ । ଯେ ଭକ୍ତ ହେବାକୁ ଇଚ୍ଛୁକ, ସେ ସର୍ବଦା ପ୍ରଫୁଲ୍ଲ ରହିବା ଉଚିତ । ପାଶ୍ଚାତ୍ୟ ଜଗତ୍‌ରେ ଆଦର୍ଶ ଧାର୍ମିକର ଲକ୍ଷଣ ଏହି ଯେ, ସେ କେତେବେଳେ ହେଲେ ହସିବ ନାହିଁ, ତାହାର ମୁଖ ସର୍ବଦା ବିଷାଦ-ମେଘଦ୍ୱାରା ଆବୃତ ଥିବ । ତାହାର ଗାଲ ପଶିଯିବା ଓ ମୁହଁ ଲମ୍ବା ହେବା ଆବଶ୍ୟକ । ଶୁଷ୍କ ଶରୀର ଓ ଲମ୍ବାମୁଖ ଲୋକ ଡାକ୍ତର କବିରାଜଙ୍କର ଯତ୍ନର ବିଷୟ ହୋଇପାରନ୍ତି; କିନ୍ତୁ ସେମାନେ ଯୋଗୀ ନୁହନ୍ତି । ସନ୍ତୁଷ୍ଟଚିତ୍ତ ବ୍ୟକ୍ତି ହିଁ ଅଧ୍ୟବସାୟଶୀଳ ହୋଇପାରେ । ଦୃଢ଼ଚେତା ବ୍ୟକ୍ତି ସହସ୍ର ବାଧାବିଘ୍ନ ଅତିକ୍ରମ କରି ଚାଲିଯାଇପାରେ । ମାୟାର ଦୁର୍ଭେଦ୍ୟ ଜାଲଭେଦରୂପ ମହାକଠିନ କାର୍ଯ୍ୟ କେବଳ ମହାବୀରଗଣଙ୍କଦ୍ୱାରା ସମ୍ଭବ ।

କିନ୍ତୁ ତାହା ବୋଲି ଅତିରିକ୍ତ ଆମୋଦରେ ମାତିଲେ ଚଳିବ ନାହିଁ ( ଅନୁଦ୍ଧର୍ଷ ) । ଅତିରିକ୍ତ ହାସ୍ୟକୌତୁକ ଆମମାନଙ୍କୁ ଗଭୀର ଚିନ୍ତା ବିଷୟରେ ଅକ୍ଷମ କରେ । ଏଥିରେ ମାନସିକ ଶକ୍ତିସମୂହର ବୃଥା କ୍ଷୟ ହୁଏ । ଇଚ୍ଛାଶକ୍ତି ଯେତେ ଦୃଢ଼ ହୁଏ, ନାନାବିଧ ଭାବାବେଗରେ ମନ ସେତେ କମ୍ ବିଚଳିତ ହୁଏ । ଦୁଃଖଜନକ ଗମ୍ଭୀର ଭାବ ଯେପରି ଖରାପ, ଅତିରିକ୍ତ ଆମୋଦପ୍ରମୋଦ ମଧ୍ୟ ତଦ୍ରୂପ । ଯେତେବେଳେ ମନ ସାମଞ୍ଜସ୍ୟପୂର୍ଣ୍ଣ ସ୍ଥିର ଶାନ୍ତଭାବରେ ଥାଏ, ସେତେବେଳେ ସର୍ବପ୍ରକାର ଆଧ୍ୟାତ୍ମିକ ଅନୁଭୂତି ସମ୍ଭବ ।

ଏହି ସକଳ ସାଧନାଦ୍ୱାରା କ୍ରମଶଃ ଈଶ୍ୱରଭକ୍ତିର ଉଦୟ ହୋଇଥାଏ ।

# ପରାଭକ୍ତି

## ଭକ୍ତର ପ୍ରସ୍ତୁତି-ତ୍ୟାଗ

ବର୍ତ୍ତମାନ ଆମେମାନେ ଗୌଣୀ ଭକ୍ତିର କଥା ଶେଷ କରି ପରାଭକ୍ତିର ଆଲୋଚନା ଆରମ୍ଭ କରିବା । ଏକ୍ଷଣି ଏହି ପରାଭକ୍ତି-ଅଭ୍ୟାସ ବିଷୟରେ ପ୍ରସ୍ତୁତ ହେବାର ଗୋଟିଏ ଶେଷ ସାଧନଟିର କଥା ବିବେଚନା କରାଯାଉ । ସର୍ବପ୍ରକାର ସାଧନର ଉଦ୍ଦେଶ୍ୟ ଆତ୍ମଶୁଦ୍ଧି । ନାମ-ସାଧନ, ପ୍ରତୀକ, ପ୍ରତିମାଦିର ଉପାସନା ଓ ଅନ୍ୟାନ୍ୟ ଅନୁଷ୍ଠାନ କେବଳ ଆତ୍ମାର ଶୁଦ୍ଧି-ସାଧନ ନିମିତ୍ତ । କିନ୍ତୁ ଶୁଦ୍ଧିକାରକ ସମୁଦାୟ ସାଧନ ମଧ୍ୟରେ ତ୍ୟାଗ ହିଁ ସର୍ବଶ୍ରେଷ୍ଠ—ଏହା ବ୍ୟତୀତ କେହି ଏହି ପରାଭକ୍ତିର ରାଜ୍ୟରେ ପ୍ରବେଶ କରିପାରିବେ ନାହିଁ । ଅନେକଙ୍କ ପକ୍ଷରେ ଏହି ତ୍ୟାଗ ଅତି ଭୟାବହ ବିଷୟ ବୋଲି ବୋଧ ହୋଇପାରେ; କିନ୍ତୁ ଏହା ବ୍ୟତୀତ କୌଣସି ପ୍ରକାର ଆଧ୍ୟାତ୍ମିକ ଉନ୍ନତି ସମ୍ଭବ ନୁହେଁ; ସକଳ ଯୋଗରେ ଏହି ତ୍ୟାଗ ହିଁ ଆବଶ୍ୟକ । ଏହି ତ୍ୟାଗ ହିଁ ଧର୍ମର ସୋପାନ—ସମୁଦାୟ ସାଧନର ଅନ୍ତରଙ୍ଗ ସାଧନ । ତ୍ୟାଗ ହିଁ ପ୍ରକୃତ ଧର୍ମ । ଯେତେବେଳେ ମାନବାତ୍ମା ସଂସାରର ସମୁଦାୟ ବସ୍ତୁ ଦୂରକୁ ଫିଙ୍ଗିଦେଇ ଗଭୀର ତତ୍ତ୍ୱସମୂହର ଅନୁସନ୍ଧାନ କରେ, ଯେତେବେଳେ ଚୈତନ୍ୟସ୍ୱରୂପ ମାନବ ବୁଝିପାରେ ଯେ, ମୁଁ ଜଡ଼ ଦେହରେ ଆବଦ୍ଧ ହୋଇ ଜଡ଼ ହୋଇଯାଉଛି ଏବଂ କ୍ରମଶଃ ବିନାଶ-ପଥରେ ଅଗ୍ରସର ହେଉଛି, ଏହି କଥା ବୁଝି ଜଡ଼ ପଦାର୍ଥରୁ ଆପଣାର ଦୃଷ୍ଟିକୁ ଫେରାଇ ନିଏ, ସେତେବେଳେ ତ୍ୟାଗ ଆରମ୍ଭ ହୁଏ, ସେତେବେଳେ ହିଁ ପ୍ରକୃତ ଆଧ୍ୟାତ୍ମିକ ଉନ୍ନତି ଆରମ୍ଭ ହୁଏ । କର୍ମଯୋଗୀ ସମୁଦାୟ କର୍ମଫଳ ତ୍ୟାଗ କରନ୍ତି; ସେ ଯେଉଁସବୁ କର୍ମ କରନ୍ତି, ତାହା ଫଳରେ ସେ ଆସକ୍ତ ହୁଅନ୍ତି ନାହିଁ । ସେ ଐହିକ ବା ପାରତ୍ରିକ କୌଣସି ଲାଭ ପାଇଁ ଆଗ୍ରହାନ୍ୱିତ ହୁଅନ୍ତି ନାହିଁ । ରାଜଯୋଗୀ ବୁଝନ୍ତି, ସମୁଦାୟ ପ୍ରକୃତିର ଲକ୍ଷ୍ୟ—ପୁରୁଷ ବା ଆତ୍ମାକୁ ବିବିଧ ସୁଖଦୁଃଖ ଭୋଗ କରାଇବା । ଏହା ଫଳରେ ଆତ୍ମା ବୁଝିପାରେ—ପ୍ରକୃତିଠାରୁ ସେ ନିତ୍ୟସ୍ୱତନ୍ତ୍ର ବା ପୃଥକ୍ । ମାନବାତ୍ମାଙ୍କୁ ଜାଣିବାକୁ ହେବ, ସେ ଅନନ୍ତକାଳ ପାଇଁ ଆତ୍ମସ୍ୱରୂପ ଥିଲେ, ଏବଂ ଭୂତ ସହିତ ତାଙ୍କର ସଂଯୋଗ କେବଳ ସାମୟିକ, କ୍ଷଣିକମାତ୍ର । ରାଜଯୋଗୀ ପ୍ରକୃତିର ସମୁଦାୟ ସୁଖଦୁଃଖ ଭୋଗ କରି ଅଭିଜ୍ଞତା ଭିତର ଦେଇ ବୈରାଗ୍ୟର ଶିକ୍ଷା ଲାଭ କରନ୍ତି । ଜ୍ଞାନଯୋଗୀଙ୍କ ବୈରାଗ୍ୟ ସର୍ବାପେକ୍ଷା କଠୋର । କାରଣ ପ୍ରଥମରୁ ଏହି ସତ୍ୟବତ୍ ପ୍ରତୀୟମାନ ପ୍ରକୃତିକୁ ତାଙ୍କୁ ମିଥ୍ୟା ବୋଲି ଜାଣିବାକୁ ହେବ । ତାଙ୍କୁ ବୁଝିବାକୁ ହେବ, ପ୍ରକୃତିରେ ଯେତେ କିଛି ଶକ୍ତିପ୍ରକାଶ ଦେଖାଯାଏ, ସେସବୁ ଆତ୍ମାର ଶକ୍ତି, ପ୍ରକୃତିର ନୁହେଁ । ତାଙ୍କୁ ପ୍ରଥମରୁ ଜାଣିବାକୁ ହେବ, ଆତ୍ମା ମଧ୍ୟରେ ସର୍ବପ୍ରକାର ଜ୍ଞାନ ଓ ଅଭିଜ୍ଞତା ଅନ୍ତର୍ନିହିତ ରହିଛି, ପ୍ରକୃତିରେ କିଛି ନାହିଁ । ସୁତରାଂ ତାଙ୍କୁ କେବଳ ବିଚାରଜନିତ ଧାରଣା ବଳରେ ଏକାବେଳକେ ସମୁଦାୟ ପ୍ରାକୃତିକ ବନ୍ଧନ ଛିନ୍ନ କରିବାକୁ ହେବ । ପ୍ରକୃତି ଓ ପ୍ରାକୃତିକ ସମୁଦାୟ ପଦାର୍ଥ ଆଡ଼କୁ ସେ ଦୃଷ୍ଟି ଦିଅନ୍ତି ନାହିଁ, ସେଗୁଡ଼ିକ ଛାୟାବାଜିପରି ତାଙ୍କ ସମ୍ମୁଖରୁ ଅନ୍ତର୍ହିତ ହୋଇଯାଏ । ସେ ସ୍ୱମହିମାରେ ବିରାଜିତ ହେବାକୁ ଚେଷ୍ଟା କରନ୍ତି ।

ସକଳ ପ୍ରକାର ବୈରାଗ୍ୟ ଅପେକ୍ଷା ଭକ୍ତିଯୋଗୀର ବୈରାଗ୍ୟ ଖୁବ୍ ସ୍ୱାଭାବିକ । ଏଥିରେ କୌଣସି କଠୋରତା ନାହିଁ, କିଛି ଛାଡ଼ିବାକୁ ହୁଏ ନାହିଁ, ଆମ ନିକଟରୁ କୌଣସି ଜିନିଷ ଜୋର୍‌କରି ଛଡ଼ାଇ ନିଆଯାଏ ନାହିଁ—ଅନ୍ୟ କୌଣସିଠାରୁ ଜୋର୍ କରି ଆମକୁ ତଫାତ୍ କରି ହୁଏ ନାହିଁ । ଭକ୍ତର ତ୍ୟାଗ ଅତି ସହଜ—ଅତି ସ୍ୱାଭାବିକ । ଆମେମାନେ ଏହିପରି ତ୍ୟାଗ ଅନ୍ତତଃ ବିକୃତ ରୂପରେ ଆମ ଚତୁର୍ଦ୍ଦିଗରେ ପ୍ରତିଦିନ ଦେଖିବାକୁ ପାଉଛୁଁ । କୌଣସି ବ୍ୟକ୍ତି କୌଣସି ସ୍ତ୍ରୀ-ଲୋକକୁ ଭଲପାଏ । କିଛିଦିନ ପରେ ସେ ଆଉ ଅନ୍ୟ ଜଣକୁ ଭଲ ପାଇଲା । ସେତେବେଳେ ଏହି ପ୍ରଥମ ସ୍ତ୍ରୀ-ଲୋକଟିର ଚିନ୍ତା ତା' ମନରୁ ଦୂର ହୋଇଗଲା । ତା' ମନରୁ ଏହାର ଚିନ୍ତା ଅତି ଧୀର ଭାବରେ କ୍ରମଶଃ ସହଜରେ ଅପସରି ଗଲା । ତାହାକୁ ଆଉ ସେ ସ୍ତ୍ରୀଲୋକର ଅଭାବଜନିତ କ୍ଳେଶ ସହ୍ୟ କରିବାକୁ ହେଲା ନାହିଁ । ଏପରି ମନେକର, କୌଣସି ସ୍ତ୍ରୀଲୋକ କୌଣସି ପୁରୁଷକୁ ଭଲପାଉଛି । ସେ ପୁଣି ଯେବେ ଅନ୍ୟ ଏକ ପୁରୁଷକୁ ଭଲପାଏ, ତେବେ ଏହି ପ୍ରଥମ ପୁରୁଷଟିର ଭାବ ଯେପରି କି ତାହାର ମନରୁ ସହଜରେ ଚାଲିଯାଏ । କୌଣସି ଲୋକ ହୁଏତ ନିଜର ସହରକୁ ଭଲପାଏ । କ୍ରମଶଃ ସେ ନିଜ ଦେଶକୁ ଭଲପାଇବାକୁ ଆରମ୍ଭ କଲା । ସେତେବେଳେ ତାହାର କ୍ଷୁଦ୍ର ସହର ପାଇଁ ଯେ ପ୍ରଗାଢ଼ ମୋହ, ତାହା ସ୍ୱାଭାବିକ ଗତିରେ ଚାଲିଗଲା । ପୁଣି ମନେ କର, ଜଣେ ଲୋକ ସମୁଦାୟ ଜଗତକୁ ଭଲ ପାଇବାକୁ ଶିଖିଲା, ସେତେବେଳେ ତାହାର ସ୍ୱଦେଶାନୁରାଗ, ନିଜ ଦେଶ ପାଇଁ ପ୍ରବଳ ଉନ୍ମତ୍ତ ଭଲପାଇବା ଚାଲିଗଲା ସେଥିରେ ତାହାର କିଛି କଷ୍ଟ ହେଲା ନାହିଁ । ଏପରି ଭାବକୁ ଦୂରକରିବା ପାଇଁ ତାକୁ କିଛି ଜୋର୍ ଜବରଦସ୍ତି କରିବାକୁ ହେଲା ନାହିଁ । ଅଶିକ୍ଷିତ ଲୋକ ଇନ୍ଦ୍ରିୟସୁଖରେ ଉନ୍ମତ୍ତ । ଶିକ୍ଷିତ ହେଲେ ସେ ଜ୍ଞାନଚର୍ଚ୍ଚାରେ ଅଧିକତର ସୁଖ ପାଇପାରେ । ସେତେବେଳେ ସେ ବିଷୟଭୋଗରେ ସେତେ ସୁଖ ପାଏ ନାହିଁ । କୁକୁର ଓ ବ୍ୟାଘ୍ର ଖାଦ୍ୟ ପାଇଲେ ଯେପରି ସ୍ଫୂର୍ତ୍ତିର ସହିତ ଭୋଜନ କରନ୍ତି, କୌଣସି ମନୁଷ୍ୟ ପକ୍ଷରେ ସେପରି ସ୍ଫୂର୍ତ୍ତିର ସହିତ ଭୋଜନ ସମ୍ଭବପର ନୁହେଁ । ପୁଣି ମନୁଷ୍ୟ ବୁଦ୍ଧିବଳରେ ନାନା ବିଷୟ ଜ୍ଞାତ ହୋଇ ଓ ନାନା କାର୍ଯ୍ୟ ସମ୍ପାଦନ କରି ଯେଉଁ ସୁଖ ଅନୁଭବ କରେ, କୁକୁର ତାହା କଦାପି ସ୍ୱପ୍ନରେ ସୁଦ୍ଧା ଅନୁଭୂତ ହୁଏ ନାହିଁ । ପ୍ରଥମେ ଇନ୍ଦ୍ରିୟରୁ ସୁଖାନୁଭୂତି ହୋଇଥାଏ । କିନ୍ତୁ ଯେତେବେଳେ କୌଣସି ପ୍ରାଣୀ ଜୀବନର ଉନ୍ନତ ଭୂମିରେ ଆରୋହଣ କରେ, ସେତେବେଳେ ସେ ଏହି ନିମ୍ନଜାତୀୟ ସୁଖକୁ ଆଉ ସେତେ ଆଗ୍ରହର ସହିତ ସମ୍ଭୋଗ କରିପାରେ ନାହିଁ । ମନୁଷ୍ୟ-ସମାଜ ମଧ୍ୟରେ ଦେଖାଯାଏ, ମନୁଷ୍ୟ ଯେତେ ପଶୁତୁଲ୍ୟ ହୁଏ, ସେ ଇନ୍ଦ୍ରିୟସୁଖକୁ ସେତେ ତୀବ୍ର ଭାବରେ ଅନୁଭବ କରେ । ଆଉ ଯେତେ ତାହାର ଶିକ୍ଷାଦିର ଉନ୍ନତି ହୁଏ, ସେତେ ତାହାର ବୁଦ୍ଧିବୃତ୍ତିର ପରିଚାଳନା ଓ ଏତଦ୍‌ବିଧ ସୂକ୍ଷ୍ମ ସୂକ୍ଷ୍ମ ବିଷୟରେ ତାହାର ସୁଖାନୁଭୂତି ହୋଇଥାଏ । ଏହିପରି ଯେତେବେଳେ ପୁଣି ମନୁଷ୍ୟ ବୁଦ୍ଧିର ବା ମନୋବୃତ୍ତିର ଅତୀତ ଭୂମିରେ ଆରୋହଣ କରେ, ଯେତେବେଳେ ସେ ଆଧ୍ୟାତ୍ମିକତା ଓ ଭଗବତ୍-ତତ୍ତ୍ୱାନୁଭୂତିର ଭୂମିରେ ଆରୋହଣ କରେ, ସେତେବେଳେ ସେ ଏପରି ଏକ ଆନନ୍ଦମୟ ଅବସ୍ଥା ଲାଭକରେ, ଯାହା ତୁଳନାରେ ଇନ୍ଦ୍ରିୟ ଅଥବା ବୁଦ୍ଧିବୃତ୍ତି ପରିଚାଳନାଜନିତ ସୁଖଶୂନ୍ୟ ବୋଲି ପ୍ରତିଭାତ ହୁଏ । ଯେତେବେଳେ ଚନ୍ଦ୍ର

ଉଜ୍ଜ୍ୱଳ ଭାବରେ କିରଣମାଳା ବିକୀରଣ କରେ, ସେତେବେଳେ ତାରାମାନେ ନିଷ୍ପ୍ରଭ ହୋଇଯାଆନ୍ତି । ପୁନଶ୍ଚ ସୂର୍ଯ୍ୟଙ୍କର ପ୍ରକାଶ ହେଲେ ଚନ୍ଦ୍ର ମଧ୍ୟ ନିଷ୍ପ୍ରଭଭାବ ଧାରଣ କରେ । ଭକ୍ତ ପାଇଁ ଯେ ବୈରାଗ୍ୟର ପ୍ରୟୋଜନ, ତାହା ଅନ୍ୟ କିଛିକୁ ନାଶ କରି ଉତ୍ପନ୍ନ ହୁଏ ନାହିଁ । ଯେପରି କୌଣସି କ୍ରମବର୍ଦ୍ଧମାନ ଆଲୋକ ନିକଟରେ ଅଳ୍ପୋଜ୍ଜ୍ୱଳ ଆଲୋକ ସ୍ୱଭାବତଃ ନିଷ୍ପ୍ରଭରୁ ନିଷ୍ପ୍ରଭତର ପ୍ରତୀତ ହୁଏ, ଏବଂ ପରିଶେଷରେ ଏକାବେଳକେ ଅନ୍ତର୍ହିତ ହୁଏ, ତଦ୍ରୂପ ଭଗବତ୍ପ୍ରେମୋନ୍ମତ୍ତତାଦ୍ୱାରା ଇନ୍ଦ୍ରିୟବୃତ୍ତି ଓ ବୁଦ୍ଧିବୃତ୍ତି ପରିଚାଳନାଜନିତ ସୁଖସମୂହ ସ୍ୱଭାବତଃ ହିଁ ନିଷ୍ପ୍ରଭ ହୋଇଯାଏ ।

ଏହି ଈଶ୍ୱରପ୍ରେମ କ୍ରମଶଃ ବର୍ଦ୍ଧିତ ହୋଇ ଏପରି ଏକ ଭାବ ଧାରଣ କରେ, ଯାହାକୁ 'ପରାଭକ୍ତି' କୁହାଯାଏ । ସେତେବେଳେ ଏହି ପ୍ରେମିକପୁରୁଷଙ୍କ ପକ୍ଷରେ ଅନୁଷ୍ଠାନର ଆଉ ଆବଶ୍ୟକତା ନ ଥାଏ, ଶାସ୍ତ୍ରର କୌଣସି ପ୍ରୟୋଜନ ରହେ ନାହିଁ; ପ୍ରତିମା, ମନ୍ଦିର, ଭଜନାଳୟ, ବିଭିନ୍ନ ଧର୍ମସମ୍ପ୍ରଦାୟ, ଦେଶ, ଜାତି ଏହି ସମସ୍ତ କ୍ଷୁଦ୍ର କ୍ଷୁଦ୍ର ସୀମାବଦ୍ଧ ଭାବ ଓ ବନ୍ଧନ ଆପଣାଛାଏଁ ଦୂରକୁ ଚାଲିଯାଏ । କୌଣସି ବିଷୟ ତାଙ୍କୁ ବାନ୍ଧିପାରେ ନାହିଁ, କୌଣସି ବିଷୟ ତାଙ୍କର ସ୍ୱାଧୀନତା ନଷ୍ଟ କରିପାରେ ନାହିଁ । ଜାହାଜ ହଠାତ୍ ଚୁମ୍ବକ-ପ୍ରସ୍ତରର ପାହାଡ଼ ନିକଟକୁ ଆସିଲେ ଲୁହାକଣ୍ଟାଗୁଡ଼ିକ ଆକୃଷ୍ଟ ହୋଇପଡ଼େ, ଆଉ ପଟାଗୁଡ଼ିକ ଜଳରେ ଭାସିବାକୁ ଲାଗେ । ଭଗବତ୍କୃପା ଏହିପରି ଆତ୍ମାର ସ୍ୱରୂପ ପ୍ରକାଶରେ ଥିବା ବିଘ୍ନସମୂହ ଅପସାରିତ କରିଦିଏ । ସେତେବେଳେ ଏହା ମୁକ୍ତ ହୋଇଯାଏ । ସୁତରାଂ ଭକ୍ତିଲାଭର ଉପାୟସ୍ୱରୂପ ଏହି ବୈରାଗ୍ୟ-ସାଧନରେ କୌଣସି କଠୋରତା ନାହିଁ, କୌଣସି କର୍କଶ ବା ଶୁଷ୍କ ଭାବ ନାହିଁ, କୌଣସି ପ୍ରକାର ଜୋର୍ ଜବରଦସ୍ତି ମଧ୍ୟ ନାହିଁ । ଭକ୍ତଙ୍କୁ ତାଙ୍କ ହୃଦୟର କୌଣସି ଭାବକୁ ଚାପିରଖିବାକୁ ହୁଏ ନାହିଁ । ସେ ବରଂ ସେହି ସକଳ ଭାବକୁ ପ୍ରବଳ କରି ଭଗବାନଙ୍କ ଆଡ଼କୁ ଚାଳନା କରନ୍ତି ।

## ଭକ୍ତର ବୈରାଗ୍ୟ ପ୍ରେମପ୍ରସୂତ

ପ୍ରକୃତିରେ ଆମେ ସର୍ବତ୍ର ପ୍ରେମର ବିକାଶ ଦେଖିବାକୁ ପାଉଁ । ସମାଜ ମଧ୍ୟରେ ଯାହା କିଛି ସୁନ୍ଦର ଓ ମହତ୍, ସମସ୍ତ ହିଁ ପ୍ରେମପ୍ରସୂତ; ପୁଣି ମନ୍ଦ ପୈଶାଚିକ ବ୍ୟାପାରଗୁଡ଼ିକ ମଧ୍ୟ ସେହି ଗୋଟିଏ ପ୍ରେମଭାବର ବିକୃତ ରୂପମାତ୍ର । ପତିପତ୍ନୀଙ୍କର ବିଶୁଦ୍ଧ ଦାମ୍ପତ୍ୟପ୍ରେମ ଏବଂ ଅତି ନୀଚ କାମବୃତ୍ତି ଉଭୟେ ସେହି ଗୋଟିଏ ପ୍ରେମର ବିକାଶମାତ୍ର । ଭାବ ଗୋଟିଏ, ତେବେ ବିଭିନ୍ନ ଅବସ୍ଥାରେ ଏହାର ବିଭିନ୍ନ ରୂପ । ସେହି ଗୋଟାଏ ପ୍ରେମର ଭଲ ବା ମନ୍ଦ ଦିଗକୁ ପରିଚାଳନା ଫଳରେ କେହି ବା ଦରିଦ୍ରକୁ ସର୍ବସ୍ୱ ଅର୍ପଣ କରେ, କେହି ବା ନିଜ ଭାଇର ଗଳା କାଟି ତାହାର ଯଥାସର୍ବସ୍ୱ ଅପହରଣ କରେ । ଶେଷୋକ୍ତ ବ୍ୟକ୍ତି ନିଜକୁ ଯେପରି ଭଲପାଏ, ପ୍ରଥମୋକ୍ତ ବ୍ୟକ୍ତି ସେହିପରି ଅପରକୁ ଭଲ ପାଏ । ତେବେ ଶେଷୋକ୍ତ ସ୍ଥଳରେ ପ୍ରେମ ମନ୍ଦଦିଗକୁ ପରିଚାଳିତ, କିନ୍ତୁ ଅପର ସ୍ଥଳରେ ଏହା ଯଥାର୍ଥ ବିଷୟରେ ପ୍ରଯୁକ୍ତ । ଯେଉଁ

ଅଗ୍ନି ଆମମାନଙ୍କ ଖାଦ୍ୟପାକ କାର୍ଯ୍ୟରେ ସହାୟତା କରେ, ତାହା ପୁଣି ଗୋଟିଏ ଶିଶୁଦାହର କାରଣ ମଧ୍ୟ ହୋଇପାରେ । ଏଥିରେ ଅଗ୍ନିର କିଛି ଦୋଷ ନାହିଁ, ବ୍ୟବହାର ଗୁଣରୁ ଫଳରେ ତାରତମ୍ୟ ହୁଏ ମାତ୍ର । ଅତଏବ ଏହି ପ୍ରେମ, ଏହି ପ୍ରବଳ ଆସଙ୍ଗସ୍ପୃହା, ଦୁଇଜଣଙ୍କର ଏକପ୍ରାଣ ହେବା ପାଇଁ ଏହି ପ୍ରବଳ ଆଗ୍ରହ, ପୁଣି ହୁଏତ ଅବଶେଷରେ ସମସ୍ତଙ୍କର ସେହି ଏକ ସ୍ୱରୂପରେ ବିଲୀନ ହେବାର ଇଚ୍ଛା ରୂପେ ପ୍ରକାଶିତ ।

ଭକ୍ତିଯୋଗ ପ୍ରେମର ଏହି ଉଚ୍ଚତମ ବିକାଶର ବିଜ୍ଞାନସ୍ୱରୂପ । ଏହା ଆମମାନଙ୍କର ପ୍ରେମକୁ ଯଥାର୍ଥ ପଥରେ ପରିଚାଳନା କରିବାର, ଏହାକୁ ଆୟତ୍ତାଧୀନରେ ରଖିବାର, ଏହାର ସଦ୍‌ବ୍ୟବହାର କରିବାର, ଏହାକୁ ଗୋଟିଏ ନୂତନ ପଥରେ ପ୍ରଧାବିତ କରିବାର, ଏହାଠାରୁ ଶ୍ରେଷ୍ଠ ଓ ମହତ୍ତମ ଫଳ ଅର୍ଥାତ୍ ଜୀବନ୍ମୁକ୍ତ ଅବସ୍ଥା ଲାଭ କରିବାର, ଆଧ୍ୟାତ୍ମିକ ଶାନ୍ତି ଓ ଆନନ୍ଦ ଲାଭ କରିବାର ଉପାୟ ପ୍ରଦର୍ଶନ କରେ ଭକ୍ତିଯୋଗ କିଛି ତ୍ୟାଗ କରିବାକୁ ବା ଛାଡ଼ିବାକୁ କହେ ନାହିଁ, କେବଳ କହେ, "ସେହି ପରମପୁରୁଷଙ୍କଠାରେ ଆସକ୍ତ ହୁଅ ।" ଆଉ ଯେଉଁ ଲୋକ ପରମପୁରୁଷଙ୍କ ପ୍ରେମରେ ଉନ୍ମତ୍ତ, ତାହାର ନୀଚ ବିଷୟରେ ସ୍ୱଭାବତଃ କୌଣସି ଆସକ୍ତି ରହିପାରେ ନାହିଁ ।

"ମୁଁ ତୁମ ସମ୍ବନ୍ଧରେ ଆଉ କିଛି ଜାଣେ ନାହିଁ, କେବଳ ଜାଣେ ଯେ ତୁମେ ମୋର । ତୁମେ ସୁନ୍ଦର, ଆହା ! ତୁମେ, ଅତିସୁନ୍ଦର, ତୁମେ ସ୍ୱୟଂ ସୌନ୍ଦର୍ଯ୍ୟସ୍ୱରୂପ !" ଭକ୍ତିଯୋଗ କହେ, "ହେ ମାନବ, ସୁନ୍ଦର ବସ୍ତୁ ପ୍ରତି ତୁମେ ସ୍ୱଭାବତଃ ଆକୃଷ୍ଟ; ଭଗବାନ ପରମସୁନ୍ଦର, ତୁମେ ତାଙ୍କୁ ପ୍ରାଣର ସହିତ ଭଲପାଅ ।" ମନୁଷ୍ୟ-ମୁଖରେ, ଆକାଶରେ, ତାରାଙ୍କଠାରେ ଅଥବା ଚନ୍ଦ୍ରରେ ଯେଉଁ ସୌନ୍ଦର୍ଯ୍ୟର ବିକାଶ ଦେଖାଯାଏ, ତାହା କେଉଁଠାରୁ ଆସିଲା ? ତାହା ସେହି ଭଗବାନଙ୍କର ସର୍ବବ୍ୟାପୀ ପ୍ରକୃତ ସୌନ୍ଦର୍ଯ୍ୟର ଆଂଶିକ ପ୍ରକାଶମାତ୍ର । "ତାଙ୍କର ପ୍ରକାଶରେ ହିଁ ସକଳର ପ୍ରକାଶ ।"[୧] ଭକ୍ତର ଏହି ଉଚ୍ଚଭୂମିରେ ଦଣ୍ଡାୟମାନ ହୁଅ । ତାହା ସମ୍ପୂର୍ଣ୍ଣ ରୂପରେ ତୁମର କ୍ଷୁଦ୍ର ମୁଁ ଭାବ ଭୁଲାଇ ଦେବ । ଜଗତର କ୍ଷୁଦ୍ର ସ୍ୱାର୍ଥପର ଆସକ୍ତିସମୂହ ତ୍ୟାଗ କର । କେବଳ ମନୁଷ୍ୟଜାତିକୁ ତୁମର ମାନବୀୟ ଓ ତଦପେକ୍ଷା ଉଚ୍ଚତର କାର୍ଯ୍ୟପ୍ରବୃତ୍ତିର ଏକମାତ୍ର ଲକ୍ଷ୍ୟ ମନେ କର ନାହିଁ । ସାକ୍ଷୀସ୍ୱରୂପରେ ଅବସ୍ଥିତ ହୋଇ ପ୍ରକୃତିର ସମୁଦାୟ ବ୍ୟାପାର ପର୍ଯ୍ୟବେକ୍ଷଣ କର । ମନୁଷ୍ୟପ୍ରତି ଆସକ୍ତିଶୂନ୍ୟ ହୁଅ । ଦେଖ, ଏହି ଜଗତରେ ପ୍ରବଳ ପ୍ରେମ-ପ୍ରବାହ କିପରି କାର୍ଯ୍ୟ କରୁଛି । କେବେ କେବେ ଗୋଟାଏ ଧକ୍‌କା ଆସିଲା । ଏହା ମଧ୍ୟ ସେହି ପରମପ୍ରେମଲାଭ ନିମିତ୍ତ ଚେଷ୍ଟାର ଆନୁଷଙ୍ଗିକ ବ୍ୟାପାରମାତ୍ର । ହୁଏତ କେଉଁଠାରେ ଟିକିଏ ଦ୍ୱନ୍ଦ୍ୱ ଘଟିଲା, ହୁଏତ କାହାର ପଦସ୍ଖଳନ ହେଲା; କିନ୍ତୁ ଏସମସ୍ତ ସେହି ପରମପ୍ରେମ ଆରୋହଣର ସୋପାନମାତ୍ର । ଘଟୁ ଯେତେ ଇଚ୍ଛା ଦ୍ୱନ୍ଦ୍ୱ, ଆସୁ ଯେତେ ଇଚ୍ଛା ସଂଘର୍ଷ, ତୁମେ ସାକ୍ଷୀସ୍ୱରୂପ ହୋଇ ଟିକିଏ ଦୂରରେ ଅବସ୍ଥିତ ହୁଅ । ଯେତେବେଳେ ତୁମେ ଏହି ସଂସାରପ୍ରବାହ ମଧ୍ୟରେ ପଡ଼ିଥିବ, ସେତେବେଳେ ଏହି ଧକ୍‌କାଗୁଡ଼ିକ ତୁମଠାରେ ଲାଗୁଥିବ । କିନ୍ତୁ ଯେତେବେଳେ ଏହାର ବାହାରକୁ ଆସି କେବଳ ସାକ୍ଷୀସ୍ୱରୂପରେ ଅବସ୍ଥିତ ହେବ, ସେତେବେଳେ ତୁମେ ଦେଖିବ,

[୧] ତମେବ ଭାନ୍ତମନୁଭାତି ସର୍ବମ୍ ତସ୍ୟ ଭାସା ସର୍ବମିଦଂ ବିଭାତି ।।—କଠ, ୨।୨।୧୫

ଅନନ୍ତ ପ୍ରକାରରେ ପ୍ରେମସ୍ୱରୂପ ଭଗବାନ ନିଜକୁ ପ୍ରେମରୂପରେ ପ୍ରକାଶିତ କରୁଛନ୍ତି ।

"ଯେଉଁଠାରେ ଟିକିଏ ଆନନ୍ଦ ଦେଖିବାକୁ ମିଳେ, ସେଠାରେ ସେହି ଅନନ୍ତ ଆନନ୍ଦ-ସ୍ୱରୂପ ସ୍ୱୟଂ ଭଗବାନଙ୍କ ଅଂଶ ରହିଛି ବୋଲି ବୁଝିବାକୁ ହେବ।"[୧] ଅତି ନୀଚତମ ଆସକ୍ତିରେ ମଧ୍ୟ ଭଗବତ୍‌ପ୍ରେମର ବୀଜ ଲୁକ୍‌କାୟିତ । ସଂସ୍କୃତ ଭାଷାରେ ଭଗବାନଙ୍କର ଗୋଟିଏ ନାମ 'ହରି' । ଏହାର ଅର୍ଥ ଏହି ଯେ, ସେ ସମସ୍ତଙ୍କୁ ଆପଣା ଆଡ଼କୁ ଆହରଣ ବା ଆକର୍ଷଣ କରନ୍ତି । ବାସ୍ତବିକ ସେ ଆମମାନଙ୍କ ଭଲପାଇବାର ଏକମାତ୍ର ଉପଯୁକ୍ତ ପାତ୍ର । ଏହି ଯେ ଆମେମାନେ ନାନା ଦିଗକୁ ଆକୃଷ୍ଟ ହେଉଛୁଁ, କିଏ ଆମମାନଙ୍କୁ ଟାଣୁଛି ? ସେହି ଏକା ଆମମାନଙ୍କୁ କ୍ରମାଗତ ତାଙ୍କ କୋଳ ଆଡ଼କୁ ଟାଣୁଛନ୍ତି । ପ୍ରାଣହୀନ ଜଡ଼ ସେ କି କେବେ ଚୈତନ୍ୟବାନ୍ ଆତ୍ମାକୁ ଟାଣିପାରେ ? କଦାପି ନୁହେଁ । ଗୋଟିଏ ସୁନ୍ଦରମୁଖ ଦେଖି ଜଣେ ଉନ୍ମତ୍ତ ହେଲା । କେତୋଟି ଜଡ଼ ପରମାଣୁ କ'ଣ ତାହାକୁ ପାଗଳ କଲା ? କଦାପି ନୁହେଁ । ଏହି ଜଡ଼ ପରମାଣୁସମୂହର ଅନ୍ତରାଳରେ ନିଶ୍ଚୟ ଐଶ୍ୱରିକ ଶକ୍ତି ଓ ଐଶ୍ୱରିକ ପ୍ରେମର କ୍ରୀଡ଼ା ବିଦ୍ୟମାନ । ଅଜ୍ଞ ଲୋକମାନେ ଏହା ଜାଣିପାରନ୍ତି ନାହିଁ । କିନ୍ତୁ ତଥାପି ଜ୍ଞାତସାରରେ ବା ଅଜ୍ଞାତସାରରେ ସେମାନେ ତାହାଦ୍ୱାରା—କେବଳ ତାହାଦ୍ୱାରା ହିଁ ଆକୃଷ୍ଟ ହେଉଛନ୍ତି । ସୁତରାଂ ଦେଖାଗଲା, ଅତି ନୀଚତମ ଆସକ୍ତି ମଧ୍ୟ ମନୁଷ୍ୟ ଉପରେ ଯେଉଁ ପ୍ରଭାବ ବିସ୍ତାର କରେ, ସେହି ପ୍ରଭାବ ହିଁ ଐଶ୍ୱରିକ ପ୍ରଭାବର କାରଣମାତ୍ର । "ହେ ପ୍ରିୟତମେ, ପତି ପାଇଁ ପତିକୁ କେହି ଭଲପାଏ ନାହିଁ । ପତିର ଅନ୍ତରସ୍ଥ ଆତ୍ମା ଲାଗି ପତ୍ନୀ ପତିକୁ ଭଲପାଏ ।"[୨] ପ୍ରେମିକା ପତ୍ନୀଗଣ ଏ କଥାଟି ଜାଣିପାରନ୍ତି, ନ ଜାଣି ପାରନ୍ତି ମଧ୍ୟ; ତଥାପି ଉକ୍ତ ତତ୍ତ୍ୱଟି ସତ୍ୟ । "ହେ ପ୍ରିୟତମେ, ପତ୍ନୀ ପାଇଁ ପତ୍ନୀକୁ କେହି ଭଲପାଆନ୍ତି ନାହିଁ, କିନ୍ତୁ ପତ୍ନୀର ଅନ୍ତରସ୍ଥ ଆତ୍ମା ପାଇଁ ପତ୍ନୀ ପ୍ରିୟା ହୋଇଥାଏ ।"[୩] ଏହିପରି କେହି ନିଜ ସନ୍ତାନକୁ ଅଥବା ଅନ୍ୟ କାହାକୁ ସେହିମାନଙ୍କ ପାଇଁ ଭଲପାଆନ୍ତି ନାହିଁ । ସେମାନଙ୍କର ଅନ୍ତରସ୍ଥ ଆତ୍ମା ପାଇଁ ସେମାନଙ୍କୁ ଭଲପାଇଥାଆନ୍ତି । ଭଗବାନ ଯେପରି ଗୋଟିଏ ବୃହତ୍ ଚୁମ୍ବକ ପ୍ରସ୍ତରସ୍ୱରୂପ । ଆମେମାନେ ଲୌହଚୂର୍ଣ୍ଣ ପରି । ଆମେମାନେ ସମସ୍ତେ ସଦାସର୍ବଦା ତାଙ୍କ ଦ୍ୱାରା ଆକୃଷ୍ଟ ହେଉଛୁ । ଆମେମାନେ ସମସ୍ତେ ତାଙ୍କୁ ଲାଭ କରିବା ପାଇଁ ଚେଷ୍ଟା କରୁଛୁ । ଜଗତରେ ଏହି ଯେ ନାନାବିଧ ଚେଷ୍ଟା—ଏହି ସକଳର ଏକମାତ୍ର ଲକ୍ଷ୍ୟ କେବଳ ସ୍ୱାର୍ଥ ହୋଇପାରେ ନାହିଁ । ଅଜ୍ଞ ବ୍ୟକ୍ତିମାନେ ଜାଣନ୍ତି ନାହିଁ ସେମାନେ କ'ଣ କରୁଛନ୍ତି । ସେମାନଙ୍କ ଜୀବନର ଉଦ୍ଦେଶ୍ୟ କଅଣ । ବାସ୍ତବିକ୍ ସେମାନେ ଜୀବନର ସମସ୍ତ ଚେଷ୍ଟା ମଧ୍ୟ ଦେଇ କ୍ରମାଗତ ସେହି ପରମାତ୍ମାରୂପକ ବୃହତ୍ ଚୁମ୍ବକ ଆଡ଼କୁ ଅଗ୍ରସର ହେଉଛନ୍ତି । ଆମମାନଙ୍କର ଏହି କଠୋର ଜୀବନସଂଗ୍ରାମର ଲକ୍ଷ୍ୟ—ପରିଣାମରେ ତାଙ୍କ ନିକଟକୁ

---

୧ ଏତସ୍ୟୈବାନନ୍ଦସ୍ୟ ......ଇତ୍ୟାଦି—ବୃହ. ଉପ., ୪।୩।୩୨

୨ ନ ବା ଅରେ ପତ୍ୟୁଃ କାମାୟ ପତିଃ ପ୍ରିୟୋ ଭବତ୍ୟାତ୍ମନସ୍ତୁ କାମାୟ ପତିଃ ପ୍ରିୟୋ ଭବତି ।—ବୃହଦାରଣ୍ୟକ, ୨ ଅ., ୪ ବ୍ରା. ।

୩ ନ ବା ଅରେ ଜାୟାୟୈ କାମାୟ ଜାୟା ପ୍ରିୟା ଭବତ୍ୟାତ୍ମନସ୍ତୁ କାମାୟ ଜାୟା ପ୍ରିୟା ଭବତି ।—ବୃହଦାରଣ୍ୟକ, ୨ ଅ., ୪ ବ୍ରା. ।

ଯିବା ଓ ତାଙ୍କ ସହିତ ଏକୀଭୂତ ହେବା ।

ଭକ୍ତଯୋଗୀ ଏହି ଜୀବନସଂଗ୍ରାମର ଅର୍ଥ ବୁଝନ୍ତି । ସେ ଏହି ସଂଗ୍ରାମକୁ ଅତିକ୍ରମ କରି ଆସିଛନ୍ତି; ସୁତରାଂ ଏହାର ଲକ୍ଷ୍ୟ କଅଣ, ତାହା ସେ ଜାଣନ୍ତି; ଏହି କାରଣରୁ ସେ ଏମାନଙ୍କ-ଠାରୁ ମୁକ୍ତି ପାଇବାକୁ ପ୍ରାଣର ସହିତ ଇଚ୍ଛା କରନ୍ତି । ସେ ସମସ୍ତ ଆକର୍ଷଣର ମୂଳ କାରଣ-ସ୍ୱରୂପ ହରିଙ୍କ ନିକଟକୁ ପୂର୍ଣ୍ଣଭାବରେ ଯିବାକୁ ଇଚ୍ଛା କରନ୍ତି । ଭକ୍ତର ତ୍ୟାଗ ଏହି ଯେ — ଭଗବାନଙ୍କ ପ୍ରତି ଏହି ମହାନ୍ ଆକର୍ଷଣ, ତାଙ୍କର ଆଉ ସବୁ ଆସକ୍ତିକୁ ନାଶ କରିଦିଏ । ଏହି ପ୍ରବଳ ଅନନ୍ତ ପ୍ରେମ ତାଙ୍କର ହୃଦୟରେ ପ୍ରବେଶ କରି ଅନ୍ୟାନ୍ୟ ଆସକ୍ତିକୁ ସେଠାରେ ରହିବାକୁ ଦିଏ ନାହିଁ । ଅନ୍ୟ ଆସକ୍ତି ସେତେବେଳେ କିପରି ତିଷ୍ଠି ପାରିବ ? ସେତେବେଳେ ଭକ୍ତ ସ୍ୱୟଂ ଭଗବାନରୂପକ ପ୍ରେମସମୁଦ୍ରର ଜଳରେ ଆପଣାର ହୃଦୟକୁ ପରିପୂର୍ଣ୍ଣ ଦେଖନ୍ତି । ସେଠାରେ କ୍ଷୁଦ୍ର କ୍ଷୁଦ୍ର ପ୍ରେମର ସ୍ଥାନ ନାହିଁ । ଏହା ହିଁ ଭକ୍ତଙ୍କର ତ୍ୟାଗ ବା ବୈରାଗ୍ୟ । ତାତ୍ପର୍ଯ୍ୟ ଏହି— ଭକ୍ତର ବୈରାଗ୍ୟ ଅର୍ଥାତ୍ ଭଗବାନଙ୍କ ଭିନ୍ନ ସମୁଦାୟ ବିଷୟରେ ଅନାସକ୍ତି ଭଗବାନଙ୍କ ପ୍ରତି ତାଙ୍କର ପରମ ଅନୁରାଗରୁ ଜାତ ହୁଏ ।

ପରାଭକ୍ତି ଲାଭ ପାଇଁ ଏହିପରି ଭାବରେ ପ୍ରସ୍ତୁତ ହେବା ଆବଶ୍ୟକ । ଏହି ବୈରାଗ୍ୟ ଲାଭ ହେଲେ ପରାଭକ୍ତିର ଉଚ୍ଚତମ ଶିଖରକୁ ଉଠିବାର ଦ୍ୱାର ଯେପରିକି ଫିଟିଯାଏ । ସେତେବେଳେ ଆମେ ବୁଝିବାକୁ ଆରମ୍ଭ କରୁ, ପରାଭକ୍ତି କଅଣ, ଆଉ ଯେ ପରାଭକ୍ତି-ରାଜ୍ୟରେ ପ୍ରବେଶ କରିଛନ୍ତି, ଏକମାତ୍ର ତାଙ୍କର କହିବାର ଅଧିକାର ଅଛି ଯେ, ଧର୍ମାନୁଭୂତି ଲାଗି ପ୍ରତିମା-ପୂଜା ବା ବାହ୍ୟ ଅନୁଷ୍ଠାନାଦିର ଆଉ ଆବଶ୍ୟକତା ନାହିଁ । ସେ କେବଳ ସେହି ପରମ ପ୍ରେମାବସ୍ଥା ଲାଭ କରିଛନ୍ତି, ଯେଉଁଠାରେ ସକଳ ମାନବ ମଧ୍ୟରେ ଭ୍ରାତୃଭାବ ଅନୁଭବ କରିବା ସମ୍ଭବ; ଅନ୍ୟମାନେ କେବଳ ଭ୍ରାତୃଭାବ ବୋଲି ବୃଥା ଚିତ୍କାର କରନ୍ତି ମାତ୍ର । ସେ ସେତେବେଳେ ଆଉ କୌଣସି ଭେଦ ଦେଖିପାରନ୍ତି ନାହିଁ । ମହାନ୍ ପ୍ରେମସମୁଦ୍ର, ସେତେବେଳେ ତାଙ୍କ ଅନ୍ତରରେ ପ୍ରବେଶ କରିଛି । ସେତେବେଳେ ସେ ଆଉ କୌଣସି ଭେଦ ଦେଖନ୍ତି ନାହିଁ, ସେତେବେଳେ ସେ ଆମମାନଙ୍କ ଭଳି ମନୁଷ୍ୟ, ପଶୁ, ତରୁ, ଲତା, ସୂର୍ଯ୍ୟ, ଚନ୍ଦ୍ର, ତାରା ଦେଖନ୍ତି ନାହିଁ । ସେ ସର୍ବତ୍ର ତାଙ୍କର ପ୍ରିୟତମଙ୍କୁ ଦେଖିବାକୁ ପାଆନ୍ତି । ଯାହାଙ୍କ ମୁଖ ଆଡ଼କୁ ସେ ଦୃଷ୍ଟି ଦିଅନ୍ତି, ତାଙ୍କ ଭିତରେ ସେ ହରିଙ୍କର ପ୍ରକାଶ ଦେଖିପାରନ୍ତି । ସୂର୍ଯ୍ୟ ବା ଚନ୍ଦ୍ରର ଆଲୋକ ତାଙ୍କର ପ୍ରକାଶମାତ୍ର । ଯେଉଁଠାରେ ସେ ସୌନ୍ଦର୍ଯ୍ୟ ବା ମହତ୍ତ୍ୱ ଦେଖିବାକୁ ପାଆନ୍ତି, ସେଠାରେ ସେ ଅନୁଭବ କରନ୍ତି ସବୁ ସେହି ଭଗବାନଙ୍କର । ଏପରି ଭକ୍ତ ବର୍ତ୍ତମାନ ସୁଦ୍ଧା ଜଗତରେ ଅଛନ୍ତି । ଜଗତ୍ କେତେବେଳେ ହେଲେ ଏପରି ଭକ୍ତବିରହିତ ହୁଏ ନାହିଁ । ଏପରି ଭକ୍ତ ସର୍ପଦ୍ରଷ୍ଟ ହେଲେ ମଧ୍ୟ କହନ୍ତି, ମୋର ପ୍ରିୟତମଙ୍କ ନିକଟରୁ ଦୂତ ଆସିଥିଲା । ଏହିପରି ବ୍ୟକ୍ତିଙ୍କର କେବଳ ବିଶ୍ୱଜନୀନ ଭ୍ରାତୃଭାବ ସମ୍ବନ୍ଧରେ କଥା କହିବାର ଅଧିକାର ଅଛି । ତାଙ୍କ ହୃଦୟରେ କଦାପି କ୍ରୋଧ, କ୍ଷୋଭ, ଘୃଣା ଅଥବା ଈର୍ଷାର ଉଦୟ ହୁଏ ନାହିଁ । ବାହ୍ୟ ଇନ୍ଦ୍ରିୟଗ୍ରାହ୍ୟ ସମସ୍ତ ତାଙ୍କ ନିକଟରୁ ଅନ୍ତର୍ହିତ ହୁଏ । ଯେତେବେଳେ ପ୍ରେମବଳରେ ଅତୀନ୍ଦ୍ରିୟ ସତ୍ୟକୁ ସେ ସର୍ବଦା ଦେଖିବାକୁ ସମର୍ଥ, ସେତେବେଳେ ସେ କିପରି କ୍ରୁଦ୍ଧ ହେବେ ?

# ଭକ୍ତିଯୋଗର ସ୍ୱାଭାବିକତା ଓ ଏହାର ରହସ୍ୟ

ଅର୍ଜୁନ ଶ୍ରୀଭଗବାନଙ୍କୁ ଜିଜ୍ଞାସା କରିଥିଲେ, "ଯେଉଁମାନେ ସର୍ବଦା ଅବହିତ ହୋଇ ତୁମର ଉପାସନା କରନ୍ତି, ଏବଂ ଯେଉଁମାନେ ଅବ୍ୟକ୍ତ ନିର୍ଗୁଣଙ୍କର ଉପାସକ, ଏ ଉଭୟଙ୍କ ମଧ୍ୟରେ କେଉଁମାନେ ଶ୍ରେଷ୍ଠ ଯୋଗୀ ?"[୧] ଶ୍ରୀ ଭଗବାନ ଉତ୍ତରରେ କହିଲେ, "ଯେଉଁମାନେ ମୋଠାରେ ମନ ସଂଲଗ୍ନ କରି ନିତ୍ୟଯୁକ୍ତ ହୋଇ ପରମ ଶ୍ରଦ୍ଧାର ସହିତ ମୋର ଉପାସନା କରନ୍ତି, ସେହିମାନେ ହିଁ ମୋର ଶ୍ରେଷ୍ଠ ଉପାସକ, ସେହିମାନେ ଶ୍ରେଷ୍ଠ ଯୋଗୀ । ଯେଉଁମାନେ ନିର୍ଗୁଣ, ଅନିର୍ଦ୍ଦେଶ୍ୟ, ଅବ୍ୟକ୍ତ, ସର୍ବବ୍ୟାପୀ, ଅଚିନ୍ତ୍ୟ, ନିର୍ବିକାର, ଅଚଳ, ନିତ୍ୟସ୍ୱରୂପଙ୍କୁ ଇନ୍ଦ୍ରିୟସଂଯମ ଓ ବିଷୟରେ ସମବୁଦ୍ଧି ଅବଲମ୍ବନ କରି ଉପାସନା କରନ୍ତି, ସେହି ସର୍ବଭୂତହିତରେ ରତ ବ୍ୟକ୍ତିଗଣ ମୋତେ ଲାଭ କରନ୍ତି; କିନ୍ତୁ ଯେଉଁମାନଙ୍କର ମନ ଅବ୍ୟକ୍ତରେ ଆସକ୍ତ, ସେମାନଙ୍କର ଅଧିକତର କଷ୍ଟ ହୋଇଥାଏ । କାରଣ ଦେହାଭିମାନୀ ବ୍ୟକ୍ତି ଅତି କଷ୍ଟରେ ଏହି ନିର୍ଗୁଣ ବ୍ରହ୍ମରେ ନିଷ୍ଠା ଲାଭ କରିପାରେ । କିନ୍ତୁ ଯେଉଁମାନେ ସମୁଦାୟ କାର୍ଯ୍ୟ ମୋଠାରେ ସମର୍ପଣ କରି ମତ୍ପରାୟଣ ହୋଇ ମୋର ଧ୍ୟାନ ଓ ଉପାସନା କରନ୍ତି, ମୁଁ ସେମାନଙ୍କୁ ଶୀଘ୍ର ପୁନଃ-ପୁନଃ ଜନ୍ମମୃତ୍ୟୁରୂପକ ମହାସମୁଦ୍ରରୁ ଉଦ୍ଧାର କରେ, କାରଣ ସେମାନଙ୍କ ମନ ସର୍ବଦା ମୋପ୍ରତି ସଂପୂର୍ଣ୍ଣରୂପେ ଆସକ୍ତ ।"[୨] ଏଠାରେ ଜ୍ଞାନଯୋଗ ଓ ଭକ୍ତିଯୋଗ ଉଭୟଙ୍କୁ ଲକ୍ଷ୍ୟ

---

୧ ଅର୍ଜୁନ ଉବାଚ

ଏବଂ ସତତଯୁକ୍ତା ଯେ ଭକ୍ତାସ୍ତ୍ୱାଂ ପର୍ଯ୍ୟୁପାସତେ ।
ଯେ ଚାପ୍ୟକ୍ଷରମବ୍ୟକ୍ତଂ ତେଷାଂ କେ ଯୋଗବିତ୍ତମାଃ ॥

୨ ଶ୍ରୀଭଗବାନୁବାଚ

ମୟ୍ୟାବେଶ୍ୟ ମନୋ ଯେ ମାଂ ନିତ୍ୟଯୁକ୍ତା ଉପାସତେ ।
ଶ୍ରଦ୍ଧୟା ପରୟୋପେତାସ୍ତେ ମେ ଯୁକ୍ତତମା ମତାଃ ॥
ଯେ ତ୍ୱକ୍ଷରମନିର୍ଦ୍ଦେଶ୍ୟମବ୍ୟକ୍ତଂ ପର୍ଯ୍ୟୁପାସତେ ।
ସର୍ବତ୍ରଗମଚିନ୍ତ୍ୟଞ୍ଚ କୂଟସ୍ଥମଚଳଂ ଧ୍ରୁବମ୍ ॥
ସଂନିୟମ୍ୟେନ୍ଦ୍ରିୟଗ୍ରାମଂ ସର୍ବତ୍ର ସମବୁଦ୍ଧୟଃ ।
ତେ ପ୍ରାପ୍ନୁବନ୍ତି ମାମେବ ସର୍ବଭୂତହିତେ ରତାଃ ॥
କ୍ଲେଶୋଽଧିକତରସ୍ତେଷାମବ୍ୟକ୍ତାସକ୍ତଚେତସାମ୍ ।
ଅବ୍ୟକ୍ତା ହି ଗତିର୍ଦୁଃଖଂ ଦେହବଦ୍ଭିରବାପ୍ୟତେ ॥
ଯେ ତୁ ସର୍ବାଣି କର୍ମାଣି ମୟି ସନ୍ନ୍ୟସ୍ୟ ମତ୍ପରାଃ ।
ଅନନ୍ୟେନୈବ ଯୋଗେନ ମାଂ ଧ୍ୟାୟନ୍ତ ଉପାସତେ ॥
ତେଷାମହଂ ସମୁଦ୍ଧର୍ତ୍ତା ମୃତ୍ୟୁସଂସାରସାଗରାତ୍ ।
ଭବାମି ନ ଚିରାତ୍ ପାର୍ଥ ମୟ୍ୟାବେଶିତଚେତସାମ୍ ॥

—ଶ୍ରୀଭଗବଦ୍‌ଗୀତା, ୧୨ଶ ଅଧ୍ୟାୟ, ୧ମରୁ ୭ମ ଶ୍ଳୋକ ।

କରାହୋଇଛି । ଏପରି କି, ଉଦ୍ଧୃତାଂଶରେ ଉଭୟର ଲକ୍ଷଣ ପ୍ରକାଶ କରାହୋଇଛି ବୋଲି କୁହାଯାଇପାରେ । ଜ୍ଞାନଯୋଗ ଅବଶ୍ୟ ଅତି ଶ୍ରେଷ୍ଠ ମାର୍ଗ । ଏହା ତତ୍ତ୍ୱବିଚାର ଦ୍ୱାରା ପରମ-ବ୍ରହ୍ମଙ୍କୁ ଅନୁଭବ କରିବାର ପଥ । ଆଉ ଆଶ୍ଚର୍ଯ୍ୟର ବିଷୟ ଏହି ଯେ, ସମସ୍ତେ ଭାବନ୍ତି ତତ୍ତ୍ୱବିଚାର ଦ୍ୱାରା ସେ ସବୁ କିଛି କରିପାରିବେ । କିନ୍ତୁ ବାସ୍ତବିକ ଜ୍ଞାନଯୋଗସାଧନ ଓ ଏହି ଅନୁସାରେ ଜୀବନଯାପନ ବଡ଼ କଠିନ ବ୍ୟାପାର । ଏଥିରେ ଅନେକ ବିପଦାଶଙ୍କା ଅଛି ।

ଜଗତରେ ଦୁଇପ୍ରକାର ଲୋକ ଦେଖିବାକୁ ମିଳନ୍ତି । ଦଳେ ଅସୁର ପ୍ରକୃତି ଅତି ଏମାନେ ଏହି ଶରୀରଟାକୁ ସୁଖସ୍ୱାଚ୍ଛନ୍ଦ୍ୟରେ ରଖିବାକୁ ଜୀବନର ଚରମ ଉଦ୍ଦେଶ୍ୟ ଜ୍ଞାନ କରନ୍ତି । ଆଉ ଯେଉଁମାନେ ଦେବପ୍ରକୃତି, ସେମାନେ ଏହି ଶରୀରକୁ କେବଳ କୌଣସି ବିଶେଷ ଉଦ୍ଦେଶ୍ୟ ସାଧନର ଉପାୟସ୍ୱରୂପ ମନେକରନ୍ତି । ସେମାନେ ମନେକରନ୍ତି, ତାହା ଯେପରି ଆତ୍ମାର ଉନ୍ନତି ସାଧନର ଯନ୍ତ୍ରବିଶେଷମାତ୍ର । କଥିତ ଅଛି, ସଇତାନ ନିଜ ଉଦ୍ଦେଶ୍ୟସିଦ୍ଧି ନିମିତ୍ତ ଶାସ୍ତ୍ର ଉଦ୍ଧୃତ କରିପାରେ, କରିଥାଏ ମଧ୍ୟ । ସୁତରାଂ ଜ୍ଞାନମାର୍ଗ ଯେପରି ସାଧୁ ବ୍ୟକ୍ତିଙ୍କର ସତ୍‌କାର୍ଯ୍ୟର ପ୍ରବଳ ଉତ୍ସାହଦାତା, ସେହିପରି ଅସାଧୁ ବ୍ୟକ୍ତିର କାର୍ଯ୍ୟସାଧନର ସମର୍ଥକ ବୋଲି ପ୍ରତୀତ ହୁଏ । ଜ୍ଞାନ ଯୋଗରେ ଏହା ହିଁ ମହା ବିପଦାଶଙ୍କା; କିନ୍ତୁ ଭକ୍ତିଯୋଗ ଅତି ସ୍ୱାଭାବିକ ଓ ମଧୁର । ଭକ୍ତ ଜ୍ଞାନଯୋଗୀ ପରି ଖୁବ୍ ଉଚ୍ଚକୁ ଉଠେ ନାହିଁ, ସୁତରାଂ ତାହାର ଗଭୀର ପତନାଶଙ୍କା ମଧ୍ୟ ନାହିଁ । ଏତିକି ବୁଝିବାକୁ ହେବ ଯେ, ସାଧକ ଯେଉଁ ପଥ ଅବଲମ୍ବନ କରନ୍ତୁ ନା କାହିଁକି, ଯେତେଦିନ ପର୍ଯ୍ୟନ୍ତ ସମୁଦାୟ ବନ୍ଧନର ମୋଚନ ହୋଇ ନାହିଁ, ସେତେଦିନ ପର୍ଯ୍ୟନ୍ତ ସେ କଦାପି ମୁକ୍ତ ହୋଇପାରନ୍ତି ନାହିଁ । ପ୍ରଶ୍ନ ହୋଇପାରେ ଭକ୍ତ ଏହି ସହଜ ପଥ ବାଛିନେଇ କିପରି ମୁକ୍ତିଲାଭ କରନ୍ତି ?

ନିମ୍ନୋଦ୍ଧୃତ ଶ୍ଳୋକଗୁଡ଼ିକରୁ ଦେଖାଯାଏ, କିପରି ଜଣେ ଭାଗ୍ୟବତୀ ଗୋପନାରୀର ଜୀବାତ୍ମାର ବନ୍ଧନରୂପ ପାପପୁଣ୍ୟ କ୍ଷୟ ହୋଇଥିଲା । "ଭଗବାନଙ୍କ ଚିନ୍ତାହେତୁରୁ ପରମାହ୍ଲା-ଦରେ ତାହାର ସମୁଦାୟ ପୁଣ୍ୟକର୍ମଜନିତ ବନ୍ଧନ କ୍ଷୟପ୍ରାପ୍ତ ହୋଇଥିଲା, ଏବଂ ତାଙ୍କର ଅପ୍ରାପ୍ତିଜନିତ ମହାଦୁଃଖରେ ତାହାର ସମୁଦାୟ ପାପ ଧୌତ ହୋଇଯାଇଥିଲା । ସେତେବେଳେ ସେହି ଗୋପକନ୍ୟା ମୁକ୍ତିଲାଭ କରିଥିଲା ।"[୧] ଏହି ଶାସ୍ତ୍ରବାକ୍ୟରୁ ବେଶ୍ ବୁଝାଯାଏ, ଭକ୍ତିଯୋଗର ଗୁହ୍ୟ ରହସ୍ୟ ଏହି ଯେ, ମନୁଷ୍ୟ-ହୃଦୟରେ ଯେତେପ୍ରକାର ବାସନା ବା ଭାବ ଅଛି, ସେଥିରୁ କୌଣସିଟି ସ୍ୱରୂପତଃ ମନ୍ଦ ନୁହେଁ; ଏମାନଙ୍କୁ ଧୀରେ ଧୀରେ ଆମର ବଶବର୍ତ୍ତୀ କରି କ୍ରମଶଃ ଉଚ୍ଚରୁ ଉଚ୍ଚାଭିମୁଖୀ କରିବାକୁ ହେବ, ଯେତେଦିନ ପର୍ଯ୍ୟନ୍ତ ଏହାର ଚରମୋତ୍କର୍ଷ ଲାଭ କରାଯାଇ ନାହିଁ । ସେମାନଙ୍କର ସର୍ବୋଚ୍ଚ ଗତି ଭଗବାନ, ସେମାନଙ୍କର ଅନ୍ୟାନ୍ୟ ସକଳ

୧ ତଚ୍ଚିନ୍ତାବିପୁଳାହ୍ଲାଦକ୍ଷୀଣପୁଣ୍ୟଚୟା ତଥା ।
ତଦପ୍ରାପ୍ତିମହାଦୁଃଖବିଲୀନାଶେଷପାତକା ॥
ଚିନ୍ତୟନ୍ତୀ ଜଗତ୍ସୂତିଂ ପରବ୍ରହ୍ମସ୍ୱରୂପିଣମ୍ ।
ନିରୁଚ୍ଛ୍ୱାସତୟା ମୁକ୍ତିଂ ଗତାନ୍ୟା ଗୋପକନ୍ୟକା ॥
—ବିଷ୍ଣୁପୁରାଣ, ୫ମ ଅଂଶ, ୧୩ଶ ଅ., ୨୧-୨୨ ଶ୍ଳୋକ ।

ଗତି ହିଁ ନିମ୍ନାଭିମୁଖୀ । ଆମ ଜୀବନରେ ସୁଖ ଓ ଦୁଃଖ ପୁନଃ ପୁନଃ ପର୍ଯ୍ୟାୟକ୍ରମେ ଘୂରି ଘୂରି ଆସୁଛି । ଯେତେବେଳେ କୌଣସି ଲୋକ ଧନ ଅଥବା ଏହିପରି କୌଣସି ସାଂସାରିକ ବସ୍ତୁର ଅପ୍ରାପ୍ତି ହେତୁ ଦୁଃଖ ଅନୁଭବ କରେ, ସେତେବେଳେ ବୁଝିବାକୁ ହେବ, ସେ ତାହାର ପ୍ରବୃତ୍ତିକୁ ମନ୍ଦ ଢଗରେ ପରିଚାଳନା କରୁଛି । ତଥାପି ଦୁଃଖର ପ୍ରୟୋଜନୀୟତା ଅଛି । ଲୋକ ଯଦି 'ମୁଁ କାହିଁକି ସେହି ପରମପୁରୁଷଙ୍କୁ ଲାଭ କରିପାରିଲି ନାହିଁ, କାହିଁକି ମୁଁ ଭଗବାନଙ୍କୁ ପାଇଲି ନାହିଁ' ବୋଲି ଯନ୍ତ୍ରଣାରେ ଅସ୍ଥିର ହୁଏ, ସେହି ଯନ୍ତ୍ରଣା ତାହାର ମୁକ୍ତିର କାରଣ ହେବ । କେତୋଟି ମୁଦ୍ରା ପାଇଲେ ଯେତେବେଳେ ତୁମର ଆନନ୍ଦ ହୁଏ, ସେତେବେଳେ ବୁଝିବାକୁ ହେବ, ତୁମେ ତୁମର ଆହ୍ଲାଦବୃତ୍ତିକୁ ମନ୍ଦ ଢଗରେ ପରିଚାଳନା କରୁଛ । ଏହାକୁ ଉଚ୍ଚତର ବିଷୟରେ ପ୍ରେରଣ କରିବାକୁ ହେବ, ଆମମାନଙ୍କର ସର୍ବୋଚ୍ଚ ଲକ୍ଷ୍ୟ ଭଗବାନଙ୍କ ଚିନ୍ତାରେ ଆନନ୍ଦ ବୋଧ କରିବାକୁ ହେବ । ଅନ୍ୟାନ୍ୟ ଭାବ ସମ୍ବନ୍ଧରେ ମଧ୍ୟ ସେହି ଗୋଟିଏ କଥା । ଭକ୍ତ କହନ୍ତି, ସେଥିମଧ୍ୟରୁ କୌଣସିଟି ମନ୍ଦ ନୁହେଁ; ସୁତରାଂ ଏହି ଭାବଗୁଡ଼ିକୁ ବଶୀଭୂତ କରି ସେ ନିଶ୍ଚିତ ଭାବରେ ଈଶ୍ୱରାଭିମୁଖୀ କରାନ୍ତି ।

## ଭକ୍ତିର ପ୍ରକାଶଭେଦ

ଭକ୍ତି ନାନା ଭାବରେ ପ୍ରକାଶ ପାଇଥାଏ ।[1] ପ୍ରଥମ—ଶ୍ରଦ୍ଧା । ଲୋକମାନେ ମନ୍ଦିର ଓ ତୀର୍ଥସ୍ଥାନମାନଙ୍କ ପ୍ରତି ଏତେ ଶ୍ରଦ୍ଧାସମ୍ପନ୍ନ କାହିଁକି ? ଏହିସବୁ ସ୍ଥାନରେ ତାଙ୍କର ପୂଜା ହୁଏ ବୋଲି, ଏହିସବୁ ସ୍ଥାନକୁ ଗଲେ ସେମାନଙ୍କର ଈଶ୍ୱର-ଭାବର ଉଦ୍ଦୀପନା ହୁଏ ବୋଲି । ଏହି ସ୍ଥାନମାନଙ୍କ ସହିତ ଈଶ୍ୱର-ସତ୍ତା ଜଡ଼ିତ ଥାଏ । ସବୁ ଦେଶରେ ଲୋକେ ଧର୍ମାଚାର୍ଯ୍ୟ-ମାନଙ୍କ ପ୍ରତି ଏତେ ଶ୍ରଦ୍ଧାସମ୍ପନ୍ନ କାହିଁକି ? ସେମାନେ ସମସ୍ତେ ସେହି ଏକ ଭଗବାନଙ୍କର ମହିମା ପ୍ରଚାର କରନ୍ତି । ମନୁଷ୍ୟ ସେମାନଙ୍କ ପ୍ରତି ଶ୍ରଦ୍ଧାସମ୍ପନ୍ନ ହେବା ସ୍ୱାଭାବିକ । ଏହି ଶ୍ରଦ୍ଧାର ମୂଳ ଭଲ ପାଇବା । ଆମେ ଯାହାକୁ ଭଲପାଉ ନାହିଁ, ତାହା ପ୍ରତି ଆମେ ଶ୍ରଦ୍ଧା-ସମ୍ପନ୍ନ ହୋଇପାରୁ ନାହିଁ । ତା'ପରେ ପ୍ରୀତି—ଭଗବତ୍-ଚିନ୍ତାରେ ଆନନ୍ଦାନୁଭବ । ମନୁଷ୍ୟ ଇନ୍ଦ୍ରିୟ-ବିଷୟରେ ତୀବ୍ର ଆନନ୍ଦ ଅନୁଭବ କରିଥାଏ । ସେଥିପାଇଁ ମନୁଷ୍ୟ ଇନ୍ଦ୍ରିୟ-ସୁଖକର ଦ୍ରବ୍ୟ ଲାଭ କରିବାକୁ ସର୍ବତ୍ର ଯାଇଥାଏ, ମହାବିପଦର ମଧ୍ୟ ସମ୍ମୁଖୀନ ହୁଏ । ଭକ୍ତର ଲୋଡ଼ା ଠିକ୍ ଏହିପରି ଭଲପାଇବା । ଭଗବାନଙ୍କ ଆଡ଼କୁ ଏହି ଭଲପାଇବାର ଢଗ ଫେରାଇବାକୁ ହେବ ।

ତତ୍ପରେ ମଧୁରତମ ଯନ୍ତ୍ରଣା, ବିରହ—ପ୍ରେମାସ୍ପଦଙ୍କର ଅଭାବଜନିତ ମହାଦୁଃଖ । ଏହି ଦୁଃଖ ଜଗତରେ ସବୁ ଦୁଃଖ ମଧ୍ୟରେ ମଧୁର—ଅଧିକ ମଧୁର । ଯେତେବେଳେ ମନୁଷ୍ୟ

[1] ସମ୍ମାନ-ବହୁମାନପ୍ରୀତିବିରହେତର-ବିଚିକିତ୍ସା-ମହିମାଖ୍ୟାତିତଦର୍ଥପ୍ରାଣସ୍ଥାନ-ତଦୀୟତାସର୍ବତଦ୍‌ଭାବାପ୍ରାତିକୂଲ୍ୟାଦୀନି ଚ ସ୍ମରଣେଭ୍ୟୋ ବାହୁଲ୍ୟାତ୍ ।
—ଶାଣ୍ଡିଲ୍ୟସୂତ୍ର, ୨ୟ ଅଧ୍ୟାୟ, ୧ମ ଆହ୍ନିକ, ୪୩ ସୂତ୍ର

'ମୁଁ ଭଗବାନଙ୍କୁ ଲାଭ କରିପାରିଲି ନାହିଁ, ଜୀବନରେ ଏକମାତ୍ର ପାଇବା ଜିନିଷକୁ ପାଇ-ପାରିଲି ନାହିଁ' ବୋଲି ଅତିଶୟ ବ୍ୟାକୁଳ ହୁଏ ଏବଂ ତଜ୍ଜନିତ ଯନ୍ତ୍ରଣାରେ ଅସ୍ଥିର ଓ ଉନ୍ମତ୍ତ ହୋଇଉଠେ, ସେତେବେଳେ ବିରହ ଆସିଛି ବୋଲି ବୁଝିବାକୁ ହେବ । ମନର ଏପରି ଅବସ୍ଥା ହେଲେ ପ୍ରେମାସ୍ପଦ ବ୍ୟତୀତ ଆଉ କିଛି ଭଲ ଲାଗେ ନାହିଁ (ଇତର-ବିଚିକିତ୍ସା) । ପାର୍ଥିବ ପ୍ରେମରେ ମଝିରେ ମଝିରେ ଉନ୍ମତ୍ତ ପ୍ରେମିକ-ପ୍ରେମିକା ମଧ୍ୟରେ ଏହି ବିରହ ମଧ୍ୟ ଦେଖାଯାଏ । ସ୍ତ୍ରୀ-ପୁରୁଷଙ୍କର ପରସ୍ପର ମଧ୍ୟରେ ପ୍ରଗାଢ଼ ପ୍ରଣୟ ହେଲେ ସେମାନେ ଯେଉଁମାନଙ୍କୁ ଭଲ ନ ପାଆନ୍ତି, ସେମାନଙ୍କ ନିକଟରେ ରହିବାକୁ ସ୍ୱଭାବତଃ ଟିକିଏ ବିରକ୍ତି ଅନୁଭବ କରନ୍ତି । ଏହିରୂପେ ଯେତେବେଳେ ପରାଭକ୍ତି ହୃଦୟରେ ତାହାର ପ୍ରଭାବ ବିସ୍ତାର କରେ, ସେତେବେଳେ ସେହି ଭକ୍ତିର ବିରୋଧୀ ବିଷୟ ସମ୍ବନ୍ଧରେ ମନରେ ଏହିପରି ବିରକ୍ତି ଆସିଥାଏ । ସେତେବେଳେ ଭଗବାନଙ୍କ ବ୍ୟତୀତ ଅନ୍ୟ ବିଷୟ ସମ୍ପର୍କରେ କଥା କହିବା ଭକ୍ତ ପକ୍ଷରେ ବିରକ୍ତିକର ହୋଇପଡ଼େ । "ତାଙ୍କ ବିଷୟରେ, କେବଳ ତାଙ୍କର ବିଷୟରେ ଚିନ୍ତା କର, ଅନ୍ୟ ସକଳ କଥା ତ୍ୟାଗ କର ।"[୧] ଯେଉଁମାନେ ତାଙ୍କ ସମ୍ବନ୍ଧରେ କଥାବାର୍ତ୍ତା କରନ୍ତି, ଭକ୍ତ ତାଙ୍କୁ ବନ୍ଧୁ ବୋଲି ମନେ କରନ୍ତି, କିନ୍ତୁ ଯେଉଁମାନେ ଅନ୍ୟ ବିଷୟରେ କଥା କହନ୍ତି, ସେମାନେ ତାଙ୍କ ପକ୍ଷରେ ଶତ୍ରୁରୂପେ ପ୍ରତୀୟମାନ ହୁଅନ୍ତି ।

ଯେତେବେଳେ ଭକ୍ତର ଏହି ଅବସ୍ଥା ଆସେ ଯେ, ଏହି ଶରୀରଧାରଣ କେବଳ ଏକମାତ୍ର ତାଙ୍କର ଉପାସନା ନିମିତ୍ତ, ସେତେବେଳେ ସେ ଭକ୍ତିର ଆଉ ଏକ ଉଚ୍ଚତର ସୋପାନକୁ ଆରୋହଣ କରିଛନ୍ତି ବୋଲି ବୁଝିବାକୁ ହେବ । ସେତେବେଳେ ତାଙ୍କ ବ୍ୟତୀତ ଏକ ମୁହୂର୍ତ୍ତ ପାଇଁ ସୁଦ୍ଧା ଜୀବନଧାରଣ କରିବା ଭକ୍ତ ପକ୍ଷରେ ଅସମ୍ଭବ ବୋଧହୁଏ । ଆଉ ସେହି ପ୍ରିୟତମଙ୍କ ଚିନ୍ତା ହୃଦୟରେ ବିଦ୍ୟମାନ ଥାଏ ବୋଲି ଜୀବନଧାରଣ କରିବାରେ ସୁଖବୋଧ ହୁଏ । ଏପରି ଅବସ୍ଥାର ଶାସ୍ତ୍ରୀୟ ନାମ ତଦର୍ଥପ୍ରାଣସ୍ଥାନ ।

ତଦୀୟତା—ଏହାର ଅର୍ଥ ତାଙ୍କରହୋଇଯିବା । ଭକ୍ତିମତରେ ସାଧକ ଯେତେବେଳେ ସିଦ୍ଧ ଅବସ୍ଥା ପ୍ରାପ୍ତ ହୁଅନ୍ତି, ସେତେବେଳେ ଏହି ତଦୀୟତା ଆସିଥାଏ । ଯେତେବେଳେ ସେ ଭଗବତ୍-ପାଦପଦ୍ମ ସ୍ପର୍ଶ ବଳରେ କୃତାର୍ଥ ହୋଇଥାଆନ୍ତି, ସେତେବେଳେ ତାଙ୍କର ପ୍ରକୃତି ବିଶୁଦ୍ଧ ହୋଇଯାଏ—ସମ୍ପୂର୍ଣ୍ଣ ରୂପେ ପରିବର୍ତ୍ତିତ ହୋଇଯାଏ, ସେତେବେଳେ ତାଙ୍କର ଜୀବନର ସମସ୍ତ ବାଞ୍ଛା ପୂର୍ଣ୍ଣ ହୋଇଯାଏ । ତଥାପି ଏପରି ଅନେକ ଭକ୍ତ କେବଳ ତାଙ୍କର ଉପାସନା ନିମିତ୍ତ ଜୀବନ ଧାରଣ କରନ୍ତି । ଏ ଜୀବନରେ ଏହା ହିଁ ଏକମାତ୍ର ସୁଖ—ସେମାନେ ତାକୁ ଛାଡ଼ିବାକୁ ଇଚ୍ଛା କରନ୍ତି ନାହିଁ । "ହେ, ରାଜନ, ହରିଙ୍କର ଏତାଦୃଶ ମନୋହର ଗୁଣରାଶି ଯେ, ଯେଉଁମାନେ ଆତ୍ମାରେ ପରମତୃପ୍ତି ଲାଭ କରିଛନ୍ତି, ଯେଉଁମାନଙ୍କର ହୃଦୟଗ୍ରନ୍ଥି ଛିନ୍ନ ହୋଇଛି, ସେମାନେ ମଧ୍ୟ ଭଗବାନଙ୍କୁ ନିଷ୍କାମ ଭାବରେ ଭକ୍ତି କରି-ଥାଆନ୍ତି ।" (ଏହି ଭଗବାନଙ୍କୁ ସକଳ ଦେବତାଗଣ, ମୁମୁକ୍ଷୁ ଓ ବ୍ରହ୍ମବାଦୀମାନେ ମଧ୍ୟ

---

[୧] ତମେବୈକଂ ଜାନଥ ଆତ୍ମାନମନ୍ୟା ବାଚୋ ବିମୁଞ୍ଚଥାମୃତସ୍ୟୈଷଃ ସେତୁଃ ।
—ମୁଣ୍ଡକ ଉପନିଷଦ୍, ୨ୟ ମୁଣ୍ଡକ, ୨ୟ ଖଣ୍ଡ, ୫ମ ଶ୍ଳୋକ

ଉପାସନା କରିଥାଆନ୍ତି । )[୧] ପ୍ରେମର ଏହି ପ୍ରଭାବ । ଯେତେବେଳେ ମନୁଷ୍ୟ ନିଜକୁ ସମ୍ପୂର୍ଣ୍ଣ ଭୁଲିଯାଏ, ସେତେବେଳେ ଏହି ତନ୍ମୟତା ଅବସ୍ଥା ଲାଭ ହୁଏ । ସେତେବେଳେ ତାଙ୍କ ନିକଟରେ ସମସ୍ତ ପବିତ୍ର ବୋଲି ବୋଧହୁଏ; କାରଣ ସମସ୍ତ ଯେ ତାଙ୍କର ପ୍ରେମାସ୍ପଦଙ୍କର । ସାଂସାରିକ ପ୍ରେମରେ ମଧ୍ୟ ପ୍ରେମାସ୍ପଦଙ୍କର ସକଳ ବିଷୟ ପ୍ରେମିକର ଚକ୍ଷୁରେ ପବିତ୍ର ଓ ପ୍ରିୟ ବୋଲି ବୋଧ ହୁଏ । ନିଜ ହୃଦୟଧନଙ୍କର ସାମାନ୍ୟ ଛିଣ୍ଡାଏ ବସ୍ତ୍ରଖଣ୍ଡ ମଧ୍ୟ ସେ ଭଲପାଏ; ଏହିପରି ଯେ ଭଗବାନଙ୍କୁ ଭଲପାଏ, ସେ ସମୁଦାୟ ଜଗତ୍‌କୁ ମଧ୍ୟ ଭଲପାଏ । କାରଣ ସମୁଦାୟ ଜଗତ୍ ତାଙ୍କର ।

## ବିଶ୍ୱପ୍ରେମ ଓ ଆତ୍ମସମର୍ପଣ

ପ୍ରଥମରୁ ସମଷ୍ଟିକୁ ଭଲ ପାଇବାର ନ ଶିଖିଲେ ବ୍ୟଷ୍ଟିକୁ ଭଲ ପାଇ ହୁଏ ନାହିଁ । ଈଶ୍ୱର ହିଁ ସମଷ୍ଟି । ସମସ୍ତ ଜଗତକୁ ଯଦି ଏକ ଅଖଣ୍ଡ ସ୍ୱରୂପରେ ଚିନ୍ତା କରାଯାଏ, ତାହା ହିଁ ଈଶ୍ୱର; ଆଉ ଜଗତକୁ ଯେବେ ପୃଥକ୍ ପୃଥକ୍ ରୂପରେ ଦେଖାଯାଏ, ତେବେ ତାହା ବ୍ୟଷ୍ଟି । ସମଷ୍ଟିକୁ—ସେହି ସର୍ବବ୍ୟାପୀଙ୍କୁ—ଯେଉଁ ଏକ ଅଖଣ୍ଡ ଭାବ ମଧ୍ୟରେ କ୍ଷୁଦ୍ରତର ଅଖଣ୍ଡ ଭାବସମୂହ ଅବସ୍ଥିତ, ତାଙ୍କୁ—ଭଲପାଇଲେ ସମସ୍ତ ଜଗତକୁ ଭଲ ପାଇବା ସମ୍ଭବ ହୁଏ । ଭାରତୀୟ ଦାର୍ଶନିକଗଣ 'ବିଶେଷ'କୁ (particular) ନେଇ କ୍ଷାନ୍ତ ନୁହନ୍ତି, ସେମାନେ ବ୍ୟଷ୍ଟି ଦିଗକୁ କ୍ଷିପ୍ରଭାବରେ ଦୃଷ୍ଟିପାତ କରନ୍ତି ଏବଂ ତତ୍ପରେ ବ୍ୟଷ୍ଟି ବା ବିଶେଷ ଭାବଗୁଡ଼ିକ ଯେଉଁସବୁ ସାମାନ୍ୟ ଭାବର ଅନ୍ତର୍ଗତ, ସେଗୁଡ଼ିକର ଅନ୍ୱେଷଣରେ ପ୍ରବୃତ୍ତ ହୁଅନ୍ତି । ସର୍ବଭୂତ ମଧ୍ୟରେ ଏହି 'ସାମାନ୍ୟ' ( universal ) ଭାବର ଅନ୍ୱେଷଣ ହିଁ ଭାରତୀୟ ଦର୍ଶନ ଓ ଧର୍ମର ଲକ୍ଷ୍ୟ । ଯାହାଙ୍କୁ ଜାଣିଲେ ସମୁଦାୟ ଜଣାଯାଏ, ସେହି ସମଷ୍ଟିଭୂତ, ଏକ, ନିରପେକ୍ଷ, ସର୍ବଭୂତର ମଧ୍ୟଗତ ସାମାନ୍ୟ ଭାବସ୍ୱରୂପ ପୁରୁଷଙ୍କୁ ଜାଣିବା ହିଁ ଜ୍ଞାନୀର ଲକ୍ଷ୍ୟ । ଯାହାଙ୍କୁ ଭଲ ପାଇଲେ ଏହି ଚରାଚର ବିଶ୍ୱବ୍ରହ୍ମାଣ୍ଡ ପ୍ରତି ଭଲପାଇବା ଜନ୍ମିଥାଏ, ଭକ୍ତ ସେହି ସର୍ବଗତ ପୁରୁଷପ୍ରଧାନଙ୍କୁ ସାକ୍ଷାତ୍ ଉପଲବ୍ଧି କରିବାକୁ ଚାହାନ୍ତି; ଯୋଗୀ ପୁଣି ସେହି ସକଳର ମୂଳୀଭୂତ ଶକ୍ତିକୁ ଜୟ କରିବାକୁ ଚାହାନ୍ତି—ଯାହାଙ୍କୁ ଜୟ କଲେ ସମୁଦାୟ ଜଗତକୁ ଜୟ କରାଯାଏ । ଭାରତବାସୀଙ୍କ ମନର ଇତିହାସ ପର୍ଯ୍ୟବେକ୍ଷଣ କଲେ ଜଣାଯାଏ, କି ଜଡ଼ବିଜ୍ଞାନ, କି ମନୋବିଜ୍ଞାନ, କି ଭକ୍ତିତତ୍ତ୍ୱ, କି ଦର୍ଶନ—ସର୍ବବିଭାଗରେ ଏହା ଚିରକାଳ ଏହି ବହୁ ମଧ୍ୟରେ ଏକ ସର୍ବଗତ ତତ୍ତ୍ୱର ଏହି ଅପୂର୍ବ ଅନୁସନ୍ଧାନରେ ବ୍ୟସ୍ତ । ଭକ୍ତ

---

୧ ଆତ୍ମାରାମାଶ୍ଚ ମୁନୟୋ ନିର୍ଗ୍ରନ୍ଥା ଅପ୍ୟୁରୁକ୍ରମେ ।
କୁର୍ବନ୍ତ୍ୟହୈତୁକୀଂ ଭକ୍ତିମ୍ ଇତ୍ଥମ୍ଭୂତଗୁଣୋ ହରିଃ ॥
—ଶ୍ରୀମଦ୍‌ଭାଗବତ, ପ୍ରଥମ ସ୍କନ୍ଧ, ସପ୍ତମ ଅଧ୍ୟାୟ, ୧୦ମ ଶ୍ଳୋକ

ଯଂ ସର୍ବେ ଦେବା ନମନ୍ତି ମୁମୁକ୍ଷବୋ ବ୍ରହ୍ମବାଦିନଶ୍ଚ ।
—ନୃସିଂହପୂର୍ବତାପନୀ ଉପନିଷଦ୍, ୨।୪

କ୍ରମଶଃ ଏହି ସିଦ୍ଧାନ୍ତରେ ଉପନୀତ ହୁଅନ୍ତି ଯେ, ଯଦି ତୁମେ ଏକେ ଏକେ ଜଣକ ପରେ ଆଉ ଜଣକୁ ଭଲ ପାଉଥାଅ, ତେବେ ତୁମେ ଅନନ୍ତକାଳ ପାଇଁ ଉତ୍ତରୋତ୍ତର ଅଧିକ-ସଂଖ୍ୟକ ବ୍ୟକ୍ତିଙ୍କୁ ଭଲପାଇପାର; କିନ୍ତୁ ସମଗ୍ର ଜଗତକୁ ଏକାଥରକେ ଭଲ ପାଇବାକୁ କଦାପି ସମର୍ଥ ହେବ ନାହିଁ । କିନ୍ତୁ ଅବଶେଷରେ ଯେତେବେଳେ ଏହି ମୂଳ ସତ୍ୟ ଅବଗତ ହେବ ଯେ, ଈଶ୍ୱର ସମସ୍ତ ପ୍ରେମର ସମଷ୍ଟିସ୍ୱରୂପ—ମୁକ୍ତ, ମୁମୁକ୍ଷୁ, ବଦ୍ଧ ଜଗତର ସକଳ ଜୀବାତ୍ମାର ସକଳ ଆକାଙ୍‌କ୍ଷାର ସମଷ୍ଟି ହିଁ ଈଶ୍ୱର, ସେତେବେଳେ ସାଧକଙ୍କ ପକ୍ଷରେ ସାର୍ବଜନୀନ ପ୍ରେମ ସମ୍ଭବ ହୋଇପାରେ । ଭକ୍ତ କହନ୍ତି—ଭଗବାନ ସମଷ୍ଟି ଏବଂ ଏହି ପରିଦୃଶ୍ୟମାନ ଜଗତ୍ ଭଗବାନଙ୍କର ପରିଚ୍ଛିନ୍ନ ଭାବ—ଭଗବାନଙ୍କର ଅଭିବ୍ୟକ୍ତିମାତ୍ର । ସମଷ୍ଟିକୁ ଭଲ ପାଇଲେ ସମସ୍ତ ଜଗତକୁ ଭଲପାଇବା ହେଲା, ସେତେବେଳେ ଜଗତ୍ ପ୍ରତି ଭଲପାଇବା ଓ ଜଗତର ହିତସାଧନ ସମସ୍ତ ସହଜ ହୋଇଯିବ । ପ୍ରଥମେ ଭଗବତ୍-ପ୍ରେମ ଦ୍ୱାରା ଆମମାନଙ୍କୁ ଏହି ଶକ୍ତିଲାଭ କରିବାକୁ ହେବ, ନଚେତ୍ ଜଗତର ହିତସାଧନ କରିବା ସମ୍ଭବ ହେବ ନାହିଁ । ଭକ୍ତ କହନ୍ତି, "ସମୁଦାୟ ହିଁ ତାଙ୍କର, ସେ ମୋର ପ୍ରିୟତମ, ମୁଁ ତାଙ୍କୁ ଭଲପାଏ ।" ଏହିପରି ଭକ୍ତ ନିକଟରେ ସମସ୍ତ ପବିତ୍ର ବୋଲି ବୋଧହୁଏ, କାରଣ ସମସ୍ତ ତାଙ୍କର । ସମସ୍ତେ ତାଙ୍କର ସନ୍ତାନ, ତାଙ୍କର ଅଙ୍ଗସ୍ୱରୂପ, ତାଙ୍କର ପ୍ରକାଶ । ତେବେ କିପରି ମୁଁ ଅନ୍ୟକୁ ଆଘାତ କରିପାରିବି ? କିପରି ବା ଅନ୍ୟକୁ ଭଲ ନ ପାଇ ରହିପାରିବି ? ଭଗବତ୍-ପ୍ରେମ ଆସିଲେ ତାହା ସଙ୍ଗେ ସଙ୍ଗେ ତା'ର ନିଶ୍ଚିତ ଫଳସ୍ୱରୂପ ସର୍ବଭୂତଠାରେ ପ୍ରେମ ଆସିବ । ଆମେ ଭଗବାନଙ୍କ ନିକଟକୁ ଯେତେ ଅଗ୍ରସର ହେଉଁ, ସମୁଦାୟ ବସ୍ତୁକୁ ତାଙ୍କ ଭିତରେ ସେତେ ଦେଖିବାକୁ ପାଉଁ । ଯେତେବେଳେ ସାଧକ ଏହି ପରାଭକ୍ତି ଲାଭ କରିବାକୁ ସମର୍ଥ ହୁଅନ୍ତି, ସେତେବେଳେ ଈଶ୍ୱରଙ୍କୁ ସର୍ବଭୂତଙ୍କଠାରେ ଦର୍ଶନ କରିବାକୁ ଆରମ୍ଭ କରନ୍ତି । ଏହିପରି ଆମମାନଙ୍କର ହୃଦୟ ପ୍ରେମର ଏକ ପ୍ରସ୍ରବଣ ହୋଇଯାଏ । ଯେତେବେଳେ ଆମେ ଏହି ପ୍ରେମର ଆହୁରି ଉଚ୍ଚତର ସ୍ତରରେ ଉପନୀତ ହେଉଁ, ସେତେବେଳେ ଏହି ଜଗତର ସକଳ ପଦାର୍ଥ ମଧ୍ୟରେ ଯେଉଁ କ୍ଷୁଦ୍ର କ୍ଷୁଦ୍ର ପାର୍ଥକ୍ୟ ଅଛି, ସମସ୍ତ ସମ୍ପୂର୍ଣ୍ଣରୂପେ ଚାଲିଯାଏ । ମନୁଷ୍ୟକୁ ଆଉ ମନୁଷ୍ୟ ବୋଲି ବୋଧହୁଏ ନାହିଁ, ଭଗବାନ ବୋଲି ବୋଧହୁଏ; ଅପରାପର ପ୍ରାଣୀଙ୍କୁ ମଧ୍ୟ ସେହି ସେହି ପ୍ରାଣୀ ବୋଲି ବୋଧ ହୁଏ ନାହିଁ, ସେମାନେ ମଧ୍ୟ ସେତେବେଳେ ତାଙ୍କ ଦୃଷ୍ଟିରେ ଭଗବାନ । ଏପରି କି, ବ୍ୟାଘ୍ରକୁ ମଧ୍ୟ ବ୍ୟାଘ୍ର ବୋଲି ବୋଧ ହେବ ନାହିଁ, ଭଗବାନଙ୍କର ରୂପ ବୋଲି ବୋଧ ହେବ । ଏହି ରୂପେ ଏହି ପ୍ରଗାଢ଼ ଭକ୍ତିର ଅବସ୍ଥାରେ ସର୍ବଭୂତଗଣ ଆମମାନଙ୍କର ଉପାସ୍ୟ ହୋଇପଡ଼ନ୍ତି । "ହରିଙ୍କୁ ସର୍ବଭୂତଠାରେ ଅବସ୍ଥିତ ଜାଣି ଜ୍ଞାନୀ ବ୍ୟକ୍ତି ସମସ୍ତଙ୍କୁ ଅବିଚଳିତ ଭାବରେ ଭଲପାଆନ୍ତି ।"[୧] ଏହିପରି ପ୍ରଗାଢ଼ ସର୍ବବ୍ୟାପକ ପ୍ରେମର ଫଳ ପୂର୍ଣ୍ଣ ଆତ୍ମନିବେଦନ ଓ 'ଅପ୍ରାତିକୂଲ୍ୟ' । ସେତେବେଳେ ଦୃଢ଼ ବିଶ୍ୱାସ ହୁଏ ଯେ, ସଂସାରରେ ଭଲ ମନ୍ଦ ଯାହା କିଛି ଘଟେ, କିଛି ଆମମାନଙ୍କର ଅନିଷ୍ଟକର ନୁହେଁ—ଅପ୍ରାତିକୂଲ୍ୟ । ସେତେ-

---

୧ ଏବଂ ସର୍ବେଷୁ ଭୂତେଷୁ ଭକ୍ତିରବ୍ୟଭିଚାରିଣୀ ।
କର୍ତ୍ତବ୍ୟା ପଣ୍ଡିତୈର୍ଜ୍ଞାତ୍ୱା ସର୍ବଭୂତମୟଂ ହରିମ୍ ॥ —ବିଷ୍ଣୁପୁରାଣ ୧।୧୯।୯

ବେଳେ ସେହି ପ୍ରେମିକପୁରୁଷ ଦୁଃଖ ଆସିଲେ କହିପାରନ୍ତି, 'ଆସୁ ଦୁଃଖ'—କଷ୍ଟ ଆସିଲେ କହିପାରନ୍ତି, 'ଆସୁ କଷ୍ଟ, ତୁମେ ମଧ୍ୟ ମୋର ପ୍ରିୟତମଙ୍କ ନିକଟରୁ ଆସିଛ।' ସର୍ପ ଆସିଲେ ସର୍ପକୁ ମଧ୍ୟ ସେ ବ୍ୟକ୍ତି ସ୍ୱାଗତ ଜଣାଇପାରନ୍ତି । ମୃତ୍ୟୁ ଆସିଲେ ଏହିପରି ଭକ୍ତ ମୃତ୍ୟୁକୁ ସହାସ୍ୟରେ ଅଭିନନ୍ଦନ କରିପାରନ୍ତି । 'ଧନ୍ୟ ମୁଁ ମୋ ନିକଟକୁ ଏମାନେ ଆସୁଛନ୍ତି, ଆସନ୍ତୁ ସମସ୍ତେ ।' ଭଗବାନ ଏବଂ ଯାହା କିଛି ତାଙ୍କର—ସେହି ସକଳ ପ୍ରତି ପ୍ରଗାଢ଼ ପ୍ରେମରୁ ପ୍ରସୂତ ଏହି ପୂର୍ଣ୍ଣ ନିର୍ଭରାବସ୍ଥାରେ ଭକ୍ତ ନିକଟରେ ସୁଖ ଓ ଦୁଃଖର ବିଶେଷ ପ୍ରଭେଦ ରହେ ନାହିଁ । ସେତେବେଳେ ସେ ଆଉ ଦୁଃଖକଷ୍ଟ ପାଇଁ ଅଭିଯୋଗ କରନ୍ତି ନାହିଁ । ଆଉ ପ୍ରେମସ୍ୱରୂପ ଭଗବାନଙ୍କ ଇଚ୍ଛାରେ ଏହିପରି ନିର୍ଭରତା ଅବଶ୍ୟ ମହାବୀରତ୍ୱପୂର୍ଣ୍ଣ ଓ କ୍ରିୟାକଳାପଜନିତ ଯଶୋରାଶି ଅପେକ୍ଷା ଅଧିକତର ବାଞ୍ଛନୀୟ ।

ଅଧିକାଂଶ ମାନବ ଦେହସର୍ବସ୍ୱ । ଦେହ ହିଁ ସେମାନଙ୍କ ଚକ୍ଷୁରେ ସମଗ୍ର ଜଗତ୍ ତୁଲ୍ୟ, ଦେହର ସୁଖ ହିଁ ସେମାନଙ୍କର ଚରମ ଲକ୍ଷ୍ୟ । ଏହି ଦେହ ଓ ଦୈହିକ ଭୋଗ୍ୟବସ୍ତୁର ଉପାସନାରୂପକ ଆସୁରିକ ଭାବ ଆମ ସମସ୍ତଙ୍କ ଭିତରେ ପ୍ରବେଶ କରିଛି । ଆମେ ଖୁବ୍ ବଡ଼ ବଡ଼ କଥା କହିପାରୁ, ଉଚ୍ଚ ଉଚ୍ଚ ଆଦର୍ଶର କଥା ଉଲ୍ଲେଖ କରିପାରୁ, କିନ୍ତୁ ତଥାପି ଆମେ ସମସ୍ତେ ଶକୁନି ପରି । ଆମେ ଯେତେ ଉଚ୍ଚକୁ ଉଠିଛୁଁ ବୋଲି ମନେକରୁ ନା କାହିଁକି, ଆମର ମନ କିନ୍ତୁ ଶକୁନି ପରି ଶବର ଗଳିତ ମାଂସଖଣ୍ଡ ପ୍ରତି ଆକୃଷ୍ଟ । ମୁଁ ପଚାରୁଛି, ଆମ ଶରୀରକୁ ବ୍ୟାଘ୍ର କବଳରୁ ରକ୍ଷା କରିବାର ପ୍ରୟୋଜନ କଅଣ ? ଆମେ ବ୍ୟାଘ୍ରକୁ ଏହି ଶରୀରଟିକୁ ଦେଇପାରୁ ନାହିଁ କାହିଁକି ? ଏଥିରେ ତ ବ୍ୟାଘ୍ରର ତୃପ୍ତି ହୁଅନ୍ତା, କଅଣ ଏହା ସହିତ ଆତ୍ମୋତ୍ସର୍ଗ ଓ ଉପାସନାର ଖୁବ୍ ବେଶୀ ପ୍ରଭେଦ ? ଅହଂକୁ ତୁମେ କ'ଣ ସଂପୂର୍ଣ୍ଣରୂପରେ ନାଶ କରିପାରିବ ? ପ୍ରେମଧର୍ମର ଏହା ଅତି ଉଚ୍ଚ ଚୂଡ଼ା ଏବଂ ଅତି ଅଳ୍ପ ଲୋକ ଏହି ଅବସ୍ଥାକୁ ଆରୋହଣ କରିଛନ୍ତି । କିନ୍ତୁ ଯେତେଦିନ ଯାଏ ମନୁଷ୍ୟ ଏହିପରି ଆତ୍ମତ୍ୟାଗ ପାଇଁ ସର୍ବାନ୍ତଃକରଣରେ ପ୍ରସ୍ତୁତ ନ ହୋଇଛି, ସେପର୍ଯ୍ୟନ୍ତ ସେ ପୂର୍ଣ୍ଣ ଭକ୍ତ ହୋଇପାରିବ ନାହିଁ । ଆମେ ସମସ୍ତେ ଅଳ୍ପାଧିକ ସମୟ ପାଇଁ ଶରୀରକୁ ବଞ୍ଚାଇ ରଖିପାରୁ ଏବଂ ଅଳ୍ପାଧିକ ସ୍ୱାସ୍ଥ୍ୟସମ୍ଭୋଗ ମଧ୍ୟ କରିପାରୁ; କିନ୍ତୁ ତଦ୍ୱାରା ହେଲା କଅଣ ? ଶରୀର ତ ଦିନେ ନା ଦିନେ ଚାଲିଯିବ । ଶରୀରର ତ କୌଣସି ନିତ୍ୟତା ନାହିଁ । ଧନ୍ୟ ସେହିମାନେ, ଯେଉଁମାନଙ୍କର ଶରୀର ଅନ୍ୟର ସେବାରେ ନାଶ ହୁଏ । "ସାଧୁ ବ୍ୟକ୍ତି କେବଳ ଅନ୍ୟର ସେବା ଲାଗି ଧନ, ଏପରି କି ପ୍ରାଣ ପର୍ଯ୍ୟନ୍ତ ଉତ୍ସର୍ଗ କରିବାକୁ ସର୍ବଦା ପ୍ରସ୍ତୁତ ଥାଆନ୍ତି । ଏହି ଜଗତରେ ମୃତ୍ୟୁ ହିଁ ଏକମାତ୍ର ସତ୍ୟ—ଏପରିସ୍ଥଳେ ଯଦି ଆମ ଦେହ କୌଣସି ମନ୍ଦ କାର୍ଯ୍ୟରେ ନ ଲାଗି ଭଲ କାର୍ଯ୍ୟରେ ଲାଗେ, ତେବେ ତାହାକୁ ଖୁବ୍ ଭଲ ବୋଲି କହିବାକୁ ହେବ ।"[୧] ଆମେ କୌଣସି ପ୍ରକାରେ ପଚାଶ ଷାଠିଏ ବା ଶହେ ବର୍ଷ ବଞ୍ଚିପାରୁ; କିନ୍ତୁ ତାହାପରେ ?—ମୃତ୍ୟୁ । ଯେକୌଣସି ବସ୍ତୁ ମିଶ୍ରଣରୁ ଉତ୍ପନ୍ନ, ତାହା ହିଁ ବିଶ୍ଳିଷ୍ଟ ହୋଇ ବିନଷ୍ଟ ହୋଇଯାଏ । ଏପରି ସମୟ ଆସିବ,

---

୧ ଧନାନି ଜୀବିତଞ୍ଚୈବ ପରାର୍ଥେ ପ୍ରାଜ୍ଞ ଉତ୍ସୃଜେତ୍ ।
ସନ୍ନିମିତ୍ତେ ବରଂ ତ୍ୟାଗୋ ବିନାଶେ ନିୟତେ ସତି ॥ —ହିତୋପଦେଶ

ଯେତେବେଳେ ଏହା ବର୍ଜ୍ଜିତ ହେବ ହିଁ ହେବ । ଈଶା, ବୁଦ୍ଧ, ମହମ୍ମଦ ଜଗତର ସକଳ ବଡ଼ ବଡ଼ ମହାପୁରୁଷ ଓ ଆଚାର୍ଯ୍ୟଗଣ ଏହି ପଥରେ ଯାଇଛନ୍ତି । ଭକ୍ତ କହନ୍ତି, ଏହି କ୍ଷଣସ୍ଥାୟୀ ଜଗତରେ ଯେଉଁଠି ସମସ୍ତ ଜିନିଷ କ୍ଷୟପ୍ରାପ୍ତ ହେଉଛି, ଏଠାରେ ଆମେ ଯେତକ ସମୟ ପାଉଁଛୁ ତାହାର ସଦ୍‌ବ୍ୟବହାର କରିବା ଆବଶ୍ୟକ । ପୁଣି ପ୍ରକୃତରେ ଜୀବନର ସର୍ବପ୍ରଧାନ କାର୍ଯ୍ୟ ଜୀବନକୁ ସର୍ବଭୂତଙ୍କ ସେବାରେ ବିନିଯୋଗ କରିବା । ଏହି ଭୟାନକ ଦେହାତ୍ମବୁଦ୍ଧି ହିଁ ଜଗତରେ ସର୍ବପ୍ରକାର ସ୍ୱାର୍ଥପରତାର ମୂଳ । ଆମମାନଙ୍କର ମହାଭ୍ରମ ଏହି ଯେ, ଆମର ଏହି ଶରୀରଟିକୁ ମୁଁ ବୋଲି ଭାବିଥାଉଁ, ଆଉ ଯେକୌଣସି ପ୍ରକାରେ ହେଉ ତାହାକୁ ରକ୍ଷା ଓ ତାହାର ସ୍ୱଚ୍ଛନ୍ଦତା ବିଧାନ କରିବାକୁ ତତ୍ପର ହେଉ । ଏହି ଭାବ ହିଁ ଆମକୁ ପରାର୍ଥରେ ଜୀବନ ଉତ୍ସର୍ଗ କରିବାକୁ ଦିଏ ନାହିଁ । ଯଦି ତୁମେ ନିଶ୍ଚିତ ଭାବରେ ଜାଣିପାର ଯେ, ତୁମେ ଶରୀରଠାରୁ ସମ୍ପୂର୍ଣ୍ଣ ପୃଥକ୍, ତେବେ ଏ ଜଗତରେ ଏପରି କିଛି ନାହିଁ ଯାହା ସହିତ ତୁମର ବିରୋଧ ଉପସ୍ଥିତ ହେବ; ସେତେବେଳେ ତୁମେ ସର୍ବପ୍ରକାର ସ୍ୱାର୍ଥପରତାକୁ ଅତିକ୍ରମ କରିଥାଅ । ଏହି ହେତୁରୁ ଭକ୍ତ କହନ୍ତି, "ଆମମାନଙ୍କୁ ଜଗତର ସକଳ ପଦାର୍ଥ ସମ୍ବନ୍ଧରେ ମୃତବତ୍ ରହିବାକୁ ହେବ" ଏବଂ ତାହା ହିଁ ବାସ୍ତବିକ ଆତ୍ମସମର୍ପଣ—ଶରଣାଗତି—ଯାହା ହେବାର ହେଉ । "ତୁମର ଇଚ୍ଛା ପୂର୍ଣ୍ଣ ହେଉ"—ଏହି ବାକ୍ୟର ଅର୍ଥ ଏପ୍ରକାର ଆତ୍ମସମର୍ପଣ ବା ଶରଣାଗତି । ସ୍ୱାର୍ଥ ପାଇଁ ସଂଗ୍ରାମ କରିବା ଏବଂ ସଙ୍ଗେସଙ୍ଗେ ମନେକରିବା—ଭଗବାନଙ୍କର ଇଚ୍ଛାନୁକ୍ରମେ ହିଁ ଆମର ଦୁର୍ବଳତା ଓ ସାଂସାରିକ ଆକାଙ୍‌କ୍ଷା ଜନ୍ମିଥାଏ—ଏହା ନିର୍ଭରତା ନୁହେଁ । ହୋଇପାରେ, ଆମର ସ୍ୱାର୍ଥପୂର୍ଣ୍ଣ କାର୍ଯ୍ୟରୁ ଭବିଷ୍ୟତରେ ଆମର ମଙ୍ଗଳ ହୁଏ, କିନ୍ତୁ ସେ ବିଷୟ ଭଗବାନ ବିଚାର କରିବେ, ସେଥିରେ ତୁମ ଆମର କିଛି କରିବାର ନାହିଁ । ପ୍ରକୃତ ଭକ୍ତ ନିଜ ପାଇଁ କଦାପି କୌଣସି ଇଚ୍ଛା ବା କାର୍ଯ୍ୟ କରନ୍ତି ନାହିଁ । "ପ୍ରଭୁ, ଲୋକମାନେ ତୁମ ନାମରେ ବଡ଼ ବଡ଼ ମନ୍ଦିର ନିର୍ମାଣ କରନ୍ତି, ତୁମ ନାମରେ କେତେ ଦାନ କରନ୍ତି; ମୁଁ ଦରିଦ୍ର, ମୁଁ ଅକିଞ୍ଚନ, ମୋର ଦେହ ତୁମର ପାଦପଦ୍ମରେ ସମର୍ପଣ କଲି । ପ୍ରଭୁ, ମୋତେ ତ୍ୟାଗ କର ନାହିଁ ।" ଏହା ହିଁ ଭକ୍ତହୃଦୟର ଗଭୀର ପ୍ରଦେଶରୁ ଉତ୍ଥିତ ପ୍ରାର୍ଥନା । ଯେ ଥରେ ଏହି ଅବସ୍ଥା ଆସ୍ୱାଦନ କରିଛି, ତାହା ପକ୍ଷରେ ଏହି ପ୍ରିୟତମ ପ୍ରଭୁଙ୍କ ଚରଣରେ ଆତ୍ମସମର୍ପଣ—ଜଗତର ସମୁଦାୟ ଧନ, ପ୍ରଭୁତ୍ୱ, ଏପରି କି ମନୁଷ୍ୟ ଯେତେଦୂର ମାନଯଶ ଓ ଭୋଗସୁଖର ଆଶା କରିପାରେ, ତାହା ଅପେକ୍ଷା ମଧ୍ୟ ଶ୍ରେଷ୍ଠ ବୋଲି ପ୍ରତୀତ ହୁଏ । ଭଗବାନଙ୍କଠାରେ ନିର୍ଭରତାଜନିତ ଏହି ଶାନ୍ତି ଆମମାନଙ୍କ ବୁଦ୍ଧିର ଅତୀତ ଓ ଅମୂଲ୍ୟ । ଆତ୍ମସମର୍ପଣରୁ ଏହି ଅପ୍ରାତିକୂଲ୍ୟ-ଅବସ୍ଥା ଲାଭ ହେଲେ ସାଧକର ଆଉ କୌଣସି ପ୍ରକାର ସ୍ୱାର୍ଥ ରହେ ନାହିଁ; ଆଉ ସ୍ୱାର୍ଥ ଯେବେ ନାହିଁ, ସେତେବେଳେ ଆଉ ତାହାର ସ୍ୱାର୍ଥହାନିକର ବସ୍ତୁ ଜଗତରେ କଅଣ ଥାଇପାରେ ? ଏହି ପରମ ନିର୍ଭରାବସ୍ଥାରେ ସର୍ବପ୍ରକାର ଆସକ୍ତି ସମ୍ପୂର୍ଣ୍ଣରୂପେ ଦୂର ହୁଏ; କେବଳ ସେହି ସର୍ବଭୂତର ଅନ୍ତରାତ୍ମା ଓ ଆଧାରସ୍ୱରୂପ ଭଗବାନଙ୍କ ପ୍ରତି ସର୍ବାବଗାହିନୀ ପ୍ରେମାତ୍ମିକା ଆସକ୍ତି ରହିଯାଏ । ଭଗବାନଙ୍କ ପ୍ରତି ଏହି ପ୍ରେମର ଆକର୍ଷଣ ଜୀବାତ୍ମାର ବନ୍ଧନର କାରଣ ନୁହେଁ, ବରଂ ତାହା ତା'ର ସର୍ବବନ୍ଧନ ମୋଚନରେ ସାହାଯ୍ୟ କରେ ।

# ପରାବିଦ୍ୟା ଓ ପରାଭକ୍ତି ଏକ

ଉପନିଷଦ୍ ପରା ଓ ଅପରା ବିଦ୍ୟା ନାମକ ଦୁଇଟି ବିଦ୍ୟା ଭିନ୍ନରୂପେ ଉଲ୍ଲେଖ କରିଛି । ଆଉ ଭକ୍ତ ନିକଟରେ ପରାବିଦ୍ୟା ଓ ପରାଭକ୍ତି ମଧ୍ୟରେ ବାସ୍ତବିକ୍ କିଛି ପ୍ରଭେଦ ନାହିଁ । ମୁଣ୍ଡକ ଉପନିଷଦ୍‌ରେ କଥିତ ଅଛି, "ବ୍ରହ୍ମଜ୍ଞାନୀମାନେ କହନ୍ତି, ଜାଣିବାର ଉପଯୁକ୍ତ ଦୁଇ ପ୍ରକାର ବିଦ୍ୟା ଅଛି—ପରା ଓ ଅପରା । ତାହା ମଧ୍ୟରେ ଅପରା ବିଦ୍ୟା—ଋଗ୍‌ବେଦ, ଯଜୁର୍ବେଦ, ସାମବେଦ, ଅଥର୍ବବେଦ, ଶିକ୍ଷା ( ଉଚ୍ଚାରଣ, ଯତି ଇତ୍ୟାଦିର ବିଦ୍ୟା ), କଳ୍ପ ( ଯଜ୍ଞପଦ୍ଧତି ), ବ୍ୟାକରଣ, ନିରୁକ୍ତ ( ବୈଦିକ ଶବ୍ଦସମୂହର ବ୍ୟୁତ୍ପତ୍ତି ଓ ସେମାନଙ୍କର ଅର୍ଥ ଯେଉଁ ଶାସ୍ତ୍ରଦ୍ୱାରା ଜଣାଯାଏ ), ଛନ୍ଦଃ, ଜ୍ୟୋତିଷ । ଆଉ ପରାବିଦ୍ୟା ସେହି, ଯଦ୍ଦ୍ୱାରା ସେହି ଅକ୍ଷରକୁ ଜାଣି ହୁଏ ।"[୧]

ସୁତରାଂ ସ୍ପଷ୍ଟ ଦେଖାଗଲା ଯେ, ଏହି ପରାବିଦ୍ୟା ଓ ବ୍ରହ୍ମଜ୍ଞାନ ଏକ ପଦାର୍ଥ । ଦେବୀ-ଭାଗବତ ଆମମାନଙ୍କୁ ପରାଭକ୍ତିର ଏହି ନିମ୍ନଲିଖିତ ଲକ୍ଷଣ କହି ଦେଇଛନ୍ତି—"ଯେପରି ତୈଳ ଏକ ପାତ୍ରରୁ ପାତ୍ରାନ୍ତରକୁ ଢାଳିବା ସମୟରେ ଅବିଚ୍ଛିନ୍ନ ଧାରାରେ ପତିତ ହୁଏ, ସେପରି ମନ ଯେତେବେଳେ ଅବିଚ୍ଛିନ୍ନ ଭାବରେ ଭଗବାନଙ୍କୁ ସ୍ମରଣ କରିଥାଏ, ସେତେବେଳେ ପରାଭକ୍ତିର ଉଦୟ ହୋଇଛି ବୋଲି ବୁଝିବାକୁ ହେବ ।"[୨] ଅବିଚ୍ଛିନ୍ନ ଆସକ୍ତିର ସହିତ ଭଗବାନଙ୍କ ଆଡ଼କୁ ହୃଦୟ ଓ ମନର ଏପରି ଅବିରତ ଓ ନିତ୍ୟସ୍ଥିରତା ହିଁ ମାନବହୃଦୟର ସର୍ବୋଚ୍ଚ ଭଗବତ୍-ପ୍ରେମର ପ୍ରକାଶ । ଅନ୍ୟ ସକଳ ପ୍ରକାର ଭକ୍ତି କେବଳ ଏହି ପରାଭକ୍ତିର—ରାଗାନୁଗା ଭକ୍ତିର ସୋପାନମାତ୍ର । ଯେତେବେଳେ ସାଧକ-ହୃଦୟରେ ପରାନୁରାଗର ଉଦୟ ହୁଏ, ସେତେବେଳେ ତାହାର ମନ ସର୍ବଦା ଭଗବାନଙ୍କ ଚିନ୍ତା କରିବ, ଆଉ ଅନ୍ୟ କିଛି ତାହାର ସ୍ମୃତି ପଥରେ ଉଦିତ ହେବ ନାହିଁ । ସେ ନିଜ ମନରେ ସେତେବେଳେ ଭଗବାନଙ୍କ ବ୍ୟତୀତ ଅନ୍ୟ କୌଣସି ଚିନ୍ତାକୁ ସ୍ଥାନ ଦେବ ନାହିଁ । ତା'ର ଆତ୍ମା ସମ୍ପୂର୍ଣ୍ଣ ପବିତ୍ର ହୋଇ ମାନସିକ ଓ ଭୌତିକ ସବୁପ୍ରକାର ବନ୍ଧନକୁ ଅତିକ୍ରମ କରି ଶାନ୍ତ ଓ ମୁକ୍ତଭାବ ଧାରଣ କରିବ । ଏପରି ଲୋକ କେବଳ ଭଗବାନଙ୍କୁ ନିଜ ଅନ୍ତରରେ ଉପାସନା କରିବାକୁ କ୍ଷମ । ତାଙ୍କ ନିକଟରେ ଅନୁଷ୍ଠାନ-ପଦ୍ଧତି, ପ୍ରତୀକ, ପ୍ରତିମାଦି, ଶାସ୍ତ୍ରାଦି ମତାମତ ସମୁଦାୟ ଅନାବଶ୍ୟକ ହୋଇପଡ଼େ—ସେଗୁଡ଼ିକ ଦ୍ୱାରା ତାଙ୍କର ଆଉ କୌଣସି ଉପକାର ହୁଏ ନାହିଁ । ଭଗବାନଙ୍କୁ ଏପରି ଭାବରେ ଭଲ-ପାଇବା କିଛି ସହଜ କର୍ମ ନୁହେଁ ।

---

୧ ଦ୍ୱେ ବିଦ୍ୟେ ବେଦିତବ୍ୟେ ଇତି ହସ୍ମ ଯଦ୍ ବ୍ରହ୍ମବିଦୋ ବଦନ୍ତି ପରା ଚୈବାପରା ଚ । ତତ୍ରାପରା—ଋକ୍‌ବେଦୋ ଯଜୁର୍ବେଦଃ ସାମବେଦୋଽଥର୍ବବେଦଃ ଶିକ୍ଷା କଳ୍ପୋ ବ୍ୟାକରଣଂ ନିରୁକ୍ତଂ ଛନ୍ଦୋ ଜ୍ୟୋତିଷମିତି । ଅଥ ପରା—ଯୟା ତଦକ୍ଷରମଧିଗମ୍ୟତେ ।

—ମୁଣ୍ଡକୋପନିଷଦ୍, ୧ମ ମୁଣ୍ଡକ, ୧ମ ଖଣ୍ଡ, ୪ର୍ଥ ଓ ୫ମ ଶ୍ଳୋକ

୨ ଚେତସୋ ବର୍ତ୍ତନଞ୍ଚୈବ ତୈଳଧାରାସମଂ ସଦା ।

—ଦେବୀଭାଗବତ, ୭ମ ସ୍କନ୍ଧ, ୩୭ଶ ଅଧ୍ୟାୟ, ୧୧ଶ ଶ୍ଳୋକ

ସାଧାରଣ ମାନବୀୟ ପ୍ରେମ ଯେଉଁଠାରେ ପ୍ରତିଦାନ ପାଏ ସେଠାରେ ହିଁ ବୃଦ୍ଧି ପାଏ । ଯେଉଁଠାରେ ପ୍ରତିଦାନ ନ ପାଏ, ସେଠାରେ ଉଦାସୀନତା ଆସି ପ୍ରେମର ସ୍ଥାନ ଅଧିକାର କରେ । ନିତାନ୍ତ ଅଳ୍ପ କ୍ଷେତ୍ରରେ କିନ୍ତୁ କୌଣସି ପ୍ରକାର ପ୍ରତିଦାନ ନ ପାଇଲେ ମଧ୍ୟ ପ୍ରେମର ବିକାଶ ଦେଖାଯାଏ । ଆମେ ଏହା ଅଗ୍ନିକୁ ପତଙ୍ଗର ଭଲପାଇବା ସହିତ ତୁଳନା କରିପାରୁ । ପତଙ୍ଗ ଅଗ୍ନିକୁ ଭଲପାଏ, ଆଉ ଏଥିରେ ଆତ୍ମସମର୍ପଣ କରି ପ୍ରାଣତ୍ୟାଗ କରେ । ଏହିପରି ଭାବରେ ଭଲପାଇବା ପତଙ୍ଗର ସ୍ୱଭାବ । ଜଗତରେ ଯେତେ ପ୍ରକାର ପ୍ରେମ ଦୃଷ୍ଟ ହୁଏ, ତନ୍ମଧ୍ୟରେ କେବଳ ପ୍ରେମ ଲାଗି ଯେଉଁ ପ୍ରେମ ତାହାହିଁ ସର୍ବୋଚ୍ଚ ଓ ପୂର୍ଣ୍ଣ ନିଃସ୍ୱାର୍ଥ ପ୍ରେମ । ଏହିପରି ପ୍ରେମ ଆଧ୍ୟାତ୍ମିକତାରୂପ ଭୂମିକାରେ କାର୍ଯ୍ୟ କରିବାକୁ ଆରମ୍ଭ କଲେ ପରାଭକ୍ତି ଆଡ଼କୁ ନେଇଯାଏ ।

## ପ୍ରେମ ତ୍ରିକୋଣାତ୍ମକ

ପ୍ରେମକୁ ଆମେମାନେ ଗୋଟିଏ ତ୍ରିକୋଣସ୍ୱରୂପରେ ପ୍ରକାଶ କରିପାରୁଁ । ତାହାର ପ୍ରତ୍ୟେକ କୋଣ ଯେପରି ତାହାର ଗୋଟିଏ ଗୋଟିଏ ଅବିଭାଜ୍ୟ ବୈଶିଷ୍ଟ୍ୟର ପ୍ରକାଶକ । ତିନି କୋଣ ବ୍ୟତୀତ କୌଣସି ତ୍ରିକୋଣ ବା ତ୍ରିଭୁଜ ହୋଇପାରେ ନାହିଁ । ଆଉ ପ୍ରକୃତ ପ୍ରେମ ତା'ର ନିମ୍ନଲିଖିତ ତିନୋଟି ଲକ୍ଷଣ ବ୍ୟତୀତ କୌଣସି ପ୍ରକାରେ ରହିପାରେ ନାହିଁ । ପ୍ରେମସ୍ୱରୂପ ଏହି ତ୍ରିକୋଣର ଗୋଟିଏ କୋଣ ଏହି ଯେ, ପ୍ରେମରେ କୌଣସି ପ୍ରକାର ଦର କଷାକଷି ବା କିଣାବିକାର ଭାବ ନାହିଁ । ଯେଉଁଠାରେ କୌଣସି ପ୍ରତିଦାନର ଆଶା ଥାଏ, ସେଠାରେ ପ୍ରକୃତ ପ୍ରେମ ଜନ୍ମିପାରେ ନାହିଁ । ଏହା କେବଳ ଦୋକାନଦାରିରେ ପରିଣତ ହୁଏ ମାତ୍ର । ଯେତେଦିନ ପର୍ଯ୍ୟନ୍ତ ଆମର ଭଗବାନଙ୍କ ପ୍ରତି ଭୟମିଶା ଭକ୍ତି ଓ ତାଙ୍କର ଆଜ୍ଞାପାଳନ ପାଇଁ ତାଙ୍କ ନିକଟରେ କୌଣସି ପ୍ରକାର ବରପ୍ରାପ୍ତିର ଆକାଙ୍କ୍ଷା ଥାଏ, ସେତେଦିନ ଯାଏ ଆମ ହୃଦୟରେ ପ୍ରକୃତ ପ୍ରେମ ଜନ୍ମିପାରେ ନାହିଁ । ଯେଉଁମାନେ ଭଗବାନଙ୍କ ନିକଟରୁ କିଛି ପ୍ରାପ୍ତିର ଆଶାରେ ଉପାସନା କରନ୍ତି, ସେମାନେ ସେହି ଅନୁଗ୍ରହ-ପ୍ରାପ୍ତିର ଆଶା ନ ଥିଲେ ତାଙ୍କୁ ଉପାସନା କରିବେ ନାହିଁ । ଭଗବାନ ପ୍ରେମାସ୍ପଦ ବୋଲି ଭକ୍ତ ତାହାଙ୍କୁ ଭଲ ପାଆନ୍ତି; ପ୍ରକୃତ ଭକ୍ତର ଏହି ଦେବବାଞ୍ଛିତ ପ୍ରେମୋଚ୍ଛାସର ଆଉ କୌଣସି ହେତୁ ନାହିଁ ।

କଥିତ ଅଛି, କୌଣସି କାଳରେ ଗୋଟିଏ ବନରେ ଜଣେ ରାଜାଙ୍କ ସହିତ କୌଣସି ସାଧୁଙ୍କର ସାକ୍ଷାତ୍ ହୋଇଥିଲା । ସେ ସାଧୁଙ୍କ ସହିତ କିୟତ୍‌କ୍ଷଣ ଆଳାପ କରି ତାଙ୍କର ପବିତ୍ରତା ଓ ଜ୍ଞାନର ପରିଚୟ ପାଇ ଅତ୍ୟନ୍ତ ସନ୍ତୁଷ୍ଟ ହେଲେ । ପରିଶେଷରେ ତାଙ୍କୁ ଅନୁରୋଧ କଲେ, "ମୋତେ କୃତାର୍ଥ କରିବା ପାଇଁ ମୋଠାରୁ କିଛି ଗ୍ରହଣ କରନ୍ତୁ ।" ସାଧୁ ସେଥିରେ ଅସ୍ୱୀକୃତ ହେଲେ ଓ କହିଲେ, "ବନର ଫଳ ମୋର ପ୍ରଚୁର ଆହାର, ପର୍ବତନିଃସୃତ ପବିତ୍ର ସରିତ୍ ମୋର ପର୍ଯ୍ୟାପ୍ତ ପାନୀୟ, ବୃକ୍ଷତ୍ୱକ୍ ମୋର ପର୍ଯ୍ୟାପ୍ତ ପରିଧେୟ ଏବଂ ଗିରିଗୁହା ମୋର

ଯଥେଷ୍ଟ ବାସସ୍ଥାନ । ମୁଁ କାହିଁକି ତୁମଠାରୁ କିମ୍ବା ଅପରଠାରୁ କିଛି ଦ୍ରବ୍ୟ ଗ୍ରହଣ କରିବି ?'' ରାଜା କହିଲେ, "ପ୍ରଭୁ, ମୋତେ ଅନୁଗୃହୀତ କରିବା ପାଇଁ ମୋ ହସ୍ତରୁ କିଛି ଗ୍ରହଣ କରନ୍ତୁ, ଏବଂ ମୋ ସହିତ ରାଜଧାନୀକୁ ଓ ମୋର ରାଜପ୍ରସାଦକୁ ଚାଲନ୍ତୁ ।'' ଅନେକ ଅନୁରୋଧ ପରେ ଅବଶେଷରେ ସେ ରାଜାଙ୍କ ସହିତ ଯିବାକୁ ସ୍ୱୀକୃତ ହେଲେ ଏବଂ ତାଙ୍କ ପ୍ରାସାଦକୁ ଯାଇଥିଲେ । ଦାନ କରିବାକୁ ଉଦ୍ୟତ ହେବା ପୂର୍ବରୁ ରାଜା ପୁନଃ ପୁନଃ ପ୍ରାର୍ଥନା କରିବାକୁ ଲାଗିଲେ, "ପ୍ରଭୁ, ମୋର ଆହୁରି ସନ୍ତାନସନ୍ତତି ହୁଅନ୍ତୁ, ମୋର ଧନବୃଦ୍ଧି ହେଉ, ମୋର ରାଜ୍ୟ-ବିସ୍ତାର ହେଉ, ମୋର ଶରୀର ନିରୋଗ ହେଉ'' ଇତ୍ୟାଦି । ରାଜା ନିଜ ପ୍ରାର୍ଥନା ଶେଷ କରିବା ପୂର୍ବରୁ ସାଧୁ ନୀରବରେ ଉଠି ଚାଲିଗଲେ । ଏହା ଦେଖି ରାଜା ହତବୁଦ୍ଧି ହୋଇ ତାଙ୍କର ପଶ୍ଚାଦ୍‌ଗମନ କରିବାକୁ ଲାଗିଲେ—ଚିତ୍କାର କରି କହିଲେ, "ପ୍ରଭୁ, ଆପଣ ଚାଲିଗଲେ ? ମୋର ଦାନ ଗ୍ରହଣ କଲେ ନାହିଁ ?'' ସାଧୁ ରାଜାଙ୍କ ଆଡ଼କୁ ଅନାଇଁ କହିଲେ, "ମୁଁ କୌଣସି ଭିକ୍ଷୁକଠାରୁ ଭିକ୍ଷା କରେ ନାହିଁ । ତୁମେ ନିଜେ ଜଣେ ଭିକ୍ଷୁକ, ତୁମେ ପୁଣି ମୋତେ କିପରି ଭିକ୍ଷା ଦେବ ? ମୁଁ ଏତେ ମୂର୍ଖ ନୁହେଁ ଯେ, ତୁମ ପରି ଭିକ୍ଷୁକ ନିକଟରୁ ଭିକ୍ଷା ଗ୍ରହଣ କରିବି । ଯାଅ, ମୋର ଅନୁସରଣ କର ନାହିଁ ।'' ଏଠାରେ ଧର୍ମରାଜ୍ୟର ଭିକ୍ଷୁକ ଏବଂ ଭଗବାନଙ୍କର ପ୍ରକୃତ ଭକ୍ତ-ମାନଙ୍କ ଭିତରେ ବେଶ୍ ପ୍ରଭେଦ ଦେଖାଇ ଦିଆଯାଇଛି । କୌଣସି ବରଲାଭ ପାଇଁ, ଏପରି କି ମୁକ୍ତିଲାଭ ପାଇଁ ଭଗବାନଙ୍କର ଉପାସନା ମଧ୍ୟ ଅଧମ ଉପାସନା । ପ୍ରେମ କୌଣସି ପୁର-ସ୍କାର ଚାହେଁ ନାହିଁ । ପ୍ରେମ କେବଳ ପ୍ରେମ ପାଇଁ ହୋଇଥାଏ । ଭକ୍ତ ଭଗବାନଙ୍କୁ ଭଲ ପାଆନ୍ତି, କାରଣ ସେ ଭଲ ନ ପାଇ ରହିପାରନ୍ତି ନାହିଁ । ତୁମେ ଗୋଟିଏ ସୁନ୍ଦର ପ୍ରାକୃତିକ ଦୃଶ୍ୟ ଦେଖି ତାକୁ ଭଲପାଇଲ, ତୁମେ ସେହି ଦୃଶ୍ୟ ନିକଟରୁ କୌଣସି ପ୍ରକାର ଅନୁଗ୍ରହ ଭିକ୍ଷା କରୁ ନାହଁ । ଆଉ ସେହି ଦୃଶ୍ୟ ମଧ୍ୟ ତୁମ ନିକଟରୁ କୌଣସି ପ୍ରାର୍ଥନା କରେ ନାହିଁ, ତଥାପି ଏହାକୁ ଦର୍ଶନ କରି ତୁମ ମନରେ ଆନନ୍ଦର ଉଦୟ ହୁଏ—ତାହା ତୁମ ମନର ଅଶାନ୍ତି ଦୂର କରି-ଦିଏ, ତାହା ତୁମକୁ ଶାନ୍ତ କରିଦିଏ, ତୁମକୁ କ୍ଷଣକାଳ ପାଇଁ ନଶ୍ୱର ପ୍ରକୃତିର ବାହାରକୁ ନେଇଯାଏ ଏବଂ ଏକ ସ୍ୱର୍ଗୀୟ ଆନନ୍ଦରେ ଶାନ୍ତ କରିଦିଏ । ଏହା ହିଁ ପ୍ରକୃତ ପ୍ରେମର ଭାବ । ପ୍ରେମର ଏହି ଭାବଟି ଉକ୍ତ ତ୍ରିକୋଣାତ୍ମକ ପ୍ରେମର ଏକ କୋଣ । ପ୍ରେମ ପରିବର୍ତ୍ତେ ଅନ୍ୟ କିଛି କାମନା କର ନାହିଁ । ତୁମେ ସେପରି କେବଳ ଦେଇଯାଉଛ । ଭଗବାନଙ୍କୁ ତୁମର ପ୍ରେମ ଦିଅ, କିନ୍ତୁ ତାଙ୍କ ନିକଟରୁ ତତ୍ପରିବର୍ତ୍ତେ ଅନ୍ୟ କିଛି ଆଶା କର ନାହିଁ ।

ପ୍ରେମରୂପକ ତ୍ରିକୋଣର ଦ୍ୱିତୀୟ କୋଣ ଏହି ଯେ, ପ୍ରେମରେ କୌଣସି ପ୍ରକାର ଭୟ ନାହିଁ । ଯେଉଁମାନେ ଭଗବାନଙ୍କୁ ଭୟରେ ଭଲ ପାଆନ୍ତି, ସେମାନେ ମନୁଷ୍ୟାଧମ, ସେମାନ-ଙ୍କର ମନୁଷ୍ୟତ୍ୱର ଏପର୍ଯ୍ୟନ୍ତ ସ୍ଫୂର୍ତ୍ତି ହୋଇ ନାହିଁ । ସେମାନେ ଶାସ୍ତି ଭୟରେ ଭଗବାନଙ୍କର ଉପାସନା କରନ୍ତି । ସେମାନେ ମନେକରନ୍ତି ଯେ, ଭଗବାନ ଜଣେ ମହାନ୍ ପୁରୁଷ, ତାଙ୍କର ଗୋଟିଏ ହସ୍ତରେ ଦଣ୍ଡ ଆଉ ଗୋଟିଏ ହସ୍ତରେ ଚାବୁକ୍; ତାଙ୍କର ଆଜ୍ଞା ପାଳନ ନ କଲେ ସେମାନେ ଦଣ୍ଡିତ ହେବେ ! ଦଣ୍ଡଭୟରେ ଭଗବାନଙ୍କର ଉପାସନା ଅତି ନିମ୍ନଶ୍ରେଣୀର ଉପା-ସନା । ଏପରି ଉପାସନାକୁ ଯଦି ଉପାସନା କୁହାଯାଏ, ତେବେ ଏହା ପ୍ରେମର ଅତି ଅପରି-

ଣତ ଅବସ୍ଥାମାତ୍ର ବୋଲି କହିବାକୁ ହେବ । ଯେତେଦିନଯାଏ ହୃଦୟରେ କୌଣସି ଭୟ ଥାଏ ସେତେଦିନଯାଏ ପ୍ରେମ-ବିକାଶର ସମ୍ଭାବନା କାହିଁ ? ପ୍ରେମ ସ୍ୱଭାବତଃ ସମସ୍ତ ଭୟକୁ ନାଶକରିଦିଏ । ମନରେ ଭାବିଦେଖ, ଜଣେ ତରୁଣୀ ଜନନୀ ପଥରେ ଯାଉଛନ୍ତି, ଗୋଟିଏ କୁକୁର ଭୁକିଲେ ସେ ଭୀତା ହୋଇ ସନ୍ନିହିତ ଗୃହ ମଧ୍ୟରେ ପ୍ରବେଶ କରନ୍ତି । କିନ୍ତୁ ଯଦି ତାଙ୍କର ଶିଶୁ ତାଙ୍କ ସଙ୍ଗରେ ଥାଏ ଏବଂ ଯଦି ଗୋଟିଏ ସିଂହ ଶିଶୁ ଉପରକୁ ଡେଇଁପଡ଼େ, ସେତେବେଳେ ସେହି ଜନନୀ କେଉଁଠାରେ ରହିବେ ? ଅବଶ୍ୟ ସେ ତତ୍‌କ୍ଷଣାତ୍ ସିଂହ ମୁଖରେ ପ୍ରବିଷ୍ଟ ହେବେ । ଶିଶୁଟିକୁ ବଞ୍ଚାଇବା ଲାଗି ଅବଶ୍ୟ ସେ ଆପ୍ରାଣ ଚେଷ୍ଟା କରିବେ । ପ୍ରେମ ବାସ୍ତବିକ ସମୁଦାୟ ଭୟକୁ ଦୂର କରିଦିଏ । କାଳେ ଜଗତର ସମ୍ପର୍କ ନଷ୍ଟ ହୋଇଯିବ, ଏହିପରି ଗୋଟିଏ ସ୍ୱାର୍ଥପର ଭାବରୁ ଭୟ ଜନ୍ମିଥାଏ । ମୁଁ ନିଜକୁ ଯେତେ କ୍ଷୁଦ୍ର ଓ ସ୍ୱାର୍ଥପର କରି ପକାଇବି, ମୋର ଭୟ ମଧ୍ୟ ସେହି ପରିମାଣରେ ବୃଦ୍ଧି ପାଇବ । ଯଦି କେହି ମନେକରେ ଯେ, ସେ କିଛି ନୁହେଁ, ତା'ର ନିଶ୍ଚୟ ଭୟ ଆସିବ ! ମାତ୍ର ତୁମେ ନିଜକୁ କ୍ଷୁଦ୍ର ବୋଲି ଯେତେ କମ ଭାବିବ, ସେତେ ତୁମର ଭୟ କମିଯିବ । ଯେତେଦିନ ଯାଏ ତୁମଠାରେ ଏକବିନ୍ଦୁ ଭୟ ଅଛି, ସେତେଦିନ ତୁମଠାରେ ପ୍ରେମ ରହିପାରେ ନାହିଁ । ପ୍ରେମ ଓ ଭୟ ଦୁଇଟି ବିପରୀତ-ଭାବାପନ୍ନ । ଯେଉଁମାନେ ଭଗବାନଙ୍କୁ ଭଲପାଆନ୍ତି, ସେମାନେ କଦାପି ତାଙ୍କୁ ଭୟ କରିବେ ନାହିଁ । ପ୍ରକୃତ ଭଗବତ୍‌ପ୍ରେମିକ 'ଭଗବାନଙ୍କ ନାମ ବୃଥା ଉଚ୍ଚାରଣ କର ନାହିଁ' ଏହି ଆଦେଶ ଶୁଣି ହାସ୍ୟ କରନ୍ତି । ପ୍ରେମଧର୍ମରେ ଭଗବନ୍ନିନ୍ଦା ପୁଣି କାହିଁ ? ଯେପରି ହେଉ ନା କାହିଁକି, ତୁମେ ପ୍ରଭୁଙ୍କର ନାମ ଯେତେ ନେଇପାର, ସେତେ ହିଁ ମଙ୍ଗଳ । ତୁମେ ତାଙ୍କୁ ଭଲ ପାଅ, ତେଣୁ ତୁମେ ତାଙ୍କର ନାମ ନେଉଛ ।

ପ୍ରେମରେ ପ୍ରତିଦ୍ୱନ୍ଦୀର ସ୍ଥାନ ନାହିଁ । ପ୍ରେମରୂପକ ତ୍ରିକୋଣର ତୃତୀୟ କୋଣଟି ଏହି ଯେ, ପ୍ରେମିକର ଅନ୍ୟ ଦ୍ୱିତୀୟ ଭଲପାଇବାର ପାତ୍ର ରହିବ ନାହିଁ, କାରଣ ତାହା ହିଁ ପ୍ରେମିକର ସର୍ବୋଚ୍ଚ ଆଦର୍ଶ ହେବ । ଯେତେଦିନ ପର୍ଯ୍ୟନ୍ତ ଆମ ଭଲପାଇବାର ପାତ୍ର ଆମର ସର୍ବୋଚ୍ଚ ଆଦର୍ଶ ହୋଇ ନାହିଁ, ସେତେଦିନ ଯାଏ ପ୍ରକୃତ ପ୍ରେମ ଆସିପାରିବ ନାହିଁ । ହୋଇପାରେ ଅନେକ ସ୍ଥଳରେ ମନୁଷ୍ୟର ପ୍ରେମ ମନ୍ଦ ଢଙ୍ଗରେ ପ୍ରଯୁକ୍ତ ହୁଏ; ଅପାତ୍ରରେ ଅର୍ପିତ ହୁଏ । କିନ୍ତୁ ପ୍ରେମିକ ଲୋକ ପକ୍ଷରେ ତାହାର ପ୍ରିୟ ବସ୍ତୁଟି ତାହାର ସର୍ବୋଚ୍ଚ ଆଦର୍ଶ । କୌଣସି ବ୍ୟକ୍ତି ଅତି କୁତ୍ସିତ ଲୋକ ଭିତରେ ନିଜର ଉଚ୍ଚ ଆଦର୍ଶ ଦେଖିପାରେ, ପୁଣି ଅନ୍ୟ ବ୍ୟକ୍ତି ଖୁବ ଭଲ ଲୋକ ଭିତରେ ତାହା ଦେଖିବାକୁ ପାଏ; କିନ୍ତୁ ସବୁ ସ୍ଥଳରେ କେବଳ ଆଦର୍ଶଟିକୁ ପ୍ରକୃତ ଓ ପ୍ରଗାଢ଼ ରୂପେ ଭଲପାଇବା ହୋଇଥାଏ । ପ୍ରତ୍ୟେକ ବ୍ୟକ୍ତିର ଉଚ୍ଚତମ ଆଦର୍ଶକୁ ଈଶ୍ୱର ବୋଲି ଧରାଯାଏ । ଅଜ୍ଞାନ ହୁଅନ୍ତୁ, ଜ୍ଞାନୀ ହୁଅନ୍ତୁ, ସାଧୁ ହୁଅନ୍ତୁ, ପାପୀ ହୁଅନ୍ତୁ, ନର ବା ନାରୀ, ଶିକ୍ଷିତ ବା ଅଶିକ୍ଷିତ ସମସ୍ତ ଲୋକଙ୍କର ଉଚ୍ଚତମ ଆଦର୍ଶ ଈଶ୍ୱର । ସମୁଦାୟ ସୌନ୍ଦର୍ଯ୍ୟ, ମହତ୍ତ୍ୱ ଓ ଶକ୍ତିର ଉଚ୍ଚତମ ଆଦର୍ଶସମୂହର ସମଷ୍ଟି ବିଧାନ କଲେ ପ୍ରେମମୟ ଓ ପ୍ରେମାସ୍ପଦ ଭଗବାନଙ୍କର ପୂର୍ଣ୍ଣତମ ଭାବ ମିଳିପାରିବ । ଏହି ଆଦର୍ଶଗୁଡ଼ିକ ପ୍ରତ୍ୟେକ ବ୍ୟକ୍ତିର ମନରେ କୌଣସି ନା କୌଣସି ପ୍ରକାରେ ସ୍ୱଭାବତଃ ବିଦ୍ୟମାନ । ସେଗୁଡ଼ିକ

ଯେପରି ଆମ ମନର ଅଙ୍ଗ ବା ଅଂଶବିଶେଷ । ମାନବ-ପ୍ରକୃତିରେ ଯେଉଁସବୁ ନିଷ୍ଠାର ବିକାଶ ଦେଖିବାକୁ ମିଳେ, ସେସବୁ ବ୍ୟାବହାରିକ ଜୀବନରେ ଆଦର୍ଶଗୁଡ଼ିକୁ ପରିଣତ କରିବାର ଚେଷ୍ଟାସ୍ୱରୂପ । ଆମେ ଆମର ଚତୁର୍ଦ୍ଦିଗରେ ସମାଜରେ ଯେଉଁ ନାନାବିଧ ବ୍ୟାପାର ଓ ଆନ୍ଦୋଳନ ଦେଖିପାରୁଁ, ତାହା ଭିନ୍ନ ଭିନ୍ନ ଆତ୍ମାର ବିଭିନ୍ନ ଆଦର୍ଶକୁ କାର୍ଯ୍ୟରେ ପରିଣତ କରିବାର ଚେଷ୍ଟାର ଫଳମାତ୍ର । ଯାହା ଭିତରେ ଅଛି, ତାହା ହିଁ ବାହାରକୁ ଆସିବାକୁ ଚେଷ୍ଟା କରୁଛି । ମାନବ-ହୃଦୟରେ ଆଦର୍ଶର ଏହି ଚିରପ୍ରବଳ ପ୍ରଭାବ ହିଁ ସେହି ଏକମାତ୍ର ସର୍ବଦାସକ୍ରିୟା ପ୍ରେରଣାଶକ୍ତି, ଯାହାର କ୍ରିୟା ମାନବଜାତି ମଧ୍ୟରେ ନିୟତ ବର୍ତ୍ତମାନ । ହୋଇପାରେ ଶତ ଜନ୍ମ, ସହସ୍ର ସହସ୍ର ବର୍ଷ ଧରି ଚେଷ୍ଟା ପରେ ମନୁଷ୍ୟ ବୁଝିପାରେ ଯେ, ଆମମାନଙ୍କର ଅଭ୍ୟନ୍ତରସ୍ଥ ଆଦର୍ଶ ବାହ୍ୟ ଅବସ୍ଥା ସହିତ ସମ୍ପୂର୍ଣ୍ଣ ମିଳିପାରେ ନାହିଁ । ଏତିକି ବୁଝିପାରିଲେ ସେ ବହିର୍ଜଗତକୁ ନିଜ ଆଦର୍ଶ ଅନୁସାରେ ଗଠନ କରିବାର ଚେଷ୍ଟା ପରିତ୍ୟାଗ କରି ଆଦର୍ଶକୁ ସେହି ଉଚ୍ଚତମ ପ୍ରେମର ଭୂମିରୁ ଆଦର୍ଶରୂପେ ଉପାସନା କରେ । ସମସ୍ତ ନିମ୍ନ ଆଦର୍ଶଗୁଡ଼ିକ ଏହି ପୂର୍ଣ୍ଣ ଆଦର୍ଶର ଅନ୍ତର୍ଗତ । କଥାରେ କହନ୍ତି ଏବଂ ସମସ୍ତେ ଏ କଥାର ସତ୍ୟତା ସ୍ୱୀକାର କରନ୍ତି ଯେ,

'ଯାହା ସଙ୍ଗେ ଯାର ମଜ୍ଜେ ମନ,
କିବା ହାଡ଼ି କିବା ଡମ ।'

ବାହାରେ ଲୋକ କହିପାରନ୍ତି, ପ୍ରେମ ଅପାତ୍ରରେ ପ୍ରଦତ୍ତ ହେଉଛି; କିନ୍ତୁ ଯେ ପ୍ରେମିକ ସେ ହାଡ଼ି ବା ଡମର ପ୍ରଭେଦ ଦେଖନ୍ତି ନାହିଁ; ସେ ତାହାଙ୍କୁ ରାଜରାଣୀ ପରି ଦେଖିଥାଆନ୍ତି । ହାଡ଼ି ଡମ ହେଉ, କିମ୍ବା ରାଜରାଣୀ ହେଉ, ପ୍ରକୃତ ପକ୍ଷରେ ଆମ ପ୍ରେମର ଆଧାରଗୁଡ଼ିକ ଯେପରି କେତେଗୁଡ଼ିଏ କେନ୍ଦ୍ରବିଶେଷ, ଯାହାର ଚତୁର୍ଦ୍ଦିଗରେ ଆଦର୍ଶଗୁଡ଼ିକ ସତେ ଯେପରି ଘନୀଭୂତ ହୋଇଥାଏ । ମନୁଷ୍ୟ ସାଧାରଣତଃ କାହାର ଉପାସନା କରେ ? ଅବଶ୍ୟ ଏହା ଉଚ୍ଚତମ ଭକ୍ତ ଓ ପ୍ରେମିକର ସର୍ବାବଗାହୀ ପୂର୍ଣ୍ଣ ଆଦର୍ଶ ନୁହେଁ । ନରନାରୀଗଣ ସାଧାରଣତଃ ନିଜ ହୃଦୟାଭ୍ୟନ୍ତରସ୍ଥ ଆଦର୍ଶକୁ ଉପାସନା କରନ୍ତି । ପ୍ରତ୍ୟେକେ ନିଜ ନିଜ ଆଦର୍ଶ ବାହାରକୁ ଆନୟନ କରି ତାହାର ସମ୍ମୁଖରେ ଭୂମିଷ୍ଠ ହୋଇ ପ୍ରଣାମ କରନ୍ତି । ଏହି କାରଣରୁ ଆମେ ଦେଖିପାରୁ ଯେ, ଯେଉଁମାନେ ନିଜେ ନିଜେ ନିଷ୍ଠୁର ଓ ରକ୍ତପିପାସୁ ସେମାନେ କେବଳ ରକ୍ତପିପାସୁ ଈଶ୍ୱରଙ୍କର ଉପାସନା କରନ୍ତି; କାରଣ ସେମାନେ କେବଳ ନିଜର ଉଚ୍ଚତମ ଆଦର୍ଶକୁ ଭଲ ପାଆନ୍ତି । ଏହି ହେତୁରୁ ସାଧୁ ବ୍ୟକ୍ତିର ଈଶ୍ୱର-ଆଦର୍ଶ ଅତି ଉଚ୍ଚ ଏବଂ ସେମାନଙ୍କର ଆଦର୍ଶ ଅପର ବ୍ୟକ୍ତିର ଆଦର୍ଶଠାରୁ ଅତ୍ୟନ୍ତ ପୃଥକ୍ ।

# ପ୍ରେମର ଭଗବାନଙ୍କ ପ୍ରମାଣ ସେ ନିଜେ

ଯେଉଁ ପ୍ରେମିକ ବ୍ୟକ୍ତି ସ୍ୱାର୍ଥପରତା ଓ ଫଳାକାଙ୍କ୍ଷାଶୂନ୍ୟ ହୋଇଛନ୍ତି ଏବଂ ଯାହାଙ୍କର କୌଣସି ଭୟ ନାହିଁ, ତାଙ୍କର ଆଦର୍ଶ କଅଣ ? ମହାମହିମମୟ ଈଶ୍ୱରଙ୍କୁ ମଧ୍ୟ ସେ କହିବେ—"ମୁଁ ତୁମକୁ ମୋର ସର୍ବସ୍ୱ ଦାନ କରିଛି, ତୁମ ନିକଟରୁ ମୁଁ କିଛି ଗ୍ରହିବ ନାହିଁ । ବାସ୍ତବିକ ଏପରି କିଛି ନାହିଁ, ଯାହାକୁ ମୁଁ 'ମୋର' ବୋଲି କହିପାରେ ।" ଯେତେବେଳେ ସାଧକ ଏହିପରି ଦୃଢ଼ବିଶ୍ୱାସ ଲାଭ କରେ, ତାହାର ଆଦର୍ଶ ପ୍ରେମଜନିତ ପୂର୍ଣ୍ଣ ନିର୍ଭୀକତାର ଆଦର୍ଶରେ ପରିଣତ ହୁଏ । ଏହିପରି ପୁରୁଷର ସର୍ବୋଚ୍ଚ ଆଦର୍ଶରେ କୌଣସି ପ୍ରକାର ବିଶେଷତ୍ୱରୂପକ ସଙ୍କୀର୍ଣ୍ଣତା ନ ଥାଏ । ଏହା ଅନନ୍ତ ଓ ଅସୀମ ପ୍ରେମ, ଏହା ହିଁ ପ୍ରେମସ୍ୱରୂପ । ପ୍ରେମଧର୍ମର ଏହି ମହାନ୍ ଆଦର୍ଶକୁ ଯେତେବେଳେ କୌଣସି ପ୍ରକାର ପ୍ରତୀକ ବା ପ୍ରତିମାର ସହାୟତା ନ ନେଇ ଉପାସନା କରାଯାଏ । ଏହା ହିଁ ଉତ୍କୃଷ୍ଟ ପରାଭକ୍ତି—ଗୋଟିଏ ସାର୍ବଭୌମ ଆଦର୍ଶକୁ ଆଦର୍ଶ ବୋଲି ଉପାସନା କରିବା । ଅନ୍ୟ ସକଳ ପ୍ରକାର ଭକ୍ତି କେବଳ ଏହି ଭକ୍ତିଲାଭର ସୋପାନମାତ୍ର । ଏହି ପ୍ରେମରୂପକ ଧର୍ମକୁ ଅନୁସରଣ କରି କରି ଆମେ ଯେଉଁ ସମସ୍ତ ସିଦ୍ଧି ବା ଅସିଦ୍ଧି ଲାଭ କରୁ, ସେସମସ୍ତ ସେହି ଏକମାତ୍ର ଆଦର୍ଶଲାଭର ପଥରେ ଘଟିଥାଏ, ଅର୍ଥାତ୍ ପ୍ରକାରାନ୍ତରେ ତାହାର ସହାୟତା କରେ । ଗୋଟିକ ପରେ ଗୋଟିଏ ବସ୍ତୁ ଗୃହୀତ ହୁଏ ଏବଂ ଆମମାନଙ୍କର ଅଭ୍ୟନ୍ତରବର୍ତ୍ତୀ ଆଦର୍ଶ ଏହା ଉପରେ ଏକ ଏକ କରି ପ୍ରକ୍ଷିପ୍ତ ହୋଇଥାଏ—କ୍ରମଶଃ ଏହି ସମୁଦାୟ ବାହ୍ୟବସ୍ତୁ କ୍ରମବିସ୍ତାରଶୀଳ ସେହି ଆଭ୍ୟନ୍ତରୀଣ ଆଦର୍ଶର ପ୍ରକାଶକଙ୍କ ପକ୍ଷରେ ଅନୁପଯୁକ୍ତ ବୋଧହୁଏ ଏବଂ ସ୍ୱଭାବତଃ ଗୋଟିକ ପରେ ଗୋଟିଏ ପରିତ୍ୟକ୍ତ ହୁଏ । ଅବଶେଷରେ ସେହି ସାଧକ ବୁଝିପାରନ୍ତି ଯେ, ବାହ୍ୟବସ୍ତୁରେ ଆଦର୍ଶକୁ ଉପଲବ୍ଧି କରିବାର ଚେଷ୍ଟା ବୃଥା । ଆଦର୍ଶର ସହିତ ତୁଳନା କଲେ ସକଳ ବାହ୍ୟବସ୍ତୁ ଅତି ତୁଚ୍ଛ । କାଳକ୍ରମେ ସେ ସେହି ସର୍ବୋଚ୍ଚ ଓ ସମ୍ପୂର୍ଣ୍ଣ ନିର୍ବିଶେଷଭାବାପନ୍ନ ସୂକ୍ଷ୍ମ ଆଦର୍ଶକୁ ସମ୍ପୂର୍ଣ୍ଣରୂପେ ଅନ୍ତରରେ ଜୀବନ୍ତ ଓ ସତ୍ୟ ଭାବରେ ଅନୁଭବ କରିବାର ସାମର୍ଥ୍ୟ ଲାଭ କରନ୍ତି । ଯେତେବେଳେ ଭକ୍ତ ଏହି ଅବସ୍ଥାରେ ଉପନୀତ ହୁଅନ୍ତି, ଯେତେବେଳେ "ଭଗବାନଙ୍କୁ ପ୍ରମାଣ କରାଯାଏ କି ନାହିଁ, ଭଗବାନ ସର୍ବଜ୍ଞ ଓ ସର୍ବଶକ୍ତିମାନ କି ନା"—ଏ ସକଳ ପ୍ରଶ୍ନ ତାଙ୍କ ମନରେ ଉଦିତ ହୁଏ ନାହିଁ । ତାଙ୍କ ନିକଟରେ ଭଗବାନ ପ୍ରେମମୟ, ସେ ପ୍ରେମର ସର୍ବୋଚ୍ଚ ଆଦର୍ଶ ଏବଂ ଏହି ଭାବ ହିଁ ତାଙ୍କ ପକ୍ଷରେ ଯଥେଷ୍ଟ । ସେ ପ୍ରେମସ୍ୱରୂପ ବୋଲି ସ୍ୱତଃସିଦ୍ଧ ଅନ୍ୟପ୍ରମାଣ-ନିରପେକ୍ଷ । ପ୍ରେମିକ ନିକଟରେ ପ୍ରେମମୟଙ୍କର ଅସ୍ତିତ୍ୱ ପ୍ରମାଣର କିଛିମାତ୍ର ଆବଶ୍ୟକତା ନାହିଁ । ଅନ୍ୟାନ୍ୟ ଧର୍ମର ବିଗ୍ରହକସ୍ୱରୂପ ଭଗବାନଙ୍କୁ ପ୍ରମାଣ କରିବାରେ ଅନେକ ପ୍ରମାଣ ଆବଶ୍ୟକ ହୁଏ ସତ୍ୟ; କିନ୍ତୁ ଭକ୍ତ ଭଗବାନଙ୍କ ସମ୍ବନ୍ଧରେ ଏପରି ଧାରଣା କରେ ନାହିଁ ବା କରିପାରେ ନାହିଁ । ତାଙ୍କ ନିକଟରେ ଭଗବାନ କେବଳ ପ୍ରେମସ୍ୱରୂପରେ ବିଦ୍ୟମାନ । ସମସ୍ତଙ୍କର ଅନ୍ତର୍ଯାମୀ ରୂପେ ତାହାଙ୍କୁ ଅନୁଭବ କରି ଭକ୍ତ ଆନନ୍ଦରେ କହିଉଠନ୍ତି, "କେହି ସ୍ୱାମୀଙ୍କୁ ସ୍ୱାମୀ ଲାଗି ଭଲ ପାଏ ନାହିଁ, ସ୍ୱାମୀର ଅନ୍ତର୍ବର୍ତ୍ତୀ ଆତ୍ମା ଲାଗି

ଲୋକେ ସ୍ୱାମୀଙ୍କୁ ଭଲ ପାଇଥାଆନ୍ତି । କେହି ପତ୍ନୀକୁ ପତ୍ନୀ ଲାଗି ଭଲ ପାଏ ନାହିଁ, ପତ୍ନୀର ଅନ୍ତର୍ବର୍ତ୍ତୀ ଆତ୍ମା ଲାଗି ଲୋକେ ପତ୍ନୀକୁ ଭଲ ପାଇଥାଆନ୍ତି । କେହି କେହି କହନ୍ତି, "ମନୁଷ୍ୟର ସର୍ବପ୍ରକାର କର୍ମର ମୂଳ ସ୍ୱାର୍ଥପରତା ।" ଆମ ବିବେଚନାରେ ତାହା ମଧ୍ୟ ପ୍ରେମ, ତେବେ ବିଶିଷ୍ଟତା ହେତୁ ନିମ୍ନଭାବାପନ୍ନ ହୋଇଯାଇଛି ମାତ୍ର । ଯେତେବେଳେ ମୁଁ ନିଜକୁ ଜଗତର ସକଳ ବସ୍ତୁରେ ଅବସ୍ଥିତ ବୋଲି ଭାବେ, ସେତେବେଳେ ନିଶ୍ଚୟ ମୋଠାରେ ସ୍ୱାର୍ଥପରତା ରହିପାରେ ନାହିଁ । କିନ୍ତୁ ଯେତେବେଳେ ମୁଁ ଭ୍ରମବଶତଃ ନିଜକୁ କ୍ଷୁଦ୍ର ମନେ କରେ, ସେତେବେଳେ ମୋର ପ୍ରେମ ସଙ୍କୀର୍ଣ୍ଣ ଓ ବିଶେଷ ଭାବ ଧାରଣ କରେ । ପ୍ରେମବିଷୟକୁ ସଙ୍କୀର୍ଣ୍ଣ ଓ ସୀମାବଦ୍ଧ କରିବା ଆମମାନଙ୍କର ଭ୍ରମ । ଏହି ଜଗତର ସକଳ ବସ୍ତୁ ଭଗବତ୍-ପ୍ରସୂତ, ସୁତରାଂ ପ୍ରେମର ଯୋଗ୍ୟ; କିନ୍ତୁ ଏହା ସ୍ମରଣ ରଖିବା କର୍ତ୍ତବ୍ୟ ଯେ, ସମଷ୍ଟିକୁ ଭଲ ପାଇଲେ ଅଂଶଗୁଡ଼ିକ ମଧ୍ୟ ଭଲ ପାଇବା ହେଲା । ଏହି ସମଷ୍ଟି ହିଁ ଭକ୍ତର ଭଗବାନ । ଆଉ ଅନ୍ୟାନ୍ୟ ପ୍ରକାର ଈଶ୍ୱର—ସ୍ୱର୍ଗସ୍ଥ ପିତା, ଶାସ୍ତା, ସ୍ରଷ୍ଟା, ନାନାବିଧ ମତାମତ, ଶାସ୍ତ୍ର ଆଦି ଭକ୍ତଙ୍କ ନିକଟରେ ନିରର୍ଥକ; ସେମାନଙ୍କ ନିକଟରେ ଏହାର କୌଣସି ପ୍ରୟୋଜନୀୟତା ନାହିଁ, କାରଣ ସେମାନେ ପରାଭକ୍ତି ପ୍ରଭାବରେ ସମ୍ପୂର୍ଣ୍ଣରୂପେ ଏହି ସକଳର ଉପରକୁ ଚାଲିଯାଇଛନ୍ତି । ଯେତେବେଳେ ଅନ୍ତର ଶୁଦ୍ଧ ପବିତ୍ର ଏବଂ ଐଶ୍ୱରିକ ପ୍ରେମାମୃତରେ ପୂର୍ଣ୍ଣ ହୁଏ, ସେତେବେଳେ ଅନ୍ୟ ସର୍ବପ୍ରକାର ଈଶ୍ୱରବିଷୟକ ଧାରଣା ବାଲକୋଚିତ ଓ ଅସମ୍ପୂର୍ଣ୍ଣ ବା ଅନୁପଯୁକ୍ତ ବୋଲି ପରିତ୍ୟକ୍ତ ହୁଏ । ବାସ୍ତବିକ ପରାଭକ୍ତିର ପ୍ରଭାବ ଏହିପରି । ସେତେବେଳେ ସେହି ଉଚ୍ଚାବସ୍ଥାପନ୍ନ ଭକ୍ତ ତାହାର ଭଗବାନଙ୍କୁ ମନ୍ଦିର ବା ଗୀର୍ଜାରେ ଅନ୍ୱେଷଣ କରିବାକୁ ଯାଏ ନାହିଁ; ସେ ଏପରି ସ୍ଥାନ ଦେଖିବାକୁ ପାଏ ନାହିଁ— ଯେଉଁଠାରେ ସେ ନାହାନ୍ତି । ସେ ତାଙ୍କୁ ମନ୍ଦିରର ଭିତରେ ବାହାରେ ସର୍ବତ୍ର ଦେଖିବାକୁ ପାଏ । ସେ ତାହାଙ୍କୁ ସାଧୁର ସାଧୁତାରେ ଓ ପାପୀର ପାପରେ ଦେଖିବାକୁ ପାଏ । ଏହାର କାରଣ, ସେ ପୂର୍ବରୁ ତାଙ୍କୁ ନିତ୍ୟ ଦୀପ୍ତିମାନ ଓ ନିତ୍ୟବର୍ତ୍ତିମାନ ଏକ ସର୍ବଶକ୍ତିମାନ, ଅନିର୍ବାଣ ପ୍ରେମଜ୍ୟୋତିରୂପେ ନିଜର ହୃଦୟରେ ସ୍ୱମହିମାରେ ବିରାଜମାନ ଥିବାର ଦେଖିପାରିଛି ।

# ମାନବୀୟ ଭାଷାରେ ଭଗବତ୍‌-ପ୍ରେମର ବର୍ଣ୍ଣନା

ମାନବୀୟ ଭାଷାରେ ପ୍ରେମର ଏହି ପରମୋଚ୍ଚ ପୂର୍ଣ୍ଣ ଆଦର୍ଶର ପରିଚୟ ପ୍ରଦାନ କରିବା ଅସମ୍ଭବ । ଉଚ୍ଚତମ ମାନବ-କଳ୍ପନା ମଧ୍ୟ ତାହାର ଅନନ୍ତ ପୂର୍ଣ୍ଣତା ଓ ସୌନ୍ଦର୍ଯ୍ୟ ଅନୁଭବ କରିବାକୁ ଅକ୍ଷମ । ତଥାପି ସର୍ବଦେଶର ପ୍ରେମଧର୍ମର ନିମ୍ନ ଓ ଉଚ୍ଚ ଉଭୟ ଅବସ୍ଥାର ଉପାସକମାନଙ୍କୁ ସେମାନଙ୍କ ପ୍ରେମର ଆଦର୍ଶ ଅନୁଭବ କରିବାରେ ଓ ଏହାର ଲକ୍ଷଣ ପ୍ରକାଶ କରିବାରେ ଚିରକାଳ ଏହି ଅନୁପଯୋଗୀ ମାନବୀୟ ଭାଷା ବ୍ୟବହାର କରିବାକୁ ହୋଇଛି । କେବଳ ଏତିକି ନୁହେଁ, ଭିନ୍ନଭିନ୍ନ ପ୍ରକାରର ମାନବୀୟ ପ୍ରେମ ଏହି ଅବ୍ୟକ୍ତ-ଭଗବତ୍‌-ପ୍ରେମର ପ୍ରତୀକରୂପେ ଗୃହୀତ ହୋଇଛି । ମାନବ ଐଶ୍ୱରିକ ବିଷୟସମୂହ ନିଜର ମାନବୀୟ ଭାବରେ ଚିନ୍ତା ଓ ପ୍ରକାଶ କରିପାରେ, ଆମ ନିକଟରେ ସେହି ପୂର୍ଣ୍ଣ କେବଳମାତ୍ର ଆମମାନଙ୍କର ଆପେକ୍ଷିକ ଭାଷାରେ ପ୍ରକାଶିତ ହୋଇପାରେ । ସମୁଦାୟ ଜଗତ୍‌ ଆମ ନିକଟରେ ଆଉ କଅଣ ? ଅନନ୍ତ ଯେପରି ସାନ୍ତ ଭାଷାରେ ଲିଖିତ ମାତ୍ର; ଏହି କାରଣରୁ ଭକ୍ତଗଣ ଭଗବାନ ଓ ତାଙ୍କ ପ୍ରେମର ଉପାସନା ବିଷୟରେ ଲୌକିକ ପ୍ରେମର ଲୌକିକ ଶବ୍ଦସମୂହ ବ୍ୟବହାର କରିଥାଆନ୍ତି ।

ପରାଭକ୍ତିର କେତେଜଣ ବ୍ୟାଖ୍ୟାତା ଏହି ପରାଭକ୍ତି ନିମ୍ନଲିଖିତ ବିଭିନ୍ନ ଉପାୟରେ ବୁଝିବାକୁ ଓ ପ୍ରତ୍ୟକ୍ଷ ଅନୁଭବ କରିବାକୁ ଚେଷ୍ଟା କରିଛନ୍ତି । ଏ ମଧ୍ୟରେ ସର୍ବନିମ୍ନ ଅବସ୍ଥାକୁ 'ଶାନ୍ତ ଭକ୍ତି' କୁହାଯାଏ । ଯେତେବେଳେ ମନୁଷ୍ୟ-ହୃଦୟରେ ପ୍ରେମାଗ୍ନି ପ୍ରଜ୍ୱଳିତ ହୋଇ ନାହିଁ, ଯେତେବେଳେ ତାହାର ବୁଦ୍ଧି ପ୍ରେମର ଉନ୍ମତ୍ତତାରେ ଆତ୍ମହରା ହୋଇ ନାହିଁ, ଏହି ବାହ୍ୟ କ୍ରିୟାକଳାପ ବାହ୍ୟ ଭକ୍ତିଠାରୁ ଟିକିଏ ଉନ୍ନତ ସାଧାରଣ ଧରଣର ପ୍ରେମର ଉଦୟ ହୋଇଛି ମାତ୍ର, ଯେତେବେଳେ ତାହା ତୀବ୍ର ବେଗସମ୍ପନ୍ନ ପ୍ରେମର ଉନ୍ମତ୍ତତା-ଲକ୍ଷଣଦ୍ୱାରା ଲକ୍ଷିତ ହୋଇନାହିଁ, ସେତେବେଳେ ଏହିପରି ଭାବରେ ଭଗବାନଙ୍କ ଉପାସନାକୁ ଶାନ୍ତ ଭକ୍ତି ବା ଶାନ୍ତ ପ୍ରେମ କୁହାଯାଏ । ଦେଖିବାକୁ ମିଳେ, ଜଗତରେ କେତେଗୁଡ଼ିଏ ଲୋକ ଅଛନ୍ତି, ସେମାନେ ଧୀରେ ଧୀରେ ସାଧନ-ପଥରେ ଅଗ୍ରସର ହେବାକୁ ଭଲପାଆନ୍ତି । ଆଉ କେତେଗୁଡ଼ିଏ ଲୋକ ଅଛନ୍ତି, ସେମାନେ ଝଡ଼ପରି ବେଗରେ ଚାଲିଯାଆନ୍ତି । ଶାନ୍ତଭକ୍ତ ଧୀର, ଶାନ୍ତ, ନମ୍ର । ତଦପେକ୍ଷା ଆଉ ଟିକିଏ ଉଚ୍ଚତର ଅବସ୍ଥା ଦାସ୍ୟ । ଏ ଅବସ୍ଥାରେ ମନୁଷ୍ୟ ଆପଣାକୁ ଈଶ୍ୱରଙ୍କର ଦାସ ବୋଲି ଭାବେ । ବିଶ୍ୱାସୀ ଭୃତ୍ୟର ପ୍ରଭୁଭକ୍ତି ହିଁ ତାହାର ଆଦର୍ଶ ।

ତା'ପରେ ସଖ୍ୟ-ପ୍ରେମ—ଏହି ସଖ୍ୟ-ପ୍ରେମର ସାଧକ ଭଗବାନଙ୍କୁ ସମ୍ବୋଧନ କରି କହିଥାଏ, "ତୁମେ ମୋର ପ୍ରିୟବନ୍ଧୁ ।"[୧] ଯେପରି ମନୁଷ୍ୟ ବନ୍ଧୁ ନିକଟରେ ଆପଣାର ହୃଦୟ ଖୋଲିଦିଏ, ଜାଣେ ଯେ ବନ୍ଧୁ ତାହାର ଦୋଷ ଲାଗି ତାକୁ କଦାପି ତିରସ୍କାର ନ କରି ସବୁବେଳେ ତା'ର ହିତ ହେବ, ସେଥିପାଇଁ ଚେଷ୍ଟା କରିବ—ଦୁଇ ବନ୍ଧୁଙ୍କ ମଧ୍ୟରେ ଯେପରି ଗୋଟିଏ ସମାନ ସମାନ ଭାବ ଥାଏ, ସେହିପରି । ସଖ୍ୟ-ପ୍ରେମର ସାଧକ ଓ ତାହାର ସଖାରୂପ ଭଗବାନଙ୍କ ମଧ୍ୟରେ ଯେପରି ଏକପ୍ରକାର ସମାନ ସମାନ ଭାବ ଥାଏ । ସୁତରାଂ ଭଗବାନ

---

୧ ତ୍ୱମେବ ବନ୍ଧୁଶ୍ଚ ସଖା ତ୍ୱମେବ । —ପାଣ୍ଡବଗୀତା

ଆମ ହୃଦୟର ଅତି ସନ୍ନିହିତ ବନ୍ଧୁ—ସେହି ବନ୍ଧୁଙ୍କ ନିକଟରେ ଅମେ ଆମ ଜୀବନର ସମସ୍ତ କଥା ଖୋଲି କହିପାରୁଁ, ଆମ ଅନ୍ତରର ଗମ୍ଭୀରତମ ପ୍ରଦେଶର ଗୁପ୍ତଭାବସବୁ ତାଙ୍କ ନିକଟରେ ଜଣାଇପାରୁଁ । ସମ୍ପୂର୍ଣ୍ଣ ଭରସା ଅଛି ଯେ, ଯହିଁରେ ଅମର ମଙ୍ଗଳ ହେବ ତାହା ସେ କରିବେ । ଏହା ଭାବି ଆମେ ସମ୍ପୂର୍ଣ୍ଣ ରୂପେ ନିଶ୍ଚିନ୍ତ ହୋଇପାରୁ । ଏପରି ଅବସ୍ଥାରେ ଭକ୍ତ ଭଗବାନଙ୍କୁ ନିଜର ସମାନ ବୋଲି ମନେ କରନ୍ତି—ଭଗବାନ ଯେପରି ଅମର ଖେଳନା ଏବଂ ଆମେ ସମସ୍ତେ ଯେପରି ଏ ଜଗତରେ ଖେଳା କରୁଛୁ । ଯେପରି ପିଲାମାନେ ଖେଳା କରନ୍ତି, ଯେପରି ମହାଯଶସ୍ୱୀ ରାଜା ମହାରାଜାମାନେ ନିଜ ନିଜର ଖେଳା କରିଯାଆନ୍ତି, ସେହିପରି ସେହି ପ୍ରେମର ଆଧାର ପ୍ରଭୁ ମଧ୍ୟ ନିଜେ ଜଗତ୍ ସହିତ ଖେଳା କରୁଛନ୍ତି । ସେ ପୂର୍ଣ୍ଣ—ତାଙ୍କର କିଛିମାତ୍ର ଅଭାବ ନାହିଁ । ତାଙ୍କର ସୃଷ୍ଟି କରିବାର ଆବଶ୍ୟକତା କଅଣ ? କୌଣସି ଅଭାବପୂରଣ ଉଦ୍ଦେଶ୍ୟରେ ଆମେ କାର୍ଯ୍ୟ କରୁ । ଆଉ ଅଭାବ କହିଲେ ଅପୂର୍ଣ୍ଣ-ତାକୁ ବୁଝାଏ । ଭଗବାନ ପୂର୍ଣ୍ଣ—ତାଙ୍କର କୌଣସି ଅଭାବ ନାହିଁ । ତେବେ କାହିଁକି ସେ ନିୟତ ଏହି କର୍ମମୟ ସୃଷ୍ଟି ନେଇ ବ୍ୟସ୍ତ ଅଛନ୍ତି ? ତାଙ୍କର ଉଦ୍ଦେଶ୍ୟ କଅଣ ? ଭଗବାନଙ୍କ ସୃଷ୍ଟିର ଉଦ୍ଦେଶ୍ୟ ବିଷୟରେ ଆମେ ଯେଉଁ ଉପନ୍ୟାସ କଳ୍ପନା କରୁ, ସେଗୁଡ଼ିକ ଗଳ୍ପ ହିସାବରେ ସୁନ୍ଦର ହୋଇପାରେ, କିନ୍ତୁ ତାହାର କୌଣସି ମୂଲ୍ୟ ନାହିଁ । ବାସ୍ତବିକ୍ ସମସ୍ତ ତାଙ୍କର ଲୀଳା ବା ଖେଳ । ଏ ଜଗତ୍ ତାଙ୍କର ଖେଳ—କ୍ରମାଗତ ଏହି ଖେଳ ଚାଲିଛି । ତାଙ୍କ ପକ୍ଷରେ ସମୁଦାୟ ଜଗତଟି ଗୋଟିଏ ମଜାର ଖେଳ ମାତ୍ର । ଯଦି ତୁମେ ଖୁବ୍ ନିଃସ୍ୱ ହୁଅ, ତେବେ ସେହି ନିଃସ୍ୱତ୍ୱକୁ ଗୋଟିଏ ମହାତାମସା ବୋଲି ବିବେଚନା କର—ବଡ଼ ମନୁଷ୍ୟ ହେବ ତ ଏହି ବଡ଼ ମନୁଷ୍ୟତ୍ୱକୁ ତାମସାରୂପେ ଉପଭୋଗ କର । ବିପଦ ଆସେ ତ ତାହା ହିଁ ଏକ ସୁନ୍ଦର ତାମସା, ଏବଂ ସୁଖ ପାଇଲେ ମନେ କରିବାକୁ ହେବ, ଏ ମଧ୍ୟ ଏକ ସୁନ୍ଦର ତାମସା । ଜଗତ୍‌ଟି କେବଳ ମାତ୍ର କ୍ରୀଡ଼ାକ୍ଷେତ୍ର —ଆମେ ଏଠାରେ ବେଶ୍ ନାନା ଭାବରେ ମଜା କରୁଛୁ—ଯେପରି ଖେଳ ଚାଲିଛି ଏବଂ ଭଗବାନ ଆମ ସହିତ ସର୍ବଦା ଖେଳା କରୁଛନ୍ତି, ଆମେ ମଧ୍ୟ ତାଙ୍କ ସହିତ ଖେଳୁଛୁ । ଭଗବାନ ଆମର ଅନନ୍ତ କାଳର ଖେଳ-ସଙ୍ଗୀ । କିପରି ସୁନ୍ଦର ଖେଳ କରୁଛନ୍ତି । ଖେଳ ଶେଷ ହେଲି—ଏକ ଯୁଗ ଶେଷ ହେଲା । ତା'ପରେ ଅଳ୍ପାଧିକ ସମୟ ଲାଗି ବିଶ୍ରାମ—ତା'ପରେ ପୁଣି ଖେଳ ଆରମ୍ଭ—ପୁଣି ଜଗତର ସୃଷ୍ଟି । କେବଳ ଯେତେବେଳେ ଭୁଲିଯାଅ ଯେ, ସବୁ ହିଁ ଖେଳ, ଆଉ ତୁମେ ମଧ୍ୟ ଏ ଖେଳର ସହାୟକ, ସେତେବେଳେ—କେବଳ ସେତିକିବେଳେ ଦୁଃଖକଷ୍ଟ ଆସି ଉପସ୍ଥିତ ହୁଏ । ସେତିକିବେଳେ ହୃଦୟ ଗୁରୁଭାରାକ୍ରାନ୍ତ ହୁଏ, ଆଉ ସଂସାର ତୁମ ଉପରେ ଗୁରୁ ବିକ୍ରମରେ ଚାପି ବସେ । କିନ୍ତୁ ଯେତେବେଳେ ତୁମେ ଏହି ଦୁଇ ଦଣ୍ଡ ଜୀବନର ପରିବର୍ତ୍ତନଶୀଳ ଘଟଣା-ବଳୀରେ ସତ୍ୟବୋଧ ତ୍ୟାଗ କର ଏବଂ ଯେତେବେଳେ ସଂସାରକୁ କ୍ରୀଡ଼ାରଙ୍ଗଭୂମି ଓ ଆପଣାକୁ ତାଙ୍କର କ୍ରୀଡ଼ାସହାୟକ ବୋଲି ମନେକର, ତତ୍‌କ୍ଷଣାତ୍ ତୁମର ଦୁଃଖ ଚାଲିଯିବ । ପ୍ରତି ଅଣୁରେ ସେ ଖେଳ କରୁଛନ୍ତି । ସେ ଖେଳ କରୁ କରୁ ପୃଥିବୀ, ସୂର୍ଯ୍ୟ, ଚନ୍ଦ୍ର ପ୍ରଭୃତି ନିର୍ମାଣ କରୁଛନ୍ତି । ସେ ମନୁଷ୍ୟହୃଦୟ, ପ୍ରାଣୀ ଓ ଉଦ୍ଭିଦସମୂହ ସହିତ କ୍ରୀଡ଼ା କରୁଛନ୍ତି ।

ଆମେ ତାଙ୍କର ନ୍ୟାୟବଳ ଖେଳ-ଗୋଟି ସ୍ୱରୂପ । ସେ ସେଗୁଡ଼ିକୁ ଯେପରି ଗୋଟିଏ ଛକଜାଗାରେ ବସାଇ ସେମାନଙ୍କୁ ଚାଳିତ କରୁଛନ୍ତି; ସେ ଆମକୁ ପ୍ରଥମେ ଏକ ଢଗରେ ପରେ ଅପର ଢଗରେ ସଜାଉଛନ୍ତି—ଆମେମାନେ ଜ୍ଞାତ ବା ଅଜ୍ଞାତସାରରେ ତାଙ୍କ କ୍ରୀଡ଼ାର ସହାୟକ । ଅହୋ କି ଆନନ୍ଦ ! ଆମେମାନେ ତାଙ୍କର କ୍ରୀଡ଼ା-ସହାୟକ ।

ଉପରର ଅବସ୍ଥାକୁ ବାତ୍ସଲ୍ୟ-ପ୍ରେମ କୁହାଯାଏ । ଏଥିରେ ଭଗବାନଙ୍କୁ ପିତା ବୋଲି ନ ଭାବି ସନ୍ତାନ ବୋଲି ଭାବିବାକୁ ହୁଏ । ସାମାନ୍ୟ କିଛି ନୂତନ ପ୍ରକାର ବୋଧ ହୋଇପାରେ, କିନ୍ତୁ ଏହାର ଉଦ୍ଦେଶ୍ୟ ଆମର ଭଗବତ୍ ସମ୍ବନ୍ଧୀୟ ଧାରଣାଠାରୁ ଐଶ୍ୱର୍ଯ୍ୟର ଭାବଗୁଡ଼ିକୁ ସବୁ ଦୂର କରିଦେବା । ଐଶ୍ୱର୍ଯ୍ୟଭାବ ସଙ୍ଗେ ସଙ୍ଗେ ଭୟ ଆସେ । ଭଲପାଇବାରେ କିନ୍ତୁ ଭୟ ରହିବା ଉଚିତ ନୁହେଁ । ଚରିତ୍ରଗଠନ ନିମିତ୍ତ ଭକ୍ତି ଓ ଆଜ୍ଞାବହତାର ଅଭ୍ୟାସ ଆବଶ୍ୟକ ସତ୍ୟ, କିନ୍ତୁ ଥରେ ଚରିତ୍ର ଗଠିତ ହେଲେ ଯେତେବେଳେ ପ୍ରେମିକ ଶାନ୍ତ-ପ୍ରେମର ଟିକିଏ ଆସ୍ୱାଦ ପାଏ, ପୁଣି ପ୍ରେମର ତୀବ୍ର ଉନ୍ମତ୍ତତା ମଧ୍ୟ କିଛି ଆସ୍ୱାଦ କରେ, ସେତେବେଳେ ତାହାର ଆଉ ନୀତିଶାସ୍ତ୍ର, ସାଧନନିୟମ ଏଗୁଡ଼ିକର କିଛିମାତ୍ର ପ୍ରୟୋଜନ ରହେ ନାହିଁ । ପ୍ରେମିକ କହେ, 'ଭଗବାନଙ୍କୁ ମହାମହିମ, ଐଶ୍ୱର୍ଯ୍ୟଶାଳୀ, ଜଗନ୍ନାଥ, ଦେବଦେବରୂପେ ଚିନ୍ତା କରିବାକୁ ମୋର ଇଚ୍ଛା ହୁଏ ନାହିଁ ।' ଭଗବାନଙ୍କ ଧାରଣାରୁ ଏହି ଭୟୋତ୍ପାଦକ ଐଶ୍ୱର୍ଯ୍ୟଭାବ ଦୂର କରିବା ନିମିତ୍ତ ସେ ଭଗବାନଙ୍କୁ ସନ୍ତାନରୂପେ ଭଲ ପାଏ । ମା-ବାପ ସନ୍ତାନ ନିକଟରେ ଭୟ ପାଆନ୍ତି ନାହିଁ, ସନ୍ତାନ ପ୍ରତି ତାଙ୍କର ଭକ୍ତି ମଧ୍ୟ ହୁଏ ନାହିଁ । ସନ୍ତାନ ନିକଟରୁ ସେମାନଙ୍କର ପ୍ରାର୍ଥନା କରିବାର ମଧ୍ୟ କିଛି ନ ଥାଏ । ସନ୍ତାନର ସବୁବେଳେ ପାଉଣାର ଦାବି । ସନ୍ତାନକୁ ଭଲ ପାଇବା ପାଇଁ ବାପ-ମା ଶତ ଶତବାର ଶରୀର ତ୍ୟାଗ କରିବାକୁ ପ୍ରସ୍ତୁତ । ସେମାନଙ୍କର ଏକ ସନ୍ତାନ ନିମିତ୍ତ ସେମାନେ ସହସ୍ର ଜୀବନ ଉତ୍ସର୍ଗ କରିବାକୁ ପ୍ରସ୍ତୁତ । ଏହି ଭାବରୁ ଭଗବାନଙ୍କୁ ବାତ୍ସଲ୍ୟ-ଭାବରେ ଭଲପାଇବାକୁ ହୁଏ । ଯେଉଁ ସକଳ ସମ୍ପ୍ରଦାୟରେ ଭଗବାନ ଅବତୀର୍ଣ୍ଣ ହୁଅନ୍ତି, ଯେଉଁମାନେ ସେଥିରେ ବିଶ୍ୱାସ କରନ୍ତି, ସେମାନଙ୍କ ମଧ୍ୟରେ ଏହି ବାତ୍ସଲ୍ୟଭାବରେ ଉପାସନା କରିବା ସ୍ୱାଭାବିକ । ମୁସଲମାନମାନଙ୍କ ପକ୍ଷରେ ଭଗବାନଙ୍କୁ ଏହିପରି ସନ୍ତାନ ଭାବରେ ଭାବିବା କଠିନ । ସେମାନେ ଭୟରେ ଏ ଭାବରୁ ଦୂରରେ ରହନ୍ତି । କିନ୍ତୁ ଖ୍ରୀଷ୍ଟିଆନ ଓ ହିନ୍ଦୁ ସହଜରେ ଏହା ବୁଝିପାରନ୍ତି, କାରଣ ସେମାନଙ୍କର ବାଳକ-ଯୀଶୁ, ବାଳ-ଶ୍ରୀକୃଷ୍ଣ ରହିଛନ୍ତି । ଭାରତୀୟ ରମଣୀଗଣ ଅନେକ ସମୟରେ ଆପଣାକୁ ଶ୍ରୀକୃଷ୍ଣଙ୍କର ମାତା ବୋଲି କଳ୍ପନା କରନ୍ତି । ଖ୍ରୀଷ୍ଟିଆନ ଜନନୀମାନେ ମଧ୍ୟ ଆପଣାକୁ ଖ୍ରୀଷ୍ଟଙ୍କର ମାତା ବୋଲି ଚିନ୍ତା କରିପାରନ୍ତି । ଏଥିରୁ ପାଶ୍ଚାତ୍ୟଦେଶରେ ଈଶ୍ୱରଙ୍କ ମାତୃଭାବର ଜ୍ଞାନ ଆସିବ, ଆଉ ତାହା ସେମାନଙ୍କର ବିଶେଷ ପ୍ରୟୋଜନ । ଭଗବାନଙ୍କ ପ୍ରତି ଭୟ ଓ ଭକ୍ତିରୂପ ଏହି କୁସଂସ୍କାର ଆମମାନଙ୍କ ଅନ୍ତରରେ ଦୃଢ଼ମୂଳ ହୋଇଛି । ଭଗବତ୍ ସମ୍ବନ୍ଧୀୟ ଏହି ଭୟ-ଭକ୍ତି-ଐଶ୍ୱର୍ଯ୍ୟ-ମହିମାର ଭାବ ଏହି ପ୍ରେମ ଭିତରେ ସମ୍ପୂର୍ଣ୍ଣ ଭାବରେ ନିମଜ୍ଜିତ କରିଦେବାକୁ ଅନେକ ଦିନ ଲାଗେ ।

ମନୁଷ୍ୟ-ପ୍ରେମର ଏହି ଐଶ୍ୱରିକ ଆଦର୍ଶକୁ ଆଉ ଏକ ପ୍ରକାରରେ ପ୍ରକାଶ କରି-

ହୋଇଛି । ତାହାର ନାମ ମଧୁର ଏବଂ ତାହା ହିଁ ସର୍ବପ୍ରକାର ପ୍ରେମ ମଧ୍ୟରେ ସର୍ବୋଚ୍ଚ । ଜଗତର ସର୍ବୋଚ୍ଚ ପ୍ରେମ ଉପରେ ଏହାର ଭିତ୍ତି—ଆଉ ମାନବୀୟ ପ୍ରେମ ମଧ୍ୟରେ ଏହା ହିଁ ସର୍ବାପେକ୍ଷା ପ୍ରବଳତମ । ସ୍ତ୍ରୀ-ପୁରୁଷଙ୍କ ପ୍ରେମ ଯେପର ମନୁଷ୍ୟର ସମୁଦାୟ ପ୍ରକୃତିକୁ ଓଲଟ-ପାଲଟ କରି ପକାଏ, ଆଉ କେଉଁ ପ୍ରେମ ସେପରି କରିପାରିବ ? କେଉଁ ପ୍ରେମ ଲୋକର ପ୍ରତି ପରମାଣୁ ମଧ୍ୟରେ ସଞ୍ଚାରିତ ହୋଇ ତାହାକୁ ପାଗଳ କରିପକାଏ – ନିଜର ପ୍ରକୃତିକୁ ଭୁଲାଇ ଦିଏ—ମନୁଷ୍ୟକୁ ହୁଏତ ଦେବତା କିମ୍ବା ପଶୁ କରି ଦିଏ ? ଏହି ମଧୁର ପ୍ରେମରେ ଭଗବାନଙ୍କୁ ଆମର ପତିରୂପେ ଚିନ୍ତା କରିଯାଏ । ଆମେ ସମସ୍ତେ ସ୍ତ୍ରୀ । ଜଗତରେ ଆଉ କେହି ପୁରୁଷ ନାହିଁ । କେବଳ ଏକମାତ୍ର ପୁରୁଷ ଅଛନ୍ତି—ସେହି ଜଣେ, ଆମର ସେହି ପ୍ରେମାସ୍ପଦ ହିଁ ଏକମାତ୍ର ପୁରୁଷ । ପୁରୁଷ ସ୍ତ୍ରୀକୁ ଓ ସ୍ତ୍ରୀ ପୁରୁଷକୁ ଯେଉଁ ସ୍ନେହ ଦେଇ ଭଲ ପାଇଥାଏ, ସେହି ସ୍ନେହ ଭଗବାନଙ୍କୁ ଅର୍ପଣ କରିବାକୁ ହେବ ।

ଆମେମାନେ ଜଗତରେ ଯେତେ ପ୍ରକାର ପ୍ରେମ ଦେଖିବାକୁ ପାଉଁ ଏବଂ ଯାହା ନେଇ ଆମେ ଅଳ୍ପାଧିକ ପରିମାଣରେ ଖେଳା କରୁଛୁ, ଭଗବାନ ସେମାନଙ୍କର ଏକମାତ୍ର ଲକ୍ଷ୍ୟ । ତେବେ ଦୁଃଖର ବିଷୟ, ଯେଉଁ ଅନନ୍ତ ସମୁଦ୍ରରେ ମହାନ୍ ପ୍ରେମର ନଦୀ ସଦା ପ୍ରବାହିତ ହେଉଛି, ମନୁଷ୍ୟ ତାହାକୁ ଜାଣେ ନାହିଁ, ସୁତରାଂ ନିର୍ବୋଧ ପରି ସେ ମନୁଷ୍ୟରୂପ କ୍ଷୁଦ୍ର କ୍ଷୁଦ୍ର ପ୍ରତିମା ପ୍ରତି ଏହା ପ୍ରୟୋଗ କରିବାକୁ ଚେଷ୍ଟା କରେ । ମନୁଷ୍ୟ-ପ୍ରକୃତିରେ ସନ୍ତାନ ପ୍ରତି ଯେଉଁ ପ୍ରବଳ ସ୍ନେହ ଦେଖାଯାଏ, ତାହା କେବଳ ଗୋଟିଏ ସନ୍ତାନସ୍ୱରୂପ କ୍ଷୁଦ୍ର ପିତୁଳା ପାଇଁ ନୁହେଁ; ଯଦି ତୁମେ ଅନ୍ଧଭାବରେ ଏକମାତ୍ର ସନ୍ତାନଠାରେ ତାକୁ ପ୍ରୟୋଗ କର, ତୁମେ ସେଥିପାଇଁ ବିଶେଷ କଷ୍ଟ ଭୋଗ କରିବ । କିନ୍ତୁ ଏହି କଷ୍ଟ-ଭୋଗରୁ ତୁମର ଏପରି ବୋଧ ଆସିବ ଯେ, ତୁମ ଭିତରେ ଯେଉଁ ପ୍ରେମ ଅଛି, ତାହା ଯଦି କୌଣସି ମନୁଷ୍ୟ-ଠାରେ ପ୍ରୟୋଗ କର, ତେବେ ଶୀଘ୍ର ହେଉ ବା ବିଳମ୍ବରେ ହେଉ, ଅଶାନ୍ତି ଆନୟନ କରିବ । ସୁତରାଂ ଆମର ପ୍ରେମ ସେହି ପୁରୁଷୋତ୍ତମଙ୍କ ଉପରେ ପ୍ରୟୋଗ କରିବାକୁ ହେବ—ଯାହାଙ୍କର ବିନାଶ ନାହିଁ, ଯାହାଙ୍କର କଦାପି କୌଣସି ପରିବର୍ତ୍ତନ ନାହିଁ ଏବଂ ଯାହାଙ୍କ ପ୍ରେମସମୁଦ୍ରରେ ଜୁଆରଭଟ୍ଟା ନାହିଁ । ସେ ପ୍ରକୃତ ପକ୍ଷରେ ପ୍ରେମର ଅନନ୍ତ ସମୁଦ୍ର-ସ୍ୱରୂପ, ଆମର ପ୍ରେମ ଯେପରି ପ୍ରକୃତ ଲକ୍ଷ୍ୟରେ ତାଙ୍କର ନିକଟରେ ପହଞ୍ଚେ, ସମସ୍ତ ନଦୀ ସମୁଦ୍ରରେ ମିଳିତ ହୁଏ । ଗୋଟିଏ ମାତ୍ର ଜଳବିନ୍ଦୁ ପର୍ବତ ଦେହରୁ ପତିତ ହୋଇ କେବଳ ଗୋଟିଏ ନଦୀରେ ( ତାହା ଯେତେ ବଡ଼ ହେଉ ନା କାହିଁକି ) ସ୍ଥିର ରହିପାରେ ନାହିଁ । ଅବଶେଷରେ ସେହି ଜଳବିନ୍ଦୁଟି କୌଣସି ନା କୌଣସି ରୂପରେ ସମୁଦ୍ରରେ ପ୍ରବେଶ କରେ । ଭଗବାନ ଆମମାନଙ୍କର ସର୍ବପ୍ରକାର ଭାବର ଏକମାତ୍ର ଲକ୍ଷ୍ୟ । ଯଦି ରାଗିବାକୁ ଇଚ୍ଛା କର, ତେବେ ଭଗବାନଙ୍କ ଉପରେ ରାଗ । ତୁମର ପ୍ରେମାସ୍ପଦ—ତୁମର ସଖାଙ୍କୁ—ଧମକ ଦିଅ । ଆଉ କାହାକୁ ତୁମେ ନିର୍ଭୟରେ ତିରସ୍କାର କରିପାରିବ ? ମର୍ତ୍ତ୍ୟଜୀବ ତୁମର ରାଗ ସହ୍ୟ କରିବ ନାହିଁ; ସେଥିରେ ତୁମ ଉପରେ ପ୍ରତିକ୍ରିୟା ଆସିବ । ଯଦି ତୁମେ ମୋ ପ୍ରତି କ୍ରୁଦ୍ଧ ହୁଅ, ମୁଁ ଅବଶ୍ୟ ତୁମ ପ୍ରତି କ୍ରୁଦ୍ଧ ହେବି, କାରଣ ମୁଁ ତୁମର କ୍ରୋଧ ସହିପାରିବି ନାହିଁ ।

ତୁମର ପ୍ରେମାସ୍ପଦଙ୍କୁ କହ, 'ତୁମେ ମୋ ନିକଟକୁ କାହିଁକି ଆସୁ ନାହଁ ? କାହିଁକି ମୋତେ ଏକା କରି ରଖିଛ ?' ତାହା ଛଡ଼ା ଆଉ କାହିଁରେ ଆନନ୍ଦ ଅଛି ? ଗ୍ରେଟ ଗ୍ରେଟ ମାଟିର ମୂର୍ତ୍ତିରେ ଆଉ କି ସୁଖ ଅଛି ? ଅନନ୍ତ ଆନନ୍ଦସ୍ୱରୂପଙ୍କୁ ହିଁ ଆମକୁ ଅନ୍ୱେଷଣ କରିବାକୁ ହେବ —ଭଗବାନ ହିଁ ଏହି ଆନନ୍ଦର ଘନୀଭୂତ ଭାବ । ଆମର ପ୍ରବୃତ୍ତି ଓ ଭାବାବ ଯେପରି ସମସ୍ତ ତାଙ୍କ ନିକଟକୁ ଉନ୍ନୀତ ହୁଏ । ସେସବୁ ତାଙ୍କର ଲାଗି ଅଭିପ୍ରେତ । ଏସବୁ ଯଦି ଲକ୍ଷ୍ୟଭ୍ରଷ୍ଟ ହୁଅନ୍ତି, ତେବେ ଏମାନେ କୁତ୍ସିତ ରୂପ ଧାରଣ କରିବେ । ଯେତେବେଳେ ସେମାନେ ତାଙ୍କର ଠିକ୍ ଲକ୍ଷ୍ୟସ୍ଥଳ ଅର୍ଥାତ୍ ଈଶ୍ୱରଙ୍କ ନିକଟରେ ପହଞ୍ଚିବେ, ସେତେବେଳେ ଅତି ନିମ୍ନତମ ବୃତ୍ତି ପର୍ଯ୍ୟନ୍ତ ରୂପାନ୍ତରିତ ହୋଇଯିବ । ମନୁଷ୍ୟର ମନ ଓ ଶରୀରର ସମୁଦାୟ ଶକ୍ତି, ସେଗୁଡ଼ିକ ଯେଉଁ ଭାବରେ ପ୍ରକାଶିତ ହୁଅନ୍ତୁ ନା କାହିଁକି, ଭଗବାନ ହିଁ ସେମାନଙ୍କର ଏକମାତ୍ର ଲକ୍ଷ୍ୟ—'ଏକାୟନ' । ମନୁଷ୍ୟ ହୃଦୟର ସମସ୍ତ ଶ୍ରଦ୍ଧା, ସମସ୍ତ ପ୍ରବୃତ୍ତି ଯେପରି ଭଗବାନଙ୍କ ଆଡ଼େ ଯାଏ । ସେହି କେବଳ ଏକମାତ୍ର ପ୍ରେମର ପାତ୍ର । ଏ ମନୁଷ୍ୟ-ହୃଦୟ ଆଉ କାହାକୁ ଭଲ ପାଇବ ? ଯେ ପରମ ସୁନ୍ଦର, ପରମ ମହତ୍ତ୍ୱ, ସୌନ୍ଦର୍ଯ୍ୟସ୍ୱରୂପ, ମହତ୍ତ୍ୱସ୍ୱରୂପ । ତାଙ୍କ ଅପେକ୍ଷା ଜଗତରେ ଆଉ କିଏ ସୁନ୍ଦର ଅଛି ? ତାଙ୍କ ବ୍ୟତୀତ ଜଗତରେ ଆଉ କିଏ ସ୍ୱାମୀ ହେବାର ଉପଯୁକ୍ତ ? ଜଗତରେ ଆଉ କିଏ ସେପରି ଶ୍ରଦ୍ଧାର ପାତ୍ର ଅଛି ? ଅତଏବ ସେ ଯେପରି ଆମର ସ୍ୱାମୀ ହୁଅନ୍ତି, ସେ ଯେପରି ଆମର ପ୍ରେମାସ୍ପଦ ହୁଅନ୍ତି ।

ଅନେକ ସମୟରେ ଏପରି ଘଟେ ଯେ, ଭଗବଦ୍ଭକ୍ତଗଣ ଏହି ଭଗବତ୍-ପ୍ରେମର ବିଷୟ କହିବାକୁ ଯାଇ ସର୍ବପ୍ରକାର ମାନବୀୟ ପ୍ରେମର ଭାଷା ହିଁ ଏହାକୁ ବର୍ଣ୍ଣନା କରିବାର ଉପଯୋଗୀ ବୋଲି ଗ୍ରହଣ କରିଥାଆନ୍ତି । ମୂର୍ଖମାନେ ଏ କଥା ବୁଝନ୍ତି ନାହିଁ—ସେମାନେ ଏହା କଦାପି ବୁଝିପାରିବେ ନାହିଁ । ସେମାନେ ଏହାକୁ କେବଳ ଜଡ଼ଦୃଷ୍ଟିରେ ଦେଖିଥାଆନ୍ତି । ସେମାନେ ଏହି ଆଧ୍ୟାତ୍ମିକ ପ୍ରେମୋନ୍ମତ୍ତତା ବୁଝିପାରନ୍ତି ନାହିଁ । କପରି ବା ବୁଝିବେ ? "ହେ ପ୍ରିୟତମ, ତୁମ ଅଧରର ଗୋଟିଏ ମାତ୍ର ଚୁମ୍ବନ ! ଯାହାକୁ ତୁମେ ଥରେ ଚୁମ୍ବନ ଦେଇଛ, ତୁମ ଲାଗି ତାହାର ପିପାସା ବର୍ଦ୍ଧିତ ହୋଇଛି । ତାହାର ସମସ୍ତ ଦୁଃଖ ଚାଲିଯାଏ । ସେ ତୁମ ବ୍ୟତୀତ ଆଉ ସବୁ ଭୁଲିଯାଏ ।"[୧] ପ୍ରିୟତମଙ୍କର ସେହି ଚୁମ୍ବନ—ତାଙ୍କ ଅଧର ସହିତ ସେହି ସଂସ୍ପର୍ଶ ଲାଗି ବ୍ୟାକୁଳ ହୁଅ – ଯାହା ଭକ୍ତକୁ ପାଗଳ କରିଦିଏ ଏବଂ ଯାହା ମନୁଷ୍ୟକୁ ଦେବତା କରିପାରେ । ଭଗବାନ ଯାହାକୁ ଥରେ ତାଙ୍କର ଅଧରାମୃତ ଦେଇ କୃତାର୍ଥ କରିଛନ୍ତି, ତା'ର ସମୁଦାୟ ପ୍ରକୃତି ପରିବର୍ତ୍ତିତ ହୋଇଯାଏ । ତାହାର ପକ୍ଷରେ ଜଗତ୍ ଉଡ଼ିଯାଏ—ଚନ୍ଦ୍ର-ସୂର୍ଯ୍ୟଙ୍କର ଆଉ ଅସ୍ତିତ୍ୱ ନ ଥାଏ ଏବଂ ସମଗ୍ର ଜଗତ୍ପ୍ରପଞ୍ଚ ସେହି ଏକ ଅନନ୍ତ ପ୍ରେମ-ସମୁଦ୍ରରେ ମିଶିଯାଏ । ଏହା ହିଁ ପ୍ରେମୋନ୍ମତ୍ତତାର ଚରମାବସ୍ଥା ।

ତଥାପି ପ୍ରକୃତ ଭଗବତ୍-ପ୍ରେମିକ ସେଥିରେ ମଧ୍ୟ ସନ୍ତୁଷ୍ଟ ନୁହନ୍ତି । ସ୍ୱାମୀ-ସ୍ତ୍ରୀର

୧ ସୁରତବର୍ଦ୍ଧନଂ ଶୋକନାଶନଂ ସ୍ୱରିତବେଣୁନା ସୁଷ୍ଠୁ ଚୁମ୍ବିତମ୍ ।
ଇତରରାଗବିସ୍ମାରଣଂ ନୃଣାଂ ବିତର ବୀର ନସ୍ତେଽଧରାମୃତମ୍ ॥
—ଶ୍ରୀମଦ୍ଭାଗବତ, ୧୦ମ ସ୍କନ୍ଧ, ୩୧ଶ ଅଧ୍ୟାୟ, ୧୪ ଶ୍ଳୋକ

ପ୍ରେମ ମଧ୍ୟ ତାଙ୍କ ନିକଟରେ ସେତେ ଉନ୍ମାଦକ ନୁହେଁ । ଭକ୍ତମାନେ ଅବୈଧ (ପରକୀୟା) ପ୍ରେମର ଭାବ ଗ୍ରହଣ କରିଥାଆନ୍ତି, କାରଣ ତାହା ଅତଶୟ ପ୍ରବଳ । ଏହାର ଅବୈଧତା ସେମାନଙ୍କର ଲକ୍ଷ୍ୟ ନୁହେଁ । ଏହି ପ୍ରେମର ପ୍ରକୃତି ଏପରି ଯେ, ଏହା ଯେତେ ବାଧା ପାଏ, ସେତେ ଉଗ୍ରଭାବ ଧାରଣ କରେ । ସ୍ୱାମୀ-ସ୍ତ୍ରୀର ସ୍ନେହ ଅବାଧ—ସେଥିରେ କୌଣସି ବାଧା-ବିଘ୍ନ ନାହିଁ । ସେଥିପାଇଁ ଭକ୍ତମାନେ କଳ୍ପନା କରନ୍ତି, ଯେପରି କୌଣସି ନାରୀ ତା'ର ପ୍ରିୟତମ ପୁରୁଷଠାରେ ଆସକ୍ତ ଏବଂ ତା'ର ପିତା, ମାତା ବା ସ୍ୱାମୀ ସେହି ପ୍ରେମର ବିରୋଧୀ । ଯେତେ ସେହି ପ୍ରେମ ବାଧା ପାଏ, ସେତେ ତାହା ପ୍ରବଳଭାବ ଧାରଣ କରେ । ଶ୍ରୀକୃଷ୍ଣ ବୃନ୍ଦାବନରେ କିପରି ଲୀଳା କରୁଥିଲେ, କିପରି ସମସ୍ତେ ତାଙ୍କୁ ଉନ୍ମତ୍ତ ହୋଇ ଭଲ ପାଉଥିଲେ, କିପରି ତାଙ୍କର ଇଙ୍ଗିତ ପାଇ ଗୋପୀମାନେ—ସେହି ଭାଗ୍ୟବତୀ ଗୋପୀମାନେ ସମସ୍ତ ଜଗତକୁ ଭୁଲିଯାଇ ସକଳ ବନ୍ଧନ ଓ ଜାଗତିକ କର୍ତ୍ତବ୍ୟ, ଏହାର ସମୁଦାୟ ସୁଖ-ଦୁଃଖ ଭୁଲି ତାଙ୍କ ସହିତ ସାକ୍ଷାତ୍ କରିବାକୁ ଆସୁଥିଲେ, ମାନବୀୟ ଭାଷା ଏହା ପ୍ରକାଶ କରିବାକୁ ଅକ୍ଷମ । ମନୁଷ୍ୟ—ମନୁଷ୍ୟ, ତୁମେ ଐଶ୍ୱରିକ ପ୍ରେମ ବିଷୟରେ କଥା କହ, ଅଥଚ ଜଗତର ସମସ୍ତ ଭ୍ରମାତ୍ମକ ପ୍ରସଙ୍ଗରେ ମଧ୍ୟ ନିଯୁକ୍ତ ରହିପାର । ତୁମର କ'ଣ ମନ ମୁଖ ଏକ ? "ଯେଉଁଠାରେ ରାମ ଅଛନ୍ତି, ସେଠାରେ କାମ ରହିପାରେ ନାହିଁ । ଯେଉଁଠାରେ କାମ, ସେଠାରେ ରାମ ରହିପାରନ୍ତି ନାହିଁ ।"[୧] ଏ ଉଭୟ କଦାପି ଏକତ୍ର ରହିପାରନ୍ତି ନାହିଁ । ଆଲୋକ-ଅନ୍ଧାର କଦାପି ଏକ ସଙ୍ଗେ ରହେ ନାହିଁ ।

---

୧ ଜହାଁ ରାମ ତହାଁ କାମ ନହାଁ, ଜହାଁ କାମ ତହାଁ ନହାଁ ରାମ ।
ଦୁହଁ ହୁଁ ମିଲତ ନହାଁ ରବ ରଜନୀ ନହାଁ ମିଲତ ଏକଠାମ ।
—ଦୋହା, ତୁଳସୀଦାସ

# ଉପସଂହାର

ଯେତେବେଳେ ପ୍ରେମର ଏହି ଉଚ୍ଚତମ ଆଦର୍ଶରେ ଉପନୀତ ହେବାକୁ ହୁଏ, ସେତେବେଳେ ଜ୍ଞାନ କେଉଁଆଡ଼େ ଚାଲିଯାଏ । ସେତେବେଳେ କିଏ ଆଉ ଦର୍ଶନଶାସ୍ତ୍ର ବା ଜ୍ଞାନ ଲାଗି ବ୍ୟସ୍ତ ହେବ ? ମୁକ୍ତି, ଉଦ୍ଧରଣ, ନିର୍ବାଣ—ଏ ସମସ୍ତ ସେତେବେଳେ କୁଆଡ଼େ ଚାଲିଯାଏ । ଏହି ଈଶ୍ୱର-ପ୍ରେମ ସମ୍ଭୋଗ କରି ପାରିଲେ କିଏ ମୁକ୍ତ ପାଇବାକୁ ଚାହିଁବ ? "ଭଗବାନ୍, ମୁଁ ଧନ, ଜନ, ସୌନ୍ଦର୍ଯ୍ୟ, ବିଦ୍ୟା—ଏପରିକି ମୁକ୍ତି ପର୍ଯ୍ୟନ୍ତ ଚାହେଁ ନାହିଁ । ଜନ୍ମେ ଜନ୍ମେ ଯେପରି ତୁମଠାରେ ମୋର ଅହୈତୁକୀ ଭକ୍ତି ରହିଥାଉ ।"[୧] ଭକ୍ତ କହନ୍ତି, "ଚିନି ହେବାଟା ଭଲ ନୁହେଁ, ମୁଁ ଚିନି ଖାଇବାକୁ ଭଲପାଏ ।" ସେତେବେଳେ କିଏ ମୁକ୍ତ ହେବାକୁ ଇଚ୍ଛା କରିବ ? କିଏ ଭଗବାନଙ୍କ ସହିତ ଅଭେଦଭାବ ଆକାଙ୍କ୍ଷା କରିବ ? ଭକ୍ତ କହନ୍ତି, "ମୁଁ ଜାଣେ ସେ ଓ ମୁଁ ଏକ, ତଥାପି ମୁଁ ତାଙ୍କଠାରୁ ମୋତେ ପୃଥକ୍ ରଖି ପ୍ରିୟତମଙ୍କୁ ସମ୍ଭୋଗ କରିବ ।" ପ୍ରେମ ଲାଗି ପ୍ରେମ—ଏହା ହିଁ ତାହାର ସର୍ବୋଚ୍ଚ ସୁଖ । ପ୍ରିୟତମଙ୍କୁ ସମ୍ଭୋଗ କରିବା ଲାଗି କିଏ ସହସ୍ରବାର ବଦ୍ଧ ନ ହେବ ? କୌଣସି ଭକ୍ତ ପ୍ରେମ ବ୍ୟତୀତ ଅନ୍ୟ କୌଣସି ବସ୍ତୁ କାମନା କରନ୍ତି ନାହିଁ । ସେ ସ୍ୱୟଂ ଭଲ ପାଇବାକୁ ଚାହାନ୍ତି ଏବଂ ଚାହାନ୍ତି ଯେ ଭଗବାନ ଯେପରି ତାଙ୍କୁ ଭଲ ପାଆନ୍ତି । ତାଙ୍କର ନିଷ୍କାମ ପ୍ରେମ ଯେପରି ଉଜାଣି ବହିଯାଏ । ପ୍ରେମିକ ଯେପରି ନଦୀର ଉତ୍ପତ୍ତିସ୍ଥାନ ଆଡ଼କୁ ସ୍ରୋତର ବିପରୀତ ଦିଗରେ ଧାଆନ୍ତି । ଜଗତ୍ ତାଙ୍କୁ ପାଗଳ କହେ । ମୁଁ ଜଣଙ୍କୁ ଜାଣେ ଲୋକେ ତାଙ୍କୁ ପାଗଳ ବୋଲି କହନ୍ତି । ସେ ଉତ୍ତର ଦିଅନ୍ତି, "ବନ୍ଧୁଗଣ, ସମସ୍ତ ଜଗତଟା ତ ଗୋଟିଏ ପାଗଳଖାନା । କେହି ସାଂସାରିକ ପ୍ରେମ ନେଇ ଉନ୍ମତ୍ତ, କେହି ନାମ ନିମନ୍ତେ, କେହି ବା ଯଶ ପାଇଁ, କେହି ଅର୍ଥଲାଳସାରେ, ଆଉ କେହି ମୁକ୍ତି ବା ସ୍ୱର୍ଗଲାଭ ପାଇଁ ଉନ୍ମତ୍ତ । ଏହି ବିରାଟ ପାଗଳଖାନାରେ ମୁଁ ମଧ୍ୟ ପାଗଳ । ମୁଁ ଭଗବାନଙ୍କ ପାଇଁ ପାଗଳ । ତୁମେ ଅର୍ଥ ପାଇଁ ପାଗଳ । ମୁଁ ଈଶ୍ୱରଙ୍କ ପାଇଁ ପାଗଳ । ତୁମେ ପାଗଳ, ମୁଁ ମଧ୍ୟ ସେହିପରି । ମୋର ମନେ ହୁଏ, ମୋର ପାଗଳାମି ହିଁ ସର୍ବୋତ୍କୃଷ୍ଟ ।" ପ୍ରକୃତ ଭକ୍ତର ପ୍ରେମ ଏହିପରି ତୀବ୍ର ଉନ୍ମତ୍ତତା ଏବଂ ଏହାର ସମ୍ମୁଖରେ ଆଉ ସବୁ ଆକର୍ଷଣ ଉଡ଼ିଯାଏ । ସମୁଦାୟ ଜଗତ ତାଙ୍କ ନିକଟରେ ପ୍ରେମ, କେବଳ ପ୍ରେମପୂର୍ଣ୍ଣ—ପ୍ରେମିକର ଚକ୍ଷୁରେ ଏହିପରି ପ୍ରତୀୟମାନ ହୁଏ । ଯେତେବେଳେ ମନୁଷ୍ୟ ଭିତରେ ଏହି ପ୍ରେମ ପ୍ରବେଶ କରେ, ସେତେବେଳେ ସେ ଅନନ୍ତକାଳ ପାଇଁ ସୁଖୀ, ଅନନ୍ତକାଳ ପାଇଁ ମୁକ୍ତ ହୋଇଯାଆନ୍ତି । ଭଗବତ୍-ପ୍ରେମର ଏହି ପବିତ୍ର ଉନ୍ମତ୍ତତା ହିଁ କେବଳ ଆମମାନଙ୍କ ଅନ୍ତରସ୍ଥ ସଂସାର-ବ୍ୟାଧି ଅନନ୍ତକାଳ ପାଇଁ ଆରୋଗ୍ୟ କରିପାରେ ।

---

୧ ନ ଧନଂ ନ ଜନଂ ନ ସୁନ୍ଦରୀଂ କବିତାମ୍ ବା ଜଗଦୀଶ କାମୟେ ।
ମମ ଜନ୍ମନି ଜନ୍ମନୀଶ୍ୱରେ ଭବତାଦ୍ଭକ୍ତିରହୈତୁକୀ ତ୍ୱୟି !

—ଶିକ୍ଷାଷ୍ଟକମ୍, ଶ୍ରୀକୃଷ୍ଣଚୈତନ୍ୟ

ପ୍ରେମଧର୍ମରେ ଆମମାନଙ୍କୁ ଦ୍ୱୈତଭାବରେ ଆରମ୍ଭ କରିବାକୁ ହୁଏ । ଭଗବାନ ଆମ ପକ୍ଷରେ ଆମଠାରୁ ଭିନ୍ନ ଏବଂ ଆମେ ମଧ୍ୟ ତାଙ୍କଠାରୁ ଆମକୁ ଭିନ୍ନ ବୋଧ କରୁଁ । ପ୍ରେମ ଏଥି ମଧ୍ୟକୁ ଆସି ଉଭୟର ମିଳନ ସମ୍ପାଦନ କରେ । ସେତେବେଳେ ମନୁଷ୍ୟ ଭଗବାନଙ୍କ ଆଡ଼କୁ ଅଗ୍ରସର ହୋଇଥାଏ ଏବଂ ଭଗବାନ ମଧ୍ୟ ମନୁଷ୍ୟର କ୍ରମଶଃ ଅଧିକତର ନିକଟବର୍ତ୍ତୀ ହୋଇଥାଆନ୍ତି । ଭକ୍ତ ସଂସାରର ସବୁ ସମ୍ବନ୍ଧ—ଯେପରି ପିତା, ମାତା, ପୁତ୍ର, ସଖା, ପ୍ରଭୁ, ପ୍ରଣୟୀ ପ୍ରଭୃତି—ଭାବ ନେଇ ତାହାର ପ୍ରେମର ଆଦର୍ଶ ଭଗବାନଙ୍କଠାରେ ଆରୋପ କରିଥାଆନ୍ତି । ତାଙ୍କ ନିକଟରେ ଭଗବାନ ଏହି ସର୍ବପ୍ରକାର ରୂପରେ ବିରାଜିତ । ସେ ସେତେବେଳେ ଉନ୍ନତିର ଚରମ ସୀମାରେ ଉପସ୍ଥିତ ହୁଅନ୍ତି, ଯେତେବେଳେ ସେ ନିଜ ଉପାସ୍ୟ ଦେବତାଙ୍କଠାରେ ସମ୍ପୂର୍ଣ୍ଣରୂପେ ନିମଗ୍ନ ହୋଇଯାଆନ୍ତି । ଆମେ ପ୍ରଥମାବସ୍ଥାରେ ସମସ୍ତେ ନିଜ ନିଜକୁ ଭଲପାଉଁ, ଏହି କ୍ଷୁଦ୍ର ଅହଂର ଅସଙ୍ଗତ ଦାବି ପ୍ରେମକୁ ମଧ୍ୟ ସ୍ୱାର୍ଥପର କରି ପକାଏ । ଅବଶେଷରେ କିନ୍ତୁ ପୂର୍ଣ୍ଣ ଜ୍ଞାନଜ୍ୟୋତିର ବିକାଶ ହୁଏ ଏବଂ ଏହି କ୍ଷୁଦ୍ର 'ଅହଂ' ସେହି ଅନନ୍ତ ସହିତ ଏକୀଭୂତ ହୋଇଯାଇଥିବାର ଦେଖାଯାଏ । ମନୁଷ୍ୟ ସ୍ୱୟଂ ଏହି ପ୍ରେମଜ୍ୟୋତିଃ ସମ୍ମୁଖରେ ସମ୍ପୂର୍ଣ୍ଣ ପରିବର୍ତ୍ତିତ ହୋଇଯାଏ । ପୂର୍ବରୁ ତାଙ୍କର ଅଳ୍ପାଧିକ ପରିମାଣରେ ଯେଉଁ ସବୁ ମଇଳା ବା ବାସନା ଥିଲା, ସେତେବେଳେ ସେସବୁ ଚାଲିଯାଏ । ଅବଶେଷରେ ସେ ଏହି ସୁନ୍ଦର ପ୍ରାଣ-ଆହ୍ଲାଦକର ସତ୍ୟ ଅନୁଭବ କରନ୍ତି ଯେ, ପ୍ରେମ, ପ୍ରେମିକ ଓ ପ୍ରେମାସ୍ପଦ ଏକ ।

ସ୍ୱାମୀ ବିବେକାନନ୍ଦ 'Religion of Love' ବା 'ଭକ୍ତି-ରହସ୍ୟ' ସମ୍ବନ୍ଧରେ —କିଛି ଇଂଲଣ୍ଡରେ ଓ କିଛି ଯୁକ୍ତରାଷ୍ଟ୍ର ଆମେରିକାରେ ଯେଉଁ ବକ୍ତୃତା ଦେଇଥିଲେ, ତାହାର କେତୋଟି ଏହି ବକ୍ତୃତା-ସଂଗ୍ରହରେ ନିବଦ୍ଧ ହୋଇଛି ।

ଏହି ବକ୍ତୃତା-ସଂଗ୍ରହ ସ୍ୱାମୀଜୀଙ୍କର 'ଭକ୍ତିଯୋଗ' ସମ୍ବନ୍ଧରେ ବକ୍ତୃତାମାଳାଠାରୁ ସ୍ୱତନ୍ତ୍ର ଧରଣର—ବିଷୟବସ୍ତୁ ଉଭୟର ଏକା ହେଲେ ମଧ୍ୟ ଏଠାରେ ଆଲୋଚନା ଓ ବିଶ୍ଳେଷଣ ଗଭୀର ଅଥଚ ଅଧିକତର ସହଜବୋଧ ହୋଇଛି ।

**ପ୍ରକାଶକ**

# ଭକ୍ତିର ସାଧନ

ଯା ପ୍ରୀତିରବିବେକାନାଂ ବିଷୟେଷ୍ୱନପାୟିନୀ ।
ତ୍ୱାମନୁସ୍ମରତଃ ସା ମେ ହୃଦୟାନ୍ମାପସର୍ପତୁ ॥
—ବିଷ୍ଣୁ ପୁରାଣ, ୧।୨୦।୧୯

ଅବିବେକୀ ଲୋକମାନଙ୍କର ଇନ୍ଦ୍ରିୟଭୋଗ୍ୟ ବିଷୟଗୁଡ଼ିକ ପ୍ରତି ଯେପରି ପ୍ରଗାଢ଼ ପ୍ରୀତି ରହିଥାଏ, ତୁମ ପାଇଁ ବ୍ୟାକୁଳ ମୋର ଏହି ହୃଦୟରୁ ତାଦୃଶୀ ପ୍ରୀତି ଯେପରି କଦାପି ଦୂର ନ ହୁଏ ।

ପ୍ରହ୍ଲାଦଙ୍କର ଏହି ଉକ୍ତିଟି ହିଁ ଭକ୍ତିର ସର୍ବୋତ୍କୃଷ୍ଟ ସଂଜ୍ଞା ବୋଲି ମନେ ହୁଏ ।

ଆମେମାନେ ଦେଖୁଁ ଯେ, ଯେଉଁମାନେ ଉଚ୍ଚତର ବିଷୟ ସମ୍ବନ୍ଧରେ କିଛି ଜାଣନ୍ତି ନାହିଁ, ସେମାନଙ୍କର ଇନ୍ଦ୍ରିୟଭୋଗ୍ୟ ପ୍ରତି ଅର୍ଥାତ୍ ଟଙ୍କା ପଇସା, ବେଶଭୂଷା, ସ୍ତ୍ରୀ ପୁତ୍ର, ବନ୍ଧୁ ବାନ୍ଧବ ଓ ସମ୍ପତ୍ତି ପ୍ରତି କି ଗଭୀର ପ୍ରୀତି ! କି ଘୋର ଆସକ୍ତି ! ଏଇଥିପାଇଁ ଭକ୍ତରାଜ ପୂର୍ବୋକ୍ତ ଶ୍ଳୋକରେ କହିଛନ୍ତି, ମୁଁ କେବଳ ତୁମ ପ୍ରତି ଏହିପରି ଅତ୍ୟନ୍ତ ଅନୁରାଗୀ ହେବି, କେବଳ ତୁମକୁ ପ୍ରାଣ ଦେଇ ଭଲ ପାଇବି, ଆଉ କାହାରିକୁ ବି ନୁହେଁ । ଏହି ପ୍ରୀତି, ଏହି ଆସକ୍ତି ଈଶ୍ୱରଙ୍କ ପାଇଁ ଉଦ୍ଦିଷ୍ଟ ହେଲେ ହିଁ ତାହାକୁ ଭକ୍ତି-ଆଖ୍ୟା ଦିଆଯାଏ । ଭକ୍ତି ଯୋଗରେ କୁହାଯାଇଛି : ଆମର କୌଣସି ପ୍ରବୃତ୍ତି ବୃଥା ନୁହେଁ, ବରଂ ସେହି ସମସ୍ତର ସହାୟତାରେ ହିଁ ଆମେମାନେ ସ୍ୱାଭାବିକ ଉପାୟରେ ମୁକ୍ତି ଲାଭ କରିଥାଉଁ । ଭକ୍ତି କୌଣସି ପ୍ରବୃତ୍ତିକୁ ଜୋର୍ କରି ନଷ୍ଟ କରେ ନାହିଁ, କିମ୍ବା ଭକ୍ତି ପ୍ରକୃତି-ବିରୋଧୀ ହୁଏ ନାହିଁ, ତାହା କେବଳ ପ୍ରବୃତ୍ତିର ଗତି ପରିବର୍ତ୍ତନ କରି ତାହାକୁ ଉଚ୍ଚତର ମାର୍ଗରେ ଦ୍ରୁତଗତିରେ ଚାଳିତ କରାଇଦିଏ ।

ଆମେମାନେ କେଡ଼େ ସ୍ୱାଭାବିକ ଭାବେ ଇନ୍ଦ୍ରିୟଭୋଗ୍ୟ ବିଷୟଗୁଡ଼ିକୁ ଭଲପାଇଥାଉ, ସେସବୁକୁ ଭଲ ନ ପାଇ ଆମେ ରହିପାରୁ ନା, କାରଣ ସେଗୁଡ଼ିକ ହିଁ ଆମମାନଙ୍କ ନିକଟରେ ପରମ ସତ୍ୟ ବୋଲି ପ୍ରତୀତ ହୁଏ । ଆମେମାନେ ସାଧାରଣତଃ ଇନ୍ଦ୍ରିୟଗ୍ରାହ୍ୟ ବିଷୟ ଅପେକ୍ଷା ଉଚ୍ଚତର ବସ୍ତୁର ସତ୍ୟତା ବୁଝିପାରୁନା । ଯେତେବେଳେ ମନୁଷ୍ୟ ଇନ୍ଦ୍ରିୟାତୀତ—ପଞ୍ଚେନ୍ଦ୍ରିୟ-ଗ୍ରାହ୍ୟ ଜଗତର ବାହାରେ ଅବସ୍ଥିତ—କୌଣସି ସତ୍ୟ ଅନୁଭବ କରେ, ସେତେବେଳେ ତା'ର ଆସକ୍ତିକୁ ବିଷୟରେ ଆବଦ୍ଧ ନ ରଖି ସେହି ଇନ୍ଦ୍ରିୟାତୀତ ବସ୍ତୁ ଅର୍ଥାତ୍ ଈଶ୍ୱରଙ୍କ ପ୍ରତି ପ୍ରୟୋଗ କରିବାକୁ ହେବ । ପୂର୍ବରୁ ଇନ୍ଦ୍ରିୟଭୋଗ୍ୟ ବିଷୟ ପ୍ରତି ଯେଉଁ ପ୍ରୀତି ବା ଅନୁରାଗ ଥିଲା, ତାହା ଯେତେବେଳେ ଈଶ୍ୱରଙ୍କଠାରେ ପ୍ରଯୁକ୍ତ ହୁଏ, ସେତେବେଳେ ହିଁ ତାହାକୁ ଭକ୍ତି କୁହାଯାଏ । ରାମାନୁଜାଚାର୍ଯ୍ୟଙ୍କ ମତରେ ଏହି ପ୍ରବଳ ଅନୁରାଗ ବା ଭକ୍ତିଲାଭ ନିମିତ୍ତ ନିମ୍ନଲିଖିତ ସାଧନପ୍ରଣାଳୀ ଅର୍ଥାତ୍ ଉପାୟଗୁଡ଼ିକର ଅନୁଷ୍ଠାନ କରିବାକୁ ହୁଏ ।

ପ୍ରଥମତଃ 'ବିବେକ' । ଏହି 'ବିବେକ'-ସାଧନଟି ବିଶେଷତଃ ପାଶ୍ଚାତ୍ୟ ଦେଶୀୟମାନଙ୍କ ନିକଟରେ ଗୋଟିଏ ଅଦ୍ଭୁତ ଜିନିଷ । ରାମାନୁଜଙ୍କ ମତରେ ଏହାର ଅର୍ଥ—'ଖାଦ୍ୟାଖାଦ୍ୟର ବିଚାର' । ଯେଉଁ ସମସ୍ତ ଉପାଦାନରେ ଦେହ ଓ ମନର ବିଭିନ୍ନ ଶକ୍ତି ଗଠିତ ହୁଏ, ଖାଦ୍ୟ ମଧ୍ୟରେ ସେଗୁଡ଼ିକ ବିଦ୍ୟମାନ; ମୁଁ ବର୍ତ୍ତମାନ ଯେଉଁ ଶକ୍ତିକୁ ପ୍ରକାଶ କରୁଛି, ସେସମସ୍ତ ହିଁ ମୋର ଭୁକ୍ତ ଖାଦ୍ୟ ମଧ୍ୟରେ ଥିଲା, ମୋର ଦେହମନ ଭିତରକୁ ଯାଇ ତାହା ବଦଳିଯାଇଛି; କିନ୍ତୁ ମୋର ଭୁକ୍ତ ଖାଦ୍ୟ ଦ୍ରବ୍ୟ ସହ ମୋର ଦେହ ମନର ସ୍ୱରୂପତଃ କୌଣସି ଭେଦ ନାହିଁ । ଯେପରି ବହିର୍ଜଗତର ଜଡ଼ ଓ ଶକ୍ତି ଆମମାନଙ୍କ ଶରୀରରେ ଦେହ ଓ ମନର ଆକାର ଧାରଣ କରେ, ସେହିପରି ସ୍ୱରୂପତଃ ଦେହ ଓ ଖାଦ୍ୟ ମଧ୍ୟରେ ପ୍ରଭେଦ କେବଳ ପ୍ରକାଶର ତାରତମ୍ୟରେ । ତାହା ହିଁ ଯଦି ହେଲା, ଅର୍ଥାତ୍ ଯଦି ଆମମାନଙ୍କ ଖାଦ୍ୟର ଜଡ଼ କଣିକାଗୁଡ଼ିକରୁ ଆମେମାନେ ଚିନ୍ତାଶକ୍ତିର ଯନ୍ତ୍ର ପ୍ରସ୍ତୁତ କରୁ ଏବଂ ସେହି କଣିକାଗୁଡ଼ିକର ମଧ୍ୟବର୍ତ୍ତୀ ସୂକ୍ଷ୍ମତର ଶକ୍ତିଗୁଡ଼ିକରୁ ଆମେ ଚିନ୍ତାକୁ ବି ଉତ୍ପନ୍ନ କରୁ, ତେବେ ଏହା ମଧ୍ୟ ସହଜରେ ପ୍ରମାଣ ହେବ ଯେ, ଏହି ଚିନ୍ତାଶକ୍ତି ଓ ଚିନ୍ତାଶକ୍ତିର ଯନ୍ତ୍ର ଉଭୟ ହିଁ ଆମମାନଙ୍କର ଭୁକ୍ତ ଖାଦ୍ୟଦ୍ରବ୍ୟ-ପ୍ରଭାବରେ ପ୍ରଭାବିତ ହେବ—ବିଶେଷ ବିଶେଷ ପ୍ରକାର ଖାଦ୍ୟ ମନ ଭିତରେ ବିଶେଷ ବିଶେଷ ପରିବର୍ତ୍ତନ ଉତ୍ପାଦନ କରିବ; ଆମେମାନେ ପ୍ରତିଦିନ ହିଁ ଏହି ବିଷୟ ସ୍ପଷ୍ଟଭାବେ ଦେଖିଥାଉଁ । ଆହୁରି କେତେକ ପ୍ରକାର ଖାଦ୍ୟ ରହିଛି, ଯେଉଁଗୁଡ଼ିକ ଶରୀରରେ ପରିବର୍ତ୍ତନ ଘଟାଏ ଏବଂ ମନକୁ ପ୍ରବଳ ଭାବରେ ପ୍ରଭାବିତ କରିଥାଏ । ଏହା ଗୋଟିଏ ବିଶେଷ ଶିକ୍ଷଣୀୟ ତତ୍ତ୍ୱ । ଆମେମାନେ ଯେତେ ଦୁଃଖ ଭୋଗ କରିଥାଉଁ, ତହିଁରୁ ଅଧିକାଂଶ କେବଳ ଆମମାନଙ୍କର ଖାଦ୍ୟ ଯୋଗୁ ହିଁ ଘଟିଥାଏ । ଆପଣମାନେ ଦେଖିଥିବେ ଯେ, ଅତିରିକ୍ତ ଓ ଗୁରୁପାକ ଭୋଜନ ପରେ ମନକୁ ସଂଯତ କରିବା ଅତ୍ୟନ୍ତ କଠିନ । ସେତେବେଳେ ମନ ଅବିରତ ଏଣେତେଣେ ଧାଉଁଥାଏ । କେତେଗୁଡ଼ିଏ ଖାଦ୍ୟ ଉତ୍ତେଜକ, ସେଗୁଡ଼ିକୁ ଖାଇଲେ ଦେଖିବେ ଯେ, ଆପଣମାନେ ମନକୁ ସଂଯତ କରି ପାରୁ ନାହାନ୍ତି । ଅଧିକ ପରିମାଣରେ ସୁରା କିମ୍ବା ଅନ୍ୟାନ୍ୟ ମାଦକ ଦ୍ରବ୍ୟ ପାନ କଲେ ମଣିଷ ବୁଝିପାରେ ଯେ, ମନକୁ ଆଉ ସଂଯତ କରି ରଖି ହେବ ନାହିଁ, ମନ ତା'ର ଆୟତ୍ତର ବାହାରକୁ ଚାଲିଯାଏ ।

ରାମାନୁଜାଚାର୍ଯ୍ୟଙ୍କ ମତରେ ଖାଦ୍ୟ ସମ୍ବନ୍ଧୀୟ ତ୍ରିବିଧ ଦୋଷ ପରିହାର କରିବା କର୍ତ୍ତବ୍ୟ । ପ୍ରଥମତଃ ଜାତିଦୋଷ । ଜାତିଦୋଷ ଅର୍ଥରେ ସେହି ଖାଦ୍ୟ ବିଶେଷର ପ୍ରକୃତିଗତ ଦୋଷକୁ ବୁଝାଏ । ସମସ୍ତ ପ୍ରକାର ଉତ୍ତେଜକ ଖାଦ୍ୟ ପରିତ୍ୟାଗ କରିବାକୁ ହେବ—ଯଥା, ମାଂସ । ମାଂସଭକ୍ଷଣ ତ୍ୟାଗ କରିବାକୁ ହେବ, କାରଣ ତାହା ସ୍ୱଭାବତଃ ଅପବିତ୍ର । ଆମେ ଅନ୍ୟର ପ୍ରାଣ ନାଶ କଲେ ତେବେ ଯାଇ ମାଂସ ପାଇଥାଉ । ମାଂସ ଖାଇ ଆମେ କ୍ଷଣିକ ସୁଖ ଲାଭ କରିଥାଉଁ, ଆଉ ଆମର ସେହି ଟିକକ ସୁଖ ଲାଗି ଅନ୍ୟ ଗୋଟିଏ ପ୍ରାଣୀକୁ ତା'ର ପ୍ରାଣ ଦେବାକୁ ହୁଏ । କେବଳ ସେତିକି ନୁହେଁ, ମାଂସ ଭକ୍ଷଣଦ୍ୱାରା ଆମେ ମଣିଷର ଅବନତିର କାରଣ ହେଉ । ପ୍ରତ୍ୟେକ ମାଂସାଶୀ ବ୍ୟକ୍ତି ଯଦି ନିଜେ ସେ

ପ୍ରାଣୀଟିକୁ ହତ୍ୟା କରନ୍ତେ, ତାହାହେଲେ ବରଂ ଭଲ ହୁଅନ୍ତା । ତାହା ନ କରି ସମାଜ ଦଳେ ଲୋକ ସୃଷ୍ଟି କରି ସେମାନଙ୍କଦ୍ୱାରା ଏହି କାର୍ଯ୍ୟ କରାଇନିଏ, ପୁଣି ସେହି ହତ୍ୟା-କାର୍ଯ୍ୟ ପାଇଁ ସମାଜ ସେମାନଙ୍କୁ ଘୃଣା କରେ । ଏଠାକାର ଆଇନରେ କି ବିଧାନ ତା' ମୁଁ ଜାଣେ ନା; କିନ୍ତୁ ଇଂଲଣ୍ଡରେ କଂସେଇ କେତେବେଳେ ହେଲେ ଜୁରିର ଆସନ ଗ୍ରହଣ କରିପାରେ ନାହିଁ—ଏହି ଦୃଷ୍ଟିରୁ ଯେ, କଂସେଇ ସ୍ୱଭାବତଃ ନିଷ୍ଠୁର; କିନ୍ତୁ ପ୍ରକୃତରେ ତାକୁ ନିଷ୍ଠୁର କରିଛି କିଏ ? ସମାଜ । ଆମେମାନେ ଯଦି ମାଂସ ଖାଉ ନ ଥାନ୍ତେ, ତାହାହେଲେ କେହି କଂସେଇ କେବେହେଲେ ହୋଇ ନ ଥାନ୍ତେ । ମାଂସଭକ୍ଷଣ କେବଳ ସେହିମାନଙ୍କ ପକ୍ଷେ ଉପଯୋଗୀ, ଯେଉଁମାନଙ୍କୁ ହାଡ଼ଭଙ୍ଗା ପରିଶ୍ରମ କରିବାକୁ ହୁଏ ଏବଂ ଯେଉଁମାନେ ଭକ୍ତି-ଯୋଗସାଧନରେ ପ୍ରବୃତ୍ତ ନୁହନ୍ତି । କିନ୍ତୁ ଭକ୍ତ ହେବାକୁ ହେଲେ ମାଂସଭୋଜନ ପରିତ୍ୟାଗ କରିବାକୁ ପଡ଼ିବ । ଏହା ବ୍ୟତୀତ ଅନ୍ୟାନ୍ୟ ଉତ୍ତେଜକ ଖାଦ୍ୟ ଯଥା—ପିଆଜ, ରସୁଣ, ସାଓ୍ୱାର୍‌କ୍ରଟ୍ (Sauerkraut)[୧] ପ୍ରଭୃତି ଦୁର୍ଗନ୍ଧ ଖାଦ୍ୟ ତ୍ୟାଗ କରିବାକୁ ହେବ । ପୁନଶ୍ଚ ପୂତି, ପର୍ଯ୍ୟୁଷିତ ଏବଂ ଯାହାର ସ୍ୱାଭାବିକ ରସ ପ୍ରାୟ ଶୁଖି ଯାଇଥାଏ, ଏପରି ଖାଦ୍ୟକୁ ମଧ୍ୟ ବର୍ଜନ କରିବାକୁ ହେବ ।

ଖାଦ୍ୟ ସମ୍ବନ୍ଧରେ ଦ୍ୱିତୀୟ ଦୋଷର ନାମ ଆଶ୍ରୟ-ଦୋଷ । ଆଶ୍ରୟ-ଦୋଷର ଅର୍ଥ ବୁଝିବାକୁ ହେବ, ଯେଉଁ ବ୍ୟକ୍ତି ନିକଟରୁ ଖାଦ୍ୟ ଆସୁଛି, ତାହା ସଂସ୍ପର୍ଶରେ ଖାଦ୍ୟରେ ଯେଉଁ ଦୋଷ ଜନ୍ମେ । ଏହା ହିନ୍ଦୁମାନଙ୍କର ଏକ ରହସ୍ୟପୂର୍ଣ୍ଣ ମତବାଦ । ଏହାର ତାତ୍ପର୍ଯ୍ୟ ଏହି ଯେ, ପ୍ରତ୍ୟେକ ବ୍ୟକ୍ତିର ଦେହର ଚତୁର୍ଦ୍ଦିଗରେ ଏକ ପ୍ରକାର ଜ୍ୟୋତି ରହିଛି । ସେ ଯାହା କିଛି ସ୍ପର୍ଶ କରନ୍ତି ତାହା ଉପରେ ଯେପରି ତାଙ୍କର ପ୍ରଭାବ ତାଙ୍କର ମନ ତାଙ୍କର ଚରିତ୍ର ବା ଭାବର ଅଂଶବିଶେଷ ଯାଇ ପଡ଼େ । ପ୍ରତ୍ୟେକ ବ୍ୟକ୍ତିର ଦେହରୁ ଶକ୍ତି ପରି ଚରିତ୍ର-ବୈଶିଷ୍ଟ୍ୟ ଯେପରି ବହିର୍ଗତ ହେଉଛି, ସେହିପରି ତାଙ୍କର ଭାବ ତାଙ୍କର ଚରିତ୍ର ମଧ୍ୟ ତାଙ୍କଠାରୁ ବହିର୍ଗତ ହେଉଛି ଏବଂ ସେ ଯାହା ସ୍ପର୍ଶ କରନ୍ତି, ସେଥିରେ ମଧ୍ୟ ସେ ଭାବ ସଂକ୍ରମିତ ହୁଏ । ଅତଏବ ରାନ୍ଧିବା ସମୟରେ କିଏ ଆମର ଖାଦ୍ୟ ସ୍ପର୍ଶ କଲା, ସେଥିପ୍ରତି ବିଶେଷ ଦୃଷ୍ଟି ଦେବାକୁ ହେବ । କୌଣସି ଦୁଷ୍ଟଚରିତ୍ର ବା ମନ୍ଦବ୍ୟକ୍ତି ତାହା ଯେପରି ସ୍ପର୍ଶ ନ କରେ । ଭକ୍ତ ହେବାକୁ ଯେ ଚାହାଁନ୍ତି, ସେ ଯାହାକୁ ଅସଚ୍ଚରିତ୍ର ବୋଲି ଜାଣନ୍ତି ତାହା ସହିତ ଏକସଙ୍ଗେ ବସି ଖାଇବେ ନାହିଁ, କାରଣ ଖାଦ୍ୟ ମଧ୍ୟ ଦେଇ ତାଙ୍କ ଭିତରକୁ ଅସଦ୍-ଭାବ ସଂକ୍ରମିତ ହେବ ।

ତୃତୀୟ ନିମିତ୍ତ-ଦୋଷ । ଏହି ଦୋଷ ପରିତ୍ୟାଗ କରିବା ଖୁବ୍ ସହଜ । ନିମିତ୍ତ ଅର୍ଥାତ୍ ଖାଦ୍ୟ ସହିତ ଧୂଳି ପ୍ରଭୃତିର ସଂସ୍ପର୍ଶ ଯେପରି କେବେହେଲେ ନ ହୁଏ । ବଜାରରୁ ଛତଣି ଟଙ୍କଳର ଧୂଳିଯୁକ୍ତ ଖାଦ୍ୟ ଆଣି ଉତ୍ତମରୂପେ ପରିଷ୍କାର ନ କରି ଟେବୁଲ ଉପରେ ରଖିବା ଠିକ୍ ନୁହେଁ । ଆଉ ଗୋଟିଏ କଥା—ଲାଳଦ୍ୱାରା କିଛି ସ୍ପର୍ଶ କରିବା ଉଚିତ ନୁହେଁ । ଈଶ୍ୱର ଆମମାନଙ୍କୁ ସବୁ ଜିନିଷ ଧୋଇବା ପାଇଁ ଯଥେଷ୍ଟ ଜଳ ଦେଇଛନ୍ତି, ଅତଏବ ଓଠରେ

[୧] ବନ୍ଧା କୋବିରେ ଲୁଣପାଣି ସହଯୋଗରେ ପ୍ରସ୍ତୁତ ଏକପ୍ରକାର ଜର୍ମାନଦେଶୀୟ ଚଟଣୀ ।

ଆଙ୍ଗୁଠି ଲଗାଇ ଜିଭଦ୍ୱାରା ସବୁ ଜିନିଷ ଛୁଇଁବା ଅତ୍ୟନ୍ତ କୁ-ଅଭ୍ୟାସ—ଏହାଭଳି କଦର୍ଯ୍ୟ ଅଭ୍ୟାସ ଆଉ କିଛି ନାହିଁ । ଶ୍ଳୈଷ୍ମିକ ଝିଲ୍ଲୀ (mucous membrane) ଶରୀର ମଧ୍ୟରେ ଅତି କୋମଳ ଅଂଶ; ଏଥିରୁ ଉତ୍ପନ୍ନ ହୋଇଥିବା ଲାଳଦ୍ୱାରା ଅତି ସହଜରେ ସମସ୍ତ ପ୍ରକାର ଭାବ ସଂକ୍ରମିତ ହୁଏ । ସୁତରାଂ ପାଟିକୁ ଖାଇବା ଜିନିଷ ନେବା ସମୟରେ ଓଠରେ ଆଙ୍ଗୁଠି ଦେବା ଖୁବ୍ ଦୋଷାବହ । ତା' ପରେ ଜଣେ କୌଣସି ଜିନିଷକୁ ଅଧେ କାମୁଡ଼ି ଖାଇ ଅନ୍ୟକୁ ଆଉ ଅଧିକ ଖାଇବାକୁ ଦେବା ମଧ୍ୟ ଅନୁଚିତ । ଜଣେ ଗୋଟିଏ ଆପେଲର ଚଉଡ଼ାଏ ଖାଇଲା ଓ ଅପରକୁ ବାକିଟା ଖାଇବାକୁ ଦେଲା, ଏଭଳି କରିବା ଉଚିତ ନୁହେଁ । ଖାଦ୍ୟ ସମ୍ବନ୍ଧରେ ପୂର୍ବୋକ୍ତ ଦୋଷଗୁଡ଼ିକ ବର୍ଜ୍ଜନ କଲେ ଖାଦ୍ୟ ଶୁଦ୍ଧ ହୁଏ । ଆହାର ଶୁଦ୍ଧ ହେଲେ, ମନ ମଧ୍ୟ ଶୁଦ୍ଧ ହୁଏ । ସେହି ଶୁଦ୍ଧ ମନରେ ସର୍ବଦା ଈଶ୍ୱରଙ୍କର ସ୍ମୃତି ଅବ୍ୟାହତ ରହେ—"ଆହାରଶୁଦ୍ଧୌ ସତ୍ତ୍ୱଶୁଦ୍ଧିଃ ସତ୍ତ୍ୱଶୁଦ୍ଧୌ ଧ୍ରୁବା ସ୍ମୃତିଃ ।"

ରାମାନୁଜାଚାର୍ଯ୍ୟ ଉପନିଷଦ୍‌ର ଉକ୍ତ ଶ୍ଳୋକକୁ ଏହିପରି ବ୍ୟାଖ୍ୟା କରିଛନ୍ତି । ସେ ଆହାର ଶବ୍ଦକୁ ଖାଦ୍ୟ ଅର୍ଥରେ ଗ୍ରହଣ କରିଛନ୍ତି । ଉପନିଷଦ୍‌ର ଅନ୍ୟ ଜଣେ ଭାଷ୍ୟକାର ଶଙ୍କରାଚାର୍ଯ୍ୟ କିନ୍ତୁ ସେହି ବାକ୍ୟର ଅନ୍ୟପ୍ରକାର ଅର୍ଥ କରିଛନ୍ତି । 'ଆହ୍ରିୟତେ ଇତି ଆହାରଃ', ଯାହା କିଛି ଗ୍ରହଣ କରାଯାଏ ତାହା ହିଁ ଆହାର, ସୁତରାଂ ତାଙ୍କ ମତରେ ଇନ୍ଦ୍ରିୟଗ୍ରାହ୍ୟ ବିଷୟସମୂହ ହିଁ ଆହାର । ଆଉ ଆହାରଶୁଦ୍ଧିର ପ୍ରକୃତ ଅର୍ଥ ନିମ୍ନଲିଖିତ ଦୋଷସମୂହ ବର୍ଜ୍ଜିତ ହୋଇ ଇନ୍ଦ୍ରିୟ-ବିଷୟସମୂହର ଗ୍ରହଣ । ପ୍ରଥମତଃ, 'ଆସକ୍ତି' ରୂପକ ଦୋଷକୁ ତ୍ୟାଗ କରିବାକୁ ହେବ । ଈଶ୍ୱର ବ୍ୟତୀତ ଅନ୍ୟ ସମୁଦାୟ ବିଷୟ ପ୍ରତି ପ୍ରବଳ ଆସକ୍ତି ତ୍ୟାଗ କରିବାକୁ ହେବ; ସବୁ ଦେଖନ୍ତୁ, ସବୁ କରନ୍ତୁ, ସ୍ପର୍ଶ କରନ୍ତୁ; କିନ୍ତୁ ଆସକ୍ତ ହୁଅନ୍ତୁ ନାହିଁ । ଯେତେବେଳେ ମନୁଷ୍ୟର କୌଣସି ବିଷୟରେ ତୀବ୍ର ଆସକ୍ତି ଜନ୍ମେ, ସେତେବେଳେ ସେ ନିଜକୁ ହରାଇ ବସେ, ସେତେବେଳେ ସେ ଆଉ ନିଜେ ନିଜର ପ୍ରଭୁ ନ ହୋଇ ଦାସ ହୋଇଯାଏ । ଯଦି କୌଣସି ସ୍ତ୍ରୀ ପୁରୁଷ ପ୍ରତି ପ୍ରବଳ ଭାବରେ ଆସକ୍ତ ହୁଏ, ତେବେ ସେ ସେହି ପୁରୁଷର ଦାସୀ ହୋଇଯାଏ; ପୁରୁଷ ମଧ୍ୟ ସେହିପରି କୌଣସି ସ୍ତ୍ରୀ ପ୍ରତି ଆସକ୍ତ ହେଲେ ସେ ତା'ର ଦାସ ହୋଇଯାଏ । କିନ୍ତୁ ଦାସ ହେବାର ତ କୌଣସି ପ୍ରୟୋଜନ ନାହିଁ । ଜଣକର ଦାସ ହେବା ଅପେକ୍ଷା ଏହି ଜଗତରେ ଅନେକ ବଡ଼ ବଡ଼ କାମ କରିବାର ଅଛି । ସମସ୍ତଙ୍କୁ ଭଲ ପାଆନ୍ତୁ, ସମସ୍ତଙ୍କର କଲ୍ୟାଣସାଧନ କରନ୍ତୁ; କିନ୍ତୁ କାହାର ଦାସ ହୁଅନ୍ତୁ ନାହିଁ । ପ୍ରଥମତଃ, ତାହା ତ ଆମ ନିଜକୁ ଚରିତ୍ରହୀନ କରିଦିଏ, ଦ୍ୱିତୀୟତଃ, ତାହା ଅପରଙ୍କ ପ୍ରତି ବ୍ୟବହାରରେ ଆମମାନଙ୍କୁ ଘୋରତର ସ୍ୱାର୍ଥପର କରି ପକାଏ । ଏହି ଦୁର୍ବଳତାଦ୍ୱାରା ପ୍ରଣୋଦିତ ହୋଇ ଆମେ ଯେଉଁମାନଙ୍କୁ ଭଲ ପାଉ, ସେମାନଙ୍କର ମଙ୍ଗଳ କରିବା ପାଇଁ ଅନ୍ୟମାନଙ୍କର ଅନିଷ୍ଟ ସାଧନ ପାଇଁ ଚେଷ୍ଟା କରୁ । ଜଗତରେ ଯାହା କିଛି ଅନ୍ୟାୟ କାର୍ଯ୍ୟ ଅନୁଷ୍ଠିତ ହୁଏ, ସେଥିରୁ ଅଧିକାଂଶ ପ୍ରକୃତ ପକ୍ଷରେ ବ୍ୟକ୍ତିବିଶେଷ ପ୍ରତି ଆସକ୍ତିହେତୁ ଘଟି-ଥାଏ । ଅତଏବ ଏହିପରି ଆସକ୍ତିସମୂହ ତ୍ୟାଗ କରିବାକୁ ହେବ । କେବଳ ସତ୍ କର୍ମରେ ଆସକ୍ତି ରଖିବାକୁ ହେବ; କିନ୍ତୁ ସମସ୍ତଙ୍କୁ ହିଁ ଭଲ ପାଇବାକୁ ହେବ । ଦ୍ୱିତୀୟତଃ କୌଣସି

ପ୍ରକାର ଇନ୍ଦ୍ରିୟବିଶେଷ ନେଇ ଯେପରି ଆମର ଦ୍ୱେଷ ଉତ୍ପନ୍ନ ନ ହୁଏ । ଈର୍ଷା ବା ଦ୍ୱେଷ ହିଁ ସମସ୍ତ ଅନିଷ୍ଟର ମୂଳ ଏବଂ ତାହାକୁ ଜୟ କରିବା ଅତି କଠିନ । ତୃତୀୟତଃ, ମୋହ । ଆମେ ସର୍ବଦା ଗୋଟିଏ ବସ୍ତୁକୁ ଅନ୍ୟ ବସ୍ତୁ ବୋଲି ଭାବି ଭୁଲ କରୁ ଏବଂ ତଦନୁଯାୟୀ କାର୍ଯ୍ୟ କରୁ । ଫଳରେ ଆମ ନିଜର ଦୁଃଖ କଷ୍ଟ ଆମେ ନିଜେ ହିଁ ସୃଷ୍ଟି କରୁ । ଆମେମାନେ ମନ୍ଦକୁ ଭଲ ବୋଲି ଗ୍ରହଣ କରୁଛୁ । ଯାହା କିଛି କ୍ଷଣକାଳ ପାଇଁ ଆମର ସ୍ନାୟୁମଣ୍ଡଳୀକୁ ଉତ୍ତେଜିତ କରେ, ତାହାକୁ ହିଁ ସର୍ବୋତ୍ତମ ବସ୍ତୁ ବୋଲି ମନେ କରି ସହସା ତାକୁ ନେଇ ମାତି ଯାଉଛୁ, କିଛି ସମୟ ପରେ ଦେଖୁ ଯେ ସେଥିରୁ ଗୋଟାଏ ବିରାଟ ଆଘାତ ପାଇଲୁ, କିନ୍ତୁ ସେତେବେଳେ ଆଉ ଫେରିବାର ପଥ ନାହିଁ । ପ୍ରତିଦିନ ହିଁ ଆମେ ଏହି ଭୁଲରେ ପଡ଼ୁଛୁ ଓ ଅନେକ ସମୟରେ ସାରା ଜୀବନଟା ହିଁ ଏହିପରି ଭୁଲରେ ବିତି ଯାଉଛି । ଶଙ୍କରାଚାର୍ଯ୍ୟଙ୍କ ମତରେ ଏହି ପୂର୍ବୋକ୍ତ ରାଗ-ଦ୍ୱେଷ-ମୋହରୂପକ ତ୍ରିବିଧ ଦୋଷ ବର୍ଜିତ ହୋଇ ଇନ୍ଦ୍ରିୟ-ବିଷୟସମୂହର ଗ୍ରହଣ କରିବାକୁ ହିଁ ଆହାରଶୁଦ୍ଧି କୁହାଯାଏ । ଏହି ଆହାରଶୁଦ୍ଧି ହେଲେ ସତ୍ତ୍ୱଶୁଦ୍ଧି ହୁଏ, ଅର୍ଥାତ୍ ସେତେବେଳେ ମନ ଇନ୍ଦ୍ରିୟବିଷୟସମୂହକୁ ଗ୍ରହଣ କରି ରାଗଦ୍ୱେଷମୋହ-ବର୍ଜିତ ହୋଇ ଚିନ୍ତା କରିପାରେ । ଏହିପରି ସତ୍ତ୍ୱଶୁଦ୍ଧି ହେଲେ ସେହି ଶୁଦ୍ଧ ମନ ମଧ୍ୟରେ ସର୍ବଦା ଈଶ୍ୱରଙ୍କର ସ୍ମରଣ-ମନନ ଚାଲିଥାଏ ।

ସ୍ୱଭାବତଃ ଆପଣମାନେ ସମସ୍ତେ କହିବେ ଯେ, ଶଙ୍କରାଚାର୍ଯ୍ୟକୃତ ଏହି ବ୍ୟାଖ୍ୟା ହିଁ ଉତ୍କୃଷ୍ଟ । ତାହା ହେଲେ ବି କହୁଛି, ରାମାନୁଜକୃତ ବ୍ୟାଖ୍ୟାଟିକୁ ଅବହେଳା କଲେ ଚଳିବ ନାହିଁ । ସ୍ଥୂଳଖାଦ୍ୟ ଶୁଦ୍ଧ ହେଲେ ବାକିଗୁଡ଼ିକ ମଧ୍ୟ ଶୁଦ୍ଧ ହେବ । ଏହା ଅତି ସତ୍ୟକଥା ଯେ, ସକଳ ମୂଳରେ ମନ; କିନ୍ତୁ ଆମମାନଙ୍କ ମଧ୍ୟରେ ଖୁବ୍ ଅଳ୍ପ ଲୋକ ଅଛନ୍ତି, ଯେଉଁମାନେ ଇନ୍ଦ୍ରିୟଦ୍ୱାରା ବଦ୍ଧ ନୁହନ୍ତି । ଜଡ଼ ପଦାର୍ଥର ଶକ୍ତିରେ ଆମେ ସମସ୍ତେ ହିଁ ଚାଳିତ ହୋଇ-ଥାଉ ଏବଂ ଯେତେ ଦିନ ଆମେମାନେ ଏହିପରି ଭାବେ ଚାଳିତ ହେଉଥିବୁ, ସେତେ ଦିନ ଆମକୁ ଜଡ଼ର ସାହାଯ୍ୟ ନେବାକୁ ହିଁ ପଡ଼ିବ । ତା'ପରେ ଯେତେବେଳେ ଆମେମାନେ ଯଥେଷ୍ଟ ଶକ୍ତି ଅର୍ଜ୍ଜନ କରିବୁ ସେତେବେଳେ ଯାହା ଖୁସି ପାନାହାର କରିପାରୁ । ଆମକୁ ରାମାନୁଜଙ୍କର ମତ ଅନୁସରଣ କରି ପାନାହାର ସମ୍ବନ୍ଧରେ ସାବଧାନ ହେବାକୁ ପଡ଼ିବ, ତା' ସଙ୍ଗେ ସଙ୍ଗେ ମାନସିକ ଆହାର ପ୍ରତି ମଧ୍ୟ ଆମକୁ ଦୃଷ୍ଟି ଦେବାକୁ ହେବ । ଶରୀରର ସ୍ଥୂଳ ଖାଦ୍ୟ ବିଷୟରେ ସାବଧାନ ହେବା ତ ଅତି ସହଜ, କିନ୍ତୁ ତା' ସହିତ ମାନସିକ ବ୍ୟାପାର ପ୍ରତି ମଧ୍ୟ ଦୃଷ୍ଟି ଦେବାକୁ ପଡ଼ିବ । କୌଣସି ଖାଦ୍ୟ ଆପଣଙ୍କର କିଛି ଅନିଷ୍ଟ କରିପାରୁ ନାହିଁ । ବର୍ତ୍ତମାନ ଯକୃତ୍‌ର ସାମାନ୍ୟ ଗୋଳମାଳ ଆପଣଙ୍କୁ ପାଗଳ କରିପକାଏ । ଏତିକି ଅସୁବିଧା ଯେ, ସମସ୍ତେ ଏକା ଥରକେ କୁଦାମାରି ଉଚ୍ଚତମ ଆଦର୍ଶକୁ ଧରିବାକୁ ଇଚ୍ଛା କରନ୍ତି; କିନ୍ତୁ ଧାଇଁ ଡେଇଁ ତ କିଛି ହେବ ନାହିଁ । ସେଥିରେ ଗୋଡ଼ ମୋଡ଼ି ହୋଇ ପଡ଼ିମରିବା ସାର ହେବ । ଆମେମାନେ ବର୍ତ୍ତମାନ ବଦ୍ଧ ରହିଛୁ, ଧୀରେ ଧୀରେ ଆମକୁ ସେହି ଶୃଙ୍ଖଳ ଛିନ୍ନ କରିବାକୁ ହେବ । ରାମାନୁଜଙ୍କ ମତରେ ଏହି ବିବେକ ଅର୍ଥାତ୍ ଖାଦ୍ୟାଖାଦ୍ୟ ବିଚାର ହିଁ ଭକ୍ତିର ପ୍ରଥମ ସାଧନ ।

ଭକ୍ତର ଦ୍ୱିତୀୟ ସାଧନର ନାମ 'ବିମୋକ' । ବିମୋକ ଶବ୍ଦର ଅର୍ଥ ବାସନାର ଦାସତ୍ୱ-ମୋଚନ । ଯେ ଭଗବତ୍-ପ୍ରେମ ଲାଭ କରିବାକୁ ଚାହାଁନ୍ତି, ତାହାଙ୍କୁ ସକଳ ପ୍ରକାର ବାସନା ତ୍ୟାଗ କରିବାକୁ ହେବ । ଈଶ୍ୱର ବ୍ୟତୀତ ଆଉ କିଛି କାମନା କର ନାହିଁ । ଏହି ଜଗତ୍ ଆମକୁ ସେହି ଉଚ୍ଚତର ଜଗତକୁ ନେଇଯିବା ପାଇଁ ଯେତିକିଟି ସାହାଯ୍ୟ କରେ, ସେତିକି ଠିକେ ହିଁ ଭଲ । ଇନ୍ଦ୍ରିୟ-ବିଷୟ ସକଳ ଉଚ୍ଚତର ବିଷୟଲାଭରେ ଯେତେ ସାହାଯ୍ୟ କରିପାରେ ସେତେ ଭଲ । ଆମେମାନେ ସର୍ବଦା ଭୁଲି ଯାଇଥାଉ ଯେ, ଏହି ଜଗତ୍ ଉଦ୍ଦେଶ୍ୟ-ବିଶେଷ-ଲାଭର ଉପାୟସ୍ୱରୂପ, ସ୍ୱୟଂ ଉଦ୍ଦେଶ୍ୟ ନୁହେଁ । ଯଦି ଏହି ଜଗତ୍ ଆମର ଚରମ ଲକ୍ଷ୍ୟ ହୋଇଥାନ୍ତା, ତେବେ ଆମେ ଏହି ସ୍ଥୂଳ ଦେହରେ ଅମରତ୍ୱ ଲାଭ କରିଥାଆନ୍ତୁ, ଆମେ କଦାପି ମୃତ୍ୟୁର କବଳରେ ପତିତ ହୁଅନ୍ତୁ ନାହିଁ । ଆମେମାନେ ଦେଖୁଛୁ, ପ୍ରତିମୁହୂର୍ତ୍ତରେ ଆମର ଚତୁର୍ଦ୍ଦିଗରେ ଲୋକ ମୃତ୍ୟୁମୁଖରେ ପଡ଼ୁଛନ୍ତି, ତଥାପି ମୂର୍ଖଭାବଶତଃ ଆମେ ଭାବୁଛୁ ଆମେ କେବେହେଲେ ମରିବୁ ନାହିଁ । ସେହି ଧାରଣାରୁ ଆମେମାନେ ଭାବିଥାଉଁ, ଏହି ଜୀବନ ଆମମାନଙ୍କର ଚରମ ଲକ୍ଷ୍ୟ । ଆମମାନଙ୍କ ମଧ୍ୟରେ ଶତକଡ଼ା ଅନେଶତ ଜଣ ଲୋକଙ୍କର ଧାରଣା ଏହିପରି । ଏହି ଭାବ ଏକ୍ଷଣି ପରିତ୍ୟାଗ କରିବାକୁ ହେବ । ଏହି ଜଗତ୍ ଯେତେବେଳ ପର୍ଯ୍ୟନ୍ତ ଆମର ପୂର୍ଣ୍ଣତା ଲାଭର ଉପାୟସ୍ୱରୂପ ହୁଏ, ସେତେବେଳ ପର୍ଯ୍ୟନ୍ତ ଏହା ଭଲ; ଆଉ ଯେତେବେଳେ ତାହାଦ୍ୱାରା ତାହା ନ ହୁଏ ସେତେବେଳେ ତାହା ମନ୍ଦ ବ୍ୟତୀତ ଆଉ କିଛି ନୁହେଁ । ଏହିପରି ସ୍ୱାମୀ, ସ୍ତ୍ରୀ, ପୁତ୍ର, କନ୍ୟା, ଟଙ୍କା ପଇସା ବା ବିଦ୍ୟା ଆମମାନଙ୍କର ଭଗବତ୍-ପଥରେ ଉନ୍ନତିର ସହାୟକ ହେଲେ ଭଲ; କିନ୍ତୁ ଯେତେବେଳେ ତାହା ନ ହୁଏ ସେତେ-ବେଳେ ସେସମସ୍ତ ମନ୍ଦ ବ୍ୟତୀତ ଆଉ କିଛି ନୁହେଁ । ଯଦି ସ୍ତ୍ରୀ ଈଶ୍ୱର-ପଥରେ ସହାୟତା କରେ, ତେବେ ତାହାକୁ ସାଧ୍ୱୀ ସ୍ତ୍ରୀ କୁହାଯାଏ । ପତିପୁତ୍ରାଦି ସମ୍ବନ୍ଧରେ ମଧ୍ୟ ଏହି ପ୍ରକାର । ଅର୍ଥ ଯଦି ମନୁଷ୍ୟକୁ ଅପରର କଲ୍ୟାଣସାଧନ କରିବାରେ ସାହାଯ୍ୟ କରେ, ତେବେ ତାହାର ମୂଲ୍ୟ ଅଛି ବୋଲି ସ୍ୱୀକାର କରାଯାଏ । ନଚେତ୍ ତାହା କେବଳ ଅନିଷ୍ଟର ମୂଳ ଏବଂ ଯେତେ ଶୀଘ୍ର ଆମେ ଅର୍ଥର ହସ୍ତରୁ ନିଷ୍କୃତି ପାଇପାରୁ ଆମର ସେତିକି କଲ୍ୟାଣ ।

ତତ୍ପରବର୍ତ୍ତୀ ସାଧନ 'ଅଭ୍ୟାସ' । ଆମର କର୍ତ୍ତବ୍ୟ ମନ ଯେପରି ସର୍ବଦା ଈଶ୍ୱରାଭି-ମୁଖରେ ଗମନ କରେ, ଅନ୍ୟ କୌଣସି ବସ୍ତୁର ଆମ ମନକୁ ବାଧା ଦେବାର ଅଧିକାର ନାହିଁ । ମନ ଯେପରି ସର୍ବଦା ,ଅଖଣ୍ଡ ତୈଳଧାରା ସଦୃଶ ଈଶ୍ୱରଚିନ୍ତା କରେ, ଏହା ଅତି କଠିନ କାର୍ଯ୍ୟ; କିନ୍ତୁ ବାରମ୍ବାର ଅଭ୍ୟାସ ଦ୍ୱାରା ତାହା ସମ୍ଭବ ହୋଇପାରେ । ବର୍ତ୍ତମାନ ଆମେ ଯେଉଁପରି ହୋଇଛୁ, ତାହା ଅତୀତ ଅଭ୍ୟାସର ଫଳସ୍ୱରୂପ । ପୁନଶ୍ଚ ବର୍ତ୍ତମାନ ଯେପରି ଅଭ୍ୟାସ କରିବା, ଭବିଷ୍ୟତରେ ସେହିପରି ହେବା । ଅତଏବ ଆପଣମାନଙ୍କର ଯେପରି ଅଭ୍ୟାସ ହୋଇଯାଇଛି, ତା'ର ବିପରୀତ ଅଭ୍ୟାସ କରନ୍ତୁ । ଗୋଟିଏ ପଟକୁ ମୋଡ଼ି ବୁଲାଇ ଆମର ଅବସ୍ଥା ଏପରି ହୋଇଯାଇଛି, ଆରପଟକୁ ବୁଲାନ୍ତୁ ଏବଂ ଯେତେଶୀଘ୍ର ପାରନ୍ତି ଏହାର ବାହାରକୁ ଚାଲି ଯାଆନ୍ତୁ । ଇନ୍ଦ୍ରିୟ-ବିଷୟର ଚିନ୍ତା କରି କରି ଆମେ ଏପରି ଏକ ଅବସ୍ଥାରେ ପହଞ୍ଚିଛୁ ଯେ, ଫଳରେ ଆମେ ଗୋଟିଏ ମୁହୂର୍ତ୍ତରେ ହସୁଛୁ, ପରକ୍ଷଣରେ

କାନ୍ଦୁଛୁ, ସାମାନ୍ୟ ବାୟୁ ପ୍ରବାହରେ ହିଁ ଆମେ ବିଚଳିତ ହୋଇ ଉଠୁଛୁ—ସାମାନ୍ୟ ଗୋଟିଏ ବାକ୍ୟର ଦାସ, ସାମାନ୍ୟ ଟିକିଏ ଖାଦ୍ୟର ଦାସ ହୋଇ ପଡ଼ୁଛୁ । ଏହା ଅତ୍ୟନ୍ତ ଲଜ୍ଜାର ବିଷୟ—ତଥାପି ଆମେମାନେ ନିଜକୁ ଆତ୍ମା ବୋଲି ପରିଚୟ ଦେଉ ଏବଂ ବହୁ ବଡ଼ ବଡ଼ ବାଜେ କଥା କହୁଥାଉଁ । ଆମେ ସଂସାରର ଦାସସ୍ୱରୂପ ଏବଂ ଇନ୍ଦ୍ରିୟାଭିମୁଖୀ ହୋଇ ନିଜକୁ ଏହି ଅବସ୍ଥାକୁ ଆଣିଛୁ । ବର୍ତ୍ତମାନ ବିପରୀତ ଦିଗରେ ଚାଲ, ଈଶ୍ୱରଙ୍କ ଚିନ୍ତା କର—ମନ ଯେପରି କୌଣସି ଶାରୀରିକ ବା ମାନସିକ ଭୋଗର ଚିନ୍ତା ନ କରି କେବଳ ଈଶ୍ୱର-ଚିନ୍ତା କରେ । ଯେତେବେଳେ ମନ ଅନ୍ୟ କୌଣସି ବିଷୟ ଚିନ୍ତା କରିବାକୁ ଉଦ୍ୟତ ହେବ, ସେତେବେଳେ ତାହାକୁ ଏପରି ଧକ୍‌କା ଦିଅ ଯେପରିକି ତାହା ଫେରିଆସି ଈଶ୍ୱର-ଚିନ୍ତାରେ ପ୍ରବୃତ୍ତ ହେବ । ଯେପରି ତେଲ ଗୋଟିଏ ପାତ୍ରରୁ ଅନ୍ୟ ପାତ୍ରକୁ ଅବିଚ୍ଛିନ୍ନ ଧାରାରେ ପଡ଼ୁଥାଏ, ଯେପରି ଦୂରରେ ଘଣ୍ଟା ଧ୍ୱନି ହେଲେ ତାହାର ଶବ୍ଦ କର୍ଣ୍ଣକୁ ଏକ ଅବିଚ୍ଛିନ୍ନ ଧାରାରେ ଆସୁଥାଏ, ସେହିପରି ଏହି ମନ ମଧ୍ୟ ଯେପରି ଏକ ଅବିଚ୍ଛିନ୍ନ ଧାରାରେ ଈଶ୍ୱରଙ୍କ ପ୍ରତି ପ୍ରଧାବିତ ହୁଏ । ଏହି ଅଭ୍ୟାସ କେବଳ ମନଦ୍ୱାରା କଲେ ହିଁ ହେବ ନାହିଁ, ଇନ୍ଦ୍ରିୟ-ଗୁଡ଼ିକୁ ମଧ୍ୟ ଏହି ଅଭ୍ୟାସରେ ନିଯୁକ୍ତ କରିବାକୁ ହେବ । ବାଜେକଥା ନ ଶୁଣି ଆମମାନଙ୍କୁ ଈଶ୍ୱର-କଥା ଶୁଣିବାକୁ ହେବ, ବାଜେକଥା ନ କହି ଈଶ୍ୱରବିଷୟକ କଥା କହିବାକୁ ହେବ, ବାଜେ ପୁସ୍ତକ ନ ପଢ଼ି ଈଶ୍ୱର-ବିଷୟକ ସଦ୍‌ଗ୍ରନ୍ଥ ପଢ଼ିବାକୁ ହେବ ।[୧]

ଈଶ୍ୱରଙ୍କୁ ସ୍ମୃତିପଥରେ ରଖିବା ନିମିତ୍ତ—ଏହି ଅଭ୍ୟାସର ସର୍ବୋତ୍କୃଷ୍ଟ ସହାୟକ ସମ୍ଭବତଃ ସଙ୍ଗୀତ । ଭକ୍ତର ଶ୍ରେଷ୍ଠ ଆଚାର୍ଯ୍ୟ ନାରଦଙ୍କୁ ଭଗବାନ କହୁଛନ୍ତି—

"ନାହଂ ତିଷ୍ଠାମି ବୈକୁଣ୍ଠେ ଯୋଗିନାଂ ହୃଦୟେ ନ ଚ,
ମଦ୍‌ଭକ୍ତା ଯତ୍ର ଗାୟନ୍ତି ତତ୍ର ତିଷ୍ଠାମି ନାରଦ ।"

—'ହେ ନାରଦ, ମୁଁ ବୈକୁଣ୍ଠରେ ବାସ କରେ ନାହିଁ, ଯୋଗୀମାନଙ୍କ ହୃଦୟରେ ମଧ୍ୟ ବାସ କରେ ନାହିଁ, ଯେଉଁଠାରେ ମୋର ଭକ୍ତମାନେ ଭଜନ ଗାନ କରୁଥାଆନ୍ତି, ମୁଁ ସେହିଠାରେ ହିଁ ଅବସ୍ଥାନ କରେ ।'

ମନୁଷ୍ୟର ମନ ଉପରେ ସଙ୍ଗୀତର ପ୍ରଚଣ୍ଡ ପ୍ରଭାବ—ତାହା ମୁହୂର୍ତ୍ତିକ ମଧ୍ୟରେ ମନକୁ ଏକାଗ୍ର କରିଦିଏ । ଆପଣମାନେ ଦେଖିବେ, ଅତିଶୟ ତାମସିକ ଜଡ଼ ପ୍ରକୃତିର ମନୁଷ୍ୟ-ମାନେ—ଯେଉଁମାନେ ମୁହୂର୍ତ୍ତିକ ପାଇଁ ମଧ୍ୟ ମନକୁ ସ୍ଥିର କରିପାରନ୍ତି ନାହିଁ—ସେମାନେ ମଧ୍ୟ ଉତ୍ତମ ସଙ୍ଗୀତ ଶ୍ରବଣରେ ମୁଗ୍ଧ ହୋଇଯାଆନ୍ତି, ଏକାଗ୍ର ହୋଇଯାଆନ୍ତି । ଏପରିକି କୁକୁର, ବିରାଡ଼ି, ସାପ, ସିଂହ ପ୍ରଭୃତି ଜନ୍ତୁଗଣ ମଧ୍ୟ ସଙ୍ଗୀତ ଶ୍ରବଣରେ ମୋହିତ ହୋଇ-ଯାଆନ୍ତି ।

---

୧ ଏଠାରେ ଈଶ୍ୱରଙ୍କ କଥାର ମାନେ ନୁହେଁ ଯେ, ପ୍ରତ୍ୟକ୍ଷଭାବେ କେବଳ ଈଶ୍ୱର ବା ଦାର୍ଶନିକ ଚିନ୍ତା ଥିବ । ଯେଉଁ ବହିରେ ମନକୁ ଉନ୍ନତ କରିବାର ବିଷୟ ଥିବ—ନିମ୍ନ ଜୀବନର କଥା ନ ଥିବ—ସେ ବହି ପଢ଼ିବା କଥା ସ୍ୱାମୀଜୀ କହୁଛନ୍ତି ।

— ସମ୍ପାଦକ

ପରବର୍ତ୍ତୀ ସାଧନ ହେଉଛି 'କ୍ରିୟା'—ପରର ହିତ ସାଧନ । ସ୍ୱାର୍ଥପର ବ୍ୟକ୍ତିର ହୃଦୟରେ ଈଶ୍ୱର-ଚିନ୍ତା ଆସିବ ନାହିଁ । ଆମେ ଯେତିକି ଅନ୍ୟର କଲ୍ୟାଣସାଧନ କରିବାକୁ ଚେଷ୍ଟା କରିବା, ଆମମାନଙ୍କର ହୃଦୟ ସେତିକି ଶୁଦ୍ଧ ହେବ ଏବଂ ସେହି ହୃଦୟରେ ଈଶ୍ୱର ବାସ କରିବେ । ଆମର ଶାସ୍ତ୍ରମତରେ କ୍ରିୟା ବା କର୍ମ ପଞ୍ଚବିଧ—ସେଗୁଡ଼ିକୁ ପଞ୍ଚ ମହାଯଜ୍ଞ କୁହାଯାଏ । ପ୍ରଥମ ବ୍ରହ୍ମଯଜ୍ଞ—ଅର୍ଥାତ୍ ସ୍ୱାଧ୍ୟାୟ—ପ୍ରତ୍ୟହ ଶୁଭ ଓ ପବିତ୍ର ଭାବୋଦ୍ଦୀପକ କିଛି କିଛି ପାଠ କରିବାକୁ ହେବ । ଦ୍ୱିତୀୟ ଦେବଯଜ୍ଞ । ଈଶ୍ୱର ଦେବତା ବା ସାଧୁମାନଙ୍କର ପୂଜା ବା ଉପାସନା । ତୃତୀୟ, ପିତୃଯଜ୍ଞ—ଆମର ପୂର୍ବପୁରୁଷମାନଙ୍କ ସମ୍ବନ୍ଧରେ ଆମର କର୍ତ୍ତବ୍ୟ । ଚତୁର୍ଥ, ନୃଯଜ୍ଞ—ମନୁଷ୍ୟ ଜାତି ପ୍ରତି ଆମର କର୍ତ୍ତବ୍ୟ । ମନୁଷ୍ୟ ଯଦି ଦରିଦ୍ର ବା ଅଭାବ-ଗ୍ରସ୍ତମାନଙ୍କ ନିମିତ୍ତ ଗୃହ ନିର୍ମାଣ ନ କରେ, ତେବେ ତା'ର ନିଜର ଗୃହରେ ବାସ କରିବାର ଅଧିକାର ନାହିଁ । ଦରିଦ୍ର ଓ ଦୁଃଖୀମାନଙ୍କ ପାଇଁ ଗୃହୀର ଗୃହ ଯଦି ଉନ୍ମୁକ୍ତ ରହେ—ତେବେ ହିଁ ସେ ଯଥାର୍ଥ ଗୃହୀ । ଯଦି କେହି କେବଳ ନିଜର ଓ ନିଜ ସ୍ତ୍ରୀର ଭୋଗ ନିମିତ୍ତ ଗୃହ ନିର୍ମାଣ କରେ, ତେବେ ତାହା ଅତି ଘୋର ସ୍ୱାର୍ଥପର କାର୍ଯ୍ୟ । ଏପରି ବ୍ୟକ୍ତି କେବେହେଲେ ଭଗବଦ୍‌ଭକ୍ତ ହୋଇପାରିବ ନାହିଁ । କୌଣସି ବ୍ୟକ୍ତିର ନିଜ ପାଇଁ କିଛି-ହେଲେ ରନ୍ଧନ କରିବାର ଅଧିକାର ନାହିଁ । ପର ପାଇଁ ହିଁ ତାକୁ ରନ୍ଧନ କରିବାକୁ ପଡ଼ିବ । ଅନ୍ୟମାନଙ୍କର ସେବା ପରେ ଯାହା ଅବଶିଷ୍ଟ ରହିବ, ସେଥିରେ ହିଁ ତାହାର ଅଧିକାର । ଭାରତରେ ସାଧାରଣତଃ ଏହାହିଁ ଘଟିଥାଏ ଯେ, ଯେତେବେଳେ ବଜାରକୁ ନୂଆ ନୂଆ ଜିନିଷ ଯଥା—ଆମ୍ବ କୋଳି ପ୍ରଭୃତି ନୂଆକରି ଆସେ, ସେତେବେଳେ କୌଣସି କୌଣସି ବ୍ୟକ୍ତି ସେଥିରୁ କିଛି କିଣି ଗରିବମାନଙ୍କୁ ବାଣ୍ଟି ଦିଅନ୍ତି । ଦରିଦ୍ରମାନଙ୍କୁ ବାଣ୍ଟିବା ପରେ ସେ ନିଜେ ଖାଇଥାନ୍ତି; ଆଉ ଏ ଦେଶରେ ( ଆମେରିକାରେ ) ଅନୁସରଣ କରିବା ପାଇଁ ଏହା ଗୋଟିଏ ଖୁବ୍ ଭଲ ଦୃଷ୍ଟାନ୍ତ । ଏହିପରି ଭାବରେ ଜୀବନକୁ ନିୟନ୍ତ୍ରଣ କରୁଥିଲେ ମନୁଷ୍ୟ କ୍ରମଶଃ ନିଃସ୍ୱାର୍ଥ ହୋଇଯିବ । ପୁନଶ୍ଚ ସ୍ତ୍ରୀ-ପୁତ୍ରାଦି ମଧ୍ୟ ଏଥିରୁ ଶିକ୍ଷାଲାଭ କରିବେ । ପ୍ରାଚୀନକାଳରେ ହିନ୍ଦୁମାନେ ପ୍ରଥମଜାତ ଫଳ ଭଗବାନଙ୍କୁ ନିବେଦନ କରୁଥିଲେ; କିନ୍ତୁ ଆଜିକାଲି ବୋଧ-ହୁଏ ତାହା ଆଉ କରୁ ନାହାନ୍ତି । ସକଳ ଦ୍ରବ୍ୟର ପ୍ରଥମ ଭାଗଟି ଦରିଦ୍ରମାନଙ୍କର ପ୍ରାପ୍ୟ—ଆମମାନଙ୍କର ତାହାର ଅବଶିଷ୍ଟାଂଶରେ ମାତ୍ର ଅଧିକାର । ଦରିଦ୍ରଗଣ—ଈଶ୍ୱରଙ୍କ ପ୍ରତି-ନିଧି । ଯେଉଁମାନେ କୌଣସି ପ୍ରକାର ଦୁଃଖ କଷ୍ଟ ପାଉଛନ୍ତି—ସେମାନେ ହିଁ ଈଶ୍ୱରଙ୍କ ପ୍ରତିନିଧି । ଅନ୍ୟକୁ ନ ଦେଇ ଯେଉଁ ବ୍ୟକ୍ତି ନିଜ ରସନାର ତୃପ୍ତି ସାଧନ କରେ, ସେ ପାପ ଭୋଜନ କରେ ।

ପଞ୍ଚମ ଭୂତଯଜ୍ଞ ଅର୍ଥାତ୍ ନିମ୍ନତର ଜାତି ପ୍ରତି ଆମର କର୍ତ୍ତବ୍ୟ । ସକଳ ପ୍ରାଣୀଙ୍କୁ ମନୁଷ୍ୟ ମାରି ପକାଇବ, ସେମାନଙ୍କୁ ନେଇ ଯାହା ଖୁସି କରିବ, ଏଇଥିପାଇଁ ହିଁ ସେମାନଙ୍କର ସୃଷ୍ଟି ହୋଇଛି—ଏ କଥା କହିବା ମହାପାପ । ଯେଉଁ ଶାସ୍ତ୍ର ଏହି କଥା କହେ, ତାହା ସଇ-ତାନର ଶାସ୍ତ୍ର; ଈଶ୍ୱରଙ୍କର ନୁହେଁ । ଶରୀରର କୌଣସି ଅଂଶରେ ସ୍ନାୟୁ ବିଶେଷ ଗତିଶୀଳ ଅଛି କି ନାହିଁ, ତାହା ଦେଖିବା ନିମିତ୍ତ ଗୋଟିଏ ଜନ୍ତୁ କାଟି ଦେଖିବା କି ବୀଭତ୍ସ

କାର୍ଯ୍ୟ ଭାବି ଦେଖନ୍ତୁ ! ଏପରି ସମୟ ଆସିବ ଯେତେବେଳେ ସବୁ ଦେଶରେ ହିଁ ଯେଉଁ ବ୍ୟକ୍ତି ଏପରି କରିବ, ସେ ଦଣ୍ଡନୀୟ ହେବ । ଆମ ଦେଶରେ ବୈଦେଶିକ ସରକାର ଏପରି କାର୍ଯ୍ୟରେ ଯେତେ ଉତ୍ସାହ ଦିଅନ୍ତୁ ନା କାହିଁକି, ହିନ୍ଦୁମାନେ ଏ ବିଷୟରେ ଉତ୍ସାହ ପ୍ରଦର୍ଶନ କରୁ ନ ଥିବାରୁ ମୁଁ ସୁଖୀ । ଯାହାହେଉ ନା କାହିଁକି ଗୃହରେ ପ୍ରସ୍ତୁତ ହୋଇଥିବା ଆହାରର ଏକ ଭାଗ ପଶୁମାନଙ୍କର ପ୍ରାପ୍ୟ । ସେମାନଙ୍କୁ ପ୍ରତ୍ୟହ ଖାଦ୍ୟ ଦେବାକୁ ହେବ । ଏ ଦେଶର ପ୍ରତ୍ୟେକ ସହରରେ, ଅନ୍ଧ, ଖଞ୍ଜ ବା ଆତୁର, ଅଶ୍ୱ, ଗୋରୁ, କୁକୁର, ବିରାଡ଼ି-ମାନଙ୍କ ନିମିତ୍ତ ବି ଚିକିତ୍ସାଳୟ ରଖିବା ପ୍ରୟୋଜନ—ସେମାନଙ୍କୁ ଖୁଆଇବାକୁ ପଡ଼ିବ ଏବଂ ସେମାନଙ୍କର ଯତ୍ନ ନେବାକୁ ପଡ଼ିବ ।

ତା' ପରି ସାଧନ ହେଉଛି 'କଲ୍ୟାଣ' ଅର୍ଥାତ୍ ପବିତ୍ରତା । ନିମ୍ନଲିଖିତ ଗୁଣଗୁଡ଼ିକ କଲ୍ୟାଣ-ଶବ୍ଦବାଚ୍ୟ । ପ୍ରଥମ, ସତ୍ୟ; ଯେ ସତ୍ୟନିଷ୍ଠ, ତାଙ୍କ ନିକଟରେ ସତ୍ୟର ଈଶ୍ୱର ପ୍ରକାଶିତ ହୁଅନ୍ତି । କାୟମନୋବାକ୍ୟରେ ସମ୍ପୂର୍ଣ୍ଣରୂପେ ସତ୍ୟ ସାଧନ କରିବାକୁ ହେବ । ଦ୍ୱିତୀୟ, ଆର୍ଜ୍ଜବ—ଅକପଟ ଭାବ, ସରଳତା—ହୃଦୟ ମଧ୍ୟରେ କୌଣସି ପ୍ରକାର କୁଟିଳତା ରହିବ ନାହିଁ—ମନ ଓ ମୁଖ ଏକ କରିବାକୁ ହେବ । ଯଦିଓ ଟିକିଏ ଟିକିଏ କର୍କଶ ବ୍ୟବହାର କରିବାକୁ ପଡ଼େ, ତଥାପି କୁଟିଳତା ଛାଡ଼ି ସିଧା ଓ ସରଳ ପଥରେ ଚାଲିବା ଉଚିତ । ତୃତୀୟ, ଦୟା । ଚତୁର୍ଥ ଅହିଂସା, ଅର୍ଥାତ୍ କାୟମନୋବାକ୍ୟରେ କୌଣସି ପ୍ରାଣୀର ଅନିଷ୍ଟ ସାଧନ ନ କରିବା । ପଞ୍ଚମ, ଦାନ । ଦାନ ଅପେକ୍ଷା ଶ୍ରେଷ୍ଠ ଧର୍ମ ଆଉ ନାହିଁ । ସେ ହିଁ ସର୍ବାପେକ୍ଷା ହୀନତମ ବ୍ୟକ୍ତି, ଯେ ନିଜ ଆଡ଼କୁ ହାତ ଫେରାଇ ରଖିଛି, ଯେ ପ୍ରତିଗ୍ରହ କରିବାରେ, ଅନ୍ୟଠାରୁ ଦାନ ନେବାରେ ବ୍ୟସ୍ତ; ଆଉ ସେ ହିଁ କେବଳ ଶ୍ରେଷ୍ଠ ବ୍ୟକ୍ତି, ଯାହାର ହାତ ଅପରଙ୍କ ପ୍ରତି ଉନ୍ମୁକ୍ତ ରହିଛି—ଯେ ଅପରକୁ ଦାନ କରିବାରେ ବ୍ୟାପୃତ । ହସ୍ତ ନିର୍ମିତ ହୋଇଛି କେବଳ ଦେବା ପାଇଁ । ଉପବାସରେ ମରିବାକୁ ହେଲେ ମଧ୍ୟ ତାହା ଶ୍ରେୟଃ; କିନ୍ତୁ ରୁଟିର ଶେଷ ଟୁକୁରାଟି ବି ଦାନ କରନ୍ତୁ । ଅପରକୁ ଖାଦ୍ୟ ଦେବାକୁ ଯାଇ ଯଦି ଆପଣଙ୍କର ଅନାହାରରେ ମୃତ୍ୟୁ ହୁଏ, ତେବେ ଆପଣ ଗୋଟିଏ ମୁହୂର୍ତ୍ତରେ ହିଁ ମୁକ୍ତ ହୋଇଯିବେ, ତତ୍କ୍ଷଣାତ୍ ଆପଣ ପୂର୍ଣ୍ଣ ହୋଇଯିବେ; ତତ୍କ୍ଷଣାତ୍ ଆପଣ ଈଶ୍ୱର ହୋଇଯିବେ । ଯେଉଁମାନଙ୍କର ସନ୍ତାନସନ୍ତତି ରହିଛି, ସେମାନେ ତ ପୂର୍ବରୁ ହିଁ ଆବଦ୍ଧ । ସେମାନେ ସବୁ ଦାନ କରିଦେଇ ପାରନ୍ତି ନାହିଁ । ସେମାନେ ସନ୍ତାନମାନଙ୍କୁ ନେଇ ଉପଭୋଗ କରିବାକୁ ଚାହାଁନ୍ତି । ସୁତରାଂ ସେମାନଙ୍କୁ ସେହି ଭୋଗର ମୂଲ୍ୟ ଦେବାକୁ ପଡ଼ିବ । ଜଗତରେ କ'ଣ ଯଥେଷ୍ଟ ଛୁଆପିଲା ନାହାନ୍ତି ? କେବଳ ସ୍ୱାର୍ଥପରତାବଶରେ ଲୋକମାନେ କହିଥାଆନ୍ତି, ମୋର ନିଜର ଗୋଟିଏ ଛୁଆ ଦରକାର । ଷଷ୍ଠ, ଅନଭିଧ୍ୟା—ପରଦ୍ରବ୍ୟରେ ଲୋଭ ପରିତ୍ୟାଗ ବା ନିଷ୍ଫଳ ଚିନ୍ତା ପରିତ୍ୟାଗ ବା ପରକୃତ ଅପରାଧ ସମ୍ବନ୍ଧରେ ଚିନ୍ତା ପରିତ୍ୟାଗ କରିବା ।

ତା'ପରି ସାଧନ ହେଉଛି 'ଅନବସାଦ'—ଏହାର ଠିକ୍ ଶବ୍ଦାର୍ଥ ଚୁପ୍ କରି ବସି ନ ରହିବା, ନୈରାଶ୍ୟଗ୍ରସ୍ତ ନ ହେବା, ଅର୍ଥାତ୍ ପ୍ରଫୁଲ୍ଲତା । ନୈରାଶ୍ୟ ଆଉ ଯାହା ବି ହେଉ, ତାହା ଧର୍ମ ନୁହେଁ । ସର୍ବଦା ହାସ୍ୟବଦନରେ ପ୍ରଫୁଲ୍ଲ ଥିଲେ କୌଣସି ସ୍ତବ ସ୍ତୁତି ବା ପ୍ରାର୍ଥନା

ଅପେକ୍ଷା ଶୀଘ୍ର ଈଶ୍ୱରଙ୍କ ସାନ୍ନିଧ୍ୟ ମିଳେ । ଯେଉଁମାନଙ୍କର ମନ ସର୍ବଦା ବିଷଣ୍ଣ ଓ ତମୋଭାବାଚ୍ଛନ୍ନ, ସେମାନେ ପୁଣି ଭଲ ପାଇବେ କିପରି ? ଯଦି ସେମାନେ ପ୍ରେମର କଥା କହନ୍ତି, ତେବେ ତାହା ମିଥ୍ୟା ବୋଲି ଜାଣିବ । ସେମାନେ ପ୍ରକୃତରେ ଅପରକୁ ଆଘାତ କରିବାକୁ ଚାହାଁନ୍ତି । ରକ୍ଷଣଶୀଳମାନଙ୍କର ବିଷୟ ଭାବି ଦେଖନ୍ତୁ, ସେମାନଙ୍କର ମୁଖ ସର୍ବଦା ଭାରି ହୋଇ ରହିଛି—ସେମାନଙ୍କର ସମୁଦାୟ ଧର୍ମଟି ଯେପରି କି ବାକ୍ୟରେ ଓ କାର୍ଯ୍ୟରେ ଅନ୍ୟର ବିରୁଦ୍ଧାଚରଣ କରିବା । ଅତୀତରେ ସେମାନେ କ'ଣ କରିଛନ୍ତି, ତାହା ଭାବି ଦେଖନ୍ତୁ ଏବଂ ବର୍ତ୍ତମାନ ମଧ୍ୟ ସୁବିଧା ପାଇଲେ ସେମାନେ କଅଣ କରନ୍ତେ, ତାହା ମଧ୍ୟ ଭାବନ୍ତୁ । କ୍ଷମତା କରାୟତ୍ତ ହେବାର ଆଶା ଥିଲେ, ସେମାନେ ଆଗାମୀ କାଲିକି ସମଗ୍ର ଜଗତକୁ ଶୋଣିତସ୍ରୋତରେ ଭସାଇ ଦେଇ ପାରନ୍ତି । କାରଣ ବିଷଣ୍ଣ ଭାବ ହିଁ ସେମାନଙ୍କର ଈଶ୍ୱର । କ୍ଷମତାପନ୍ନ ଏକ ଭୟଙ୍କର ଈଶ୍ୱରଙ୍କ ଉପାସନା କରି ଓ ସର୍ବଦା ବିଷଣ୍ଣ ହୋଇ ରହିଥିବାରୁ ସେମାନଙ୍କ ହୃଦୟରେ ଆଉ ଲେଶମାତ୍ର ପ୍ରେମ ନ ଥାଏ, କାହା ପ୍ରତି ମଧ୍ୟ ଏକ ବିନ୍ଦୁ ଦୟା ନ ଥାଏ । ଅତଏବ ଯେଉଁ ବ୍ୟକ୍ତି ସର୍ବଦା ନିଜକୁ ଦୁଃଖିତ ବୋଧ କରେ, ସେ କେବେହେଲେ ଈଶ୍ୱରଙ୍କୁ ଲାଭ କରିପାରେ ନାହିଁ । 'ମୁଁ ଅତ୍ୟନ୍ତ ଦୁଃଖୀ', ଏପରି କହିବା ଧାର୍ମିକର ଲକ୍ଷଣ ନୁହେଁ, ଏହା ସଇତାନର ଭାବ । ସବୁ ଲୋକଙ୍କୁ ହିଁ ନିଜ ନିଜ ଦୁଃଖର ବୋଝ ବୋହିବାକୁ ପଡ଼େ । ଯଦି ବାସ୍ତବରେ ଆପଣଙ୍କର କିଛି ଦୁଃଖ ଥାଏ, ତା'ହେଲେ ସୁଖୀ ହେବାକୁ ଚେଷ୍ଟା କରନ୍ତୁ, ଦୁଃଖକୁ ଜୟ କରିବାକୁ ଚେଷ୍ଟା କରନ୍ତୁ । ଦୁର୍ବଳ ବ୍ୟକ୍ତି କଦାପି ଭଗବାନଙ୍କୁ ଲାଭ କରିପାରେ ନାହିଁ—ଅତଏବ ଦୁର୍ବଳ ହୁଅନ୍ତୁ ନାହିଁ । ଆପଣଙ୍କୁ ବୀର୍ଯ୍ୟବାନ୍ ହେବାକୁ ପଡ଼ିବ—ଅନନ୍ତ ଶକ୍ତି ଆପଣଙ୍କ ଭିତରେ ରହିଛି, ନ ହେଲେ ଆପଣ କୌଣସି ବିଷୟ ଜୟ କରିବେ କିପରି ? ଆପଣ ଈଶ୍ୱର ଲାଭ କରିବେ କିପରି ?

ତାହା ସାଙ୍ଗକୁ ପୁଣି 'ଅନୁଦ୍ଧର୍ଷ' ସାଧନ କରିବାକୁ ହେବ । ଉଦ୍ଧର୍ଷ ଶବ୍ଦର ଅର୍ଥ ଅତିରିକ୍ତ ଆମୋଦ ପ୍ରମୋଦ—ତାହା ପରିତ୍ୟାଗ କରିବାକୁ ହେବ । କାରଣ ସେହି ଅବସ୍ଥାରେ ମନ କଦାପି ଶାନ୍ତ ହୁଏ ନା, ଚଞ୍ଚଳ ଥାଏ ଏବଂ ପରିଣାମରେ ସର୍ବଦା ଦୁଃଖ ହିଁ ଆସିଥାଏ । କଥାରେ କହନ୍ତି, 'ଯେତେ ହସିବ ସେତେ କାନ୍ଦିବ' । ମଣିଷ ଥରେ ଗୋଟିଏ ଆଡ଼କୁ ଯାଇ ପୁଣି ତାହାର ଚୂଡ଼ାନ୍ତ ବିପରୀତ ଦିଗରେ ଗତି କରିଥାଏ । ଏହିପରି ସର୍ବଦା ହିଁ ହେଉଛି । ମନକୁ ପ୍ରଫୁଲ୍ଲ ଅଥଚ ଶାନ୍ତ ରଖିବାକୁ ହେବ । ମନ ଯେପରି କେବେହେଲେ କୌଣସି ବିଷୟରେ ମାତ୍ରାଧିକ୍ୟ ନ ହୁଏ, କାରଣ ମାତ୍ରାଧିକ୍ୟ ହେଲେ ହିଁ ପରିଣାମରେ ତାହାର ପ୍ରତିକ୍ରିୟା ହେବ । ରାମାନୁଜଙ୍କ ମତରେ ଏହିଗୁଡ଼ିକ ହେଉଛି ଭକ୍ତିର ସାଧନ ।

# ଭକ୍ତର ପ୍ରଥମ ସୋପାନ—ତୀବ୍ର ବ୍ୟାକୁଳତା

ଭକ୍ତିଯୋଗର ଆଚାର୍ଯ୍ୟଗଣ ଈଶ୍ୱରଙ୍କଠାରେ ପରମ ଅନୁରକ୍ତିକୁ ହିଁ ଭକ୍ତିର ଲକ୍ଷଣ ବୋଲି କହିଛନ୍ତି; କିନ୍ତୁ 'ମନୁଷ୍ୟ ଈଶ୍ୱରଙ୍କୁ ଭଲ ପାଇବ କାହିଁକି ?'—ଏହି ପ୍ରଶ୍ନର ଉତ୍ତର ଦେବାକୁ ପଡ଼ିବ ଏବଂ ଯେପର୍ଯ୍ୟନ୍ତ ଆମେ ଏହା ନ ବୁଝିଛୁଁ ସେପର୍ଯ୍ୟନ୍ତ ଭକ୍ତିତତ୍ତ୍ୱର କିଛି ହେଲେ ଧାରଣା କରିପାରିବୁ ନାହିଁ । ଜୀବନରେ ଦୁଇ ପ୍ରକାର ସମ୍ପୂର୍ଣ୍ଣ ପୃଥକ୍ ଆଦର୍ଶ ଦେଖାଯାଏ । ଯେକୌଣସି ଧର୍ମକୁ ମାନୁଥିବା ଯେକୌଣସି ଦେଶର ମାନବ ବୋଧ କରିଥାନ୍ତି ଯେ, ମନୁଷ୍ୟର ଦେହ ଓ ଆତ୍ମା ଦୁଇଟି । କିନ୍ତୁ ମାନବ-ଜୀବନର ଉଦ୍ଦେଶ୍ୟ ସମ୍ବନ୍ଧରେ ବହୁ ମତଭେଦ ଦେଖାଯାଏ ।

ପାଶ୍ଚାତ୍ୟ ଦେଶରେ ମନୁଷ୍ୟ ସାଧାରଣତଃ ଦେହ ପ୍ରତି ଅଧିକ ଝୁଙ୍କ ଦେଇଥାଏ । କିନ୍ତୁ ଭାରତୀୟ ଭକ୍ତିତତ୍ତ୍ୱର ଆଚାର୍ଯ୍ୟଗଣ ମାନବର ଆଧ୍ୟାତ୍ମିକ ଦିଗପ୍ରତି ଅଧିକ ଜୋର୍ ଦେଇ-ଥାନ୍ତି ଏବଂ ଏହା ହିଁ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଜାତି ମଧ୍ୟରେ ସମସ୍ତ ପ୍ରକାର ଭେଦର ମୂଳ ବୋଲି ବୋଧ ହୁଏ । ଏପରିକି ସାଧାରଣରେ ବ୍ୟବହୃତ ଭାଷାରେ ମଧ୍ୟ ଏହି ଭେଦ ସ୍ପଷ୍ଟ ଲକ୍ଷିତ ହୁଏ । ଇଂଲଣ୍ଡରେ ଲୋକେ ମୃତ୍ୟୁ ସମ୍ବନ୍ଧରେ କହିବାକୁ ଯାଇ କହିଥାଆନ୍ତି, "ଅମୁକ ବ୍ୟକ୍ତି ତା'ର ଆତ୍ମାକୁ ପରିତ୍ୟାଗ କଲା" ( gave up the ghost ); ଭାରତରେ ମୃତ୍ୟୁ ବିଷୟରେ କହିବାକୁ ଯାଇ ଲୋକେ କହିଥାଆନ୍ତି, "ଅମୁକ ଦେହତ୍ୟାଗ କଲା" । ପାଶ୍ଚାତ୍ୟ ଭାବ : ମନୁଷ୍ୟ ଗୋଟିଏ ଦେହ ଏବଂ ତାହାର ଆତ୍ମା ଅଛି; ପ୍ରାଚ୍ୟଭାବ : ମନୁଷ୍ୟ ଆତ୍ମାସ୍ୱରୂପ, ତା'ର ଦେହ ଅଛି । ଏହି ପାର୍ଥକ୍ୟରୁ ନାନା ଜଟିଳ ସମସ୍ୟା ଉପୁଜିଥାଏ, ଏହା ସହଜରେ ହିଁ ବୁଝାପଡ଼େ ଯେ, ଯେଉଁ ଆଦର୍ଶକୁ ନେଇ ମନୁଷ୍ୟ ଦେହ ସ୍ୱରୂପ ଏବଂ ତା'ର ଗୋଟିଏ ଆତ୍ମା ଅଛି ବୋଲି କୁହାଯାଇଛି, ସେହି ମତରେ ଦେହ ଉପରେ ସମ୍ପୂର୍ଣ୍ଣ ଗୁରୁତ୍ୱ ଦିଆ-ଯାଇଛି । ଯଦି ପଚାରିବ—ମନୁଷ୍ୟ କଅଣ ପାଇଁ ଜୀବନଧାରଣ କରେ ? ଏହି ଆଦର୍ଶର ଅନୁଗାମୀଗଣ କହିବେ, "ଇନ୍ଦ୍ରିୟସୁଖଭୋଗ ପାଇଁ ଦେଖିବୁ, ଶୁଣିବୁ, ବୁଝିବୁ, ପାନ-ଭୋଜନ କରିବୁ, ଅନେକ ବିଷୟ ଧନ-ଦୌଲତର ଅଧିକାରୀ ହେବୁ—ପିତା ମାତା ଆତ୍ମୀୟସ୍ୱଜନ ସମସ୍ତେ ରହିବେ—ସେମାନଙ୍କ ସହିତ ରହି ଆନନ୍ଦ ଅନୁଭବ କରିବୁ—ଏହା ହିଁ ମାନବ-ଜୀବନର ଉଦ୍ଦେଶ୍ୟ"—ଏହାଠାରୁ ଅଧିକ ଆଉ କିଛି ସେ ଚିନ୍ତା କରିପାରେ ନାହିଁ; ଇନ୍ଦ୍ରିୟାତୀତ ବସ୍ତୁ ବିଷୟରେ କହିଲେ ମଧ୍ୟ ସେ ତାହା କଳ୍ପନା କରିପାରେ ନାହିଁ । ତାହାର ପରଲୋକ ସମ୍ବନ୍ଧରେ ଧାରଣା ହେଲା—ସେ ବର୍ତ୍ତମାନ ଯେଉଁସବୁ ଇନ୍ଦ୍ରିୟ-ସୁଖଭୋଗ କରୁଛି, ତାହା ଭବିଷ୍ୟତରେ ମଧ୍ୟ ଅତୁଟ ରହିବ । ଇହଲୋକରେ ସେ ଯେ ଚିରକାଳ ଏହି ଇନ୍ଦ୍ରିୟ-ସୁଖ ଭୋଗ କରିପାରିବ ନାହିଁ, ତାକୁ ଏଠା ଛାଡ଼ି ଚାଲି ଯିବାକୁ ହେବ, ଏଥିପାଇଁ ସେ ଅତି ଦୁଃଖିତ; ସେ ପୁଣି ମନେକରେ ଯେ, ଯେମିତି ହେଉପଛକେ ସେ ଏପରି ଏକ ସ୍ଥାନକୁ ଯିବ, ଯେଉଁଠି ସମସ୍ତ ସୁଖ ପୁଣି ନୂଆ କରି ଭୋଗ କରିପାରିବ । ତାହାର ଏହିସବୁ ଇନ୍ଦ୍ରିୟମାନ ରହିଥିବ, ସେହିସବୁ ସୁଖଭୋଗ ରହିଥିବ—କେବଳ ଯାହା ସୁଖର ତୀବ୍ରତା ଓ ମାତ୍ରା

ବଢ଼ିଯିବ ମାତ୍ର । ସେ ଯେ ଈଶ୍ୱରଙ୍କର ଉପାସନା କରିବାକୁ ଚାହେଁ, ତା'ର କାରଣ— ଈଶ୍ୱର ତା'ର ଏହି ଉଦ୍ଦେଶ୍ୟସିଦ୍ଧିର ଉପାୟ । ତା'ର ଜୀବନର ଲକ୍ଷ୍ୟ—ବିଷୟ-ସମ୍ଭୋଗ । ସେ କାହା ନିକଟରୁ ହେଉ ପଛକେ ଜାଣିପାରିଛି ଯେ, ଜଣେ ପୁରୁଷ ଅଛନ୍ତି—ଯେ ତାହାକୁ ଦୀର୍ଘ କାଳ ଧରି ଏହି ସମସ୍ତ ସୁଖଭୋଗ ଦେଇପାରନ୍ତି । ସେଥିପାଇଁ ସେ ଈଶ୍ୱରଙ୍କର ଉପାସନା କରେ ।

ଅନ୍ୟ ପକ୍ଷରେ ଭାରତୀୟ ଚିନ୍ତାଧାରା ହେଉଛି : ଈଶ୍ୱର ଆମ ଜୀବନର ଲକ୍ଷ୍ୟସ୍ୱରୂପ । ଈଶ୍ୱରଙ୍କ ଊର୍ଦ୍ଧ୍ୱରେ ଅନ୍ୟ କିଛି ନାହିଁ; ଏହି ସମସ୍ତ ଇନ୍ଦ୍ରିୟ-ସୁଖଭୋଗ ମାଧ୍ୟମରେ ଆମେ ଉଚ୍ଚତର ବସ୍ତୁଲାଭ ନିମିତ୍ତ ଅଗ୍ରସର ହେଉଛୁ ମାତ୍ର । କେବଳ ସେତିକି ନୁହେଁ, ଯଦି ଇନ୍ଦ୍ରିୟସୁଖ ବ୍ୟତୀତ ଆଉ କିଛି ନ ଥାନ୍ତା, ତେବେ ବିଷୟଟା ଭୟଙ୍କର ଓ ବିପର୍ଯ୍ୟୟମୂଳକ ହୋଇ ପଡ଼ନ୍ତା । ଆମେ ଆମର ଦୈନନ୍ଦିନ ଜୀବନରେ ଦେଖୁ ଯେ, ଯେଉଁ ବ୍ୟକ୍ତିର ଇନ୍ଦ୍ରିୟ-ସୁଖଭୋଗ ଯେତେ ଅଳ୍ପ, ତାହାର ଜୀବନ ସେତିକି ଉନ୍ନତ । କୁକୁରଟି ଯେତେବେଳେ ଖାଉଥାଏ, ତା' ଆଡ଼କୁ ଅନାଇଁ ଦେଖ, ମନୁଷ୍ୟ ଏତେ ତୃପ୍ତିର ସହିତ ତା' ଭଳି ଖାଇ ପାରେ ନାହିଁ । ଶୂକର-ଶାବକଟିର ଆଚରଣକୁ ଲକ୍ଷ୍ୟ କର—ସେ ଖାଉ ଖାଉ କି ଆନନ୍ଦ-ସୂଚକ ଧ୍ୱନି କରେ । ସେ ଯେପରିକି ସ୍ୱର୍ଗସୁଖ ପାଉଅଛି । ଯଦି ସେତେବେଳେ କୌଣସି ଶ୍ରେଷ୍ଠ ଦେବତା ଆସି ତା' ଆଡ଼କୁ ଅନାନ୍ତି, ସେ ତାହାଙ୍କୁ ଲକ୍ଷ୍ୟ ମଧ୍ୟ କରିବ ନାହିଁ । ଭୋଜନରେ ହିଁ ତା'ର ସମଗ୍ର ଜୀବନର ଅସ୍ତିତ୍ୱ । ଏପରି କୌଣସି ମନୁଷ୍ୟ ଜାତ ହୋଇ ନାହିଁ, ଯେ କି ଏପରି ତୃପ୍ତିରେ ଖାଇପାରେ । ଭାବି ଦେଖ, ନିମ୍ନତର ପ୍ରାଣୀମାନଙ୍କର ଦୃଷ୍ଟି-ଶକ୍ତି, ଶ୍ରବଣଶକ୍ତି, ପ୍ରଭୃତି କେତେ ତୀକ୍ଷ୍ଣ—ସେମାନଙ୍କର ଇନ୍ଦ୍ରିୟଗୁଡ଼ିକ ଅତ୍ୟଧିକ ଉତ୍କର୍ଷ ଲାଭ କରିଛି । ମନୁଷ୍ୟର ଇନ୍ଦ୍ରିୟଶକ୍ତି କଦାପି ଏହିପରି ହୋଇପାରିବ ନାହିଁ । ଇନ୍ଦ୍ରିୟସୁଖ-ଭୋଗରେ ହିଁ ପଶୁମାନଙ୍କର ଚରମ ଆନନ୍ଦ—ସେମାନେ ଏହି ଆନନ୍ଦରେ ଏକାବେଳକେ ଉନ୍ମତ୍ତ ହୋଇ ଉଠନ୍ତି । ଆଉ ଯିଏ ଯେତେ ଅନୁନ୍ନତ, ଇନ୍ଦ୍ରିୟସୁଖଭୋଗରେ ସେ ସେତିକି ଅଧିକ ଆନନ୍ଦ ପାଇଥାଏ । ଯେତିକି ଯେତିକି ଉଚ୍ଚତର ଅବସ୍ଥାକୁ ଆପଣମାନେ ଯାଉଥିବେ, ସେତିକି ସେତିକି ଯୁକ୍ତିବିଚାର ଓ ପ୍ରେମ ଆପଣମାନଙ୍କର ଲକ୍ଷ୍ୟ ହେଉଥିବ । ଦେଖିବେ, ଆପଣମାନଙ୍କର ବିଚାରଶକ୍ତି ଓ ପ୍ରେମର ଯେତିକି ବିକାଶ ହେବ, ଆପଣମାନଙ୍କର ଇନ୍ଦ୍ରିୟ-ସୁଖସମ୍ଭୋଗର ଶକ୍ତି ସେତିକି ଊଣା ହୋଇଯିବ ।

ଏହି ବିଷୟଟି ମୁଁ ଉଦାହୃତ ଦେଇ ବୁଝାଇ ଦେଉଛି । ଯଦି ଆମେମାନେ ସ୍ୱୀକାର କରୁଁ ଯେ, ପ୍ରତ୍ୟେକ ମନୁଷ୍ୟକୁ ଏକ ନିର୍ଦ୍ଦିଷ୍ଟ ପରିମାଣର ଶକ୍ତି ଦିଆଯାଇଛି— ସେ ଶକ୍ତି ଦେହ ଉପରେ, ନ ହେଲେ ମନ ଉପରେ, ନ ହେଲେ, ଆତ୍ମା ଉପରେ ପ୍ରୟୋଗ କରାଯାଇ-ପାରେ — ତେବେ ସେମାନଙ୍କ ମଧ୍ୟରୁ ଯେକୌଣସି ଗୋଟିଏ ଉପରେ ଯେଉଁ ପରିମାଣର ଶକ୍ତି ପ୍ରୟୋଗ କରାଯିବ, ଅନ୍ୟଗୁଡ଼ିକ ଉପରେ ପ୍ରୟୋଗ କରିବାର ଶକ୍ତି ସେତିକି କମିଯିବ । ସଭ୍ୟଜାତିଗୁଡ଼ିକ ଅପେକ୍ଷା ଅଜ୍ଞ ବା ଅସଭ୍ୟ ଜାତିଗୁଡ଼ିକର ଇନ୍ଦ୍ରିୟଶକ୍ତି ତୀକ୍ଷ୍ଣତର— ଆଉ ବାସ୍ତବ ପକ୍ଷରେ ଆମେ ଇତିହାସରୁ ଏହି ଗୋଟିଏ ଶିକ୍ଷା ପାଇପାରୁ ଯେ,

ଗୋଟିଏ ଜାତି ଯେତିକି ସଭ୍ୟ ହୁଏ, ତା'ର ସ୍ନାୟୁ ସେତିକି ସୂକ୍ଷ୍ମ ହେଉଥାଏ—ଏବଂ ତା'ର ଶରୀର ଦୁର୍ବଳତର ହେଉଥାଏ । କୌଣସି ଅସଭ୍ୟ ଜାତିକୁ ସଭ୍ୟ କରନ୍ତୁ—ଦେଖିବେ, ଠିକ୍ ଏହି ଘଟଣାଟି ଘଟୁଛି । ସେତେବେଳେ ଅନ୍ୟ କୌଣସି ଅସଭ୍ୟ ଜାତି ଆସି ତାହାକୁ ପୁଣି ଜୟ କରିବ । ଦେଖାଯାଏ, ବର୍ବର ଜାତି ହିଁ ସବୁବେଳେ ବିଜୟୀ ହେଉଥାଏ । ଅତଏବ ଆମେ ଦେଖୁ ଯେ, ଯଦି ଆମର ଇଚ୍ଛା ହୁଏ ଯେ, ଆମେ ସବୁବେଳେ ଇନ୍ଦ୍ରିୟସୁଖ-ଭୋଗ କରିବୁ—ତେବେ ବୁଝିବାକୁ ହେବ ଆମେ ନିଜକୁ ପଶୁ ସ୍ତରକୁ ନେବାକୁ ଚାହୁଁଛୁ । ମନୁଷ୍ୟ ଯେତେବେଳେ କହେ, ସେ ଏପରି ଏକ ସ୍ଥାନକୁ ଯିବ, ଯେଉଁଠାରେ ତାହାର ଇନ୍ଦ୍ରିୟ-ସୁଖଭୋଗ ତୀବ୍ରତର ହେବ, ସେତେବେଳେ ସେ ଜାଣିପାରେନାହିଁ – କ'ଣ ଚାହୁଁଛି—ମନୁଷ୍ୟ-ଜନ୍ମରୁ ଚାଲିଯାଇ ପଶୁଜନ୍ମ ଲାଭ କଲେ ତା' ପକ୍ଷରେ ଏଭଳି ସୁଖ-ଭୋଗ ସମ୍ଭବ ହେବ । ଘୁଷୁରି ଯେ ନିତାନ୍ତ ଅଶୁଚିକର ବସ୍ତୁ ଭୋଜନ କରୁଛି, ଏହା ସେ କେବେହେଲେ ଜାଣିପାରେ ନାହିଁ । ତାହା ହିଁ ତା'ର ସ୍ୱର୍ଗ । ସର୍ବଶ୍ରେଷ୍ଠ ଦେବତା ଆସି ତା' ନିକଟରେ ଉପସ୍ଥିତ ହେଲେ ମଧ୍ୟ ସେ ସେମାନଙ୍କୁ ଆଡ଼ ଆଖିରେ ଚାହିଁବ ନାହିଁ । ଭୋଜନରେ ହିଁ ତା'ର ସମଗ୍ର ସତ୍ତା ନିୟୋଜିତ ।

ମନୁଷ୍ୟ ସମ୍ବନ୍ଧରେ ମଧ୍ୟ ତଦ୍ରୂପ । ସେମାନେ ଘୁଷୁରିଛୁଆ ଭଳି ଇନ୍ଦ୍ରିୟବିଷୟ-ରୂପକ ପଙ୍କରେ ଗଡ଼ୁଛନ୍ତି । ତା' ବାହାରେ କ'ଅଣ ଅଛି—ସେମାନେ ଦେଖିପାରୁ ନାହାନ୍ତି । ସେମାନେ କେବଳ ଇନ୍ଦ୍ରିୟ-ସୁଖଭୋଗ ହିଁ ଚାହାଁନ୍ତି ଏବଂ ତାହା ନ ପାଇଲେ ସେମାନଙ୍କୁ ସ୍ୱର୍ଗରୁ ଖସି ପଡ଼ିଲା ଭଳି ଲାଗେ । 'ଭକ୍ତ' ଶବ୍ଦଟିର ଶ୍ରେଷ୍ଠ ଅର୍ଥକୁ ବିଚାର କଲେ ଏଭଳି ବ୍ୟକ୍ତିଗଣ କଦାପି 'ଭକ୍ତ' ହୋଇପାରନ୍ତି ନାହିଁ—ସେମାନେ କେବେହେଲେ ପ୍ରକୃତ ଭଗବଦ୍-ପ୍ରେମିକ ହୋଇପାରନ୍ତି ନାହିଁ । ଏହା ଆହୁରି ମଧ୍ୟ ଯଥାର୍ଥ ଯେ, ଯଦି ଏହି ନିମ୍ନତର ଆଦର୍ଶର ଅନୁସରଣ କରାଯାଏ, ତେବେ ସମୟକ୍ରମେ ଏହି ଭାବଟି ପରିବର୍ତ୍ତିତ ହୋଇଯିବ । ପ୍ରତ୍ୟେକ ବ୍ୟକ୍ତି ବୁଝିବାର କଥା, "ଏହା ଅପେକ୍ଷା ଉଚ୍ଚତର ଏପରି କୌଣସି ବସ୍ତୁ ରହିଛି, ଯାହା ସମ୍ବନ୍ଧରେ ମୁଁ ଜାଣେ ନାହିଁ"—ସେତେବେଳେ ଜୀବନ ପ୍ରତି ଓ ଇନ୍ଦ୍ରିୟ-ବିଷୟସମୂହ ପ୍ରତି ଥିବା ପ୍ରବଳ ଆସକ୍ତି ଧୀରେ ଧୀରେ ଚାଲିଯିବ । ବାଲ୍ୟକାଳରେ ଯେତେବେଳେ ମୁଁ ସ୍କୁଲରେ ପଢ଼ୁଥିଲି, ସେତେବେଳେ ଅନ୍ୟ ଜଣେ ସହପାଠୀ ସହ ଖାଦ୍ୟ ଦ୍ରବ୍ୟ ନେଇ କଳି-ଗୋଳ ଲାଗିଥିଲା; ତା ଦେହରେ ମୋ'ଠାରୁ ଅଧିକ ବଳ ଥିଲା, ଫଳରେ ସେ ମୋ'ହାତରୁ ସହଜରେ ଖାଦ୍ୟଦ୍ରବ୍ୟ ଛଡ଼ାଇ ନେଲା । ସେତେବେଳେ ମୋର ଯେଉଁ ଭାବ ହୋଇଥିଲା, ତାହା ବର୍ତ୍ତମାନ ମଧ୍ୟ ମୋର ମନେ ଅଛି । ମୋର ମନେ ହେଲା, ତା' ଭଳି ଦୁଷ୍ଟ ବାଳକ ଆଉ ଜଗତରେ ଜନ୍ମି ନାହିଁ—ମୁଁ ଯେତେବେଳେ ବଡ଼ ହେବି, ମୋ ଦେହରେ ଜୋର୍ ଆସିବ, ମୁଁ ତାକୁ ଜବତ୍ କରିବି । ମୋର ମନେ ହୋଇଥିଲା, ସେ ଏତେ ଦୁଷ୍ଟ ଯେ, କୌଣସି ଶାସ୍ତି ତା' ପାଇଁ ଯଥେଷ୍ଟ ନୁହେଁ—ତାକୁ ଫାଶି ଦିଆଯିବା ଉଚିତ—ତାକୁ ଖଣ୍ଡ ଖଣ୍ଡ କରି କାଟି ପକାଇବା ଉଚିତ । ବର୍ତ୍ତମାନ ଆମେ ଦୁହେଁ ବଡ଼ ହୋଇଯାଇଛୁ – ଆମ ଉଭୟଙ୍କ ମଧ୍ୟରେ ବର୍ତ୍ତମାନ ନିବିଡ଼ ବନ୍ଧୁତ୍ୱ । ଏହିଭଳି ସମଗ୍ର ଜଗତ୍ ଶିଶୁତୁଲ୍ୟ ମନୁଷ୍ୟମାନଙ୍କରେ

ପୂର୍ତ୍ତି । ଖାଇବା ତଥା ଉପାଦେୟ ଖାଦ୍ୟ ସେମାନଙ୍କର ସର୍ବସ୍ୱ । ଯଦି ଏହାର ଟିକିଏ କେଉଁଠି ବ୍ୟତିକ୍ରମ ହୁଏ, ତେବେ ସର୍ବନାଶ । ସେମାନେ କେବଳ ଭଲ ଭଲ ଖାଦ୍ୟ ପଦାର୍ଥର ସ୍ୱପ୍ନ ଦେଖନ୍ତି ଏବଂ ସେମାନଙ୍କର ଭବିଷ୍ୟତ-ଜୀବନ ସମ୍ବନ୍ଧରେ ଧାରଣା ଯେ, ସର୍ବଦା ସର୍ବତ୍ର ପ୍ରଚୁର ଖାଦ୍ୟ ପଦାର୍ଥ ରହିଛି । ରେଡ଼ଇଣ୍ଡିଆନ୍‌ମାନଙ୍କର ଧାରଣା—ମୃଗୟା ପାଇଁ ସ୍ୱର୍ଗ ଗୋଟିଏ ଉତ୍ତମ ସ୍ଥାନ । ଆମ ସମସ୍ତଙ୍କର ସ୍ୱର୍ଗ ବିଷୟରେ ଧାରଣା ନିଜ ନିଜ ବାସନାର ଅନୁରୂପ—କିନ୍ତୁ ଆମର ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ଯେତେ ଯେତେ ଉଚ୍ଚତର ବସ୍ତୁ ଦର୍ଶନ କରିବାର ଶକ୍ତି ଜନ୍ମେ, ସେତେ ଆମେ ସମୟେ ସମୟେ ଏ ସମସ୍ତର ଅତୀତ ଉଚ୍ଚତର ବସ୍ତୁର କିଞ୍ଚିତ୍‌କର ଆଭାସ ପାଇଥାଉ । ଆଧୁନିକ ଯୁଗରେ ସାଧାରଣତଃ ଯେପରି ସକଳ ବିଷୟରେ ବିଶେଷତଃ ଭବିଷ୍ୟତ ଜୀବନ ସମ୍ବନ୍ଧରେ ଅବିଶ୍ୱାସ ପୋଷଣ କରାଯାଉଛି, ତାହାକୁ ଅତିକ୍ରମ କରିବାକୁ ହେବ । ମୁଁ ସେପରି ଭାବରେ ଏ ସମସ୍ତ ଧାରଣା ପରିତ୍ୟାଗ କରିବାକୁ କହୁନାହିଁ—ତଦ୍ୱାରା ସବୁ କିଛି ଉଡ଼ାଇ ଦିଆଗଲା—ସମସ୍ତ ଭାବରାଶିକୁ ନଷ୍ଟ କରି ପକାଇ ଦିଆଗଲା—ଯେଉଁ ନାସ୍ତିକ ଏହିଭଳି ସବୁ କିଛି ଉଡ଼ାଇ ଦିଏ, ସେ ଭ୍ରାନ୍ତ; କିନ୍ତୁ ଯେ ଭକ୍ତ, ସେ ଏହା ଅପେକ୍ଷା ଉଚ୍ଚତର ତତ୍ତ୍ୱ ଦର୍ଶନ କରିଥାଏ । ନାସ୍ତିକ ସ୍ୱର୍ଗକୁ ଯିବାକୁ ଚାହେଁ ନାହିଁ, କାରଣ ତା' ମତରେ ସ୍ୱର୍ଗ ନାହିଁ । ପୁନଶ୍ଚ ଭଗବତ୍-ଭକ୍ତ ସ୍ୱର୍ଗକୁ ଯିବାକୁ ଚାହେଁ ନାହିଁ; କାରଣ ସେ ଏହାକୁ ପିଲାଖେଳ ବୋଲି ମନେ କରେ । ସେ ଚାହେଁ କେବଳ ଈଶ୍ୱରଙ୍କୁ ।

ଈଶ୍ୱରଙ୍କ ବ୍ୟତୀତ ଜୀବନର ଶ୍ରେଷ୍ଠତର ଲକ୍ଷ୍ୟ ଆଉ ବା କଅଣ ହୋଇପାରେ ? ସ୍ୱୟଂ ଈଶ୍ୱର ହିଁ ମନୁଷ୍ୟର ସର୍ବୋଚ୍ଚ ଲକ୍ଷ୍ୟ—ତାହାଙ୍କୁ ଦର୍ଶନ କର, ତାହାଙ୍କୁ ସମ୍ଭୋଗ କର । ଈଶ୍ୱରଙ୍କଠାରୁ ଉଚ୍ଚତର ବସ୍ତୁର ଧାରଣା କରିବାକୁ ଆମେ ଅସମର୍ଥ; କାରଣ ଈଶ୍ୱର ପୂର୍ଣ୍ଣସ୍ୱରୂପ । ପ୍ରେମଠାରୁ କୌଣସି ଉଚ୍ଚତର ସୁଖ ଆମେ ଧାରଣା କରିପାରୁ ନାହିଁ, କିନ୍ତୁ ଏହି ଶବ୍ଦଟି ବିଭିନ୍ନ ଅର୍ଥରେ ବ୍ୟବହୃତ ହୋଇଥାଏ । ପ୍ରେମ-ଶବ୍ଦ ଦ୍ୱାରା ସଂସାରର ସାଧାରଣ ସ୍ୱାର୍ଥପର ଭଲ ପାଇବା ବୁଝାଯାଏ ନାହିଁ—ତାହାକୁ ପ୍ରେମ ନାମରେ ଅଭିହିତ କରିବା ଈଶ୍ୱର-ନିନ୍ଦା ସହ ସମାନ । ଆମର ପୁତ୍ର-କଳତ୍ରଙ୍କ ପ୍ରତି ପ୍ରେମ ଜୀବଜନ୍ତୁଙ୍କର ପ୍ରେମ ଭଳି । ଯେଉଁ ଭଲ ପାଇବା ସମ୍ପୂର୍ଣ୍ଣ ନିଃସ୍ୱାର୍ଥ ତାହା ହିଁ ଏକମାତ୍ର ପ୍ରେମ-ଶବ୍ଦବାଚ୍ୟ ଏବଂ ତାହା କେବଳ ଈଶ୍ୱରଙ୍କ ପ୍ରତି ହେବା ସମ୍ଭବ । ଏହି ପ୍ରେମ ଲାଭ କରିବା ଅତି କଠିନ ବିଷୟ । ଆମେ ପିତାମାତା, ପୁତ୍ରକନ୍ୟା ଓ ଅନ୍ୟାନ୍ୟ ସମସ୍ତଙ୍କୁ ଭଲ ପାଇଥାଉଁ—ଏହି ସମସ୍ତ ଭିନ୍ନ ଭିନ୍ନ ପ୍ରକାର ସୁଖ ପାଇବା ବା ଆସକ୍ତି ଭିତର ଦେଇ ଆମେ ଚାଲିଛୁ । ଆମେ ଧୀରେ ଧୀରେ ପ୍ରୀତି-ବୃତ୍ତିର ଅନୁଶୀଳନ କରୁଛୁ, କିନ୍ତୁ ଅଧିକାଂଶ କ୍ଷେତ୍ରରେ ସେହି ବୃତ୍ତିର ପରିଚାଳନାରୁ କିଛି ଶିକ୍ଷା ପାଇପାରୁ ନାହୁଁ—କେବଳ ଗୋଟିଏ ମାତ୍ର ସୋପାନରେ ଆରୋହଣ କରିବା ପରେ ଆମର ଗତି ଅବରୁଦ୍ଧ ହୁଏ, ଆମେ ଗୋଟିଏ ବ୍ୟକ୍ତିଠାରେ ହିଁ ଆସକ୍ତ ହୋଇ ପଡ଼ୁ । କୌଣସି କୌଣସି ସମୟରେ ମନୁଷ୍ୟ ଏହି ବନ୍ଧନ ଅତିକ୍ରମ କରି ବାହାରି ଆସିଥାଏ । ମନୁଷ୍ୟ ଏହି ଜଗତରେ ଚିରକାଳ ସ୍ତ୍ରୀ-ପୁତ୍ର, ଧନ-ମାନ ଏହି ସବୁଆଡ଼କୁ ଦଉଡ଼ୁଛି—ସମୟ ସମୟରେ ସେ ବିଶେଷ ଧକ୍କା ଖାଇ ସଂସାରର ଯଥାର୍ଥ ରୂପ କ'ଣ ତାହା ବୁଝି-

ପାରୁଛ । ଏହି ଜଗତରେ କେହିହେଲେ ଈଶ୍ୱରଙ୍କ ବ୍ୟତୀତ ଅନ୍ୟ କାହାକୁ ବସ୍ତୁତଃ ଭଲ ପାଇପାରିବ ନାହିଁ । ଶେଷରେ ମଣିଷ ବୁଝେ ଯେ, ମଣିଷର ଭଲ ପାଇବା ସବୁ ଶୂନ୍ୟ । ମଣିଷ ଭଲ ପାଇପାରେ ନାହିଁ—ସେ କେବଳ କଥା କହେ । "ଆହା ! ପ୍ରାଣନାଥ, ମୁଁ ତୁମକୁ ଭାରି ଭଲ ପାଏ" ବୋଲି ପତ୍ନୀ ପତିକୁ ଚୁମ୍ବନ କରି ଅବିରଳଧାରାରେ ଅଶ୍ରୁ ବିସର୍ଜ୍ଜନ କରି ପ୍ରତିପ୍ରେମର ପରାକାଷ୍ଠା ପ୍ରଦର୍ଶନ କରେ; କିନ୍ତୁ ସେହି ସ୍ୱାମୀର ମୃତ୍ୟୁ ହେବା ସଙ୍ଗେ ସଙ୍ଗେ ସେ ଖୋଜି ହୁଏ ତା'ର ବ୍ୟାଙ୍କରେ କେତେ ଟଙ୍କା ଅଛି ଏବଂ କାଲିକୁ ତାହାର ଗତି କଅଣ ହେବ—ଏହା ଭାବି ଆକୁଳ ହୁଏ । ସ୍ୱାମୀ ମଧ୍ୟ ସ୍ତ୍ରୀକୁ ଖୁବ୍ ଭଲ ପାଇଥାଏ; କିନ୍ତୁ ସ୍ତ୍ରୀ ଅସୁସ୍ଥ ହୋଇ ପଡ଼ିଲେ, ରୂପ-ଯୌବନ ହରାଇ ବିରୂପା ଦିଶିଲେ ଅଥବା ସାମାନ୍ୟ ଦୋଷ କଲେ ଆଉ ତାକୁ ଆଡ଼ ଆଖିରେ ଦେଖେ ନାହିଁ । ଜଗତର ସବୁପ୍ରକାର ଭଲ ପାଇବା ଅନ୍ତଃସାରଶୂନ୍ୟ ଓ କପଟତାପୂର୍ଣ୍ଣ ।

ସାନ୍ତ ଜୀବ କଦାପି ଭଲ ପାଇପାରେ ନାହିଁ, ଅଥବା ଭଲ ପାଇବାର ଯୋଗ୍ୟ ହୋଇପାରେ ନାହିଁ । ପ୍ରତି ମୁହୂର୍ତ୍ତିରେ ଯେତେବେଳେ ଭଲ ପାଉଥିବା ପାତ୍ରଟିର ଦେହ ଓ ତା' ସହିତ ମନର ପରିବର୍ତ୍ତନ ଘଟୁଛି, ସେତେବେଳେ ଏହି ଜଗତରେ ଅନନ୍ତ ପ୍ରେମ ଆଉ କ'ଣ ବା ଆଶା କରାଯାଇପାରେ ? ଈଶ୍ୱରଙ୍କ ବ୍ୟତୀତ ଅନ୍ୟ କାହା ପ୍ରତି ପ୍ରକୃତ ପ୍ରେମ ସମ୍ଭବ ନୁହେଁ । ତା'ହେଲେ ଏ ସମସ୍ତ ପ୍ରେମ-ପ୍ରୀତି—କାହିଁକି ? ଏ ସବୁ କେବଳ ଭ୍ରମମାତ୍ର । ପ୍ରେମର ବିଭିନ୍ନ ଅବସ୍ଥା ମାତ୍ର । ମହାଶକ୍ତି ଆମର ପଶ୍ଚାଦ୍ଦେଶରୁ ଭଲ ପାଇବା ନିମିତ୍ତ ଆମ-ମାନଙ୍କୁ ପ୍ରେରଣା ଦେଉଛନ୍ତି—ଆମେ ଜାଣୁନାହୁଁ କେଉଁଠାରେ ସେହି ପ୍ରେମାସ୍ପଦଙ୍କୁ ଖୋଜିବୁ; କିନ୍ତୁ ଏହି ପ୍ରେମ ହିଁ ଆମକୁ ତାଙ୍କର ଅନୁସନ୍ଧାନ ଆଡ଼କୁ ଅଗ୍ରସର କରାଇ ଦେଉଛି । ବାର-ମ୍ବାର ଆମର ଭ୍ରମ ଧରା ପଡ଼ି ଯାଉଛି । ଆମେ ଗୋଟାଏ ଜିନିଷ ଧରିଲୁ—ତାହା ଆମ ହାତରୁ ଖସିଗଲା—ତା'ପରେ ଆମେ ଆଉ କିଛି ଜିନିଷ ପାଇଁ ହାତ ବଢ଼ାଇଲୁ । ଏହିଭଳି ଆମେ ଆଗକୁ ଆଗକୁ ଗଲେ ଶେଷରେ ଆଲୋକ ମିଳିବ, ଫଳରେ ଆମେ ଈଶ୍ୱରଙ୍କ ନିକଟରେ ଉପସ୍ଥିତ ହେବା—ସେ ହିଁ କେବଳ ଆମମାନଙ୍କୁ ଯଥାର୍ଥରେ ଭଲ ପାଇଥାଆନ୍ତି, ତାଙ୍କର ଭଲ ପାଇବାରେ କୌଣସି ପ୍ରକାର ପରିବର୍ତ୍ତନ ନାହିଁ, ସେ ସର୍ବଦା ଆମମାନଙ୍କୁ ଗ୍ରହଣ କରିବାକୁ ପ୍ରସ୍ତୁତ । ମୁଁ ଅନିଷ୍ଟ କରିବାକୁ ବସିଲେ ଆପଣମାନଙ୍କ ମଧ୍ୟରୁ କିଏ ଅବା କେତେ ସମୟ ମୋର ଅତ୍ୟାଚାର ସହ୍ୟ କରିପାରିବେ ? ଯାହା ମନରେ କ୍ରୋଧ, ଘୃଣା ବା ଈର୍ଷା ନାହିଁ, ଯାହାଙ୍କ ସାମ୍ୟଭାବ କଦାପି ନଷ୍ଟ ହୁଏ ନାହିଁ, ଯାହାଙ୍କ ଜନ୍ମ ନାହିଁ, ମୃତ୍ୟୁ ନାହିଁ—ସେ ଈଶ୍ୱରଙ୍କ ବ୍ୟତୀତ ଆଉ କିଏ ହୋଇ ପାରନ୍ତି ? ତେବେ ଈଶ୍ୱରଙ୍କୁ ଲାଭ କରିବା ଅତ୍ୟନ୍ତ କଠିନ ଏବଂ ତାହାଙ୍କ ନିକଟକୁ ଯିବାକୁ ହେଲେ ବହୁ ଦୀର୍ଘପଥ ଅତିକ୍ରମ କରିବାକୁ ପଡ଼େ—ଅତି ଅଳ୍ପ ଲୋକ ହିଁ ତାଙ୍କୁ ପାଇଥାନ୍ତି । ଆମେ ଶିଶୁଭଳି ହାତ, ଗୋଡ଼, ହଲଉଛୁ ଯାହା । ଲକ୍ଷ ଲକ୍ଷ ଲୋକ ଧର୍ମର ଦୋକାନଦାରି କରିଥାଆନ୍ତି, ସମସ୍ତେ ଧର୍ମ ଧର୍ମ କହି ହେଉଥାଆନ୍ତି; କିନ୍ତୁ ଅତି ଅଳ୍ପ ଲୋକ ହିଁ ପ୍ରକୃତ ଧର୍ମ ଲାଭ କରିଥାଆନ୍ତି । ଗୋଟିଏ ଶତାବ୍ଦୀ ମଧ୍ୟରେ ଅତି ଅଳ୍ପ ଲୋକ ସେହି ଈଶ୍ୱରପ୍ରେମ ଲାଭ କରିଥାଆନ୍ତି; କିନ୍ତୁ ଯେପରି

ଗୋଟିଏ ସୂର୍ଯ୍ୟର ଉଦୟରେ ସମଗ୍ର ଅନ୍ଧକାର ତିରୋହିତ ହୁଏ, ସେହିପରି ଏହି ଅଳ୍ପସଂଖ୍ୟକ ଯଥାର୍ଥ ଧାର୍ମିକ ଭଗବଦ୍ଭକ୍ତ ପୁରୁଷମାନଙ୍କର ଅଭ୍ୟୁଦୟରେ ସମଗ୍ର ଦେଶ ଧନ୍ୟ ଓ ପବିତ୍ର ହୋଇଯାଏ । ଏଭଳି ଈଶ୍ୱର-ପୁତ୍ରଙ୍କ ଆବିର୍ଭାବରେ ସମଗ୍ର ଦେଶ ଧନ୍ୟ ହୋଇଯାଏ । ଏକ ଏକ ଶତାବ୍ଦୀ ମଧ୍ୟରେ ସମଗ୍ର ଜଗତରେ ଏହିଭଳି ଖୁବ୍ କମ୍ ଲୋକ ଜନ୍ମଗ୍ରହଣ କରନ୍ତି; କିନ୍ତୁ ଆମ ସମସ୍ତଙ୍କୁ ଏହିଭଳି ହେବା ପାଇଁ ଚେଷ୍ଟା କରିବାକୁ ହେବ । ଆପଣ ବା ମୁଁ ଯେ ସେହି ଅଳ୍ପ କେତେଜଣଙ୍କ ମଧ୍ୟରେ ନାହୁଁ ସେକଥା କିଏ କହିଲା ? ଅତଏବ ଆମକୁ ଭକ୍ତି-ଲାଭ ନିମିତ୍ତ ଚେଷ୍ଟା କରିବାକୁ ହେବ । ଆମେ ବରାବର କହୁଥାଉ—ସ୍ତ୍ରୀ ତା'ର ସ୍ୱାମୀକୁ ଭଲ ପାଉଛି, ସ୍ତ୍ରୀ ମଧ୍ୟ ଭାବେ— ମୁଁ ପତିଗତପ୍ରାଣା; କିନ୍ତୁ ଗୋଟିଏ ସନ୍ତାନ ହେବା ସଙ୍ଗେ ସଙ୍ଗେ ତା'ର ଅର୍ଦ୍ଧେକ ବା ତଦୂର୍ଦ୍ଧ୍ୱ ସ୍ନେହ ସନ୍ତାନପ୍ରତି ଚାଲିଯାଏ । ସେ ମଧ୍ୟ ନିଜେ ଜାଣିପାରିବ ଯେ, ସ୍ୱାମୀପ୍ରତି ତା'ର ଆଉ ପୂର୍ବଭଳି ସ୍ନେହ ନାହିଁ । ଆମେ ସବୁବେଳେ ଦେଖିବାକୁ ପାଉଁ ଯେ, ଯେତେବେଳେ କୌଣସି ଅଧିକ ପ୍ରିୟତର ବସ୍ତୁ ଆମ ନିକଟରେ ଉପସ୍ଥିତ ହୁଏ, ସେତେବେଳେ ପୂର୍ବର ପ୍ରୀତିପାତ୍ର ଆମଠାରୁ ଧୀରେ ଧୀରେ ଅନ୍ତର୍ହିତ ହୁଏ । ଯେତେବେଳେ ଆପଣ ସ୍କୁଲରେ ପଢ଼ୁଥାଆନ୍ତି, ସେତେବେଳେ ନିଜର କେତେ ଜଣ ସହ-ପାଠୀଙ୍କୁ ଜୀବନର ପରମ ପ୍ରିୟତମ ବନ୍ଧୁ ବୋଲି ମନେ କରିଥାଆନ୍ତି, ଅଥବା ବାପମାଆଙ୍କୁ ଏହିଭଳି ଭଲ ପାଇଥାନ୍ତି । ତା'ପରେ ବିବାହ ହେଲା, ସେତେବେଳେ ସ୍ୱାମୀ ଓ ସ୍ତ୍ରୀ ଉଭୟ ପରସ୍ପର ପ୍ରୀତି-ଆସ୍ପଦ ହୋଇ ଉଠିଲେ, ପୂର୍ବଭାବ ଅନ୍ତର୍ହିତ ହେଲା, ନୂତନ ପ୍ରେମ ପ୍ରବଳତମ ହୋଇ ଉଠିଲା । ଆକାଶରେ ପ୍ରଥମେ ଗୋଟିଏ ତାରା ଜଳି ଉଠିଲା, ପରେ ପରେ ତଦପେକ୍ଷା ଆହୁରି ବୃହତ୍ତର ଗୋଟିଏ ନକ୍ଷତ୍ର ଲକ୍ଷିତ ହେଲା, ତା'ପରେ ତଦପେକ୍ଷା ଆଉ ଗୋଟିଏ ବୃହତ୍ତର ନକ୍ଷତ୍ରର ଉଦୟ ହେଲା, ଅବଶେଷରେ ସୂର୍ଯ୍ୟ ଉଠିଲା—ସେତେବେଳେ ସୂର୍ଯ୍ୟ-ରଶ୍ମିରେ କ୍ଷୁଦ୍ରତର ଆଲୋକଗୁଡ଼ିକ ମ୍ଳାନ ହୋଇଗଲା । ସୂର୍ଯ୍ୟ ହିଁ ସେହି ଈଶ୍ୱର । ଏହି ତାରାଗୁଡ଼ିକ ଆମର କ୍ଷୁଦ୍ର କ୍ଷୁଦ୍ର ସାଂସାରିକ ଭଲ ପାଇବା । ଯେତେବେଳେ ସେହି ସୂର୍ଯ୍ୟ ଉଦିତ ହୁଏ, ସେତେବେଳେ ମନୁଷ୍ୟ ଉନ୍ମାଦ ହୋଇଯାଏ । ଏହିଭଳି ବ୍ୟକ୍ତିକୁ ଏମର୍ସନ 'ଭଗବତ୍-ପ୍ରେମୋନ୍ମତ୍ତ ମାନବ' ( a God-intoxicated man ) ବୋଲି କହି-ଅଛନ୍ତି । ସେତେବେଳେ ତାହାଠାରେ ମନୁଷ୍ୟ, ଜୀବଜନ୍ତୁ, ସମସ୍ତେ ରୂପାନ୍ତରିତ ହୋଇ ଈଶ୍ୱରରୂପରେ ପରିଣତ ହୁଅନ୍ତି—ସବୁ କିଛି ସେହି ଏକ ପ୍ରେମ-ସମୁଦ୍ରରେ ନିମଜ୍ଜିତ ହୁଏ । ସାଧାରଣ ପ୍ରେମ କେବଳ ଜୈବ ଆକର୍ଷଣ ମାତ୍ର । ତାହା ନ ହେଲେ ପ୍ରେମରେ ସ୍ତ୍ରୀ-ପୁରୁଷ-ଭେଦରେ କି ପ୍ରୟୋଜନ ? କୌଣସି ମୂର୍ତ୍ତି ସମ୍ମୁଖରେ ନତଜାନୁ ହୋଇ ପ୍ରାର୍ଥନା କଲେ ତାହା ଘୋର ପୌତ୍ତଳିକତା; କିନ୍ତୁ ସ୍ୱାମୀ ବା ସ୍ତ୍ରୀ ସମ୍ମୁଖରେ ଏହିଭଳି ନତଜାନୁ ହେବାରେ କୌଣସି ଦୋଷ ନ ଥାଏ !

ଏହି ସମସ୍ତ ଭିତର ଦେଇ ଆମକୁ ଯିବାକୁ ହେବ । ସଂସାରରେ ପ୍ରେମର ବହୁ ସ୍ତର ଦେଇ ଆମକୁ ଯିବାକୁ ହୋଇଥାଏ । ପ୍ରଥମେ ଆମର ଭୂମିକୁ ପରିଷ୍କାର କରିନେବାକୁ ହେବ । ଜୀବନକୁ କେଉଁ ଦୃଷ୍ଟିରେ ଦେଖିବା, ତାହାର ଉପରେ ଭଲ ପାଇବାର ସମଗ୍ର ତତ୍ତ୍ୱ ନିର୍ଭର

କରିବା । ଏହି ସଂସାର ହିଁ ଜୀବନର ଚରମ ଲକ୍ଷ୍ୟ—ଏଭଳି ଭାବିବା ହିଁ ପଶୁ-ଜନୋଚିତ ଓ ମନୁଷ୍ୟର ଘୋର ଅବନତିର କାରଣ । ଯେଉଁ ବ୍ୟକ୍ତି ଏହି ଧାରଣା ନେଇ ଜୀବନ-ସଂଗ୍ରାମରେ ଅଗ୍ରସର ହୁଏ, ସେ କ୍ରମେ କ୍ଷୀଣ ହୋଇଯାଏ । ସେ କେବେହେଲେ ଉଚ୍ଚତର ସ୍ତରକୁ ଆରୋହଣ କରିପାରିବ ନାହିଁ—ଜଗତର ଅନ୍ତରାଳରେ ଅବସ୍ଥିତ ତତ୍ତ୍ୱର ବିସ୍ମୟକର ଆଭାସ ସେ କେବେ ହେଁ ପାଇବ ନାହିଁ, ସେ ସର୍ବଦା ଇନ୍ଦ୍ରିୟର ଦାସ ହୋଇ ରହିଥିବ । ସେ କେବଳ ଟଙ୍କା ପାଇଁ ଚେଷ୍ଟା କରିବ—ଯଦ୍ୱାରା ସେ ଭଲ ଭଲ ଖାଦ୍ୟ ପଦାର୍ଥ ଖାଇପାରିବ । ଏଭଳି ଜୀବନ ଅପେକ୍ଷା ମୃତ୍ୟୁ ହିଁ ଶ୍ରେୟଃ ! ସଂସାରର ଦାସ, ଇନ୍ଦ୍ରିୟର ଦାସ—ହେ ମନୁଷ୍ୟଗଣ ! ଆପଣାକୁ ଜାଗ୍ରତ କର, ଉଚ୍ଚତର ତତ୍ତ୍ୱ ଆଉ ମଧ୍ୟ କିଛି ଅଛି । ଆପଣମାନେ କଅଣ ମନେ-କରନ୍ତି ଯେ, ଚକ୍ଷୁ, କର୍ଣ୍ଣ ଓ ଘ୍ରାଣେନ୍ଦ୍ରିୟର ଦାସ ହୋଇ ରହିବା ପାଇଁ ଏହି ମନୁଷ୍ୟର—ଏହି ଅନନ୍ତ ଆତ୍ମାର ଦେହ ଧାରଣ ? ଆମ ପଛରେ ଅନନ୍ତ ସର୍ବଜ୍ଞ ଆତ୍ମା ରହିଛନ୍ତି—ସେସବୁ କରିପାରନ୍ତି; ସେ ସବୁ ବନ୍ଧନ ଛେଦନ କରିପାରନ୍ତି । ପ୍ରକୃତପକ୍ଷରେ ଆପଣ ହିଁ ସେହି ଆତ୍ମା ଏବଂ ପ୍ରେମ ବଳରେ ଆପଣଙ୍କର ସେହି ଶକ୍ତିର ଉଦୟ ହୋଇପାରେ । ଆପଣଙ୍କର ମନେ-ରଖିବା ଉଚିତ, ଏହା ହିଁ ଆମର ଆଦର୍ଶ । ଗୋଟିଏ ଦିନରେ ଏହି ଅବସ୍ଥା ଲାଭ କରିଯାଇ ପାରେ ନାହିଁ । ଆମେ ହୁଏତ କଳ୍ପନା କରିପାରୁ ଯେ ଆମେ ସେହି ଅବସ୍ଥା ପ୍ରାପ୍ତ ହୋଇଅଛୁ; କିନ୍ତୁ ଶେଷ ପର୍ଯ୍ୟନ୍ତ ତାହା କଳ୍ପନାବ୍ୟତୀତ ଆଉ କିଛି ନୁହେଁ । ସେହି ଅବସ୍ଥା ବର୍ତ୍ତମାନ ମଧ୍ୟ ବହୁ ଦୂରରେ । ଯେ ଯେଉଁ ଅବସ୍ଥାରେ ରହିଛନ୍ତି, ଯେବେ ସମ୍ଭବ ହୁଏ, ସେହି ଅବସ୍ଥାଠାରୁ ଅଧିକ ଉଚ୍ଚତର ଅବସ୍ଥାରେ ଉପନୀତ ହେବା ପାଇଁ ତାଙ୍କୁ ସାହାଯ୍ୟ କରିବାକୁ ହେବ । ମନୁଷ୍ୟ ଜଡ଼ବାଦ ଉପରେ ହିଁ ନିର୍ଭରଶୀଳ । ଆପଣ, ମୁଁ, ସମସ୍ତେ ଜଡ଼ବାଦୀ । ଆମେ ଈଶ୍ୱରଙ୍କ ସମ୍ବନ୍ଧରେ—ଆତ୍ମତତ୍ତ୍ୱ ସମ୍ବନ୍ଧରେ ଯାହା କିଛି କହିଥାଉ ତାହା ବେଶ୍ ଭଲ କଥା; କିନ୍ତୁ ବୁଝିବାକୁ ହେବ, ସେଗୁଡ଼ିକ ଆମ ସମାଜରେ ପ୍ରଚଳିତ କେତେଗୁଡ଼ିଏ କଥା ମାତ୍ର; ଆମେ ଶୁଆପରି ସେଗୁଡ଼ିକ ଶିଖିଛୁ ଏବଂ ମଝିରେ ମଝିରେ ସେସବୁକୁ ଆବୃତ୍ତି କରୁଛୁ ଯାହା । ଏଣୁ ଆମେ ଯେଉଁ ଅବସ୍ଥାରେ ରହିଛୁ ଅର୍ଥାତ୍ ଆମେ ଯେ ବର୍ତ୍ତମାନ ପର୍ଯ୍ୟନ୍ତ ଜଡ଼ବାଦୀ—ସେହି ଅବସ୍ଥାରୁ ଆରମ୍ଭ କରିବାକୁ ହେବ ଏବଂ ଆମ ଜଡ଼ର ସାହାଯ୍ୟ ଅବଶ୍ୟ ନେବାକୁ ପଡ଼ିବ । ଏହିଭଳି ଧୀରେ ଧୀରେ ଅଗ୍ରସର ହୋଇ ଆମେ ପ୍ରକୃତ ଆତ୍ମବାଦୀ ବା ଚୈତନ୍ୟବାଦୀ ହୋଇପାରିବୁ । ନିଜକୁ ଆତ୍ମା ବୋଲି ବୁଝିବୁ, ଆତ୍ମା ବା ଚୈତନ୍ୟ କି ବସ୍ତୁ, ତାହା ବୁଝିବୁ ଏବଂ ସେତେବେଳେ ଦେଖିବୁ—ଯେଉଁ ଜଗତକୁ ଆମେ ଅନନ୍ତ ବୋଲି କହିଥାଉଁ, ତାହା ଅନ୍ତରାଳରେ ଅବସ୍ଥିତ ସୂକ୍ଷ୍ମ ଜଗତର ଗୋଟିଏ ସ୍ଥୂଳ ବାହ୍ୟରୂପ ମାତ୍ର ।

ଏହା ବ୍ୟତୀତ ଆମର ଆହୁରି କିଛି ପ୍ରୟୋଜନ ରହିଛି । ଆପଣମାନେ ବାଇବେଲରେ 'ଯୀଶୁଖ୍ରୀଷ୍ଟଙ୍କର ଶୈଳୋପଦେଶ' ( Sermon on the Mount— ) ପାଠ କରି-ଛନ୍ତି : "ମାଗ, ତେବେ ତୁମକୁ ଦିଆଯିବ; ଆଘାତ କର ତେବେ ଯାଇ ଦ୍ୱାର ଖୋଲିବ; ଖୋଜ, ତାହାହେଲେ ପାଇବ ।" ମୁସ୍କିଲ ଏହି ଯେ, ମାଗେ କିଏ, ଖୋଜେ କିଏ ? ଆମେ ସମସ୍ତେ କହୁଁ, ଆମେ ଈଶ୍ୱରଙ୍କୁ ଜାଣିଛୁ । ଈଶ୍ୱର ନାହାନ୍ତି—ଏହା ପ୍ରତିପାଦନ କରିବା

ପାଇଁ କେହି ଜଣେ ବଡ଼ ବହିଟିଏ ଲେଖିଲେ, ଆଉ ଜଣେ ତାଙ୍କର ଅସ୍ତିତ୍ୱ ପ୍ରମାଣ କରିବା ଲାଗି ଆହୁରି ବିରାଟ ଗ୍ରନ୍ଥଟିଏ ରଚନା କଲେ । ଆଉ ଜଣେ ସାରା ଜୀବନ ଧରି ଈଶ୍ୱରଙ୍କର ଅସ୍ତିତ୍ୱ ପ୍ରତିପାଦନ କରିବା ନିଜର କର୍ତ୍ତବ୍ୟ ମନେ କଲେ; ଅନ୍ୟ ଜଣେ ତାଙ୍କର ଅସ୍ତିତ୍ୱ ଖଣ୍ଡନ କରିବା କର୍ତ୍ତବ୍ୟ ମନେ କଲେ ଓ ପ୍ରଚାର କରି ବୁଲିଲେ ଯେ, ଈଶ୍ୱର ବୋଲି କେହି ନାହାନ୍ତି । ଈଶ୍ୱରଙ୍କର ଅସ୍ତିତ୍ୱ ପ୍ରମାଣ ବା ଅପ୍ରମାଣ କରିବା ପାଇଁ ଗ୍ରନ୍ଥ ଲେଖିବାର ପ୍ରୟୋଜନ କ'ଣ ? ଈଶ୍ୱର ଥାଆନ୍ତୁ ବା ନ ଥାଆନ୍ତୁ, ଅନେକ ଲୋକଙ୍କର ସେଥିରେ ଯାଏଆସେ କ'ଣ ? ଏହି ସହରରେ ଅଧିକାଂଶ ବ୍ୟକ୍ତି ପ୍ରାତଃକାଳର ଶଯ୍ୟା ତ୍ୟାଗ କରି ପ୍ରାତରାଶ ସମ୍ପନ୍ନ କରନ୍ତି । ଈଶ୍ୱର ଆସି ସେମାନଙ୍କର ପୋଷାକ ବା ଆହାର ବ୍ୟବସ୍ଥାରେ କୌଣସି ସାହାଯ୍ୟ କରନ୍ତି ନାହିଁ । ତା'ପରେ ସେମାନେ ନିଜ ନିଜ କାର୍ଯ୍ୟକ୍ଷେତ୍ରକୁ ଯାଆନ୍ତି ଓ ସାରାଦିନ କାର୍ଯ୍ୟ କରି ଟଙ୍କା ରୋଜଗାର କରନ୍ତି । ସେହି ଟଙ୍କା ବ୍ୟାଙ୍କ୍‌ରେ ରଖି ସେମାନେ ଘରକୁ ଫେରନ୍ତି ଓ ତା'ପରେ ଉତ୍ତମରୂପେ ଭୋଜନ କରି ଶୟନ କରିଥାଆନ୍ତି—ଏସବୁ କାର୍ଯ୍ୟ ସେମାନେ ଯନ୍ତ୍ରବତ୍ କରିଥାଆନ୍ତି । ଈଶ୍ୱରଙ୍କ ଚିନ୍ତା ଆଦୌ କରନ୍ତି ନାହିଁ; ଈଶ୍ୱରଙ୍କର କୌଣସି ପ୍ରୟୋଜନ ବୋଧ କରନ୍ତି ନାହିଁ । ମନୁଷ୍ୟର ଚିରନ୍ତନ ନିତ୍ୟ କର୍ତ୍ତବ୍ୟ ରହିଛି—ଆହାର, ପାନ, ନିଦ୍ରା, ବଂଶବୃଦ୍ଧି । ତା'ପରେ ଦିନେ ମୃତ୍ୟୁ ଆସି କହିଲେ, "ସମୟ ହୋଇଯାଇଛି, ଚାଲ ।" ସେତେବେଳେ ମଣିଷ କହେ, "ମୁହୂର୍ତ୍ତେ ମାତ୍ର ଅପେକ୍ଷା କର; ମୁଁ ଆଉ ଟିକିଏ ସମୟ ଚାହେଁ । ମୋର ପୁଅଟି ଆଉ ଟିକିଏ ବଡ଼ ହୋଇଯାଉ ।" କିନ୍ତୁ ମୃତ୍ୟୁ କହନ୍ତି, "ଏହିକ୍ଷଣି ଚାଲ, ତୁମକୁ ବନ୍ଦୀ କରି ନେବା ପାଇଁ ମୁଁ ଆସିଛି ।" ଏହିପରି ଜଗତ ଚାଲିଛି, ଏହିପରି ସାଧାରଣ ଲୋକଙ୍କର ଜୀବନ କାଟିବାରେ ଲାଗିଛି । ମୁଁ ଆଉ ସେ ବିଚାରୀକୁ କ'ଣ କହିବି ? ଈଶ୍ୱରଙ୍କୁ ସର୍ବୋଚ୍ଚ ତତ୍ତ୍ୱ ବୋଲି ବୁଝିବାର କୌଣସି ସୁଯୋଗ ସେ ପାଏ ନାହିଁ । ହୁଏତ ପୂର୍ବଜନ୍ମରେ ସେ ଗୋଟିଏ ଶୂକର-ଶାବକ ଥିଲା—ମନୁଷ୍ୟ ହୋଇ ତା'ଠାରୁ ଅନେକ ଭଲ ହୋଇଛି; କିନ୍ତୁ ସମଗ୍ର ଜଗତ୍ ତ ଆଉ 'ଏପରି' ନୁହେଁ । କେତେକ ଲୋକ ଅଛନ୍ତି, ଯେଉଁମାନଙ୍କର କିଛି କିଛି ଚୈତନ୍ୟ ଲାଭ ହୋଇଛି । ହୁଏତ କିଛି ଦୁଃଖକଷ୍ଟ ଆସିଲା—ଯାହାକୁ ଆମେ ଖୁବ୍ ଭଲପାଉ, ସେ ମରିଗଲେ । ଯାହାଠାରେ ସେ ମନପ୍ରାଣ ସମର୍ପଣ କରିଥିଲା, ଯାହାପାଇଁ ସେ ସମଗ୍ର ଜଗତକୁ ଏପରି କି ନିଜର ଭାଇକୁ ମଧ୍ୟ ଠକିବାକୁ ପଶ୍ଚାତ୍‌ପଦ ହେଉ ନ ଥିଲା, ଯାହା ପାଇଁ ସମସ୍ତ ପ୍ରକାର ଦୁରୂହ କାର୍ଯ୍ୟ କରିଛି, ସେ ମରିଗଲା—ସେତେବେଳେ ତା'ର ହୃଦୟରେ ଗୋଟିଏ ଆଘାତ ଲାଗିଲା । ହୁଏତ ଅନ୍ତରାତ୍ମାର ଏକ ବାଣୀ ଶୁଣାଗଲା, "ତା'ପରେ କଅଣ ?" ଯେଉଁ ପୁତ୍ର ନିମିତ୍ତ ମନୁଷ୍ୟ ସମସ୍ତଙ୍କୁ ପ୍ରତାରଣା କଲା ଏବଂ ନିଜେ ମଧ୍ୟ କେବେ ଭଲରେ ଗଣ୍ଡେ ଖାଇ ପାରିଲା ନାହିଁ, ସେ ହୁଏତ ମରିଗଲା—ସେହି ଆଘାତରେ ମଣିଷ ଜାଗି ଉଠେ । ଯେଉଁ ସ୍ତ୍ରୀକୁ ଲାଭ କରିବା ନିମିତ୍ତ ମଣିଷ ଉନ୍ମତ୍ତ ବୃଷଭ ଭଳି ସମସ୍ତଙ୍କ ସହିତ ଲଢ଼େଇ କରୁଥିଲା, ଯାହାର ନୂତନ ନୂତନ ବସ୍ତ୍ର ଓ ଅଲଙ୍କାର ପାଇଁ ସେ ଟଙ୍କା ଜମା ରଖୁଥିଲା, ସେହି ସ୍ତ୍ରୀ ଦିନେ ହଠାତ୍ ମରିଗଲା—ତା'ପରେ ? କୌଣସି କୌଣସି କ୍ଷେତ୍ରରେ ଅବଶ୍ୟ ମୃତ୍ୟୁ ଯୋଗୁଁ କୌଣସି ଆଘାତ ମିଳେ ନାହିଁ; କିନ୍ତୁ ଖୁବ୍ ଅଳ୍ପ ସ୍ଥଳରେ ଏପରି ଘଟିଥାଏ । ଆମ ଭିତରୁ

ଅଧିକାଂଶ ଲୋକଙ୍କ କଥା କହୁଥାଉ—ଯେତେବେଳେ କୌଣସି ଜିନିଷ ଆମ ହାତମୁଠାରୁ ଖସିଯାଏ, ଆମେ ହା ହତୋଽସ୍ମି ହୋଇ କହୁଥାଉ—ଏହାପରେ କ'ଣ ? ଆମେମାନେ ଏଥିପାଇଁ ହିଁ ଆଗେ କଷ୍ଟ ପାଇଥାଉଁ । ଏହିଭଳି ଆମେ ଘୋର ଇନ୍ଦ୍ରିୟାସକ୍ତ । ଆପଣମାନେ ଶୁଣିଛନ୍ତି—ଜଣେ ଲୋକ ପାଣିରେ ବୁଡ଼ି ଯାଉଥିଲା, ସେ ସମ୍ମୁଖରେ ଅନ୍ୟ କିଛି ନ ପାଇ ଖିଏ କୁଟା ଧରି ନେଲା । ସାଧାରଣ ମନୁଷ୍ୟ ଠିକ୍ ଏହିପରି ଆଗରେ ଯାହା ପାଏ, ତାକୁ ଧରି-ନିଏ । ଆଉ ଯେତେବେଳେ ବ୍ୟର୍ଥ ହୁଏ, ସେତେବେଳେ କହୁଥାଏ—କିଏ କେଉଁଠି ଅଛ, ମୋତେ ରକ୍ଷା କର, ସାହାଯ୍ୟ କର ! ତଥାପି ଉଚ୍ଚତର ଅବସ୍ଥା ଲାଭ କରିବା ପୂର୍ବରୁ ମନୁଷ୍ୟଙ୍କୁ ବହୁବାର ବହୁ ଦୁଃଖ ଭୋଗ କରିବାକୁ ହୁଏ ।

ଏହି ଭକ୍ତିଯୋଗ କିନ୍ତୁ ଏକ ଧର୍ମ-ସାଧନା । ଏହା ମଧ୍ୟ ବହୁ ଲୋକଙ୍କ ପାଇଁ ନୁହେଁ, ତାହା ହେବା ହିଁ ଅସମ୍ଭବ । ହାତ ଯୋଡ଼ିବା, ଭୂମିରେ ସାଷ୍ଟାଙ୍ଗ ହୋଇ ପଡ଼ିବା, ଆଣ୍ଠୁ ମାଡ଼ି ବସିବା, ବସି ଉଠ ହେବା, ଏସବୁ କସରତ୍ ସର୍ବସାଧାରଣଙ୍କ ପାଇଁ ହୋଇପାରେ; କିନ୍ତୁ ଧର୍ମ ଅତି ଅଳ୍ପ ଲୋକଙ୍କ ପାଇଁ । ସବୁ ଦେଶରେ ହୁଏତ କେତେଜଣ ମାତ୍ର ଲୋକ ଯଥାର୍ଥ ଧାର୍ମିକ ହୋଇପାରନ୍ତି ବା ହେବେ । ଅନ୍ୟମାନେ ଧର୍ମ କରିପାରନ୍ତି ନାହିଁ, କାରଣ ସେମାନେ ଅଜ୍ଞାନ-ନିଦ୍ରାରୁ ଜାଗରିତ ହେବେ ନାହିଁ—ସେମାନେ ଧର୍ମ ଚାହାଁନ୍ତି ନାହିଁ । ପ୍ରଧାନ କଥା ହେଉଛି, ଭଗବାନଙ୍କୁ ପାଇବାକୁ ଇଚ୍ଛା କରିବା । ଆମେ ଭଗବାନଙ୍କ ବ୍ୟତୀତ ଆଉ ସବୁ କିଛି ଇଚ୍ଛା କରିଥାଉ, କାରଣ ଆମର ସାଧାରଣ ଅଭାବସମୂହ ବାହ୍ୟ ଜଗତରୁ ପୂର୍ଣ୍ଣ ହୋଇ-ଯାଏ । କେବଳ ଯେତେବେଳେ ବାହ୍ୟ ଜଗତଦ୍ୱାରା ଆମର ଅଭାବ କୌଣସିମତେ ପୂର୍ଣ୍ଣ ହୁଏ ନାହିଁ, ସେତେବେଳେ ଆମେମାନେ ଅନ୍ତର୍ଜଗତରୁ—ଈଶ୍ୱରଙ୍କଠାରୁ—ଆମର ଅଭାବ ପୂରଣ କରିବାକୁ ଚାହିଁଥାଉ । ଯେତେଦିନ ଆମର ପ୍ରୟୋଜନ ଏହି ଜଡ଼ ଜଗତର ସଙ୍କୀର୍ଣ୍ଣ ଗଣ୍ଡି ମଧ୍ୟରେ ସୀମାବଦ୍ଧ ଥାଏ, ସେତେଦିନ ଆମର ଈଶ୍ୱରଙ୍କଠାରେ କୌଣସି ପ୍ରୟୋଜନ ରହି ନ ପାରେ । କେବଳ ଯେତେବେଳେ ଆମେ ଏଠାର ସମସ୍ତ ବିଷୟ ଭୋଗ କରି ପରିତୃପ୍ତ ହେଉ ଏବଂ ଏହାଠାରୁ ଅଧିକ କିଛି ପାଇବା ପାଇଁ ଇଚ୍ଛା କରୁ, ସେତେବେଳେ ଆମେ ସେହି ଅଭାବ ପୂରଣ ନିମିତ୍ତ ଇନ୍ଦ୍ରିୟ-ଜଗତର ବାହାରକୁ ଦୃଷ୍ଟି ନିକ୍ଷେପ କରୁ । କେବଳ ଯେତେବେଳେ ଆମର ପ୍ରୟୋଜନ ହୁଏ, ସେତେବେଳେ 'ତାହା' ମେଣ୍ଟାଇବାର ବ୍ୟଗ୍ରତା ଆମେ ଅନୁଭବ କରୁ । ଯେତେ ଶୀଘ୍ର ପାର ଏହି ସଂସାରର ପିଲାଖେଳ ଶେଷ କରିଦିଅ—ଯେତେବେଳେ ଏହି ଜଗତର ଅତୀତ ଅନ୍ୟ କିଛି ବସ୍ତୁର ପ୍ରୟୋଜନ ଉପଲବ୍ଧି କରିବ, ସେତିକିବେଳେ ଧର୍ମର ପ୍ରଥମ ସୋପାନ ଆରମ୍ଭ ହେବ ।

ଏକପ୍ରକାର ଧର୍ମ ଅଛି—ତାହା ଫେସନ୍ ନାମରେ ପ୍ରଚଳିତ । ମୋ ବନ୍ଧୁଙ୍କର ବୈଠକଖାନାରେ ହୁଏତ ଯଥେଷ୍ଟ ଆସବାବ ଅଛି—ଏଠାରେ ଫେସନ ଗୋଟିଏ ଜାପାନୀ ପାତ୍ର (vase) ରଖିବା—ଏଣୁ ହଜାର ଟଙ୍କା ଦାମ୍ ହେଲେ ମଧ୍ୟ ମୋର ତାହା ନିଶ୍ଚୟ ଦରକାର । ଏହିଭଳି ଆମର ଅଳ୍ପ ଅଳ୍ପ ଧର୍ମ ମଧ୍ୟ ଦରକାର—ଗୋଟିଏ ସମ୍ପ୍ରଦାୟରେ ମଧ୍ୟ ଯୋଗ ଦେବା ଆବଶ୍ୟକ । ଭକ୍ତି ଏଭଳି ଲୋକଙ୍କ ପାଇଁ ନୁହେଁ; ଏହାକୁ ପ୍ରକୃତ ବ୍ୟାକୁଳତା

କୁହାଯାଏ ନାହିଁ । ବ୍ୟାକୁଳତା ତାକୁ କହନ୍ତି, ଯାହା ବ୍ୟତୀତ ମନୁଷ୍ୟ ବଞ୍ଚିପାରେ ନାହିଁ । ଆମର ବାୟୁ ଦରକାର, ଖାଦ୍ୟ ଦରକାର, ଲୁଗା ଦରକାର; ଏଗୁଡ଼ିକ ବ୍ୟତୀତ ଆମେ ଜୀବନ ଧାରଣ କରିପାରିବୁ ନାହିଁ । ପୁରୁଷ ଯେତେବେଳେ କୌଣସି ସ୍ତ୍ରୀଲୋକ ପ୍ରତି ଆସକ୍ତ ହୁଏ, ସେତେବେଳେ ସମୟ ସମୟରେ ସେ ଏପରି ମନେକରେ ଯେ, ତାହାକୁ ଛାଡ଼ି ସେ ମୁହୂର୍ତ୍ତେ ମାତ୍ର ବଞ୍ଚିପାରିବ ନାହିଁ; ଏହା ତାହାର ଭ୍ରମ ହେଲେ ବି ସ୍ୱାମୀ ମରିଗଲେ କିଛି-କ୍ଷଣ ପାଇଁ ସ୍ତ୍ରୀର ମନେହୁଏ ସେ ସ୍ୱାମୀକୁ ଛାଡ଼ି ବଞ୍ଚିପାରିବ ନାହିଁ; କିନ୍ତୁ ଦେଖାଯାଏ, ସେ ଠିକ୍ ବଞ୍ଚି ରହିଛି । ମୋ ଆତ୍ମୀୟମାନଙ୍କର ମୃତ୍ୟୁ ହେଲେ ଅନେକ ସମୟରେ ମୁଁ ମନେକରେ ଯେ ମୁଁ ଆଉ ବଞ୍ଚିବି ନାହିଁ; କିନ୍ତୁ ତଥାପି ମୁଁ ବଞ୍ଚି ରହିଛି; ପ୍ରକୃତ ପ୍ରୟୋଜନର ଏହା ହିଁ ରହସ୍ୟ, ଯାହା ବ୍ୟତୀତ ଆମେ ବଞ୍ଚିପାରିବୁ ନାହିଁ, ତାହା ହିଁ ଆମର ଯଥାର୍ଥ ପ୍ରୟୋଜନ ବା ଅଭାବ; ହୁଏତ ଆମକୁ ତାହା ପାଇବାକୁ ହେବ, ନଚେତ୍ ଆମେ ମରିବୁ । ଏପରି ସମୟ ଆସିବ, ଯେତେବେଳେ ଆମେ ଭଗବାନଙ୍କର ମଧ୍ୟ ଏପରି ପ୍ରୟୋଜନ ବା ଅଭାବ ବୋଧ କରିବୁ, ଅନ୍ୟ କଥାରେ କହିଲେ, ଯେତେବେଳେ ଆମେ ଏହି ଜଗତର—ସମୁଦାୟ ଜଡ଼-ଶକ୍ତିର ଅତୀତ କିଛିର ଅଭାବ ଉପଲବ୍ଧି କରିବୁ, ତେବେ ଯାଇ ଆମେ ଭକ୍ତ ହୋଇପାରିବୁ । ଯେତେବେଳେ ଆମର ହୃଦୟାକାଶରୁ ଅଜ୍ଞାନ-ମେଘ କ୍ଷଣକାଳ ପାଇଁ ଅପସୃତ ହୁଏ ଆମେ ସେହି ସର୍ବାତୀତ ସତ୍ତାର ଥରକ ପାଇଁ ବିଦ୍ୟୁତ୍କର ଦର୍ଶନ ଲାଭ କରୁ ଏବଂ ସେହି ମୁହୂର୍ତ୍ତିକ-ପାଇଁ ସମସ୍ତ ନୀଚ ବାସନା ଯେପରି ସିନ୍ଧୁରେ ବିନ୍ଦୁ ଭଳି ମନେହୁଏ, ସେତେବେଳେ ଆମର କ୍ଷୁଦ୍ର ଜୀବନର ମୂଲ୍ୟ ବା କେତେ ଟିକିଏ ? ସେତେବେଳେ ଆତ୍ମାର ବିକାଶ ହୁଏ; ଭଗବାନ-ଙ୍କର ଅଭାବ ଅନୁଭୂତ ହୁଏ । ସେତେବେଳେ ଏପରି ମନେହୁଏ ଯେ, ତାହାଙ୍କୁ ଯେମିତି ହେଉ ପାଇବାକୁ ହେବ ।

ସୁତରାଂ ଭକ୍ତ ହେବାର ପ୍ରଥମ ସୋପାନ ଏହି ଜିଜ୍ଞାସା—ଆମେ କଅଣ ଚାହୁଁ ? ପ୍ରତ୍ୟହ ନିଜ ମନକୁ ପ୍ରଶ୍ନ କରିବାକୁ ହେବ—ଆମେ କ'ଣ ଈଶ୍ୱରଙ୍କୁ ଚାହୁଁ ? ଆପଣମାନେ ଜଗତ୍ରର ସମସ୍ତ ଗ୍ରନ୍ଥ ପଢ଼ିପାରନ୍ତି; କିନ୍ତୁ ବକ୍ତୃତା-ଶକ୍ତିଦ୍ୱାରା ବା ଉଚ୍ଚତମ ମେଧାଶକ୍ତିଦ୍ୱାରା କିମ୍ବା ନାନାବିଧ ବିଜ୍ଞାନ ଅଧ୍ୟୟନଦ୍ୱାରା ଏହି ପ୍ରେମ ଲାଭ କରାଯାଇପାରେ ନାହିଁ । ସେ ଯାହାକୁ ଇଚ୍ଛା କରନ୍ତି, ସେ ହିଁ ତାଙ୍କୁ ଲାଭ କରେ; ତାହା ନିକଟରେ ହିଁ ଭଗବାନ ଆତ୍ମ-ପ୍ରକାଶ କରନ୍ତି ।[୧] ଭଲପାଇବା ସର୍ବଦା ପାରସ୍ପରିକ, ଠିକ୍ ପ୍ରତିବିମ୍ବ ପରି । ଆପଣ ମୋତେ ଘୃଣା କରିପାରନ୍ତି ଏବଂ ମୁଁ ଆପଣଙ୍କୁ ଭଲ ପାଇବାକୁ ଗଲେ ଆପଣ ମୋତେ ଦୂର୍ ଦୂର୍ କରି ତଡ଼ି ଦେଇପାରନ୍ତି; କିନ୍ତୁ ତା' ସତ୍ତ୍ୱେ ମୁଁ ଯେବେ ଆପଣଙ୍କୁ ଭଲ ପାଇବାକୁ ଲାଗେ, ତେବେ ମାସକରେ ହେଉ ବା ବର୍ଷକରେ ହେଉ ଆପଣ ମୋତେ ଭଲପାଇବାକୁ ବାଧ୍ୟ ହେବେ । ମାନସିକ ଜଗତର ଏହା ଗୋଟିଏ ଚିରପରିଚିତ ଘଟଣା । ଭଗବାନ ଯାହାକୁ ଭଲ ପାଆନ୍ତି, ସେ ମଧ୍ୟ ଭଗବାନଙ୍କୁ ଭଲ ପାଇଥାଏ । ସେ ସର୍ବାନ୍ତଃକରଣରେ ତାହାଙ୍କୁ ଜାବୁଡ଼ି ଧରିଥାଏ ! ପ୍ରେମିକା ସ୍ତ୍ରୀ ତାହାର ମୃତ ପତି ଉଦ୍ଦେଶ୍ୟରେ ଯେପରି ଚିନ୍ତା କରେ,

[୧] କଠୋପନିଷଦ୍ ୧ମ ଅଧ୍ୟାୟ, ୨ୟ ବଲ୍ଲୀ ୨୩ ଶ୍ଳୋକ ।

ପୁତ୍ରମାନଙ୍କୁ ଆମେ ଯେଉଁଭଳି ଭଲ ପାଇଥାଉ, ଠିକ୍ ସେହିପରି ଆମକୁ ଭଗବାନଙ୍କ ପାଇଁ ବ୍ୟାକୁଳ ହେବାକୁ ହେବ । ତେବେ ଯାଇ ଆମେ ଭଗବାନଙ୍କୁ ଲାଭ କରିବା । ବହି ପଢ଼ି ଲୋକ ଶୁଆପକ୍ଷୀ ଭଳି ହୁଏ, ବହି ପଢ଼ି କେହି ପଣ୍ଡିତ ହୁଏ ନାହିଁ । ଆଉ ଏହି ସବୁ ବହି ଏହି ସବୁ ବିଜ୍ଞାନ—ଆମମାନଙ୍କୁ କିଛି ହିଁ ଶିଖାଇପାରିବ ନାହିଁ । ଯେଉଁ ବ୍ୟକ୍ତି ପ୍ରେମର ଗୋଟିଏ ଅକ୍ଷର ପାଠ କରିଛି, ସେ ହିଁ ପ୍ରକୃତ ପଣ୍ଡିତ । ଅତଏବ ଆମର ପ୍ରଥମ ଆବଶ୍ୟକତା ସେହି ଆକାଙ୍‌କ୍ଷା ବା ବ୍ୟାକୁଳତା ।

ପ୍ରତ୍ୟହ ନିଜର ମନକୁ ପ୍ରଶ୍ନ କରିବାକୁ ହେବ, ଆମେ କ'ଣ ଭଗବାନଙ୍କୁ ବାସ୍ତବିକ ଚାହୁଁ ? ଯେତେବେଳେ ଆମେ ଧର୍ମ ସମ୍ବନ୍ଧରେ କହିବାକୁ ଆରମ୍ଭ କରୁ ବିଶେଷତଃ ଯେତେବେଳେ ଆମେ ଉଚ୍ଚାସନରେ ବସି ଅପରକୁ ଉପଦେଶ ଦେବାକୁ ଲାଗୁ, ସେତେବେଳେ ନିଜ ମନକୁ ଏହି ପ୍ରଶ୍ନ ପଚାରିବାକୁ ହେବ । ଅନେକ ସମୟରେ ଦେଖେ, ମୁଁ ଭଗବାନଙ୍କୁ ଚାହେଁନା, ତା'ଠାରୁ ବରଂ ଖାଦ୍ୟଦ୍ରବ୍ୟକୁ ଭଲ ପାଏ । ଖଣ୍ଡିଏ ରୁଟି ନ ପାଇଲେ ମୁଁ ପାଗଳ ହୋଇଯାଇପାରେ—ଅନେକ ସମ୍ଭ୍ରାନ୍ତ ମହିଳା ଗୋଟିଏ ହୀରାର ପିନ୍ ନ ପାଇଲେ ପାଗଳ ହୋଇଯିବେ । ଭଗବାନଙ୍କ ପାଇଁ ସେମାନଙ୍କର ସେ ବ୍ୟାକୁଳତା ନାହିଁ । ଏହି ବିଶ୍ୱ ଜଗତରେ ସେ ହିଁ ଯେ ଏକମାତ୍ର ସତ୍ୟ ବସ୍ତୁ, ତାହାଙ୍କୁ ସେମାନେ ଜାଣନ୍ତି ନାହିଁ । ଆମର ପ୍ରଚଳିତ କଥାରେ କୁହାଯାଏ—

'ମାରିବ ତ ଗଣ୍ଡାର ।
ଲୁଟିବ ତ ଭଣ୍ଡାର ॥'

ଗରିବ ଲୋକର ଘର ଲୁଟି କରି କିମ୍ବା ପିମ୍ପୁଡ଼ି ମାରି ଲାଭ କ'ଣ ? ଏଣୁ ଯଦି ଭଲ ପାଇବାକୁ ଚାହିଁ, ତେବେ ଭଗବାନଙ୍କୁ ଭଲ ପାଅ । ସଂସାରର ଏହିସବୁ ଜିନିଷକୁ ଭଲ ପାଇ କ'ଣ ହେବ ? ମୁଁ ସ୍ପଷ୍ଟବାଦୀ ଲୋକ—ତେବେ ମୋର ଉଦ୍ଦେଶ୍ୟ ମହତ୍; ମୁଁ ସତ୍ୟ କଥା କହିବାକୁ ଚାହେଁ—ମୁଁ ଆପଣମାନଙ୍କୁ ତୋଷାମୋଦ କରିବାକୁ ଇଚ୍ଛା କରେ ନାହିଁ—ଏପରି କରିବା ମୋର କାର୍ଯ୍ୟ ନୁହେଁ । ତାହା ଯଦି ମୋର ଉଦ୍ଦେଶ୍ୟ ହୋଇଥାଆନ୍ତା, ତା' ହେଲେ ମୁଁ ସହରରେ ଏକ ସୁନ୍ଦର ଜାଗାରେ ସୌଖୀନ ଲୋକର ଉପଯୋଗୀ ଗୋଟିଏ ଚର୍ଚ୍ଚ ଖୋଲି ବସିଥାଆନ୍ତି । ଆପଣମାନେ ମୋର ସନ୍ତାନ ତୁଲ୍ୟ—ଆପଣଙ୍କୁ ମୁଁ ସତ୍ୟକଥା କହିବାକୁ ଚାହେଁ; ଏ ଜଗତ୍ ସମ୍ପୂର୍ଣ୍ଣ ମିଥ୍ୟା, ଜଗତ୍‌ର ଶ୍ରେଷ୍ଠ ଆଚାର୍ଯ୍ୟଗଣ ହିଁ ଏହି ସତ୍ୟ ଲାଭ କରିଯାଇଛନ୍ତି । ଈଶ୍ୱରଙ୍କ ବ୍ୟତୀତ ସଂସାରରୁ ବାହାରି ଯିବାର ଅନ୍ୟ ଉପାୟ ନାହିଁ । ସେ ଆମ ଜୀବନର ଚରମ ଲକ୍ଷ୍ୟ । ଏହି ଜଗତ୍ ଯେ ଜୀବନର ଚରମ ଲକ୍ଷ୍ୟ—ଏଭଳି ଧାରଣା ଅତୀବ ଅନିଷ୍ଟକର । ଏହି ଜଗତ୍‌ର—ଏହି ଦେହର ଏକ ନିଜସ୍ୱ ମୂଲ୍ୟ ଅଛି ଏବଂ ଏହା ଗୌଣ । ଏଗୁଡ଼ିକ ଉଦ୍ଦେଶ୍ୟର ଉପାୟସ୍ୱରୂପ ହୋଇପାରେ, କିନ୍ତୁ ଏହି ଜଗତ୍ ଯେପରି ଆମର ଚରମ ଲକ୍ଷ୍ୟ ନ ହୁଏ । ଦୁଃଖର ବିଷୟ ଅମେ ଅନେକ ସମୟରେ ଏହି ଜଗତ୍‌କୁ ଉଦ୍ଦେଶ୍ୟ କରି ଈଶ୍ୱରଙ୍କୁ ସେହି ସଂସାର-ସୁଖଲାଭର ଉପାୟସ୍ୱରୂପ କରିଥାଉ । ଆମେ ଦେଖିବାକୁ ପାଉ, ଲୋକମାନେ ଉପାସନାସ୍ଥଳୀରେ ପ୍ରାର୍ଥନା କରୁଛନ୍ତି—ଭଗବାନ ମୋର

ରୋଗ ଦୂରକର, ଭଗବାନ ମୋତେ ଏହା ଦିଅ, ତାହା ଦିଅ । ସେମାନେ ସୁନ୍ଦର ସୁସ୍ଥ ଦେହ ଚାହାଁନ୍ତି; ଯେହେତୁ ସେମାନେ ଶୁଣିଛନ୍ତି ଯେ, କୌଣସି ଜଣେ ପୁରୁଷ କୌଣସିଠାରେ ବସିଛନ୍ତି ଏବଂ ସେ ଇଚ୍ଛା କଲେ ତାଙ୍କର ସେହି କାମନା ପୂର୍ଣ୍ଣ କରି ଦେଇପାରନ୍ତି, ସେଥିପାଇଁ ସେ ତାହାଙ୍କ ନିକଟରେ ପ୍ରାର୍ଥନା କରିଥାଆନ୍ତି । ଧର୍ମର ଏହିଭଳି ଧାରଣା ଅପେକ୍ଷା ନାସ୍ତିକତା ଭଲ । ମୁଁ ଆପଣମାନଙ୍କୁ ପୂର୍ବରୁ କହିଛି, ଏହି ଭକ୍ତି ହିଁ ସର୍ବୋଚ୍ଚ ଆଦର୍ଶ । ଲକ୍ଷ ଲକ୍ଷ ବର୍ଷ ସାଧନା କରି ମଧ୍ୟ ଆମେ ଏହି ଆଦର୍ଶରେ ଉପନୀତ ହୋଇପାରିବୁ କି ନା ଜାଣୁନାହିଁ; କିନ୍ତୁ ଏହାକୁ ହିଁ ସର୍ବୋଚ୍ଚ ଆଦର୍ଶ ବୋଲି ମନେ କରିବାକୁ ହେବ—ଆମର ଇନ୍ଦ୍ରିୟଗୁଡ଼ିକୁ ଉକ୍ତ ଉଦ୍ଦେଶ୍ୟ ବସ୍ତୁଲାଭର ଚେଷ୍ଟାରେ ନିଯୁକ୍ତ କରିବାକୁ ହେବ । ଯଦି ଏକାଥରକେ ଶେଷ ପ୍ରାନ୍ତରେ ପହଞ୍ଚି ନ ହୁଏ, ଅନ୍ତତଃ କିଛିଦୂର ପର୍ଯ୍ୟନ୍ତ ତ ଯାଇ ହେବ । ଈଶ୍ୱରଙ୍କ ନିକଟରେ ପହଞ୍ଚିବା ପାଇଁ ଆମମାନଙ୍କୁ ଧୀରେ ଧୀରେ ଏହି ଜଗତ୍ ଓ ଇନ୍ଦ୍ରିୟଗୁଡ଼ିକ ମାଧ୍ୟମ ଦେଇ କାର୍ଯ୍ୟ କରିଯିବାକୁ ହେବ ।

## ଭକ୍ତର ଆଚାର୍ଯ୍ୟ—ସିଦ୍ଧଗୁରୁ ଓ ଅବତାରଗଣ

ସକଳ ଆତ୍ମା ହିଁ ବିଧାତାଙ୍କର ନିୟମାନୁଯାୟୀ ପୂର୍ଣ୍ଣତା ପ୍ରାପ୍ତ ହେବେ—ପରିଶେଷରେ ସକଳ ପ୍ରାଣୀ ସେହି ପୂର୍ଣ୍ଣାବସ୍ଥା ପ୍ରାପ୍ତ ହେବେ । ଆମେ ଅତୀତ କାଳରେ ଯେଉଭଳି ଭାବରେ ଜୀବନ ଯାପନ କରିଛୁ ଅଥବା ଯେଉଭଳି ଚିନ୍ତା କରିଛୁ, ଆମର ବର୍ତ୍ତମାନ ଅବସ୍ଥା ତା'ର ଫଳସ୍ୱରୂପ ଏବଂ ବର୍ତ୍ତମାନ ଯେଉଁଭଳି କାର୍ଯ୍ୟ ବା ଚିନ୍ତା କରୁଛୁ, ତଦନୁଯାୟୀ ଆମର ଭବିଷ୍ୟତ୍ ଜୀବନ ଗଠିତ ହେବ । ଏହି କଠୋର କର୍ମବାଦ ସତ୍ୟ ହେଲେ ମଧ୍ୟ ଏହାର ମର୍ମ ଏହା ନୁହେଁ ଯେ, ଆତ୍ମୋନ୍ନତି ସାଧନ ନିମିତ୍ତ ନିଜ ବ୍ୟତୀତ ଅନ୍ୟ କାହାର ହେଲେ ସାହାଯ୍ୟ ନେବାକୁ ହେବ ନାହିଁ । ଆତ୍ମା ଭିତରେ ଯେଉଁ ଶକ୍ତିପ୍ରେରଣାର ସମ୍ଭାବନା ରହିଛି, ସର୍ବଦା ଅପର ଆତ୍ମା-ନିହିତ ଶକ୍ତିର ସଂସ୍ପର୍ଶଦ୍ୱାରା ହିଁ ତାହା ଜାଗ୍ରତ ହୋଇଥାଏ । ଅଧିକାଂଶ କ୍ଷେତ୍ରରେ ଏହିଭଳି ବାହାରର ସହାୟତା ଏକାନ୍ତ ଭାବେ ପ୍ରୟୋଜନ । ବାହାରୁ ପ୍ରେରଣା-ଶକ୍ତି ଆସି ଯେତେବେଳେ ଆମର ଅନ୍ତର୍ନିହିତ ଶକ୍ତି ଉପରେ କାର୍ଯ୍ୟ କରିଥାଏ, ସେତେବେଳେ ଯାଇ ଆତ୍ମୋନ୍ନତିର ସୂତ୍ରପାତ ହୁଏ—ମନୁଷ୍ୟର ଧର୍ମଜୀବନ ଆରମ୍ଭ ହୁଏ, ପରିଶେଷରେ ମନୁଷ୍ୟ ପରମ ଶୁଦ୍ଧ ଓ ପୂର୍ଣ୍ଣ ହୋଇଯାଏ ।

ବାହାରୁ ଯେଉଁ ଶକ୍ତି ଆସିବା କଥା କୁହାଗଲା, ତାହା ଗ୍ରନ୍ଥରୁ ମିଳିପାରେ ନାହିଁ । ଏକ ଆତ୍ମା ଅନ୍ୟ ଆତ୍ମାରୁ କେବଳ ଶକ୍ତି ଲାଭ କରିପାରେ, ଅନ୍ୟ କେଉଁଠାରୁ ନୁହେଁ । ଆମେ ସାରା ଜୀବନ ବହି ପଢ଼ିପାରୁ, ଖୁବ୍ ବୁଦ୍ଧିମାନ ହୋଇ ଉଠିପାରୁ; କିନ୍ତୁ ପରିଣାମରେ ଦେଖିବେ—ଆମର ଆଧ୍ୟାତ୍ମିକ ଉନ୍ନତି କିଛି ହେଲେ ହୋଇ ନାହିଁ । ବୁଦ୍ଧି ଖୁବ୍ ଉନ୍ନତ ଓ ବିକଶିତ ହେଲେ ଯେ ସଙ୍ଗେ ସଙ୍ଗେ ତଦନୁଯାୟୀ ଆଧ୍ୟାତ୍ମିକ ଉନ୍ନତି ମଧ୍ୟ ହେବ, ଏହାର

ଆଧ୍ୟାତ୍ମିକ ଉନ୍ନତ କରିବାକୁ ଗଲେ, ଗ୍ରନ୍ଥରୁ କୌଣସି ସାହାଯ୍ୟ ମିଳେ ନାହିଁ କହିଲେ ଚଳେ । ଗ୍ରନ୍ଥ ପାଠ କରୁ କରୁ କୌଣସି କୌଣସି ସମୟରେ ଆମେ ଭ୍ରମବଶତଃ ମନେକରୁ, ଆମେ ସେଥିରୁ ଆଧ୍ୟାତ୍ମିକ ସହାୟତା ପାଉଛୁ; କିନ୍ତୁ ଯଦି ଅନ୍ତର ବିଶ୍ଳେଷଣ କରି ଦେଖୁ, ତେବେ ବୁଝିପାରୁ ଏହାଦ୍ୱାରା ଆମର ବୁଦ୍ଧି କିଛି ମାତ୍ରାରେ ସହାୟତା ପାଇଛି ମାତ୍ର; ଆତ୍ମାର କିଛି ହୋଇ ନାହିଁ । ଏଥିପାଇଁ ଆମେ ସମସ୍ତେ ଧର୍ମ ସମ୍ବନ୍ଧରେ ସୁନ୍ଦର ସୁନ୍ଦର ବକ୍ତୃତା ଦେଇପାରୁ, ଅଥଚ ଧର୍ମାନୁଯାୟୀ ଜୀବନଯାପନ କେତେବେଳେ ଓ କିଭଳି କରିବାକୁ ହୁଏ, ସେ ବିଷୟରେ ଆମର ଶୋଚନୀୟ ଅକ୍ଷମତା ସୃଷ୍ଟ ହୁଏ । ଏହାର କାରଣ— ଆଧ୍ୟାତ୍ମିକ ଉଦ୍ଦୀପନା ଲାଗି ବାହାରୁ ଯେଉଁ ଶକ୍ତିର ପ୍ରୟୋଜନ ଆମମାନଙ୍କୁ ପୁସ୍ତକରୁ ତାହା ମିଳିପାରେ ନାହିଁ । ଆତ୍ମାକୁ ଜାଗ୍ରତ କରିବାକୁ ହେଲେ ଅପର ଏକ ଆତ୍ମାରୁ ଶକ୍ତି ସଞ୍ଚାରିତ ହେବା ଏକାନ୍ତ ଆବଶ୍ୟକ ।

ଯେଉଁ ଆତ୍ମାରୁ ଶକ୍ତି ସଞ୍ଚାରିତ ହୁଏ, ତାହାଙ୍କୁ ଗୁରୁ ଏବଂ ଯେଉଁଥିରେ ସଞ୍ଚାରିତ ହୁଏ, ତାହାକୁ ଶିଷ୍ୟ କୁହାଯାଏ । ଏହି ଶକ୍ତି ସଞ୍ଚାର କରିବାକୁ ହେଲେ ପ୍ରଥମତଃ, ଯାହା ପାଖରୁ ଶକ୍ତି ଆସିବ, ତାହାର ସଞ୍ଚାର କରିବା ଭଳି ଶକ୍ତି ଥିବା ଆବଶ୍ୟକ; ଦ୍ୱିତୀୟତଃ, ଯାହାଠାରେ ଏହା ସଞ୍ଚାରିତ ହେବ, ତାହାର ତାହା ଗ୍ରହଣ କରିବା ଲାଗି ଶକ୍ତି ଥିବା ଆବଶ୍ୟକ । ବୀଜ ସଜୀବ ଥିବା ଦରକାର, କ୍ଷେତ୍ର ମଧ୍ୟ ସୁକୃଷ୍ଟ ହୋଇଥିବା ଦରକାର ଏବଂ ଯେଉଁଠାରେ ଏହି ଦୁଇଟି ସର୍ତ୍ତ ପୂର୍ଣ୍ଣ ହୋଇଅଛି, ସେଠାରେ ହିଁ ଧର୍ମର ଅପୂର୍ବ ବିକାଶ ସଂଘଟିତ ହୋଇଥାଏ । 'ଆଶ୍ଚର୍ଯ୍ୟୋ ବକ୍ତା କୁଶଳୋଽସ୍ୟ ଲବ୍‌ଧା'— ଧର୍ମର ବକ୍ତା ଯେପରି ଅଲୌକିକ ଗୁଣସମ୍ପନ୍ନ ଶ୍ରୋତା ମଧ୍ୟ ତଦ୍ରୂପ ।[୧] ଆଉ ଯେତେବେଳେ ପ୍ରକୃତ ପକ୍ଷରେ ଉଭୟେ ଅଲୌକିକ ଗୁଣସମ୍ପନ୍ନ ଏବଂ ଅସାଧାରଣ ପ୍ରକୃତି-ଯୁକ୍ତ ହୋଇଥାନ୍ତି, ସେତେ-ବେଳେ ଚମତ୍କାର ଆଧ୍ୟାତ୍ମିକ ବିକାଶ ଦେଖାଯାଏ—ନଚେତ୍ ନୁହେଁ । ଏହିଭଳି ବ୍ୟକ୍ତି ଯଥାର୍ଥ ଗୁରୁ ଏବଂ ଏହିଭଳି ବ୍ୟକ୍ତି ଯଥାର୍ଥ ଶିଷ୍ୟ—ଅନ୍ୟମାନେ ଧର୍ମ ନାମରେ ପିଲାଖେଳ କରୁଛନ୍ତି ମାତ୍ର । ସେମାନଙ୍କର ଧର୍ମ ସମ୍ବନ୍ଧରେ ଟିକିଏ ଜାଣିବାର ଚେଷ୍ଟା ଟିକିଏ ସାମାନ୍ୟ କୌତୂହଳରେ ପର୍ଯ୍ୟବସିତ ହୋଇଛି ଯାହା; କିନ୍ତୁ ସେମାନେ ବର୍ତ୍ତମାନ ମଧ୍ୟ ଧର୍ମର ବହିଃସୀମାରେ ଦଣ୍ଡାୟମାନ ହୋଇଛନ୍ତି । ଅବଶ୍ୟ ଏହାର ମଧ୍ୟ କିଛି ମୂଲ୍ୟ ଅଛି । ସମୟରେ ସବୁ କିଛି ହୋଇଥାଏ । କାଳକ୍ରମେ ଏହି ସମସ୍ତ ବ୍ୟକ୍ତିଙ୍କ ହୃଦୟରେ ଯଥାର୍ଥ ଧର୍ମ-ପିପାସା ଜାଗ୍ରତ ହୋଇପାରେ । ପୁନଶ୍ଚ ପ୍ରକୃତିର ଏହା ଅତି ରହସ୍ୟମୟ ନିୟମ ଯେ, କ୍ଷେତ୍ର ପ୍ରସ୍ତୁତ ହୋଇଗଲେ ବୀଜ ଆସିବ ହିଁ ଆସିବ, ଜୀବାତ୍ମାର ଯେତେବେଳେ ଧର୍ମର ପ୍ରୟୋଜନ ହେବ, ସେତେବେଳେ ଧର୍ମ-ଶକ୍ତିସଞ୍ଚାରକ ଗୁରୁ ଅବଶ୍ୟ ହିଁ ଆସିବେ । କଥାରେ କହନ୍ତି, 'ଯେଉଁ ପାପୀ ପରିତ୍ରାତାଙ୍କୁ ଖୋଜୁଛି, ପରିତ୍ରାତା ମଧ୍ୟ ଖୋଜି ଖୋଜି ସେହି ପାପୀକୁ ଉଦ୍ଧାର କରନ୍ତି ।' ଗ୍ରହୀତା-ଆତ୍ମାର ଧର୍ମ-ଆକର୍ଷଣୀ ଶକ୍ତି ଯେତେବେଳେ ପୂର୍ଣ୍ଣ ଓ ପରିପକ୍ୱ ହୁଏ, ସେତେବେଳେ ସେ ଯେଉଁ ଶକ୍ତିକୁ ଖୋଜୁଛି ତାହା ନିଶ୍ଚୟ ଆସିବ ।

୧ କଠ ଉପ., ୧।୨।୭

ତେବେ ପଥରେ ବଡ଼ ବଡ଼ ବିପଦ ରହିଛି । ରସ୍ୱାଭାର ସାମୟିକ ଭାବୋଚ୍ଛ୍ୱାସକୁ ଯଥାର୍ଥ ଧର୍ମପିପାସା ବୋଲି ଭ୍ରମ ହେବାର ଯଥେଷ୍ଟ ଆଶଙ୍କା ଅଛି । ଆମେ ଅନେକ ସମୟରେ ଆମ ନିଜ ଜୀବନରେ ଏହା ଦେଖିପାରିଥାଉଁ । ଆମେ କୌଣସି ବ୍ୟକ୍ତିକୁ ଭଲ ପାଇଥାଉ—ସେ ମରିଗଲା—ଆମେ ମୁହୂର୍ତ୍ତିକ ପାଇଁ ଆଘାତ ପାଇଲୁ । ଆମେ ମନେକଲୁ— ସମୁଦାୟ ଜଗତ୍ ଜଳବତ୍ ଆମର ଅଙ୍ଗୁଳି ଫାଙ୍କରେ ଗଳି ଯାଇଛି । ସେତେବେଳେ ଆମେ ଭାବୁ—ଏହି ଅନିତ୍ୟ ସଂସାରଠାରୁ ଉଚ୍ଚତର ବସ୍ତୁର ସନ୍ଧାନ କରିବାକୁ ହେବ ଏବଂ ଆମେ ମନେ କରୁ ଯେ ଆମେ ଧାର୍ମିକ ହୋଇଯାଇଛୁ । କିଛି ଦିନ ମଧ୍ୟରେ ହିଁ ଆମ ମନରୁ ସେହି ଭାବତରଙ୍ଗ ଚାଲିଗଲା—ଆମେ ଯେଉଁଠାରେ ଥିଲୁ, ସେହିଠାରେ ପଡ଼ି ରହିଲୁ । ଆମେମାନେ ଅନେକ ସମୟରେ ଏହିଭଳି ସାମୟିକ ଭାବୋଚ୍ଛ୍ୱାସକୁ ଯଥାର୍ଥ ଧର୍ମପିପାସା ମନେ କରି ଭୁଲ୍ କରୁ; କିନ୍ତୁ ଯେତେ ଦିନ ଆମେ ଏହିପରି ଭୁଲ୍ କରୁଥିବୁ, ସେତେଦିନ ପର୍ଯ୍ୟନ୍ତ ସେହି ଅବିରହବ୍ୟାପୀ ଆଧ୍ୟାତ୍ମିକତାର ପ୍ରକୃତ ପ୍ରୟୋଜନବୋଧ ଆସିବ ନାହିଁ ଏବଂ ଆମେ ଆମର ଶକ୍ତି-ସଞ୍ଚାରକଙ୍କର ସାକ୍ଷାତ୍ ଲାଭ ମଧ୍ୟ କରିପାରିବୁ ନାହିଁ ।

ଏଣୁ ଯେତେବେଳେ ଆମେ ବିରକ୍ତି ପ୍ରକାଶ କରି କହିଥାଉ ଯେ, ଆମେ ସତ୍ୟଲାଭ ପାଇଁ ଏତେ ବ୍ୟାକୁଳ ଅଥଚ ତାହାକୁ ପାଇପାରୁ ନାହୁଁ—ସେତେବେଳେ ଏଭଳି ବିରକ୍ତି ପ୍ରକାଶ କରିବା ପରିବର୍ତ୍ତେ ଆମର ପ୍ରଥମ କର୍ତ୍ତବ୍ୟ—ନିଜ ନିଜର ଅନ୍ତରାତ୍ମାରେ ଅନୁସନ୍ଧାନ କରି ଦେଖିବା—ଆମେ ଯଥାର୍ଥ ସତ୍ୟ ବସ୍ତୁ ଚାହୁଁଛୁ କି ନାହିଁ । ତାହାହେଲେ ଅଧିକାଂଶ ସ୍ଥଳରେ ଦେଖିବା—ଆମେ ଧର୍ମଲାଭ ପାଇଁ ଉପଯୁକ୍ତ ନୋହୁଁ—ଆମେ ତାହା ଚାହୁଁ ନାହୁଁ, ଅଧ୍ୟାତ୍ମତତ୍ତ୍ୱ ଲାଭ ନିମିତ୍ତ ଏପର୍ଯ୍ୟନ୍ତ ଆମର ପିପାସା ଜାଗି ନାହିଁ । ଶକ୍ତି ସଞ୍ଚାରକଙ୍କ ସମ୍ବନ୍ଧରେ ଆହୁରି ଅନେକ ବାଧାବିଘ୍ନ ।

ଏପରି ଅନେକ ଲୋକ ଅଛନ୍ତି, ସେମାନେ ଯଦିଚ ସ୍ୱୟଂ ଅଜ୍ଞାନାନ୍ଧକାରରେ ନିମଗ୍ନ, ତଥାପି ଅହଙ୍କାରବଶତଃ ନିଜକୁ ସର୍ବଜ୍ଞାନ୍ତା ମନେ କରନ୍ତି—ଆଉ କେବଳ ଏତିକିରେ କ୍ଷାନ୍ତ ନ ହୋଇ ସେମାନେ ଅନ୍ୟମାନଙ୍କୁ କାନ୍ଧରେ ନେଇ ଯିବାକୁ ଚାହାଁନ୍ତି । ଏହିଭଳି ଅନ୍ଧଦ୍ୱାରା ନୀୟମାନ ଅନ୍ଧସଦୃଶ ଉଭୟେ ହିଁ ଗାତରେ ଯାଇ ପଡ଼ନ୍ତି ।[୧] ପୃଥିବୀ ଏହିଭଳି ଲୋକମାନଙ୍କଦ୍ୱାରା ପୂର୍ଣ୍ଣ; ସମସ୍ତେ ଗୁରୁ ହେବାକୁ ଚାହାଁନ୍ତି । ଏହା ଯେପରି ଭିକାରୀର ଲକ୍ଷମୁଦ୍ରା ପ୍ରଦାନର ପ୍ରସ୍ତାବ ଭଳି । ଏହି ଭିକ୍ଷୁକମାନେ ଯେପରି ହାସ୍ୟାସ୍ପଦ ହୁଅନ୍ତି, ଏହି ଗୁରୁମାନେ ମଧ୍ୟ ତଦ୍ରୂପ ।

ତାହାହେଲେ ଗୁରୁଙ୍କୁ କିପରି ଚହ୍ନିବି ? ପ୍ରଥମତଃ ସୂର୍ଯ୍ୟଙ୍କୁ ଦେଖିବା ଲାଗି ମଶାଲର ପ୍ରୟୋଜନ ହୁଏ ନାହିଁ, ବତୀ ଜାଳିବାକୁ ପଡ଼େ ନାହିଁ । ସୂର୍ଯ୍ୟ ଉଦିତ ହେବା ମାତ୍ରେ ଆମେ ସ୍ୱଭାବତଃ ଜାଣିପାରୁ ଯେ, ସେ ଉଦିତ ହୋଇଛନ୍ତି । ଯେତେବେଳେ ଆମମାନଙ୍କର କଲ୍ୟାଣାର୍ଥେ କୌଣସି ଲୋକ-ଗୁରୁଙ୍କର ଆବିର୍ଭାବ ଘଟେ, ସେତେବେଳେ ଆତ୍ମା ସ୍ୱଭାବତଃ ବୁଝିପାରେ ଯେ, ସେ ସତ୍ୟ ବସ୍ତୁର ସାକ୍ଷାତ୍ ପାଇଛି । ସତ୍ୟ ସ୍ୱତଃସିଦ୍ଧ—ତାହାର ସତ୍ୟତା

[୧] କଠ ଉପ., ୧।୨।୫

ସିଦ୍ଧ କରିବା ପାଇଁ ଅନ୍ୟ କୌଣସି ପ୍ରମାଣର ଆବଶ୍ୟକତା ହୁଏ ନାହିଁ—ତାହା ସ୍ୱପ୍ରକାଶ, ତାହା ଆମ ପ୍ରକୃତିର ଅନ୍ତରତମ ଦେଶ ପର୍ଯ୍ୟନ୍ତ ପ୍ରବେଶ କରେ ଏବଂ ସମଗ୍ର ପ୍ରାକୃତିକ ଜଗତ୍—ତାହାର ସମ୍ମୁଖରେ ଦଣ୍ଡାୟମାନ ହୋଇ ତାହାକୁ ସତ୍ୟ ବୋଲି ସ୍ୱୀକାର କରିଥାଏ ।

ଅବଶ୍ୟ ଏହି କଥାଗୁଡ଼ିକ ଅତି ଶ୍ରେଷ୍ଠ ଆଚାର୍ଯ୍ୟମାନଙ୍କ ସମ୍ବନ୍ଧରେ ହିଁ ପ୍ରଯୋଜ୍ୟ; କିନ୍ତୁ ଆମେ ଅପେକ୍ଷାକୃତ ନୀଚ ସ୍ତରର ଆଚାର୍ଯ୍ୟଗଣଙ୍କ ନିକଟରୁ ମଧ୍ୟ ସାହାଯ୍ୟ ପାଇପାରୁ । ଆହୁରି ମଧ୍ୟ ଯେହେତୁ ସବୁ ସମୟରେ ଆମେମାନେ ଏତାଦୃଶ ଅନ୍ତର୍ଦୃଷ୍ଟିସମ୍ପନ୍ନ ନୋହୁଁ ଯେ, ଆମେ ଯାହାଙ୍କ ନିକଟରୁ ଶକ୍ତିଲାଭ କରିବା ଲାଗି ଯାଉଛୁ, ତାଙ୍କ ସମ୍ବନ୍ଧରେ ଠିକ୍ ଠିକ୍ ବିଚାର କରିପାରିବୁ—ସେଥିପାଇଁ କେତେଗୁଡ଼ିଏ ପରୀକ୍ଷା ପ୍ରୟୋଜନ । ଶିଷ୍ୟର ଯେପରି କେତେଗୁଡ଼ିଏ ଗୁଣ ଥିବା ଆବଶ୍ୟକ—ଗୁରୁଙ୍କର ମଧ୍ୟ ସେହିପରି ଲକ୍ଷଣ ରହିଛି ।

ଶିଷ୍ୟର ଥିବା ଆବଶ୍ୟକ—ପବିତ୍ରତା, ଯଥାର୍ଥ ଜ୍ଞାନପିପାସା ଓ ଅଧ୍ୟବସାୟ । ଅପବିତ୍ର ବ୍ୟକ୍ତି କଦାପି ଧାର୍ମିକ ହୋଇପାରେ ନାହିଁ । ପବିତ୍ରତା ହିଁ ଶିଷ୍ୟର ଏକତମ ପ୍ରଧାନ ପ୍ରୟୋଜନୀୟ ଗୁଣ । ସମସ୍ତପ୍ରକାରର ପବିତ୍ରତା ଏକାନ୍ତ ଆବଶ୍ୟକ । ଦ୍ୱିତୀୟ ପ୍ରୟୋଜନ—ଯଥାର୍ଥ ଜ୍ଞାନପିପାସା । ଧର୍ମ ଚାହେଁ କିଏ ? ଏହି ତ ପ୍ରଶ୍ନ । ସନାତନ ବିଧାନ ଏହି ଯେ, ଆମେ ଯାହା ଚାହିଁବୁ, ତାହା ପାଇବୁ । ଯେ ଚାହେଁ—ସେ ପାଏ । ଧର୍ମ ପାଇଁ ଯଥାର୍ଥ ବ୍ୟାକୁଳତା ଅତ୍ୟନ୍ତ କଠିନ ଜିନିଷ; ଆମେ ସାଧାରଣତଃ ତାହାକୁ ଯେତେ ସହଜ ମନେ କରୁ, ତାହା ସେତେ ସହଜ ନୁହେଁ । ତା'ପରେ ଆମେ ତ ସବୁବେଳେ ଭୁଲିଯାଉଥାଉ ଯେ, ଧର୍ମକଥା ଶୁଣିଲେ ବା ଧର୍ମଗ୍ରନ୍ଥ ପଢ଼ିଲେ ଧର୍ମ ହୁଏ ନାହିଁ; ଯେତେଦିନ ସମ୍ପୂର୍ଣ୍ଣ ଜୟଲାଭ ହୋଇ ନାହିଁ, ସେତେ ଦିନ ଅବିଶ୍ରାନ୍ତ ଚେଷ୍ଟା—ନିଜ ପ୍ରକୃତିର ସହିତ ଅବିରାମ ସଂଗ୍ରାମ ହିଁ ଧର୍ମ । ଏହା ଦିନେ, ଦୁଇଦିନ, କେତେକ ବର୍ଷ ବା କେତେକ ଜନ୍ମର କଥା ନୁହେଁ—ହୁଏତ ପ୍ରକୃତ ଧର୍ମଲାଭ କରିବାକୁ ଶହ ଶହ ଜନ୍ମ ଲାଗିବ । ଏଥି ନିମିତ୍ତ ପ୍ରସ୍ତୁତ ରହିବାକୁ ପଡ଼ିବ, ଏହି ମୁହୂର୍ତ୍ତରେ ମଧ୍ୟ ଆମର ପ୍ରକୃତ ଧର୍ମ ଲାଭ ହୋଇପାରେ କିମ୍ବା ଶତ ଶତ ଜନ୍ମରେ ମଧ୍ୟ ଲାଭ ହୋଇ ନ ପାରେ—ତଥାପି ଆମକୁ ସେଥିପାଇଁ ପ୍ରସ୍ତୁତ ରହିବାକୁ ହେବ । ଯେଉଁ ଶିଷ୍ୟ ଏହିଭଳି ହୃଦୟର ଭାବ ନେଇ ଧର୍ମ-ସାଧନରେ ଅଗ୍ରସର ହୁଏ, ସେ ହିଁ କେବଳ କୃତକାର୍ଯ୍ୟ ହୋଇଥାଏ ।

ଗୁରୁ ସମ୍ବନ୍ଧରେ ଆମକୁ ପ୍ରଥମେ ଦେଖିବାକୁ ହେବ, ଯେପରି ସେ ଶାସ୍ତ୍ରର ମର୍ମଜ୍ଞ ହୋଇଥାଆନ୍ତି । ସମଗ୍ର ଜଗତ୍, ବେଦ, ବାଇବେଲ, କୋରାନ୍ ଓ ଅନ୍ୟାନ୍ୟ ଶାସ୍ତ୍ରାଦି ପାଠ କରିଥାନ୍ତି; କିନ୍ତୁ ସେଗୁଡ଼ିକ ତ କେବଳ ଶବ୍ଦରାଶି, ବାହ୍ୟପଦ୍ଧତି, ବ୍ୟାକରଣ, ଶବ୍ଦତତ୍ତ୍ୱ, ଭାଷା-ତତ୍ତ୍ୱ ଓ ଧର୍ମର ଶୁଷ୍କ, କଠିନ ରୂପ ମାତ୍ର । ଧର୍ମାଚାର୍ଯ୍ୟ ହୁଏତ ଗ୍ରନ୍ଥବିଶେଷର ସମୟ ନିରୂପଣ କରିବାରେ ସମର୍ଥ ହୋଇପାରନ୍ତି; କିନ୍ତୁ ଶବ୍ଦ ତ ଭାବର ବାହ୍ୟ ଆକୃତି ବହନ କରେ । ଆଉ କିଛି ନୁହେଁ । ଯେଉଁମାନେ ଶବ୍ଦକୁ ନେଇ ବେଶୀ ଆଲୋଡ଼ନ, ଆଲୋଚନା କରନ୍ତି ଏବଂ ମନକୁ ସର୍ବଦା ଶବ୍ଦର ଶକ୍ତି ଅନୁଯାୟୀ ପରିଚାଳିତ ହେବାକୁ ଦିଅନ୍ତି, ସେମାନେ ଭାବକୁ

ହୁଏଇ ବସନ୍ତି । ଅତଏବ ଗୁରୁ ପକ୍ଷରେ ଶାସ୍ତ୍ରର ମର୍ମଜ୍ଞାନ ଥିବା ବିଶେଷ ପ୍ରୟୋଜନ । ଶବ୍ଦଜାଲ ମହାରଣ୍ୟ-ସ୍ୱରୂପ—ଚିତ୍ତ-ଭ୍ରମଣର କାରଣ—ମନ ସେହି ଶବ୍ଦଜାଲ ମଧ୍ୟରେ ଦିଗ୍‌ଭ୍ରାନ୍ତ ହୋଇ ବାହାରକୁ ଯିବାର ପଥ ଦେଖିପାରେ ନାହିଁ ।[୧] ବିଭିନ୍ନ ପ୍ରକାର ଶବ୍ଦ ଯୋଜନାର କୌଶଳ, ସୁନ୍ଦର ଭାଷା, କଥା କହିବାର ବିଭିନ୍ନ ଉପାୟ ଓ ଶାସ୍ତ୍ର ବ୍ୟାଖ୍ୟା କରିବାର ନାନା ଉପାୟ, ଏସବୁ କେବଳ ପଣ୍ଡିତମାନଙ୍କର ଭୋଗ ପାଇଁ—ସେଥିରେ କଦାପି ମୁକ୍ତିଲାଭ ହୁଏନାହିଁ ।[୨] ସେମାନେ କେବଳ ନିଜ ପାଣ୍ଡିତ୍ୟ ଦେଖାଇବା ପାଇଁ ଉତ୍ସୁକ, ଯଦ୍ଦ୍ୱାରା ସମସ୍ତେ ସେମାନଙ୍କୁ ଖୁବ୍ ପଣ୍ଡିତ ବୋଲି ପ୍ରଶଂସା କରନ୍ତି । ଆପଣ ଦେଖିବେ, ଜଗତର କୌଣସି ଶ୍ରେଷ୍ଠ ଆଚାର୍ଯ୍ୟ ଏହିଭଳି ଶାସ୍ତ୍ରର ଶ୍ଳୋକାର୍ଥ ନାନା ଭାବରେ ବ୍ୟାଖ୍ୟା କରିବାର ଚେଷ୍ଟା କରି ନାହାନ୍ତି । ସେମାନେ ଶାସ୍ତ୍ରର ବିକୃତ ଅର୍ଥ କରିବାକୁ ଚେଷ୍ଟା ମଧ୍ୟ କରି ନାହାନ୍ତି । ସେମାନେ କହି ନାହାନ୍ତି : ଏ ଶବ୍ଦର ଏହି ଅର୍ଥ ଓ ସେହି ଶବ୍ଦର ଏପରି ସମ୍ବନ୍ଧ ଇତ୍ୟାଦି । ଆପଣମାନେ ଜଗତର ଶ୍ରେଷ୍ଠ ଆଚାର୍ଯ୍ୟମାନଙ୍କର ଚରିତ ପାଠ କରନ୍ତୁ । ଦେଖିବେ—ତାଙ୍କ ମଧ୍ୟରେ କେହି ଏପରି କରି ନାହାନ୍ତି; ତଥାପି ସେମାନେ ହିଁ ଯଥାର୍ଥ ଶିକ୍ଷା ଦେଇଛନ୍ତି; କିନ୍ତୁ ଯାହାଙ୍କର କିଛି ଶିଖାଇବାର ନାହିଁ, ସେମାନେ ଗୋଟିଏ ଗୋଟିଏ ଶବ୍ଦ ନେଇ କେଉଁଠାରୁ ତାହାର ଉତ୍ପତ୍ତି, କେଉଁ ବ୍ୟକ୍ତି ତାହା ପ୍ରଥମେ ବ୍ୟବହାର କରିଥିଲେ, ସେ କଅଣ ଖାଉଥିଲେ, କିପରି ଶୋଉଥିଲେ, ଏହି ବିଷୟରେ ତିନି ଖଣ୍ଡର ଏକ ଗ୍ରନ୍ଥ ଲେଖିଲେ ।

ମୋର ଗୁରୁଦେବ ଗୋଟିଏ ଗଳ୍ପ କହୁଥିଲେ—"କେଇଜଣ ଲୋକ ଗୋଟିଏ ଆମ୍ବତୋଟାକୁ ବୁଲି ଯାଇଥିଲେ । ତାଙ୍କ ଭିତରୁ ଅଧିକାଂଶ ଗଣିବାରେ ଲାଗିଲେ; ସେ ବଗିଚାରେ କେତେଟା ଆମ୍ବଗଛ, କେଉଁ ଗଛରେ କେତେ ଆମ୍ବ, ଗୋଟିଏ ଗୋଟିଏ ଡାଳରେ କେତେ ପତ୍ର, ପତ୍ରର କି କି ରଙ୍ଗ, ଡାଳସବୁ କେତେ ବଡ଼, କେତେ ଶାଖାପ୍ରଶାଖା ଇତ୍ୟାଦି ଏସବୁ ଲେଖି ନେଇ ସେମାନେ ନାନାପ୍ରକାର ଆଶ୍ଚର୍ଯ୍ୟ ଆଲୋଚନା କରିବାରେ ଲାଗିଲେ । ଆଉ ଜଣକ, ଯେ କେବଳ ବୁଦ୍ଧିମାନ, ସେ ତୋଟା-ମାଲିକ ସଙ୍ଗରେ ଆଳାପ କରି ଗୋଟିଏ ଗୋଟିଏ ଆମ୍ବ ତୋଳି ଖାଇବାକୁ ଲାଗିଲା । ଏଣୁ କେବଳ ଡାଳପତ୍ର ଗଣିବା ଗୁଡ଼ାକ ଦ୍ୟ । ଅବଶ୍ୟ କ୍ଷେତ୍ରବିଶେଷରେ ଏସବୁ କର୍ମର ଉପଯୋଗିତା ଅଛି; କିନ୍ତୁ ଏଠାରେ, ଏହି ଆଧ୍ୟାତ୍ମିକ-ରାଜ୍ୟରେ ନୁହେଁ । ଏହିଭଳି କାର୍ଯ୍ୟଦ୍ୱାରା କୌଣସି ବ୍ୟକ୍ତି କେବେ ଆଧ୍ୟାତ୍ମିକ ହୋଇପାରନ୍ତି ନାହିଁ । ଏହିସବୁ 'ପତ୍ରଗଣା' ଦଳ ଭିତରେ କଅଣ ଆପଣମାନେ କେବେ ହେଲେ ଜଣେ ବି ଧର୍ମବୀର ଦେଖିଛନ୍ତି ? ଧର୍ମ ହିଁ ମାନବଜୀବନର ସର୍ବୋଚ୍ଚ ଲକ୍ଷ୍ୟ, ତାହା ମାନବଜୀବନର ସର୍ବୋଚ୍ଚ ଗୌରବ; କିନ୍ତୁ ତାହା ପୁଣି ସବୁଠାରୁ ସହଜ, ସେଥିରେ ପତ୍ର ଗଣିବା—ହିସାବ କିତାବ କରିବା ଭଳି ଝମେଲଦ୍ୱାରା କିଛି ପ୍ରୟୋଜନ ମୋଟେ ନାହିଁ । ଯଦି ଆପଣ ଖ୍ରୀଷ୍ଟିଆନ ହେବାକୁ ଚାହାଁନ୍ତି, ତେବେ କେଉଁଠି ଖ୍ରୀଷ୍ଟ ଜାତ ହୋଇଥିଲେ—ବେଥ୍‌ଲହେମ୍‌ରେ କିମ୍ବା

[୧] ଶବ୍ଦଜାଲଂ ମହାରଣ୍ୟଂ ଚିତ୍ତଭ୍ରମଣକାରଣମ୍ । ୬୦ —ବିବେକଚୂଡ଼ାମଣି

[୨] ବାଗ୍‌ବୈଖରୀ ଶବ୍ଦଝରୀ ଶାସ୍ତ୍ରବ୍ୟାଖ୍ୟାନକୌଶଳମ୍ ।
ବୈଦୁଷ୍ୟଂ ବିଦୁଷାଂ ତଦ୍‌ବଦ୍ ଭୁକ୍ତୟେ ନ ତୁ ମୁକ୍ତୟେ ॥ ୫୮—ବିବେକଚୂଡ଼ାମଣି

ଜେରୁଜେଲମ୍‌ରେ ? ସେ କ'ଣ କରୁଥିଲେ କିମ୍ବା ଠିକ୍ କେଉଁ ଭାବରେ ଶୈଳୋପଦେଶ (Sermon on the Mount) ଦେଇଥିଲେ ଏସବୁ ଜାଣିବାର କୌଣସି ପ୍ରୟୋଜନ ନାହିଁ । ଆପଣ ଯଦି କେବଳ ଏହି ଉପଦେଶ ପ୍ରାଣେ ପ୍ରାଣେ ଅନୁଭବ କରନ୍ତି, ସେତିକି ଯଥେଷ୍ଟ । କେତେବେଳେ ଏ ଉପଦେଶ ଦିଆଯାଇଥିଲା, ସେ ସମ୍ବନ୍ଧରେ ଦୁଇହଜାର ଶବ୍ଦ-ସମ୍ବଳିତ ଏକ ପ୍ରବନ୍ଧ ପାଠ କରିବାର କିଛି ପ୍ରୟୋଜନ ନାହିଁ । ଏସବୁ ପଣ୍ଡିତମାନଙ୍କର ଆମୋଦ ନିମିତ୍ତ—ସେମାନେ ତାହାକୁ ନେଇ ଆନନ୍ଦ କରନ୍ତୁ । ସେମାନେ କଥାରେ ଶାନ୍ତିଃ ଶାନ୍ତିଃ କହି ହୁଅନ୍ତୁ—ଆସନ୍ତୁ, ଆମେ ଆମ୍ବ ଖାଇବା ।

ଦ୍ୱିତୀୟତଃ ଗୁରୁଙ୍କର ସମ୍ପୂର୍ଣ୍ଣ ନିଷ୍ପାପ ହେବା ଆବଶ୍ୟକ । ଇଂଲଣ୍ଡରେ ଥରେ ଜଣେ ବନ୍ଧୁ ମୋତେ ପଚାରିଲେ, "ଗୁରୁଙ୍କର ବ୍ୟକ୍ତିଗତ ଚରିତ୍ର—ସେ କଅଣ କରନ୍ତି, ନ କରନ୍ତି ଦେଖିବା ପ୍ରୟୋଜନ କି ? ସେ ଯାହା କହନ୍ତି, ତଦନୁସାରେ କାର୍ଯ୍ୟ କଲେ ତ ହେଲା ।" ଏ କଥା ଠିକ୍ ନୁହେଁ । ଯଦି କୌଣସି ବ୍ୟକ୍ତି ଆମକୁ ଗତିବିଜ୍ଞାନ, ରସାୟନ ବା ଅନ୍ୟ କୌଣସି ଜଡ଼ବିଜ୍ଞାନ ସମ୍ବନ୍ଧରେ କିଛି ଶିଖାଇବାକୁ ଇଚ୍ଛା କରନ୍ତି, ସେ ଯେ ପ୍ରକାର ଚରିତ୍ରର ଲୋକ ହୁଅନ୍ତୁ, ସେଥିରେ କ୍ଷତି ନାହିଁ—ସେ ଅନାୟାସରେ ତାହା ଶିକ୍ଷା ଦେଇପାରନ୍ତି । ଏହା ସମ୍ପୂର୍ଣ୍ଣ ସତ୍ୟ—କାରଣ ଜଡ଼ବିଜ୍ଞାନ ଶିଖାଇବାକୁ ଯେଉଁ ଜ୍ଞାନର ପ୍ରୟୋଜନ, ତାହା କେବଳ ବୁଦ୍ଧି ବିଷୟକ ହୋଇଥିବାରୁ ବୁଦ୍ଧିଜାତ ଶକ୍ତି ଉପରେ ନିର୍ଭର କରେ—ଏଭଳି କ୍ଷେତ୍ରରେ ଆତ୍ମାର କିଛିମାତ୍ର ବିକାଶ ନ ହୋଇଥିଲେ ମଧ୍ୟ ଜଣକର ବୁଦ୍ଧିଶକ୍ତି ଥାଇପାରେ; କିନ୍ତୁ ଆଧ୍ୟାତ୍ମିକ ବିଜ୍ଞାନରେ—ଯେଉଁ ବ୍ୟକ୍ତି ଅଶୁଦ୍ଧଚିତ୍ତ, ତାହାର ହୃଦୟରେ କୌଣସି ପ୍ରକାର ଆଧ୍ୟାତ୍ମିକ-ଆଲୋକ ପ୍ରତିଭାତ ହେବା ଅସମ୍ଭବ । ସେ କି ଶିକ୍ଷା ଦେବେ ? ସେ ତ ନିଜେ କିଛି ଜାଣନ୍ତି ନାହିଁ । ଚିତ୍ତର ଶୁଦ୍ଧି ହିଁ ଆଧ୍ୟାତ୍ମିକ ସତ୍ୟ । "ପବିତ୍ରାତ୍ମାଗଣ ଧନ୍ୟ, କାରଣ ସେମାନେ ଈଶ୍ୱରଙ୍କୁ ଦେଖିବେ ।"—ଏହି ଗୋଟିଏ ବାକ୍ୟ ମଧ୍ୟରେ ଧର୍ମର ସମସ୍ତ ସାରତତ୍ତ୍ୱ ନିହିତ । ଯଦି ଆପଣ ଏହି ଗୋଟିଏ କଥା ଶିଖିଥାନ୍ତି, ତାହାହେଲେ ଅତୀତରେ ଧର୍ମ ସମ୍ବନ୍ଧରେ ଯାହାକିଛି କୁହାଯାଇଛି ଓ ଭବିଷ୍ୟତରେ ଯାହାକିଛି କୁହାହେବାର ସମ୍ଭାବନା ରହିଛି, ସେସବୁ ଆପଣ ଜାଣିଛନ୍ତି; ଆପଣଙ୍କର ଆଉ କିଛି ଜାଣିବାର ପ୍ରୟୋଜନ ନାହିଁ, କାରଣ ଆପଣଙ୍କର ଯାହାକିଛି ଦରକାର, ସବୁ ସେହି ଗୋଟିଏ ବାକ୍ୟରେ ନିହିତ ରହିଛି । ସମୁଦାୟ ଶାସ୍ତ୍ର ନଷ୍ଟ ହୋଇଗଲେ ମଧ୍ୟ ଏହି ଏକମାତ୍ର ବାକ୍ୟ ହିଁ ସମଗ୍ର ଜଗତକୁ ଉଦ୍ଧାର କରିବାକୁ ସମର୍ଥ । ଯେତେବେଳ ପର୍ଯ୍ୟନ୍ତ ଜୀବାତ୍ମା ଶୁଦ୍ଧସ୍ୱଭାବ ହୋଇ ନାହାନ୍ତି, ସେତେବେଳ ପର୍ଯ୍ୟନ୍ତ ଈଶ୍ୱରଦର୍ଶନ ବା ସେହି ସର୍ବାତୀତ ତତ୍ତ୍ୱର ସାମାନ୍ୟତମ ଦର୍ଶନ ମଧ୍ୟ ଅସମ୍ଭବ । ଏଣୁ ଗୁରୁଙ୍କର ପବିତ୍ରତା-ରୂପକ ଏହି ଏକମାତ୍ର ଗୁଣ ନିଶ୍ଚୟ ରହିବ । ପ୍ରଥମେ ଦେଖିବାକୁ ହେବ—ସେ କି ପ୍ରକାର ଲୋକ, ତା'ପରେ ଶୁଣିବାକୁ ହେବ ସେ କ'ଣ କହୁଛନ୍ତି । ଲୌକିକ ବିଦ୍ୟାର ଶିକ୍ଷକମାନଙ୍କ ସମ୍ବନ୍ଧରେ ଅବଶ୍ୟ ଏ କଥା ଖଟେ ନାହିଁ । ସେମାନେ କି ଚରିତ୍ରର ଲୋକ, ଏହା ଜାଣିବା ଅପେକ୍ଷା ସେମାନେ କ'ଣ କହନ୍ତି, ଏହା ଜାଣିବା ବିଶେଷ ପ୍ରୟୋଜନ । ଧର୍ମାଚାର୍ଯ୍ୟଙ୍କ ସମ୍ବନ୍ଧରେ ଆମକୁ ସର୍ବପ୍ରଥମେ ଦେଖିବାକୁ ପଡ଼ିବ, ସେ କି ପ୍ରକାର

ଚରିତ୍ରର ମଣିଷ, ତା'ହେଲେ ହିଁ ତାଙ୍କ କଥାର କିଛି ମୂଲ୍ୟ ରହିବ, ସେ ଯେ ଶକ୍ତି-ସଞ୍ଚାରକ। ଯଦି ତାଙ୍କ ଭିତରେ ଆଧ୍ୟାତ୍ମିକ ଶକ୍ତି ନ ଥାଏ, ତେବେ ସେ କ'ଣ ସଞ୍ଚାର କରିବେ ? ଗୁରୁଙ୍କ ମନରେ ଏକ ପ୍ରକାର ସ୍ପନ୍ଦନ ରହିଛି, ଗୋଟିଏ ଉପମା ଦିଆଯାଉ। ଶିଷ୍ୟର ମନରେ ସେ ତାହା ସଞ୍ଚାର କରିଦିଅନ୍ତି। ଯଦି ଏହି ଆଧାରରେ ଅଗ୍ନି ଥାଏ, ତା'ହେଲେ ତାହା ତାପ ସଞ୍ଚାର କରିପାରେ, ନଚେତ୍ ପାରେ ନାହିଁ। ଏହା ଜଣକଠାରୁ ଅନ୍ୟ ଜଣକଠାକୁ ଶକ୍ତି-ସଞ୍ଚାରର କଥା—କେବଳ ଆମର ବୁଦ୍ଧିବୃତ୍ତିକୁ ଉତ୍ତେଜିତ କରିବା ନୁହେଁ। ଗୁରୁଙ୍କ ନିକଟରୁ ପ୍ରତ୍ୟକ୍ଷ ଗୋଟିଏ କିଛି ଆସି ଶିଷ୍ୟ ମଧ୍ୟରେ ପ୍ରବେଶ କରେ—ତାହା ପ୍ରଥମେ ବୀଜସ୍ୱରୂପରେ ଆସି କ୍ରମଶଃ ବୃହତ୍ ବୃକ୍ଷାକାରରେ ବର୍ଦ୍ଧିତ ହୋଇଥାଏ। ଏଣୁ ଗୁରୁ ନିଷ୍ପାପ ଓ ଅକପଟ ହେବା ଆବଶ୍ୟକ।

ତୃତୀୟତଃ ଦେଖିବାକୁ ହେବ, ଗୁରୁଙ୍କର ଉଦ୍ଦେଶ୍ୟ କ'ଣ। ଦେଖିବାକୁ ହେବ—ସେ ଯେପରି ନାମ, ଯଶ ବା ଅନ୍ୟ କୌଣସି ଉଦ୍ଦେଶ୍ୟ ନେଇ ଶିକ୍ଷାଦାନରେ ପ୍ରବୃତ୍ତ ନ ହୁଅନ୍ତି; କେବଳ ଭଲ ପାଇବା—ଶିଷ୍ୟ ପ୍ରତି ଅକପଟ ସ୍ନେହ ଯୋଗୁଁ ହିଁ ସେ ଯେପରି ଶିଷ୍ୟକୁ ଶିକ୍ଷା ଦିଅନ୍ତି। ଗୁରୁଙ୍କଠାରୁ ଶିଷ୍ୟଠାରେ ଯେଉଁ ଆଧ୍ୟାତ୍ମିକ ଶକ୍ତି ସଞ୍ଚାରିତ ହୁଏ, ତାହା କେବଳ ଭଲପାଇବା ମାଧ୍ୟମରେ ସଞ୍ଚାରିତ ହୋଇପାରେ। ଅନ୍ୟ କୌଣସି ମାଧ୍ୟମ ଦ୍ୱାରା ତାହା ସଞ୍ଚାର କରାଯାଇପାରେ ନାହିଁ। କୌଣସି ପ୍ରକାର ଲାଭ ବା ନାମଯଶର ଆକାଙ୍କ୍ଷାରୂପକ ଅନ୍ୟ କୌଣସି ଉଦ୍ଦେଶ୍ୟ ଥିଲେ ତତ୍କ୍ଷଣାତ୍ ଏହି ଶକ୍ତିସଞ୍ଚାରକ-ମାଧ୍ୟମ ନଷ୍ଟ ହୋଇଯିବ; ତେଣୁ ଭଲପାଇବା ଭିତର ଦେଇ ସବୁକିଛି କରିବାକୁ ହେବ। ଯେ ଈଶ୍ୱରଙ୍କୁ ଜାଣିଛନ୍ତି, ସେ କେବଳ ଗୁରୁ ହୋଇପାରନ୍ତି।

ଯେତେବେଳେ ଦେଖିବେ, ଗୁରୁଙ୍କର ଏହି ଗୁଣଗୁଡ଼ିକ ଅଛି, ସେତେବେଳେ ଆଉ କିଛି ଚିନ୍ତା ନାହିଁ; କିନ୍ତୁ ଏଗୁଡ଼ିକ ନ ଥିଲେ ତାଙ୍କଠାରୁ ଶିକ୍ଷା ଗ୍ରହଣ କରିବାରେ ବିପଦ ଅଛି। ଯେବେ ସେ ସଦ୍ଭାବ ସଞ୍ଚାର କରି ନ ପାରନ୍ତି, ତେବେ ସମୟ ସମୟରେ କୁଭାବ ସଞ୍ଚାରିତ ହେବାର ଆଶଙ୍କା ରହିଛି। ଏଥିପ୍ରତି ସାବଧାନ ରହିବାକୁ ହେବ। ଅତଏବ ସ୍ୱଭାବତଃ ଏଥିରୁ ବୋଧ ହେଉଛି, ଯେକୌଣସି ବ୍ୟକ୍ତିଠାରୁ ଶିକ୍ଷା ଲାଭ କରାଯାଇପାରେ ନାହିଁ। ନଦୀ ଓ ପ୍ରସ୍ତରାଦିରୁ ଉପଦେଶ ଶ୍ରବଣ ଅଳଙ୍କାର ହିସାବରେ ସୁନ୍ଦର କଥା ହୋଇପାରେ; କିନ୍ତୁ ନିଜ ଭିତରେ ସତ୍ୟ ନ ଥିଲେ କେହି ସତ୍ୟର ଏକ କଣା ମାତ୍ର ପ୍ରଚାର କରିପାରେ ନାହିଁ। ନଦୀର ଉପଦେଶ କିଏ ଶୁଣିପାରେ ? ପ୍ରକୃତ ଗୁରୁଙ୍କର ଜ୍ଞାନାଲୋକରେ ଯାହାଙ୍କର ଜୀବନ ପୂର୍ବରୁ ହିଁ ବିକଶିତ ହୋଇଅଛି, ହୃତ୍ପଦ୍ମ ଥରେ ବି ପ୍ରସ୍ଫୁଟିତ ହେଲେ ନଦୀ, ପ୍ରସ୍ତର, ଚନ୍ଦ୍ର, ତାରକା ପ୍ରଭୃତି ନିକଟରୁ ଶିକ୍ଷା ଗ୍ରହଣ କରାଯାଇପାରେ—ଏ ସମସ୍ତଙ୍କ ନିକଟରୁ କିଛି ନା କିଛି ଆଧ୍ୟାତ୍ମିକ ମିଳି ଯାଇପାରେ; କିନ୍ତୁ ଯାହାର ହୃତ୍ପଦ୍ମ ଏପର୍ଯ୍ୟନ୍ତ ପ୍ରସ୍ଫୁଟିତ ହୋଇନାହିଁ, ସେ କେବଳ ନଦୀ ଓ ପ୍ରସ୍ତର ମାତ୍ର ଦେଖିବ। ଜଣେ ଅନ୍ଧ ଚିତ୍ରଶାଳାକୁ ଯାଇ-ପାରେ; କିନ୍ତୁ ତା'ର ଯିବା ହିଁ ବୃଥା; ପ୍ରଥମେ ତାକୁ ଦୃଷ୍ଟିଦାନ କରିବାକୁ ହେବ, ତେବେ ଯାଇ ସେ ଏହି ସ୍ଥାନରୁ କିଛି ଶିକ୍ଷା ପାଇବ। ଗୁରୁ ହିଁ ଆଧ୍ୟାତ୍ମିକ ଜୀବନର ନୟନ-

ଉନ୍ମୀଲନକାରୀ । ଏଣୁ ପୂର୍ବପୁରୁଷ ଓ ବଂଶଧରଗଣଙ୍କ ମଧ୍ୟରେ ଯେଉଁ ସମ୍ପର୍କ, ଗୁରୁଙ୍କ ସହିତ ଆମର ସେହି ସମ୍ପର୍କ । ଗୁରୁ ହିଁ ଆଧ୍ୟାତ୍ମିକ ଜୀବନର ପୂର୍ବପୁରୁଷ ଏବଂ ଶିଷ୍ୟ ତାଙ୍କର ଆଧ୍ୟାତ୍ମିକ ସନ୍ତାନ ବା ଉତ୍ତରାଧିକାରୀ । ସ୍ୱାଧୀନତା ଓ ସ୍ୱାତନ୍ତ୍ର୍ୟ ବିଷୟରେ କହିବା ବେଶ୍ ଭଲ କଥା; କିନ୍ତୁ ନମ୍ରତା, ବିନୟ, ଆଜ୍ଞାବହତା, ଶ୍ରଦ୍ଧା ଓ ବିଶ୍ୱାସ ବ୍ୟତୀତ କୌଣସି ପ୍ରକାର ଧର୍ମ ହୋଇପାରେ ନାହିଁ ଏବଂ ଏହା ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ ଯେ, ଯେଉଁଠାରେ ଗୁରୁଶିଷ୍ୟଙ୍କ ମଧ୍ୟରେ ଏଭଳି ସମ୍ବନ୍ଧ ଏବେ ମଧ୍ୟ ରହିଛି, କେବଳ ସେହିଠାରେ ହିଁ ବଡ଼ ବଡ଼ ଧର୍ମବୀରଙ୍କର ଜୀବନ ବିକଶିତ ହୋଇଛି; କିନ୍ତୁ ଯେଉଁ ସମାଜରେ ଏଭଳି ସମ୍ବନ୍ଧ ବିସର୍ଜିତ ହୋଇଛି, ସେଠାରେ ଧର୍ମ ଚିତ୍ତବିନୋଦନର ଏକ ଉପାୟ ମାତ୍ରରେ ପରିଣତ ହୋଇଅଛି । ଯେଉଁସବୁ ଜାତି ଓ ଧର୍ମ-ସମ୍ପ୍ରଦାୟ ଭିତରେ ଗୁରୁ-ଶିଷ୍ୟଙ୍କ ମଧ୍ୟରେ ଏହିଭଳି ସମ୍ବନ୍ଧ ରକ୍ଷିତ ହୋଇନାହିଁ, ଧର୍ମ ସେଠାରେ ଅଜ୍ଞାତ ରହିଛି କହିଲେ ଚଳେ । ଗୁରୁ-ଶିଷ୍ୟଙ୍କ ମଧ୍ୟରେ ଏଭଳି ଭାବ ବ୍ୟତୀତ ଧର୍ମ ଆସିପାରେ ନାହିଁ । ପ୍ରଥମତଃ ଶକ୍ତିସଞ୍ଚାର କରିବା ପାଇଁ କେହି ନାହିଁ, ଦ୍ୱିତୀୟତଃ ଏପରି କେହି ନାହିଁ, ଯାହା ଭିତରେ ତାହା ସଞ୍ଚାରିତ ହେବ—କାରଣ ସମସ୍ତେ ଯେ ସ୍ୱାଧୀନ । ସେମାନେ ଆଉ ଶିଖିବେ କାହାଠାରୁ ? ତଥାପି କେହି ଶିଖିବାକୁ ଆସିଲେ ଜ୍ଞାନ କିଣି କରିବାକୁ ଆସନ୍ତି ବୋଲି କହିବାକୁ ହେବ । ମୋତେ ଟଙ୍କାକର ଧର୍ମ ଦିଅ । ଆମେ କ'ଣ ଆଉ ଏଥିପାଇଁ ଟଙ୍କା ଖର୍ଚ୍ଚ କରିପାରୁନୁ ? ଏହି ଭାବରେ ଧର୍ମଲାଭ କରାଯାଏ ନାହିଁ ।

ଜ୍ଞାନ ଅପେକ୍ଷା ଉଚ୍ଚତର ଓ ପବିତ୍ରତର ଆଉ କିଛି ନାହିଁ ।[୧] ଗୁରୁଙ୍କ ମାଧ୍ୟମରେ ତାହା ମାନବାତ୍ମାରେ ଆବିର୍ଭୂତ ହୋଇଥାଏ । ସିଦ୍ଧଯୋଗୀ ହେଲେ ହିଁ ଏହି ଜ୍ଞାନ ନିଜେ ନିଜେ ଆସିଯାଏ; ଗ୍ରନ୍ଥରୁ ତାହା ଲାଭ କରାଯାଇପାରେ ନାହିଁ । ଯେତେଦିନ ପର୍ଯ୍ୟନ୍ତ ଗୁରୁଲାଭ ହୋଇ ନାହିଁ, ସେତେକାଳ ପର୍ଯ୍ୟନ୍ତ ଦୁନିଆର ଚାରି-କୋଣରେ ବୁଲି ମୁଣ୍ଡ କୋଡ଼ି ବୁଲି ଆସ, ଅଥବା ହିମାଳୟ, ଆଲ୍‌ପସ୍ ବା କକେସସ୍ ପର୍ବତ କିମ୍ବା ଗୋବି ବା ସାହାରା ମରୁଭୂମିରେ ବିଚରଣ କର ଅଥବା ସାଗରର ଅତଳ ତଳରେ ପ୍ରବେଶ କର, କୌଣସିଥିରେ ଏହି ଜ୍ଞାନ ଆସିବ ନାହିଁ । ଗୁରୁଲାଭ କର—ସନ୍ତାନ ଯେପରି ପିତାର ସେବା କରେ, ସେହି ଭାବରେ ତାଙ୍କର ସେବା କର—ତାଙ୍କ ନିକଟରେ ହୃଦୟ ଉନ୍ମୁକ୍ତ କର—ତାଙ୍କ ମଧ୍ୟରେ ଈଶ୍ୱରଙ୍କ ଅବତାର ପ୍ରତ୍ୟକ୍ଷ କର । 'ଗୁରୁ ଆମ ପକ୍ଷରେ ଈଶ୍ୱରଙ୍କର ସର୍ବଶ୍ରେଷ୍ଠ ଅଭିବ୍ୟକ୍ତି' —ଏହା ଭାବି ପ୍ରଥମେ ତାଙ୍କ ପ୍ରତି ଚିତ୍ତ ସଂଲଗ୍ନ କରିବାକୁ ହେବ । ତା'ପରେ ଧ୍ୟାନ ଯେତିକି ପ୍ରଗାଢ଼ ହେବ, ସେତିକି ଗୁରୁଙ୍କର ଛବି ମିଳାଇଯିବ, ତାଙ୍କର ବାହ୍ୟରୂପ ଆଉ ଦେଖାଯିବ ନାହିଁ, ସେତେବେଳେ ସେହି ସ୍ଥାନରେ ଯଥାର୍ଥ ଈଶ୍ୱର ବିରାଜମାନ କରିବେ । ଯେଉଁମାନେ ଏହିଭଳି ଭକ୍ତି, ଶ୍ରଦ୍ଧା ଓ ଭଲପାଇବାର ଭାବ ବରଣ କରି ସତ୍ୟାନୁସନ୍ଧାନରେ ଅଗ୍ରସର ହୁଅନ୍ତି, ସେମାନଙ୍କ ନିକଟରେ ସତ୍ୟର ଭଗବାନ ଅତି ଅଦ୍ଭୁତ ତତ୍ତ୍ୱସମୂହ ପ୍ରକାଶ କରନ୍ତି । ବାଇବେଲରେ ଗୋଟିଏ ସ୍ଥାନରେ ଅଛି, "ପାଦରୁ ଯୋତା ଖୋଲି ପକାଅ, କାରଣ ଯେଉଁଠାରେ ତୁମେ ଦଣ୍ଡାୟମାନ ଅଛ, ତାହା ପବିତ୍ର ଭୂମି ।" ଯେଉଁଠାରେ ତାଙ୍କ ନାମ ଉଚ୍ଚାରିତ

[୧] ନ ହି ଜ୍ଞାନେନ ସଦୃଶଂ ପବିତ୍ରମିହ ବିଦ୍ୟତେ ।—ଗୀତା, ୪।୩୮

ହୁଏ, ସେହି ସ୍ଥାନ ହିଁ ପବିତ୍ର ![1] ଯେ ତାଙ୍କ ନାମ ଉଚ୍ଚାରଣ କରନ୍ତି, ସେ କେତେ ପବିତ୍ର ଭାବନ୍ତୁ ଦେଖି ! ଆଉ ଯାହାଙ୍କଠାରୁ ଆଧ୍ୟାତ୍ମିକ ସତ୍ୟସମୂହ ଲାଭ କରାଯାଏ, କେତେ ଶ୍ରଦ୍ଧା ସହିତ ତାଙ୍କ ସମୀପକୁ ଯିବା ଉଚିତ ! ଏହି ଭାବ ନେଇ ଆମକୁ ଗୁରୁଙ୍କ ନିକଟରୁ ଉପଦେଶ ଗ୍ରହଣ କରିବାକୁ ହେବ । ଏହି ଜଗତରେ ଏହିଭଳି ଗୁରୁ ଯେ ସଂଖ୍ୟାରେ ଅତି ଅଳ୍ପ, ଏଥିରେ କୌଣସି ସଂଶୟ ନାହିଁ; କିନ୍ତୁ ପୃଥିବୀରେ ଏପରି ଜଣେ ମାତ୍ର ଗୁରୁ ଯେ ନାହାନ୍ତି—ଏହା କେବେହେଲେ ସତ୍ୟ ନୁହେଁ । ଯେଉଁ ମୁହୂର୍ତ୍ତରେ ପୃଥିବୀ ସମ୍ପୂର୍ଣ୍ଣ ରୂପେ ଈଦୃଶ ଗୁରୁ-ବରହିତ ହେବ, ସେହି ମୁହୂର୍ତ୍ତରେ ଏହା ଘୋରତର ନରକ-କୁଣ୍ଡରେ ପରିଣତ ହେବ, ଧ୍ୱଂସ ପାଇଯିବ । ଏହି ଗୁରୁମାନେ ହିଁ ମନୁଷ୍ୟ-ଜୀବନର ସୁନ୍ଦରତମ ବିକାଶ—ସେମାନେ ଅଛନ୍ତି ବୋଲି ଜଗତ ଚାଲୁଅଛି, ଚଳିଅଛି । ସେମାନଙ୍କର ଶକ୍ତିରେ ହିଁ ସମାଜ-ବନ୍ଧନ ଅବ୍ୟାହତ ରହିଅଛି ।

ଏମାନଙ୍କ ବ୍ୟତୀତ ଆଉ ଏକପ୍ରକାର ଗୁରୁ ଅଛନ୍ତି—ସେମାନେ ଏହି ପୃଥିବୀର ଖ୍ରୀଷ୍ଟତୁଲ୍ୟ ବ୍ୟକ୍ତିଗଣ । ସେମାନେ ଗୁରୁଙ୍କ ଗୁରୁ—ସ୍ୱୟଂ ଈଶ୍ୱର ମାନବରୂପରେ ଅବତୀର୍ଣ୍ଣ । ସେମାନେ ପୂର୍ବୋକ୍ତ ଗୁରୁମାନଙ୍କଠାରୁ ଅନେକ ଉଚ୍ଚ । ସେମାନେ ସ୍ପର୍ଶଦ୍ୱାରା, ଏପରି କି କେବଳ ଇଚ୍ଛାମାତ୍ର ଦ୍ୱାରା ଅନ୍ୟର ଅନ୍ତରରେ ଧର୍ମଶକ୍ତି ସଞ୍ଚାରିତ କରିପାରନ୍ତି । ସେମାନଙ୍କର ଶକ୍ତିଦ୍ୱାରା ହୀନତମ, ଅଧମ ବ୍ୟକ୍ତିଗଣ ମଧ୍ୟ ମୁହୂର୍ତ୍ତ ମଧ୍ୟରେ ସାଧୁରେ ପରିଣତ ହୁଅନ୍ତି । ସେମାନେ କିଭଳି ଏହା କରନ୍ତି ତାହା କ'ଣ ତୁମେମାନେ ପଢ଼ି ନାହଁ ? ମୁଁ ଯେଉଁସବୁ ଗୁରୁଙ୍କ କଥା କହିଥିଲି, ଏହି ଗୁରୁଗଣ ସେମାନଙ୍କ ପରି ନୁହନ୍ତି—ଏମାନେ ସକଳଗୁରୁଙ୍କର ଗୁରୁ, ମନୁଷ୍ୟ ନିକଟରେ ଈଶ୍ୱରଙ୍କର ଶ୍ରେଷ୍ଠ ପ୍ରକାଶ । ଆମେ ସେମାନଙ୍କ ମାଧ୍ୟମ ଦେଇ ଯିବା ବ୍ୟତୀତ ଅନ୍ୟ କୌଣସି ରୂପରେ ଆମେ ଭଗବାନଙ୍କ ଦେଖା ପାଇପାରିବା ନାହିଁ । ଆମେ ସେମାନଙ୍କୁ ପୂଜା ନ କରି ରହିପାରୁ ନାହିଁ ଏବଂ କେବଳ ସେହିମାନଙ୍କୁ ହିଁ ଆମେ ପୂଜା କରିବାକୁ ବାଧ୍ୟ ।

ଅବତାର ମଧ୍ୟରେ ଈଶ୍ୱର ଯେଉଁ ଭାବରେ ପ୍ରକାଶିତ, ସେହି ଭାବ ବ୍ୟତୀତ ଅନ୍ୟ ରୂପରେ କେହି ଈଶ୍ୱରଙ୍କୁ ଦେଖେ ନାହିଁ । ଆମେ ଈଶ୍ୱରଙ୍କ ଦର୍ଶନ ଲାଭ କରିପାରୁ ନାହିଁ । ଯଦି ଆମେ ତାଙ୍କୁ ଦେଖିବାକୁ ଚେଷ୍ଟା କରୁଥାଉ, ତେବେ ଆମେ କେବଳ ତାଙ୍କର ଏକ ଭୟଙ୍କର ବିକୃତାକାର ରୂପ ଗଢ଼ିଥାଉ । ଭାରତରେ ପ୍ରଚଳିତ କଥାରେ କୁହାଯାଏ— ମୂର୍ଖ ଲୋକ ଶିବ ଗଢ଼ିବାକୁ ଯାଇ ବହୁ ଚେଷ୍ଟାରେ ଗୋଟିଏ ମାଙ୍କଡ଼ ଗଢ଼ିଥିଲା । ଏହିଭଳି ଯେତେବେଳେ ଆମେ ଈଶ୍ୱରଙ୍କର ମୂର୍ତ୍ତି ଗଢ଼ିବାକୁ ଚେଷ୍ଟା କରୁ, ସେତେବେଳେ ଆମେ ତାଙ୍କୁ ବିକୃତ କରି ତୋଳିଥାଉ, କାରଣ ଯେତେକ୍ଷଣ ଆମେ ମନୁଷ୍ୟ ହୋଇ ରହିଛୁ, ସେତେକ୍ଷଣ ଆମେ ତାଙ୍କୁ ମନୁଷ୍ୟ ଅପେକ୍ଷା ଉଚ୍ଚତର ଅନ୍ୟ କିଛି ବୋଲି ଭାବିପାରୁ ନାହିଁ । ଅବଶ୍ୟ

[1] Take thy shoes from off thy feet, for the place whereon thou standest is holy ground.

—O. T. Exodus, ch. III, 5

ଏପରି ସମୟ ଆସିବ, ଯେତେବେଳେ ଆମେ ମନୁଷ୍ୟ-ପ୍ରକୃତିକୁ ଅତିକ୍ରମ କରିବୁ ଏବଂ ତାଙ୍କର ଯଥାର୍ଥ ସ୍ୱରୂପ ଅବଗତ ହେବୁ । କିନ୍ତୁ ଯେତେଦିନ ଆମେ ମନୁଷ୍ୟ, ସେତେଦିନ ପର୍ଯ୍ୟନ୍ତ ଆମେ ତାହାଙ୍କୁ ମନୁଷ୍ୟରୂପରେ ହିଁ ଉପାସନା କରିବୁ । ଯାହା କୁହ ନା କାହିଁକି, ଯେତେ ଚେଷ୍ଟା କର ନା କାହିଁକି, ଈଶ୍ୱରଙ୍କୁ ମନୁଷ୍ୟ ବ୍ୟତୀତ ଅନ୍ୟ କୌଣସି ରୂପରେ ଦେଖିବାକୁ ପାଇବ ନାହିଁ । ଆମେ ଖବ୍ ବଡ଼ ବଡ଼ ପାଣ୍ଡିତ୍ୟପୂର୍ଣ୍ଣ ବକ୍ତୃତା ଦେଇପାରୁ, ଖୁବ୍ ଯୁକ୍ତିବାଦୀ ହୋଇପାରୁ, ପ୍ରମାଣ କରିଦେଇପାରୁ ଯେ, ଈଶ୍ୱରଙ୍କ ସମ୍ବନ୍ଧୀୟ ଯେତେସବୁ ପୌରାଣିକ ଗଳ୍ପ, ସେଗୁଡ଼ିକ ଏକାବେଳକେ ଅର୍ଥହୀନ; କିନ୍ତୁ ଥରେ ମାତ୍ର ସହଜବୁଦ୍ଧିଦ୍ୱାରା ବସ୍ତୁର କଥା ଦେଖାଯାଉ—ଅସାଧାରଣ ପଛରେ କ'ଣ ଅଛି ? ତାହା ଶୂନ୍ୟ, ଖାଲି ଜଳ-ବୁଦ୍‌ବୁଦ ମାତ୍ର । ଏହାପରେ ଯେତେବେଳେ ଦେଖିବେ, କୌଣସି ବ୍ୟକ୍ତି ଈଶ୍ୱର-ପୂଜା ବିରୋଧରେ ଖୁବ୍ ପାଣ୍ଡିତ୍ୟପୂର୍ଣ୍ଣ ବକ୍ତୃତା ଦେଉଛନ୍ତି, ସେତେବେଳେ ସେହି ବ୍ୟକ୍ତିଙ୍କୁ ଧରି ଜିଜ୍ଞାସା କର । ଈଶ୍ୱରଙ୍କ ସମ୍ବନ୍ଧରେ ଆପଣଙ୍କର ଅନୁଭୂତି କ'ଣ ? 'ସର୍ବଶକ୍ତିମତ୍ତା,' 'ସର୍ବ-'ବ୍ୟାପିତା', 'ସର୍ବବ୍ୟାପୀ ପ୍ରେମ' ପ୍ରଭୃତି ଶବ୍ଦମାନଙ୍କ ଦ୍ୱାରା ଏଗୁଡ଼ିକର ବନାନ ବ୍ୟତୀତ ସେ ଆଉ ଅଧିକ କିଛି ବୁଝେନାହିଁ, ଯେ ଏହି ଶବ୍ଦଗୁଡ଼ିକ ଦ୍ୱାରା ନିର୍ଦ୍ଦିଷ୍ଟ କୌଣସି ଭାବକୁ ବୁଝେନା, ଦାଣ୍ଡର ଯେଉଁ ଲୋକଟି ଖଣ୍ଡିଏ ହେଲେ ବହି ପଢ଼ିନାହିଁ, ତା'ଅପେକ୍ଷା ସେ କୌଣସି ଅଂଶରେ ଉନ୍ନତ ନୁହେଁ । ତେବେ ଦାଣ୍ଡର ଲୋକଟି ନିରୀହ ଓ ଶାନ୍ତ ପ୍ରକୃତିର—ସେ ସଂସାରର ଶାନ୍ତିଭଙ୍ଗ କରେ ନାହିଁ; କିନ୍ତୁ ଅନ୍ୟ ଲୋକଟିର ତର୍କଜ୍ୱାଳାରେ ସମସ୍ତେ ବ୍ୟତିବ୍ୟସ୍ତ ।ତା'ର କୌଣସି ପ୍ରକାର ପ୍ରତ୍ୟକ୍ଷ ଧର୍ମାନୁଭୂତି ନାହିଁ; ତେଣୁ ଦୁହେଁ ଏକ ଭୂମିରେ ଅବସ୍ଥିତ ।

ପ୍ରତ୍ୟକ୍ଷାନୁଭୂତି ହିଁ ଧର୍ମ; କେବଳ କଥା ଓ ପ୍ରତ୍ୟକ୍ଷାନୁଭୂତି ମଧ୍ୟରେ ବିଶେଷ ପ୍ରଭେଦ ଆଣିବାକୁ ହେବ । ଆତ୍ମାରେ ଯାହା ଅନୁଭୂତ ହୁଏ, ତାହା ହିଁ ପ୍ରତ୍ୟକ୍ଷାନୁଭୂତି । ସର୍ବବ୍ୟାପୀ ପୁରୁଷ କହିଲେ କ'ଣ ବୁଝାଯାଏ ? ମନୁଷ୍ୟର ତ ନିରାକାର ଆତ୍ମା ସମ୍ବନ୍ଧରେ କୌଣସି ଧାରଣା ନାହିଁ—ତା' ସମ୍ମୁଖରେ ଯେଉଁସବୁ ଆକୃତିବିଶିଷ୍ଟ ବସ୍ତୁ ସେ ଦେଖେ, ସେଗୁଡ଼ିକ ମଧ୍ୟଦେଇ ତାକୁ ଆତ୍ମା ସମ୍ପର୍କରେ ଚିନ୍ତା କରିବାକୁ ହୁଏ । ତାହାକୁ ନୀଳ ଆକାଶ ବା ବିସ୍ତୀର୍ଣ୍ଣ ପ୍ରାନ୍ତର ବା ସମୁଦ୍ର କିମ୍ବା ଅନ୍ୟ କିଛି ବିରାଟ ବସ୍ତୁର ଚିନ୍ତା କରିବାକୁ ହୁଏ । ତା' ବ୍ୟତୀତ ଅନ୍ୟ କେଉଁ ରୂପରେ ସେ ଈଶ୍ୱରଙ୍କୁ ଚିନ୍ତା କରିବ ? ତୁମେ ଅବା କରୁଛ କ'ଣ ? ତୁମେ ସର୍ବ-ବ୍ୟାପିତାର କଥା କହୁଛ, ଅଥଚ ସମୁଦ୍ରର ବିଷୟ ଭାବୁଛ । ଈଶ୍ୱର କ'ଣ ସମୁଦ୍ର ? ତେଣୁ ସଂସାରର ଏହି ସମସ୍ତ ବୃଥା ଯୁକ୍ତିତର୍କ କିଛିକ୍ଷଣ ପାଇଁ ଶାନ୍ତ ହେଉ । ଆମେ ସହଜ, ସାଧାରଣ ଜ୍ଞାନ ଚାହୁଁ । ଏହି ସାଧାରଣ ଜ୍ଞାନ ଭଳି ଦୁର୍ଲ୍ଲଭ ବସ୍ତୁ ଜଗତରେ ଆଉ କିଛି ନାହିଁ । ଏହି ପୃଥିବୀରେ ବହୁତ ବେଶୀ କଥା ଓ ଆଲୋଚନା !

ଆମର ବର୍ତ୍ତମାନ ଗଠନ ଓ ପ୍ରକୃତି ଅନୁସାରେ ଆମେ ସୀମାବଦ୍ଧ, ଆମେ ଭଗବାନଙ୍କୁ ମନୁଷ୍ୟ ଭାବେ ଦେଖିବାକୁ ବାଧ୍ୟ । ମହିଷମାନେ ଯେବେ ଈଶ୍ୱରଙ୍କର ଉପାସନା କରିବାକୁ ଇଚ୍ଛା କରନ୍ତି, ସେମାନେ ଈଶ୍ୱରଙ୍କୁ ଏକ ବୃହଦାକାର ମହିଷରୂପରେ ଦେଖିବେ । ମତ୍ସ୍ୟ ଯଦି ଭଗବାନଙ୍କର ଉପାସନା କରିବାକୁ ଇଚ୍ଛା କରେ, ତେବେ ଭଗବାନଙ୍କୁ ଏକ ବୃହତ୍ ମତ୍ସ୍ୟ-

ରୂପରେ ତାହାଙ୍କୁ ଧାରଣା କରିବାକୁ ହେବ; ମନୁଷ୍ୟ ଯେବେ ଭଗବାନଙ୍କ ଉପାସନା କରିବାକୁ ଚାହେଁ, ତେବେ ମନୁଷ୍ୟରୂପରେ ତାଙ୍କୁ ଚିନ୍ତା କରିବାକୁ ହେବ ଏବଂ ଏଗୁଡ଼ିକ ଶୂନ୍ୟ କଳ୍ପନା ନୁହେଁ । ତୁମେ, ମୁଁ, ମହିଷ, ମତ୍ସ୍ୟ—ଏମାନେ ପ୍ରତ୍ୟେକ ଯେପରି ବିଭିନ୍ନ ପାତ୍ରସ୍ୱରୂପ । ଏମାନେ ନିଜ ନିଜ ଆକୃତି ଅନୁସାରେ ଜଳପୂର୍ଣ୍ଣ ହେବାପାଇଁ ସମୁଦ୍ରକୁ ଗଲେ । ମାନବରୂପ-ପାତ୍ରରେ ଏହି ଜଳ ମାନବାକାର, ମହିଷ-ପାତ୍ରରେ ମହିଷାକାର ଓ ମତ୍ସ୍ୟ-ପାତ୍ରରେ ମତ୍ସ୍ୟାକାର ଧାରଣ କଲା । ଏହି ପ୍ରତ୍ୟେକ ପାତ୍ରରେ ଜଳ ବ୍ୟତୀତ ଆଉ କିଛି ନାହିଁ । ଯେଉଁ ଈଶ୍ୱର ସମସ୍ତଙ୍କ ମଧ୍ୟରେ ଅଛନ୍ତି, ତାଙ୍କ ସମ୍ବନ୍ଧରେ ମଧ୍ୟ ଏହି କଥା । ମନୁଷ୍ୟ ଈଶ୍ୱରଙ୍କୁ ମନୁଷ୍ୟରୂପରେ ଓ ପଶୁଗଣ ପଶୁରୂପରେ ହିଁ ଦେଖନ୍ତି । ଯେ ଯାହାର ଆଦର୍ଶାନୁଯାୟୀ ତାହାଙ୍କୁ ଦେଖିଥାଆନ୍ତି । କେବଳ ଏହି ଭାବରେ ତାଙ୍କୁ ଦର୍ଶନ କରାଯାଇପାରେ । ଆପଣଙ୍କୁ ଏହି ମାନବରୂପୀ ଈଶ୍ୱରଙ୍କର ଉପାସନା କରିବାକୁ ହେବ, କାରଣ ଏହାଛଡ଼ା ଅନ୍ୟ ପଥ ନାହିଁ ।

ଦୁଇ ପ୍ରକାର ବ୍ୟକ୍ତି ଭଗବାନଙ୍କୁ ମାନବଭାବରେ ଉପାସନା କରି ନ ଥାନ୍ତି—ପଶୁପ୍ରକୃତିର ମାନବ—ଯାହାର କୌଣସି ଧର୍ମ ହିଁ ନାହିଁ ଏବଂ ପରମହଂସ—ସର୍ବଶ୍ରେଷ୍ଠ ଯୋଗୀ, ଯେ ମାନବଭାବର ଊର୍ଦ୍ଧ୍ୱକୁ ଉଠି ଯାଇଛନ୍ତି, ଦେହ-ମନର ବୋଧ ଦୂରକୁ ଫିଙ୍ଗି ଦେଇଛନ୍ତି, ପ୍ରକୃତିର ସୀମା ବାହାରକୁ ଯାଇଛନ୍ତି । ସମଗ୍ର ପ୍ରକୃତି ହିଁ ତାଙ୍କର ଆତ୍ମସ୍ୱରୂପ ହୋଇଯାଇଛି । ତାଙ୍କର ମନ ନାହିଁ, ଶରୀରବୋଧ ମଧ୍ୟ ନାହିଁ, ସେ ଯୀଶୁ ଓ ବୁଦ୍ଧଙ୍କ ଭଳି ଈଶ୍ୱରଙ୍କୁ ଈଶ୍ୱରରୂପରେ ଉପାସନା କରିବାକୁ ସମର୍ଥ, ସେ ଈଶ୍ୱରଙ୍କୁ ମାନବଭାବରେ ଉପାସନା କରନ୍ତି ନାହିଁ । ଏହା ହେଲା ଗୋଟିଏ ସୀମା, ଆଉ ଗୋଟିଏ ସୀମାରେ ପଶୁଭାବାପନ୍ନ ମାନବ । ଆପଣମାନେ ଜାଣନ୍ତି, ଦୁଇ ବିପରୀତ ପ୍ରାନ୍ତ ଚରମରେ କିପରି ଏକରୂପ ଦେଖାଯାଏ । ଚୂଡ଼ାନ୍ତ ଅଜ୍ଞାନ ଓ ଚୂଡ଼ାନ୍ତ ଜ୍ଞାନ ସମ୍ବନ୍ଧରେ ମଧ୍ୟ ତଦ୍ରୂପ । ଏହି ଦୁଇ ଅବସ୍ଥାରେ କେହି କାହାର ହେଲେ ଉପାସନା କରି ନ ଥାନ୍ତି । ଚୂଡ଼ାନ୍ତ ଅଜ୍ଞାନୀମାନେ ଈଶ୍ୱରଙ୍କର ଉପାସନା କରନ୍ତି ନାହିଁ; ମନ, ବୁଦ୍ଧି ଯେତେଦୂର ବିକଶିତ ହେଲେ ଉପାସନା କରିବାର ପ୍ରୟୋଜନ ଅନୁଭୂତ ହୁଏ, ସେତେଦୂର ସେମାନଙ୍କର ହୁଏ ନାହିଁ; ଜ୍ଞାନୀମାନେ ପ୍ରକୃତ ପକ୍ଷରେ ଈଶ୍ୱର ସାକ୍ଷାତ୍କାର କରି ଈଶ୍ୱରଙ୍କ ସହିତ ଏକ ହୋଇଯାଆନ୍ତି; ସେମାନେ ମଧ୍ୟ ଈଶ୍ୱର-ଉପାସନା କରନ୍ତି ନାହିଁ । ସେମାନେ ଆଉ କାହାର ଉପାସନା କରିବେ ? ଈଶ୍ୱର କେତେବେଳେ ହେଲେ ଈଶ୍ୱରଙ୍କର ଉପାସନା କରନ୍ତି ନାହିଁ । ଏହି ଦୁଇଟି ପ୍ରାନ୍ତୀୟ ଅବସ୍ଥାର ମଝିରେ ଥାଇ ଯଦି କେହି କହେ, ମନୁଷ୍ୟରୂପରେ ଭଗବାନଙ୍କ ଉପାସନା କରିବ ନାହିଁ, ତା'ହେଲେ ତା' ସମ୍ବନ୍ଧରେ ସାବଧାନ ରହିବେ; ସେ କ'ଣ କହୁଛି, ତା'ର ମର୍ମ ସେ ନିଜେ ଜାଣେ ନାହିଁ । ସେ ଭ୍ରାନ୍ତ, ତାହାର ଧର୍ମ ଅସାର ଚିନ୍ତା, କେବଳ ବୃଥା ବୁଦ୍ଧିର କାରସାଦି ।

ଅତଏବ ଈଶ୍ୱରଙ୍କୁ ମଣିଷରୂପରେ ପୂଜା କରିବା ଏକାନ୍ତ ଆବଶ୍ୟକ । ପୁନଶ୍ଚ ଯେଉଁ ସବୁ ଜାତିର ଉପାସ୍ୟ ଏହିଭଳି ମାନବରୂପଧାରୀ ଈଶ୍ୱର, ସେମାନେ ଧନ୍ୟ । ଖ୍ରୀଷ୍ଟିଆନମାନଙ୍କ ପକ୍ଷରେ ଖ୍ରୀଷ୍ଟ ଏହିଭଳି ମାନବଦେହଧାରୀ ଈଶ୍ୱର । ଅତଏବ ସେମାନେ ଖ୍ରୀଷ୍ଟଙ୍କୁ ଦୃଢ଼ଭାବରେ ଧରି ରଖନ୍ତୁ—ତାହାଙ୍କୁ ଯେପରି କଦାପି ନ ଛାଡ଼ନ୍ତି । ଭଗବତ୍-ଦର୍ଶନର ସ୍ୱାଭାବିକ ଉପାୟ—

ମାନବରେ ଈଶ୍ୱର ଦର୍ଶନ । ଆମର ଈଶ୍ୱର ସମ୍ବନ୍ଧୀୟ ସମସ୍ତ ଧାରଣା ହିଁ ଏହିପରି ଦେବ-ମାନବରେ ବର୍ତ୍ତମାନ । ଖ୍ରୀଷ୍ଟିଆନମାନଙ୍କର ଏହା ଏକ ବିଶେଷ ତ୍ରୁଟି ଯେ, ସେମାନେ ଖ୍ରୀଷ୍ଟଙ୍କ ବ୍ୟତୀତ ଭଗବାନଙ୍କର ଅନ୍ୟାନ୍ୟ ଅବତାର ମାନନ୍ତି ନାହିଁ । ଖ୍ରୀଷ୍ଟ ଭଗବାନଙ୍କର ବିକାଶ ଥିଲେ, ବୁଦ୍ଧ ମଧ୍ୟ ତାହା ଥିଲେ, ଏଭଳି ଆଉ ମଧ୍ୟ ଶତ ଶତ ହେବେ । ଈଶ୍ୱରଙ୍କର କେବେ-ହେଲେ 'ଇତି' କରିବ ନାହିଁ; ଯେଉଁ ଈଶ୍ୱରଙ୍କୁ ଭକ୍ତ ନିବେଦନ କରିବା ଉଚିତ ମନେକରନ୍ତି, ଖ୍ରୀଷ୍ଟଙ୍କ ପ୍ରତି ତାହା ନିବେଦନ କରନ୍ତୁ । ତାଙ୍କ ପକ୍ଷରେ ଏହିଭଳି ଉପାସନା ହିଁ ଏକମାତ୍ର ସମ୍ଭବ । ଈଶ୍ୱରଙ୍କୁ ସାକ୍ଷାତ ଭାବେ ଉପାସନା କରାଯାଇପାରେ ନାହିଁ, ସେ ସର୍ବବ୍ୟାପୀ ହୋଇ ସମଗ୍ର ଜଗତରେ ବିରାଜିତ ଅଛନ୍ତି । ମାନବରୂପରେ ପ୍ରକାଶିତ ତାଙ୍କର ଅବତାରଙ୍କ ନିକଟରେ ଆମେ ପ୍ରାର୍ଥନା କରିପାରିବା । ଖ୍ରୀଷ୍ଟିଆନ୍‌ମାନେ ପ୍ରାର୍ଥନା କରିବା ସମୟରେ 'ଖ୍ରୀଷ୍ଟଙ୍କର ନାମରେ' ବୋଲି ପ୍ରାର୍ଥନା ଆରମ୍ଭ କରନ୍ତି—ତାହା ଖୁବ୍ ଭଲ; ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା ନ କରି କେବଳ ଖ୍ରୀଷ୍ଟଙ୍କ ନିକଟରେ ପ୍ରାର୍ଥନା କରିବାର ପ୍ରଥା ପ୍ରଚଳିତ ହେଲେ ଆହୁରି ଭଲ । ଈଶ୍ୱର ମନୁଷ୍ୟର ଦୁର୍ବଳତା ବୁଝନ୍ତି ଏବଂ ମନୁଷ୍ୟର କଲ୍ୟାଣ ନିମନ୍ତେ ମନୁଷ୍ୟରୂପ ଧାରଣ କରନ୍ତି । "ଯେତେବେଳେ ଧର୍ମର ଗ୍ଲାନି ଓ ଅଧର୍ମର ଅଭ୍ୟୁତ୍ଥାନ ହୁଏ, ସେତେବେଳେ ମୁଁ ମନୁଷ୍ୟଙ୍କୁ ସାହାଯ୍ୟ କରିବା ପାଇଁ ଜନ୍ମ ପରିଗ୍ରହ କରିଥାଏ ।"[୧]

"ଜଗତର ସର୍ବବ୍ୟାପୀ ଓ ସର୍ବଶକ୍ତିମାନ୍ ଈଶ୍ୱର ମୁଁ ଯେ ମାନବାକାର ଧାରଣ କରିଅଛି, ତାହା ନ ଜାଣି ମୂଢ଼ ବ୍ୟକ୍ତିମାନେ ମୋତେ ଅବଜ୍ଞା କରନ୍ତି ଓ ମନେକରନ୍ତି—ଭଗବାନ ପୁଣି କିପରି ମନୁଷ୍ୟରୂପ ଧାରଣ କରିବେ ।"[୨]

ସେମାନଙ୍କର ମନ ଆସୁରିକ ଅଜ୍ଞାନ-ମେଘଦ୍ୱାରା ଆବୃତ ବୋଲି ସେମାନେ ତାଙ୍କୁ ଜଗତର ଈଶ୍ୱର ବୋଲି ଜାଣିପାରନ୍ତି ନାହିଁ । ଏହି ମହାନ୍ ଈଶ୍ୱରାବତାରଗଣଙ୍କୁ ଉପାସନା କରିବାକୁ ହେବ । କେବଳ ସେତିକି ନୁହେଁ, ସେମାନେ ହିଁ ଏକମାତ୍ର ଉପାସନାର ଯୋଗ୍ୟ ଏବଂ ସେମାନଙ୍କର ଆବିର୍ଭାବ କିମ୍ବା ତିରୋଭାବ ଦିନମାନଙ୍କରେ ସେମାନଙ୍କପ୍ରତି ବିଶେଷ ଶ୍ରଦ୍ଧା ଭକ୍ତି ପ୍ରଦର୍ଶନ କରିବା ଉଚିତ । ଖ୍ରୀଷ୍ଟଙ୍କର ଉପାସନା କରିବାକୁ ହେଲେ, ସେ ଯେଭଳି ଈଶ୍ୱରୋପାସନା କରିବାକୁ ଇଚ୍ଛା କରିଥିଲେ ତାଙ୍କୁ ମୁଁ ସେହିଭଳି ଉପାସନା କରିବି । ତାଙ୍କର ଜନ୍ମଦିନରେ ମୁଁ ଭୋଜିର ଆନନ୍ଦ ନକରି ବରଂ ଉପବାସ ଓ ପ୍ରାର୍ଥନା କରି କଟାଇବି । ଯେତେବେଳେ ଆମେ ଏହି ମହାତ୍ମାମାନଙ୍କ ବିଷୟରେ ଚିନ୍ତା କରୁ, ସେତେବେଳେ ସେମାନେ ଆମର ଆତ୍ମା ମଧ୍ୟରେ ପ୍ରକାଶିତ ହୁଅନ୍ତି ଓ ଆମକୁ ସେମାନଙ୍କର ସଦୃଶ କରିନିଅନ୍ତି । ଆମର ସମଗ୍ର ପ୍ରକୃତି ପରିବର୍ତ୍ତିତ ହୁଏ, ତାଙ୍କରି ଭଳି ହୋଇଯାଏ ।

କିନ୍ତୁ ଆପଣମାନେ ଯେପରି ଖ୍ରୀଷ୍ଟ ବା ବୁଦ୍ଧଙ୍କୁ ଶୂନ୍ୟବିଚରଣକାରୀ ଭୂତପ୍ରେତ-

---

[୧] ଯଦା ଯଦା ହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ ।
ଅଭ୍ୟୁତ୍ଥାନମ୍‌ଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହଂ ॥—ଗୀତା, ୪।୭

[୨] ଅବଜାନନ୍ତି ମାଂ ମୂଢ଼ା ମାନୁଷୀଂ ତନୁମାଶ୍ରିତମ୍ ।
ପରଂ ଭାବ ମଜାନନ୍ତୋ ମମ ଭୂତମହେଶ୍ୱରମ୍ ।—ଗୀତା, ୯।୧୧

ମାନଙ୍କ ସହ ଏକାକାର କରି ନ ପକାନ୍ତି । କି ଅନ୍ୟାୟ ! ଖ୍ରୀଷ୍ଟ ଭୂତ ଝାଡ଼ିବାବାଲାଙ୍କ ଦଳରେ ଆସି ନାଚୁଛନ୍ତି । ମୁଁ ଏହି ଦେଶରେ ( ଆମେରିକାରେ ) ଏସବୁ ( ଭେଳକିବାଜି ) ପ୍ରତାରଣା ଦେଖିଛି । ଭଗବାନଙ୍କର ଅବତାରଗଣ ଏଭଳି ଆସି ନ ଥାନ୍ତି—ସେମାନଙ୍କ ସ୍ପର୍ଶର ଫଳ ମଣିଷଭିତରେ ଅନ୍ୟ ଭାବରେ ପ୍ରକଟିତ ହେବ । ଖ୍ରୀଷ୍ଟଙ୍କର ସ୍ପର୍ଶରେ ମନୁଷ୍ୟର ସମଗ୍ର ଆତ୍ମା ହିଁ ପରିବର୍ତ୍ତିତ ହୋଇଯିବ, ସେହି ବ୍ୟକ୍ତି ଖ୍ରୀଷ୍ଟଭାବରେ ହିଁ ରୂପାନ୍ତରିତ ହୋଇଯିବ । ତା'ର ସମଗ୍ର ଜୀବନ ଆଧ୍ୟାତ୍ମିକତାରେ ପୂର୍ଣ୍ଣ ହୋଇଯିବ—ତା'ର ଶରୀରର ପ୍ରତ୍ୟେକ ଲୋମ-କୂପ ଦେଇ ଆଧ୍ୟାତ୍ମିକ ଶକ୍ତି ବିଚ୍ଛୁରିତ ହେବ । ରୋଗ ଆରୋଗ୍ୟକରଣରେ ବା ଅନ୍ୟାନ୍ୟ ଅଲୌକିକ କାର୍ଯ୍ୟରେ ଖ୍ରୀଷ୍ଟଙ୍କର କେତେ ଟିକେ ଶକ୍ତି ବା ପ୍ରକାଶ ପାଇଛି ? ସେ ନିମ୍ନାଧିକାରୀ ଜନଗଣଙ୍କ ମଧ୍ୟରେ ଥିଲେ ବୋଲି ସେହି ସବୁ କାର୍ଯ୍ୟଗୁଡ଼ିକ ନ କରି ରହିପାରି ନ ଥାନ୍ତେ । ଏସବୁ ଅଦ୍ଭୁତ କାର୍ଯ୍ୟ କେଉଁଠି ଅନୁଷ୍ଠିତ ହୁଏ ?—ଇହୁଦୀମାନଙ୍କ ମଧ୍ୟରେ; କିନ୍ତୁ ସେମାନେ ତାଙ୍କୁ ଗ୍ରହଣ କଲେ ନାହିଁ । ଆଉ କେଉଁଠାରେ ବା ଏହା ହୋଇ ନାହିଁ—ୟୁରୋପରେ ! ସେହିସବୁ ଅଦ୍ଭୁତ କାର୍ଯ୍ୟ ଇହୁଦୀଙ୍କ ଭିତରେ ଅନୁଷ୍ଠିତ ହେଲା—ଆଉ ସେମାନେ ଖ୍ରୀଷ୍ଟଙ୍କୁ ତ୍ୟାଗ କଲେ ଏବଂ ତାଙ୍କର 'ଶୈଳୋପଦେଶ' ( Sermon on the Mount ) ଇଉରୋପରେ ପ୍ରଚାରିତ ହେଲା, ସେଠାରେ ଏହା ଗୃହୀତ ହେଲା । ମନୁଷ୍ୟ ଚିନ୍ତାଶୀଳ—ଯାହା ସତ୍ୟ, ତାହା ଗ୍ରହଣ କଲା ଏବଂ ଯାହା ମିଥ୍ୟା, ତାହା ତ୍ୟାଗ କଲା । ରୋଗ ଆରୋଗ୍ୟ ବା ଅନ୍ୟାନ୍ୟ ଅଦ୍ଭୁତ କାର୍ଯ୍ୟରେ ଖ୍ରୀଷ୍ଟଙ୍କର ମହତ୍ତ୍ୱ ନାହିଁ—ଜଣେ ମହାମୂର୍ଖ ମଧ୍ୟ ଏ ସମସ୍ତ କରିପାରେ । ସେ ମଧ୍ୟ ଅପରକୁ ଆରୋଗ୍ୟ କରିପାରେ, ପିଶାଚପ୍ରକୃତି ବ୍ୟକ୍ତିଗଣ ମଧ୍ୟ ଅନ୍ୟର ରୋଗ ହଟାଇ ଦେଇପାରନ୍ତି । ମୁଁ ଦେଖିଛି, ଅତି ଭୟଙ୍କର ଅସୁର ପ୍ରକୃତି ବ୍ୟକ୍ତିଗଣ ମଧ୍ୟ ଅଦ୍ଭୁତ ଅଦ୍ଭୁତ ଅଲୌକିକ କାର୍ଯ୍ୟ କରିଛନ୍ତି; ସେମାନେ ମାଟିରୁ ଫଳ ଉତ୍ପନ୍ନ କରି ଦିଅନ୍ତି । ମୁଁ ଦେଖିଛି, ଅନେକ ମୂର୍ଖ ଓ ପିଶାଚପ୍ରକୃତିର ମଣିଷ ଅତୀତ, ଭବିଷ୍ୟତ ଓ ବର୍ତ୍ତମାନ ଠିକ୍ ଠିକ୍ କହି ଦେଇପାରନ୍ତି । ମୁଁ ଦେଖିଛି, ଅନେକ ମୂର୍ଖ ଥରେ ମାତ୍ର ଦୃଷ୍ଟିପାତ କରି ଭୟଙ୍କର ରୋଗସବୁ ଦୂର କରି ଦେଇଛନ୍ତି । ଏଗୁଡ଼ିକ ଅବଶ୍ୟ ଶକ୍ତି; କିନ୍ତୁ ଅନେକ ସମୟରେ ଏଗୁଡ଼ିକ ପୈଶାଚିକ ଶକ୍ତି । ଖ୍ରୀଷ୍ଟଙ୍କର ଶକ୍ତି କିନ୍ତୁ ଆଧ୍ୟାତ୍ମିକ; ତାଙ୍କର ସର୍ବଶକ୍ତିମାନ୍ ବିରାଟ ପ୍ରେମ ଓ ତତ୍ପ୍ରଚାରିତ ସତ୍ୟସମୂହ ଚିରକାଳ ରହିଅଛି, ଚିରକାଳ ରହିବ । ଲୋକଙ୍କ ଆଡ଼େ ଚାହିଁବାକ୍ଷଣି ସେ ଯେ ସେମାନଙ୍କୁ ଆରୋଗ୍ୟ କରୁଥିଲେ, ଏ କଥା ଲୋକମାନେ ଭୁଲି ଯାଇ-ପାରନ୍ତି; କିନ୍ତୁ ସେ ଯାହା କହିଛନ୍ତି, "ପବିତ୍ରାତ୍ମାଗଣ ଧନ୍ୟ"—ଏକଥା ମନୁଷ୍ୟ ଭୁଲିପାରେ ନାହିଁ, ଏ କଥା ଆଜି ବି ଜୀବନ୍ତ ରହିଅଛି । ଯେତେଦିନ ମନୁଷ୍ୟର ମନ ରହିଥିବ, ସେତେ-ଦିନ ସେହି ଉକ୍ତିଗୁଡ଼ିକ ଅଫୁରନ୍ତ ମହାଶକ୍ତିର ଭଣ୍ଡାର ହୋଇ ରହିବ । ଯେତେଦିନ ମନୁଷ୍ୟ ଈଶ୍ୱରଙ୍କ ନାମ ଭୁଲି ନ ଯାଇଛି, ସେତେଦିନ ସେହି ବାକ୍ୟଗୁଡ଼ିକ ବିରାଜିତ ରହିବ, ଏଗୁଡ଼ିକର ଶକ୍ତି-ତରଙ୍ଗ ପ୍ରବାହିତ ହୋଇ ଚାଲିଥିବ, କେବେହେଲେ ବନ୍ଦ ହେବ ନାହିଁ । ଯୀଶୁ ଏହି ଶକ୍ତିଲାଭ ନିମିତ୍ତ ହିଁ ଉପଦେଶ ଦେଇଥିଲେ; ତାଙ୍କର ଏହି ଶକ୍ତି ଥିଲା—ଏହା ପବିତ୍ରତାର ଶକ୍ତି—ପୁନଶ୍ଚ ଏହା ବାସ୍ତବିକ ଯଥାର୍ଥ ଶକ୍ତି । ତେଣୁ ଖ୍ରୀଷ୍ଟଙ୍କୁ ଉପାସନା କରିବା

ସମୟରେ, ତାଙ୍କ ପାଖରେ ପ୍ରାର୍ଥନା କରିବା ସମୟରେ ଆମକୁ ସର୍ବଦା ସ୍ମରଣ ରଖିବାକୁ ହେବ, ଆମେ କଅଣ ଚାହୁଁଛୁ । ଅଲୌକିକ ଶକ୍ତି-ପ୍ରଦର୍ଶନର ହାସ୍ୟକର ବ୍ୟାପାର ନୁହେଁ, ଆତ୍ମାର ଅଦ୍ଭୁତ ଶକ୍ତି ଆମକୁ ଚାହିଁବାକୁ ହେବ - ଯାହା ମନୁଷ୍ୟକୁ ମୁକ୍ତ କରି ଦିଏ - ସମଗ୍ର ପ୍ରକୃତି ଉପରେ ତାହାର କ୍ଷମତା ବିସ୍ତାର କରେ, ତାହାର ଦାସତ୍ୱତିଳକ ଦୂର କରେ ଏବଂ ତାହାକୁ ଈଶ୍ୱରଦର୍ଶନ କରାଏ ।

## ପ୍ରତୀକର ଓ ବୈଧୀ ଭକ୍ତିର ପ୍ରୟୋଜନୀୟତା

ଭକ୍ତି ଦୁଇପ୍ରକାର । ପ୍ରଥମଟି ବୈଧୀ ବା ଆନୁଷ୍ଠାନିକ ଭକ୍ତି, ଅପରଟି ମୁଖ୍ୟ ବା ପରା ଭକ୍ତି । 'ଭକ୍ତି' ଶବ୍ଦରୁ ନିମ୍ନତମଠାରୁ ଉଚ୍ଚତମ ଉପାସନା ପର୍ଯ୍ୟନ୍ତ ବୁଝାଯାଏ । ପୃଥିବୀର ଯେ କୌଣସି ଦେଶରେ ବା ଯେକୌଣସି ଧର୍ମରେ ଯେତେ ପ୍ରକାର ଉପାସନା ଦେଖିବାକୁ ମିଳେ, ସବୁର ମୂଳରେ ଭଲପାଇବା ରହିଛି । ଅବଶ୍ୟ ଧର୍ମ ଭିତରେ ଅନେକ କେବଳ ଅନୁଷ୍ଠାନ; ପୁଣି ଅନେକ କିଛି ଅଛି, ସେଗୁଡ଼ିକ ଅନୁଷ୍ଠାନ ନୁହେଁ କି ଭଲପାଇବା ମଧ୍ୟ ନୁହେଁ, ତାଠାରୁ ନିମ୍ନତର ଅବସ୍ଥା । ଯାହାହେଉ, ଏହି ଅନୁଷ୍ଠାନଗୁଡ଼ିକର ଆବଶ୍ୟକତା ରହିଛି । ଆତ୍ମାର ଉନ୍ନତି ପଥରେ ସାହାଯ୍ୟ କରିବା ପାଇଁ ଏହି ବୈଧୀ ବା ବାହ୍ୟଭକ୍ତି ଏକାନ୍ତ ଆବଶ୍ୟକ । ମନୁଷ୍ୟ ଏହି ଗୋଟିଏ ବିରାଟ ଭୁଲ କରିଥାଏ—ମନେକରେ, ସେ ଥରକରେ ଲମ୍ଫ ଦେଇ ସେହି ଉଚ୍ଚତମ ଅବସ୍ଥାରେ ପହଞ୍ଚି ଯାଇପାରେ । ଶିଶୁ ଯଦି ମନେକରେ, ସେ ଦିନକରେ ବଡ଼ ହୋଇଯିବ, ତେବେ ସେ ଭ୍ରାନ୍ତ । ଆଉ ମୁଁ ଆଶା କରେ—ଆପଣମାନେ ସବୁବେଳେ ଏହି କଥାଟି ମନେ ରଖିବେ ଯେ, ବହି ପଢ଼ିଲେ ଧର୍ମଲାଭ ହୁଏ ନାହିଁ; ତର୍କବିଚାର କଲେ ଧର୍ମ ହୁଏ ନାହିଁ; ଅଥବା କେତେଗୁଡ଼ିଏ ମତବାଦରେ ସମ୍ମତି ପ୍ରକାଶ କଲେ ମଧ୍ୟ ଧର୍ମ ହୁଏ ନାହିଁ । ତର୍କଯୁକ୍ତି, ମତାମତ, ଶାସ୍ତ୍ରାଦି ବା ଅନୁଷ୍ଠାନ—ଏଗୁଡ଼ିକ ସବୁ ଧର୍ମଲାଭର ସହାୟ ମାତ୍ର, ଧର୍ମ କିନ୍ତୁ ଅପରୋକ୍ଷାନୁଭୂତି । ଆମେ ସମସ୍ତେ କହୁଁ, ଜଣେ ଈଶ୍ୱର ଅଛନ୍ତି । ପଚାରିଥାଉ, ଆପଣ କ'ଣ ଈଶ୍ୱରଙ୍କୁ ଦେଖିଛନ୍ତି ? କେହି କେହି କହିଥାଆନ୍ତି—ସ୍ୱର୍ଗରେ ଈଶ୍ୱର ଅଛନ୍ତି । ତାଙ୍କୁ ପଚାରନ୍ତୁ, ସେ ଈଶ୍ୱରଙ୍କୁ ଦେଖିଛନ୍ତି କି ନାହିଁ—ଆଉ ଯଦି ସେ କହନ୍ତି 'ଦେଖିଛି', ଆପଣ ତା' କଥାରେ ହସି ଉଠିବେ ଓ ତାକୁ ପାଗଳ ବୋଲି କହିବେ । ଅନେକଙ୍କ ପକ୍ଷରେ ଧର୍ମ କେବଳ ଗୋଟିଏ ବୁଦ୍ଧିଗତ ବିଶ୍ୱାସ ମାତ୍ର—କେବଳ କେତେଗୁଡ଼ିଏ ମତ ମାନି ନେବା ମାତ୍ର । ଏହାଠାରୁ ବେଶୀ ସେମାନେ ଯାଇପାରନ୍ତି ନାହିଁ । ମୁଁ ମୋ ଜୀବନରେ କେବେ ଏପରି ଧର୍ମ ପ୍ରଚାର କରି ନାହିଁ, ଆଉ ସେପରି ଧର୍ମକୁ ମୁଁ 'ଧର୍ମ' ନାମ ଦେଇପାରି ନାହିଁ । ଏ ପ୍ରକାର ଧର୍ମକୁ ସ୍ୱୀକାର କରିବାଠାରୁ ବରଂ ନାସ୍ତିକ ହେବା ଭଲ । କୌଣସି ପ୍ରକାର ମତାମତରେ ବିଶ୍ୱାସ କରିବା ବା ନ କରିବା ଉପରେ ଧର୍ମ ନିର୍ଭର କରେ ନାହିଁ । ଆପଣମାନେ କହିଥାନ୍ତି, ଆତ୍ମା ରହିଛି । ଆତ୍ମାକୁ କେବେ ଦେଖିଛନ୍ତି କି ? ଆମ

ସମସ୍ତଙ୍କର ଆତ୍ମା ରହିଛି, ଅଥଚ ଆମେ ତାକୁ ଦେଖିପାରୁ ନାହୁଁ । ସେ କିପରି କଥା ? ଆପଣମାନଙ୍କୁ ଏହି ପ୍ରଶ୍ନର ଉତ୍ତର ଦେବାକୁ ହେବ ଓ ଆତ୍ମଦର୍ଶନର କୌଣସି ଉପାୟ ବାହାର କରିବାକୁ ହେବ । ନଚେତ୍ ଧର୍ମ ସମ୍ବନ୍ଧରେ କଥା କହିବା ବୃଥା; ଯଦି କୌଣସି ଧର୍ମ ସତ୍ୟ ହୁଏ, ତେବେ ତାହା ଅବଶ୍ୟ ଆମମାନଙ୍କୁ ନିଜନିଜ ହୃଦୟରେ ଆତ୍ମା ଈଶ୍ୱର ଓ ସତ୍ୟର ଦର୍ଶନ କରାଇବାକୁ ସମର୍ଥ କରିବ । ଏହି ସମସ୍ତ ମତାମତ ବା ବିଶ୍ୱାସର କୌଣସି ଗୋଟିକୁ ନେଇ ଯେବେ ଆପଣ ଓ ମୁଁ ଅନନ୍ତକାଳ ତର୍କ କରୁ, ତେବେ ଆମେ କୌଣସି ସିଦ୍ଧାନ୍ତରେ ଉପନୀତ ହୋଇପାରିବା ନାହିଁ । ମନୁଷ୍ୟ ତ ଯୁଗ ଯୁଗ ଧରି ଏହିପରି ତର୍କ-ଯୁକ୍ତି କରି ଆସୁଛି; କିନ୍ତୁ ତା'ର ଫଳ କ'ଣ ହୋଇଛି ? ବୁଦ୍ଧି ତ ସେଠାରେ କୌଣସି ମତେ ପହଞ୍ଚିପାରେ ନାହିଁ । ଆମମାନଙ୍କୁ ବୁଦ୍ଧିର ପରପାରକୁ ଯିବାକୁ ହେବ । ଅପରୋକ୍ଷାନୁଭୂତି ହିଁ ଧର୍ମର ପ୍ରମାଣ । ଏହି କାନ୍ଥଟି ଯେ ଅଛି, ତା'ର ପ୍ରମାଣ ଏହି ଯେ ଆମେ ତାକୁ ଦେଖୁଛୁ । ଯଦି ଆପଣ ଗୋଟିଏ ଜାଗାରେ ବସି ଶତଶତ ଯୁଗ ଧରି ଏ କାନ୍ଥଟିର ଅସ୍ତିତ୍ୱ-ନାସ୍ତିତ୍ୱ ସମ୍ବନ୍ଧରେ ବିଚାର କରି ଚାଲନ୍ତି, ତେବେ କୌଣସି ସମୟରେ ତା'ର ମୀମାଂସା କରିପାରିବେ ନାହିଁ । କିନ୍ତୁ ଯେତେବେଳେ କାନ୍ଥଟି ଦେଖିବେ, ସମସ୍ତ ବିବାଦର ସମାଧାନ ହୋଇଯିବ । ସେତେବେଳେ ଯଦି ପୃଥିବୀର ସମସ୍ତ ଲୋକ ଆପଣଙ୍କୁ କହିବେ, ଏହି କାନ୍ଥଟି ନାହିଁ, ଆପଣ ସେମାନଙ୍କର କଥା କଦାପି ବିଶ୍ୱାସ କରିବେ ନାହିଁ; କାରଣ ଆପଣ ଜାଣନ୍ତି ଯେ, ଆପଣଙ୍କ ନିଜ ଚକ୍ଷୁର ସାକ୍ଷ୍ୟ ଜଗତର ସମୁଦାୟ ମତାମତ ଓ ଗ୍ରନ୍ଥରାଶି ଅପେକ୍ଷା ବେଶୀ ।

ଆପଣମାନେ ସମସ୍ତେ ହିଁ ସମ୍ଭବତଃ ବିଜ୍ଞାନବାଦ (Idealism) ସମ୍ବନ୍ଧରେ— ଅନେକ ଗ୍ରନ୍ଥ ପଢ଼ିଛନ୍ତି । ଏହି ମତବାଦ ଅନୁସାରେ ଏହି ଜଗତର ଅସ୍ତିତ୍ୱ ନାହିଁ, ଆପଣଙ୍କର ମଧ୍ୟ ଅସ୍ତିତ୍ୱ ନାହିଁ । ଏଭଳି କଥା ଯେଉଁମାନେ କହନ୍ତି, ଆପଣମାନେ ସେମାନଙ୍କ କଥାରେ ବିଶ୍ୱାସ କରନ୍ତି ନାହିଁ; କାରଣ ସେମାନେ ନିଜେ ନିଜ କଥାରେ ବିଶ୍ୱାସ କରନ୍ତି ନାହିଁ । ସେମାନେ ଜାଣନ୍ତି ଯେ, ଇନ୍ଦ୍ରିୟଗଣର ସାକ୍ଷ୍ୟ ଏଭଳି ସହସ୍ର ସହସ୍ର ବୃଥା ବାଗାଡ଼ମ୍ବରଠାରୁ ବଳବାନ । ଧାର୍ମିକ ହେବାକୁ ଗଲେ ଆପଣମାନଙ୍କୁ ପ୍ରଥମେ ହିଁ ଗ୍ରନ୍ଥାଦି ଫିଙ୍ଗି ଦେବାକୁ ହେବ । ଯେତେ କମ୍ ବହି ପଢ଼ିବେ, ସେତେ ଭଲ ।

ଥରକେ ଗୋଟିଏ ଗୋଟିଏ କାର୍ଯ୍ୟ କରନ୍ତୁ । ବର୍ତ୍ତମାନ ସମୟରେ ପାଶ୍ଚାତ୍ୟ ଦେଶସମୂହରେ ଗୋଟିଏ ଜିଦ୍ ଦେଖାଯାଉଛି ଯେ—ସେମାନେ ମୁଣ୍ଡ ଭିତରେ ନାନାପ୍ରକାର ଭାବ ଯେପରି ଗୋଟିଏ ଖେଚୁଡ଼ି ରାନ୍ଧୁଛନ୍ତି । ସମସ୍ତ ପ୍ରକାର ଭାବର ଅଜୀର୍ଣ୍ଣତା ମସ୍ତିଷ୍କ ଭିତରେ ଗୋଟିଏ ପିଣ୍ଡୁଳାକାର ହୋଇ ଏଣୁତେଣୁ ଭାବରେ ଅସମ୍ଭବ ଗୋଳମାଳ ସୃଷ୍ଟି କରୁଛି । ସେଗୁଡ଼ିକ ଯେ ସ୍ଥିର ହୋଇ ଗୋଟିଏ ସୁନିର୍ଦ୍ଦିଷ୍ଟ ଆକାର ଧାରଣ କରିବ, ତାହାର ମଧ୍ୟ ସୁଯୋଗ ମିଳୁନାହିଁ; ଅନେକ କ୍ଷେତ୍ରରେ ଏହିଭଳି ନାନାପ୍ରକାର ଭାବ ଗ୍ରହଣ ଏକପ୍ରକାର ରୋଗବିଶେଷ ହୋଇ ଠିଆ ହେଉଛି; କିନ୍ତୁ ଏହାକୁ ଆଦୌ ଧର୍ମ ବୋଲି କୁହାଯାଇପାରିବ ନାହିଁ ।

କେହି କେହି ଚାହାଁନ୍ତି କିଛି ସ୍ନାୟବିକ ଉତ୍ତେଜନା । ସେମାନଙ୍କୁ ଭୂତ କଥା କହନ୍ତୁ, କିମ୍ବା ଉତ୍ତରମେରୁ ଅଥବା ଅନ୍ୟ କୌଣସି ଦୂର-ଦେଶ-ନିବାସୀ ପକ୍ଷଦ୍ୱୟଯୁକ୍ତ ବା ଅନ୍ୟ

କୌଣସି ଅଦ୍ଭୁତ ଆକାର ଧାରଣକାରୀ ମନୁଷ୍ୟର କଥା କହନ୍ତୁ—ଯେଉଁମାନେ ଅଦୃଶ୍ୟଭାବେ ରହି ତାହାଙ୍କର ଗତିବିଧି ପର୍ଯ୍ୟବେକ୍ଷଣ କରୁଛନ୍ତି ଏବଂ ଯାହାଙ୍କ କଥା ମନେ ପଡ଼ିଲେ ସେମାନଙ୍କ ଦେହ ଝିମ୍‌ଝିମ୍ ହୋଇଯାଏ । ଏହିସବୁ କହିଲେ ସେମାନେ ଖୁସି ହୋଇ ଘରକୁ ଯିବେ; କିନ୍ତୁ ଚବିଶ ଘଣ୍ଟା ଯାଉଁ ନ ଯାଉଁଣୁ ସେମାନେ ପୁଣି ନୂଆ ଉତ୍ତେଜନା ଖୋଜିବେ । କେହିକେହି ଏହାକୁ ଧର୍ମ ବୋଲି କହିଥାଆନ୍ତି । କିନ୍ତୁ ପ୍ରକୃତ ପକ୍ଷରେ ଏହା ବାତୁଳାଳୟକୁ ଗମନର ପଥ—ଧର୍ମଲାଭର ନୁହେଁ । ଏକ ଶତାବ୍ଦୀ ଧରି ଏଭଳି ଭାବର ସ୍ରୋତ ବହି ଚାଲିଲେ ଏହି ଦେଶଟା ଗୋଟିଏ ବୃହତ୍ ବାତୁଳାଳୟରେ ପରିଣତ ହେବ । ଦୁର୍ବଳ ବ୍ୟକ୍ତି କଦାପି ଭଗବାନଙ୍କୁ ଲାଭ କରିପାରେ ନାହିଁ ଏବଂ ଏହିସବୁ ରୋମାଞ୍ଚକର ବ୍ୟାପାର ମଣିଷକୁ ଦୁର୍ବଳ କରିଦିଏ । ଅତଏବ ସେସବୁ ଦିଗକୁ ଯିବ ନାହିଁ । ଏହା କେବଳ ମଣିଷକୁ ଦୁର୍ବଳ କରିଦିଏ, ମସ୍ତିଷ୍କର ବିଶୃଙ୍ଖଳା ସୃଷ୍ଟି କରେ, ମନକୁ ଦୁର୍ବଳ କରିଦେଇ ଅନ୍ତରାତ୍ମାକୁ ନୀତିଭ୍ରଷ୍ଟ କରେ, ଫଳରେ ମନୁଷ୍ୟ ଏକାବେଳକେ ହତବୁଦ୍ଧି ହୋଇଯାଏ ।

ଆପଣମାନେ ଯେପରି ମନେ ରଖନ୍ତୁ—କେବଳ କଥା କହିବାରେ ଧର୍ମ ନାହିଁ; ଧର୍ମ—ମତାମତରେ ନାହିଁ ବା ଗ୍ରନ୍ଥସମୂହରେ ନାହିଁ; ଧର୍ମ ଅପରୋକ୍ଷାନୁଭୂତି । ଧର୍ମ କୌଣସି ପ୍ରକାର ବିଦ୍ୟା ଅର୍ଜନ କରିବା ନୁହେଁ, ଧର୍ମ ଆଦର୍ଶସ୍ୱରୂପ ହୋଇଯିବା । 'ଚୋରି କର ନାହିଁ', ଏହି ଉପଦେଶ ସମସ୍ତେ ଜାଣନ୍ତି । କିନ୍ତୁ ସେଥିରେ କ'ଣ ହେଲା ? ଯେଉଁ ବ୍ୟକ୍ତି ଚୋରି କରୁନାହିଁ, ସେ ଏହାର ତତ୍ତ୍ୱ ଜାଣିଛି । 'ଅନ୍ୟକୁ ହିଂସା କର ନାହିଁ'—ଏହି ଉପଦେଶ ସମସ୍ତେ ଜାଣନ୍ତି; କିନ୍ତୁ ତାହାର ମୂଲ୍ୟ କଅଣ ? ଯେଉଁମାନେ ହିଂସା କରନ୍ତି ନାହିଁ, ସେମାନେ ହିଁ ଅହିଂସାତତ୍ତ୍ୱ ଜାଣିଛନ୍ତି ଏବଂ ଏହି ଆଦର୍ଶ ଉପରେ ନିଜର ଚରିତ୍ର ଗଠନ କରିଛନ୍ତି ।

ଅତଏବ ଆମମାନଙ୍କୁ ଧର୍ମ ଉପଲବ୍ଧି କରିବାକୁ ହେବ ଏବଂ ଏହି ଧର୍ମ ଉପଲବ୍ଧି କରିବା ସୁଦୀର୍ଘ ସାଧନାର ବ୍ୟାପାର । ଜଗତରେ ପ୍ରତ୍ୟେକ ବ୍ୟକ୍ତି ମନେକରେ ଯେ, ତା'ଭଳି ସୁନ୍ଦର, ତା'ଭଳି ବିଦ୍ୱାନ୍, ତା'ଭଳି ଶକ୍ତିମାନ୍ ଓ ତାହାର ପରି ଅଦ୍ଭୁତ ଲୋକ ଆଉ କେହି ନାହିଁ । ସେହିପରି ପ୍ରତ୍ୟେକ ନାରୀ ମଧ୍ୟ ଜଗତରେ ନିଜକୁ ସର୍ବାପେକ୍ଷା ସୁନ୍ଦରୀ ଓ ବୁଦ୍ଧିମତୀ ମନେ କରେ । ମୁଁ ତ ଏପରି ଗୋଟିଏ ଶିଶୁ ମଧ୍ୟ ଦେଖିନାହିଁ, ଯେ ଅସାଧାରଣ ନୁହେଁ । ସମସ୍ତ ଜନନୀ ମୋତେ କହିଥାଆନ୍ତି—'ମୋର ପୁଅ କି ଅସାଧାରଣ !' ମନୁଷ୍ୟର ପ୍ରକୃତି ଏହିପରି । ମନୁଷ୍ୟ ଯେତେବେଳେ କୌଣସି ଉଚ୍ଚ ଅନୁଭୂତି ବା ଅଦ୍ଭୁତ ବିଷୟର କଥା ଶୁଣେ, ସେତେବେଳେ ମନେ କରେ ଯେ, ସେ ତାହା ଅନାୟାସରେ ଲାଭ କରିବ; କିନ୍ତୁ ମୁହୂର୍ତ୍ତିକ ପାଇଁ ସ୍ଥିର ହୋଇ ଏକଥା ଭାବେ ନାହିଁ ଯେ, ଅନେକ କଠୋର ଚେଷ୍ଟାକରି ଏହା ଲାଭ କରିବାକୁ ପଡ଼ିବ । ସମସ୍ତେ ଏକ ଲମ୍ଫ ଦେଇ ସେଠାକୁ ଉଠିଯିବାକୁ ଚାହାଁନ୍ତି । ତାହା ସବୁଠାରୁ ଭଲ, ଅତଏବ ଆମେ ମଧ୍ୟ ତାହା ଚାହୁଁ । ଆମେ କଦାପି ସ୍ଥିର ହୋଇ ଚିନ୍ତା କରୁନାହୁଁ ଯେ, ଆମର ତାହା ଲାଭ କରିବାର ଶକ୍ତି ଅଛି କି ନାହିଁ; ଫଳରେ ଆମେ କିଛି ହେଲେ କରି ଉଠିପାରୁ ନାହୁଁ । ଆପଣ କୌଣସି ଲୋକକୁ ବାଉଁଶରେ ଠେଲି ଉପରକୁ ଉଠାଇପାରିବେ ନାହିଁ । ଆମକୁ ସମସ୍ତଙ୍କୁ ଧୀରେ ଧୀରେ ଉପରକୁ ଉଠିବାକୁ ହେବ ।

ଅତଏବ ଧର୍ମର ପ୍ରଥମ ସୋପାନ ଏହି ବୈଧୀ ଭକ୍ତି ବା ନିମ୍ନସ୍ତରର ଉପାସନା । ନିମ୍ନସ୍ତରର ଉପାସନା କ'ଣ କ'ଣ ? ଏଭଳି ଉପାସନା କି କି ପ୍ରକାରର ତାହା ବୁଝାଇବା ପୂର୍ବରୁ ମୁଁ ଆପଣମାନଙ୍କୁ ଗୋଟିଏ ପ୍ରଶ୍ନ କରିବାକୁ ଚାହେଁ । ଆପଣମାନେ ସମସ୍ତେ କହିଥାଆନ୍ତି, ଜଣେ ଈଶ୍ୱର ଅଛନ୍ତି, ଆଉ ସେ ସର୍ବବ୍ୟାପୀ । କିନ୍ତୁ 'ସର୍ବବ୍ୟାପୀ' କହିଲେ କଅଣ ବୁଝାଯାଏ ? ବର୍ତ୍ତମାନ ଆଖିବୁଜି ଭାବନ୍ତୁ ସର୍ବବ୍ୟାପିତା କି ପ୍ରକାର ! ଆଖିବୁଜି ଆପଣ କ'ଣ ଦେଖିଲେ ? ହୁଏତ ସମୁଦ୍ରର କଥା, ନ ହେଲେ ଆକାଶର କଥା, ଅଥବା ଗୋଟାଏ ବିସ୍ତୃତ ପ୍ରାନ୍ତରର କଥା ବା ଆପଣ ନିଜ ଜୀବନରେ ଅନ୍ୟ ଯେଉଁ ସବୁ ଜିନିଷ ଦେଖିଛନ୍ତି, ସେହିଗୁଡ଼ିକର କଥା ଆପଣ ଚିନ୍ତା କରିଛନ୍ତି । ତାହା ଯଦି ହୁଏ, ତେବେ 'ସର୍ବବ୍ୟାପୀ ଭଗବାନ'—ଏହି କଥା କହି ଆପଣ କୌଣସି ଭାବ ହିଁ ବ୍ୟକ୍ତ କରନ୍ତି ନାହିଁ । ଆପଣଙ୍କ ନିକଟରେ ଏହି ବାକ୍ୟର କୌଣସି ଅର୍ଥ ହିଁ ନାହିଁ; ଭଗବାନଙ୍କର ଅନ୍ୟାନ୍ୟ ଗୁଣାବଳୀ ସମ୍ବନ୍ଧରେ ମଧ୍ୟ ତଦ୍ରୂପ । ସର୍ବଶକ୍ତିମତ୍ତା ସର୍ବଜ୍ଞତା ପ୍ରଭୃତି ସମ୍ବନ୍ଧରେ ବା ଆମର ଧାରଣା କ'ଣ ?—କିଛି ନାହିଁ । ଧର୍ମ ଅର୍ଥ ଉପଲବ୍‌ଧି ବା ଅପରୋକ୍ଷାନୁଭୂତି । ଅଧିକନ୍ତୁ ଆପଣ ଯେତେବେଳେ ଭଗବତ୍‌-ଭାବ ଉପଲବ୍‌ଧି କରିବାକୁ ସମର୍ଥ ହେବେ, ସେତେବେଳେ ଆପଣଙ୍କୁ ଈଶ୍ୱରୋପାସକ ବୋଲି ସ୍ୱୀକାର କରିବି ! ତାହା ପୂର୍ବରୁ ଆପଣ ସେହି ଶବ୍ଦଗୁଡ଼ିକର ବନାନଟି ହିଁ ଜାଣିଛନ୍ତି, ଆଉ କିଛି ଜାଣିନାହାନ୍ତି । ଅତଏବ ଶିଶୁଟି ଯେପରି ପ୍ରଥମେ ସ୍ଥୂଳ କିଛି ଅବଲମ୍ବନ କରି ଶିଖେ, ପରେ ଧୀରେ ଧୀରେ ସୂକ୍ଷ୍ମ ସମ୍ବନ୍ଧରେ ତାହାର ଧାରଣା ହୁଏ, ସେହିପରି ଉଚ୍ଚତମ ଅନୁଭୂତିର ଅବସ୍ଥା ଲାଭ କରିବାକୁ ହେଲେ ପ୍ରଥମେ ସ୍ଥୂଳକୁ ଅବଲମ୍ବନ କରି ଅଗ୍ରସର ହେବାକୁ ପଡ଼ିବ । 'ପାଞ୍ଚ ଦୁ ଗୁଣେ ଦଶ' କହିଲେ ଗୋଟିଏ ଛୋଟ ପିଲା କିଛି ବୁଝିପାରିବ ନାହିଁ; କିନ୍ତୁ ଯଦି ପାଞ୍ଚଟି କରି ଜିନିଷ ନେଇ ତାକୁ ଦୁଇଥର ଦେଖାଇ ଦିଆଯାଏ, ମୋଟ ଦଶଟି ଜିନିଷ ହୋଇଛି, ତା' ହେଲେ ସେ ବୁଝିବ । ଏହି ସୂକ୍ଷ୍ମର ଧାରଣା ଅତି ଧୀରେ ଧୀରେ ଦୀର୍ଘକାଳରେ ଲାଭ ହୋଇଥାଏ । ଏ ସ୍ଥଳେ ଆମେ ସମସ୍ତେ ଶିଶୁ ତୁଲ୍ୟ; ଆମେ ବୟସରେ ବଡ଼ ହୋଇପାରିଥାଉ ଏବଂ ଜଗତର ସବୁ ବହି ପଢ଼ିପାରିଥାଉ; କିନ୍ତୁ ଧର୍ମରାଜ୍ୟରେ ଆମେ ଶିଶୁ ମାତ୍ର । ଏହି ପ୍ରତ୍ୟକ୍ଷାନୁଭୂତିର ଶକ୍ତି ହିଁ ଧର୍ମ । ବିଭିନ୍ନ ମତାମତ, ଦର୍ଶନ ବା ନୈତିକ ମତବାଦ ନେଇ ମସ୍ତିଷ୍କ ଯେତେ ପୂର୍ଣ୍ଣ କରନ୍ତୁ ନା କାହିଁକି, ସେଥିରେ ଧର୍ମ ଜୀବନର ବେଶୀ କିଛି ଯାଏ ଆସେ ନାହିଁ । ନିଜେ କ'ଣ ହେଲେ, ପ୍ରତ୍ୟକ୍ଷ ଉପଲବ୍‌ଧି କେତେଦୂର ହେଲା, ଏହାରି ଉପରେ ହିଁ ଧର୍ମ-ଜୀବନ ନିର୍ଭର କରେ । ଆମକୁ ବୁଝିବାକୁ ହେବ, ଆମେ ମତାମତ ଶାସ୍ତ୍ରାଦି ଶିଖିଛୁ ସତ, କିନ୍ତୁ ଜୀବନରେ କିଛି ହିଁ ଉପଲବ୍‌ଧି କରି ନାହୁଁ । ଆମମାନଙ୍କୁ ବର୍ତ୍ତମାନ ନୂଆ କରି ପୁଣି ସ୍ଥୂଳ ବସ୍ତୁ ମାଧ୍ୟମରେ ସାଧନା ଆରମ୍ଭ କରିବାକୁ ପଡ଼ିବ—ଆମମାନଙ୍କୁ ମନ୍ତ୍ର, ସ୍ତବ, ସ୍ତୁତି, ଅନୁଷ୍ଠାନାଦିର ସହାୟତା ନେବାକୁ ହେବ । ଏହିପରି ବାହ୍ୟ କ୍ରିୟାକଳାପ ସହସ୍ର ପ୍ରକାରର ହୋଇପାରେ ।

ସମସ୍ତଙ୍କ ପକ୍ଷରେ ଏକ ପ୍ରକାର ଉପାସନା ପ୍ରଣାଳୀର କୌଣସି ପ୍ରୟୋଜନ ନାହିଁ । କେତେଲୋକ ମୂର୍ତ୍ତି-ପୂଜାରେ ଉପକୃତ ହୋଇପାରନ୍ତି, କେତେକ ନ ହୋଇପାରନ୍ତି ।

କେତେକଙ୍କ ପକ୍ଷରେ ମୂର୍ତ୍ତିର ବାହ୍ୟପୂଜାର ପ୍ରୟୋଜନ ହୋଇପାରେ, କାହା ପକ୍ଷରେ ବା ମନ ମଧ୍ୟରେ ଏଭଳି ମୂର୍ତ୍ତି-ଚନ୍ତାର ପ୍ରୟୋଜନ । କନ୍ତୁ ଯେଉଁ ବ୍ୟକ୍ତି ନଜ ମନ ଭିତରେ ମୂର୍ତ୍ତିର ଉପାସନା କରେ, ସେ କହେ, 'ମୁଁ ମୂର୍ତ୍ତି-ପୂଜକଙ୍କଠାରୁ ଉନ୍ନତ । ମୂର୍ତ୍ତିପୂଜା ଯେତେବେଳେ ଅନ୍ତରରେ କରାଯାଉଛି, ସେତେବେଳେ ଠିକ୍ ଠିକ୍ ଉପାସନା ହେଉଛି; ବାହାରେ ମୂର୍ତ୍ତିପୂଜା କରବା ହେଉଛି ପୌତ୍ତଳିକତା । ଏଭଳି ଧର୍ମର ବରୋଧିତା କରବାକୁ ହେବ ।' ଯେତେବେଳେ କେହ ମନ୍ଦର ବା ଚର୍ଚ୍ଚଭଳି ଗୋଟିଏ ସାକାର ବସ୍ତୁ ଠିଆ କରାଏ, ସେ ତାହାକୁ ପବତ୍ର ମନେକରେ; କନ୍ତୁ ମୂର୍ତ୍ତିଟି ମନୁଷ୍ୟାକୃତ ହେଲେହେଁ ସେ ତାହାକୁ ଅତ୍ୟନ୍ତ ଭୟାବହ ମନେକରେ । ତେଣୁ ସ୍ଥୂଳ ମାଧ୍ୟମରେ ଅଗ୍ରସର ହେବାର ନାନାବଧ ସାଧନ-ପ୍ରଣାଳୀ ଅଛି । ଏଗୁଡ଼ିକ ମଧ୍ୟ ଦେଇ ଧୀରେ ଧୀରେ ଅଗ୍ରସର ହୋଇ ଆମେ ଶେଷରେ ସୂକ୍ଷ୍ମାନୁଭୂତ ଲାଭ କରପାରୁ । ପୁନଶ୍ଚ ଏକପ୍ରକାର ସାଧନପ୍ରଣାଳୀ ସମସ୍ତଙ୍କ ପାଇଁ ନୁହେଁ । ଗୋଟିଏ ପ୍ରକାର ସାଧନ-ପ୍ରଣାଳୀ ହୁଏତ ଆପଣଙ୍କ ପାଇଁ ଉପଯୋଗୀ, ପୁଣି ଅନ୍ୟ କାହା ପକ୍ଷରେ ହୁଏତ ଅନ୍ୟ ପ୍ରକାର ସାଧନ-ପ୍ରଣାଳୀର ପ୍ରୟୋଜନ । ପ୍ରତ୍ୟେକଟି ସାଧନପ୍ରଣାଳୀ ଯଦ୍ୟପି ପରଶେଷରେ ଏକ ହିଁ ଲକ୍ଷ୍ୟରେ ପହଞ୍ଚାଇବା ଦଗରେ ନେଇଯାଏ, ତଥାପି ସବୁଗୁଡ଼ିକ ସମସ୍ତଙ୍କ ପାଇଁ ଉପଯୋଗୀ ନୁହେଁ । ଆମେ ସାଧାରଣତଃ ଆଉ ଗୋଟିଏ ଭୁଲ କରଥାଉଁ । ମୋର ଆଦର୍ଶ ଆପଣଙ୍କର ଉପଯୋଗୀ ନୁହେଁ । ମୁଁ କାହିଁକ ତେବେ ଜୋର୍ କର ତାହା ଆପଣଙ୍କ ଉପରେ ଚପାଇ ଦେବାର ଚେଷ୍ଟା କରବ ? ମୋର ମନ୍ଦର-ନର୍ମାଣ-ପ୍ରଣାଳୀ ବା ସ୍ତବ-ପଠନ-ରୀତ ଆପଣଙ୍କୁ ଠିକ୍ ଭଲ ଲାଗୁନାହିଁ, ମୁଁ କାହିଁକ ତେବେ ତାହାକୁ ଜୋର୍ କର ଆପଣଙ୍କ ଉପରେ ଚପାଇବାକୁ ଯିବ ? ପୃଥିବୀ ଘୂର ଆସନ୍ତୁ, ଦେଖିବେ, ବହୁ ନର୍ବୋଧ ବ୍ୟକ୍ତି ଆପଣଙ୍କୁ କହବେ ଯେ, ତାଙ୍କର ସାଧନପ୍ରଣାଳୀ ହିଁ ଏକମାତ୍ର ସତ୍ୟ; ଆଉ ଅନ୍ୟାନ୍ୟ ପ୍ରଣାଳୀ ସବୁ ପୈଶାଚକତାପୂର୍ଣ୍ଣ ଏବଂ ଜଗତ୍ ମଧ୍ୟରେ କେବଳ ସେ ଭଗବାନଙ୍କର ମନୋନୀତ ପୁରୁଷ ଭାବରେ ଜନ୍ମଗ୍ରହଣ କରଛନ୍ତି । ପ୍ରକୃତ ପକ୍ଷରେ ଏହି ସମୁଦାୟ ସାଧନପ୍ରଣାଳୀର ସବୁଗୁଡ଼ିକ ଭଲ ଏବଂ ସବୁଗୁଡ଼ିକ ଆମମାନଙ୍କୁ ଧର୍ମଲାଭ କରବାରେ ସାହାଯ୍ୟ କରେ; ଆଉ ଯେତେବେଳେ ମନୁଷ୍ୟ-ପ୍ରକୃତ ନାନାବଧ, ସେତେବେଳେ ଧର୍ମସାଧନ ନମିତ୍ତ ବଭିନ୍ନ ପ୍ରକାର ପ୍ରଣାଳୀର ପ୍ରୟୋଜନ । ସାଧନପ୍ରଣାଳୀ ଯେତକ ପ୍ରଚଳତ ହୁଏ, ଜଗତ୍ ପକ୍ଷରେ ସେତକ ମଙ୍ଗଳ । ଯଦ ପୃଥିବୀରେ କୋଡ଼ିଏଟି ଧର୍ମପ୍ରଣାଳୀ ଥାଏ, ତେବେ ଖୁବ୍ ଭଲ; ଯଦ ଶହଶହ ଧର୍ମପ୍ରଣାଳୀ ଥାଏ, ତେବେ ଆହୁର ଭଲ—କାରଣ ତାହାହେଲେ ସେଗୁଡ଼ିକ ଭିତରୁ ଯେଉଁଟି ଇଚ୍ଛା ବାଛନେଇ ହେବ । ଅତଏବ ଧର୍ମ ଓ ଧର୍ମଭାବସମୂହର ସଂଖ୍ୟାବୃଦ୍ଧି ଘଟିଲେ ଆମମାନଙ୍କର ବରଂ ଆନନ୍ଦ ପ୍ରକାଶ କରବା ଉଚତ, କାରଣ ତଦ୍ୱାରା ପ୍ରତ୍ୟେକଟି ମନୁଷ୍ୟ ଧର୍ମପଥରେ ପଥିକ ହେବେ; କ୍ରମଶଃ ଅଧିକସଂଖ୍ୟକ ମନୁଷ୍ୟ ଧର୍ମପଥରେ ସାହାଯ୍ୟ ଲାଭ କରବେ । ମୁଁ ଈଶ୍ୱରଙ୍କ ନକଟରେ ପ୍ରାର୍ଥନା କରେ ଯେ, ଧର୍ମର ସଂଖ୍ୟା କ୍ରମଶଃ ବୃଦ୍ଧିପାଉ—ଯେତେଦନ ପର୍ଯ୍ୟନ୍ତ ପ୍ରତ୍ୟେକ ଲୋକ ଅପର ବ୍ୟକ୍ତିଠାରୁ ପୃଥକ୍ ନଜର ଗୋଟିଏ ଧର୍ମ ଲାଭ ନ କରଛି । ଭକ୍ତିଯୋଗର ଏହା ହିଁ ଭାବ ।

ଏ ବିଷୟର ସିଦ୍ଧାନ୍ତ ଏହି ଯେ, ମୋର ଧର୍ମ ଆପଣଙ୍କର ବା ଆପଣଙ୍କର ଧର୍ମ ମୋର ହୋଇପାରିବ ନାହିଁ । ଯଦିଚ ସମସ୍ତଙ୍କର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ଏକ, ତଥାପି ମନର ରୁଚି ଅନୁସାରେ ପ୍ରତ୍ୟେକଙ୍କୁ ଭିନ୍ନ ଭିନ୍ନ ପଥଦେଇ ଯିବାକୁ ହୁଏ ଏବଂ ପଥ ଯଦିଓ ବିଭିନ୍ନ, ତଥାପି ସମସ୍ତ ପଥ ହିଁ ସତ୍ୟ; କାରଣ ପଥଗୁଡ଼ିକ ଏକମାତ୍ର ଚରମ ଲକ୍ଷ୍ୟ ଅଭିମୁଖରେ ନେଇଯାନ୍ତି । ଗୋଟିଏ ସତ୍ୟ, ଅନ୍ୟଗୁଡ଼ିକ ମିଥ୍ୟା—ତାହା ହୋଇପାରେ ନାହିଁ । ଏହି ନିଜ ନିଜ ନିର୍ବାଚିତ ପଥକୁ ଭକ୍ତିଯୋଗୀର ଭାଷାରେ ଇଷ୍ଟ କୁହାଯାଏ ।

ଏହାପରେ ପୁଣି ଶବ୍ଦ ବା ମନ୍ତ୍ରଶକ୍ତିର କଥା ଉଲ୍ଲେଖ କରିବା ଉଚିତ । ଏହି ଶବ୍ଦ-ଗୁଡ଼ିକ କି ଅଦ୍ଭୁତ ? ପ୍ରତ୍ୟେକ ଧର୍ମଗ୍ରନ୍ଥରେ – ବେଦ , ବାଇବେଲ, କୋରାନ୍‌ରେ ଶବ୍ଦ-ଶକ୍ତିର ପରିଚୟ ମିଳିଥାଏ । କେତେଗୁଡ଼ିଏ ଶବ୍ଦ ଅଛି—ମନୁଷ୍ୟଜାତି ଉପରେ ତାହାର ଆଶ୍ଚର୍ଯ୍ୟଜନକ ପ୍ରଭାବ ।

ଏହାପରେ ପୁଣି ଭକ୍ତିଲାଭର ବାହ୍ୟ ସହାୟ ସ୍ୱରୂପ ପ୍ରତୀକ-ବସ୍ତୁ ରହିଛି । ଆଉ ଏଗୁଡ଼ିକର ମାନବ-ମନ ଉପରେ ପ୍ରବଳ ପ୍ରଭାବ । ଧର୍ମର ପ୍ରଧାନ ବସ୍ତୁଗୁଡ଼ିକ ଇଚ୍ଛାନୁଯାୟୀ ବା ଖିଆଲବଶତଃ ରଚିତ ହୋଇନାହିଁ । ସେଗୁଡ଼ିକ ଭାବର ସ୍ୱାଭାବିକ ପ୍ରକାଶ ମାତ୍ର । ଆମେ ସର୍ବଦା ହିଁ ରୂପକର ସହାୟତାରେ ଚିନ୍ତା କରିଥାଉଁ । ଆମର ସମସ୍ତ ଶବ୍ଦଗୁଡ଼ିକ ବସ୍ତୁତଃ ଚିନ୍ତାର ରୂପକ ମାତ୍ର । ବିଭିନ୍ନ ଜାତି ପ୍ରକୃତ କାରଣ ନ ଜାଣି ମଧ୍ୟ ବିଭିନ୍ନ ପ୍ରତୀକ ବ୍ୟବହାର କରିବାକୁ ଆରମ୍ଭ କରିଥାନ୍ତି । ଏହି କାରଣଗୁଡ଼ିକ ମନର ଅନ୍ତରାଳରେ ଥାଏ; ପ୍ରତୀକଗୁଡ଼ିକ ଚିନ୍ତା ସହିତ ଜଡ଼ିତ; ଯେପରି ଚିନ୍ତା ବା ଭାବରୁ ପ୍ରତୀକ ବସ୍ତୁରୂପ ଗ୍ରହଣ କରେ, ସେହିପରି ଏହି ପ୍ରତୀକ ମଧ୍ୟ ଭିତରେ ଭାବର ଉଦ୍ରେକ କରିପାରେ । ଏଥିପାଇଁ ଭକ୍ତିଯୋଗର ଏହି ଅଂଶରେ ଏହି ସମସ୍ତ ଭାବୋଦ୍ଦୀପକ ପ୍ରତୀକ, ବସ୍ତୁ, ଶବ୍ଦ ବା ମନ୍ତ୍ରଶକ୍ତି ଓ ପ୍ରାର୍ଥନା ଅଥବା ସ୍ତବ-ସ୍ତୁତିର କଥା ଅଛି ।

ସକଳ ଧର୍ମରେ ପ୍ରାର୍ଥନା ଅଛି, ତେବେ ଏତିକି ଆପଣଙ୍କୁ ସ୍ମରଣ ରଖିବାକୁ ହେବ ଯେ, ଧନ ସମ୍ପଦ ବା ସ୍ୱାସ୍ଥ୍ୟ ଲାଭ ନିମିତ୍ତ ପ୍ରାର୍ଥନା କରିବାକୁ ଭକ୍ତି କୁହାଯାଏ ନାହିଁ । ଏଗୁଡ଼ିକ ପୁଣ୍ୟ କର୍ମ । ସ୍ୱର୍ଗାଦିଗମନ ନିମନ୍ତେ ବା କୌଣସି ବାହ୍ୟବସ୍ତୁ ଲାଭ ନିମିତ୍ତ ପ୍ରାର୍ଥନା କର୍ମ ମାତ୍ର । ଯେଉଁମାନେ ଭଗବାନଙ୍କୁ ଭଲପାଇବାକୁ ଚାହାନ୍ତି, ଯେ ଭକ୍ତ ହେବାକୁ ଚାହାଁନ୍ତି, ତାହାଙ୍କୁ ଏହି ସମସ୍ତ କାମନା ତ୍ୟାଗ କରିବାକୁ ହେବ । ଯେଉଁମାନେ ଆଲୋକ-ରାଜ୍ୟରେ ପ୍ରବେଶ କରିବାକୁ ଚାହାଁନ୍ତି, ସେମାନଙ୍କୁ କିଣାବିକାର ଦୋକାନଦାରୀ ଧର୍ମଭାବର ପୁଟୁଳି ବାନ୍ଧି ବାହାରେ ଫୋପାଡ଼ି ଆସିବାକୁ ହେବ । ତାହାହେଲେ ସେ ଭକ୍ତି-ରାଜ୍ୟରେ ପ୍ରବେଶ କରିବାର ଅଧିକାର ପାଇବେ । ମୁଁ ଏକଥା କହୁନାହିଁ ଯେ, ଯାହା ପ୍ରାର୍ଥନା କରାଯାଏ, ତାହା ମିଳେ ନାହିଁ; ଯାହା ଆକାଙ୍‌କ୍ଷା କରାଯାଏ, ତାହା ସମସ୍ତ ମିଳିଯାଏ । ତେବେ ତାହା ଅତି ହୀନବୁଦ୍ଧି ନିମ୍ନାଧିକାରୀର ଭିକାରୀର ଧର୍ମ । 'ଉଷିତ୍ୱା ଜାହ୍ନବୀତୀରେ କୂପଂ ଖନତି ଦୁର୍ମ୍ମତିଃ । ସେ ମୂର୍ଖ, ଯେ ଗଙ୍ଗାତୀରରେ ବାସକରି ଜଳନିମିତ୍ତ କୂପ ଖନନ କରେ । ସେ ମୂର୍ଖ—ଯେ ହୀରକଖଣିକୁ ଆସି କାଚଖଣ୍ଡର ଅନ୍ୱେଷଣ କରେ । ଭଗବାନ୍ ହୀରକଖଣିସ୍ୱରୂପ, ତାଙ୍କ

ନିକଟରେ କାଚଖଣ୍ଡବତ୍ ସ୍ୱାସ୍ଥ୍ୟ, ଖାଦ୍ୟ, ବସ୍ତ୍ର ଭିକ୍ଷା କରିବାକୁ ହେବ; କି ଦୁର୍ଭାଗ୍ୟ ! ଏହି ଦେହ ଦିନେ ମରିବ ହିଁ ମରିବ । ତେବେ ଆଉ ବାରମ୍ବାର ଏହାର ସ୍ୱାସ୍ଥ୍ୟ ପାଇଁ ପ୍ରାର୍ଥନା କରାଯିବ କାହିଁକି ? ସ୍ୱାସ୍ଥ୍ୟ ଓ ଐଶ୍ୱର୍ଯ୍ୟରେ ଅଛି କଅଣ ? ଶ୍ରେଷ୍ଠ ଧନୀ ବ୍ୟକ୍ତି ମଧ୍ୟ ନିଜ ଧନର ଅତ୍ୟଳ୍ପ ଅଂଶମାତ୍ର ବ୍ୟବହାର କରିପାରନ୍ତି । ସେ ତ ଏକାଦିନକେ ଗୃହ ପାଞ୍ଚଥର ଭୋଜ ଖାଇପାରନ୍ତି ନାହିଁ, ଅଧିକ ବସ୍ତ୍ର ମଧ୍ୟ ବ୍ୟବହାର କରିପାରନ୍ତି ନାହିଁ ! ଜଣେ ଲୋକ ଯେତିକି ବାୟୁ ନିଃଶ୍ୱାସରେ ଗ୍ରହଣ କରିପାରନ୍ତି, ତାହାଠାରୁ ଅଧିକ ସେ ନେଇପାରନ୍ତି ନାହିଁ । ତାଙ୍କ ନିଜ ଦେହ ପାଇଁ ଯେତିକି ସ୍ଥାନ ଦରକାର, ତାହାଠାରୁ ଅଧିକ ସ୍ଥାନରେ ସେ ଶୋଇ ପାରନ୍ତି ନାହିଁ । ଆମେ ଏ ଜଗତର ସମସ୍ତ ବସ୍ତୁ କେବେହେଲେ ଏକା ପାଇ ନ ପାରୁ । ଆଉ ଯଦି ନ ପାଉ, ତାହାହେଲେ କ୍ଷତି ବା କଅଣ ? ଏହି ଦେହ ଦିନେ ଯିବ—ଏସବୁକୁ କିଏ ଗ୍ରାହ୍ୟ କରେ ? ଯଦି ଭଲ ଭଲ ଜିନିଷ ଆସୁଛି ଆସୁ—ଯଦି ସେଗୁଡ଼ିକ ଚାଲିଯାଏ—ଯାଉ, ତାହା ମଧ୍ୟ ଭଲ । ଆସିଲେ ଭଲ, ନ ଆସିଲେ ମଧ୍ୟ ଭଲ; ଆମେ ଭଗବାନଙ୍କୁ ଲାଭ କରିବାକୁ ଚାହୁଁଛୁ । ଭଗବାନଙ୍କ ନିକଟକୁ ଯାଇ ଏ ଜିନିଷ ସେ ଜିନିଷ ଚାହିଁବା ଭକ୍ତି ନୁହେଁ । ଏଗୁଡ଼ିକ ଧର୍ମର ନିମ୍ନତମ ସୋପାନ, ଅତି ନିମ୍ନସ୍ତରର କର୍ମ ମାତ୍ର । ଆମେ ସେହି ରାଜରାଜେଶ୍ୱରଙ୍କର ସାମୀପ୍ୟ ଲାଭ ପାଇଁ ଚେଷ୍ଟା କରୁଅଛୁ । ଆମେ ସେଠାକୁ ଭିକ୍ଷୁକବେଶରେ ଯାଇ ନ ପାରୁ । ଯଦି ଆମେ ଏହି ବେଶରେ କୌଣସି ସମ୍ରାଟଙ୍କ ସମ୍ମୁଖରେ ଉପସ୍ଥିତ ହେବାକୁ ଚାହୁଁ, ଆମକୁ କଅଣ ସେଠାକୁ ଯିବାକୁ ଦିଆଯିବ ? କଦାପି ନୁହେଁ । ପ୍ରହରୀଗଣ ଆମମାନଙ୍କୁ ଦ୍ୱାରଦେଶରୁ ତଡ଼ି ଦେବେ । ଭଗବାନ ରାଜାମାନଙ୍କର ରାଜା; ସମ୍ରାଟମାନଙ୍କର ସମ୍ରାଟ; ଆମେ ତାଙ୍କ ନିକଟକୁ ଜୀର୍ଣ୍ଣବସ୍ତ୍ର ପରିଧାନ କରି ଯାଇ ନ ପାରୁ । ସେଠାରେ ଦୋକାନଦାରୀର ପ୍ରବେଶାଧିକାର ନାହିଁ, ସେଠାରେ କିଣାବିକା ଆଦୌ ଚାଲିବ ନାହିଁ । ଆପଣମାନେ ବାଇବେଲରେ ମଧ୍ୟ ପଢ଼ିଛନ୍ତି ଯେ, ଯୀଶୁ ଯେହୋବାଙ୍କ ମନ୍ଦିରରୁ କ୍ରେତା ଓ ବିକ୍ରେତାମାନଙ୍କୁ ତଡ଼ି ଦେଇଥିଲେ ।

ତଥାପି କେହି କେହି ପ୍ରାର୍ଥନା କରନ୍ତି—'ହେ ଈଶ୍ୱର, ମୁଁ ତୁମକୁ ମୋର ଏହି କ୍ଷୁଦ୍ର ପ୍ରାର୍ଥନା ଉପହାର ଦେଉଛି; ତୁମେ ମୋତେ ଗୋଟିଏ ନୂତନ ପୋଷାକ ଦିଅ । ହେ ଭଗବାନ୍, ଅଜି ମୋର ମୁଣ୍ଡବ୍ୟଥା ଭଲ କରିଦିଅ । ମୁଁ କାଲି ଆଉ ଦୁଇ ଘଣ୍ଟା ଅଧିକ ପ୍ରାର୍ଥନା କରିବ ।' ଏହିଭଳି ପ୍ରାର୍ଥନାକାରୀଙ୍କ ଅପେକ୍ଷା ଆପଣମାନେ ନିଜ ନିଜକୁ କିଛିଟା ଉଚ୍ଚମନୋଭାବାପନ୍ନ ମନେକରନ୍ତୁ; ଆପଣ ଛୋଟକାଟିଆ ଜିନିଷ ପାଇଁ ପ୍ରାର୍ଥନା କରିବାର ଊର୍ଦ୍ଧ୍ୱରେ । ମନୁଷ୍ୟ ଯଦି ନିଜର ସମୁଦାୟ ମନଃଶକ୍ତି ଏଭଳି ଶରୀର-ସୁଖରେ ବ୍ୟୟ କରେ, ତେବେ ମନୁଷ୍ୟ ଓ ପଶୁ ମଧ୍ୟରେ କି ପ୍ରଭେଦ ?

ଅତଏବ ଏହା କହିବା ବାହୁଲ୍ୟ ଯେ, ଭକ୍ତ ହେବାକୁ ଗଲେ ପ୍ରଥମେ ଏହି ପ୍ରକାର ସମସ୍ତ ବାସନା ଏପରିକି ସ୍ୱର୍ଗଗମନର ବାସନା ପରିହାର କରିବାକୁ ହେବ । ସ୍ୱର୍ଗ ଏହି ସମସ୍ତ ସ୍ଥାନ ସଦୃଶ । ତେବେ ଏଠା ଅପେକ୍ଷା କିଛି ଭଲ ହୋଇପାରେ । ଏଠାରେ ଆମକୁ କେତେକ ଦୁଃଖ, କେତେକ ସୁଖଭୋଗ କରିବାକୁ ହୋଇଥାଏ । ସ୍ୱର୍ଗରେ ହୁଏତ ଦୁଃଖ

ଟିକିଏ କମ୍ ହେବ, ସୁଖ ଟିକିଏ ବେଶୀ ହେବ । ଜ୍ଞାନର ଆଲୋକ ସେଠାରେ ଏତେ ଟିକିଏ ବି ବଢ଼ିବ ନାହିଁ, ସ୍ୱର୍ଗରେ କେବଳ ଆମ ପୁଣ୍ୟ କର୍ମର ଫଳ ଭୋଗ ହେବ—ଖ୍ରୀଷ୍ଟିଆନ୍‌ମାନଙ୍କର ସ୍ୱର୍ଗ ବିଷୟରେ ଧାରଣା ଏହି ଯେ, ତାହା ଏପରି ଏକ ସ୍ଥାନ, ଯେଉଁଠାରେ ଭୋଗ-ସୁଖ ତୀବ୍ର ଭାବେ ବର୍ଦ୍ଧିତ ହେବ । ଏଭଳି ସ୍ୱର୍ଗ କିପରି ଆମର ଚରମ ଲକ୍ଷ୍ୟ ହୋଇପାରିବ ? ସମ୍ଭବତଃ ଆପଣମାନେ ଏପରି ସ୍ଥାନକୁ ଶହ ଶହ ଥର ଯାଇଛନ୍ତି ଏବଂ ସେଠାରୁ ଶହ ଶହ ଥର ଫେରି ଆସିଛନ୍ତି ।

ବର୍ତ୍ତମାନ ପ୍ରଶ୍ନ ଏହି ଯେ କିଭଳି ଏହି ସମସ୍ତ ବାସନା ଅତିକ୍ରମ କରାଯିବ । ତାହା କିଅଣ, ଯାହା ମନୁଷ୍ୟକୁ ଅସୁଖୀ କରିଥାଏ ? ମନୁଷ୍ୟ ପ୍ରାକୃତିକ ନିୟମରେ ବଦ୍ଧ କ୍ରୀତଦାସ ତୁଲ୍ୟ, ପ୍ରକୃତି-ହାତରେ ପିତୁଳା ପରି—ପ୍ରକୃତି ଖେଳନା ପରି ତାହାକୁ କେତେବେଳେ ଉଠାଉଛି, କେତେବେଳେ ପିଟୁଛି, ନଡ଼ ନଡ଼ କରୁଛି । ଅତି ସାମାନ୍ୟ ଆଘାତରେ ଯେଉଁ ଦେହ ଚୂର୍ଣ୍ଣ-ବିଚୂର୍ଣ୍ଣ ହୋଇଯାଏ, ଆମେ ସର୍ବଦା ସେହି ଦେହର ଯତ୍ନ କରୁଛୁ ଏବଂ ସେଥି-ପାଇଁ ସର୍ବଦା ଭୟ-ବ୍ୟାକୁଳ-ଚିତ୍ତରେ ଜୀବନଯାପନ କରୁଛୁ । ମୁଁ ସେଦିନ ପଢ଼ିଥିଲି—ହରିଣକୁ ପ୍ରାଣ ଭୟରେ ଦିନକୁ ପ୍ରାୟ ପାଠିଏ ସତୁରି ମାଇଲ ଦଉଡ଼ିବାକୁ ହୁଏ । ହରିଣ ଅନେକ ମାଇଲ ଦଉଡ଼ିଗଲା, ତାହାପରେ କିଛି ଖାଇଲା । ଆମର ଜାଣିବା ଉଚିତ ଯେ, ଆମେ ହରିଣ ଅପେକ୍ଷା ଅଧିକତର ଦୁର୍ଦ୍ଦଶାଗ୍ରସ୍ତ । ହରିଣ କିନ୍ତୁ କିଛି ସମୟ ବିଶ୍ରାମ କରିବାକୁ ପାଏ, ଆମେ ତାହା ମଧ୍ୟ ପାଉନା । ହରିଣ ଯଥେଷ୍ଟ ପରିମାଣରେ ଘାସ ପାଇଲେ ହିଁ ତୃପ୍ତ ହୁଏ, ଆମେ କିନ୍ତୁ କ୍ରମାଗତ ଆମର ଅଭାବ ବଢ଼ାଇ ଚାଲିଛୁ । କ୍ରମାଗତ ଭାବେ ଅଭାବ ବଢ଼ାଇବା ଆମର ରୋଗବିଶେଷ ରୂପେ ଠିଆ ହୋଇଗଲାଣି । ଆମେ ଏପରି ବିପର୍ଯ୍ୟସ୍ତ ଓ ଅପ୍ରକୃତିସ୍ଥ ହୋଇପଡ଼ିଛୁ ଯେ, କୌଣସି ସ୍ୱାଭାବିକ ବସ୍ତୁ ଆଉ ଆମର ତୃପ୍ତିସାଧନ କରିପାରୁ ନାହିଁ । ସେଥିପାଇଁ ଆମେ ସର୍ବଦା ବିକୃତ ବସ୍ତୁ ଖୋଜୁଛୁ—ଅସ୍ୱାଭାବିକ ଉତ୍ତେଜନା, ଅସ୍ୱାଭାବିକ ଖାଦ୍ୟପାନୀୟ, ଅସ୍ୱାଭାବିକ ସଙ୍ଗ ଓ ତଦନୁରୂପ ଜୀବନ ଖୋଜୁଛୁ । ବାୟୁକୁ ବିଷାକ୍ତ କରିଲେ ହିଁ ଆମେ ନିଃଶ୍ୱାସ-ପ୍ରଶ୍ୱାସ ଗ୍ରହଣ କରିପାରିବୁ । ଭୟ ବିଷୟରେ ବକ୍ତବ୍ୟ ଏତିକି ଯେ, ଆମର ସମଗ୍ର ଜୀବନଟା କେତେଗୁଡ଼ିଏ ଭୟର ସମଷ୍ଟି ବ୍ୟତୀତ ଆଉ କିଅଣ ? ହରିଣ ପକ୍ଷରେ ଭୟ କରିବାର ଏକ ପ୍ରକାର ଜିନିଷ ଅଛି, ଯଥା ବ୍ୟାଘ୍ରାଦି; ଆଉ ମନୁଷ୍ୟର ଭୟ ସମଗ୍ର ଜଗତଠାରୁ ।

ବର୍ତ୍ତମାନ ପ୍ରଶ୍ନ ଏହି, ଆମେ କିଭଳି ଏହି ଭୟରୁ ମୁକ୍ତ ହେବୁ ? ହିତବାଦୀଗଣ ( utilitarians ) କହିଥାଆନ୍ତି, 'ଈଶ୍ୱର ଓ ପରଲୋକ ସମ୍ବନ୍ଧରେ କୌଣସି କଥା କହ ନାହିଁ, ଆମେ ଏହିସବୁ କଥା କିଛି ଜାଣୁନା, ଏଇ ଜଗତରେ ସୁଖରେ ବାସ କରିଯାଉ ।' ଯଦି ତାହା ସମ୍ଭବ ହୋଇଥାଆନ୍ତା, ତେବେ ମୁଁ ପ୍ରଥମେ ଏଭଳି କରିଥାଆନ୍ତି; କିନ୍ତୁ ଜଗତ୍ ଆମମାନଙ୍କୁ ତାହା କରିବାକୁ ଦେବ ନାହିଁ । ଆପଣମାନେ ଯେତେଦିନ ପ୍ରକୃତିର ଦାସ ରୂପେ ରହିଛନ୍ତି, ସେତେଦିନ ସୁଖଭୋଗ କରିବେ କିପରି ? ଯେତେ ଦୁଃଖ ଏଡ଼ାଇବାକୁ ଚେଷ୍ଟା କରିବେ, ସେତିକି ଅଧିକ ଦୁଃଖଦ୍ୱାରା ପରିବେଷ୍ଟିତ ହେବେ । ଜାଣେନା, କେତେ ବର୍ଷ ଧରି

ଆପଣମାନେ ସୁଖୀ ହେବା ପାଇଁ କେତେ ପରିକଳ୍ପନା କରି ଆସୁଛନ୍ତି; କିନ୍ତୁ ପ୍ରତିଟି ପରି-କଳ୍ପନାର ଶେଷରେ ଅବସ୍ଥା କ୍ରମଶଃ ମନ୍ଦରୁ ମନ୍ଦତର ହୋଇ ପଡ଼ୁଅଛି । ଦୁଇ ଶତ ବର୍ଷ ପୂର୍ବେ ପୁରାତନ ପୃଥିବୀ ( old world )ରେ ଲୋକମାନଙ୍କର ଅଭାବ ଅତି ଅଳ୍ପ ଥିଲା; କିନ୍ତୁ ଯେମିତି ତାଙ୍କର ଜ୍ଞାନ ବଢ଼ିବାରେ ଲାଗିଲା, ଅଭାବ ଶତଗୁଣ ବଢ଼ି ଚାଲିଲା । ଆମେ ଭାବୁ, ଅନ୍ତତଃ ଯେତେବେଳେ ଆମେ ସ୍ୱର୍ଗକୁ ଯାଇ ପରିତ୍ରାଣ ପାଇବୁ, ସେତେବେଳେ ଆମର ସମସ୍ତ ବାସନା ପୂର୍ଣ୍ଣ ହେବ—ସେଥିପାଇଁ ହିଁ ଆମେ ସ୍ୱର୍ଗକୁ ଯିବାକୁ ଚାହୁଁ । ସେହି ଅନନ୍ତ ଅଦମ୍ୟ ପିପାସା ! ସବୁବେଳେ ଗୋଟାଏ କିଛି ଆକାଙ୍କ୍ଷା ! ଭିକ୍ଷୁକ ଅବସ୍ଥାରେ ମଣିଷ ଚାହେଁ ଟଙ୍କା; ଟଙ୍କା ହେଲେ ପୁଣି ଅନ୍ୟ ଜିନିଷ ଚାହେଁ, ସମାଜ ସହିତ ମିଶିବାକୁ ଚାହେଁ, ତାହାପରେ ଆହୁରି ଅନ୍ୟ କିଛି ଚାହେଁ । ଏତେ ଟିକିଏ ବିଶ୍ରାମ ମଧ୍ୟ ନାହିଁ । କିପରି ଆମର ଏଇ ତୃଷ୍ଣା ମେଣ୍ଟିବ ? ଯଦି ଆମେ ସ୍ୱର୍ଗକୁ ଯାଉ, ସେଥିରେ ବାସନା ଆହୁରି ବଢ଼ିଯିବ । ଯଦି ଦରିଦ୍ର ବ୍ୟକ୍ତି ଧନୀ ହୁଏ ତା'ହେଲେ ତାହାର ବାସନାର ନିବୃତ୍ତି ହୁଏ ନାହିଁ; ବରଂ ଅଗ୍ନିରେ ଯେପରି ଘୃତ ନିକ୍ଷେପ କଲେ ଅଗ୍ନିର ତେଜ ଯେପରି ଆହୁରି ବଢ଼ିଯାଏ, ତଦ୍ରୂପ ତାହାର ବାସନା ମଧ୍ୟ ବଢ଼ିଯାଏ । ସ୍ୱର୍ଗକୁ ଯିବା ଅର୍ଥ ଖୁବ୍ ଧନୀ ହୋଇଯିବା, ଆଉ ତାହା ହୋଇଗଲେ ବାସନା ଆହୁରି ବଢ଼ୁଥିବ । ପୃଥିବୀର ବିଭିନ୍ନ ପୁରାଣ ଶାସ୍ତ୍ରରେ ପଢ଼ାଯାଏ, ସ୍ୱର୍ଗରେ ଦେବତାମାନେ ମନୁଷ୍ୟ ପରି ଅନେକ ଆମୋଦପ୍ରମୋଦ ଓ ଛଳନା କରିଥାଆନ୍ତି । ସେମାନେ ସମସ୍ତେ ଯେ ଖୁବ ଭଲ, ତାହା ନୁହେଁ । ପୁଣି ସେହି ସ୍ୱର୍ଗକୁ ଯିବାର ଇଚ୍ଛା କେବଳ ଭୋଗ-ବାସନା ମାତ୍ର । ଏହାକୁ ଛାଡ଼ିବାକୁ ହେବ, ସ୍ୱର୍ଗକୁ ଯିବା ତ ଅତି ଶ୍ରେଷ୍ଠ କଥା, ଏପରି ଚିନ୍ତା କରିବା ଅତି ଅମାର୍ଜିତ ମନୋଭାବର ଲକ୍ଷଣ । ମୁଁ ଲକ୍ଷପତି ହେବି ଓ ଲୋକଙ୍କ ଉପରେ ପ୍ରଭୁତ୍ୱ କରିବି—ଏହି ଭାବ ଯେପରି, ସ୍ୱର୍ଗକୁ ଯିବା ଇଚ୍ଛା ମଧ୍ୟ ସେହିପରି । ଏଭଳି ସ୍ୱର୍ଗ ବହୁତ ଅଛି, କିନ୍ତୁ ଏଗୁଡ଼ିକ ମଧ୍ୟ ଦେଇଗଲେ ଧର୍ମ ଓ ଭକ୍ତିର ଦ୍ୱାରଦେଶକୁ ବି ପ୍ରବେଶ କରିବାର ଅଧିକାର ମିଳିବ ନାହିଁ ।

## ପ୍ରତୀକର କେତୋଟି ଦୃଷ୍ଟାନ୍ତ

'ପ୍ରତୀକ' ଓ 'ପ୍ରତିମା'—ଦୁଇଟି ସଂସ୍କୃତ ଶବ୍ଦ । ଆମେ ବର୍ତ୍ତମାନ ଏଇ 'ପ୍ରତୀକ' ସମ୍ବନ୍ଧରେ କିଛି ଆଲୋଚନା କରିବା । 'ପ୍ରତୀକ' ଶବ୍ଦର ଅର୍ଥ—ଅଭିମୁଖୀ ହେବା, ସମୀପବର୍ତ୍ତୀ ହେବା । ସବୁ ଦେଶରେ ସବୁ ଧର୍ମରେ ଉପାସନାର ନାନାବିଧ ସୋପାନ ରହିଥିବାର ଦେଖିବାକୁ ପାଇବେ । ଦୃଷ୍ଟାନ୍ତସ୍ୱରୂପ ଦେଖନ୍ତୁ—ଏହି ଦେଶରେ ଅନେକ ଲୋକ ଅଛନ୍ତି, ଯେଉଁମାନେ ସାଧୁମାନଙ୍କର ପ୍ରତିମୂର୍ତ୍ତି ପୂଜା କରନ୍ତି; ଏପରି ବହୁଲୋକ ଅଛନ୍ତି, ଯେଉଁମାନେ କେତେଗୁଡ଼ିଏ ରୂପ ଓ ପ୍ରତୀକର ଉପାସନା କରନ୍ତି । ଆହୁରି ଅନେକ ଲୋକ ଅଛନ୍ତି, ଯେଉଁମାନେ ମନୁଷ୍ୟ ଅପେକ୍ଷା ଉଚ୍ଚତର କୌଣସି ସତ୍ତାର ଉପାସନା କରନ୍ତି ଏବଂ ସେମାନ-ଙ୍କର ସଂଖ୍ୟା ଦିନକୁ ଦିନ ଦ୍ରୁତ ବେଗରେ ବଢ଼ି ଚାଲିଛି । ମୁଁ ପ୍ରେତ-ଉପାସକଙ୍କ କଥା

କହୁଛୁ । ମୁଁ ପୁସ୍ତକ ପାଠ କରି ଅବଗତ ହୋଇଛୁ ଯେ, ଏଠାରେ ପ୍ରାୟ ଅଶୀ ଲକ୍ଷ ପ୍ରେତ-ଉପାସକ ଅଛନ୍ତି । ତାହାପରେ ଅନ୍ୟ କେତେକ ବ୍ୟକ୍ତି ଅଛନ୍ତି, ଯେଉଁମାନେ ତଦପେକ୍ଷା ଉଚ୍ଚତର ସତ୍ତା ଅର୍ଥାତ୍ ଦେବାଦିଙ୍କର ଉପାସନା କରନ୍ତି । ଭକ୍ତିଯୋଗ ଏହି ସମସ୍ତ ବିଭିନ୍ନ ସୋପାନଗୁଡ଼ିକ ମଧ୍ୟରୁ କୌଣସିଟିର ନିନ୍ଦା କରେ ନାହିଁ; କିନ୍ତୁ ଏହି ସମସ୍ତ ଉପାସନାଗୁଡ଼ିକୁ ଗୋଟିଏ ପ୍ରତୀକୋପାସନାର ଅନ୍ତର୍ଭୁକ୍ତ କରାଯାଏ । ଏହି ଉପାସକଗଣ ପ୍ରକୃତ ପକ୍ଷରେ ଈଶ୍ୱରଙ୍କ ଉପାସନା କରୁନାହାନ୍ତି; କିନ୍ତୁ ପ୍ରତୀକ ଅର୍ଥାତ୍ ଈଶ୍ୱର-ସନ୍ନିହିତ କୌଣସି ବସ୍ତୁର ଉପାସନା କରୁଛନ୍ତି । ଏହିସବୁ ଭିନ୍ନ ଭିନ୍ନ ବସ୍ତୁର ସହାୟତାରେ ଈଶ୍ୱରଙ୍କ ନିକଟରେ ପହଞ୍ଚିବାର ଚେଷ୍ଟା କରୁଛନ୍ତି । ଏହି ପ୍ରତୀକ-ଉପାସନାଦ୍ୱାରା ଆମର ମୁକ୍ତିଲାଭ ହୁଏ ନାହିଁ; ଆମେ ଯେଉଁ ଯେଉଁ ବିଶେଷ କାମନାରେ ଏମାନଙ୍କର ଉପାସନା କରୁ, ତାହାଦ୍ୱାରା କେବଳ ସେହି ସେହି ବିଶେଷ ବସ୍ତୁ ଲବ୍ଧ ହୋଇପାରେ । ଉଦାହରଣସ୍ୱରୂପ ଦେଖନ୍ତୁ; ଯଦି କୌଣସି ବ୍ୟକ୍ତି ତାଙ୍କର ପରଲୋକଗତ ପୂର୍ବପୁରୁଷ ବା ବନ୍ଧୁବାନ୍ଧବଙ୍କର ଉପାସନା କରନ୍ତି, ସମ୍ଭବତଃ ସେ ସେମାନଙ୍କ ନିକଟରୁ କେତେକ ଶକ୍ତି ବା କେତେଗୁଡ଼ିଏ ବିଶେଷ ବିଶେଷ ସମ୍ବାଦ ଲାଭ କରିପାରନ୍ତି । ଏହିସବୁ ବିଶେଷ ବିଶେଷ ଉପାସ୍ୟ ବସ୍ତୁଠାରୁ ଯେଉଁ ବସ୍ତୁବିଶେଷ ଲାଭ ହୁଏ, ତାହାକୁ ବିଦ୍ୟା ଅର୍ଥାତ୍ ଜ୍ଞାନବିଶେଷ କୁହାଯାଏ; କିନ୍ତୁ ଆମର ଚରମ ଲକ୍ଷ୍ୟ ମୁକ୍ତି କେବଳ ସ୍ୱୟଂ ଈଶ୍ୱରଙ୍କ ଉପାସନାଦ୍ୱାରା ମିଳିଥାଏ । ବେଦ ବ୍ୟାଖ୍ୟା କରିବାକୁ ଯାଇ କୌଣସି କୌଣସି ପ୍ରାଚ୍ୟତତ୍ତ୍ୱବିତ୍, ପାଶ୍ଚାତ୍ୟ ପଣ୍ଡିତ ଏପରି ମତ ପ୍ରକାଶ କରିଛନ୍ତି ଯେ, ସ୍ୱୟଂ ସଗୁଣ ଈଶ୍ୱର ମଧ୍ୟ ପ୍ରତୀକ । ସଗୁଣ ଈଶ୍ୱରଙ୍କୁ ପ୍ରତୀକରୂପେ ଗ୍ରହଣ କରାଯାଇପାରେ; କିନ୍ତୁ ପ୍ରତୀକ ସଗୁଣ ବା ନିର୍ଗୁଣ କୌଣସି ପ୍ରକାରର ଈଶ୍ୱର ନୁହନ୍ତି । ସେଗୁଡ଼ିକୁ ଈଶ୍ୱରରୂପରେ ଉପାସନା କରାଯାଏ ନାହିଁ । ଅତଏବ କେହି କେହି ଯଦି ମନେକରନ୍ତି ଯେ, ଦେବତା, ପୂର୍ବପୁରୁଷ, ମହାତ୍ମା, ସାଧୁ ବା ପ୍ରେତରୂପକ ବିଭିନ୍ନ ପ୍ରତୀକସମୂହର ଉପାସନା କରିବାଦ୍ୱାରା ସେମାନେ କେତେବେଳେ ହେଲେ ମୁକ୍ତିଲାଭ କରିବେ, ତେବେ ଏହା ସେମାନଙ୍କର ମହାଭ୍ରମ । ଖୁବ୍ ହେଲେ ଏହାଦ୍ୱାରା ସେମାନେ କିଛି ଶକ୍ତି ଲାଭ କରିପାରନ୍ତି; କିନ୍ତୁ କେବଳ ଈଶ୍ୱର ହିଁ ଆମ-ମାନଙ୍କୁ ମୁକ୍ତ କରିପାରନ୍ତି । କିନ୍ତୁ ତାହାବୋଲି ଏସମସ୍ତ ଉପାସନା ଉପରେ ଦୋଷାରୋପ କରିବାର ପ୍ରୟୋଜନ ନାହିଁ, ତନ୍ମଧ୍ୟରୁ ପ୍ରତ୍ୟେକଟିଦ୍ୱାରା କିଛି କିଛି ଫଳ ଲାଭ ହୋଇଥାଏ ଏବଂ ଯେଉଁ ବ୍ୟକ୍ତି ଆଉ ଅଧିକ ଉଚ୍ଚତର କିଛି ବୁଝେ ନାହିଁ, ସେ ଏହି ସମସ୍ତ ପ୍ରତୀକୋ-ପାସନାରୁ କିଛି କିଛି ଶକ୍ତି ଓ ସୁଖସମ୍ଭୋଗ ଲାଭ କରିବ । ତାହାପରେ ଦୀର୍ଘକାଳ ଭୋଗ ଓ ଅଭିଜ୍ଞତା-ସଞ୍ଚୟ ପରେ, ଯେତେବେଳେ ସେ ମୁକ୍ତିଲାଭ ପାଇଁ ପ୍ରସ୍ତୁତ ହେବ, ସେତେବେଳେ ସେ ବଳେ ବଳେ ସେହି ସବୁ ପ୍ରତୀକୋପାସନା ତ୍ୟାଗ କରିବ ।

ଏହିସବୁ ବିଭିନ୍ନ ପ୍ରତୀକୋପାସନା ମଧ୍ୟରେ ପରଲୋକଗତ ବନ୍ଧୁବାନ୍ଧବ—ଆତ୍ମୀୟ-ମାନଙ୍କର ଉପାସନା ହିଁ ସମାଜରେ ସର୍ବାପେକ୍ଷା ଅଧିକ ପ୍ରଚଳିତ । ବ୍ୟକ୍ତିଗତ ଭଲପାଇବା, ପ୍ରିୟଜନଙ୍କର ଦେହକୁ ଭଲପାଇବା—ଏହି ମାନବ-ପ୍ରକୃତି ଆମ ଭିତରେ ଏତେଦୂର ପ୍ରବଳ ଯେ, ସେମାନଙ୍କର ମୃତ୍ୟୁ ହେଲେ ମଧ୍ୟ ଆମେ ସର୍ବଦା ସେମାନଙ୍କ ଶରୀରକୁ ଆହୁରି ଦେଖିବା

ଲାଗି ଅଭିଳାଷୀ ହେଉ—ଆମେ ସେମାନଙ୍କର ଦେହପ୍ରତି ହିଁ ଆସକ୍ତ ! ଆମେ ଭୁଲିଯାଉ ଯେ, ଯେତେବେଳେ ସେମାନେ ଜୀବିତ ଥିଲେ, ସେତେବେଳେ ସେମାନଙ୍କ ଦେହ କ୍ରମାଗତ ପରିବର୍ତ୍ତିତ ହେଉଥିଲା—ଏବଂ ମୃତ୍ୟୁ ହେଲେ ଆମେ ଭାବୁ ଯେ, ତାଙ୍କର ଦେହ ଅପରିବର୍ତ୍ତନୀୟ ହୋଇଯାଇଛି, ସୁତରାଂ ଆମେ ସେମାନଙ୍କୁ ପୂର୍ବଭଳି ହିଁ ଦେଖିବୁ । କେବଳ ସେତିକି ନୁହେଁ, ଆମର ଯଦି କୌଣସି ବନ୍ଧୁ ବା ପୁତ୍ର ଜୀବିତାବସ୍ଥାରେ ଅତିଶୟ ଦୁଷ୍ଟପ୍ରକୃତିର ଥିଲା, ତା'ର ମୃତ୍ୟୁ ପରେ ଆମେ ଭାବୁ ଯେ, ତା'ଭଳି ସାଧୁ, ତା'ଭଳି ସାଧୁପ୍ରକୃତିର ଲୋକ ଆଉ କେହି ନାହିଁ—ସେ ଆମ ନିକଟରେ ଈଶ୍ୱରତୁଲ୍ୟ ହୋଇଯାଏ । ଭାରତରେ ଏପରି ଅନେକ ଲୋକ ଅଛନ୍ତି, ଯେଉଁମାନଙ୍କର କୌଣସି ଶିଶୁର ମୃତ୍ୟୁ ହେଲେ ତାକୁ ଦାହ ନ କରି ମାଟିତଳେ ସମାଧିସ୍ଥ କରନ୍ତି ଓ ତା' ସମାଧିସ୍ଥାନ ଉପରେ ମନ୍ଦିର ନିର୍ମାଣ କରିଥାନ୍ତି ଏବଂ ସେହି ଶିଶୁଟି ହିଁ ସେହି ମନ୍ଦିରର ଦେବତା ହୋଇଯାଏ । ସବୁ ଦେଶରେ ଏହି ପ୍ରକାରର ଧର୍ମ ଖୁବ୍ ପ୍ରଚଳିତ ଏବଂ ଏପରି ଦାର୍ଶନିକଙ୍କର ଅଭାବ ନାହିଁ, ଯେଉଁମାନଙ୍କ ମତରେ ଏହା ହିଁ ସକଳ ଧର୍ମର ମୂଳ । ଅବଶ୍ୟ ସେମାନେ ଏହା ପ୍ରମାଣ କରିପାରନ୍ତି ନାହିଁ ।

ଯାହା ହେଉ ସ୍ମରଣ ରଖିବାକୁ ହେବ ଯେ, ଏହି ପ୍ରତୀକ-ପୂଜା ଆମମାନଙ୍କୁ କଦାପି ମୁକ୍ତି ଦେଇପାରିବ ନାହିଁ; ଦ୍ୱିତୀୟତଃ ଏଥିରେ ବିଶେଷ ବିପଦ ଆଶଙ୍କା ଅଛି । ବିପଦ ଏହି ଯେ, ଏହି ପ୍ରତୀକ ବା ସମୀପକାଙ୍କ୍ଷୀ ସୋପାନପରମ୍ପରା ଯେତେ ସମୟ ପର୍ଯ୍ୟନ୍ତ ଆଉ ଗୋଟିଏ ଅଗ୍ରବର୍ତ୍ତୀ ସୋପାନରେ ପହଞ୍ଚିବାରେ ସହାୟତା କରେ, ସେତେ ସମୟ ସେଗୁଡ଼ିକ ଦୋଷାବହ ନୁହେଁ, ବରଂ ଉପକାରୀ; କିନ୍ତୁ ଆମମାନଙ୍କ ମଧ୍ୟରେ ଶତକଡ଼ା ଅନେଶତ ଜଣ ସାରାଜୀବନ ପ୍ରତୀକ-ଉପାସନାରେହିଁ ଲାଗିଥାଆନ୍ତି । ସମ୍ପ୍ରଦାୟବିଶେଷ ଭିତରେ ଜନ୍ମିବା ଭଲ, କିନ୍ତୁ ସେଥିରେ ନିବଦ୍ଧ ରହି ମରିବା ଭଲ ନୁହେଁ । ସ୍ପଷ୍ଟତର ଭାବେ କହିବାକୁ ଗଲେ କୁହାଯାଇପାରେ, କୌଣସି ସମ୍ପ୍ରଦାୟରେ ପ୍ରବେଶ କରି ତନ୍ମଧ୍ୟରେ ପ୍ରଚଳିତ ସାଧନ-ପ୍ରଣାଳୀ ଅବଲମ୍ବନ କରିବା ଭଲ, ଏହାଦ୍ୱାରା ଆମର ଉଚ୍ଚତର ଭାବସମୂହ ଜାଗରିତ ହୁଏ; କିନ୍ତୁ ଅଧିକାଂଶ କ୍ଷେତ୍ରରେ ଆମେ ସେହି କ୍ଷୁଦ୍ର ସମ୍ପ୍ରଦାୟର ସଙ୍କୀର୍ଣ୍ଣଭାବ ଅବଲମ୍ବନ କରି ଜୀବନର ଶେଷଦିନ ପର୍ଯ୍ୟନ୍ତ ଆଗେଇଯାଉ, ତାହାର ବାହାରକୁ ଆସିପାରୁ ନାହିଁ, ନିଜ ଭାବର ବିକାଶ-ସାଧନ କରିପାରୁ ନାହିଁ । ଏହି ସମସ୍ତ ପ୍ରତୀକୋପାସନାରେ ଏହା ହିଁ ବଡ଼ ବିପଦ । ଲୋକେ ମୁହଁରେ କହିବେ ଯେ, ଏଗୁଡ଼ିକ ସୋପାନ ମାତ୍ର—ଏହିସବୁ ସୋପାନଗୁଡ଼ିକ ମଧ୍ୟ ଦେଇ ସେମାନେ ଅଗ୍ରସର ହେଉଛନ୍ତି; କିନ୍ତୁ ଯେତେବେଳେ ସେମାନେ ବୃଦ୍ଧ ହୋଇଯାଆନ୍ତି, ଦେଖାଯାଏ ସେତେବେଳେ ମଧ୍ୟ ସେମାନେ ସେହି ସୋପାନଗୁଡ଼ିକୁ ଅବଲମ୍ବନ କରି ରହିଛନ୍ତି । ଯଦି କୌଣସି ଯୁବକ ଚର୍ଚ୍ଚକୁ ନ ଯାଏ, ତେବେ ସେ ନିନ୍ଦାର୍ହ; କିନ୍ତୁ ଯଦି କେହି ବୃଦ୍ଧ ବୟସରେ ଚର୍ଚ୍ଚକୁ ଯାଏ, ସେ ମଧ୍ୟ ତଦ୍ରୂପ ନିନ୍ଦାର୍ହ, ତାହାର ଆଉ ଏହି ପିଲା ବେଳର କୌଣସି ପ୍ରୟୋଜନ ନାହିଁ । ଚର୍ଚ୍ଚ ସାହାଯ୍ୟରେ ତାହାର ଆହୁରି ଉଚ୍ଚତର ଅବସ୍ଥାରେ ଉପନୀତ ହେବା ଉଚିତ ଥିଲା । ଏହି ବୃଦ୍ଧ ବୟସରେ ତାହାର ଆଉ ଏହିସବୁ ପ୍ରତୀକ, ପଦ୍ଧତି ଓ ପ୍ରାଥମିକ ଅନୁଷ୍ଠାନରେ କି ପ୍ରୟୋଜନ ?

ପ୍ରତୀକୋପାସନାର ଆଉ ଗୋଟିଏ ପ୍ରବଳ, ପ୍ରବଳତମ ଭାବ—ଗ୍ରନ୍ଥ ବା ଶାସ୍ତ୍ରର ଉପାସନା । ସବୁ ଦେଶରେ ହିଁ ଆପଣମାନେ ଦେଖିବେ ଗ୍ରନ୍ଥ ଈଶ୍ୱରଙ୍କର ସ୍ଥାନ ଅଧିକାର କରେ । ଆମ ଦେଶରେ ଏପରି ଅନେକ ସମ୍ପ୍ରଦାୟ ଅଛନ୍ତି, ଯେଉଁମାନେ ଭଗବାନ ଅବତୀର୍ଣ୍ଣ ହୋଇ ମାନବରୂପ ପରିଗ୍ରହ କରନ୍ତି ବୋଲି ବିଶ୍ୱାସ କରିଥାଆନ୍ତି; କିନ୍ତୁ ସେମାନଙ୍କ ମତରେ ମାନବରୂପରେ ଅବତୀର୍ଣ୍ଣ ହେଲେ ଈଶ୍ୱରଙ୍କୁ ମଧ୍ୟ ବେଦାନୁଯାୟୀ ଚାଲିବାକୁ ହେବ—ଆଉ ଯଦି ସେମାନଙ୍କ ଉପଦେଶ ବେଦାନୁଯାୟୀ ନ ହୁଏ, ତେବେ ସେମାନେ ସେ ଉପଦେଶ ଗ୍ରହଣ କରିବେ ନାହିଁ । ଆମ ଦେଶରେ ସବୁ ସମ୍ପ୍ରଦାୟର ଲୋକେ ବୁଦ୍ଧଙ୍କର ପୂଜା କରନ୍ତି; କିନ୍ତୁ ଯଦି ସେମାନଙ୍କୁ ପଚାରିବେ, 'ତୁମେ ବୁଦ୍ଧଙ୍କର ପୂଜା କର, କିନ୍ତୁ ତାଙ୍କ ଉପଦେଶ ଅନୁସରଣ କରୁନାହଁ କାହିଁକି ?' ସେମାନେ କହିବେ 'ଯେହେତୁ ବୁଦ୍ଧଙ୍କ ଉପଦେଶରେ ବେଦ ଅସ୍ୱୀକୃତ ହୋଇଛି ।' ଗ୍ରନ୍ଥୋପାସନା ବା ଶାସ୍ତ୍ରୋପାସନାର ତାତ୍ପର୍ଯ୍ୟ ଏହିପରି । ଖଣ୍ଡିଏ ଶାସ୍ତ୍ରର ଦୋହାଇ ଦେଇ ଯେତେ ଇଚ୍ଛା ସେତେ ମିଛ କହିଲେ କାହିଁକି; ସେଥିରେ କିଛି ଦୋଷ ନାହିଁ । ଭାରତରେ ଯଦି ମୁଁ କୌଣସି ନୂତନ ବିଷୟ ଶିକ୍ଷା ଦେବାକୁ ଇଚ୍ଛା କରେ—ଏବଂ ଯଦି ଅନ୍ୟ କୌଣସି ଗ୍ରନ୍ଥ ବା ବ୍ୟକ୍ତିଙ୍କର ଦୋହାଇ ନ ଦେଇ, ମୁଁ ଯେପରି ବୁଝିଛି, ସେହିପରି ଭାବରେ ସତ୍ୟ ପ୍ରଚାର କରିବାକୁ ଯାଏ—ତେବେ କେହି ମୋ କଥା ଶୁଣିବାକୁ ଆସିବେ ନାହିଁ; କିନ୍ତୁ ମୁଁ ଯଦି ବେଦରୁ କେତୋଟି ବାକ୍ୟ ଉଦ୍ଧାର କରି କାରସାଦିବଶତଃ ତା' ଭିତରୁ ଅତି ଅସମ୍ଭବ ଅର୍ଥ-ସବୁ ବାହାର କରିପାରେ—ତାହାର ଯୁକ୍ତିସଙ୍ଗତ ଅର୍ଥକୁ ନଷ୍ଟ କରି ଦେଇ ମୋ ନିଜର କେତେକ ଧାରଣାକୁ ବେଦର ଅଭିପ୍ରେତ ତତ୍ତ୍ୱ ବୋଲି ବ୍ୟାଖ୍ୟା କରେ—ତାହାହେଲେ ମୂର୍ଖମାନେ ଦଳ ଦଳ ହୋଇ ଆସି ମୋର ଅନୁସରଣ କରିବେ । ତା'ପରେ ଆଉ କେତେକ ଲୋକ ଅଛନ୍ତି, ସେମାନେ ଏକ ଅଦ୍ଭୁତ ଧରଣର ଖ୍ରୀଷ୍ଟଧର୍ମ ପ୍ରଚାର କରିଥାନ୍ତି; ସେମାନଙ୍କର ମତ ଶୁଣି ସାଧାରଣ ଖ୍ରୀଷ୍ଟିଆନଗଣ ହତବୁଦ୍ଧି ହୋଇ ଡରିଯିବେ; କିନ୍ତୁ ଏହି ପ୍ରଚାରକମାନେ କହନ୍ତି—ଆମେ ଯାହା କହୁଛୁ, ଯୀଶୁ ଖ୍ରୀଷ୍ଟଙ୍କର ମଧ୍ୟ ସେହି ମତ ଥିଲା । ଯେତେସବୁ ଅହଂକାରୀ ସେମାନଙ୍କ ଦଳରେ ଭର୍ତ୍ତି ପଶିଯାଆନ୍ତି । ବେଦ ବା ବାଇବେଲରେ ଯାହା ନ ମିଳେ, ଏପରି ସବୁ ନୂତନ ଜିନିଷ ଲୋକମାନେ ଗ୍ରହଣ କରିବାକୁ ଚାହାଁନ୍ତି ନାହିଁ । ସ୍ନାୟୁସମୂହ ଯେଉଁ ଭାବରେ ଅଭ୍ୟସ୍ତ ହୋଇଛନ୍ତି, ସେହି ଆଡ଼କୁ ଯିବାକୁ ଚାହାଁନ୍ତି । ଯେତେବେଳେ ଆପଣମାନେ କୌଣସି ନୂତନ ବିଷୟ ଶୁଣନ୍ତି ବା ଦେଖନ୍ତି, ସେମିତି ଚମକି ପଡ଼ନ୍ତି—ଏହା ମନୁଷ୍ୟର ପ୍ରକୃତିଗତ । ଅନ୍ୟାନ୍ୟ ବିଷୟ ସମ୍ବନ୍ଧରେ ଯଦି ଏହା ସତ୍ୟ ହୁଏ, ଚିନ୍ତା ଓ ଭାବ ସମ୍ବନ୍ଧରେ ଏ କଥା ଆହୁରି ବିଶେଷଭାବରେ ସତ୍ୟ । ମନ ପ୍ରଚଳିତ ଭାବରେ ଚିନ୍ତା କରିବାକୁ ଅଭ୍ୟସ୍ତ ହୋଇଛି, ସୁତରାଂ କୌଣସି ନୂତନ ଭାବ ଗ୍ରହଣ କରିବା ତା' ପକ୍ଷରେ ଅତି କଠିନ; ସୁତରାଂ ସେହି ଭାବଟିକୁ ପ୍ରଚଳିତ ଭାବର ଖୁବ୍ ପାଖାପାଖି ରଖିବାକୁ ହେବ—ତେବେ ଯାଇ ଆମେମାନେ ଧୀରେ ଧୀରେ ତାହା ଗ୍ରହଣ କରିପାରିବୁ । କୌଶଳ ହିସାବରେ ଏହା ଭଲ ହୋଇପାରେ, କିନ୍ତୁ ନୀତି ହିସାବରେ ମନ୍ଦ । ଏହିସବୁ ସଂସ୍କାରକଗଣ ଏବଂ ଆପଣମାନେ, ଯେଉଁମାନେ ଉଦାର ମତବାଲମ୍ବୀ ପ୍ରଚାରକ କହନ୍ତି, ସେମାନେ ଆଜିକାଲି ଯେଉଁ ରାଶିରାଶି ଅସାମଞ୍ଜସ୍ୟପୂର୍ଣ୍ଣ କଥା

କହୁଛନ୍ତି, ତାହା ଭାବି ଦେଖନ୍ତୁ । ସେମାନେ ଜାଣନ୍ତି ଯେ, ସେମାନେ ଶାସ୍ତ୍ରର ଯେଉଁଭଳି ବ୍ୟାଖ୍ୟା କରୁଛନ୍ତି, ସେଭଳି ଅର୍ଥ ହୁଏ ନାହିଁ; କିନ୍ତୁ ସେମାନେ ଯଦି ଏହିଭଳି ଭାବେ ପ୍ରଚାର ନ କରନ୍ତି, କେହି ତାଙ୍କ କଥା ଶୁଣିବାକୁ ଆସିବେ ନାହିଁ । ଖ୍ରୀଷ୍ଟୀୟ ବୈଜ୍ଞାନିକମାନଙ୍କ (Scientists)[୧] ମତରେ, ଯୀଶୁ ଜଣେ ବଡ଼ ରୋଗନିରାମୟକାରୀ ଥିଲେ । ପ୍ରେତତତ୍ତ୍ୱ-ବାଦୀମାନଙ୍କ (Spiritualists) ମତରେ ଜଣେ ବଡ଼ ଭୌତିକ ଗୁଣିଆ (Psychic) ଓ ଥିଓଜଫିଷ୍ଟଙ୍କ ମତରେ ସେ ଜଣେ ମହାତ୍ମା ଥିଲେ । ଧର୍ମଗ୍ରନ୍ଥର ଗୋଟିଏ ବାକ୍ୟରୁ ଏହିସବୁ ବିଭିନ୍ନ ଅର୍ଥ ବାହାର କରିବାକୁ ହେବ ।

ଛାନ୍ଦୋଗ୍ୟ ଉପନିଷଦ୍‌ର 'ସଦେବ ସୌମ୍ୟେଦମଗ୍ର ଆସୀଦେକମେବାଦ୍ୱିତୀୟମ୍' ଏହି ବାକ୍ୟାନ୍ତର୍ଗତ 'ସତ୍' ଶବ୍ଦର ଅର୍ଥ ବିଭିନ୍ନବାଦୀଗଣ ବିଭିନ୍ନ ଭାବରେ କରିଅଛନ୍ତି । ପରମାଣୁ-ବାଦୀଗଣ କହନ୍ତି : ସତ୍ ଶବ୍ଦର ଅର୍ଥ ପରମାଣୁ ଏବଂ ସେହି ପରମାଣୁରୁ ହିଁ ଜଗତ୍ ଉତ୍ପନ୍ନ ହୋଇଅଛି । ପ୍ରକୃତିବାଦୀଗଣ କହନ୍ତି—'ତାହାର' ଶବ୍ଦର ଅର୍ଥ ପ୍ରକୃତି ଓ ପ୍ରକୃତିରୁ ହିଁ ସମୁଦାୟ ଉତ୍ପନ୍ନ ହୋଇଅଛି । ଶୂନ୍ୟବାଦୀମାନେ କହନ୍ତି, ସତ୍ ଶବ୍ଦର ଅର୍ଥ ଶୂନ୍ୟ ଓ ଏହି ଶୂନ୍ୟରୁ ହିଁ ସମସ୍ତ ଉତ୍ପନ୍ନ ହୋଇଅଛି । ଈଶ୍ୱରବାଦୀଗଣ କହନ୍ତି, 'ତାହାର' ଅର୍ଥ ଈଶ୍ୱର । ଅଦ୍ୱୈତବାଦୀମାନେ କହନ୍ତି, ତାହାର ଅର୍ଥ ସେହି ପୂର୍ଣ୍ଣ ନିରପେକ୍ଷ ସତ୍ତା । ସମସ୍ତେ ସେହି ଏକମାତ୍ର ଶାସ୍ତ୍ରୀୟ ବାକ୍ୟକୁ ହିଁ ପ୍ରମାଣରୂପେ ଉଦ୍ଧାର କରୁଛନ୍ତି ।

ଗ୍ରନ୍ଥୋପାସନାରେ ଏହିସବୁ ଦୋଷ ରହିଛି, ହେଲେ ତାହାର ମଧ୍ୟ ଗୋଟିଏ ବଡ଼ ଗୁଣ ଅଛି —ତାହା ଗୋଟିଏ ଶକ୍ତି । ଯେଉଁସବୁ ଧର୍ମସମ୍ପ୍ରଦାୟର ଗୋଟିଏ ଗୋଟିଏ ଗ୍ରନ୍ଥ ଅଛି, ସେଗୁଡ଼ିକ ବ୍ୟତୀତ ଜଗତର ଅନ୍ୟସବୁ ଧର୍ମସମ୍ପ୍ରଦାୟ ଲୋପ ପାଇଯାଇଛି । ଆପଣ-ମାନଙ୍କ ଭିତରୁ କେହି କେହି ପାର୍ସିମାନଙ୍କ କଥା ଶୁଣିଛନ୍ତି । ଏମାନେ ପ୍ରାଚୀନ ପାରସ୍ୟବାସୀ; ଏକ ସମୟରେ ଏମାନଙ୍କ ସଂଖ୍ୟା ପ୍ରାୟ ଦଶକୋଟି ଥିଲା । ଆରବୀୟମାନେ ଏମାନଙ୍କ ମଧ୍ୟରୁ ଅଧିକାଂଶକୁ ପରାଜିତ କରି ମୁସଲମାନ କରିଦେଲେ । ଅଳ୍ପ କେତେଜଣ ସେମାନଙ୍କ ଧର୍ମ-ଗ୍ରନ୍ଥ ନେଇ ପଳାୟନ କଲେ ଆଉ ସେହି ଧର୍ମଗ୍ରନ୍ଥବଳରେ ସେମାନେ ଏପର୍ଯ୍ୟନ୍ତ ତିଷ୍ଠି ରହି-ଛନ୍ତି । ଇହୁଦୀମାନଙ୍କ କଥା ଭାବି ଦେଖନ୍ତୁ । ଯଦି ସେମାନଙ୍କର ଖଣ୍ଡିଏ ଧର୍ମଗ୍ରନ୍ଥ ନ ଥାନ୍ତା, ସେମାନେ ଜଗତରେ କେଉଁଠି ମିଳାଇ ଯାଆନ୍ତେଣି; କିନ୍ତୁ ସେହି ଗ୍ରନ୍ଥହିଁ ସେମାନଙ୍କର ଜୀବନୀ-ଶକ୍ତିକୁ ରକ୍ଷା କରିଛି । ଅତି ଭୟଙ୍କର ଅତ୍ୟାଚାର ସତ୍ତ୍ୱେ ସେମାନଙ୍କର ଧର୍ମଗ୍ରନ୍ଥ ସେମା-ନଙ୍କୁ ରକ୍ଷା କରିଛି । ଗ୍ରନ୍ଥର ଏହା ଗୋଟିଏ ବିଶେଷ ସୁବିଧା ଯେ, ତାହା ସମୁଦାୟ ଭାବ-

---

୧ Christian Scientists—ମାର୍କିନ ଦେଶର ଗୋଟିଏ ପ୍ରବଳ ସମ୍ପ୍ରଦାୟର ନାମ । ମିସେସ୍ ବ୍ରଡ଼ ନାମ୍ନୀ ମାର୍କିନ୍ ମହିଳା ଏହି ସମ୍ପ୍ରଦାୟର ପ୍ରତିଷ୍ଠାତ୍ରୀ । ଏମାନଙ୍କ ମତରେ ଜ୍ୱର, ରୋଗ, ଦୁଃଖ, ପାପ ପ୍ରଭୃତି ମନର ଭ୍ରମ ମାତ୍ର । ଆମର କୌଣସି ପ୍ରକାର ରୋଗ ନାହିଁ, ଦୃଢ଼ ଭାବରେ ବିଶ୍ୱାସ କଲେ ଆମେ ସମସ୍ତେ ରୋଗରୁ ମୁକ୍ତ ହେବା । ଏମାନେ କହନ୍ତି, ଆମେ ଖ୍ରୀଷ୍ଟଙ୍କର ମତ ପ୍ରକୃତ ଭାବରେ ଅନୁକରଣ କରୁଛୁ । ସୁତରାଂ ସେ ଯେଉଁଭଳି ରୋଗୀକୁ ଅଲୌକିକ ଉପାୟରେ ରୋଗମୁକ୍ତ କରିଥାନ୍ତି, ଆମେ ମଧ୍ୟ ତାହା କରିବାକୁ ସମର୍ଥ ।

ସୃଷ୍ଟିକୁ ପରିଷ୍କାରଭାବେ ହୃଦୟଗ୍ରାହ୍ୟ କରି ଲୋକଙ୍କ ସମକ୍ଷରେ ଉପସ୍ଥାପିତ କରେ ଏବଂ ଏହା ଉପାସ୍ୟବସ୍ତୁ । ବେଦୀ ଉପରେ ଖଣ୍ଡିଏ ଗ୍ରନ୍ଥ ରଖନ୍ତୁ—ସମସ୍ତେ ତାହା ଦେଖିବେ, ଖଣ୍ଡିଏ ଭଲ ଗ୍ରନ୍ଥ ହୋଇଥିଲେ ସମସ୍ତେ ତାହା ପଢ଼ିବେ । ବୋଧହୁଏ ମୋତେ କେହି କେହି ପକ୍ଷପାତୀ ବୋଲି ମନେକରନ୍ତି; କିନ୍ତୁ ମୋ ମତରେ ଗ୍ରନ୍ଥଦ୍ୱାରା ଜଗତରେ ଭଲ ଅପେକ୍ଷା ମନ୍ଦ ଅଧିକ ହୋଇଛି । ଏହିପରି ନାନାପ୍ରକାର କ୍ଷତିକର ମତବାଦ ଦେଖାଯାଏ; ସେଥିପାଇଁ ଏସବୁ ଗ୍ରନ୍ଥ ହିଁ ଦାୟୀ । ମତାମତ ସବୁ ଗ୍ରନ୍ଥରୁ ଆସିଛି, ଆଉ ଗ୍ରନ୍ଥସମୂହ ହିଁ ଜଗତରେ ଯେତେପ୍ରକାର ଅତ୍ୟାଚାର ଓ ଗୁଣ୍ଡାମୀ ପାଇଁ ଦାୟୀ । ବର୍ତ୍ତମାନ ସମୟରେ ଗ୍ରନ୍ଥସମୂହ ହିଁ ସର୍ବତ୍ର ମିଥ୍ୟାବାଦୀ ସୃଷ୍ଟି କରୁଛନ୍ତି । ସବୁଦେଶରେ ମିଥ୍ୟାବାଦୀମାନଙ୍କ ସଂଖ୍ୟା ଯେଉଁଭଳି ବୃଦ୍ଧିପାଉଛି, ତାହା ଦେଖି ମୁଁ ଆଶ୍ଚର୍ଯ୍ୟାନ୍ୱିତ ହୋଇଥାଏ ।

ତା'ପରେ ପ୍ରତିମା ବା ମୂର୍ତ୍ତି ଓ ତାହାର ଉପଯୋଗିତା ସମ୍ବନ୍ଧରେ ଆଲୋଚନା କରିବାକୁ ହେବ । ସମଗ୍ର ଜଗତରେ ଆପଣମାନେ କୌଣସି ନା କୌଣସି ଆକାରରେ ପ୍ରତିମାର ବ୍ୟବହାର ଦେଖିବାକୁ ପାଇବେ । କେହି କେହି ମାନବାକାର ପ୍ରତିମାର ଅର୍ଚ୍ଚନା କରିଥାଆନ୍ତି ଏବଂ ମୁଁ ମନେକରେ ତାହା ହିଁ ସର୍ବୋତ୍କୃଷ୍ଟ ପ୍ରତିମା । ମୋର ଯଦି ପ୍ରତିମା-ପୂଜାର ପ୍ରୟୋଜନ ହୁଏ, ତେବେ ମୁଁ ପଶୁ, ଗୃହ କିମ୍ବା ଅନ୍ୟ କୌଣସି ଆକୃତିର ପ୍ରତିମା ଅପେକ୍ଷା ବରଂ ମାନବାକୃତି ପ୍ରତିମାର ଉପାସନା କରିବି । ଗୋଟିଏ ସମ୍ପ୍ରଦାୟ ମନେକରନ୍ତି, ଏହି ପ୍ରତିମାଟି ହିଁ ଠିକ୍; ଅନ୍ୟମାନେ ମନେ କରନ୍ତି, ତାହା ଠିକ୍ ନୁହେଁ । ଖ୍ରୀଷ୍ଟିଆନମାନେ ମନେକରନ୍ତି ଯେ, ଈଶ୍ୱର ଯେଉଁ କପୋତ-ରୂପ ଧାରଣ କରି ଆସିଥିଲେ, ତାହା ହିଁ ଠିକ୍; କିନ୍ତୁ ହିନ୍ଦୁମାନଙ୍କ ମତାନୁଯାୟୀ ସେ ଯେ ଗୋ-ରୂପ ଧାରଣ କରିଥିଲେ ତାହା ସମ୍ପୂର୍ଣ୍ଣ ଭ୍ରାନ୍ତ ଓ କୁ-ସଂସ୍କାରାତ୍ମକ । ଇହୁଦୀମାନେ ମନେ କରନ୍ତି ଯେ, ଦୁଇପାର୍ଶ୍ୱରେ ଦୁଇଟି ଦେବଦୂତ ବସା ହୋଇଥିବା ସିନ୍ଦୁକ ଆକୃତିର ଗୋଟିଏ ପ୍ରତିମା ନିର୍ମାଣ କଲେ ସେଥିରେ କୌଣସି ଦୋଷ ନାହିଁ; କିନ୍ତୁ ନର ବା ନାରୀ ଆକାରରେ ଯଦି କୌଣସି ମୂର୍ତ୍ତି ଗଠିତହୁଏ ତା'ହେଲେ ତାହା ଅତିଶୟ ଭୟାବହ । ମୁସଲମାନମାନେ ମନେକରନ୍ତି ଯେ, ପ୍ରାର୍ଥନା ସମୟରେ ଯଦି ପଶ୍ଚିମ ଦିଗକୁ ମୁହଁ କରି 'କାବା' ନାମକ କୃଷ୍ଣପ୍ରସ୍ତରଯୁକ୍ତ ମନ୍ଦିରଟିର ଆକୃତି ସମ୍ପର୍କରେ ଚିନ୍ତା କରିବାକୁ ଚେଷ୍ଟା କରାଯାଏ, ସେଥିରେ କୌଣସି ଦୋଷ ନାହିଁ; କିନ୍ତୁ ଚର୍ଚ୍ଚର ଆକୃତି ଭାବିଲେ ହିଁ ତାହା ପୌତ୍ତଳିକତା ପ୍ରତିମା-ପୂଜାର ଅପୂର୍ଣ୍ଣତା ବା ଦୋଷ । ତଥାପି ଏଗୁଡ଼ିକ ସବୁ ପ୍ରୟୋଜନୀୟ ସୋପାନ ବୋଲି ବୋଧହୁଏ; କିନ୍ତୁ କେବଳ ଖଣ୍ଡିଏ ଗ୍ରନ୍ଥର ଦ୍ୱାହି ଦେଲେ ଚଳିବ ନାହିଁ । ଗ୍ରନ୍ଥ ସମ୍ବନ୍ଧରେ କୁହାଯାଇପାରେ, ଗ୍ରନ୍ଥ ଉପରେ ଅନ୍ଧବିଶ୍ୱାସ ଯେତେ କମ ହୁଏ ସେତେ ଆମର ମଙ୍ଗଳ । ଆପଣ ନିଜେ ପ୍ରତ୍ୟକ୍ଷ କଅଣ ଅନୁଭବ କରିଛନ୍ତି ? ଏହା ହିଁ ପ୍ରଶ୍ନ, ଈଶା, ମୂଶା ବୁଦ୍ଧ କଅଣ କରିଛନ୍ତି କହିଲେ କଅଣ ଲାଭ ହେବ—ସେଥିରେ ଆମର କିଛି ହେବ ନାହିଁ, ଯେତେବେଳେ ଆମେମାନେ ନିଜେ ସେଗୁଡ଼ିକୁ ଜୀବନରେ ପରିଣତ ନ କରୁଛୁଁ । ଆପଣ ଯଦି ଗୋଟିଏ ଘରର ଦୁଆର ବନ୍ଦକରି ଚିନ୍ତା କରନ୍ତି ଯେ ମୂଶା ଏହାସବୁ ଖାଇଥିଲେ, ସେଥିରେ ତ ଆପଣଙ୍କର କ୍ଷୁଧା ମେଣ୍ଟିବ ନାହିଁ—ସେହିଭଳି ମୂଶାଙ୍କର ଏହି ମତ

ଥିଲା ବୋଲି ଜାଣିଲେ ତ ଆଉ ଆପଣଙ୍କର ଉଦ୍ଧାର ହେବ ନାହିଁ ! ଏ ସମସ୍ତ ବିଷୟରେ ମୋର ମତ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର । କୌଣସି କୌଣସି ସମୟରେ ମୋର ମନେହୁଏ, ଏହିସବୁ ପ୍ରାଚୀନ ଆଚାର୍ଯ୍ୟଗଣଙ୍କ ସହିତ ମୋ ମତ ଯେତେବେଳେ ମିଳିଯାଇଛି, ସେତେବେଳେ ମୋ ମତ ଅବଶ୍ୟ ହିଁ ସତ୍ୟ; ପୁଣି ବେଳେବେଳେ ଭାବେ ମୋ ସାଙ୍ଗରେ ଯେତେବେଳେ ସେମାନଙ୍କର ମତ ମିଳୁଛି, ସେତେବେଳେ ସେମାନଙ୍କ ମତ ଠିକ୍ । ମୁଁ ସାଧନା ଚିନ୍ତା କରିବାରେ ବିଶ୍ୱାସ କରେ, ଏହିସବୁ ପବିତ୍ରସ୍ୱଭାବ ଆଚାର୍ଯ୍ୟମାନଙ୍କ ପ୍ରଭାବରୁ ସମ୍ପୂର୍ଣ୍ଣ ମୁକ୍ତ ରହିବାକୁ ହେବ । ସେମାନଙ୍କୁ ପରିପୂର୍ଣ୍ଣ ଭାବେ ଭକ୍ତି, ଶ୍ରଦ୍ଧା କରନ୍ତୁ; କିନ୍ତୁ ଧର୍ମକୁ ଗୋଟିଏ ସ୍ୱାଧୀନ ଗବେଷଣାର ବସ୍ତୁ ବୋଲି ଗ୍ରହଣ କରନ୍ତୁ । ସେମାନେ ନିଜେ ଯେପରି ଜ୍ଞାନାଲୋକ ପାଇଥିଲେ, ଆମମାନଙ୍କୁ ମଧ୍ୟ ତଦ୍ରୂପ ନିଜେ ନିଜେ ଚେଷ୍ଟା କରି ଜ୍ଞାନାଲୋକ ଲାଭ କରିବାକୁ ହେବ । ସେମାନେ ଜ୍ଞାନାଲୋକ ପାଇଥିଲେ ବୋଲି ଆମେ ତୃପ୍ତ ହେବା ନାହିଁ । ଆପଣଙ୍କୁ ବାଇବେଲ ହେବାକୁ ପଡ଼ିବ, ଅନୁସରଣ କରିବାକୁ ନୁହେଁ; ବାଇବେଲକୁ କେବଳ ମାତ୍ର ପଥର ଆଲୋକସ୍ୱରୂପ, ପଥପ୍ରଦର୍ଶକ ସ୍ତମ୍ଭ ବା ନିଦର୍ଶନରୂପରେ ଶ୍ରଦ୍ଧା କରିବାକୁ ହେବ ।

ଗ୍ରନ୍ଥର ମୂଲ୍ୟ ଏହି ପର୍ଯ୍ୟନ୍ତ, କିନ୍ତୁ ପ୍ରତିମା ପ୍ରଭୃତି ଏକାନ୍ତ ଆବଶ୍ୟକ । ମନକୁ ସ୍ଥିର କରିବା ଅଥବା କୌଣସି ପ୍ରକାର ଚିନ୍ତା କରିବା ସମୟରେ ଦେଖିବେ ଆପଣମାନେ ସ୍ୱଭାବତଃ ହିଁ ମନେ ମନେ ମୂର୍ତ୍ତି ଗଢ଼ିବାର ପ୍ରୟୋଜନ ଅନୁଭବ କରନ୍ତି । ଏଭଳି କଳ୍ପନା ନ କରି ରହିପାରୁ ନାହାନ୍ତି । ଦୁଇ ପ୍ରକାର ମଣିଷର ରୂପ-କଳ୍ପନା ରଖି ମୂର୍ତ୍ତିର ପ୍ରୟୋଜନ ହୁଏ ନାହିଁ—ନର-ପଶୁର, ଯେ ଧର୍ମର କୌଣସି ଧାର ଧାରେ ନାହିଁ; ଆଉ ସିଦ୍ଧ ପୁରୁଷ, ଯେ ଏହି ସମସ୍ତ ଅବସ୍ଥା ମଧ୍ୟ ଦେଇ ଗତି କରିଛନ୍ତି । ଆମେ ଏହି ଦୁଇ ଅବସ୍ଥା ମଧ୍ୟରେ ରହିଛେ । ଭିତରେ ଓ ବାହାରେ ଆମର କୌଣସି ନା କୌଣସି ରୂପର ଆଦର୍ଶ ବା ମୂର୍ତ୍ତିର ପ୍ରୟୋଜନ, ତାହା କୌଣସି ପରଲୋକଗତ ମନୁଷ୍ୟର ହୋଇପାରେ ଅଥବା କୌଣସି ଜୀବିତ ନର ବା ନାରୀର ହୋଇପାରେ । ଏହା ବ୍ୟକ୍ତିତ୍ୱର ଉପାସନା—ଶରୀରକୈନ୍ଦ୍ରିକ; ତେବେ ଏହା ଖୁବ୍ ସ୍ୱାଭାବିକ । ସୂକ୍ଷ୍ମକୁ ସ୍ଥୂଳ କରିବା ଦିଗରେ ଆମର ଝୁଙ୍କ । ଯଦି ଆମେ ସୂକ୍ଷ୍ମରୁ ସ୍ଥୂଳ ନ ହୋଇପାରୁ, ତେବେ କି ଭାବରେ ଏଠାକୁ ଆସିଲୁ ? ଆମେମାନେ ସ୍ଥୂଳପ୍ରାପ୍ତ ଆତ୍ମା ଓ ସେହି ଭାବରେ ଆମେ ଏହି ପୃଥିବୀକୁ ଆସିଅଛୁ । ସୁତରାଂ ମୂର୍ତ୍ତିଭାବ ଆମମାନଙ୍କୁ ଏଠାକୁ ଆଣିଛି, ସେହିପରି ମୂର୍ତ୍ତିର ସହାୟତାଦ୍ୱାରା ଆମେମାନେ ଏହି ବାହାରକୁ ଯିବୁ । ଏହା ହୋମିଓପାଥିକ ଚିକିତ୍ସାର ସଦୃଶବିଧାନ[୧] ପରି—'ବିଷସ୍ୟ ବିଷମୌଷଧମ୍' । ଇନ୍ଦ୍ରିୟଗ୍ରାହ୍ୟ ବିଷୟସମୂହ ପଛରେ ଦଉଡ଼ି ଦଉଡ଼ି ଆମେମାନେ ମନୁଷ୍ୟଭାବାପନ୍ନ ହୋଇ ପଡ଼ିଛେ । ଆମେ ସାକାର ବ୍ୟକ୍ତି ଭାବରେ ଉପାସନା କରିବାକୁ ବାଧ୍ୟ; ଏହା ବିରୋଧରେ ଯାହା କୁହାଯାଉଛି, 'ସାକାରଠାରେ ଆସକ୍ତ ହୁଅନାହିଁ'—ଏହା କହିବା ଖୁବ୍ ସହଜ ମନେ ହୋଇପାରେ, କିନ୍ତୁ ଯେ ଏକଥା କହେ, ସେ ହିଁ ବ୍ୟକ୍ତିଭାବରେ ଅତିଶୟ ଆସକ୍ତ—ବିଶେଷ ବିଶେଷ ନରନାରୀଙ୍କ ପ୍ରତି ତାହାର ତୀବ୍ର ଆସକ୍ତି ମରିଗଲେ ମଧ୍ୟ ସେମାନଙ୍କ ପ୍ରତି ତା'ର ଆସକ୍ତି ଚାଲିଯାଏ ନାହିଁ, ସୁତରାଂ ମୃତ୍ୟୁ ପରେ

---

୧ Similia similibus curantur

ମଧ୍ୟ ସେ ସେମାନଙ୍କର ଅନୁସରଣ କରିବାକୁ ଚାହେଁ । ଏହା ହିଁ ପିତୁଳାପୂଜା । ଏହା ହେଉଛି ପିତୁଳାପୂଜାର ବୀଜ, ମୂଳକାରଣ; ଆଉ କାରଣ ଯଦି ଥାଏ, ତେବେ କୌଣସି ନା କୌଣସି ଆକାରରେ ପୌତ୍ତଳିକତା ପ୍ରକାଶିତ ହୋଇପଡ଼ିବ । ସାଧାରଣ ନରନାରୀ ପ୍ରତି ଆସକ୍ତି ଅପେକ୍ଷା ଖ୍ରୀଷ୍ଟ ବା ବୁଦ୍ଧଙ୍କ ପ୍ରତିମୂର୍ତ୍ତି ପ୍ରତି ଆସକ୍ତି ବା ଆକର୍ଷଣ ରହିବା କଅଣ ଭଲ ନୁହେଁ ? ପାଶ୍ଚାତ୍ତ୍ୟ ଲୋକମାନେ କହୁଥାନ୍ତି, ମୂର୍ତ୍ତି ସମ୍ମୁଖରେ ଆଣ୍ଠୁମାଡ଼ି ବସିବା ଭାରି ଖରାପ—କିନ୍ତୁ ସେମାନେ କୌଣସି ନାରୀ ସମ୍ମୁଖରେ ଆଣ୍ଠୁମାଡ଼ି ବସି ତାକୁ ଅନାୟାସରେ କହିପାରନ୍ତି, 'ତୁମେ ମୋର ପ୍ରାଣ, ତୁମେ ମୋର ଜୀବନର ଆଲୋକ, ତୁମେ ମୋ ନୟନର ମଣି, ତୁମେ ମୋର ଆତ୍ମା' ଏହିସବୁ । ସେମାନଙ୍କର ଯଦି ଚାରିଟି କରି ଗୋଡ଼ ଥାଆନ୍ତା, ତେବେ ସେମାନେ ସେହି ଚାରିଗୋଡ଼ରେ ଆଣ୍ଠୁମାଡ଼ି ବସନ୍ତେ ! ଏହା ନିକୃଷ୍ଟତର ପୌତ୍ତଳିକତା ନା ପୌତ୍ତଳିକତା ଅପେକ୍ଷା ନିକୃଷ୍ଟ । ପଶୁମାନେ ଏଭଳି ଆଣ୍ଠୁମାଡ଼ି ବସନ୍ତି । ଗୋଟିଏ ନାରୀକୁ 'ମୋର ପ୍ରାଣ' 'ମୋର ଆତ୍ମା' କହିବାର ଅର୍ଥ କଅଣ ? ଏହି ଭାବ ତ ପାଞ୍ଚ ଦିନ ମଧ୍ୟରେ ହିଁ ଉଭେଇଯିବ, ଏହା କେବଳ ଇନ୍ଦ୍ରିୟଗତ ଆସକ୍ତି ମାତ୍ର । ତାହା ନ ହେଲେ ପୁରୁଷ ପୁରୁଷ ନିକଟରେ ଏହିଭଳି ଆଣ୍ଠୁମାଡ଼ି ବସେ ନାହିଁ କାହିଁକି ? ଏହି ଭଲପାଇବା ସ୍ୱାର୍ଥପୂର୍ଣ୍ଣ କାମନା ଅଥବା ତଦପେକ୍ଷା ନିକୃଷ୍ଟ—କେବଳ ଗଦାଏ ଫୁଲର ଆବରଣ ଦେବା ମାତ୍ର । କବିମାନେ ଏହାର ଗୋଟିଏ ସୁନ୍ଦର ନାମକରଣ କରି ତା' ଉପରେ ଅତର ଗୋଲାପଜଳ ସିଞ୍ଚିଦିଅନ୍ତି । ତା'ହେଲେ ମଧ୍ୟ ଏହା ସ୍ୱାର୍ଥପର କାମନା ଛଡ଼ା ଆଉ କିଛି ନୁହଁ । ବୁଦ୍ଧ ଜୀନଙ୍କ ମୂର୍ତ୍ତି ସମକ୍ଷରେ ଆଣ୍ଠୁମାଡ଼ି ବସି 'ତୁମେ ମୋର ଜୀବନସ୍ୱରୂପ' କହିବା କଅଣ ଏହା ଅପେକ୍ଷା ଭଲ ନୁହେଁ ? ମୁଁ ବରଂ ଶତଶତବାର ଏହିଭଳି କରିବି ।

ଆଉ ଏକ ପ୍ରକାର ପ୍ରତୀକ ଅଛି—ପାଶ୍ଚାତ୍ତ୍ୟ ଦେଶରେ ଏଭଳି ପ୍ରତୀକୋପାସନାର ସ୍ୱୀକୃତି ନାହିଁ; କିନ୍ତୁ ଆମମାନଙ୍କ ଶାସ୍ତ୍ରରେ ମନକୁ ଈଶ୍ୱରରୂପରେ ଉପାସନା କରିବାକୁ ଉପଦେଶ ଦିଆଯାଇଛି—ଯେକୌଣସି ବସ୍ତୁକୁ ଈଶ୍ୱରରୂପରେ ଉପାସନା କରିବାକୁ ହୁଏ—ତାହା ହିଁ ଭଗବତ୍ପ୍ରାପ୍ତିର ଗୋଟିଏ ଗୋଟିଏ ସୋପାନସ୍ୱରୂପ—ପ୍ରତ୍ୟେକଟି ଆମକୁ ଈଶ୍ୱରଙ୍କର ନିକଟତର କରାଇଦିଏ । ଅରୁନ୍ଧତୀ ଗୋଟିଏ ଅତି କ୍ଷୁଦ୍ର ନକ୍ଷତ୍ର । ଯଦି କେହି ଏ ନକ୍ଷତ୍ରଟିକୁ ଦେଖିବାକୁ ଚାହେଁ, ତେବେ ପ୍ରଥମେ ତାହାର ନିକଟବର୍ତ୍ତୀ ଗୋଟିଏ ଖୁବ୍ ବଡ଼ ନକ୍ଷତ୍ର ଦେଖାଇବାକୁ ହୁଏ । ସେଥିରେ ଲକ୍ଷ୍ୟ ସ୍ଥିର ହେଲେ ତା' ନିକଟରେ ଥିବା ଗୋଟିଏ କ୍ଷୁଦ୍ରତର ନକ୍ଷତ୍ର—ତା'ପରେ ତଦପେକ୍ଷା କ୍ଷୁଦ୍ରତର ନକ୍ଷତ୍ରରେ ଲକ୍ଷ୍ୟ ସ୍ଥିର ହେଲେ, ଅତି କ୍ଷୁଦ୍ରତମ ଅରୁନ୍ଧତୀ ନକ୍ଷତ୍ର ଦୃଷ୍ଟିଗୋଚର ହୋଇଥାଏ । ଏହିଭଳି ଏହିସବୁ ବିଭିନ୍ନ ପ୍ରତୀକ ଓ ପ୍ରତିମା ମନୁଷ୍ୟକୁ କ୍ରମେ ସେହି ସୂକ୍ଷ୍ମ ଈଶ୍ୱରଙ୍କ ନିକଟକୁ ନେଇଯାଏ । ବୁଦ୍ଧ ଓ ଖ୍ରୀଷ୍ଟଙ୍କର ଉପାସନା—ଏହି ସମସ୍ତ ହିଁ ପ୍ରତୀକୋପାସନା । ଏହା ମନୁଷ୍ୟକୁ ପ୍ରକୃତ ଈଶ୍ୱରୋପାସନାର ସମୀପରେ ପହଞ୍ଚାଇ ଦେଇପାରେ ମାତ୍ର; କିନ୍ତୁ ବୁଦ୍ଧ ଓ ଖ୍ରୀଷ୍ଟଙ୍କର ଉପାସନା କାହାକୁ ମୁକ୍ତି ଦେଇପାରିବ ନାହିଁ । ଏହି ଭାବକୁ ଅତିକ୍ରମକରି ଈଶ୍ୱରଙ୍କ ନିକଟକୁ ଯିବାକୁ ପଡ଼ିବ । ବୁଦ୍ଧ ଓ ଖ୍ରୀଷ୍ଟଙ୍କ ଭିତରେ ଈଶ୍ୱର ପ୍ରକଟିତ ହୋଇଥିଲେ, କେବଳ ଈଶ୍ୱର ହିଁ ଆମମାନଙ୍କୁ ମୁକ୍ତି

ଦେଇପାରନ୍ତି । ଅବଶ୍ୟ ଏପରି ଦାର୍ଶନିକ ଅଛନ୍ତି, ଯାହାଙ୍କ ମତରେ ଏମାନେ ପ୍ରତୀକ ନୁହଁନ୍ତି, ଏହିମାନଙ୍କୁ ହିଁ ଈଶ୍ୱର ବୋଲି ସ୍ୱୀକାର କରିବା କର୍ତ୍ତବ୍ୟ । ଯାହାହେଉ, ଆମେ ଏହି ସମସ୍ତ ପ୍ରତୀକ ବା ସୋପାନ ଅବଲମ୍ବନ କରିପାରୁ, ସେଥିରେ ଆମର କୌଣସି କ୍ଷତି ହେବ ନାହିଁ । ଯଦି ଏହିସବୁ ପ୍ରତୀକୋପାସନା ସମୟରେ ଆମେ ମନେକରୁ, ଆମେ ଈଶ୍ୱରୋପାସନା କରୁଛୁ, ତାହାହେଲେ ଆମେ ଭ୍ରମରେ ପଡ଼ିବୁ । ଯଦି କୌଣସି ବ୍ୟକ୍ତି ଯୀଶୁଖ୍ରୀଷ୍ଟଙ୍କର ଉପାସନା କରନ୍ତି ଓ ମନେକରନ୍ତି, ସେ ତଦ୍ୱାରା ହିଁ ମୁକ୍ତିଲାଭ କରିବେ, ତେବେ ସେ ସମ୍ପୂର୍ଣ୍ଣ ଭ୍ରାନ୍ତ । ଯଦି କେହି ମନେକରେ ଯେ, ଭୂତପ୍ରେତର ଉପାସନା କରି ବା କୌଣସି ମୂର୍ତ୍ତିପୂଜା କରି ସେ ମୁକ୍ତିଲାଭ କରିବ, ତା'ହେଲେ ସେ ସମ୍ପୂର୍ଣ୍ଣ ଭ୍ରାନ୍ତ । ଯେକୌଣସି ବସ୍ତୁ ଭିତରେ ଈଶ୍ୱର ଦର୍ଶନ କରି ତାହାକୁ ଉପାସନା କରିପାର । ମୂର୍ତ୍ତିକୁ ଭୁଲି ସେଠାରେ ଈଶ୍ୱରଙ୍କୁ ଦେଖ । ଈଶ୍ୱରଙ୍କଠାରେ ଅନ୍ୟ କିଛି ଆରୋପ କରିବ ନାହିଁ; କିନ୍ତୁ ଯେକୌଣସି ବସ୍ତୁରେ ଇଚ୍ଛା ଈଶ୍ୱରଭାବ ପ୍ରବେଶ କରାଇପାରିବ । ଯେଉଁ ଆକାର ମୂର୍ତ୍ତିଟିକୁ ଉପାସନା କରୁଛ, ତାହା ମଧ୍ୟରେ ଈଶ୍ୱରଙ୍କୁ ସୀମାବଦ୍ଧ କର ନାହିଁ । ବରଂ ଯାହା କିଛି ଉପାସନା କର, ସେସବୁ 'କିଛି'ଲୁ ଈଶ୍ୱର-ଭାବରେ ପୂର୍ଣ୍ଣ କରି ଦିଅ । ଏହି ଭାବରେ ଆପଣ ଗୋଟିଏ ବିରାଡ଼ି ମଧ୍ୟରେ ଈଶ୍ୱରଙ୍କୁ ଉପାସନା କରିପାରନ୍ତି । ବିରାଡ଼ିକୁ ଭୁଲି ସେଠାରେ ଈଶ୍ୱରଙ୍କୁ ପ୍ରତିଷ୍ଠିତ କରନ୍ତୁ, ତାହା-ହେଲେ ସବୁ ଠିକ୍ ହୋଇଯିବ, କାରଣ ତାଙ୍କଠାରୁ ହିଁ ସବୁ କିଛି ଆସିଛି । ସେହିସବୁ କିଛିରେ, ଖଣ୍ଡିଏ ଚିତ୍ରକୁ ଈଶ୍ୱରରୂପେ ଉପାସନା କରାଯାଏ; କିନ୍ତୁ ଈଶ୍ୱରଙ୍କୁ ଚିତ୍ରରୂପେ ଉପାସନା କରିବା ଭୁଲ । ଚିତ୍ରରେ ଈଶ୍ୱର-ଚିନ୍ତା କରିବା ଖୁବ୍ ଠିକ୍ ନୁହେଁ; କିନ୍ତୁ ଚିତ୍ରକୁ ହିଁ ଈଶ୍ୱର ମନେ କରିବା ଭୁଲ । ବିରାଡ଼ି ମଧ୍ୟରେ ଈଶ୍ୱର ଦର୍ଶନ କରିବା ତ ଖୁବ୍ ଭଲ କଥା —ସେଥିରେ କୌଣସି ବିପଦର ଆଶଙ୍କା ନାହିଁ । ଈଶ୍ୱରଙ୍କ ପ୍ରତିମା ପ୍ରତୀକ ମାତ୍ର । ଏହା ହିଁ ଭଗବାନଙ୍କର ଯଥାର୍ଥ ଉପାସନା ।

ତତ୍ପରେ ଭକ୍ତିଯୋଗର ପ୍ରଧାନ ଆଲୋଚ୍ୟବିଷୟ —ଶବ୍ଦଶକ୍ତି ବା ନାମଶକ୍ତି । ସମଗ୍ର ଜଗତ୍ ନାମରୂପାତ୍ମକ । ହୋଇପାରେ ଏହା ନାମ ଓ ରୂପର ସମଷ୍ଟି ଅଥବା କେବଳ ନାମ ଏବଂ ତାହାର ରୂପ କେବଳ ଗୋଟିଏ ମନୋମୟ ମୂର୍ତ୍ତି । ସୁତରାଂ ଫଳରେ ଏହା ପ୍ରତିପନ୍ନ ହେଉଛି ଯେ, ଏପରି କିଛି ନାହିଁ, ଯାହା ନାମରୂପାତ୍ମକ ନୁହେଁ । ଆମେ ସମସ୍ତେ ବିଶ୍ୱାସ କରୁ ଯେ, ଈଶ୍ୱର ନିରାକାର; କିନ୍ତୁ ଯେତେବେଳେ ଆମେ ତାଙ୍କର ଚିନ୍ତା କରିବାକୁ ଯାଉ, ସେତେବେଳେ ତାଙ୍କୁ ନାମରୂପ-ଯୁକ୍ତଭାବରେ ଭାବିବାକୁ ପଡ଼େ । ଚିତ୍ତ ଯେପରି ଗୋଟିଏ ସ୍ଥିର ହ୍ରଦ ତୁଲ୍ୟ, ଚିନ୍ତାସମୂହ ଯେପରି ସେହି ଚିତ୍ତ-ହ୍ରଦର ତରଙ୍ଗ-ସ୍ୱରୂପ ଏବଂ ଏହିସବୁ ତରଙ୍ଗର ସ୍ୱାଭାବିକ ଆବିର୍ଭାବ-ପ୍ରଣାଳୀକୁ ହିଁ ନାମରୂପ କୁହାଯାଏ । ନାମରୂପ ବ୍ୟତୀତ କୌଣସି ତରଙ୍ଗ ଉଠିପାରେ ନାହିଁ । ଯାହା କିଛି ସର୍ବଦା ଏକରୂପ, ତାହା ଚିନ୍ତା କରା-ଯାଇପାରେ ନାହିଁ । ତାହା ଅବଶ୍ୟ ଚିନ୍ତାର ଅତୀତ; କିନ୍ତୁ ଯେତେବେଳେ ତାହା ଚିନ୍ତା ଓ ଜଡ଼ ପଦାର୍ଥର ଆକାର ଧାରଣ କରେ, ସେତେବେଳେ ତାହାର ଅବଶ୍ୟ ନାମରୂପ ଦେଖିବାକୁ ମିଳିଥାଏ । ଆମେ ସେଗୁଡ଼ିକୁ ପୃଥକ୍ କରିପାରୁନା । ଅନେକ ଗ୍ରନ୍ଥରେ ଦେଖିବାକୁ ମିଳେ,

ଈଶ୍ୱର ଶବ୍ଦରୁ ଏହି ଜଗତ୍‌କୁ ସୃଷ୍ଟି କରିଛନ୍ତି । ଶବ୍ଦରୁ ଜଗତ୍ ସୃଷ୍ଟ ହୋଇଛି ବୋଲି ଖ୍ରୀଷ୍ଟିଆନ୍‌ମାନଙ୍କର ଯେଉଁ ମତ ରହିଛି, ସଂସ୍କୃତଭାଷାରେ ତାହାର ନାମ ହିଁ 'ଶବ୍ଦ-ବ୍ରହ୍ମବାଦ' । ତାହା ଗୋଟିଏ ପ୍ରାଚୀନ ଭାରତୀୟ ମତ; ଭାରତୀୟ ଧର୍ମପ୍ରଚାରକଗଣଙ୍କ କର୍ତ୍ତୃକ ସେହି ମତ ଆଲେକଜାଣ୍ଡ୍ରିଆରେ ପହଞ୍ଚିଥିଲା ଓ ସେଠାରେ ସେହି ମତ ରୋପଣ କରାଯାଇଥିଲା । ଏହିଭଳି ସେଠାରେ ଶବ୍ଦ-ବ୍ରହ୍ମବାଦ ଓ ଅବତାର-ବାଦ ପ୍ରତିଷ୍ଠିତ ହୋଇଛି । ଶବ୍ଦରୁ ଈଶ୍ୱର ସମୁଦାୟ ସୃଷ୍ଟି କରିଥିଲେ—ଏ କଥାର ଗଭୀର ଅର୍ଥ ଅଛି । ଈଶ୍ୱର ଯେତେବେଳେ ସ୍ୱୟଂ ନିରାକାର, ସେତେବେଳେ ସୃଷ୍ଟି ବ୍ୟାଖ୍ୟା କରିବାର ଏହା ହିଁ ଶ୍ରେଷ୍ଠ ଉପାୟ । ସୃଷ୍ଟି ଶବ୍ଦର ଅର୍ଥ ବାହାରେ ପ୍ରକ୍ଷେପ କରିବା, ବିସ୍ତାର କରିବା । ସୁତରାଂ ଈଶ୍ୱର ଶୂନ୍ୟରୁ ଜଗତକୁ ନିର୍ମାଣ କଲେ, ଏହି ପ୍ରଳାପର ଅର୍ଥ କଅଣ ? ଜଗତ୍ ଈଶ୍ୱରଙ୍କଠାରୁ ପ୍ରକ୍ଷିପ୍ତ ହୋଇଅଛି । ସେ ହିଁ ଜଗତରୂପରେ ପରିଣତ ହୁଅନ୍ତି, ଆଉ ସମୁଦାୟ ହିଁ ତାଙ୍କଠାରେ ପ୍ରତ୍ୟାବୃତ୍ତ ହୁଏ, ଅନନ୍ତକାଳ ଧରି ଏହିପରି ଚାଲିଥିବ । ଆମେ ଦେଖିଛୁ, ଆମ ମନରୁ ଯେକୌଣସି ଭାବର ସୃଷ୍ଟି ହୁଏ, ତାହା ନାମରୂପ ବ୍ୟତୀତ ହୋଇପାରେ ନାହିଁ । ମନେକରନ୍ତୁ, ଆପଣଙ୍କ ମନ ସମ୍ପୂର୍ଣ୍ଣ ସ୍ଥିର, ସମ୍ପୂର୍ଣ୍ଣ ଚିନ୍ତାହୀନ ହୋଇଅଛି । ଯେତେବେଳେ ଚିନ୍ତାର ଆରମ୍ଭ ହେବ, ତାହା ତତ୍‌କ୍ଷଣାତ୍ ନାମ ଓ ରୂପକୁ ଆଶ୍ରୟ କରୁଥିବ । ପ୍ରତ୍ୟେକ ଚିନ୍ତା ବା ଭାବର ଗୋଟିଏ ନିର୍ଦ୍ଦିଷ୍ଟ ନାମ ବା ନିର୍ଦ୍ଦିଷ୍ଟ ରୂପ ଅଛି । ସୁତରାଂ ସୃଷ୍ଟି ବା ବିକାଶ ବିଷୟଟି ଅନନ୍ତକାଳ ଧରି ନାମରୂପ ସହିତ ଜଡ଼ିତ । ଅତଏବ ଆମେ ଦେଖିବାକୁ ପାଉଁ ମନୁଷ୍ୟର ଯେତେ ପ୍ରକାର ଭାବ ଅଛି ବା ଥାଇପାରେ, ତାହାର ଅନୁରୂପ ଗୋଟିଏ ନାମ ବା ଶବ୍ଦ ଅବଶ୍ୟ ଥିବ । ତାହା ଯଦି ହେଲା, ତେବେ ଯେପରି ଆପଣଙ୍କ ଦେହ ଆପଣଙ୍କ ମନର ବହିର୍ମୁଖ ବା ସ୍ଥୂଳବିକାଶ, ତଦ୍ରୂପ ଏହି ଜଗତ୍ ମଧ୍ୟ ମନର ବିକାଶ, ଏହା ସହଜରେ ମନେ କରାଯାଇପାରେ । ପୁନଶ୍ଚ ଏହା ଯଦି ସତ୍ୟ ହୁଏ ଯେ, ସମଗ୍ର ଜଗତ୍ ଗୋଟିଏ ନିୟମରେ ଗଠିତ, ତା'ହେଲେ ଆପଣ ଗୋଟିଏ ପରମାଣୁର ଗଠନ-ପ୍ରଣାଳୀ ଜାଣିପାରିଲେ, ସମଗ୍ର ଜଗତର ଗଠନପ୍ରଣାଳୀ ଜାଣିପାରିବେ । ଆପଣଙ୍କ ଶରୀରର ସ୍ଥୂଳଭାଗ ଏହି ସ୍ଥୂଳ ଦେହ ଏବଂ ଚିନ୍ତା ବା ଭାବ ତାହାର ଆଭ୍ୟନ୍ତରୀଣ ସୂକ୍ଷ୍ମତର ଭାଗ—ଏ ଦୁଇ ଚିରଦିନ ଅବିଚ୍ଛେଦ୍ୟ, ଏହାର ଦୃଷ୍ଟାନ୍ତ ତ ପ୍ରତିଦିନ ଦେଖିବାକୁ ମିଳୁଛି । କୌଣସି ବ୍ୟକ୍ତିର ମସ୍ତିଷ୍କରେ ଯେତେବେଳେ ବିଶୃଙ୍ଖଳା ଉପସ୍ଥିତ ହୁଏ, ତାହାର ଚିନ୍ତା ବା ଭାବସମୂହ ମଧ୍ୟ ତତ୍‌କ୍ଷଣାତ୍ ବିଶୃଙ୍ଖଳ ହୋଇଯାଏ । କାରଣ ଏହି ଦୁଇଟି ଗୋଟିଏ ବସ୍ତୁ—ଗୋଟିଏ ବସ୍ତୁର ସ୍ଥୂଳ ଓ ସୂକ୍ଷ୍ମଭାବ ମାତ୍ର । ମନ ଓ ଜଡ଼ବସ୍ତୁ ବୋଲି ଦୁଇଟି ପୃଥକ୍ ପଦାର୍ଥ ନାହିଁ । ଗୋଟିଏ ଉଚ୍ଚ ବାୟୁସ୍ତମ୍ଭରେ ଯେପରି ସେହି ଏକ ବାୟୁର ଘନ ଓ ପତଳା ସ୍ତର ତା' ପରକୁ ତା' ପର ହୋଇ ରହିଥାଏ—ଏବଂ ବାୟୁମଣ୍ଡଳର ଯେତେ ଊର୍ଦ୍ଧ୍ୱକୁ ଯିବ, ତାହା ସେତିକି ସୂକ୍ଷ୍ମତର ହୋଇଥାଏ । ଏହି ଦେହ ସମ୍ବନ୍ଧରେ ମଧ୍ୟ ତଦ୍ରୂପ । ଏହା ବରାବର ଏକ ହିଁ ବସ୍ତୁ, ସ୍ଥୂଳରୁ ସୂକ୍ଷ୍ମ ସ୍ତର ସ୍ତର ହୋଇ ଗୁନ୍ଥା ହୋଇରହିଛି । ଦେହଟା ଯେପରି ନଖଭଳି । ନଖ କାଟି ଦିଅନ୍ତୁ, ପୁଣି ନଖ ହେବ । ବସ୍ତୁ ଯେତିକି ସୂକ୍ଷ୍ମତର ହୁଏ, ତାହା ସେତିକି ଅଧିକ ସ୍ଥାୟୀ ହୁଏ, ସବୁକାଳରେ ଏହାର ସତ୍ୟତା ଦେଖାଯାଏ; ପୁଣି ଯେତିକି ସ୍ଥୂଳତର ହୁଏ, ସେତିକି ଅଳ୍ପ-

କାଳ ସ୍ଥାୟୀ ହୋଇଥାଏ । ଅତଏବ ଆମେ ଦେଖୁଛୁ—ରୂପ ସ୍ଥୂଳତର, ନାମ ସୂକ୍ଷ୍ମତର । ଭାବ, ନାମ ଓ ରୂପ—ଏହି ତିନୋଟି, କିନ୍ତୁ ଗୋଟିଏ ବସ୍ତୁ—ଏକରେ ତିନି—ତିନିରେ ଏକ—ଗୋଟିଏ ବସ୍ତୁର ତ୍ରିବିଧରୂପ । ସୂକ୍ଷ୍ମତର, କିଞ୍ଚିତ୍ ଘନୀଭୂତ ଓ ସମ୍ପୂର୍ଣ୍ଣ ଘନୀଭୂତ । ଗୋଟିଏ ଥିଲେ ଅନ୍ୟଗୁଡ଼ିକ ମଧ୍ୟ ରହିବେ । ଯେଉଁଠାରେ ନାମ, ସେହିଠାରେ ହିଁ ରୂପ ଓ ଭାବ ବିଦ୍ୟମାନ ସୁତରାଂ ସହଜରେ ଏହା ପ୍ରମାଣିତ ହୁଏ ଯେ, ଏହି ଦେହ ଯେଉଁ ନିୟମରେ ନିର୍ମିତ, ଏହି ବ୍ରହ୍ମାଣ୍ଡ ଯଦି ସେହି ଏକ ହିଁ ନିୟମରେ ନିର୍ମିତ ହୁଏ, ତେବେ ଏଥିରେ ମଧ୍ୟ ନାମ, ରୂପ ଓ ଭାବ ଏହି ତ୍ରିବିଧ ବସ୍ତୁ ଅବଶ୍ୟ ରହିବ । ଚିନ୍ତାଭାବ ହିଁ ବ୍ରହ୍ମାଣ୍ଡର ସୂକ୍ଷ୍ମତମ ଅଂଶ, ତାହା ହିଁ ଜଗତର ପ୍ରକୃତ ପ୍ରେରଣା, ଶକ୍ତି ଏବଂ ତାହାକୁ ହିଁ ଈଶ୍ୱର କୁହାଯାଏ । ଆମ ଦେହର ଅନ୍ତର୍ଯାମୀ-ଭାବକୁ ଆତ୍ମା ଏବଂ ଜଗତର ଅନ୍ତର୍ଯାମୀ-ଭାବକୁ 'ଈଶ୍ୱର' କୁହାଯାଏ । ତା'ପରେ ହେଉଛି ନାମ, ଏବଂ ସର୍ବଶେଷରେ ରୂପ—ଯାହା ଆମେ ଦର୍ଶନ ଓ ସ୍ପର୍ଶନ କରିଥାଉଁ । ଯେପରି ଆପଣ ଜଣେ ନିର୍ଦ୍ଦିଷ୍ଟ ବ୍ୟକ୍ତି, ଏହି ବ୍ରହ୍ମାଣ୍ଡ ମଧ୍ୟରେ ଗୋଟିଏ କ୍ଷୁଦ୍ର ବ୍ରହ୍ମାଣ୍ଡ, ଆପଣଙ୍କ ଦେହର ଗୋଟିଏ ନିର୍ଦ୍ଦିଷ୍ଟ ରୂପ ଅଛି, ପୁଣି ତାହାର 'ଶ୍ରୀ ଅମୁକ ବା ଶ୍ରୀମତୀ ଅମୁକ' ପ୍ରଭୃତି ବିଭିନ୍ନ ନାମ ଅଛି, ତାହା ପଛରେ ପୁଣି ଭାବ ଅର୍ଥାତ୍ ଯେଉଁ ଚିନ୍ତା ବା ଭାବସମଷ୍ଟିର ପ୍ରକାଶରେ ଏହି ଦେହ ନିର୍ମିତ, ତାହା ରହିଛି—ତଦ୍ରୂପ ଏହି ଅନନ୍ତ ବ୍ରହ୍ମାଣ୍ଡର ଅନ୍ତରାଳରେ ନାମ ରହିଛି, ଆଉ ସେହି ନାମରୁ ହିଁ ଏହି ବହିର୍ଜଗତ ସୃଷ୍ଟ ବା ବହିର୍ଗତ ହୋଇଛି । ସବୁ ଧର୍ମ ଏହି ନାମକୁ 'ଶବ୍ଦ-ବ୍ରହ୍ମ' କହିଥାଆନ୍ତି । ବାଇବେଲରେ ଲିଖିତ ଅଛି (N.T. St. John, Ch.I,1)—'ଆଦିରେ ଶବ୍ଦ ଥିଲା, ସେହି ଶବ୍ଦ ଈଶ୍ୱରଙ୍କ ସହିତ ଯୁକ୍ତ ଥିଲା । ସେହି ଶବ୍ଦ ହିଁ ଈଶ୍ୱର ।' ସେହି ନାମରୁ ରୂପର ପ୍ରକାଶ ହୋଇଛି ଏବଂ ସେହି ନାମର ଅନ୍ତରାଳରେ ଈଶ୍ୱର ଅଛନ୍ତି । ଏହି ସର୍ବବ୍ୟାପୀ ଭାବ ବା ଚେତନାକୁ ସାଂଖ୍ୟବାଦୀମାନେ 'ମହତ୍' ଆଖ୍ୟା ପ୍ରଦାନ କରିଥାଆନ୍ତି । ଏହି 'ନାମ' କଅଣ ? ଆମେ ଦେଖିବାକୁ ପାଉଛୁ, ଭାବ ସହିତ ନାମ ନିଶ୍ଚୟ ରହିବ । ସମଗ୍ର ଜଗତ୍ ସମପ୍ରକୃତିକ ଏବଂ ଆଧୁନିକ ବିଜ୍ଞାନ ନିଃସଂଶୟରେ ପ୍ରମାଣ କରିଛି ଯେ, ସମଗ୍ର ଜଗତ୍ ଯେଉଁ ସମସ୍ତ ଉପାଦାନରେ ନିର୍ମିତ, ପ୍ରତ୍ୟେକଟି ପରମାଣୁ ମଧ୍ୟ ସେହିସବୁ ଉପାଦାନରେ ନିର୍ମିତ । ଆପଣମାନେ ଯଦି ଗୋଟିଏ ମାଟି-ପିଣ୍ଡୁଳାକୁ ଜାଣିପାରିବେ, ତାହା ହେଲେ ସମଗ୍ର ବ୍ରହ୍ମାଣ୍ଡକୁ ମଧ୍ୟ ଜାଣିପାରିବେ (ଛାନ୍ଦୋଗ୍ୟ ଉପନିଷଦ୍ ୬।୧।୪) । ସମଗ୍ର ଜଗତକୁ ଜାଣିବାକୁ ହେଲେ କେବଳ ସାମାନ୍ୟ ମୃତ୍ତିକା ନେଇ ତାକୁ ବିଶ୍ଳେଷଣ କରି ଦେଖିଲେ ହିଁ ହେବ । ଯଦି ଆପଣମାନେ ଗୋଟିଏ ଟେବୁଲକୁ ସମ୍ପୂର୍ଣ୍ଣ ଭାବରେ—ତାହାର ସବୁଦିଗରୁ ଦେଖି ଜାଣିପାରନ୍ତି, ତାହାହେଲେ ଆପଣମାନେ ସମଗ୍ର ଜଗତକୁ ଜାଣିପାରିବେ । ସମଗ୍ର ବ୍ରହ୍ମାଣ୍ଡ ମଧ୍ୟରେ ମନୁଷ୍ୟ ସୃଷ୍ଟିର ଶ୍ରେଷ୍ଠ ପ୍ରତିନିଧି, ମନୁଷ୍ୟ ସ୍ୱୟଂ ହିଁ କ୍ଷୁଦ୍ର ବ୍ରହ୍ମାଣ୍ଡସ୍ୱରୂପ । ସୁତରାଂ ମନୁଷ୍ୟ ମଧ୍ୟରେ ଆମେ ରୂପ ଦେଖିବାକୁ ପାଉଁ, ତା'ର ପଶ୍ଚାତ୍‌ରେ ନାମ, ତତ୍‌ପଶ୍ଚାତରେ ଭାବ—ଅର୍ଥାତ୍ ମନନକାରୀ ପୁରୁଷ ରହିଛନ୍ତି । ଅତଏବ ଏହି ବୃହତ୍ ବ୍ରହ୍ମାଣ୍ଡ ଅବଶ୍ୟ ହିଁ ସେହି ଏକା ନିୟମରେ ନିର୍ମିତ । ପ୍ରଶ୍ନ ଏହି ନାମ କଅଣ ? ହିନ୍ଦୁମାନଙ୍କ ମତରେ ଏହି ନାମ ବା ଶବ୍ଦ—ଓଁ । ପ୍ରାଚୀନ ମିଶରବାସୀମାନେ ମଧ୍ୟ ତାହା ହିଁ ବିଶ୍ୱାସ କରୁଥିଲେ ।

"ଯଦିଚ୍ଛନ୍ତୋ ବ୍ରହ୍ମଚର୍ଯ୍ୟଂ ଚରନ୍ତି
ତତ୍ତେ ପଦଂ ସଂଗ୍ରହେଣ ବ୍ରବୀମ୍ୟୋମିତ୍ୟେତତ୍" —କଠ ଉପ., ୧।୨।୧୫

—ଯାହାଙ୍କୁ ଲାଭ କରିବା ପାଇଁ ଇଚ୍ଛା କରି ଲୋକମାନେ ବ୍ରହ୍ମଚର୍ଯ୍ୟ ପାଳନ କରନ୍ତି, ମୁଁ ସଂକ୍ଷେପରେ ତାହା ହିଁ କହିବି—ତାହା 'ଓଁ'।

"ଏତଦ୍ଧ୍ୟେବାକ୍ଷରଂ ବ୍ରହ୍ମ ଏତଦ୍ଧ୍ୟେବାକ୍ଷରଂ ପରମ୍।
ଏତଦ୍ଧ୍ୟେବାକ୍ଷରଂ ଜ୍ଞାତ୍ୱା ଯୋ ଯଦିଚ୍ଛତି ତସ୍ୟ ତତ୍ ॥"—କଠ, ୧।୨।୧୬

—ଏ ହେଉଛନ୍ତି ଅକ୍ଷର ଅପରବ୍ରହ୍ମ—ଏ ହିଁ ଅକ୍ଷର ପରବ୍ରହ୍ମ। ଏହି ଅକ୍ଷରର ଓଁକାରର ରହସ୍ୟ ଜାଣି ଯେ ଯାହା ଇଚ୍ଛା କରନ୍ତି, ସେ ତାହା ଲାଭ କରିଥାନ୍ତି।

ଓଁକାର ସମଗ୍ର ବ୍ରହ୍ମାଣ୍ଡର ପ୍ରତୀକ, ଈଶ୍ୱରଙ୍କର ମଧ୍ୟ ପ୍ରତୀକ! ତାହା ବହିର୍ଜଗତ ଓ ଈଶ୍ୱରଙ୍କର ମଧ୍ୟବର୍ତ୍ତୀ ଉଭୟର ହିଁ ପ୍ରତିଭୂ। ବର୍ତ୍ତମାନ ମୁଁ ଜଗତର ଖଣ୍ଡ ଖଣ୍ଡ ଭାବଗୁଡ଼ିକ ଆଲୋଚନା କରିବି। ଏହି ସମଗ୍ର ଜଗତକୁ ସମଷ୍ଟିଭାବେ ନ ଧରି ମଧ୍ୟ ଆମେ ଜଗତଟିକୁ ବିଭିନ୍ନ ଇନ୍ଦ୍ରିୟ ଯଥା, ସ୍ପର୍ଶ, ରୂପ, ରସ ଇତ୍ୟାଦି ଅନୁସାରେ ଓ ଅନ୍ୟାନ୍ୟ ନାନାପ୍ରକାରରେ ଖଣ୍ଡ ଖଣ୍ଡ ଭାବରେ ଗ୍ରହଣ କରିପାରୁ, ପ୍ରତ୍ୟେକ ସ୍ଥଳରେ ଏହି ବ୍ରହ୍ମାଣ୍ଡଟିକୁ ବିଭିନ୍ନ ଦୃଷ୍ଟିକୋଣରୁ ଲକ୍ଷ ଲକ୍ଷ ଜଗତ୍‌ରୂପେ ଦେଖାଯାଇପାରେ, ଆଉ ଏଭଳି ବିଭିନ୍ନ ଭାବରେ ଦୃଷ୍ଟ ଜଗତର ପ୍ରତ୍ୟେକଟିର ସ୍ୱୟଂ ଗୋଟିଏ ଗୋଟିଏ ସମ୍ପୂର୍ଣ୍ଣ ଜଗତ୍ ହେବ ଏବଂ ପ୍ରତ୍ୟେକଟିର ହିଁ ବିଭିନ୍ନ ନାମ, ରୂପ ଓ ସେମାନଙ୍କର ଅନ୍ତରାଳରେ ଗୋଟିଏ ଗୋଟିଏ ଭାବ ରହିବ। ଏହି ଭାବଗୁଡ଼ିକ ହିଁ ପ୍ରତୀକ। ପୁନଶ୍ଚ ପ୍ରତ୍ୟେକ ପ୍ରତୀକର ଗୋଟିଏ ଗୋଟିଏ ନାମ ଅଛି। ଏହିଭଳି ପବିତ୍ର ନାମ ବା ଶବ୍ଦ ଅନେକ ଅଛି; ଭକ୍ତିଯୋଗୀମାନେ ବିଭିନ୍ନ ନାମର ସାଧନ ଉପଦେଶ ଦେଇଥାଆନ୍ତି।

ଏହା ତ ନାମର ଦାର୍ଶନିକ ତତ୍ତ୍ୱ ବର୍ଣ୍ଣିତ ହେଲା। ବର୍ତ୍ତମାନ ତାହାର ସାଧନାରେ ଫଳ କଅଣ ହୁଏ, ଏହା ହିଁ ବିଶ୍ଳେଷ୍ୟ। ଏହିସବୁ ନାମରେ ପ୍ରାୟ ଅନନ୍ତଶକ୍ତି ଅଛି। କେବଳ ସେହି ଶବ୍ଦ ବା ମନ୍ତ୍ରଗୁଡ଼ିକ ଜପ କଲେ ହିଁ ଆମେ ସମସ୍ତେ ବାଞ୍ଛିତ ବସ୍ତୁ ଲାଭ କରିପାରୁଁ, ସିଦ୍ଧ ହୋଇପାରୁ; କିନ୍ତୁ ତାହାହେଲେ ମଧ୍ୟ ଦୁଇଟି ଜିନିଷର ପ୍ରୟୋଜନ। 'ଆଶ୍ଚର୍ଯ୍ୟୋ ବକ୍ତା କୁଶଲୋଽସ୍ୟ ଲବ୍‌ଧା' (କଠ ଉପ., ୧।୨।୭)। ଗୁରୁ ଅଲୌକିକ ଶକ୍ତିସମ୍ପନ୍ନ ହେବେ ଓ ଶିଷ୍ୟ ମଧ୍ୟ ତଦ୍ରୂପ ହେବେ। ଏହି ନାମ ଏପରି ବ୍ୟକ୍ତି ନିକଟରୁ ପାଇବା ଦରକାର, ଯେ କି ଉତ୍ତରାଧିକାର-ସୂତ୍ରରେ ତାହା ପାଇଛନ୍ତି। ଯେପରି ଅତି ପ୍ରାଚୀନ କାଳରୁ ଗୁରୁଙ୍କଠାରୁ ଶିଷ୍ୟଠାକୁ ଆଧ୍ୟାତ୍ମିକ ଶକ୍ତିପ୍ରବାହ ଆସିବାରେ ଲାଗିଛି, ଆଉ ଗୁରୁ-ପରମ୍ପରାକ୍ରମେ ଆସିଲେ ହିଁ ନାମ ଶକ୍ତିସମ୍ପନ୍ନ ହୋଇଥାଏ ଏବଂ ପୁନଃ ପୁନଃ ଜପ କଲେ ତାହା ଅନନ୍ତଶକ୍ତିସମ୍ପନ୍ନ ହୋଇଥାଏ। ଯେଉଁ ବ୍ୟକ୍ତିଙ୍କ ନିକଟରୁ ଏଭଳି ଶବ୍ଦ ବା ନାମ ମିଳିପାରେ, ତାହାଙ୍କୁ ଗୁରୁ ଏବଂ ଯେ ପାଆନ୍ତି ତାହାଙ୍କୁ ଶିଷ୍ୟ କୁହାଯାଏ। ଯଦି ବିଧିପୂର୍ବକ ଏପରି ମନ୍ତ୍ର ଗ୍ରହଣ କରି ତାହା ପୁନଃ ପୁନଃ ଅଭ୍ୟାସ କରାଯାଏ, ତେବେ ଭକ୍ତିଯୋଗର ଆଉ କିଛି କାର୍ଯ୍ୟ ଅବଶିଷ୍ଟ ରହିଲା ନାହିଁ। କେବଳ ଏହି ମନ୍ତ୍ରର ବାରମ୍ବାର ଉଚ୍ଚାରଣଦ୍ୱାରା ଭକ୍ତିର ଉଚ୍ଚତର ଅବସ୍ଥା ଲାଭ ହେବ।

"ନାମ୍ନାମକାରି ବହୁଧା ନିଜସର୍ବଶକ୍ତି-
ସ୍ତତ୍ରାର୍ପିତା ନିୟମିତଃ ସ୍ମରଣେ ନ କାଲଃ ।
ଏତାଦୃଶୀ ତବ କୃପା ଭଗବନ୍ମମାପି
ଦୁର୍ଦ୍ଦୈବମୀଦୃଶମିହାଜନି ନାନୁରାଗଃ ।"

—ଶିକ୍ଷାଷ୍ଟକମ୍, ଶ୍ରୀକୃଷ୍ଣଚୈତନ୍ୟ

— ହେ ଭଗବାନ ! ଆପଣଙ୍କର କେତେ ନାମ ରହିଛି ! ଆପଣ ଜାଣନ୍ତି, ସେଗୁଡ଼ିକର ପ୍ରତ୍ୟେକର କି ତାତ୍ପର୍ଯ୍ୟ ! ସବୁ ନାମଗୁଡ଼ିକ ହିଁ ଆପଣଙ୍କର । ପ୍ରତ୍ୟେକ ନାମରେ ଆପଣଙ୍କର ଅନନ୍ତଶକ୍ତି ରହିଛି । ଏହି ସମସ୍ତ ନାମ ଉଚ୍ଚାରଣ ପାଇଁ କୌଣସି ନିର୍ଦ୍ଦିଷ୍ଟ ଦେଶକାଳ ମଧ୍ୟ ନାହିଁ —କାରଣ ସବୁକାଳ ହେଉଛି ଶୁଦ୍ଧ ଓ ସବୁସ୍ଥାନ ହିଁ ଶୁଦ୍ଧ । ଆପଣ ଏତେ ସହଜଲଭ୍ୟ, ଆପଣ ଏତେ ଦୟାମୟ ! ମୁଁ ଅତି ଦୁର୍ଭାଗା ଯେ, ଆପଣଙ୍କ ପ୍ରତି ମୋର ଅନୁରାଗ ଜନ୍ମିଲା ନାହିଁ ।

# ଇଷ୍ଟ

ଇଷ୍ଟ ସମ୍ବନ୍ଧରେ ପୂର୍ବ ବକ୍ତୃତାରେ କିଞ୍ଚିତ୍ ଆଭାସ ଦେଇଛି—ଆଶା କରେ ଏହି ବିଷୟଟି ଆପଣମାନେ ବିଶେଷ ମନୋଯୋଗ ସହକାରେ ଆଲୋଚନା କରିବେ; କାରଣ ଇଷ୍ଟନିଷ୍ଠା ସମ୍ବନ୍ଧରେ ଠିକ୍ ଠିକ୍ ଧାରଣା ହେଲେ ଆମେମାନେ ଜଗତ୍ର ଭିନ୍ନ ଭିନ୍ନ ଧର୍ମର ଯଥାର୍ଥ ତାତ୍ପର୍ଯ୍ୟ ବୁଝିପାରିବା । 'ଇଷ୍ଟ' ଶବ୍ଦଟି ଇଷ୍ ଧାତୁରୁ ସିଦ୍ଧ ହୋଇଛି; ତାହାର ଅର୍ଥ —ଇଚ୍ଛା କରିବା, ମନୋମତ କରିବା । ସମସ୍ତ ଧର୍ମର, ସମସ୍ତ ସମ୍ପ୍ରଦାୟର ସମସ୍ତ ମନୁଷ୍ୟ-ମାନଙ୍କର ଚରମ ଲକ୍ଷ୍ୟ ଗୋଟିଏ—ମୁକ୍ତିଲାଭ ଓ ସର୍ବଦୁଃଖନିବୃତ୍ତି । ଯେଉଁଠାରେ କୌଣସି ପ୍ରକାର ଧର୍ମ ବିଦ୍ୟମାନ, ସେଠାରେ ହିଁ ଏହି ଦୁଇଟିରୁ ଗୋଟିଏ ନା ଗୋଟିଏ ଆଦର୍ଶ କାର୍ଯ୍ୟ କରିଥାଏ; ଅବଶ୍ୟ ଧର୍ମର ନିମ୍ନସ୍ତରରେ ଏହି ଭାବସମୂହ ସେତେ ସ୍ପଷ୍ଟରୂପେ ଦେଖାଯାଏ ନାହିଁ ସତ, କିନ୍ତୁ ସୁସ୍ପଷ୍ଟ ହେଉ ଅଥବା ଅସ୍ପଷ୍ଟ ହେଉ, ଆମେ ସମସ୍ତେ ସେହି ଚରମ ଲକ୍ଷ୍ୟ ଆଡ଼କୁ ଅଗ୍ରସର ହେଉଛୁ । ଆମେ ସମସ୍ତେ ଦୁଃଖ ଏଡ଼ାଇବାକୁ ଚାହୁଁ ; ପ୍ରତିଦିନ ଆମେ ଯେଉଁ ଦୁଃଖ ଭୋଗ କରୁଛୁ ସେଥିରୁ ମୁକ୍ତି ଚାହୁଁ; ଆମେ ସମସ୍ତେ ମୁକ୍ତି ଲଭିବୁ—ଦୈହିକ, ମାନସିକ ଓ ଆଧ୍ୟାତ୍ମିକ ସ୍ୱାଧୀନତା ଲାଭ ପାଇଁ ଚେଷ୍ଟା କରୁଛୁ । ଜଗତର ସମସ୍ତ କାର୍ଯ୍ୟ ମୂଳରେ ଏହି ଦୁଃଖନିବୃତ୍ତି ଓ ମୁକ୍ତିଲାଭର ଚେଷ୍ଟା । ସମସ୍ତଙ୍କର ଲକ୍ଷ୍ୟ ଏକ, ତଥାପି ସେଠାରେ ପହଞ୍ଚିବାର ଉପାୟ ଭିନ୍ନ ଭିନ୍ନ ଏବଂ ଆମମାନଙ୍କର ପ୍ରକୃତିର ବିଭିନ୍ନତା ଓ ବିଶେଷତ୍ୱ ଅନୁଯାୟୀ ଏସବୁ ବିଭିନ୍ନ ପଥ ବା ଉପାୟ ନିରୂପିତ ହୋଇଅଛି । କାହାର ବା ପ୍ରକୃତି ଭାବପ୍ରଧାନ, କାହାର ବା ଜ୍ଞାନପ୍ରଧାନ, କାହାର ବା କର୍ମପ୍ରଧାନ ଓ କାହାର ବା ଅନ୍ୟରୂପ । ଏକପ୍ରକାରର ପ୍ରକୃତି—ଭିତରେ ପୁଣି ଅବାନ୍ତର ଭେଦ ଥାଇପାରେ । ବର୍ତ୍ତମାନ ଆମେ ଯେଉଁ ବିଷୟଟି ବିଶେଷଭାବରେ ଆଲୋଚନା କରୁଛୁ, ସେହି ଭକ୍ତି ବା ଭଲପାଇବା କଥା ଧରନ୍ତୁ । ଜଣକର ପ୍ରକୃତିରେ ସନ୍ତାନ-ବାତ୍ସଲ୍ୟ ପ୍ରବଳ, କାହାର ବା ସ୍ତ୍ରୀ ପ୍ରତି ଅଧିକ ପ୍ରେମ, କାହାର ମାତା ପ୍ରତି, କାହାର ପିତାଙ୍କ ପ୍ରତି, କାହାର ବା ବନ୍ଧୁ ପ୍ରତି ଅଧିକ ସ୍ନେହଭାବ, କାହାର ବା ସ୍ୱଦେଶପ୍ରୀତି ଅତିଶୟ ପ୍ରବଳ, ପୁନଶ୍ଚ କିଛି ଲୋକ ଜାତି-ଧର୍ମ-ଦେଶ ନିର୍ବି-ଶେଷରେ ସମଗ୍ର ମାନବଜାତିକୁ ଭଲପାଇଥାନ୍ତି ।

ଅବଶ୍ୟ ସେମାନଙ୍କର ସଂଖ୍ୟା ଅତି ଅଳ୍ପ । ପୁଣି ଯଦିଚ ଆମେ ସମସ୍ତେ ଏହିପରି ଭାବେ କଥା କହୁ, ଯେପରିକି ମାନବଜାତି ପ୍ରତି ନିଃସ୍ୱାର୍ଥ ପ୍ରେମ ହିଁ ଆମ ଜୀବନର ପ୍ରେରଣା-ଶକ୍ତି, ତାହାଦ୍ୱାରା ହିଁ ଆମର ଜୀବନ ଚାଳିତ ହେଉଅଛି; କିନ୍ତୁ ବର୍ତ୍ତମାନ କାଳରେ ସମଗ୍ର ଜଗତ୍ ମଧ୍ୟରେ ଶତାଧିକ ଏହିଭଳି ବ୍ୟକ୍ତି ଅଛନ୍ତି ବୋଲି ବୋଧହୁଏ ନାହିଁ । ଅଳ୍ପ କେତେଜଣ ମାତ୍ର ଜ୍ଞାନୀ ହିଁ ଏହି ମାନବ-ପ୍ରେମ ପ୍ରାଣେ ପ୍ରାଣେ ଅନୁଭବ କରିଛନ୍ତି । ମାନବ-ଜାତି ମଧ୍ୟରେ ଅଳ୍ପସଂଖ୍ୟକ ମହାତ୍ମା ହିଁ ସାର୍ବଜନୀନ ପ୍ରେମ ପ୍ରାଣେ ପ୍ରାଣେ ଅନୁଭବ କରି-ଥାଆନ୍ତି, ଆଉ ମୋଟଭଳି ଲୋକ ସେମାନଙ୍କର ସେହି ଭାବ ନେଇ ପ୍ରଚାର କରିଥାଆନ୍ତି । ଜଗ-ତର ସମୁଦାୟ ମହତ୍ତ୍ୱଭାବର ଏହା ହିଁ ପରିଣାମ । ତେବେ ଆମେ ଆଶା କରୁ, ଜଗତ ଯେପରି କେବେହେଲେ ଏଭଳି ମହାପୁରୁଷ-ଶୂନ୍ୟ ନ ହୁଏ ।

ଯାହାହେଉ, ପୂର୍ବପ୍ରସଙ୍ଗର ଅନୁବୃତ୍ତି କରାଯାଉ । ଆମେମାନେ ଦେଖିବାକୁ ପାଉ ଯେ, ଗୋଟିଏ ନିର୍ଦ୍ଦିଷ୍ଟ ଭାବର ଚରମାବସ୍ଥାକୁ ଯିବାର ନାନାବିଧ ଉପାୟ ରହିଛି । ସକଳ ଖ୍ରୀଷ୍ଟିଆନ୍‌ଗଣ ହିଁ ଖ୍ରୀଷ୍ଟବିଶ୍ୱାସୀ; କିନ୍ତୁ ବିଭିନ୍ନ ସମ୍ପ୍ରଦାୟ ତାଙ୍କ ସମ୍ବନ୍ଧରେ ବିଭିନ୍ନ ବ୍ୟାଖ୍ୟା କରିଥାନ୍ତି । ପ୍ରତ୍ୟେକ ଚର୍ଚ୍ଚ ତାଙ୍କୁ ବିଭିନ୍ନ ଆକାରରେ ବିଭିନ୍ନ ଦୃଷ୍ଟିରେ ଦେଖିଥାଆନ୍ତି । ପ୍ରେସ୍‌ବିଟାରିଆନ୍‌ମାନଙ୍କର[୧] ଦୃଷ୍ଟି ଖ୍ରୀଷ୍ଟଙ୍କର ଜୀବନର ସେହି ଅଂଶରେ ନିବଦ୍ଧ, ଯେଉଁଠାରେ ସେ ପୋଦ୍ଦାରମାନଙ୍କୁ ମୁଦ୍ରା ନେଣଦେଣ କରୁଥିବାର ଦେଖି 'ତୁମେମାନେ କାହିଁକି ଭଗବାନଙ୍କ ମନ୍ଦିର ଅପବିତ୍ର କରୁଛ' ବୋଲି ତାଡ଼ି ଦେଇଥିଲେ ।

ଖ୍ରୀଷ୍ଟଙ୍କୁ ସେମାନେ ଅନ୍ୟାୟ ବିରୋଧରେ ତୀବ୍ର ଆକ୍ରମଣକାରୀରୂପେ ଦେଖିଥାଆନ୍ତି । କୋୟେକାରଙ୍କୁ [ କୋୟେକାର (Quaker) — ଇଂଲଣ୍ଡର ଲେଷ୍ଟର ସାୟାର-ନିବାସୀ ଜର୍ଜ ଫକ୍‌ସ ନାମକ ଜଣେ ବ୍ୟକ୍ତି ୧୬୫୦ ଖ୍ରୀଷ୍ଟାବ୍ଦରେ ଏହି ଧର୍ମ-ସମ୍ପ୍ରଦାୟ ସ୍ଥାପନ କରିଥିଲେ । ସେମାନେ ନିଜକୁ ସୋସାଇଟି ଅଫ୍ ଫ୍ରେଣ୍ଡସ୍ ( Society of Friends ) ନାମରେ ଅଭିହିତ କରିଥାନ୍ତି; ଏହି ସମ୍ପ୍ରଦାୟର ଧର୍ମ-ପ୍ରଚାରକଗଣ ପ୍ରଚାର ସମୟରେ ଏତେ ଆବେଗର ସହିତ ଶ୍ରୋତାମାନଙ୍କୁ ଅସତ୍‌ପଥ ପରିତ୍ୟାଗ କରି ଭଗବତ୍‌ପଥରେ ପଥିକ ହେବା ଲାଗି ଉପଦେଶ ଦେଉଥିଲେ ଯେ, ସମୟ ସମୟରେ ଶ୍ରୋତୃବୃନ୍ଦ ଭାବରେ ମୂର୍ଚ୍ଛିତ ହେଉଥିଲେ, ଅନେକଙ୍କର କମ୍ପ ଆସୁଥିଲା, ଏହି 'କମ୍ପ' ହେତୁ ଏ ସମ୍ପ୍ରଦାୟର ବିରୋଧୀମାନେ ବିଦ୍ରୂପ କରି ଏମାନଙ୍କୁ Quaker ବା କମ୍ପନଶୀଳସମ୍ପ୍ରଦାୟ ନାମରେ ଅଭିହିତ କରନ୍ତି । ଅସତ୍‌ପଥରୁ ନିବୃତ୍ତି ନିମିତ୍ତ ତୀବ୍ର ଅନୁତାପ ଓ ଶତ୍ରୁ ପ୍ରତି ସମ୍ପୂର୍ଣ୍ଣ କ୍ଷମା—ଏହି ସମ୍ପ୍ରଦାୟର ପ୍ରଧାନ ଶିକ୍ଷା ।] ପଚାରିଲେ ସେ ହୁଏତ କହିବେ—ଖ୍ରୀଷ୍ଟ ଶତ୍ରୁକୁ କ୍ଷମା କରିଥିଲେ । କ୍ୱେକର ଖ୍ରୀଷ୍ଟଙ୍କର ସେହି ଭାବଟି ଗ୍ରହଣ କରିଥାନ୍ତି । ପୁଣି ଯଦି ରୋମାନ୍ କ୍ୟାଥଲିକ୍‌ଙ୍କୁ ପଚାର, ଖ୍ରୀଷ୍ଟଙ୍କ ଜୀବନର କେଉଁ ଅଂଶ ସେମାନଙ୍କୁ ଭଲ ଲାଗେ, ସେମାନେ ହୁଏତ କହିବେ, 'ଯେତେବେଳେ ସେ ପିଟରଙ୍କୁ ସ୍ୱର୍ଗ ରାଜ୍ୟର ଚାବି ଦେଇଥିଲେ ।' [ ରୋମାନ୍ କ୍ୟାଥଲିକ୍ ଖ୍ରୀଷ୍ଟିଆନ୍ ବିଶ୍ୱାସ କରନ୍ତି, ଯୀଶୁ ଖ୍ରୀଷ୍ଟ ତାଙ୍କର ଦ୍ୱାଦଶ ଶିଷ୍ୟଙ୍କ ମଧ୍ୟରୁ ପିଟରଙ୍କୁ ହିଁ ସର୍ବପ୍ରଧାନ ରୂପେ ମନୋନୀତ କରି ତାଙ୍କ ଉପରେ ସମୁଦାୟ ଖ୍ରୀଷ୍ଟୀୟଧର୍ମ ପ୍ରତିଷ୍ଠା ଓ ପରିଚାଳନାଦାୟିତ୍ୱ ନ୍ୟସ୍ତ କରିଥିଲେ । ସେମାନଙ୍କର ବିଶ୍ୱାସ—ପିଟର ରୋମ୍‌ର ଚର୍ଚ୍ଚ ପ୍ରତିଷ୍ଠା କରି ତାହାର ପ୍ରଥମ ବିଶପ ହୋଇଥିଲେ । ଆଉ ଏହି କାରଣରୁ ତାଙ୍କର ପୋପ୍‌ନାମଧାରୀ ଉତ୍ତରାଧିକାରୀଗଣ ସମଗ୍ର ରୋମାନ୍ କ୍ୟାଥଲିକ୍ ସମ୍ପ୍ରଦାୟର ସର୍ବଶ୍ରେଷ୍ଠ ପୂଜାର ଅଧିକାରୀ ହୋଇଛନ୍ତି । ସେଣ୍ଟ ମାଥ୍ୟୁଙ୍କ ଲିଖିତ ଗସ୍ପେଲ୍‌ର ଷୋଡ଼ଶ ଅଧ୍ୟାୟ, ୧୯ ଶ୍ଳୋକରେ 'And I will give unto thee the keys of the kingdom of heaven' ପ୍ରଭୃତି ପିଟରଙ୍କ ପ୍ରତି

---

୧ ପ୍ରେସ୍‌ବିଟାରିଆନ୍ ( Presbyterion )—ଏହି ଖ୍ରୀଷ୍ଟୀୟ ସମ୍ପ୍ରଦାୟ, ବିଶପଙ୍କର ପ୍ରାଧାନ୍ୟ ଅସ୍ୱୀକାର କରି 'ପ୍ରେସ୍‌ବିଟର' ନାମଧାରୀ ଅଧ୍ୟକ୍ଷମାନଙ୍କର ଚର୍ଚ୍ଚର କାର୍ଯ୍ୟ ନିୟମରେ ତୁଲ୍ୟ ଅଧିକାର ସ୍ୱୀକାର କରିଥାନ୍ତି । ଏହି ସମ୍ପ୍ରଦାୟ ଶୃଙ୍ଖଳାର (discipline) ବିଶେଷ ପକ୍ଷପାତୀ ।

ଯୀଶୁ ଖ୍ରୀଷ୍ଟଙ୍କର ଉକ୍ତି ଦ୍ରଷ୍ଟବ୍ୟ । ] ପ୍ରତ୍ୟେକ ସମ୍ପ୍ରଦାୟ ହିଁ ଖ୍ରୀଷ୍ଟଙ୍କୁ ନିଜ ଭାବରେ ଦେଖିବାକୁ ବାଧ୍ୟ । ଅତଏବ ଦେଖାଯାଉଛି, ଗୋଟିଏ ବିଷୟରେ ମଧ୍ୟ କେତେ ପ୍ରକାର ବିଭାଗ ଓ ଅବାନ୍ତର ବିଭାଗ ଥାଏ ।

ଅଜ୍ଞ ବ୍ୟକ୍ତିଗଣ ଏହିସବୁ ଅବାନ୍ତର ବିଭାଗଗୁଡ଼ିକ ମଧ୍ୟରୁ ଗୋଟିକୁ ଅବଲମ୍ବନ କରନ୍ତି ଏବଂ ଅପର ସମସ୍ତ ବ୍ୟକ୍ତିଙ୍କର ନିଜନିଜ ଧାରଣାନୁସାରେ ଜଗତ-ସମସ୍ୟାର ବ୍ୟାଖ୍ୟା କରିବାର ଅଧିକାର ସେମାନେ ଯେ କେବଳ ଅସ୍ୱୀକାର କରନ୍ତି, ତାହା ନୁହେଁ, ଏପରିକି ଅନ୍ୟ ସମସ୍ତେ ଭ୍ରାନ୍ତ ଓ ସେହିମାନେ କେବଳ ଅଭ୍ରାନ୍ତ, ଏକଥା ମଧ୍ୟ କହିବାକୁ ସାହସୀ ହୁଅନ୍ତି । ଯଦି କେହି ସେମାନଙ୍କର କଥାର ପ୍ରତିବାଦ କରେ, ତତ୍କ୍ଷଣାତ୍ ସେମାନେ ଲଢ଼େଇ କରିବାକୁ ଆଗେଇ ଆସନ୍ତି । ସେମାନେ କହନ୍ତି, ଯେ କେହି ହେଉନା କାହିଁକି, ଯେବେ ତାଙ୍କ ମତରେ ବିଶ୍ୱାସ ନ କରେ, ତେବେ ତାକୁ ସେମାନେ ମାରି ପକାଇବେ । ଏମାନେ ପୁଣି ମନେକରନ୍ତି, 'ଆମେମାନେ ଅକପଟ—ଆଉ ଅନ୍ୟ ସମସ୍ତେ ଭ୍ରାନ୍ତ ଓ କପଟ ।'

କିନ୍ତୁ ଆମେମାନେ ଏହି ଭକ୍ତିଯୋଗ ସମ୍ପର୍କରେ କିଭଳି ଦୃଷ୍ଟିଭଙ୍ଗୀ ଅବଲମ୍ବନ କରିବୁ ? ଅନ୍ୟମାନେ ଭ୍ରାନ୍ତ ନୁହନ୍ତି—ଏତିକି କହି ଆମେ କ୍ଷାନ୍ତ ହେବାକୁ ଚାହୁଁ ନାହିଁ । ଆମେ ସମସ୍ତଙ୍କୁ କହିଦେବାକୁ ଚାହୁଁ ଯେ, ନିଜନିଜର ମନୋନୀତ ପଥରେ ଯେଉଁମାନେ ଗମନ କରୁଛନ୍ତି, ସେହିମାନେ ସମସ୍ତେ ହିଁ ଠିକ୍ ପଥରେ ଚାଲିଛନ୍ତି । ଆପଣଙ୍କର ପ୍ରକୃତି ଅନୁସାରେ ଆପଣ ଯେଉଁ ପନ୍ଥା ଅବଲମ୍ବନ କରିବାକୁ ବାଧ୍ୟ ହୋଇଛନ୍ତି, ଆପଣଙ୍କ ପକ୍ଷରେ ସେହି ପନ୍ଥା ହିଁ ଠିକ୍ । ଆମମାନଙ୍କ ମଧ୍ୟରେ ପ୍ରତ୍ୟେକେ ଆମର ଅତୀତ ଅଭିଜ୍ଞତାର ଫଳସ୍ୱରୂପ ବିଶେଷ ବିଶେଷ ପ୍ରକୃତି ନେଇ ଜନ୍ମଗ୍ରହଣ କରିଛୁଁ । ହୁଏତ କହନ୍ତୁ, ତାହା ଆମମାନଙ୍କର ପୂର୍ବଜନ୍ମର କର୍ମଫଳ, ନ ହେଲେ କହନ୍ତୁ, ପୁରୁଷାନୁକ୍ରମେ ଆମେ ସେହି ପ୍ରକୃତି ପାଇଛୁ । ଯେଉଁ ଭାବରେ ଆପଣ ତାହା ନିର୍ଦ୍ଦେଶ କରନ୍ତୁ ନା କାହିଁକି, ଏହି ଅତୀତର ପ୍ରଭାବ ଆମ-ମାନଙ୍କ ମଧ୍ୟରେ ଯେଉଁ ଭାବରେ ଆସିଥାଉ ନା କାହିଁକି, ଏହା ସମ୍ପୂର୍ଣ୍ଣ ନିଶ୍ଚିତ ଯେ, ଆମେ ଆମର ଅତୀତ ଅବସ୍ଥାର ଫଳସ୍ୱରୂପ । ଏହି କାରଣରୁ ଆମର ପ୍ରତ୍ୟେକଙ୍କ ମଧ୍ୟରେ ବିଭିନ୍ନ ଭାବ, ପ୍ରତ୍ୟେକଙ୍କର ଦେହ-ମନର ବିଭିନ୍ନ ଗତି ଦେଖିବାକୁ ମିଳେ । ସୁତରାଂ ପ୍ରତ୍ୟେକଙ୍କୁ ନିଜ ନିଜ ପଥ ବାଛି ନେବାକୁ ହେବ ।

ଆମମାନଙ୍କ ମଧ୍ୟରୁ ପ୍ରତ୍ୟେକେ ଯେଉଁ ବିଶେଷ ପନ୍ଥାର, ଯେଉଁ ବିଶେଷ ସାଧନପ୍ରଣା-ଳୀର ଉପଯୋଗୀ, ତାହାକୁ ଇଷ୍ଟ କୁହାଯାଏ । ଏହା ହିଁ ଇଷ୍ଟବିଷୟକ ମତବାଦ ଏବଂ ଆମର ନିଜସ୍ୱ ସାଧନ-ପ୍ରଣାଳୀକୁ ଆମର ଇଷ୍ଟ ବୋଲି କହିଥାଉ । ଦୃଷ୍ଟାନ୍ତସ୍ୱରୂପ, କୌଣସି ବ୍ୟକ୍ତିର ଈଶ୍ୱରସମ୍ବନ୍ଧୀୟ ଧାରଣା—ସେ ବିଶ୍ୱବ୍ରହ୍ମାଣ୍ଡର ସର୍ବଶକ୍ତିମାନ ଶାସନକର୍ତ୍ତା । ଯାହାର ଏହି-ଭଳି ଧାରଣା, ତାହାର ସ୍ୱଭାବ ମଧ୍ୟ ତଦ୍ରୂପ । ହୁଏତ ସେ ଜଣେ ମହା ଅହଙ୍କାରୀ ବ୍ୟକ୍ତି—ସମସ୍ତଙ୍କ ଉପରେ ପ୍ରଭୁତ୍ୱ କରିବା ପାଇଁ ଚାହେଁ । ସେ ଯେ ଈଶ୍ୱରଙ୍କୁ ଜଣେ ସର୍ବଶକ୍ତିମାନ ଶାସନକର୍ତ୍ତା ବୋଲି ଭାବିବ, ସେଥିରେ ଆଉ ଆଶ୍ଚର୍ଯ୍ୟ କଅଣ ? ଅନ୍ୟ ଜଣେ—ସେ ଜଣେ ହୁଏତ ବିଦ୍ୟାଳୟର ଶିକ୍ଷକ—କଠୋର ପ୍ରକୃତିର, ସେ ଭଗବାନଙ୍କୁ ନ୍ୟାୟପରାୟଣ ଶାସ୍ତି-

ବାଧାଡା ପ୍ରଭୃତି ଗୁଣାନ୍ୱିତ ବ୍ୟତୀତ ଅନ୍ୟ କୌଣସି ପ୍ରକାରେ ଭାବିପାରେ ନାହିଁ । ପ୍ରତ୍ୟେକେ ଈଶ୍ୱରଙ୍କୁ ନିଜ ପ୍ରକୃତି ଅନୁଯାୟୀ କଳ୍ପନା କରିଥାନ୍ତି, ଏବଂ ଆମ ପ୍ରକୃତି ଅନୁଯାୟୀ ଆମେ ଈଶ୍ୱରଙ୍କୁ ଯେଉଁଭଳି ଦେଖିଥାଉ, ତାହାକୁ ଆମର ଇଷ୍ଟ କହୁଁ । ଆମେମାନେ ନିଜନିଜକୁ ଏପରି ଏକ ଅବସ୍ଥାରେ ଆଣି ପକାଇଛୁ, ଯେଉଁଠାରେ ଈଶ୍ୱରଙ୍କୁ ଏହି ରୂପରେ—କେବଳ ଏହି ରୂପରେ ହିଁ ଦେଖିପାରୁ, ଅନ୍ୟ କୌଣସି ରୂପରେ ଦେଖିପାରୁ ନାହିଁ । ଆପଣ ଯାହାଙ୍କ ନିକଟରୁ ଶିକ୍ଷାଲାଭ କରିଥାଆନ୍ତି, ତାଙ୍କ ଉପଦେଶକୁ ହିଁ ସର୍ବୋତ୍କୃଷ୍ଟ ଓ ଉପଯୋଗୀ ବୋଲି ମନେ କରିଥାଆନ୍ତି । କିନ୍ତୁ ଆପଣ ହୁଏତ ଆପଣଙ୍କର ଜଣେ ବନ୍ଧୁଙ୍କୁ ତାଙ୍କ ଉପଦେଶ ଶୁଣି-ବାକୁ କହିଲେ—ସେ ଶୁଣି ଆସି କହିଲେ, ତାହା ଅପେକ୍ଷା ନିକୃଷ୍ଟ ଉପଦେଶ ସେ ଆଉ କେବେ ଶୁଣି ନାହାନ୍ତି । ସେ ମିଥ୍ୟା କହି ନାହାନ୍ତି, ତାଙ୍କ ସହିତ ବିବାଦ ବୃଥା । ଉପଦେଶ ନିର୍ଭୁଲ ଥିଲା, କିନ୍ତୁ ତାହା ସେହି ବ୍ୟକ୍ତିର ଉପଯୋଗୀ ହୋଇ ନାହିଁ ।

ଏ ବିଷୟଟି ଆଉ ଟିକିଏ ବିସ୍ତାରିତ ଭାବରେ କହିଲେ ବୁଝାଯିବ ବିଭିନ୍ନ ଦୃଷ୍ଟିଭଙ୍ଗୀରୁ କୌଣସି ତତ୍ତ୍ୱ ସତ୍ୟ ହୋଇପାରେ, ପୁଣି ଏକ ସମୟରେ ସତ୍ୟ ହୋଇ ନପାରେ । ଆପା-ତତଃ ଏହି କଥାଟି ସ୍ୱ-ବିରୋଧୀ ବୋଲି ମନେ ହୋଇପାରେ; କିନ୍ତୁ ଆମମାନଙ୍କୁ ସ୍ମରଣ ରଖିବାକୁ ହେବ, ଏକମାତ୍ର ନିରପେକ୍ଷ ସତ୍ୟ ଗୋଟିଏ; କିନ୍ତୁ ଆପେକ୍ଷିକ ସତ୍ୟ ନାନାବିଧ । ଦୃଷ୍ଟାନ୍ତସ୍ୱରୂପ ଏହି ଜଗତର କଥା ଧରନ୍ତୁ । ଏହି ଜଗତ-ବ୍ରହ୍ମାଣ୍ଡ ଅଖଣ୍ଡ ନିରପେକ୍ଷ ସତ୍ତା ହିସାବରେ ଅପରିବର୍ତ୍ତନୀୟ, ଅପରିବର୍ତ୍ତିତ ସର୍ବଦା-ସମଭାବାପନ୍ନ; କିନ୍ତୁ ଆପଣ, ମୁଁ ଆମେମାନେ ପ୍ରତ୍ୟେକେ ନିଜ ନିଜର ପୃଥକ୍ ଜଗତ୍ ଦେଖୁ ଶୁଣୁ ଓ ଅନୁଭବ କରୁ । ଅଥବା ସୂର୍ଯ୍ୟଙ୍କ କଥା ଧରନ୍ତୁ । ସୂର୍ଯ୍ୟ ଏକ, କିନ୍ତୁ ଆପଣ, ମୁଁ ଏବଂ ଅନ୍ୟାନ୍ୟ ଶତଶତ ବ୍ୟକ୍ତି ବିଭିନ୍ନ ସ୍ଥାନରେ ଠିଆ ହୋଇ ବିଭିନ୍ନ ଅବସ୍ଥାରେ ଦେଖିଥାଉଁ । କିଞ୍ଚିତ୍ ସ୍ଥାନ ପରିବର୍ତ୍ତନ କଲେ ସୂର୍ଯ୍ୟ ସମ୍ବନ୍ଧରେ ଏହି ବ୍ୟକ୍ତିର ସମଗ୍ର ଦୃଷ୍ଟି ପରିବର୍ତ୍ତିତ ହୋଇଯିବ । ବାୟୁମଣ୍ଡଳରେ ସାମାନ୍ୟ ପରିବର୍ତ୍ତନ ହେଲେ ସୂର୍ଯ୍ୟଙ୍କୁ ଅନ୍ୟ ଏକ ରୂପରେ ଦେଖାଯିବ । ସୁତରାଂ ଜଣାଗଲା ଆପେକ୍ଷିକ ସତ୍ୟ ସର୍ବଦା ହିଁ ବିଭିନ୍ନରୂପେ ପ୍ରତୀତ ହୋଇଥାଏ । ନିରପେକ୍ଷ ସତ୍ୟ କିନ୍ତୁ ଏକ ଓ ଅଦ୍ୱିତୀୟ । ଏହି କାରଣରୁ ଯେତେବେଳେ ଦେଖିବେ, ଧର୍ମ ସମ୍ବନ୍ଧରେ କୌଣସି ବ୍ୟକ୍ତି ଯାହାସବୁ କହେ, ତାହା ସହିତ ଆପଣଙ୍କ ମତ ଠିକ୍ ଖାପ ଖାଉନାହିଁ, ସେତେବେଳେ ତାହା ସହିତ ଆପଣଙ୍କର ବିବାଦ କରିବାର ପ୍ରୟୋଜନ ନାହିଁ । ମନେ ରଖିବାକୁ ହେବ, ଆପାତବିରୋଧୀ ମନେହେଲେ ବି ଉଭୟଙ୍କର ମତ ସତ୍ୟ ହୋଇପାରେ । ଲକ୍ଷଲକ୍ଷ ବ୍ୟାସାର୍ଦ୍ଧ ଗୋଟିଏ ସୂର୍ଯ୍ୟର କେନ୍ଦ୍ରାଭି-ମୁଖକୁ ଯାଇଛି । ବିଭିନ୍ନ ବ୍ୟାସାର୍ଦ୍ଧର ବିନ୍ଦୁଗୁଡ଼ିକ କେନ୍ଦ୍ରଠାରୁ ଯେତିକି ଦୂରବର୍ତ୍ତୀ, ତାହାର ପରସ୍ପର ଦୂରତ୍ୱ ସେତିକି ଅଧିକ; କେନ୍ଦ୍ରର ନିକଟବର୍ତ୍ତୀ ହେଲେ ତାହାର ଦୂରତ୍ୱ କମିଯାଏ; ସମସ୍ତ ବ୍ୟାସାର୍ଦ୍ଧ ଯେତେବେଳେ କେନ୍ଦ୍ରରେ ମିଳିତ ହୁଏ, ସେତେବେଳେ ଦୂରତ୍ୱ ସମ୍ପୂର୍ଣ୍ଣ ତିରୋହିତ ହୁଏ । ଏହିଭଳି ଏକ କେନ୍ଦ୍ର ହିଁ ମାନବଜାତିର ଚରମ ଲକ୍ଷ୍ୟ । ଈଶ୍ୱର ହିଁ ଏହି କେନ୍ଦ୍ର ଓ ଆମେ ବ୍ୟାସାର୍ଦ୍ଧ । ଆମ ପ୍ରକୃତିଗତ ସୀମାବଦ୍ଧତାର ମଧ୍ୟ ଦେଇ ଆମେ ଭଗବାନ-ଙ୍କର ଦର୍ଶନ ପାଇପାରୁ । ଏହି ସ୍ତରରେ ଦଣ୍ଡାୟମାନ ହୋଇ ଆମେ ନିରପେକ୍ଷ ସତ୍ୟକୁ

ବିଭିନ୍ନ ଭାବରେ ଦେଖିବାକୁ ବାଧ୍ୟ । ଏହି କାରଣରୁ ଆମ ସମସ୍ତଙ୍କର ଦୃଷ୍ଟିଭଙ୍ଗୀ ହିଁ ସତ୍ୟ, ସୁତରାଂ କାହା ସହିତ ବିବାଦର ପ୍ରୟୋଜନ ନାହିଁ ।

ବିଭିନ୍ନତା-ରୂପକ ସମସ୍ୟା ସମାଧାନର ଏକମାତ୍ର ଉପାୟ—ସେହି କେନ୍ଦ୍ର ଦିଗରେ ଅଗ୍ରସର ହେବା । ଆମର ପ୍ରତ୍ୟେକଙ୍କର ମତ ବିଭିନ୍ନ । ଆମେ ଯଦି ଯୁକ୍ତିତର୍କ ବା ବିବାଦ-ଦ୍ୱାରା ଆମମାନଙ୍କର ମତ-ବିରୋଧର ମୀମାଂସା କରିବାକୁ ଚେଷ୍ଟା କରୁ, ତାହାହେଲେ ଶହ ଶହ ବର୍ଷରେ ମଧ୍ୟ ଆମେମାନେ କୌଣସି ସିଦ୍ଧାନ୍ତରେ ଉପନୀତ ହୋଇପାରିବା ନାହିଁ । ଇତିହାସରେ ଏହା ପ୍ରମାଣିତ ହୋଇଅଛି । ଏହାର ଏକମାତ୍ର ସମାଧାନ – ଅଗ୍ରସର ହେବା, କେନ୍ଦ୍ର ଦିଗକୁ ଆଗେଇଯିବା; ଯେତେ ଶୀଘ୍ର ତାହା କରାଯାଇପାରେ, ସେତେ ଶୀଘ୍ର ଆମର ବିରୋଧ ବା ବିଭିନ୍ନତା ଅନ୍ତର୍ହିତ ହେବ ।

ଅତଏବ ଇଷ୍ଟନିଷ୍ଠାର ଅର୍ଥ ପ୍ରତ୍ୟେକ ବ୍ୟକ୍ତିକୁ ନିଜ ନିଜ ଧର୍ମ ନିର୍ବାଚନର ଅଧିକାର ଦେବା । କେହି ତାହାର ନିଜର ଉପାସ୍ୟକୁ ପୂଜା କରିବାକୁ ଅପରକୁ ବାଧ୍ୟ କରିବେ ନାହିଁ । ମୁଁ ଯାହାଙ୍କ ଉପାସନା କରେ, ଆପଣ ତାଙ୍କର ଉପାସନା କରିପାରନ୍ତି ନାହିଁ; ଅଥବା ଆପଣ ଯାହାଙ୍କ ଉପାସନା କରନ୍ତି, ମୁଁ ତାଙ୍କର ଉପାସନା କରିପାରେ ନାହିଁ—ଏହା ଅସମ୍ଭବ । ସୈନ୍ୟବଳ ପ୍ରୟୋଗ ବା ଯୁକ୍ତିଦ୍ୱାରା ମନୁଷ୍ୟକୁ ଦଳବଦ୍ଧ କରିବା, ବିଶୃଙ୍ଖଳଭାବେ ଗୋଟିଏ ଖୁଆଡ଼ରେ ପୂରାଇବା ଏବଂ ଏକ ହିଁ ଭାବରେ ଈଶ୍ୱରଙ୍କ ଉପାସନା କରିବାକୁ ବାଧ୍ୟ କରିବାର ସକଳ ଚେଷ୍ଟା ଚିରକାଳ ବିଫଳ ହୋଇଛି ଏବଂ ହେବ । କାରଣ ଏହା ପ୍ରକୃତି ବିରୋଧରେ ଅସମ୍ଭବ ଚେଷ୍ଟା; କେବଳ ତା' ନୁହେଁ, ଏଥିରେ ମନୁଷ୍ୟର ଆଧ୍ୟାତ୍ମିକ ଉନ୍ନତି ବ୍ୟାହତ ହେବା ଆଶଙ୍କା ଅଛି । ଏଭଳି ନରନାରୀ ଗୋଟିଏ ହେଲେ ଦେଖିବାକୁ ପାଇବେ ନାହିଁ, ଯେ କୌଣସି ଏକ ପ୍ରକାର ଧର୍ମ ପାଇଁ ଚେଷ୍ଟା ନ କରୁଛି—କିନ୍ତୁ କେତେଜଣ ଲୋକ ତୃପ୍ତ ହୋଇଛନ୍ତି ? ଅଥଚ ଖୁବ୍ କମ୍ ଲୋକ ହିଁ ବାସ୍ତବିକ ଧର୍ମ ବୋଲି କିଛି ଲାଭ କରିଛନ୍ତି । କାହିଁକି ?—କାରଣ ଅଧିକାଂଶ ଲୋକ ଅସମ୍ଭବକୁ ସମ୍ଭବ କରିବାର ଚେଷ୍ଟା କରୁଛନ୍ତି । ଅନ୍ୟର ହୁକୁମରେ ଜୋର୍ କରି ତାହାକୁ ଗୋଟିଏ ଧର୍ମ-ପଦ୍ଧତି ଅବଲମ୍ବନ କରିବାକୁ ହୋଇଅଛି ।

ଦୃଷ୍ଟାନ୍ତସ୍ୱରୂପ, ଯେତେବେଳେ ମୁଁ ଛୋଟ ଥିଲି, ମୋ ବାପା ଗୋଟିଏ ଛୋଟ ବହି ମୋ ହାତରେ ଦେଇ କହିଲେ—ଈଶ୍ୱର ଏହିପରି, ଏହି ଜିନିଷ ଏହି ପ୍ରକାର; ମୋ ମନରେ ଏହିପରି ଭାବ ପୂରାଇ ଦେବାରେ ତାଙ୍କର କି ପ୍ରୟୋଜନ ଥିଲା ? ମୁଁ କିପରିଭାବେ ଉନ୍ନତି ଲାଭ କରିବି, ତାହା ସେ କିପରି ଜାଣିଲେ ? ମୋର ପ୍ରକୃତି ଅନୁସାରେ ମୁଁ କିପରି ଉନ୍ନତି ଲାଭ କରିବି, ସେସବୁ କିଛି ନ ଜାଣି ସେ ମୋ ମୁଣ୍ଡ ଭିତରେ ତାଙ୍କ ଭାବଧାରାକୁ ଜୋର୍ କରି ଭର୍ତ୍ତି କରିବା ଚେଷ୍ଟା କରନ୍ତି ଏବଂ ତା'ର ଫଳରେ ଏହା ହୁଏ ଯେ, ମୋର ଉନ୍ନତି ବାଧା-ପ୍ରାପ୍ତ ହୁଏ । ଆପଣମାନେ ଗୋଟିଏ ଗଛକୁ ତାହାର ଅନୁପଯୋଗୀ ମୃତ୍ତିକା ଉପରେ ବସାଇ କେବେହେଲେ ବଡ଼ କରିଦେଇପାରନ୍ତି ନାହିଁ । ଯେଉଁଦିନ ଆପଣମାନେ ଶୂନ୍ୟ ଉପରେ କିମ୍ବା ପ୍ରତିକୂଳ ମୃତ୍ତିକାରେ ଗଛ ଜନ୍ମାଇବାକୁ କ୍ଷମ ହେବେ, ସେହିଦିନ ଆପଣମାନେ ଗୋଟିଏ ଶିଶୁକୁ ତାହାର ପ୍ରକୃତି ପ୍ରତି ଲକ୍ଷ୍ୟ ନ ରଖି ଜୋର୍ କରି ତାହାକୁ ଆପଣଙ୍କ ଭାବ ଶିଖାଇପାରିବେ ।

ଶିଶୁ ନିଜେ ନିଜେ ଶିକ୍ଷିଥାଏ । ତେବେ ତାହାକୁ ତାହାର ନିଜ ଭାବରେ ଉନ୍ନତ କରିବା ପାଇଁ ଆପଣମାନେ ସାହାଯ୍ୟ କରିପାରନ୍ତି । ଆପଣମାନେ ତାହାକୁ ପ୍ରତ୍ୟକ୍ଷ ଭାବରେ କିଛି ଦେଇ ସାହାଯ୍ୟ କରିପାରିବେ ନାହିଁ, ତାହାର ଉନ୍ନତିର ବିଘ୍ନଗୁଡ଼ିକୁ ଦୂର କରି ପରୋକ୍ଷ ଭାବରେ ସାହାଯ୍ୟ କରିପାରନ୍ତି । ନିଜସ୍ୱ ନିୟମାନୁସାରେ ହିଁ ଜ୍ଞାନ ତାହା ଭିତରେ ପ୍ରକାଶିତ ହୋଇଥାଏ । ମାଟିକୁ ଅଳ୍ପ ଖୋଳିଦିଅନ୍ତୁ, ଯଦ୍ୱାରା ଅଙ୍କୁରଟି ସହଜରେ ବାହାରି ପଡ଼ିପାରେ; ତାହାର ଚତୁର୍ଦ୍ଦିଗରେ ବାଡ଼ ଦେଇପାରନ୍ତି, ଯେପରିକି କୌଣସି ଜୀବଜନ୍ତୁ ତାହାକୁ ଖାଇ ନ ପକାନ୍ତି । ଏତିକି ଦେଖିପାରନ୍ତି ଯେ, ଅତିରିକ୍ତ ହିମ ବା ବର୍ଷାରେ ଏହା ଯେପରି ଆଦୌ ନଷ୍ଟ ହୋଇ ନ ଯାଏ— ଆପଣଙ୍କର କାର୍ଯ୍ୟ ଏହିଠାରେ ହିଁ ଶେଷ । ଆପଣ ଏଥିରୁ ଆଉ କିଛି ଅଧିକ କରିପାରିବେ ନାହିଁ । ବାକିତକ ଅନ୍ତର୍ନିହିତ ପ୍ରକୃତିର ବହିର୍ବିକାଶ । ଶିଶୁର ଶିକ୍ଷା ସମ୍ବନ୍ଧରେ ମଧ୍ୟ ଏହିଭଳି । ଶିଶୁ ନିଜେ ନିଜେ ହିଁ ଶିକ୍ଷା ପାଇଥାଏ । ଆପଣମାନେ ମୋର ବକ୍ତୃତା ଶୁଣିବାକୁ ଆସିଛନ୍ତି, ଯାହା ଶିଖିଲେ, ଘରକୁ ଫେରିଯାଇ ତାକୁ ନିଜ ମନର ଚିନ୍ତା ଓ ଭାବଗୁଡ଼ିକ ସହିତ ମିଳାଇ ଦେଖନ୍ତୁ; ଦେଖିବେ, ଆପଣମାନେ ମଧ୍ୟ ସେହିଭାବରେ ଚିନ୍ତା କରିଛନ୍ତି, ମୁଁ କେବଳ ସେଗୁଡ଼ିକୁ ସ୍ପଷ୍ଟଭାବେ ବ୍ୟକ୍ତ କରିଛି ମାତ୍ର । ଆପଣଙ୍କୁ ମୁଁ କେତେ-ବେଳେ ହେଲେ କିଛି ଶିକ୍ଷା ଦେଇପାରେ ନାହିଁ । ଆପଣମାନେ ନିଜେ ନିଜକୁ ଶିଖାଇବେ— ହୁଏତ ମୁଁ ସେହି ଚିନ୍ତା, ସେହି ଭାବ ସ୍ପଷ୍ଟରୂପେ ବ୍ୟକ୍ତ କରି ଆପଣମାନଙ୍କୁ କିଞ୍ଚିତ୍ ସାହାଯ୍ୟ କରିପାରେ । ଧର୍ମରାଜ୍ୟରେ ଏକଥା ଆହୁରି ସତ୍ୟ । ନିଜେ ନିଜେ ହିଁ ଧର୍ମ ଶିଖିବାକୁ ହେବ ।

ଆମ ମୁଣ୍ଡରେ କେତେଗୁଡ଼ିଏ ବାଜେ ଭାବନା ଭର୍ତ୍ତି କରାଇଦେବାର କି ଅଧିକାର ଆମ ପିତାଙ୍କର ରହିଛି ? ଶିକ୍ଷକଙ୍କର ମଧ୍ୟ ଏହିସବୁ ଭାବ ମୋ ମୁଣ୍ଡରେ ଭର୍ତ୍ତି କରିଦେବାର କି ଅଧିକାର ଅଛି ? ଏହିସବୁ ଜିନିଷ ମୋ ମୁଣ୍ଡରେ ଭର୍ତ୍ତି କରିଦେବା ପାଇଁ ସମାଜର ବା କଅଣ ଅଧିକାର ଅଛି ? ସେଗୁଡ଼ିକ ହୁଏତ ଭଲ ଭାବ ହୋଇପାରେ; କିନ୍ତୁ ସେସବୁ ମୋ ପଥ ହୋଇ ନ ପାରେ । ଲକ୍ଷ ଲକ୍ଷ ନିରୀହ ଶିଶୁଙ୍କୁ ଭୁଲ ବାଟରେ ଶିକ୍ଷା ଦିଆଯାଇ ନଷ୍ଟ କରାଯାଉଛି । ଜଗତରେ ଆଜି କି ଭୟଙ୍କର ଅମଙ୍ଗଳ ରାଜତ୍ୱ କରୁଛି, ଭାବନ୍ତୁ ଦେଖି ! କେତେକେତେ ସୁନ୍ଦର ଭାବ, ସେଗୁଡ଼ିକ ଅଦ୍ଭୁତ ଆଧ୍ୟାତ୍ମିକ ସତ୍ୟ ହୋଇ ବର୍ତ୍ତମାନ ଥାନ୍ତି— ସେଗୁଡ଼ିକ ବଂଶଗତ ଧର୍ମ, ସାମାଜିକ ଧର୍ମ, ଜାତୀୟ ଧର୍ମ ପ୍ରଭୃତି ଭୟାବହ ଧାରଣାଗୁଡ଼ିକ-ଦ୍ୱାରା ଅଙ୍କୁରାବସ୍ଥାରୁ ହିଁ ନଷ୍ଟ ହୋଇଯାଇଛି । ଭାବନ୍ତୁ ଦେଖି, ଏବେ ବି ଆପଣମାନଙ୍କ ମସ୍ତିଷ୍କରେ ଆପଣମାନଙ୍କର ଶୈଶବର ଧର୍ମ, ଆପଣମାନଙ୍କର ଦେଶର ଧର୍ମ — ଏସବୁ ନେଇ କି ଘୋର କୁସଂସ୍କାରମାନ ରହିଛି ! ଭାବନ୍ତୁ ଦେଖି, ଏହିସବୁ କୁସଂସ୍କାର ଆପଣମାନଙ୍କର କେତେ ଅନିଷ୍ଟ କରୁଛି ! ଆପଣମାନେ ପୁଣି ସେଗୁଡ଼ିକ ଦେଇ ଆପଣମାନଙ୍କର ସନ୍ତାନସନ୍ତତିଙ୍କୁ ନଷ୍ଟ କରିବାକୁ ଉଦ୍ୟତ ହୋଇଛନ୍ତି । ମଣିଷ ଅପରର କେତେ ଅନିଷ୍ଟ କରିଥାଏ ଓ କରିପାରେ, ତାହା ସେ ଜାଣେ ନାହିଁ । ଜାଣେନା — ସେ ମଧ୍ୟ ଏକପ୍ରକାର ଭଲ ବୋଲି କହିବାକୁ ହେବ; କାରଣ ଥରେ ଯଦି ସେ ତାହା ବୁଝନ୍ତା, ତେବେ ସେ ତତ୍‌କ୍ଷଣାତ୍ ଆତ୍ମହତ୍ୟା କରନ୍ତା । ପ୍ରତ୍ୟେକ ଚିନ୍ତା ଓ ପ୍ରତ୍ୟେକ କାର୍ଯ୍ୟର ଅନ୍ତରାଳରେ କି ପ୍ରବଳ ଶକ୍ତି ରହିଛି, ତାହା ମନୁଷ୍ୟ

ଜାଣେନା । ଏକଥା ଅତି ସତ୍ୟ ଯେ, 'ଦେବତାମାନେ ଯେଉଁଠାକୁ ଯିବାକୁ ସାହସ କରନ୍ତି ନାହିଁ, ନିର୍ବୋଧମାନେ ସେ ଦିଗକୁ ବେଗରେ ଆଗେଇ ଯାଆନ୍ତି ।' ପ୍ରଥମରୁ ଏ ବିଷୟରେ ସାବଧାନ ହେବାକୁ ପଡ଼ିବ । କିପରି ? 'ଇଷ୍ଟନିଷ୍ଠା'ଦ୍ୱାରା । ନାନାପ୍ରକାର ଆଦର୍ଶ ରହିଛି । ଆପଣଙ୍କର କି ଆଦର୍ଶ ହେବା ଉଚିତ, ଏ ସମ୍ବନ୍ଧରେ କିଛି କହିବାର ଅଧିକାର ମୋର ନାହିଁ, ଜୋର୍ କରି କୌଣସି ଆଦର୍ଶ ଆପଣଙ୍କ ଉପରେ ଚପାଇଦେବାର ଅଧିକାର ମୋର ନାହିଁ । ମୋର କର୍ତ୍ତବ୍ୟ—ଆପଣଙ୍କ ସମ୍ମୁଖରେ ଏହି ସମସ୍ତ ଆଦର୍ଶକୁ ଧରି ରଖିବା—ଯାହାଫଳରେ କେଉଁଟି ଆପଣଙ୍କୁ ଭଲ ଲାଗେ, କେଉଁଟି ଆପଣଙ୍କ ପକ୍ଷରେ ସମ୍ପୂର୍ଣ୍ଣ ଉପଯୋଗୀ, କେଉଁଟି ଆପଣଙ୍କର ପ୍ରକୃତିସଙ୍ଗତ ତା' ଆପଣ ବୁଝିପାରିବେ । ଯେଉଁଟି ଆପଣଙ୍କ ପକ୍ଷରେ ସର୍ବାପେକ୍ଷା ଉପଯୋଗୀ, ସେଇଟିକୁ ଗ୍ରହଣ କରନ୍ତୁ ଏବଂ ସେହି ଆଦର୍ଶ ନେଇ ଧୈର୍ଯ୍ୟର ସହିତ ସାଧନା କରିଯାଆନ୍ତୁ । ଏହା ହିଁ ହେଲା ଆପଣଙ୍କର ଇଷ୍ଟ, ଆପଣଙ୍କର ବିଶେଷ ଆଦର୍ଶ ।

ଅତଏବ ଆମେମାନେ ଦେଖୁଛେ, ଦଳବାନ୍ଧିବାଦ୍ୱାରା କେବେହେଲେ ଧର୍ମ ହୋଇ-ପାରେ ନାହିଁ । ଧର୍ମର ପ୍ରକୃତ ସାଧନା ପ୍ରତ୍ୟେକର ନିଜ ନିଜର କାର୍ଯ୍ୟ । ମୋର ନିଜର ଗୋଟିଏ ଭାବ ଅଛି—ମୋତେ ତାହାକୁ ପରମ ପବିତ୍ର ଜ୍ଞାନରେ ଗୋପନ କରି ରଖିବାକୁ ହେବ; କାରଣ ମୁଁ ଜାଣେ, ସେହି ଭାବ ଆପଣଙ୍କର ନ ହୋଇପାରେ । ଦ୍ୱିତୀୟତଃ, ସମସ୍ତଙ୍କୁ ମୋର ଭାବ କହି ବୁଲି ସେମାନଙ୍କର ଅଶାନ୍ତି ଉତ୍ପାଦନ କରିବି କାହିଁକି ? ସେମାନେ ଆସି ମୋ ସହିତ ବିବାଦରେ ପ୍ରବୃତ୍ତ ହେବେ । ମୋର ଭାବ ସେମାନଙ୍କ ନିକଟରେ ପ୍ରକାଶ ନ କଲେ ସେମାନେ ମୋ ସହିତ ବିବାଦ କରିପାରିବେ ନାହିଁ । କିନ୍ତୁ ଯଦି ମୋ ଭାବ ଏହିପରି କହିବୁଲେ, ତେବେ ସେମାନେ ସମସ୍ତେ ମୋ- ବିରୋଧରେ ଠିଆ ହେବେ । ଅତଏବ କହି ବୁଲି ଫଳ କଅଣ ? ଏହି ଇଷ୍ଟ ପ୍ରତ୍ୟେକଙ୍କର ଗୋପନ ରଖିବା ଉଚିତ । ତାହା ଆପଣ ଜାଣିବେ ଓ ଆପଣଙ୍କ ଭଗବାନ ଜାଣିବେ । ଧର୍ମର ତାତ୍ତ୍ୱିକ ଭାବ ବା ମତବାଦଗୁଡ଼ିକ ସର୍ବ-ସାଧାରଣରେ ପ୍ରଚାର କରାଯାଇପାରେ, ସମବେତ ମଣ୍ଡଳୀଙ୍କ ସମକ୍ଷରେ ତାହା ପ୍ରଚାର କରାଯାଇପାରେ; କିନ୍ତୁ ଉଚ୍ଚତର ଧର୍ମ ଅର୍ଥାତ୍ ସାଧନରହସ୍ୟ ସର୍ବସାଧାରଣଙ୍କ ନିକଟରେ ପ୍ରଚାର କରାଯାଇପାରେ ନାହିଁ; କେହି କହିଦେଲା ମାତ୍ରେ ପାଞ୍ଚମିନିଟ ମଧ୍ୟରେ ମୁଁ ମୋର ଧର୍ମଭାବଗୁଡ଼ିକ ଜାଗରିତ କରି ତୋଳିପାରିବି ନାହିଁ ।

ସମବେତ ଭାବେ ଉପାସନା-ରୂପକ ଏହି ହାସ୍ୟକର ଅନୁଷ୍ଠାନ ଫଳରେ ହୋଇଛି କଅଣ ? ଏହା ଧର୍ମକୁ ନେଇ ଉପହାସ କରିବା—ଘୋରତମ ଈଶ୍ୱର-ନିନ୍ଦା । ଆଧୁନିକ ଗୀର୍ଜାମାନଙ୍କରେ ଏହାର ଫଳ ପ୍ରତ୍ୟକ୍ଷ । ମାନବ-ପ୍ରକୃତି କେତେ ଆଉ ଏହି ନିୟମର 'ଉଠ ବସ' ସହ୍ୟ କରିବ ? ଏ ଯୁଗର ଗୀର୍ଜାର ଧର୍ମ, ସେନାନିବାସର ସୈନ୍ୟଗଣଙ୍କର କସରତ୍ ଭଳି ହୋଇପଡ଼ିଛି । ବନ୍ଧୁକ କାନ୍ଧକୁ ଉଠାଅ, ଆଣ୍ଠୁମାଡ଼ି ବସ, ବହି ହାତରେ ଧର—ଏ ସବୁ ଧରାବନ୍ଧା । ଦୁଇମିନିଟ ଭାବଭକ୍ତି, ଦୁଇମିନିଟ ଜ୍ଞାନ-ବିଚାର, ଦୁଇମିନିଟ ପ୍ରାର୍ଥନା—ସବୁ ପୂର୍ବରୁ ଠିକ୍ କରାଯାଇଥାଏ । ଏହା ଅତି ଭୟାବହ ବ୍ୟାପାର । ମୂଳରୁ ଏ ବିଷୟରେ ସାବଧାନ ହେବାକୁ ହେବ । ଏହିସବୁ ଧର୍ମର ବିକୃତ ଅନୁକରଣ ଓ ହାସ୍ୟକର ଅନୁଷ୍ଠାନ

ବର୍ତ୍ତମାନ ଅସଲ ଧର୍ମକୁ ବିତାଡ଼ିତ କରିବାକୁ ବସିଛି, ଆଉ ଯଦି କେତେକ ଶତାବ୍ଦୀ ଧରି ଏପରି ଚାଲେ, ତେବେ ଧର୍ମ ସମ୍ପୂର୍ଣ୍ଣଭାବେ ଲୋପ ପାଇଯିବ । ଗୀର୍ଜାଗୁଡ଼ିକ ଯେତେ ଖୁସି ମତାମତ, ଦାର୍ଶନିକ ତତ୍ତ୍ୱ ପ୍ରଚାର କରନ୍ତୁନା କାହିଁକି; କିନ୍ତୁ ଉପାସନାର ଅସଲ ସାଧନାର ସମୟ ହେଲେ, ଯୀଶୁ ଯେପରି କହିଛନ୍ତି, 'ପ୍ରାର୍ଥନା ସମୟରେ ତୁମେ ନିଭୃତ କକ୍ଷରେ ପ୍ରବେଶ କରି ଦ୍ୱାରରୁଦ୍ଧ କରି ଏବଂ ଗୋପନରେ ବିରାଜମାନ ତୁମ ପିତାଙ୍କ ନିକଟରେ ପ୍ରାର୍ଥନା କର', ତଦ୍ରୂପ କରିବାକୁ ହେବ ।

ଏହା ହିଁ ଇଷ୍ଟନିଷ୍ଠା । ପ୍ରତ୍ୟେକଙ୍କୁ ଯଦି ନିଜର ପ୍ରକୃତି ଅନୁଯାୟୀ ଧର୍ମସାଧନ କରିବାକୁ ହୁଏ, ଯଦି ଅନ୍ୟ ସହିତ ବିବାଦ ଏଡ଼ାଇବାକୁ ହୁଏ ଓ ଯଦି ଆଧ୍ୟାତ୍ମିକ ଜୀବନରେ ଯଥାର୍ଥ ଉନ୍ନତି ଲାଭ କରିବାକୁ ହୁଏ, ତେବେ ଏହି ଇଷ୍ଟନିଷ୍ଠା ହିଁ ତାହାର ଏକମାତ୍ର ଉପାୟ । କିନ୍ତୁ ମୁଁ ଆପଣମାନଙ୍କୁ ସାବଧାନ କରିଦେଉଛି, ଆପଣମାନେ ଯେପରି ମୋ କଥାର ଏପରି ଭୁଲ ଅର୍ଥ ବୁଝିବେ ନାହିଁ ଯେ, ମୁଁ ଗୁପ୍ତ ସମିତି ଗଠନକୁ ସମର୍ଥନ କରୁଛି । ଯଦି ସଇତାନ କେଉଁଠି ଥାଏ, ତେବେ ଗୁପ୍ତ ସମିତିଗୁଡ଼ିକ ଭିତରେ ତାକୁ ଖୋଜିବେ । ଗୁପ୍ତ ସମିତିଗୁଡ଼ିକ ପୈଶାଚିକ କଳ୍ପନା ।

ଇଷ୍ଟ ଏକ ପବିତ୍ର ଭାବ, ଏହା କିଛି ଗୁପ୍ତ ବ୍ୟାପାର ନୁହେଁ; କିନ୍ତୁ କି ଅର୍ଥରେ ? ଅନ୍ୟ ନିକଟରେ ନିଜ ଇଷ୍ଟ କଥା କହିବେ ନାହିଁ କାହିଁକି ? କାରଣ ନିଜର ପ୍ରାଣର ବସ୍ତୁ ବୋଲି ତାହା ପରମ ପବିତ୍ର; ତାହାଦ୍ୱାରା ଅନ୍ୟର ସାହାଯ୍ୟ କରାଯାଇପାରେ; କିନ୍ତୁ ତାହା-ଦ୍ୱାରା ଯେ ଅପରର ଅନିଷ୍ଟ ନ ହେବ, ତାହା କିପରି ଜାଣିବା ? କୌଣସି ଲୋକର ପ୍ରକୃତି ଏପରି ହୋଇପାରେ ଯେ, ସେ ବ୍ୟକ୍ତିଭାବାପନ୍ନ ବା ସଗୁଣ ଈଶ୍ୱରଙ୍କର ଉପାସନା କରିପାରେ ନାହିଁ—ସେ କେବଳ ନିର୍ଗୁଣ ଈଶ୍ୱରଙ୍କର ନିଜ ଉଚ୍ଚତମ ସ୍ୱରୂପର ଉପାସନା କରିପାରେ । ମନେ କରନ୍ତୁ, ମୁଁ ତାହାକୁ ଆପଣମାନଙ୍କ ଭିତରେ ଛାଡ଼ି ଦେଲି ଏବଂ ସେ କହିବାକୁ ଲାଗିଲା —ବ୍ୟକ୍ତି-ଭାବାପନ୍ନ ବା ସଗୁଣ ଈଶ୍ୱର ବୋଲି କିଛି ନାହିଁ; କିନ୍ତୁ ତୁମର, ମୋର ସମସ୍ତଙ୍କ ମଧ୍ୟରେ ଆତ୍ମସ୍ୱରୂପ ଏକମାତ୍ର ଈଶ୍ୱର ଅଛନ୍ତି । ଆପଣମାନେ ଏଥିରେ ପ୍ରାଣରେ ଆଘାତ ପାଇବେ, ଚମକି ଉଠିବେ । ତାହାର ଏହି ଭାବ ପରମ ପବିତ୍ର ସତ; କିନ୍ତୁ ତାହା ଗୋପନ ରହିଲା ନାହିଁ ।

କୌଣସି ଶ୍ରେଷ୍ଠ ଧର୍ମ ବା ଶ୍ରେଷ୍ଠ ଆଚାର୍ଯ୍ୟ ଈଶ୍ୱରଙ୍କ ସତ୍ୟ ପ୍ରଚାର ପାଇଁ କେବେ-ହେଲେ ଗୁପ୍ତ ସମିତି ପ୍ରତିଷ୍ଠା କରନ୍ତି ନାହିଁ । ଭାରତରେ ଏଭଳି କୌଣସି ଗୁପ୍ତ ସମିତି ନାହିଁ । ଏସବୁ ପାଶ୍ଚାତ୍ୟ ଭାବ—ବର୍ତ୍ତମାନ ସେଗୁଡ଼ିକ ଭାରତ ଉପରେ ଚପେଇ ଦେବାର ଚେଷ୍ଟା ହେଉଛି ! ଆମେମାନେ ଏସବୁ ଗୁପ୍ତ ସମିତି ସମ୍ବନ୍ଧରେ କେତେବେଳେହେଲେ କିଛି ଜାଣି ନାହୁଁ । ଆଉ ଭାରତରେ ଏପରି ଗୁପ୍ତ ସମିତି ରହିବାର ପ୍ରୟୋଜନ ବା କଅଣ ? ଇଉରୋପରେ କୌଣସି ବ୍ୟକ୍ତିକୁ ଚର୍ଚ୍ଚ ମତର ବିରୋଧରେ କୌଣସି କଥା କହିବାକୁ ଦିଆ-ଯାଏ ନାହିଁ । ସେହି କାରଣରୁ ଗରିବ ବିଚରାମାନେ ନିଜ ମନୋମତ ଉପାସନା କରିବା ପାଇଁ ପାହାଡ଼, ଜଙ୍ଗଲରେ ଲୁଚି ଗୁପ୍ତ ସମିତି ଗଠନ କରିବାକୁ ବାଧ୍ୟ ହୋଇଥିଲେ ।

ଭାରତରେ କିନ୍ତୁ ଧର୍ମ ସମ୍ବନ୍ଧରେ ଭିନ୍ନ ମତ ଅବଲମ୍ବନ କରିବା ଯୋଗୁଁ କେବେ କାହା ଉପରେ ଅତ୍ୟାଚାର କରାଯାଏ ନାହିଁ । କେତେବେଳେହେଲେ କୌଣସି ଗୁପ୍ତ ଧର୍ମ-ସମିତି ନ ଥିଲା; ସୁତରାଂ ଏପରି କୌଣସି ଧାରଣା ଆପଣମାନେ ସମ୍ପୂର୍ଣ୍ଣ ଛାଡ଼ି ଦେବେ । ଏହିସବୁ ସମିତି ଭିତରେ ଦୋଷ ପଶି ଅତି ଭୟାବହ ବ୍ୟାପାରରେ ପରିଣତ ହୁଏ । ଏ ପୃଥିବୀକୁ ଯେତେ ଅଳ୍ପ ମୁଁ ଦେଖିଛି, ସେଥିରୁ ଯଥେଷ୍ଟ ଅଭିଜ୍ଞତା ଯାହା ରହିଛି, ସେଥିରୁ ମୁଁ ଜାଣେ, ଏସବୁ ଗୁପ୍ତ ସମିତି କେତେ ଅନିଷ୍ଟର ମୂଳ—କେତେ ସହଜରେ ଏଗୁଡ଼ିକ ବାଧାହୀନ ପ୍ରେମ-ସମିତି, ଭୂତ-ପ୍ରେତ ସମିତି ହୋଇ ଠିଆ ହୁଅନ୍ତି । ଅନ୍ୟ ନରନାରୀଙ୍କ ହାତରେ କଣ୍ଢେଇ ହୋଇ ନିଜର ଜୀବନଟିକୁ ଏବଂ ଭବିଷ୍ୟତରେ ମାନସିକ ଉନ୍ନତିର ସମ୍ଭାବନାକୁ ସମ୍ପୂର୍ଣ୍ଣ ନଷ୍ଟ କରିପକାନ୍ତି । ମୁଁ ଏସବୁ କହୁଛି ବୋଲି ଆପଣମାନଙ୍କ ଭିତରେ କେହି କେହି ମୋ ଉପରେ ଅସନ୍ତୁଷ୍ଟ ହୋଇପାରନ୍ତି; କିନ୍ତୁ ମୋତେ ସତ୍ୟ କହିବାକୁ ହେବ । ମୋର ସାରା ଜୀବନରେ ହୁଏତ ପାଞ୍ଚସାତ ଜଣ ଲୋକ ମୋ କଥା ଶୁଣି ଚାଲିବେ — କିନ୍ତୁ ଏହି କେତେଜଣ ଯେପରି ପବିତ୍ର, ଅକପଟ ଓ ଖାଣ୍ଟି ହୁଅନ୍ତି; ମୁଁ ଲୋକମାନଙ୍କର ଭିଡ଼ ଚାହେଁ ନାହିଁ । କେତେଗୁଡ଼ିଏ ଲୋକ ଜଡ଼ ହୋଇ କ'ଣ କରିବେ ? ମୁଷ୍ଟିମେୟ କେତେଜଣଙ୍କ ଦ୍ୱାରା ହିଁ ଜଗତର ଇତିହାସ ଗଠିତ ହୋଇଛି — ଅବଶିଷ୍ଟଗୁଡ଼ିକ ତ ଉଚ୍ଛୃଙ୍ଖଳ ଜନତା । ଏହିସବୁ ଗୁପ୍ତ ସମିତି ଓ ପ୍ରତାରଣାଭିବ ନରନାରୀଙ୍କୁ ଅପବିତ୍ର, ଦୁର୍ବଳ ଓ ସଂକୀର୍ଣ୍ଣ କରି ପକାଏ; ଦୁର୍ବଳ ବ୍ୟକ୍ତିର ଇଚ୍ଛାଶକ୍ତି ନାହିଁ, ସୁତରାଂ ସେ କେବେହେଲେ କୌଣସି କାର୍ଯ୍ୟ କରିପାରେ ନାହିଁ । ଅତଏବ ଗୁପ୍ତସମିତି ସଂସର୍ଗରେ ରହିବେ ନାହିଁ । ମନରେ ଏହିସବୁ ଭ୍ରାନ୍ତ ରହସ୍ୟପ୍ରିୟତା ଉଦୟ ହେବା ମାତ୍ରେ ଏକାବେଳକେ ନଷ୍ଟ କରି ପକାଇବାକୁ ହେବ । ଯେ ସାମାନ୍ୟ ପରିମାଣରେ ଅପବିତ୍ର, ସେ କେବେହେଲେ ଧାର୍ମିକ ହୋଇପାରେ ନାହିଁ । ପଚା ଘାଆକୁ ଫୁଲର ଆବରଣରେ ଢାଙ୍କି ରଖିବାର ଚେଷ୍ଟା କରିବେ ନାହିଁ । ଆପଣମାନେ କଅଣ ମନେକରନ୍ତି, ଭଗବାନଙ୍କୁ ଠକି ପାରିବେ ? କେହି ମଧ୍ୟ ପାରେ ନାହିଁ । ମୁଁ ଅକପଟ ନରନାରୀ ଚାହେଁ, ଈଶ୍ୱର ମୋତେ ଏହିସବୁ ଭୂତ, ଉଡ଼ନ୍ତୀଯାନ ଦେବତା ଓ ସଇତାନ-ମାନଙ୍କଠାରୁ ରକ୍ଷା କରନ୍ତୁ । ସାଧାସିଧା ଭଲ ମଣିଷ ହୁଅନ୍ତୁ ।

ଅନ୍ୟାନ୍ୟ ପ୍ରାଣୀପରି ଆମମାନଙ୍କ ଭିତରେ ମଧ୍ୟ ସହଜାତ ସଂସ୍କାର ବିଦ୍ୟମାନ । ଦେହର ଯେଉଁସବୁ କ୍ରିୟା ଆମ ଅଜ୍ଞାତସାରରେ ଆପେ ଆପେ ହୋଇଥାଏ, ସେସବୁ ଏହାର ଉଦାହରଣ । ଏହାଠାରୁ ଆମର ଆଉ ଏକ ଉଚ୍ଚତର ବୃତ୍ତି ରହିଛି—ତାହାକୁ ଯୁକ୍ତି ବା ବିଚାରବୁଦ୍ଧି କୁହାଯାଏ । ଏହି ବୁଦ୍ଧି ନାନା ବିଷୟ ଗ୍ରହଣ କରି ସେହି ସମସ୍ତ ଭିତରୁ ଗୋଟିଏ ସାଧାରଣ ସିଦ୍ଧାନ୍ତରେ ଉପନୀତ ହୁଏ । ଏହା ଅପେକ୍ଷା ଜ୍ଞାନର ଆହୁରି ଗୋଟିଏ ଉଚ୍ଚତର ଅବସ୍ଥା ଅଛି—ତାହାକୁ ପ୍ରାତିଭ-ଜ୍ଞାନ କୁହାଯାଏ । ସେଥିରେ ଆଉ ଯୁକ୍ତିବିଚାରର ପ୍ରୟୋଜନ ହୁଏ ନାହିଁ; କିନ୍ତୁ ସହସା ହୃଦୟରେ ଜ୍ଞାନର ବିକାଶ ହୋଇଥାଏ । ଏହା ହିଁ ଜ୍ଞାନର ଉଚ୍ଚତମ ଅବସ୍ଥା । କିନ୍ତୁ ସହଜାତ ସଂସ୍କାରଠାରୁ ଏହାର ପ୍ରଭେଦ କିପରି ବୁଝାଯାଇପାରେ ? ଏହା ହିଁ ମୁସ୍କିଲ୍ । ଆଜିକାଲି ପ୍ରତ୍ୟେକେ ଆପଣଙ୍କ ନିକଟକୁ ଆସି କହିବେ, 'ମୁଁ ପ୍ରାତିଭ ବା ଦିବ୍ୟଜ୍ଞାନ

ଲାଭ କରିଛି'; ସେ ପୁଣି ଅଲୌକିକ ଦାବି ଉପସ୍ଥାପିତ କରି କହିବେ, 'ମୁଁ ଦିବ୍ୟପ୍ରେରଣା ଲାଭ କରିଛି, ମୋ ସକାଶେ ଗୋଟିଏ ବେଦୀ ନିର୍ମାଣ କରିଦିଅ; ମୋ ନିକଟକୁ ଆସି ସମସ୍ତେ ସ୍ଥିର, ନିଶ୍ଚଳ ହୁଅ ଓ ମୋର ପୂଜା କର ।'

ଦିବ୍ୟପ୍ରେରଣା ଓ ପ୍ରତାରଣା ମଧ୍ୟରେ ପାର୍ଥକ୍ୟ କିପରି ବୁଝାଯିବ ? ପ୍ରଥମତଃ ଦିବ୍ୟ-ଜ୍ଞାନ କେବେହେଲେ ଯୁକ୍ତିବିରୋଧୀ ହେବ ନାହିଁ । ବୃଦ୍ଧାବସ୍ଥା ଶୈଶବର ବିରୋଧୀ ନୁହେଁ, ଏହାର ବିକାଶ ମାତ୍ର । ଠିକ୍ ସେହିପରି ଆମେ ଯାହାକୁ ପ୍ରାତିଭ ବା ଦିବ୍ୟଜ୍ଞାନ କହୁ, ତାହା ଯୁକ୍ତି-ବିଚାର-ଜନିତ ଜ୍ଞାନର ବିକାଶ ମାତ୍ର । ଯୁକ୍ତିବିଚାର ଭିତର ଦେଇ ହିଁ ଦିବ୍ୟଜ୍ଞାନରେ ପହଞ୍ଚିବାକୁ ହୁଏ । ଦିବ୍ୟଜ୍ଞାନ କେବେହେଲେ ଯୁକ୍ତିର ବିରୋଧୀ ହେବ ନାହିଁ—ଯଦି ହୁଏ, ତେବେ ତାହାକୁ ଟାଣି ଦୂରକୁ ଫିଙ୍ଗିଦିଅ । ଆପଣଙ୍କ ଅଜ୍ଞାତରେ ଦେହର ସ୍ୱାଭାବିକ ସହଜାତ ଗତିଗୁଡ଼ିକ ତ ଯୁକ୍ତିର ବିରୋଧିତା କରେ ନାହିଁ । ରାସ୍ତା ପାର ହେବା ସମୟରେ ଯେପରି ଗାଡ଼ିଚାପରେ ନ ପଡ଼ିବାକୁ ହୁଏ, ସେଥିପାଇଁ ଅଜ୍ଞାତସାରରେ ଆପଣଙ୍କ ଦେହର ଗତି କିପରି ହୋଇଥାଏ ? ଆପଣଙ୍କ ମନ କିଅଣ କହେ, ଦେହକୁ ଏହିପରି ରକ୍ଷା କରିବା ନିର୍ବୋଧର କାର୍ଯ୍ୟ ହୋଇଛି ? କେବେହେଲେ କୁହେ ନାହିଁ । ପ୍ରକୃତ ପ୍ରେରଣା କଦାପି ଯୁକ୍ତିର ବିରୋଧୀ ହୁଏନାହିଁ । ଯଦି ହୁଏ, ତେବେ ଏହା ପ୍ରେରଣା ନୁହେଁ, ପ୍ରତାରଣା । ଦ୍ୱିତୀୟତଃ, ଏହି ଦିବ୍ୟ ପ୍ରେରଣା ସମସ୍ତଙ୍କର କଲ୍ୟାଣକର ହେବା ଉଚିତ । ନାମ, ଯଶ ବା ବ୍ୟକ୍ତିଗତ ଲାଭ ଯେପରି ଏହାର ଉଦ୍ଦେଶ୍ୟ ନ ହୁଏ । ତାହାଦ୍ୱାରା ସର୍ବଦା ଜଗତର—ସମଗ୍ର ମାନବର—କଲ୍ୟାଣ ହିଁ ହେବ । ଦିବ୍ୟ ପ୍ରେରଣା ସମ୍ପୂର୍ଣ୍ଣ ନିଃସ୍ୱାର୍ଥ ହେବ । ଯଦି ଏହି ଲକ୍ଷଣଗୁଡ଼ିକ ମିଳିଯାଏ, ତେବେ ଅନାୟାସରେ ତାହାକୁ ଦିବ୍ୟ ବା ପ୍ରାତିଭ ଜ୍ଞାନ ବୋଲି ଗ୍ରହଣ କରିପାରନ୍ତି । ସର୍ବଦା ସ୍ମରଣ ରଖିବାକୁ ହେବ, ଜଗତର ବର୍ତ୍ତମାନ ଅବସ୍ଥାରେ ଦଶ ଲକ୍ଷ ମଧ୍ୟରୁ ଜଣକର ସୁଦ୍ଧା ଏପରି ଦିବ୍ୟଜ୍ଞାନ ଲାଭ ହେବ କି ନା ସନ୍ଦେହ । ମୁଁ ଆଶା କରେ, ଏହିପରି ଲୋକଙ୍କ ସଂଖ୍ୟା ବୃଦ୍ଧି-ପ୍ରାପ୍ତ ହେବ ଏବଂ ଆପଣମାନେ ପ୍ରତ୍ୟେକେ ଏପରି ଦିବ୍ୟପ୍ରେରଣାସମ୍ପନ୍ନ ହେବେ । ଏବେ ତ ଆମେମାନେ ଧର୍ମକୁ ନେଇ ପିଲାଖେଳ କରୁଛୁ ମାତ୍ର । ଏହି ଦିବ୍ୟପ୍ରେରଣା ହେଲେ ହିଁ ଆମମାନଙ୍କର ଯଥାର୍ଥ ଧର୍ମ ଆରମ୍ଭ ହେବ । ସେଣ୍ଟପଲ୍ ଯେପରି କହିଥିଲେ—ବର୍ତ୍ତମାନ ଆମେ-ମାନେ ଅସ୍ୱଚ୍ଛ କାଚ ଭିତର ଦେଇ ଅସ୍ପଷ୍ଟଭାବେ ଦେଖୁଛେ; କିନ୍ତୁ ସେତେବେଳେ ମୁହାମୁହିଁ ଦେଖିବା । ଜଗତର ବର୍ତ୍ତମାନ ଅବସ୍ଥାରେ ଏଭଳି ଲୋକଙ୍କ ସଂଖ୍ୟା ଅତିବିରଳ ।

କିନ୍ତୁ ବର୍ତ୍ତମାନ ଯେପରି ଜଗତରେ 'ମୁଁ ଦିବ୍ୟଜ୍ଞାନ ଲାଭ କରିଛି' ବୋଲି ମିଥ୍ୟା ଦାବି ଶୁଣାଯାଏ, ଏପରି ଆଉ କେତେବେଳେ ଶୁଣା ଯାଇନାହିଁ ଏବଂ ଲୋକେ କହିଥାନ୍ତି, ସ୍ତ୍ରୀ-ଲୋକମାନଙ୍କର ଦିବ୍ୟ-ପ୍ରେରଣାଶକ୍ତି ରହିଛି ଏବଂ ପୁରୁଷମାନେ ଯୁକ୍ତି-ବିଚାର ମଧ୍ୟ ଦେଇ ଧୀରେ ଧୀରେ ଉନ୍ନତ ହେଉଛନ୍ତି । ଏସବୁ ବାଜେ କଥାରେ ବିଶ୍ୱାସ କରିବେ ନାହିଁ । ଦିବ୍ୟପ୍ରେରଣାସମ୍ପନ୍ନା ନାରୀ ଯେତେ ଅଛନ୍ତି, ପୁରୁଷ ମଧ୍ୟ ସେତେ ଅଛନ୍ତି । ଅବଶ୍ୟ ସ୍ତ୍ରୀ-ଲୋକମାନଙ୍କର ବିଶେଷତ୍ୱ ଏହି ଯେ, ସେମାନଙ୍କ ଭିତରେ ବିଶେଷ ପ୍ରକାର ମୂର୍ଚ୍ଛା ଓ ସ୍ନାୟୁ-ରୋଗ ବେଶୀ । ଜୁଆଚୋର ଓ ଠକ ପାଖରେ ପ୍ରତାରିତ ହେବା ଅପେକ୍ଷା ଘୋର ଅବିଶ୍ୱାସୀ

ରହି ମରିବା ଭଲ । ବ୍ୟବହାର କରିବା ଲାଗି ଆପଣଙ୍କୁ ବିଚାରଶକ୍ତି ଦିଆଯାଇଛି; ଦେଖାନ୍ତୁ, ଆପଣ ଏହାର ଯଥାର୍ଥ ବ୍ୟବହାର କରୁଛନ୍ତି । ଏଭଳି କଲେ ପରେ ତାହା ଅପେକ୍ଷା ଉଚ୍ଚତର ବିଷୟରେ ହାତ ଦେଇପାରିବେ । ଏହି ଭାବ ସମଗ୍ର ଜାତିକୁ ସ୍ନାୟୁଦୁର୍ବଳ କରେ, ସ୍ନାୟୁ ଓ ମସ୍ତିଷ୍କକୁ ଦୁର୍ବଳ କରେ—ସର୍ବଦା ଗୋଟିଏ ଭୂତ ବା ଅଦ୍ଭୁତ ବ୍ୟାପାର ଦେଖିବାର ପିପାସା ଜଗାଇ ଦିଏ । ଏହିସବୁ ଅଜବ ଗଳ୍ପଗୁଡ଼ିକ ସ୍ନାୟୁମଣ୍ଡଳୀକୁ ଅସ୍ୱାଭାବିକ ଭାବରେ ବିକୃତ କରେ । ଏଥିରେ ସମଗ୍ର ଜାତି ଧୀରେ ଧୀରେ ଅଥଚ ନିଶ୍ଚିତରୂପେ ସ୍ନାୟୁଦୁର୍ବଳ ହୋଇପଡ଼େ ।

ଆମମାନଙ୍କୁ ସର୍ବଦା ମନେ ରଖିବାକୁ ହେବ ଯେ, ଈଶ୍ୱର ପ୍ରେମସ୍ୱରୂପ—ସେ ଏସବୁ ଅଦ୍ଭୁତ ଘଟଣା ଭିତରେ ନାହାନ୍ତି । 'ତ୍ୟକ୍ତ୍ୱା ଜାହ୍ନବୀତୀରେ କୂପଂ ଖନତି ଦୁର୍ମତିଃ ।'— ମୂର୍ଖ ସେ, ଯିଏ ଗଙ୍ଗା ତୀରରେ ବାସ କରି ପାଣି ପାଇଁ ଗୋଟାଏ କୂଅ ଖୋଳିବାକୁ ଯାଏ । ମୂର୍ଖ ସେ, ଯେ ହୀରାଖଣି ନିକଟରେ ରହି କାଚଖଣ୍ଡର ଅନ୍ୱେଷଣରେ ଜୀବନ ଅତିବାହିତ କରେ । ଈଶ୍ୱର ହିଁ ସେହି ହୀରକ-ଖଣି । ଆମେମାନେ ଭୂତର ଅଥବା ଏପରି ସମୁଦାୟ ଉଡ଼ନ୍ତା ପରୀର ଗଳ୍ପପ୍ରତି ବୃଥା ଆସକ୍ତ ହୋଇ ଭଗବାନଙ୍କୁ ତ୍ୟାଗ କରୁଛୁ—ଏହା ବାସ୍ତବିକ ଆମର ମୂର୍ଖତା ।

ଈଶ୍ୱର, ପବିତ୍ରତା ଆଧ୍ୟାତ୍ମିକତା ପ୍ରଭୃତି ଛାଡ଼ି ଏହିସବୁ ବୃଥା ବିଷୟ ପ୍ରତି ସାବଧାନ ହେବା ଅବନତିର ଲକ୍ଷଣ । ଅନ୍ୟର ମନୋଭାବ ଜାଣିବା ! ପାଞ୍ଚ ମିନିଟ୍‌କରି ଯଦି ମୋତେ ପ୍ରତ୍ୟେକଙ୍କର ମନୋଭାବ ଜାଣିବାକୁ ହୁଏ, ତା'ହେଲେ ତ ମୁଁ ପାଗଳ ହୋଇଯିବି । ତେଜସ୍ୱୀ ହୁଅନ୍ତୁ, ନିଜ ପାଦରେ ନିଜେ ଠିଆ ହୋଇ ପ୍ରେମର ଭଗବାନଙ୍କୁ ଅନ୍ୱେଷଣ କରନ୍ତୁ । ଏହା ହିଁ ଶ୍ରେଷ୍ଠ ଶକ୍ତି । ପବିତ୍ରତାର ଶକ୍ତି ଅପେକ୍ଷା ଅନ୍ୟ କେଉଁ ଶକ୍ତି ବଡ଼ ? ପ୍ରେମ ଓ ପବିତ୍ରତା ହିଁ ଜଗତ ଶାସନ କରୁଛି । ଦୁର୍ବଳ ବ୍ୟକ୍ତି କେବେହେଲେ ଏହି ଭଗବତ୍-ପ୍ରେମ ଲାଭ କରି-ପାରେ ନାହିଁ; ତେଣୁ ଶାରୀରିକ, ମାନସିକ, ନୈତିକ ବା ଆଧ୍ୟାତ୍ମିକ କୌଣସି ଦିଗରୁ ଦୁର୍ବଳ ହେବେ ନାହିଁ । ଏହିସବୁ ଭୂତପ୍ରେତର କାଣ୍ଡ କେବଳ ନିଜକୁ ଦୁର୍ବଳ କରିପକାଏ । ଅତଏବ ସେଗୁଡ଼ିକୁ ପରିତ୍ୟାଗ କରିବାକୁ ହେବ । ଈଶ୍ୱର ହିଁ ଏକମାତ୍ର ସତ୍ୟ—ଅନ୍ୟ ସମସ୍ତ ଅସତ୍ୟ ଅନିତ୍ୟ । ଈଶ୍ୱରଲାଭ ପାଇଁ ସମୁଦାୟ ମିଥ୍ୟା ତ୍ୟାଗ କରିବାକୁ ହେବ । 'ଅସାର, ଅସାର— ସମସ୍ତ ହିଁ ଅସାର—କେବଳ ଈଶ୍ୱରଙ୍କୁ ଭଲପାଇବା ଓ ତାଙ୍କର ସେବା କରିବା ଛଡ଼ା ଆଉ ସବୁ ହିଁ ମିଥ୍ୟା ।'[୧]

---

୧ Imitation of Christ, Ch. I

# ଗୌଣୀ ଓ ପରାଭକ୍ତି

[ ନ୍ୟୁୟର୍କର ମ୍ୟାଡସନ୍ ସ୍କୋୟାର କନସର୍ଟ ହଲ୍‌ରେ ୧୮୯୬ ଖ୍ରୀ: ୯ ଫେବୃଆରରେ ପ୍ରଦତ୍ତ ବକ୍ତୃତା—'Preparatory and Supreme Bhakti'ର ଅନୁବାଦ । ]

ଗୋଟିଏ ଦୁଇଟି ବ୍ୟତୀତ ପ୍ରାୟ ପ୍ରତ୍ୟେକ ଧର୍ମରେ ବ୍ୟକ୍ତିଭାବାପନ୍ନ ବା ସଗୁଣ ଈଶ୍ୱରଙ୍କଠାରେ ବିଶ୍ୱାସ ଦେଖିବାକୁ ମିଳେ । ବୌଦ୍ଧ ଓ ଜୈନଧର୍ମ ବ୍ୟତୀତ ବୋଧହୁଏ ଜଗତର ସମସ୍ତ ଧର୍ମରେ ସଗୁଣ ଈଶ୍ୱରଙ୍କର ଧାରଣା ରହିଛି ଏବଂ ସଗୁଣ ଈଶ୍ୱର ମାନିବା ସଙ୍ଗେ ସଙ୍ଗେ ଭକ୍ତି ଓ ଉପାସନାର ଭାବ ଆସିଥାଏ । ବୌଦ୍ଧ ଓ ଜୈନମାନେ ଯଦ୍ୟପି ସଗୁଣ ଈଶ୍ୱରଙ୍କର ଉପାସନା କରନ୍ତି ନାହିଁ, କିନ୍ତୁ ଅନ୍ୟାନ୍ୟ ଧର୍ମାବଲମ୍ବୀମାନେ ଯେଉଁ ଭାବରେ ସଗୁଣ ଈଶ୍ୱରଙ୍କର ଉପାସନା କରିଥାନ୍ତି, ବୌଦ୍ଧ ଓ ଜୈନମାନେ ମଧ୍ୟ ଠିକ୍ ସେହି ଭାବରେ ନିଜ ନିଜ ଧର୍ମର ପ୍ରତିଷ୍ଠାତାଗଣଙ୍କର ପୂଜା କରିଥାଆନ୍ତି ।

କୌଣସି ଉଚ୍ଚତର ପୁରୁଷଙ୍କୁ ଭଲ ପାଇବାକୁ ହୁଏ; ସିଏ ପୁଣି ମନୁଷ୍ୟମାନଙ୍କୁ ଭଲ ପାଇପାରନ୍ତି—ଭକ୍ତି ଓ ଉପାସନା କରିବାର ଏହି ଭାବ ସାର୍ବଜନୀନ । ନାନାବିଧ ଧର୍ମର ବିଭିନ୍ନ ସ୍ତରରେ ଏହି ଭକ୍ତି ଓ ଉପାସନାର ଭାବ ବିଭିନ୍ନ ପରିମାଣରେ ବିକଶିତ ଦେଖିବାକୁ ମିଳେ । ସାଧନାର ନିମ୍ନତମ ସ୍ତର ବାହ୍ୟ-ଅନୁଷ୍ଠାନ-ବହୁଳ—ସେହି ଅବସ୍ଥାରେ ସୂକ୍ଷ୍ମ ଧାରଣା ଏକପ୍ରକାର ଅସମ୍ଭବ; ସୁତରାଂ ମନୁଷ୍ୟ ସୂକ୍ଷ୍ମ ଭାବଗୁଡ଼ିକୁ ନିମ୍ନତମ ସ୍ତରକୁ ଟାଣିଆଣି ସ୍ଥୂଳ ଆକାରରେ ପରିଣତ କରିବାକୁ ଚାହେଁ । ସେହି ଅବସ୍ଥାରୁ ନାନାବିଧ ଅନୁଷ୍ଠାନ, କ୍ରିୟାପଦ୍ଧତି ଏବଂ ସଙ୍ଗେ ସଙ୍ଗେ ନାନାବିଧ ପ୍ରତୀକ ମଧ୍ୟ ଆସିଥାଏ । ଜଗତର ଇତିହାସ ଆଲୋଚନା କଲେ ସର୍ବତ୍ର ଦେଖିବାକୁ ମିଳେ ଯେ, ମାନବ ପ୍ରତୀକ ବା ବିଭିନ୍ନ ଭାବପ୍ରକାଶକ ଆକୃତି ମାଧ୍ୟମରେ ସୂକ୍ଷ୍ମକୁ ଧରିବାର ଚେଷ୍ଟା କରୁଛି । ଧର୍ମର ବାହ୍ୟ ଅଙ୍ଗ—ଘଣ୍ଟା, ସଙ୍ଗୀତ, ଶାସ୍ତ୍ର, ପ୍ରତିମା, ଅନୁଷ୍ଠାନ ପ୍ରଭୃତି ଏହି ପର୍ଯ୍ୟାୟଭୁକ୍ତ । ଯାହାକିଛି ଇନ୍ଦ୍ରିୟଗୁଡ଼ିକର ପ୍ରୀତିପ୍ରଦ, ଯାହାକିଛି ଅମୂର୍ତ୍ତ ଭାବକୁ ମୂର୍ତ୍ତ କରିବାରେ ସହାୟତା କରେ, ତାହାକୁ ହିଁ ମନୁଷ୍ୟ ଉପାସନା ଉଦ୍ଦେଶ୍ୟରେ କାର୍ଯ୍ୟରେ ଲଗାଏ ।

ସମୟ ସମୟରେ ସମସ୍ତ ଧର୍ମରେ ସଂସ୍କାରକଗଣ ଆବିର୍ଭୂତ ହୋଇ ସର୍ବପ୍ରକାର ଅନୁଷ୍ଠାନ ଓ ପ୍ରତୀକ ବିରୋଧରେ ଠିଆହୋଇଛନ୍ତି; କିନ୍ତୁ ସେମାନଙ୍କ ଚେଷ୍ଟା ବ୍ୟର୍ଥ ହୋଇଅଛି; କାରଣ ମାନବ ଯେତେଦିନ ବର୍ତ୍ତମାନ ଅବସ୍ଥାରେ ଥିବ, ସେତେଦିନ ଅଧିକାଂଶ ମାନବ ଏପରି କିଛି ସ୍ଥୂଳ ମୂର୍ତ୍ତିବସ୍ତୁକୁ ଧରି ରହିବାକୁ ଚାହିଁବେ; ଯାହା ସେମାନଙ୍କ ଭାବରାଶିର ଆଧାରସ୍ୱରୂପ ହୋଇପାରେ—ଏପରି କିଛି ଚାହିଁବେ, ଯାହା ସେମାନଙ୍କ ଅନ୍ତରସ୍ଥ ଭାବମୟୀ ମୂର୍ତ୍ତିଗୁଡ଼ିକର କେନ୍ଦ୍ର ହେବ । ମୁସଲମାନ ଓ ପ୍ରୋଟେଷ୍ଟାଣ୍ଟମାନେ ସମସ୍ତପ୍ରକାର ଅନୁଷ୍ଠାନ-ପଦ୍ଧତି ଉଠାଇଦେବା ଉଦ୍ଦେଶ୍ୟରେ ସେମାନଙ୍କର ପ୍ରଭୂତ ଚେଷ୍ଟା ନିୟୋଜିତ କରିଛନ୍ତି । କିନ୍ତୁ ଆମେମାନେ ଦେଖିବାକୁ ପାଉ ଯେ, ସେମାନଙ୍କ ଭିତରେ ମଧ୍ୟ ଅନୁଷ୍ଠାନ-ପଦ୍ଧତି ଧୀରେ ଧୀରେ ପ୍ରବେଶ କରିଛି ।

ଏଗୁଡ଼ିକର ପ୍ରବେଶ ନିବାରଣ କରାଯାଏ ନାହିଁ । ଅନୁଷ୍ଠାନପଦ୍ଧତି ବିରୋଧରେ ଦୀର୍ଘ ସଂଗ୍ରାମ କରି ଜନସାଧାରଣ ଗୋଟିଏ ପ୍ରତୀକ ପରିବର୍ତ୍ତେ ଅନ୍ୟ ଗୋଟିଏ ଗ୍ରହଣ କରନ୍ତି ମାତ୍ର । ଜଣେ ମୁସଲମାନ ଅଣମୁସଲମାନର ଅନୁଷ୍ଠିତ ପ୍ରତିଟି କ୍ରିୟାକଲାପ ଓ ବ୍ୟବହୃତ ପ୍ରତ୍ୟେକଟି ମୂର୍ତ୍ତିକୁ ପାପ ବୋଲି ମନେକରେ; କିନ୍ତୁ ତାହାର ନିଜର କାବା ମନ୍ଦିର ସମ୍ପର୍କରେ ସେ ଆଉ ଏପରି ମନେ କରେ ନାହିଁ । ପ୍ରତ୍ୟେକ ଧାର୍ମିକ ମୁସଲମାନଙ୍କୁ ନମାଜ ସମୟରେ ଭାବିବାକୁ ହୁଏ ଯେ, ସେ କାବା ମନ୍ଦିରରେ ରହିଛନ୍ତି ଏବଂ ସେଠାକୁ ତୀର୍ଥ କରିବାକୁ ଗଲେ, ତାହାକୁ ସେହି ମନ୍ଦିରର କାନ୍ଥରେ ଥିବା 'କୃଷ୍ଣପ୍ରସ୍ତର'ଟିକୁ ଚୁମ୍ବନ କରିବାକୁ ହୁଏ, ତାହାର ବିଶ୍ୱାସ— ଏହି କୃଷ୍ଣ ପ୍ରସ୍ତରରେ ମୁଦ୍ରିତ ଲକ୍ଷ ଲକ୍ଷ ତୀର୍ଥଯାତ୍ରୀଙ୍କ ଚୁମ୍ବନ-ଚିହ୍ନଗୁଡ଼ିକ ବିଶ୍ୱାସୀଗଣଙ୍କର କଲ୍ୟାଣ ଲାଗି ଶେଷ ବିଚାର ଦିନରେ ସାକ୍ଷ୍ୟ ଦେବେ । ତା'ପରେ ଆହୁରି 'ଜମ୍‌ଜମ୍' କୂପ ମଧ୍ୟ ଅଛି । ମୁସଲମାନମାନେ ବିଶ୍ୱାସ କରନ୍ତି, ସେହି କୂପ ମଧ୍ୟରୁ ଯେକୌଣସି ବ୍ୟକ୍ତି ଜଳ ଉତ୍ତୋଳନ କରିବ, ତାହାର ପାପ କ୍ଷମା କରାହେବ ଏବଂ ପୁନରୁତ୍ଥାନ ପରେ ନୂତନ ଶରୀର ଲାଭ କରି ସେ ଅମର ହୋଇ ରହିବ ।

ଅନ୍ୟାନ୍ୟ ଧର୍ମରେ ଦେଖିବାକୁ ମିଳେ, ପ୍ରତୀକ ଗୋଟିଏ ଗୃହର ରୂପ ଧାରଣ କରି ପ୍ରବେଶ କରିଛି । ପ୍ରୋଟେଷ୍ଟାଣ୍ଟମାନଙ୍କ ମତରେ ଅନ୍ୟାନ୍ୟ ସ୍ଥାନ ଅପେକ୍ଷା ଗୀର୍ଜା ଅଧିକତର ପବିତ୍ର । ସେମାନଙ୍କ ପକ୍ଷରେ ଏହି ଗୀର୍ଜା ଗୋଟିଏ ପ୍ରତୀକ ମାତ୍ର । ତା'ପରେ ଅଛି ଶାସ୍ତ୍ରଗ୍ରନ୍ଥ । ଅନେକଙ୍କର ଧାରଣା, ଅନ୍ୟାନ୍ୟ ପ୍ରତୀକ ଅପେକ୍ଷା ଶାସ୍ତ୍ର ପବିତ୍ରତାର ପ୍ରତୀକ । କ୍ୟାଥଲିକ୍‌ମାନେ ଯେପରି ସାଧୁଗଣଙ୍କର ମୂର୍ତ୍ତିପୂଜା କରନ୍ତି, ପ୍ରୋଟେଷ୍ଟାଣ୍ଟମାନେ ସେହିପରି କ୍ରୁଶକୁ ଭକ୍ତି କରିଥାଆନ୍ତି । ପ୍ରତୀକୋପାସନା ବିରୋଧରେ ପ୍ରଚାର କରିବା ବୃଥା; ପୁଣି କାହିଁକି ବା ଆମେମାନେ ତାହା ବିରୋଧରେ ପ୍ରଚାର କରିବା ? ମଣିଷ ଏହିସବୁ ପ୍ରତୀକ ଉପାସନା କରିପାରିବ ନାହିଁ, ଏହାର ତ କୌଣସି ଯୁକ୍ତି ନାହିଁ । ପ୍ରତୀକ ପଛରେ ଉଦ୍ଦିଷ୍ଟ ବସ୍ତୁର ପ୍ରତିନିଧିରୂପେ ହିଁ ମଣିଷ ଏସବୁକୁ ବ୍ୟବହାର କରିଥାଏ । ଏହି ବିଶ୍ୱ ମଧ୍ୟ ଗୋଟିଏ ପ୍ରତୀକ । ତାହା ଭିତର ଦେଇ— ତାହାର ସାହାଯ୍ୟ ଦ୍ୱାରା—ଆମେ, ଏହାର ଅନ୍ତରାଳରେ ଅବସ୍ଥିତ, ତାହାଦ୍ୱାରା ଲକ୍ଷିତ ବସ୍ତୁକୁ ଧରିବାର ଚେଷ୍ଟା କରୁଛୁ । ମନୁଷ୍ୟର ନିମ୍ନତର ପ୍ରକୃତି ହିଁ ଏହା, ସେ ଏକାଥରକେ ଜଗତକୁ ଅତିକ୍ରମ କରିପାରେନା, ସୁତରାଂ ତାକୁ ବାଧ୍ୟ ହୋଇ ପ୍ରତୀକ ଅବଲମ୍ବନ ମାଧ୍ୟମରେ ଜଗଦତୀତ ବସ୍ତୁକୁ ଧରିବାକୁ ହୁଏ । ସଙ୍ଗେ ସଙ୍ଗେ ଏହା ମଧ୍ୟ ସତ୍ୟ ଯେ, ଆମେ ପ୍ରତୀକର ଲକ୍ଷ୍ୟ ବସ୍ତୁକୁ ଜଡ଼ଜଗତ ଅତିକ୍ରମ କରି ସେହି ଆଧ୍ୟାତ୍ମିକ ତତ୍ତ୍ୱକୁ ଧରିବା ପାଇଁ ସବୁବେଳେ ଚେଷ୍ଟା କରୁଛୁ । ଆମର ଚରମ ଲକ୍ଷ୍ୟ ଚୈତନ୍ୟ—ଜଡ଼ ନୁହେଁ । ଘଣ୍ଟା, ପ୍ରଦୀପ, ମୂର୍ତ୍ତି, ଶାସ୍ତ୍ର, ଗୀର୍ଜା, ମନ୍ଦିର, ଅନୁଷ୍ଠାନ ଏବଂ ଅନ୍ୟାନ୍ୟ ପବିତ୍ର ପ୍ରତୀକସମୂହ ଖୁବ୍ ଭଲ ସତ, ଧର୍ମରୂପକ ଗଛଟିର ବୃଦ୍ଧି ପକ୍ଷରେ ଖୁବ ସାହାଯ୍ୟକାରୀ ସତ, କିନ୍ତୁ ଏହି ପର୍ଯ୍ୟନ୍ତ; ତାହାଠାରୁ ଅଧିକ ଆଉ କୌଣସି ଉପଯୋଗିତା ନାହିଁ । ଅଧିକାଂଶ ସ୍ଥଳରେ ଆମେ ଦେଖିବାକୁ ପାଉ, ଗଛଟି ଆଉ ବଢୁନାହିଁ । କୌଣସି ଏକ ଧର୍ମସମ୍ପ୍ରଦାୟ ମଧ୍ୟରେ ଜନ୍ମ ନେବା ଭଲ, କିନ୍ତୁ ସେଥିରେ ସୀମାବଦ୍ଧ ରହି ମରିବା ଭଲ ନୁହେଁ । ଏପରି ସମାଜ ବା ସମ୍ପ୍ରଦାୟରେ ଜନ୍ମ ନେବା ଭଲ,

ଯାହା ଭିତରେ କେତେଗୁଡ଼ିଏ ନିର୍ଦ୍ଦିଷ୍ଟ ସାଧନ-ପ୍ରଣାଳୀ ପ୍ରଚଳିତ; ଏଗୁଡ଼ିକ ଧର୍ମରୂପକ ଗୃହ-ଗଛଟି ବଡ଼ ହେବାରେ ସାହାଯ୍ୟ କରିବେ; କିନ୍ତୁ ଯଦି କୌଣସି ବ୍ୟକ୍ତି ଏ ସମସ୍ତ ଅନୁଷ୍ଠାନ ଭିତରେ ନିବଦ୍ଧ ଥାଇ ମରିଯାଏ, ତେବେ ନିଶ୍ଚୟ ପ୍ରମାଣିତ ହୁଏ ଯେ, ତାହାର ଉନ୍ନତି ହୋଇ ନାହିଁ, ତାହାର ଆତ୍ମାର ବିକାଶ ହୋଇ ନାହିଁ ।

ସୁତରାଂ ଯଦି କେହି କହେ, ଏ ସମସ୍ତ ପ୍ରତୀକ ଓ ଅନୁଷ୍ଠାନ-ପଦ୍ଧତି ଚିରକାଳ ପାଇଁ ରଖିବାକୁ ହେବ, ତେବେ ସେ ଭ୍ରାନ୍ତ; କିନ୍ତୁ ଯଦି ସେ କହେ, ଏଗୁଡ଼ିକ ସାଧକର ନିମ୍ନତମ ଅବସ୍ଥାରେ ଆତ୍ମାର ଉନ୍ନତିର ସହାୟକ, ତେବେ ସେ ଠିକ୍ କହୁଛି । ଏଠାରେ ମୁଁ ଆଉ ଗୋଟିଏ କଥା କହିବାକୁ ଚାହେଁ ଯେ, ଆତ୍ମାର ଉନ୍ନତି କହିଲେ, ଆପଣମାନେ ଯେପରି ବୁଦ୍ଧିବୃତ୍ତିର ଉନ୍ନତି ବୋଲି ନ ବୁଝନ୍ତି । କୌଣସି ବ୍ୟକ୍ତିର ପ୍ରଭୂତ ବୁଦ୍ଧି ଥାଇପାରେ; କିନ୍ତୁ ଆଧ୍ୟାତ୍ମିକ ବିଷୟରେ ସେ ହୁଏତ ଶିଶୁମାତ୍ର ବା ତଦପେକ୍ଷା ନିକୃଷ୍ଟ । ଆପଣମାନେ ବର୍ତ୍ତମାନ ଏହା ପରୀକ୍ଷା କରି ଦେଖିପାରନ୍ତି । ବୁଦ୍ଧି ଦିଗରୁ ଆପଣମାନେ ସମସ୍ତେ ସର୍ବବ୍ୟାପୀ ଈଶ୍ୱରଙ୍କଠାରେ ବିଶ୍ୱାସ କରିବାକୁ ଶିକ୍ଷା ପାଇଛନ୍ତି; କିନ୍ତୁ ସର୍ବବ୍ୟାପୀ କହିଲେ କଅଣ ବୁଝାଏ, ଆପଣମାନଙ୍କ ଭିତରୁ କେତେଜଣ ଏହାର କୌଣସି ପ୍ରକାର ଧାରଣା କରିପାରନ୍ତି କି ? ଯଦି ଖୁବ୍ ଚେଷ୍ଟା କରନ୍ତି, ତେବେ ହୁଏତ ଆକାଶ ବା ଗୋଟିଏ ବିରାଟ ସବୁଜପ୍ରାନ୍ତର ଅଥବା ସମୁଦ୍ର ବା ମରୁ-ଭୂମିର ଭାବ ମନରେ ଆଣିପାରନ୍ତି—ଅବଶ୍ୟ ଯଦି ଶେଷ ଦୁଇଟି ଆପଣ ଦେଖିଥାଆନ୍ତି । ଏଗୁଡ଼ିକ ସବୁ ଜଡ଼ ପ୍ରତିମୂର୍ତ୍ତି ଏବଂ ଯେତେଦିନ ପର୍ଯ୍ୟନ୍ତ ଆପଣମାନେ ସୂକ୍ଷ୍ମକୁ ସୂକ୍ଷ୍ମରୂପେ, ଆଦର୍ଶକୁ ଆଦର୍ଶରୂପେ ଭାବିପାରନ୍ତି, ସେତେଦିନ ପର୍ଯ୍ୟନ୍ତ ଏ ସମସ୍ତ ଜଡ଼ ବସ୍ତୁର ପ୍ରତିମୂର୍ତ୍ତିର ସହାୟତା ଆପଣମାନଙ୍କୁ ଗ୍ରହଣ କରିବାକୁ ହେବ । ଏହି ଜଡ଼ ମୂର୍ତ୍ତିଗୁଡ଼ିକ ଆମମାନଙ୍କ ମନ ଭିତରେ ଅଥବା ବାହାରେ ଥାଉ, ସେଥିରେ କିଛି ଯାଏ ଆସେ ନା । ଆପଣମାନେ ସମସ୍ତେ ଜନ୍ମଗତ ଭାବେ ପୌତ୍ତଳିକ ଏବଂ ପୌତ୍ତଳିକତା ଭଲ । କାରଣ ତାହା ମାନବର ପ୍ରକୃତିଗତ । କିଏ ଏହା ଅତିକ୍ରମ କରିପାରିବ ? କେବଳ ସିଦ୍ଧ ଓ ଦେବ-ମାନବଗଣ ହିଁ ପାରନ୍ତି । ବାକି ସମସ୍ତେ ହିଁ ପୌତ୍ତଳିକ । ଯେତେ ଦିନ ଆପଣମାନେ ଏହି ବିଭିନ୍ନ ରୂପ ଓ ଆକାର ବିଶିଷ୍ଟ ଜଗତ୍-ପ୍ରପଞ୍ଚ ଦେଖୁଛନ୍ତି, ସେତେଦିନ ଆପଣମାନେ ପୌତ୍ତଳିକ । ଆପଣମାନେ କଅଣ ପୃଥିବୀ-ରୂପକ ବିରାଟ ପୁତ୍ତଳିକାର ପୂଜା କରୁନାହାନ୍ତି ? ଯେ କହୁଛି, ମୁଁ ଶରୀର, ସେ ତ ଜନ୍ମଗତଭାବେ ପୌତ୍ତଳିକ । ଆପଣମାନେ ସମସ୍ତେ ହିଁ ଆତ୍ମା—ନିରାକାର ଆତ୍ମାସ୍ୱରୂପ—ଅନନ୍ତ ଚୈତନ୍ୟସ୍ୱରୂପ; ଆପଣମାନେ କଦାପି ଜଡ଼ ନୁହଁନ୍ତି । ଅତଏବ ଯେଉଁ ବ୍ୟକ୍ତି ସୂକ୍ଷ୍ମ ଧାରଣା କରିବାକୁ ଅକ୍ଷମ, ଯେ ନିଜକୁ ଜଡ଼ବସ୍ତୁ ଓ ଦେହ ବୋଲି ଭାବେ ଏବଂ ସେପରି ନ ଭାବି ରହିପାରେ ନାହିଁ, ସେ ନିଜ ସ୍ୱରୂପ-ଚିନ୍ତାରେ ଅସମର୍ଥ, ସେ ହିଁ ପୌତ୍ତଳିକ; ତଥାପି ଦେଖନ୍ତୁ, କିପରି ମନୁଷ୍ୟ ପରସ୍ପର ବିବାଦ କରିଥାଆନ୍ତି, ଜଣେ ଜଣକୁ ପୌତ୍ତଳିକ କହି ପ୍ରତ୍ୟେକେ ଗାଳି ଦିଏ, ଅର୍ଥାତ୍ ନିଜ ନିଜର ଉପାସ୍ୟ ପୁତ୍ତଳିକୁ ଠିକ୍ ମନେ କରନ୍ତି ଏବଂ ଅନ୍ୟର ଉପାସ୍ୟ ପୁତ୍ତଳିକୁ ଭ୍ରାନ୍ତ ମନେ କରନ୍ତି ।

ଅତଏବ ଆମମାନଙ୍କୁ ଏ ସମସ୍ତ ଶିଶୁଜନୋଚିତ ଧାରଣାରୁ ନିଜକୁ ମୁକ୍ତ କରିବାକୁ

ହେବ; ଆମମାନଙ୍କୁ ଅଜ୍ଞାନ-ଜନୋଚିତ ବୃଥା ବାଦାନୁବାଦର ଊର୍ଦ୍ଧ୍ୱକୁ ଉଠିବାକୁ ହେବ । ଏମାନଙ୍କ ମତରେ ଧର୍ମ କେତେଗୁଡ଼ିଏ ଅସାର କଥାର ସମଷ୍ଟି ମାତ୍ର—କେତେଗୁଡ଼ିଏ ପ୍ରଣାଳୀ-ବଦ୍ଧ ମତବାଦ; ଏମାନଙ୍କ ମତରେ ଧର୍ମ କେବଳ କେତେଗୁଡ଼ିଏ ବିଷୟରେ ବିଚାରବୁଦ୍ଧିର ସମ୍ମତି ବା ଅସମ୍ମତି ପ୍ରକାଶମାତ୍ର; ଏମାନଙ୍କ ମତରେ ଧର୍ମ ପୁରୋହିତମାନଙ୍କର କେତେଗୁଡ଼ିଏ ବାକ୍ୟରେ ବିଶ୍ୱାସ ମାତ୍ର, ଏମାନଙ୍କ ମତରେ ଧର୍ମ ତାଙ୍କ ପୂର୍ବପୁରୁଷଗଣଙ୍କର କେତୋଟି ବିଶ୍ୱାସର ସମଷ୍ଟି; ଏମାନଙ୍କ ମତରେ ଧର୍ମ କେତେଗୁଡ଼ିଏ ଧାରଣା ଓ କୁସଂସ୍କାରର ସମଷ୍ଟି—ଜାତୀୟ ଓ ଧର୍ମୀୟ ଉତ୍ତରାଧିକାର ବୋଲି ସେଗୁଡ଼ିକୁ ସେମାନେ ଧରି ନେଇଛନ୍ତି । ଆମ-ମାନଙ୍କୁ ଏସବୁ ଭାବର ଊର୍ଦ୍ଧ୍ୱକୁ ଉଠିବାକୁ ହେବ; ଦେଖିବାକୁ ହେବ—ସମଗ୍ର ମାନବଜାତି ଯେପରି ଏକ ପ୍ରକାଣ୍ଡ ପ୍ରାଣୀ—ଧୀରେ ଧୀରେ ଆଲୋକାଭିମୁଖେ ଆବର୍ତ୍ତିତ ହେଉଛି—ତାହା ଯେପରି ଏକ ଆଶ୍ଚର୍ଯ୍ୟ ସୂକ୍ଷ୍ମ ଶିଶୁ, ଧୀରେ ଧୀରେ ଅଭିବ୍ୟକ୍ତ ହୋଇ ଏକ ଅମୂର୍ତ୍ତି ସତ୍ୟ ପ୍ରତି ଅଗ୍ରସର ହେଉଛି, ଯେଉଁ ସତ୍ୟର ନାମ 'ଈଶ୍ୱର' ଏବଂ ତାହାର ସେହି ସତ୍ୟାଭିମୁଖେ ପ୍ରଥମ ଗତି ପ୍ରଥମ ଘୂର୍ଣ୍ଣନ ସବୁବେଳେ ଜଡ଼ ମଧ୍ୟ ଦେଇ, ଅନୁଷ୍ଠାନ ଭିତର ଦେଇ ହିଁ ହୋଇ-ଥାଏ । ଏହାକୁ ଏଡ଼ାଇବାର ଉପାୟ ନାହିଁ ।

ଏହି ସମୁଦାୟ ଅନୁଷ୍ଠାନର ହୃଦୟସ୍ୱରୂପ ଏବଂ ଅନ୍ୟାନ୍ୟ ବାହ୍ୟ କ୍ରିୟାକଳାପ ମଧ୍ୟରେ ଶ୍ରେଷ୍ଠ ନାମୋପାସନା । ଆପଣମାନଙ୍କ ଭିତରେ ଯେଉଁମାନେ ପ୍ରାଚୀନ ଖ୍ରୀଷ୍ଟଧର୍ମ ଓ ଜଗତର ଅନ୍ୟାନ୍ୟ ଧର୍ମ ଆଲୋଚନା କରିଛନ୍ତି, ସେମାନେ ହୁଏତ ଲକ୍ଷ୍ୟ କରିଥିବେ ଯେ, ସେମାନଙ୍କର ଭିତରେ 'ନାମୋପାସନା' ବୋଲି ଏକ ଅପୂର୍ବ ଭାବ ପ୍ରଚଳିତ । ନାମ ଅତିଶୟ ପବିତ୍ର ବୋଲି ପରିଗଣିତ । ବାଇବେଲରେ ପଢ଼ାଯାଏ, ହିବ୍ରୁମାନଙ୍କ ନିକଟରେ ଭଗବାନଙ୍କ ନାମ ଏତେ ପବିତ୍ର ବିବେଚିତ ହେଉଥିଲା ଯେ, ଯେ କେହି ତାହା ଉଚ୍ଚାରଣ କରିପାରୁ ନ ଥିଲା ବା ଯେ କୌଣସି ସମୟରେ ଏହାର ଉଚ୍ଚାରଣ ଚଳିପାରୁନଥିଲା, କାହାରି ସହିତ ତାହାର ତୁଳନା ହୋଇପାରୁ ନ ଥିଲା । ଭଗବାନଙ୍କର ନାମ ପବିତ୍ରତମ ଏବଂ ସେମାନଙ୍କର ଏହି ବିଶ୍ୱାସ ଥିଲା ଯେ, ଏହି 'ନାମ' ହିଁ ଈଶ୍ୱର । ଏହା ମଧ୍ୟ ସତ୍ୟ । ବିଶ୍ୱଜଗତ୍ ନାମରୂପ ବ୍ୟତୀତ ଆଉ କଅଣ ? ଆପଣମାନେ କଅଣ ଶବ୍ଦ ବ୍ୟତୀତ ଚିନ୍ତା କରିପାରନ୍ତି ? ଶବ୍ଦ ଓ ଭାବକୁ ପୃଥକ୍ କରାଯାଇ-ପାରେ ନା, ଏମାନେ ଅଭିନ୍ନ । ଚେଷ୍ଟା କରନ୍ତୁ, ଯଦି କେହି ଏହି ଦୁଇଟିକୁ ପୃଥକ୍ କରିପା-ରନ୍ତି । ଯେତେବେଳେ ଆପଣମାନେ ଚିନ୍ତା କରନ୍ତି, ସେତେବେଳେ ଶବ୍ଦ ଅବଲମ୍ବନରେ ଚିନ୍ତା କରନ୍ତି । ଶବ୍ଦ ସୂକ୍ଷ୍ମ ଭିତରର ଅଂଶ ଏବଂ ଭାବ ବାହ୍ୟ ଅଂଶ; ଏ ଦୁଇଟି ଏକ ସଙ୍ଗେ ଆସନ୍ତି, ଏ ଦୁହିଁଙ୍କୁ ପୃଥକ୍ କରାଯାଏ ନାହିଁ । ଗୋଟିଏ ଅନ୍ୟଟିକୁ ନେଇ ଆସେ । ଭାବ ଥିଲେ ଶବ୍ଦ ଆସିବ ଏବଂ ଶବ୍ଦ ଥିଲେ ଭାବ ଆସିବ । ସୁତରାଂ ସମୁଦାୟ ବ୍ରହ୍ମାଣ୍ଡ ଯେପରି ଭଗବାନଙ୍କର ବାହ୍ୟ ପ୍ରତୀକସ୍ୱରୂପ, ତା' ପଛରେ ରହିଛି ଭଗବାନଙ୍କର ପୂର୍ଣ୍ଣ ନାମ । ପ୍ରତ୍ୟେକ ବ୍ୟଷ୍ଟିଦେହ ହିଁ ରୂପ ଏବଂ ଏହି ଦେହବିଶେଷର ପଛରେ ତାହାର ନାମ ରହିଛି । ଯେତେବେଳେ ଆପଣ ଆପଣଙ୍କ ବନ୍ଧୁ ବିଶେଷଙ୍କର ବିଷୟ ଚିନ୍ତା କରନ୍ତି, ସେତେବେଳେ ତାଙ୍କ ଶରୀରର କଥା ଏବଂ ସଙ୍ଗେ ସଙ୍ଗେ ତାଙ୍କର ନାମ ମଧ୍ୟ ଆପଣଙ୍କ ମନରେ ଉଦିତ ହୁଏ । ଏହା ମାନବର ପ୍ରକୃତିଗତ

ଧର୍ମ । ତାତ୍ପର୍ଯ୍ୟ ଏହି ଯେ, ମନୋବିଜ୍ଞାନ ଦୃଷ୍ଟିରୁ ଦେଖିଲେ ବୁଝାଯାଏ, ମନୁଷ୍ୟର ଚିତ୍ତ ମଧ୍ୟରେ ରୂପଜ୍ଞାନ ବ୍ୟତୀତ ନାମଜ୍ଞାନ ଆସିପାରେ ନାହିଁ ଏବଂ ନାମଜ୍ଞାନ ବ୍ୟତୀତ ରୂପଜ୍ଞାନ ଆସିପାରେ ନାହିଁ । ସେମାନେ ଅଚ୍ଛେଦ୍ୟ ସମ୍ବନ୍ଧରେ ସଂବଦ୍ଧ, ସେମାନେ ଗୋଟିଏ ତରଙ୍ଗର ବାହାର ଓ ଭିତରର ଅଂଶ । ଏହି କାରଣରୁ ସମଗ୍ର ଜଗତ୍‌ରେ ଈଶ୍ୱରଙ୍କର ନାମ ମହିମାନ୍ୱିତ ଓ ନାମୋପାସନା ପ୍ରଚଳିତ ହୋଇଅଛି । ଜ୍ଞାତ ବା ଅଜ୍ଞାତସାରରେ ମଣିଷ ନାମମାହାତ୍ମ୍ୟ ଜାଣିପାରିଥିଲା ।

ପୁଣି ଆମେମାନେ ଦେଖିବାକୁ ପାଉଁ ଯେ, ଅନେକ ଧର୍ମରେ ସାଧୁ-ସନ୍ଥ ମହାପୁରୁଷମାନଙ୍କର ପୂଜା କରାହୁଏ । ଲୋକେ କୃଷ୍ଣ, ବୁଦ୍ଧ, ଯୀଶୁ ପ୍ରଭୃତିଙ୍କର ପୂଜା କରିଥାଆନ୍ତି । ପୁଣି ସାଧୁମାନଙ୍କର ପୂଜା ମଧ୍ୟ ପ୍ରଚଳିତ ଅଛି । ସମଗ୍ର ଜଗତ୍‌ରେ ଶହ ଶହ ସାଧୁସନ୍ଥଙ୍କର ପୂଜା ହୋଇଥାଏ । ନ ହେବ ବା କାହିଁକି ? ଆଲୋକର ସ୍ପନ୍ଦନ ସର୍ବତ୍ର ରହିଛି । ପେଚକ ଅନ୍ଧକାରରେ ଦେଖିବାକୁ ପାଏ; ତହିଁରୁ ପ୍ରମାଣିତ ହେଉଛି ଯେ, ଅନ୍ଧକାରରେ ଆଲୋକ ରହିଛି; କିନ୍ତୁ ମଣିଷ ସେଥିରେ ଆଲୋକ ଦେଖିବାକୁ ପାଏନାହିଁ । ଏହି ଆଲୋକର ସ୍ପନ୍ଦନ ଏକ ବିଶେଷ ଅବସ୍ଥା ପ୍ରାପ୍ତ ହେଲେ—ଯଥା ପ୍ରଦୀପ, ସୂର୍ଯ୍ୟ ଓ ଚନ୍ଦ୍ର ପ୍ରଭୃତିରେ—ମନୁଷ୍ୟର ଚକ୍ଷୁସ୍ନାୟୁରେ ଆଲୋକ ଅନୁଭୂତ ହୁଏ । ଈଶ୍ୱର ସର୍ବବ୍ୟାପୀ, ସେ ନିଜକୁ ସମସ୍ତ ପ୍ରାଣୀଙ୍କ ଭିତରେ ଅଭିବ୍ୟକ୍ତ କରିଛନ୍ତି, କିନ୍ତୁ ମନୁଷ୍ୟ ତାହାଙ୍କୁ ମନୁଷ୍ୟ ମଧ୍ୟରେ ଚିହ୍ନିପାରେ । ଯେତେବେଳେ ତାହାଙ୍କର ଆଲୋକ, ତାହାଙ୍କର ସତ୍ତା, ତାହାଙ୍କର ଚୈତନ୍ୟ ମନୁଷ୍ୟର ଦିବ୍ୟ ମୁଖମଣ୍ଡଳରେ ପ୍ରକାଶିତ ହୁଏ, ସେତେବେଳେ, କେବଳ ସେତେବେଳେ ହିଁ ମନୁଷ୍ୟ ତାହାଙ୍କୁ ବୁଝିପାରେ । ଏହିପରି ମନୁଷ୍ୟ ଚିରକାଳ ମନୁଷ୍ୟ ଭିତର ଦେଇ ଭଗବାନଙ୍କର ଉପାସନା କରୁଛି ଏବଂ ଯେତେଦିନ ସେ ମଣିଷ ଥିବ, ସେତେଦିନ ଏହିଭଳି କରିବ । ମନୁଷ୍ୟ ଏହା ବିରୋଧରେ ଚିତ୍କାର କରିପାରେ, ଏହା ବିରୋଧରେ ସଂଗ୍ରାମ କରିପାରେ; କିନ୍ତୁ ଯେତେବେଳେ ସେ ଭଗବାନଙ୍କୁ ଉପଲବ୍ଧି କରିବାକୁ ଚେଷ୍ଟା କରେ, ସେ ବୁଝିପାରେ, ଭଗବାନଙ୍କୁ ମଣିଷ ବୋଲି ଚିନ୍ତା କରିବା ମଣିଷର ପ୍ରକୃତିଗତ ।

ଅତଏବ ଆମେମାନେ ପ୍ରାୟ ସମସ୍ତ ଧର୍ମରେ ହିଁ ଈଶ୍ୱରୋପାସନାର ତିନୋଟି ସୋପାନ ଦେଖିବାକୁ ପାଉଁ: ପ୍ରତୀକ ବା ମୂର୍ତ୍ତି, ନାମ ଓ ଦେବ-ମାନବ । ସମସ୍ତ ଧର୍ମରେ ଏହା କୌଣସି ନା କୌଣସି ରୂପରେ ତଥାପି ଅଛି; ଦେଖିବାକୁ ପାଇବେ ଯେ, ମଣିଷ ପରସ୍ପରକୁ ବିରୋଧ କରିବାକୁ ଚାହେଁ । କେହି କହେ: ମୁଁ ଯେଉଁ ନାମ ସାଧନ କରୁଛି, ତାହା ହିଁ ଠିକ୍ ନାମ; ମୁଁ ଯେଉଁ ରୂପର ଉପାସକ, ତାହା ହିଁ ଭଗବାନଙ୍କର ଯଥାର୍ଥ ରୂପ; ମୁଁ ଯେଉଁସବୁ ଦେବ-ମାନବଙ୍କୁ ମାନେ, ସେମାନେ ହିଁ ଠିକ୍, ଅନ୍ୟ ସବୁଗୁଡ଼ିକ ପୌରାଣିକ ଗଳ୍ପମାତ୍ର । ବର୍ତ୍ତମାନ ଯୁଗରେ ଖ୍ରୀଷ୍ଟିୟ ଧର୍ମଯାଜକଗଣ ପୂର୍ବାପେକ୍ଷା ଟିକିଏ ସଦୟ ହୋଇଛନ୍ତି, କାରଣ ସେମାନେ କହନ୍ତି, ପ୍ରାଚୀନ ଧର୍ମଗୁଡ଼ିକ ଖ୍ରୀଷ୍ଟଧର୍ମର ପୂର୍ବାଭାସ ମାତ୍ର । ଅବଶ୍ୟ ସେମାନଙ୍କ ଖ୍ରୀଷ୍ଟଧର୍ମ ହିଁ ଏକମାତ୍ର ସତ୍ୟ ଧର୍ମ । ପ୍ରାଚୀନ କାଳରେ ବିଭିନ୍ନ ଧର୍ମ ସୃଷ୍ଟିକରି ଈଶ୍ୱର ନିଜର ଶକ୍ତି ପରୀକ୍ଷା

କରିଥିଲେ । ଶେଷରେ ଖ୍ରୀଷ୍ଟଧର୍ମରେ ସମ୍ପୂର୍ଣ୍ଣ ଆତ୍ମପ୍ରକାଶ କରିବାକୁ ସମର୍ଥ ହେଲେ । ଏହି ଭାବ ଅବଶ୍ୟ ଗୁଣ୍ଡାମି ଅପେକ୍ଷା ଅନେକ ଭଲ । ପଚାଶ ବର୍ଷ ପୂର୍ବରୁ ସେମାନେ ଏଭଳି କଥା କହୁ ନ ଥିଲେ । ସେମାନଙ୍କର ନିଜ ଧର୍ମ ଛଡ଼ା ଆଉ ସବୁକିଛିକୁ ସେମାନେ ତୁଚ୍ଛଜ୍ଞାନ କରୁଥିଲେ । ଧର୍ମ, ଜାତି ବା ଶ୍ରେଣୀ ବିଶେଷରେ ଏହି ଭାବ ସୀମାବଦ୍ଧ ନୁହେଁ । ଲୋକେ ସବୁବେଳେ ଭାବନ୍ତି, ସେମାନେ ନିଜେ ଯାହା କରୁଛନ୍ତି, ଅନ୍ୟକୁ ମଧ୍ୟ ତାହା ହିଁ କରିବାକୁ ହେବ, ଏବଂ ଏହିଠାରେ ହିଁ ବିଭିନ୍ନ ଧର୍ମର ଆଲୋଚନାରୁ ଆମର ଉପକାର ହୋଇଥାଏ । ଏଥିରୁ ସ୍ପଷ୍ଟ ବୁଝାଯାଇପାରେ ଯେ, ଆମେମାନେ ଯେଉଁ ଭାବଗୁଡ଼ିକୁ ଆମର ନିଜସ୍ୱ, ସମ୍ପୂର୍ଣ୍ଣ ନିଜସ୍ୱ ବୋଲି ମନେ କରିଥିଲୁ, ସେଗୁଡ଼ିକ ଶତ ଶତ ବର୍ଷ ପୂର୍ବେ ଅନ୍ୟ ଭିତରେ ଥିଲା; ସମୟ ସମୟରେ ବରଂ ଆମେମାନେ ଯେଉଁଭାବରେ ଏଗୁଡ଼ିକ ବ୍ୟକ୍ତ କରିଥାଉ, ତଦପେକ୍ଷା ପରିଷ୍କୁଟ ଭାବରେ ହିଁ ବ୍ୟକ୍ତ ଥିଲା ।

ଭକ୍ତିର ଏହି ସମସ୍ତ ବାହ୍ୟ ଅନୁଷ୍ଠାନ ଭିତର ଦେଇ ମନୁଷ୍ୟକୁ ଅଗ୍ରସର ହେବାକୁ ହୁଏ; କିନ୍ତୁ ଯଦି ସେ ଅକପଟ ହୁଏ, ଯଦି ସେ ପ୍ରକୃତ ପକ୍ଷରେ ସତ୍ୟରେ ପହଞ୍ଚିବାକୁ ଚାହେଁ, ତେବେ ସେ ଏହା ଅପେକ୍ଷା ଏକ ଉଚ୍ଚତର ଭୂମିରେ ଉପନୀତ ହୁଏ, ଯେଉଁଠାରେ ବାହ୍ୟ ଅନୁଷ୍ଠାନ-ପଦ୍ଧତିର କୌଣସି ପ୍ରକାର ମୂଲ୍ୟ ନ ଥାଏ । ମନ୍ଦିର ଓ ଗୀର୍ଜା, ଶାସ୍ତ୍ର ଓ ଅନୁଷ୍ଠାନ ଏସବୁ କେବଳ ଧର୍ମର ଶିଶୁଶିକ୍ଷା ମାତ୍ର, ଯେଉଁଥିରେ ପ୍ରବର୍ତ୍ତକ ବା ପ୍ରାଥମିକ ସାଧକ ଶକ୍ତି ସବଳ ହୋଇ ଧର୍ମର ଉଚ୍ଚତର ସୋପାନ ଅବଲମ୍ବନ କରିପାରେ । ଆଉ ଯଦି କେହି ଧର୍ମ ଚାହେଁ, ତେବେ ଏହି ପ୍ରାଥମିକ ସୋପାନଗୁଡ଼ିକ ଏକାନ୍ତ ପ୍ରୟୋଜନ । ଭଗବାନଙ୍କ ଲାଗି ଆକାଂକ୍ଷା ଓ ବ୍ୟାକୁଳତା ମଧ୍ୟରୁ ଯଥାର୍ଥ ଭକ୍ତିର ଉଦୟ ହୁଏ । କିଏ ତାଙ୍କୁ ଚାହେଁ ? ଏହା ହିଁ ପ୍ରଶ୍ନ । ଧର୍ମ ମତମତାନ୍ତରରେ ନାହିଁ, ଯୁକ୍ତିତର୍କରେ ନାହିଁ; ଧର୍ମ—ହେବା, ଧର୍ମ ଅପରୋକ୍ଷାନୁଭୂତି । ଆମେମାନେ ଦେଖିବାକୁ ପାଉଁ, ସମସ୍ତେ ହିଁ ଈଶ୍ୱର, ଜୀବାତ୍ମା ଏବଂ ଜଗତର ସମସ୍ତ ପ୍ରକାର ରହସ୍ୟ ସମ୍ବନ୍ଧରେ ନାନାପ୍ରକାର କଥା କହିଥାଆନ୍ତି; କିନ୍ତୁ ସେମାନଙ୍କ ଭିତରୁ ଜଣ ଜଣ କରି ଆପଣ ଯଦି ପଚାରନ୍ତି—'ତୁମେ କଅଣ ଈଶ୍ୱରଙ୍କୁ ଉପଲବ୍ଧି କରିଛ, ତୁମେ କ'ଣ ଆତ୍ମାକୁ ଦର୍ଶନ କରିଛ ?' କେତେଜଣ ଲୋକ ସାହସର ସହିତ କହିପାରନ୍ତି, 'କରିଛି ?' ତଥାପି ସେମାନେ ପରସ୍ପର ଲଢ଼େଇ କରୁଛନ୍ତି ।

ଏକଦା ଭାରତର ବିଭିନ୍ନ ସମ୍ପ୍ରଦାୟର ପ୍ରତିନିଧିମାନେ ସମବେତ ହୋଇ ବିଚାରରେ ପ୍ରବୃତ୍ତ ହେଲେ । ଜଣେ କହିଲା, ଶିବ ହିଁ ଏକମାତ୍ର ଦେବତା; ଅନ୍ୟ ଜଣେ କହିଲା ବିଷ୍ଣୁ ହିଁ ଏକମାତ୍ର ଦେବତା । ପରସ୍ପର ମଧ୍ୟରେ ଏପରି ଯୁକ୍ତି ତର୍କ ଚାଲିଲା; କୌଣସି ପ୍ରକାରେ ତର୍କର ଆଉ ବିରାମ ଘଟିଲା ନାହିଁ । ସେହି ପଥଦେଇ ଜଣେ ମୁନି ଯାଉଥିଲେ, ସମସ୍ତେ ତାଙ୍କୁ ଏହି ପ୍ରଶ୍ନର ମୀମାଂସା କରିଦେବା ପାଇଁ ଆହ୍ୱାନ କଲେ । ସେ ପ୍ରଥମେ ଶୈବକୁ ପଚାରିଲେ, 'ତୁମେ କଅଣ ଶିବଙ୍କୁ ଦେଖିଛ ? ତୁମ ସହିତ କଅଣ ତାଙ୍କର ପରିଚୟ ଅଛି ? ଯଦି ନଥାଏ, ତେବେ କିପରି ଜାଣିଲ ଯେ, ସେ ସର୍ବଶ୍ରେଷ୍ଠ ଦେବତା ?' ତାହାପରେ ସେ ବୈଷ୍ଣବଙ୍କୁ ମଧ୍ୟ

ଏହି ପ୍ରଶ୍ନ ପଚାରିଲେ—'ତୁମେ କଅଣ ବସ୍ତୁଙ୍କୁ ଦେଖିଛ ?' ସମସ୍ତଙ୍କୁ ଏହି ପ୍ରଶ୍ନ କରିବାରୁ ଜଣାଗଲା, ଈଶ୍ୱର ସମ୍ବନ୍ଧରେ କେହି କିଛି ଜାଣନ୍ତି ନାହିଁ ଏବଂ ସେଥିପାଇଁ ସେମାନେ ଏତେ ବିବାଦ କରୁଥିଲେ । ଯଦି ସେମାନେ ସତ୍ୟ ସତ୍ୟ ଈଶ୍ୱରଙ୍କୁ ଜାଣିଥାନ୍ତେ, ତେବେ ସେମାନେ ଆଉ ତର୍କ କରି ନ ଥାନ୍ତେ । ଶୂନ୍ୟମାଠିଆକୁ ପାଣିରେ ବୁଡ଼ାଇଲେ ଶବ୍ଦ ହୋଇଥାଏ, କିନ୍ତୁ ପୂର୍ଣ୍ଣ ହୋଇଗଲେ ଆଉ କୌଣସି ଶବ୍ଦ ହୁଏ ନାହିଁ । ତେଣୁ ବିଭିନ୍ନ ସମ୍ପ୍ରଦାୟ ଭିତରେ ବିବାଦ-ବିସମ୍ବାଦଦ୍ୱାରା ପ୍ରମାଣିତ ହେଉଛି ଯେ, ସେମାନେ ଧର୍ମର 'କିଛି' ମଧ୍ୟ ଜାଣନ୍ତି ନାହିଁ । ଧର୍ମ ସେମାନଙ୍କ ନିକଟରେ କେବଳ କେତେଗୁଡ଼ିଏ ବାଜେକଥା ମାତ୍ର—କେବଳ ବହିରେ ଲେଖିବା ପାଇଁ । ସମସ୍ତେ ଶୀଘ୍ର ଶୀଘ୍ର ଖଣ୍ଡିଏ ଖଣ୍ଡିଏ ବଡ଼ ବହି ଲେଖିବାରେ ବ୍ୟସ୍ତ । ତାହାର କଳେବର ଯେତେଦୂର ସମ୍ଭବ ବଡ଼ କରିହେବ; ସେମାନେ ଯେଉଁଠାରୁ ହେଉପଛେ ଚୋରିକରି ପୁସ୍ତକର କଳେବର ବୃଦ୍ଧି କରିଥାନ୍ତି । ଅଥଚ କାହା ନିକଟରେ ଋଣ ସ୍ୱୀକାର କରନ୍ତି ନାହିଁ । ତାହାପରେ ସେମାନେ ତାହା ପ୍ରକାଶ କରି ପୃଥିବୀରେ ପୂର୍ବରୁ ଯେତେ ଗଣ୍ଡଗୋଳ ରହିଛି, ସେସବୁକୁ ଆଉ ଟିକିଏ ବଢ଼ାଇ ଦିଅନ୍ତି ।

ସଂସାରର ଅଧିକାଂଶ ଲୋକ ହିଁ ନାସ୍ତିକ । ବର୍ତ୍ତମାନ କାଳରେ ପାଶ୍ଚାତ୍ୟ ଦେଶରେ ଆଉ ଏକପ୍ରକାର ନାସ୍ତିକ ଜଡ଼ବାଦୀମାନଙ୍କର ଅଭ୍ୟୁଦୟରେ ମୁଁ ଆନନ୍ଦିତ । ଏମାନେ ଅକପଟ ନାସ୍ତିକ । ଏମାନେ କପଟଧର୍ମବାଦୀ ନାସ୍ତିକଙ୍କଠାରୁ ଭଲ । ଧର୍ମବାଦୀ ନାସ୍ତିକମାନେ ଧର୍ମର କଥା କହନ୍ତି, ଧର୍ମକୁ ନେଇ ବିବାଦ କରନ୍ତି; କିନ୍ତୁ କେବେହେଲେ ଧର୍ମ ଚାହାଁନ୍ତି ନାହିଁ—ଧର୍ମକୁ ବୁଝିବା ବା ଧର୍ମକୁ ସାକ୍ଷାତ୍ କରିବା ପାଇଁ ଚେଷ୍ଟା କରନ୍ତି ନାହିଁ । ଯୀଶୁ-ଖ୍ରୀଷ୍ଟଙ୍କର ସେହି ବାକ୍ୟାବଳୀ ସ୍ମରଣ କରନ୍ତୁ—'ଚାହିଁଲେ ହିଁ ତୁମକୁ ଦିଆଯିବ, ଅନୁସନ୍ଧାନ କଲେ ହିଁ ପାଇବ, କରାଘାତ କଲେ ହିଁ ଦ୍ୱାର ଖୋଲି ଦିଆଯିବ ।' ଏହି କଥାଗୁଡ଼ିକ ଉପନ୍ୟାସ, ରୂପକ ବା କଳ୍ପନା ନୁହେଁ । ଏଗୁଡ଼ିକ ଅକ୍ଷରେ ଅକ୍ଷରେ ସତ୍ୟ । ଜଗତରେ ଯେଉଁ ସମସ୍ତ ଈଶ୍ୱରାବତାର ମହାପୁରୁଷଗଣ ଆସିଛନ୍ତି, ସେମାନଙ୍କ ହୃଦୟରୁ ଉତ୍ସାରିତ ଏହି କଥାଗୁଡ଼ିକ କୌଣସି ଗ୍ରନ୍ଥରୁ ଉଦ୍ଧାରକରି କୁହାଯାଇନାହିଁ । ଏଗୁଡ଼ିକ ପ୍ରତ୍ୟକ୍ଷାନୁଭୂତିର ଫଳ—ଏଗୁଡ଼ିକ ଏପରି ଜଣେ ଲୋକର କଥା, ଯେ ଭଗବାନଙ୍କୁ ପ୍ରତ୍ୟକ୍ଷ ଅନୁଭବ କରିଥିଲେ, ଭଗବାନଙ୍କ ସହିତ ଆଳାପ କରିଥିଲେ, ଭଗବାନଙ୍କ ସହିତ ଏକତ୍ର ବାସ କରିଥିଲେ—ଆପଣ ମୁଁ ଏହି ଘରଟିକୁ ଯେପରି ପ୍ରତ୍ୟକ୍ଷ ଦେଖୁଛେ, ତାହା ଅପେକ୍ଷା ଶତଗୁଣ ସ୍ପଷ୍ଟଭାବରେ ସେ ଭଗବାନଙ୍କୁ ଦର୍ଶନ କରିଥିଲେ । ଭଗବାନଙ୍କୁ ଚାହେଁ କିଏ ? ଏହା ହିଁ ପ୍ରଶ୍ନ । ଆପଣମାନେ କଅଣ ମନେ କରନ୍ତି, ଦୁନିଆସାରା ଲୋକ ଭଗବାନଙ୍କୁ ଚାହିଁ ସୁଦ୍ଧା ପାଉ ନାହାନ୍ତି ? ତାହା କଦାପି ହୋଇ ନ ପାରେ । ମାନବର ଏପରି କଅଣ ଅଭାବ ଅଛି, ଯାହା ପୂରଣ କରିବାର ଉପଯୋଗୀ ବସ୍ତୁ ବାହାରେ ନାହିଁ ? ମନୁଷ୍ୟ ନିଃଶ୍ୱାସ ନେବାକୁ ଚାହେଁ—ସେଥିପାଇଁ ବାୟୁ ରହିଛି । ମନୁଷ୍ୟ ଖାଇବାକୁ ଚାହେଁ—ସେଥିପାଇଁ ଖାଦ୍ୟ ରହିଛି । ଏହିସବୁ ବାସନାର ଉତ୍ପତ୍ତି ହୁଏ କେଉଁଠାରୁ ? ବାହ୍ୟ ବସ୍ତୁର ଅସ୍ତିତ୍ୱରୁ । ଆଲୋକ ହିଁ ଚକ୍ଷୁ ଉତ୍ପନ୍ନ କରିଛି, ଶବ୍ଦରୁ କର୍ଣ୍ଣ ହୋଇଛି । ଏହିପରି ମଣିଷ ଭିତରେ ଯେକୌଣସି ବାସନା ଅଛି, ତାହା ପୂର୍ବରୁ

ଅବସ୍ଥିତ କୌଣସି ବାହ୍ୟବସ୍ତୁରୁ ସୃଷ୍ଟ ହୋଇଛି । ପୂର୍ଣ୍ଣତ୍ୱ-ଲାଭର, ସେହି ଚରମ ଲକ୍ଷ୍ୟରେ ପହଞ୍ଚିବାର, ପ୍ରକୃତିର ପାରକୁ ଯିବାର ଇଚ୍ଛା କେଉଁଠୁ ଆସିଲା ? ଯଦି ନୁହେଁ, କେହି ତାହା ଆମମାନଙ୍କ ଭିତରେ ପ୍ରବେଶ କରାଇ ଦେଇଛନ୍ତି ? ଅତଏବ, ଯାହାଙ୍କ ଭିତରେ ଏହି ଆକାଙ୍କ୍ଷା ଜାଗରିତ ହୋଇଛି—ସେ ହିଁ ସେହି ଚରମ ଲକ୍ଷ୍ୟରେ ପହଞ୍ଚିବେ; କିନ୍ତୁ କାହାର ଏହି ଆକାଙ୍କ୍ଷା ଜାଗ୍ରତ ହୋଇଛି ? ଆମେମାନେ ଭଗବାନଙ୍କ ଛଡ଼ା ଆଉ ସବୁ କିଛି ଚାହୁଁ । ଆପଣମାନେ ସମାଜରେ ଧର୍ମ ବୋଲି ଯାହା ଦେଖିବାକୁ ପାଆନ୍ତି, ତାହାକୁ ଧର୍ମ ନାମରେ ଅଭିହିତ କରାଯାଏ ନାହିଁ । 'ମୋର ଗୃହିଣୀର ସମଗ୍ର ପୃଥିବୀରୁ ସଂଗୃହୀତ ନାନାବିଧ ଆସବାବ ଅଛି—କିନ୍ତୁ ଏବେକାର ଫେସନ—କୌଣସି ଜାପାନୀ ଜିନିଷ ଘରେ ରଖିବା—ସେଥିପାଇଁ ସେ ଗୋଟାଏ ଜାପାନୀ ଫୁଲଦାନୀ କିଣି ଘରେ ରଖିଦେଲେ'— ଅଧିକାଂଶ ଲୋକଙ୍କ ପକ୍ଷରେ ଧର୍ମ ମଧ୍ୟ ଏହିପରି । ସେମାନଙ୍କର ଭୋଗ ପାଇଁ ସମସ୍ତ ପ୍ରକାର ବସ୍ତୁ ରହିଛି—କିନ୍ତୁ ଧର୍ମର ଗୋଟାଏ ଚଟଣୀ ତାହା ସଙ୍ଗେ ନ ହେଲେ ଜୀବନଟା ଯେପରି ଠିକ୍ ଭାବେ ଚଳେ ନାହିଁ । ସମାଜରେ ସମାଲୋଚନା ହେବ । ସେଥିପାଇଁ ଟିକିଏ-ଅଧେ ଧର୍ମ ଦରକାର । ଆଜିକାଲି ପୃଥିବୀରେ ଧର୍ମର ଏହି ଅବସ୍ଥା ।

ଜନୈକ ଶିଷ୍ୟ ତାହାର ଗୁରୁଙ୍କ ନିକଟକୁ ଯାଇ କହିଲା—'ଗୁରୁଦେବ, ମୁଁ ଧର୍ମ ଲାଭ କରିବାକୁ ଚାହେଁ ।' ଗୁରୁ ଶିଷ୍ୟ-ମୁହଁକୁ ଚାହିଁ ଦେଖିଲେ, କୌଣସି କଥା ନ କହି କେବଳ ଟିକିଏ ହସିଲେ । ଶିଷ୍ୟ ପ୍ରତିଦିନ ଆସି ତାଙ୍କୁ ନାନାଭାବରେ ବିବ୍ରତ କରି କହିବାକୁ ଲାଗିଲା—'ମୋତେ ଧର୍ମ-ଲାଭର ଉପାୟ କହିଦିଅନ୍ତୁ ।' ଗୁରୁ ଅବଶ୍ୟ ଏ ବିଷୟରେ ଶିଷ୍ୟ ଅପେକ୍ଷା ଯଥେଷ୍ଟ ଭଲ ବୁଝୁଥିଲେ । ଦିନକର ପ୍ରଖର ଗ୍ରୀଷ୍ମ ସମୟରେ ସେ ସେହି ଯୁବକକୁ ସଙ୍ଗରେ ନେଇ ସ୍ନାନ କରିବାକୁ ଗଲେ । ଯୁବକଟି ଜଳରେ ବୁଡ଼ିବା ମାତ୍ରେ ଗୁରୁ ତା' ପଛେ ପଛେ ଯାଇ ତାକୁ ଚାପିଧରି ଜଳ ମଧ୍ୟରେ ବୁଡ଼ାଇ ରଖିଲେ । ଯୁବକଟି ପାଣିରୁ ଉଠିବା ପାଇଁ ଅନେକ ଧସ୍ତାଧସ୍ତି କରିବାପରେ ଗୁରୁ ତାକୁ ଛାଡ଼ି ଦେଇ ପଚାରିଲେ, 'ଯେତେ ସମୟ ପାଣି ଭିତରେ ଥିଲୁ, ସେସମୟତକ ତୁ ସର୍ବାପେକ୍ଷା କାହାର ଅଭାବ ଅଧିକ ବୋଧ କରୁଥିଲୁ ?' ଶିଷ୍ୟ ଉତ୍ତର ଦେଲା 'ନିଃଶ୍ୱାସ ପାଇଁ ବାୟୁ ଅଭାବରେ ପ୍ରାଣ ଯିବ ଯିବ ହେଉଥିଲା ।' ସେତେବେଳେ ଗୁରୁ କହିଲେ, 'ଭଗବାନଙ୍କ ପାଇଁ କଅଣ ତୋର ଏହିପରି ଅଭାବ-ବୋଧ ହେଉଛି ? ଯଦି ହେଉଥାଏ, ଗୋଟିଏ ମୁହୂର୍ତ୍ତ ମଧ୍ୟରେ ତୁ ତାଙ୍କୁ ପାଇବୁ ।' ଯେତେଦିନ ପର୍ଯ୍ୟନ୍ତ ଧର୍ମ ପାଇଁ ଆପଣଙ୍କର ଏପରି ବ୍ୟାକୁଳତା ଓ ତୀବ୍ର ଆକାଙ୍କ୍ଷା ଜାଗରିତ ନ ହୋଇଛି, ସେତେଦିନ, ଯେତେ ତର୍କ-ବିଚାର କରନ୍ତୁ, ଯେତେ ଅଧ୍ୟୟନ କରନ୍ତୁ, ଯେତେ ବାହ୍ୟ ଅନୁଷ୍ଠାନ କରନ୍ତୁ, କେଉଁଥିରେ ହେଲେ କିଛି ହେବ ନାହିଁ । ଯେତେଦିନ ପର୍ଯ୍ୟନ୍ତ ହୃଦୟରେ ଏହି ଧର୍ମ-ପିପାସା ଜାଗରିତ ନ ହୋଇଛି, ସେତେଦିନ ଆପଣ ନାସ୍ତିକଠାରୁ କୌଣସି ଗୁଣରେ ଉନ୍ନତ ନୁହନ୍ତି ! ନାସ୍ତିକ ବରଂ ଅକପଟ, ଆପଣ ତାହା ନୁହନ୍ତି ।

ଜନୈକ ମହାପୁରୁଷ କହୁଥିଲେ—'ମନେକର ଏ ଘରେ ଗୋଟିଏ ଚୋର ରହିଛି;

ସେ କୌଣସି ପ୍ରକାରେ ଜାଣିପାରଛି ଯେ, ପାର୍ଶ୍ୱବର୍ତ୍ତୀ ଗୃହରେ ଗୋଟିଏ ସୁନାପିଣ୍ଡୁଳା ଅଛି ଆଉ ସେହି ଦୁଇଟି ଘର ମଧ୍ୟରେ ଯେଉଁ କାନ୍ଥଟି ରହିଛି, ତାହା ପତଳା । ଏଭଳି କ୍ଷେତ୍ରରେ ସେହି ଚୋରର କି ଅବସ୍ଥା ହେବ ? ତାକୁ ନିଦ ହେବ ନାହିଁ, ସେ ଖାଇପାରିବ ନାହିଁ, ସେ କିଛିହେଲେ କରିପାରିବ ନାହିଁ—କେବଳ କିପରି ସୁନାପିଣ୍ଡୁଳା ସଂଗ୍ରହ କରିବ, ତାହାର ମନ ସେହି ଦିଗରେ ଲାଗି ରହିବ । ସେ କେବଳ ଭାବିବ, କିପରି ସେହି କାନ୍ଥରେ ଛିଦ୍ର କରି ସୁନାପିଣ୍ଡୁଳାଟି ନେବ । ତୁମେମାନେ କ'ଣ କହିବାକୁ ଚାହିଁ ? ଯଦି ମଣିଷ ଯଥାର୍ଥ ବିଶ୍ୱାସ କରନ୍ତି ଯେ, ସୁଖ ଆନନ୍ଦ ଓ ମହିମାର ଖଣି ସ୍ୱୟଂ ଭଗବାନ ଏଠାରେ ରହିଛନ୍ତି, ତାହାହେଲେ ସେମାନେ ତାହାଙ୍କୁ ଲାଭ କରିବାର ଚେଷ୍ଟା ନ କରି ସାଧାରଣ ଭାବରେ ସାଂସାରିକ କାର୍ଯ୍ୟ କରିବାକୁ ସମର୍ଥ ହୋଇଥାନ୍ତେ ?' ଯେତେବେଳେ ମଣିଷ ବିଶ୍ୱାସ କରେ ଯେ, ଭଗବାନ ବୋଲି ଜଣେ କେହି ଅଛନ୍ତି, ସେତେବେଳେ ସେ ତାଙ୍କୁ ପାଇବାର ପ୍ରବଳ ଆକାଙ୍କ୍ଷାରେ ପାଗଳ ହୋଇଉଠେ । ଅନ୍ୟମାନେ ନିଜନିଜ ଭାବରେ ଜୀବନଯାପନ କରନ୍ତି; କିନ୍ତୁ ଯେତେବେଳେ କେହି ନିଶ୍ଚିତ ରୂପେ ଜାଣିପାରେ ଯେ, ସେ ଯେପରି ଭାବରେ ଜୀବନଯାପନ କରୁଛି, ତଦପେକ୍ଷା ଉଚ୍ଚତର ଭାବରେ ଜୀବନ-ଯାପନ କରାଯାଇପାରେ, ସେତେବେଳେ ସେ ଦୃଢ଼ ଭାବରେ ଜାଣିପାରେ ଯେ, ଇନ୍ଦ୍ରିୟଗୁଡ଼ିକ ହିଁ ମାନବର ସର୍ବସ୍ୱ ନୁହଁନ୍ତି; ସେତେବେଳେ ସେ ବୁଝିପାରେ ଯେ, ଆତ୍ମାର ଅବିନାଶୀ ନିତ୍ୟ ଅକ୍ଷୟ ଆନନ୍ଦ ତୁଳନାରେ ଏହି ସସୀମ ଜଡ଼ ଦେହ କିଛି ନୁହେଁ; ସେତେବେଳେ ସେ ନିଜେ ସେହି ଆନନ୍ଦ ଲାଭ ନ କରିବା ପର୍ଯ୍ୟନ୍ତ ପାଗଳ ପରି ଏହାର ହିଁ ଅନୁସନ୍ଧାନ କରେ । ଏହି ଉନ୍ମତ୍ତତା, ଏହି ତୃଷ୍ଣା, ଏହି ଜିଦ୍‌କୁ ଧର୍ମ-ଜୀବନରେ 'ଜାଗରଣ' ବୋଲି କୁହାଯାଏ—ଯେତେବେଳେ ମଣିଷର ଏ ଅବସ୍ଥା ହୁଏ, ସେତେବେଳେ ତା'ର ଆଧ୍ୟାତ୍ମିକ ଜୀବନର ଆରମ୍ଭ ହୁଏ ।

କିନ୍ତୁ ଏହା ହେବାକୁ ଅନେକ ଦିନ ଲାଗେ । ଏ ସମସ୍ତ ଅନୁଷ୍ଠାନ-ପଦ୍ଧତି, ପ୍ରାର୍ଥନା, ତୀର୍ଥ-ପର୍ଯ୍ୟଟନ, ଶାସ୍ତ୍ରାଦିପାଠ, ଘଣ୍ଟାଘଣ୍ଟି, ପ୍ରଦୀପ, ପୁରୋହିତ—ଏସବୁ ସେହି ଅବସ୍ଥା ପାଇଁ ପ୍ରସ୍ତୁତି । ଏଗୁଡ଼ିକଦ୍ୱାରା ଚିତ୍ତ ଶୁଦ୍ଧ ହୁଏ । ଆଉ ଯେତେବେଳେ ଚିତ୍ତଶୁଦ୍ଧ ହୋଇଯାଏ, ସେତେବେଳେ ଏହା ସ୍ୱଭାବତଃ ଏହାର ମୂଳ କାରଣ, ସମସ୍ତ ବିଶୁଦ୍ଧିର ଆକାର ସ୍ୱୟଂ ଈଶ୍ୱରଙ୍କୁ ଲାଭ କରିବାକୁ ଚାହେଁ । ଶତଶତ ଯୁଗର ଧୂଳି-ଆଚ୍ଛାଦିତ ଲୌହଖଣ୍ଡ ଚୁମ୍ବକ ନିକଟରେ ପଡ଼ିଥିଲେ ମଧ୍ୟ ତାହାଦ୍ୱାରା ଆକୃଷ୍ଟ ହୁଏ ନାହିଁ; କିନ୍ତୁ କୌଣସି ଉପାୟରେ ଯଦି ସେହି ଧୂଳି ଅପସାରିତ ହୁଏ, ତେବେ ପୁଣି ତାହା ଦ୍ୱାରା ଆକୃଷ୍ଟ ହୋଇଥାଏ । ଜୀବାତ୍ମା ଠିକ୍ ଏହିପରି ଶତ ଶତ ଯୁଗର ଅପବିତ୍ରତା, ମଳିନତା ଓ ପାପର ଧୂଳି-ଜାଲରେ ଆବୃତ ରହିଛି । ଏହିସବୁ କ୍ରିୟାକଳାପ ଅନୁଷ୍ଠାନ କରି ଅପରର କଲ୍ୟାଣ ସାଧନ କରି, ଅନ୍ୟକୁ ଭଲ ପାଇ ଅନେକ ଜନ୍ମପରେ ଯେତେବେଳେ ସେ ଯଥେଷ୍ଟ ପବିତ୍ର ହୁଏ, ସେତେବେଳେ ତାହାର ସ୍ୱାଭାବିକ ଆଧ୍ୟାତ୍ମିକତା ପ୍ରକାଶିତ ହୋଇପଡ଼େ; ସେ ସେତେବେଳେ ଜାଗରିତ ହୋଇ ଭଗବାନଙ୍କୁ ଲାଭ କରିବା ପାଇଁ ପ୍ରାଣପଣେ ଚେଷ୍ଟା କରିବାକୁ ଲାଗେ ।

କିନ୍ତୁ ଏହି ସମସ୍ତ ଅନୁଷ୍ଠାନ, ପ୍ରତୀକୋପାସନା ପ୍ରଭୃତି ଧର୍ମର ଆରମ୍ଭ ମାତ୍ର; ଏଗୁଡ଼ିକୁ ଯଥାର୍ଥ ଈଶ୍ୱର ପ୍ରେମ-ନାମରେ ଅଭିହିତ କରାଯାଇପାରେ ନାହିଁ । ପ୍ରେମର କଥା ଆମେମାନେ ସବୁବେଳେ ଶୁଣିଥାଉଁ । ସମସ୍ତେ କହନ୍ତି, 'ଭଗବାନଙ୍କୁ ଭଲ ପାଅ'—କିନ୍ତୁ ଭଲ ପାଇବା କାହାକୁ କୁହାଯାଏ, ତାହା କେହି ଜାଣନ୍ତି ନାହିଁ । ଯଦି ଜାଣିଥାନ୍ତେ, ତାହାହେଲେ ଯେତେବେଳେ ଇଚ୍ଛା ସେତେବେଳେ ଭଲ ପାଇବା କଥା ମୁଖରେ ଉଚ୍ଚାରଣ କରୁ ନ ଥାନ୍ତେ । ପ୍ରତ୍ୟେକେ କହିଥାନ୍ତି, 'ସେ ଭଲ ପାଇପାରେ'; କିନ୍ତୁ ପାଞ୍ଚ ମିନିଟ୍ ଭିତରେ ବୁଝାପଡ଼େ ତା' ପ୍ରକୃତରେ ଭଲପାଇବା ନାହିଁ । ପ୍ରତ୍ୟେକ ନାରୀ କହିଥାନ୍ତି—ସେ ଭଲ ପାଇପାରନ୍ତି; କିନ୍ତୁ ତିନି ମିନିଟରେ ବୁଝିଯାଆନ୍ତି ଯେ, ସେମାନେ ଭଲ ପାଇପାରନ୍ତି ନାହିଁ । ଏ ସଂସାର ପ୍ରେମ-କଥାରେ ପୂର୍ଣ୍ଣ; କିନ୍ତୁ ପ୍ରେମ କରିବା ଅତ୍ୟନ୍ତ କଠିନ । କେଉଁଠାରେ ସେ ପ୍ରେମ ? ପ୍ରେମ ଯେ ଅଛି, ତାହା କିପରି ଜାଣିବେ ? ପ୍ରେମର ପ୍ରଥମ ଲକ୍ଷଣ ଏହି ଯେ : ସେଥିରେ ଆଦାନ-ପ୍ରଦାନ ବା ଲାଭ-କ୍ଷତିର ପ୍ରଶ୍ନ ନାହିଁ । କିଛି ପାଇବା ପାଇଁ ଯେତେବେଳେ ଜଣେ ଅନ୍ୟ ଜଣକୁ ଭଲ ପାଏ, ଜାଣିବେ, ସେ ଭଲପାଇବା ନୁହେଁ, ବ୍ୟବସାୟ ମାତ୍ର । ଯେଉଁଠି କିଣାବିକାର କଥା, ସେଠାରେ ପ୍ରେମ ନାହିଁ । ଅତଏବ ଯେତେବେଳେ କୌଣସି ବ୍ୟକ୍ତି 'ଅମୁକ ଦିଅ' 'ସମୁକ ଦିଅ' ବୋଲି ଭଗବାନଙ୍କ ନିକଟରେ ପ୍ରାର୍ଥନା କରେ—ଜାଣିବେ ତାହା ପ୍ରେମ ନୁହେଁ । କିପରି ବା ହେବ ? ମୁଁ ତୁମକୁ ମୋର ପ୍ରାର୍ଥନା ସ୍ତବସ୍ତୁତି ଉପହାର ଦେଲି—ତୁମେ ତାହା ବଦଳରେ ମୋତେ କିଛି ଦିଅ—ଏ ତ କେବଳ ଦୋକାନଦାରି ମାତ୍ର ।

ଜଣେ ରାଜା ବଣକୁ ଶିକାର କରିବାକୁ ଯାଇଥିଲେ, ସେଠାରେ ଜଣେ ସାଧୁଙ୍କ ସହିତ ସାକ୍ଷାତ୍ ହେଲା । ସାଧୁଙ୍କ ସଙ୍ଗେ କିଛିକ୍ଷଣ କଥାବାର୍ତ୍ତା କରି ରାଜା ଏତେ ଖୁସି ହେଲେ ଯେ, ସାଧୁଙ୍କୁ ତାଙ୍କ ନିକଟରୁ କିଛି ଉପହାର ନେବା ପାଇଁ ଅନୁରୋଧ କଲେ । ସାଧୁ କହିଲେ —ନା, ମୁଁ ମୋ ନିଜ ଅବସ୍ଥାରେ ଖୁବ୍ ସନ୍ତୁଷ୍ଟ ଅଛି । ଏହିସବୁ ବୃକ୍ଷମାନଙ୍କରୁ ଖାଇବା ପାଇଁ ଯଥେଷ୍ଟ ଫଳ ପାଏ, ଏହିସବୁ ସୁନ୍ଦର, ପବିତ୍ର ନଦୀରୁ ମୋର ପ୍ରୟୋଜନ ମୁତାବକ ଜଳ ପାଏ, ଏହିସବୁ ଗୁହାରେ ନିଦ୍ରା ଯାଏ । ତୁମେ ରାଜା ହେଲେ ବି ତୁମ ପ୍ରଦତ୍ତ ଉପହାରକୁ ମୁଁ ଗ୍ରାହ୍ୟ କରୁ ନାହିଁ ।' ସମ୍ରାଟ କହିଲେ, 'କେବଳ ମୋତେ ପବିତ୍ର କରିବା ପାଇଁ, ସନ୍ତୁଷ୍ଟ କରିବା ପାଇଁ ମୋ ନିକଟରୁ କିଛି ହେଲେ ଗ୍ରହଣ କରନ୍ତୁ ଏବଂ ଅନୁଗ୍ରହପୂର୍ବକ ଥରେ ମୋର ରାଜଧାନୀକୁ ଆସନ୍ତୁ ।' ଅନେକ ଅନୁରୋଧ ପରେ ସମ୍ରାଟଙ୍କ ସହିତ ଯିବାକୁ ସାଧୁ ସ୍ୱୀକୃତ ହେଲେ । ସାଧୁଙ୍କୁ ପ୍ରାସାଦକୁ ନିଆଗଲା । ସେଠାରେ ଚତୁର୍ଦ୍ଦିଗରେ ସୁନା, ହୀରା ମଣିମାଣିକ୍ୟ, ଜହରତ ଓ ଆହୁରି ଅନେକ ଅଦ୍ଭୁତ ବସ୍ତୁ ରହିଥିଲା—ଚତୁର୍ଦ୍ଦିଗରେ ଐଶ୍ୱର୍ଯ୍ୟ ଓ ବୈଭବର ଚିହ୍ନ । ରାଜା କହିଲେ, ଆପଣ ଅଳ୍ପ ସମୟ ଅପେକ୍ଷା କରନ୍ତୁ—ମୁଁ ମୋର ପ୍ରାର୍ଥନା ଶେଷ କରି ଆସୁଛି । ଏହା କହି ସେ ଘରର ଗୋଟିଏ କଣକୁ ଯାଇ ପ୍ରାର୍ଥନା କରିବାକୁ ଲାଗିଲେ, 'ପ୍ରଭୋ, ମୋତେ ଆହୁରି ଅଧିକ ଐଶ୍ୱର୍ଯ୍ୟ ଦିଅ, ଅଧିକ ସନ୍ତାନସନ୍ତତି ଦିଅ, ଅଧିକ ରାଜ୍ୟ

ଦିଅ ।’ ଏଥିମଧ୍ୟରେ ସାଧୁ ଉଠି ଚାଲିଯିବାକୁ ଲାଗିଲେ । ତାଙ୍କୁ ଚାଲିଯାଉଥିବାର ଦେଖି ରାଜା ତାଙ୍କ ପଛେ ପଛେ ଯାଇ କହିବାକୁ ଲାଗିଲେ, ‘ଦୟାକରି ଠିଆ ହୁଅନ୍ତୁ, ଆପଣ ମୋର ଉପହାର ଗ୍ରହଣ ନ କରି ଚାଲି ଯାଉଛନ୍ତି ଯେ !’ ତା’ପରେ ସାଧୁ ତାଙ୍କ ଆଡ଼କୁ ଫେରି କହିଲେ, ‘ଭିକ୍ଷୁକ ! ମୁଁ ଭିକ୍ଷୁକ ନିକଟରୁ ଭିକ୍ଷା କରେ ନାହିଁ । ତୁମେ ଆଉ କଅଣ ଦେଇ ପାରିବ ? ତୁମେ ନିଜେ ତ ସର୍ବଦା ଭିକ୍ଷା କରୁଛ !’ ଏଭଳି ପ୍ରାର୍ଥନା ପ୍ରେମର ଭାଷା ନୁହେଁ । ଯଦି ଭଗବାନଙ୍କ ନିକଟରେ ଅମୁକସମୁକ ପ୍ରାର୍ଥନା କରିବାକୁ ହୁଏ, ତେବେ ପ୍ରେମ ଏବଂ ଦୋକାନଦାରି ମଧ୍ୟରେ ପ୍ରଭେଦ କ’ଣ ? ସୁତରାଂ ପ୍ରେମର ପ୍ରଥମ ଲକ୍ଷଣ ଏହି ଯେ—ଏଥିରେ କୌଣସି ପ୍ରକାର ଆଦାନପ୍ରଦାନ ନାହିଁ—ପ୍ରେମ ସର୍ବଦା କେବଳ ଦେବାକୁ ହୋଇଥାଏ । ପ୍ରେମ ଚିରକାଳ ହିଁ ଦାତା—ଗ୍ରହୀତା ନୁହେଁ । ଭଗବାନଙ୍କ ପ୍ରକୃତ ସନ୍ତାନ କହନ୍ତି, ‘ଯଦି ଭଗବାନ ଆଅନ୍ତି, ତେବେ ମୁଁ ତାଙ୍କୁ ମୋର ସର୍ବସ୍ୱ ଦେଇପାରେ; କିନ୍ତୁ ତାଙ୍କ ନିକଟରୁ ମୁଁ କିଛି ଚାହେଁ ନାହିଁ, ଏ ଜଗତର କୌଣସି ଜିନିଷ ହିଁ ମୁଁ ଚାହେଁ ନାହିଁ । ତାଙ୍କୁ ଭଲ ପାଇବାକୁ ଭଲ ଲାଗେ ବୋଲି ମୁଁ ଭଲ ପାଏ, ତାହା ପରିବର୍ତ୍ତିରେ ତାଙ୍କଠାରୁ କୌଣସି ପ୍ରକାର ଅନୁଗ୍ରହ ଭିକ୍ଷା କରେ ନାହିଁ । କିଏ ଜାଣିବାକୁ ଚାହେଁ, ଈଶ୍ୱର ସର୍ବଶକ୍ତିମାନ କି ନୁହନ୍ତି ? ମୁଁ ତାଙ୍କ ନିକଟରୁ କୌଣସି ଶକ୍ତି ଚାହେଁ ନାହିଁ ଏବଂ ତାଙ୍କର ଶକ୍ତିର କୌଣସି ପ୍ରକାଶ ମଧ୍ୟ ଦେଖିବାକୁ ଚାହେଁ ନାହିଁ । ସେ ପ୍ରେମର ଭଗବାନ, ଏହି ଟିକକ ଜାଣିଲେ ହିଁ ମୋ ପକ୍ଷରେ ଯଥେଷ୍ଟ । ମୁଁ ଅନ୍ୟ କିଛି ଜାଣିବାକୁ ଚାହେଁ ନାହିଁ ।’

ପ୍ରେମର ଦ୍ୱିତୀୟ ଲକ୍ଷଣ: ପ୍ରେମରେ କୌଣସି ପ୍ରକାର ଭୟ ନାହିଁ । ପ୍ରେମରେ କଅଣ କୌଣସି ଭୟ ରହିପାରେ ? ମେଣ୍ଢାଛୁଆ କଅଣ କେବେହେଲେ ସିଂହକୁ ଭଲ ପାଇପାରେ ? ନା । ମୂଷା ବିରାଡ଼ିକୁ ? ନା । ଦାସ ପ୍ରଭୁଙ୍କୁ ଭଲପାଏ ? କ୍ରୀତଦାସଗଣ ବେଳେବେଳେ ଭଲ ପାଇବାର ଛଳନା କରିଥାଆନ୍ତି ସତ୍ୟ; କିନ୍ତୁ ବାସ୍ତବିକ ତାହା କଅଣ ଭଲ ପାଇବା ? ଭୟ ଭିତରେ ଭଲ ପାଇବା କେବେ କେଉଁଠି ଦେଖିଛନ୍ତି ? ଏହା ଛଳନା ମାତ୍ର ବୁଝିବାକୁ ହେବ । ଯେତେଦିନ ମନୁଷ୍ୟ ଭଗବାନଙ୍କୁ ମେଘ ଉପରେ ଆସୀନ, ଗୋଟିଏ ହାତରେ ପୁରସ୍କାର ଓ ଅନ୍ୟ ହାତରେ ଦଣ୍ଡ ଦିଅନ୍ତି ବୋଲି ଚିନ୍ତା କରେ, ସେତେଦିନ ପର୍ଯ୍ୟନ୍ତ କୌଣସି ଭଲ ପାଇବା ସମ୍ଭବ ନୁହେଁ । ଭଲ ପାଇବାର ଭାବ ସହିତ କେବେହେଲେ ଭୟର ଭାବ ରହିବ ନାହିଁ । ଭାବି ଦେଖନ୍ତୁ—ଜଣେ ତରୁଣୀ ଜନନୀ ରାସ୍ତାରେ ଠିଆ ହୋଇଛନ୍ତି ଏବଂ ଗୋଟାଏ କୁକୁର ତାଙ୍କୁ ଲକ୍ଷ୍ୟ କରି ଚିତ୍କାର କରିବାକୁ ଲାଗିଲା—ତତ୍‌କ୍ଷଣାତ୍ ସେ ସମ୍ମୁଖରେ ଥିବା ଗୃହରେ ଆଶ୍ରୟ ନେଲେ । ମନେକରନ୍ତୁ, ତା’ ପରଦିନ ସେ ପୂର୍ବପରି ରାସ୍ତାରେ ଠିଆ ହୋଇ ରହିଛନ୍ତି—ସାଥୀରେ ତାଙ୍କର ଶିଶୁସନ୍ତାନ । ଆହୁରି ମନେକରନ୍ତୁ, ଗୋଟିଏ ସିଂହ ଆସି ଛୁଆଟିକୁ ଆକ୍ରମଣ କଲା; ସେତେବେଳେ ସେ କେଉଁଠି ରହିବେ, କହନ୍ତୁ ଦେଖି ? ସେତେବେଳେ ତାଙ୍କର ଶିଶୁକୁ ରକ୍ଷା କରିବା ପାଇଁ ସେ ସିଂହ-ମୁହଁକୁ ହିଁ ଲମ୍ଫ ଦେବେ; ଏଥିରେ ଆଉ କୌଣସି ସନ୍ଦେହ ନାହିଁ । ଏଠାରେ ପ୍ରେମ ଭୟକୁ ଜୟ କରିଛି । ଭଗବତ୍-ପ୍ରେମ

ସମ୍ବନ୍ଧରେ ମଧ୍ୟ ଠିକ୍ ଏହିଭଳି । ଭଗବାନ ପୁରସ୍କାରଦାତା ନା ଦଣ୍ଡଦାତା—ଏ କଥା ନେଇ କିଏ ମୁଣ୍ଡ ଖେଳାଏ ? ପ୍ରକୃତ ପ୍ରେମିକ କଦାପି ଏହି ଭାବରେ ଚିନ୍ତା କରେ ନାହିଁ । ଜଣେ ବିଚାରପତିଙ୍କ କଥା ଧରନ୍ତୁ—ସେ ଯେତେବେଳେ ଘରକୁ ଫେରିଆସନ୍ତି, ସେତେବେଳେ ତାଙ୍କ ପତ୍ନୀ ତାଙ୍କୁ କିଭାବରେ ଦେଖନ୍ତି ? ସେ ତାଙ୍କୁ ବିଚାରପତି ବା ପୁରସ୍କାରଦାତା କିମ୍ବା ଶାସ୍ତି-ଦାତା ବୋଲି ଦେଖନ୍ତି ନାହିଁ—ସେ ତାଙ୍କୁ ତାଙ୍କର ସ୍ୱାମୀ ବୋଲି, ତାଙ୍କର ପ୍ରେମାସ୍ପଦ ବୋଲି ଦେଖିଥାଆନ୍ତି । ତାଙ୍କର ପିଲାମାନେ ତାଙ୍କୁ କି ଭାବରେ ଦେଖନ୍ତି ? ତାଙ୍କର ସ୍ନେହ-ମୟ ପିତାରୂପରେ ଦେଖନ୍ତି । ପୁରସ୍କାରଦାତା ବା ଶାସ୍ତିଦାତାରୂପେ ଦେଖନ୍ତି ନାହିଁ । ଏହି-ପରି ଭଗବାନଙ୍କ ସନ୍ତାନମାନେ ମଧ୍ୟ କେବେହେଲେ ତାଙ୍କୁ ପୁରସ୍କାରଦାତା ବା ଦଣ୍ଡ-ବିଧାତାରୂପେ ଦେଖନ୍ତି ନାହିଁ । ବାହାରର ଲୋକେ, ଯେଉଁମାନେ ତାଙ୍କ ପ୍ରେମର ଆସ୍ୱାଦ କେବେହେଲେ ପାଇନାହାନ୍ତି, ସେହିମାନେ ହିଁ ତାଙ୍କୁ ଭୟ କରନ୍ତି ଏବଂ ତାଙ୍କ ଭୟରେ ସବୁ-ବେଳେ କମ୍ପିବାକୁ ଲାଗନ୍ତି । ଏସବୁ ଭୟର ଭାବ ପରିତ୍ୟାଗ କରନ୍ତୁ । ଭଗବାନ ପୁରସ୍କାର-ଦାତା ବା ଦଣ୍ଡଦାତା, ଏସବୁ ଭାବ କ୍ଷତିକାରକ; ଯେଉଁମାନେ ବର୍ବର ପ୍ରକୃତିର, ସେମାନଙ୍କ ପକ୍ଷରେ ହୁଏତ ଏହାର କିଛି ଉପଯୋଗିତା ଥାଇପାରେ । ଅନେକ ବୁଦ୍ଧିମାନ୍ ଲୋକ ମଧ୍ୟ ଧର୍ମ-ଜଗତରେ ବର୍ବରତୁଲ୍ୟ; ସୁତରାଂ ଏ ଭାବଗୁଡ଼ିକରେ ସେମାନଙ୍କର ଉପକାର ହୋଇ-ପାରେ । କିନ୍ତୁ ଯେଉଁ ସମସ୍ତ ବ୍ୟକ୍ତି ଆଧ୍ୟାତ୍ମିକ ରାଜ୍ୟରେ ଅଗ୍ରସର, ଯେଉଁମାନଙ୍କର ଯଥାର୍ଥ ଧର୍ମଭାବ ଜାଗରିତ ହୋଇଛି, ଯେଉଁମାନଙ୍କର ଆଧ୍ୟାତ୍ମିକ ଅନ୍ତର୍ଦୃଷ୍ଟି ଖୋଲିଯାଇଛି, ସେମାନଙ୍କ ପକ୍ଷରେ ଏସବୁ ଭାବ ପିଲାଳିଆମି, ବୋକାମି । ଏହିପରି ବ୍ୟକ୍ତିମାନେ ସମସ୍ତ ପ୍ରକାର ଭୟ ଭାବକୁ ପରିତ୍ୟାଗ କରନ୍ତି ।

ପ୍ରେମର ତୃତୀୟ ଲକ୍ଷଣ ଏହା ଅପେକ୍ଷା ଉଚ୍ଚତର । ପ୍ରେମ ସବୁବେଳେ ଉଚ୍ଚତମ ଆଦର୍ଶ । ମନୁଷ୍ୟ ଯେତେବେଳେ ଏ ଦୁଇଟି ସୋପାନକୁ ଅତିକ୍ରମ କରେ, ଯେତେବେଳେ ସେ ଦୋକାନଦାରି ଏବଂ ଭୟଭାବକୁ ଛାଡ଼ିଦିଏ, ସେତେବେଳେ ସେ ଉପଲବ୍ଧି କରିପାରେ ଯେ, ପ୍ରେମ ହିଁ ସବୁବେଳେ ଆମର ଉଚ୍ଚତମ ଆଦର୍ଶ ଥିଲା । ଆମେମାନେ ଏ ଜଗତରେ କେତେ ସ୍ଥଳରେ ଦେଖିବାକୁ ପାଉ ଯେ, ପରମା-ସୁନ୍ଦରୀ ଅତି କୁତ୍ସିତ ପୁରୁଷକୁ ମଧ୍ୟ ଭଲ ପାଉଛି । ପୁଣି ଏହା ମଧ୍ୟ ଦେଖିବାକୁ ମିଳେ ଯେ, ସୁନ୍ଦର-ପୁରୁଷ ମଧ୍ୟ ଅତି କୁତ୍ସିତା ନାରୀକୁ ଭଲ ପାଉଛି । ଯେଠାରେ ବିଶେଷ ଆକର୍ଷଣ କିଅଣ ? ବାହାରର ଲୋକେ ସେମାନଙ୍କ ମଧ୍ୟରେ କୁତ୍ସିତ ନାରୀ ବା ପୁରୁଷଙ୍କୁ ଦେଖିବାକୁ ପାଆନ୍ତି; କିନ୍ତୁ ପ୍ରେମିକକୁ ଦେଖିବାକୁ ପାଆନ୍ତି ନାହିଁ, କେବେ ମଧ୍ୟ ଦେଖିବେ ନାହିଁ, ପ୍ରେମିକ ପକ୍ଷରେ ପ୍ରେମାସ୍ପଦ ଭଳି ପରମସୁନ୍ଦର ଆଉ କେହି ନାହିଁ । ଏହା କିପରି ହୁଏ ? ଯେଉଁ ନାରୀ କୁତ୍ସିତ ପୁରୁଷକୁ ଭଲପାଏ, ସେ ତା' ନିଜ ମନ ଭିତରେ ସୌନ୍ଦର୍ଯ୍ୟର ଯେଉଁ ଆଦର୍ଶ ଅଛି, ତାହାକୁ ନେଇ ଏହି କୁତ୍ସିତ ପୁରୁଷ ଉପରେ ପ୍ରକ୍ଷେପ କରେ ଏବଂ ସେ ଯେ ଏହି କୁତ୍ସିତ ପୁରୁଷକୁ ପୂଜା କରେ ଓ ଭଲପାଏ, ତା ନୁହେଁ, ସେ ତାହାର ଆଦର୍ଶର ହିଁ ପୂଜା କରେ । ସେହି ପୁରୁଷଟି ଯେପରି ଉପଲକ୍ଷ୍ୟ ମାତ୍ର ଏବଂ ସେହି ଉପଲକ୍ଷ୍ୟ ଉପରେ ସେ ତା' ନିଜ ଆଦର୍ଶକୁ ପ୍ରକ୍ଷେପ କରି ତାକୁ ଆବୃତ କରି ପକାଇଛି ଏବଂ

ତାହା ହିଁ ତାହାର ଉପାସ୍ୟ ବସ୍ତୁରୂପେ ଠିଆହୋଇଛି । ଯେଉଁଠାରେ ଭଲପାଇବା ସେଠାରେ ଏଇକଥା ଖାଟେ, ଭାବ ଦେଖନ୍ତୁ—ଆମର ଅଧିକାଂଶଙ୍କର ଭାଇଭଉଣୀମାନେ ଦେଖିବାକୁ ଖୁବ୍ ସାଧାରଣ; କିନ୍ତୁ ଆମର ଭାଇଭଉଣୀ ବୋଲି ସେମାନେ ଆମ ନିକଟରେ ପରମସୁନ୍ଦର ।

ଏସବୁ ବ୍ୟାପାରରେ ଦାର୍ଶନିକ ବ୍ୟାଖ୍ୟା ଏହି ଯେ, ପ୍ରତ୍ୟେକେ ହିଁ ନିଜ ନିଜର ଆଦର୍ଶକୁ ବାହାରେ ପ୍ରକ୍ଷେପ କରି ତାହାର ଉପାସନା କରିଥାଆନ୍ତି । ଏହି ବହିର୍ଜଗତ ଉପଲକ୍ଷ୍ୟ ମାତ୍ର । ଆମେ ଯାହା କିଛି ଦେଖୁ, ତାହା ଆମର ମନଭିତରୁ ବାହାରେ ପ୍ରକ୍ଷେପ କରୁମାତ୍ର । ଗୋଟିଏ ଶାମୁକାର ଖୋଲ ଭିତରେ ବାଲିକଣାଟିଏ ପ୍ରବେଶ କରି ତା' ଭିତରେ କିଛି ଉତ୍ତେଜନା ସୃଷ୍ଟି କରେ । ତାହା ଫଳରେ ଶାମୁକା ଭିତରୁ ରସ ନିର୍ଗତ ହୋଇ ତତ୍‌କ୍ଷଣାତ୍ ବାଲିକଣାଟିକୁ ଆବୃତ କରେ । ଏହିଭଳି ସୁନ୍ଦର ମୁକ୍ତା ଉତ୍ପନ୍ନ ହୁଏ । ଆମେମାନେ ଠିକ୍ ସେହିପରି କରୁଛୁ । ବହିର୍ଜଗତ୍‌ର ବସ୍ତୁସକଳ ବାଲିକଣା ସଦୃଶ ଆମମାନଙ୍କ ଚିନ୍ତାର ଉପଲକ୍ଷ୍ୟ ମାତ୍ର—ଏଗୁଡ଼ିକ ଉପରେ ଆମେ ଆମର ନିଜର ଭାବ ଆରୋପ କରି ଆମର ବାହ୍ୟ ବସ୍ତୁଗୁଡ଼ିକ ସୃଷ୍ଟି କରୁଛୁ । ମନ୍ଦ ଲୋକମାନେ ଏହି ଜଗତକୁ ଘୋର ନରକରୂପେ ଦେଖିଥାଆନ୍ତି, ଭଲ ଲୋକମାନେ ଏହାକୁ ହିଁ ପରମସ୍ୱର୍ଗ ବୋଲି ମନେ କରନ୍ତି । ପ୍ରେମିକମାନେ ଏ ଜଗତକୁ ପ୍ରେମପୂର୍ଣ୍ଣ ଏବଂ ଦ୍ୱେଷପରାୟଣ ଲୋକେ ଦ୍ୱେଷପୂର୍ଣ୍ଣ ବୋଲି ମନେ କରନ୍ତି । ବିବାଦପରାୟଣ ବ୍ୟକ୍ତିମାନେ ଜଗତରେ ବିବାଦବିରୋଧ ବ୍ୟତୀତ ଅନ୍ୟ କିଛି ଦେଖିପାରନ୍ତି ନାହିଁ; ପୁଣି ଶାନ୍ତିପ୍ରିୟ ବ୍ୟକ୍ତିମାନେ ଏଥିରେ ଶାନ୍ତି ବ୍ୟତୀତ ଅନ୍ୟ କିଛି ଦେଖିବାକୁ ପାଆନ୍ତି ନାହିଁ । ଯେଉଁମାନେ ପୂର୍ଣ୍ଣତ୍ୱପ୍ରାପ୍ତ ହୋଇଛନ୍ତି, ସେମାନେ ଏଥିରେ ଈଶ୍ୱର ବ୍ୟତୀତ ଆଉ କିଛି ଦର୍ଶନ କରନ୍ତି ନାହିଁ । ସୁତରାଂ, ଆମେମାନେ ସବୁବେଳେ ଆମର ଉଚ୍ଚତମ ଆଦର୍ଶର ଉପାସନା କରିଥାଉ ଏବଂ ଯେତେବେଳେ ଆମେମାନେ ଏପରି ଏକ ଅବସ୍ଥାରେ ଉପନୀତ ହେଉ, ଯେଉଁ ଅବସ୍ଥାରେ ଆଦର୍ଶକୁ ଆଦର୍ଶରୂପରେ ହିଁ ଉପାସନା କରିପାରୁ, ସେତେବେଳେ ଆମମାନଙ୍କର ଯୁକ୍ତିତର୍କ ଓ ସନ୍ଦେହ ସବୁ ଦୂର ହୋଇଯାଏ । ଈଶ୍ୱରଙ୍କ ଅସ୍ତିତ୍ୱ ପ୍ରମାଣ କରାଯାଇପାରେ କି ନା, ଏକଥା ନେଇ କିଏ ମୁଣ୍ଡ ଖେଳାଏ ? ଆଦର୍ଶ ତ କେବେହେଲେ ନଷ୍ଟ ହୋଇପାରେ ନାହିଁ, କାରଣ ତାହା ଆମ ପ୍ରକୃତିର ଅଂଶସ୍ୱରୂପ । ଯେତେବେଳେ ଆମେ ନିଜର ଅସ୍ତିତ୍ୱ ସମ୍ବନ୍ଧରେ ସନ୍ଦେହ କରୁ, ସେତେବେଳେ ଆମେ ସେହି ଆଦର୍ଶ ସମ୍ବନ୍ଧରେ ସନ୍ଦେହ କରୁ ଏବଂ ଯେହେତୁ ଆମେ ଆମର ଅସ୍ତିତ୍ୱକୁ ସନ୍ଦେହ କରିପାରୁ ନାହିଁ, ସେହେତୁ ଈଶ୍ୱରଙ୍କର ଅସ୍ତିତ୍ୱ ସମ୍ବନ୍ଧରେ ମଧ୍ୟ ପ୍ରଶ୍ନ କରିପାରୁନାହିଁ । ଆମ ବାହାରେ କୌଣସି ସ୍ଥାନରେ ଅବସ୍ଥିତ, ଖିଆଲନୁଯାୟୀ ଜଗତର ଶାସନକାରୀ, କେତେଦିନ ଧରି ସୃଷ୍ଟି କରିବାପରେ ଅବଶିଷ୍ଟ କାଳନିଦ୍ରାଗତ ଏକ ଈଶ୍ୱରଙ୍କର ଅସ୍ତିତ୍ୱ—ବିଜ୍ଞାନ ପ୍ରମାଣ କରିପାରୁ ବା ନ ପାରୁ, ଏହାକୁ ନେଇ କିଏ ମୁଣ୍ଡ ଖେଳାଏ ? ଈଶ୍ୱର ଏକାଧାରରେ ସର୍ବଶକ୍ତିମାନ୍ ଓ ପୂର୍ଣ୍ଣ ଦୟାମୟ ହୋଇପାରନ୍ତି କି ନା, ଏକଥା ନେଇ କିଏ ମୁଣ୍ଡ ଖେଳାଏ ? ଭଗବାନ୍ ମନିଷର ପୁରସ୍କାରଦାତା କି ନା ଏବଂ ସେ ଆମମାନଙ୍କୁ ସ୍ୱେଚ୍ଛାଚାରୀ ଦୃଷ୍ଟିରେ ଅଥବା ଦୟାଶୀଳ ସମ୍ରାଟ ଦୃଷ୍ଟିରେ ଦେଖନ୍ତି କି ନା,

ଏହାକୁ ନେଇ କଏ ମୁଣ୍ଡ ଘୂରାଏ ? ପ୍ରେମିକ ଏହି ଭାବ ଅତିକ୍ରମ କରିଅଛି, ସେ ଏହିସବୁ ଶାସ୍ତ୍ରର ଭୟ ଓ ସନ୍ଦେହର ଏବଂ ବୈଜ୍ଞାନିକ ବା ଅନ୍ୟ କୌଣସି ପ୍ରମାଣର ବାହାରକୁ ଯାଇଛି । ତା' ପକ୍ଷରେ ପ୍ରେମର ଆଦର୍ଶ ହିଁ ଯଥେଷ୍ଟ, ଆଉ ଏହି ଜଗତ୍ ଯେ ପ୍ରେମର ହିଁ ପ୍ରକାଶସ୍ୱରୂପ —ଏହା କଅଣ ସ୍ୱତଃସିଦ୍ଧ ନୁହେଁ ?

କେଉଁ ଶକ୍ତିବଳରେ ଅଣୁଅଣୁ ସହିତ, ପରମାଣୁ ପରମାଣୁ ସହିତ ମିଳିତ ହେଉଛନ୍ତି, ଗ୍ରହ ଉପଗ୍ରହ ପରସ୍ପର ଦିଗରେ ଆବର୍ତ୍ତିତ ହେଉଛନ୍ତି ? କେଉଁ ଶକ୍ତି ନରକୁ ନାରୀପ୍ରତି, ନାରୀକୁ ନରପ୍ରତି, ମନୁଷ୍ୟକୁ ମନୁଷ୍ୟପ୍ରତି, ଜୀବଜନ୍ତୁମାନଙ୍କୁ ପରସ୍ପର ପ୍ରତି ଆକୃଷ୍ଟ କରାଉଛନ୍ତି ?—ଯେପରି ସମଗ୍ର ଜଗତଟାକୁ ଗୋଟିଏ କେନ୍ଦ୍ରାଭିମୁଖରେ ଆକର୍ଷଣ କରାଉଅଛନ୍ତି ? ଏହାକୁ ପ୍ରେମ କୁହାଯାଏ । କ୍ଷୁଦ୍ରତମ ପରମାଣୁଠାରୁ ଉଚ୍ଚତମ ପ୍ରାଣୀ ପର୍ଯ୍ୟନ୍ତ, ଆବ୍ରହ୍ମସ୍ତମ୍ଭ ଏହି ପ୍ରେମର ପ୍ରକାଶ—ଏହି ପ୍ରେମ ସର୍ବବ୍ୟାପୀ ଓ ସର୍ବଶକ୍ତିମାନ୍ । ଚେତନ-ଅଚେତନ, ବ୍ୟଷ୍ଟି-ସମଷ୍ଟି—ସବୁରି ଭିତରେ ଏହି ଭଗବତ୍‌ପ୍ରେମ ଆକର୍ଷଣୀ ଶକ୍ତିରୂପେ ବିରାଜମାନ କରି-ଅଛି । ଜଗତ ମଧ୍ୟରେ ପ୍ରେମ ହିଁ ଏକମାତ୍ର ପ୍ରେରଣା-ଶକ୍ତି । ଏହି ପ୍ରେମର ପ୍ରେରଣାରେ ହିଁ ଖ୍ରୀଷ୍ଟ ସମଗ୍ର ମାନବଜାତି ପାଇଁ ପ୍ରାଣ ଦେଇଥିଲେ । ବୁଦ୍ଧ ଗୋଟିଏ ଛାଗଶିଶୁ ପାଇଁ ପ୍ରାଣ ଦେବାକୁ ଉଦ୍ୟତ ହୋଇଥିଲେ; ଏହାର ପ୍ରେରଣାରେ ହିଁ ମାତା ସନ୍ତାନ ପାଇଁ ଏବଂ ପତି ପତ୍ନୀ ପାଇଁ ପ୍ରାଣ ବିସର୍ଜନ କରିପାରେ । ଏହି ପ୍ରେମର ପ୍ରେରଣାରେ ହିଁ ମଣିଷ ସ୍ୱଦେଶ ପାଇଁ ପ୍ରାଣ ଦେବାକୁ ପ୍ରସ୍ତୁତ ହୁଏ; ଏବଂ ଆଶ୍ଚର୍ଯ୍ୟର କଥା ସେହି ପ୍ରେମର ପ୍ରେରଣାରେ ଚୋର ଚୋରି କରେ, ହତ୍ୟାକାରୀ ହତ୍ୟାକରେ, କାରଣ ଏହି ସମସ୍ତର ମୂଳରେ ଏହି ପ୍ରେମ ଯଦିଓ ତାହାର ପ୍ରକାଶ ଭିନ୍ନ ଭିନ୍ନ । ଏହା ହିଁ ଜଗତରେ ଏକମାତ୍ର ପ୍ରେରଣା-ଶକ୍ତି । ଚୋରର ପ୍ରେମ ଟଙ୍କା ଉପରେ—ପ୍ରେମ ତାହା ଭିତରେ ରହିଛି; କିନ୍ତୁ ତାହା ବିପଥରେ ଚାଳିତ ହୋଇଅଛି । ଏହିପରି ସର୍ବପ୍ରକାର ପାପକର୍ମ ଓ ସମୁଦାୟ ପୁଣ୍ୟ—ସବୁକିଛି ପଛରେ ସେହି ଅନନ୍ତ, ଶାଶ୍ୱତ ପ୍ରେମ ବିଦ୍ୟମାନ । ମନେକରନ୍ତୁ, ଜଣେ ଗୋଟାଏ ଘରେ ବସି ନିୟୁୟର୍କର ଗରିବମାନଙ୍କ ପାଇଁ ହଜାର ଡଲାରର ଖଣ୍ଡିଏ ଚେକ୍ ଲେଖିଦେଲେ ଏବଂ ଠିକ୍ ସେହି ସମୟରେ ସେହି ଘରେ ଆଉ ଜଣେ ବସି ତାହାର ବନ୍ଧୁର ନାମକୁ ଜାଲ୍ କଲା । ଏକ ଆଲୋକରେ ଦୁଇଜଣ ଲେଖି-ଛନ୍ତି; କିନ୍ତୁ ଯିଏ ଯେଉଁ ଭାବରେ ଆଲୋକର ବ୍ୟବହାର କରିଛି, ସେ ସେଥିପାଇଁ ଦାୟୀ ହେବ—ଆଲୋକର କୌଣସି ଦୋଷଗୁଣ ନାହିଁ । ଏହି ପ୍ରେମ ସମସ୍ତ ବସ୍ତୁରେ ପ୍ରକାଶିତ ଅଥଚ ନିର୍ଲିପ୍ତ, ଏହା ହିଁ ସମଗ୍ର ଜଗତର ପ୍ରେରଣାଶକ୍ତି । ଏହା ଅଭାବରେ ମୁହୂର୍ତ୍ତିକ ମଧ୍ୟରେ ଜଗତ୍ ନଷ୍ଟ ହୋଇଯିବ ଏବଂ ଏହି ପ୍ରେମ ହିଁ ଈଶ୍ୱର ।

କେହି କଅଣ ସ୍ୱାମୀ ପାଇଁ ସ୍ୱାମୀକୁ ଭଲପାଏ କି ? ସ୍ୱାମୀର ଅଭ୍ୟନ୍ତରରେ ଯେଉଁ ଆତ୍ମା ରହିଛି, ସେଥିପାଇଁ ସ୍ତ୍ରୀ ସ୍ୱାମୀକୁ ଭଲପାଏ; କେହି ପତ୍ନୀପାଇଁ ପତ୍ନୀକୁ ଭଲପାଏ ନାହିଁ, ପତ୍ନୀ ମଧ୍ୟରେ ଯେଉଁ ଆତ୍ମା ଅଛି, ସେଥିପାଇଁ ପତ୍ନୀକୁ ଭଲ ପାଏ; କେହିହେଲେ ସେହି ବସ୍ତୁ ପାଇଁ ସେହି ବସ୍ତୁକୁ ଭଲ ପାଆନ୍ତି ନାହିଁ, ଆତ୍ମା ଲାଗି ସେହି ବସ୍ତୁକୁ ଭଲପାଆନ୍ତି ।[୧] ଏପରିକି

୧ ବୃହ. ଉପ., ୨।୪।୫

ଅତିନିନ୍ଦିତ ଯେଉଁ ସ୍ୱାର୍ଥପରତା, ତାହା ମଧ୍ୟ ସେହି ପ୍ରେମର ହିଁ ପ୍ରକାଶ । ଏହି ଖେଳ ଗୁଡ଼ି ଦୂରରେ ଠିଆ ହୁଅନ୍ତୁ, ଏଥିରେ ମିଶିବାକୁ ଯାଆନ୍ତୁ ନାହିଁ, କେବଳ ଏହି ଅଦ୍ଭୁତ ଦୃଶ୍ୟାବଳୀ—ଦୃଶ୍ୟ ପରେ ଦୃଶ୍ୟ ଅଭିନୀତ ଏହି ବିଚିତ୍ର ନାଟକ—ଦେଖିଯାଆନ୍ତୁ ଏବଂ ଏହି ଅପୂର୍ବ ଐକ୍ୟତାନ ଗ୍ରହଣ କରନ୍ତୁ—ସବୁ ସେହି ଏକ ପ୍ରେମର ବିଭିନ୍ନ ପ୍ରକାଶ ମାତ୍ର—ଘୋର ସ୍ୱାର୍ଥପରତା ଭିତରେ ସେହି ଆତ୍ମା ବା 'ଅହଂ'-ଭାବ କ୍ରମଶଃ ବଢ଼ିବାରେ ଥାଏ । ସେ ଏକ 'ଅହଂ'—ଜଣେ ଲୋକ ବିବାହ କଲାପରେ ଦୁଇଟା ହେଲା, ଛୁଆପିଲା ହେଲେ, କେତେଗୁଡ଼ିଏ ହେଲା; ଏହିପରି ତାହାର ଅହଂର ବିସ୍ତୃତି ଘଟୁଥାଏ; ଗ୍ରାମ, ନଗର ଅବଶେଷରେ ସମଗ୍ର ଜଗତ୍ ତାହାର ଆତ୍ମସ୍ୱରୂପ ହୋଇଯାଏ । ଶେଷ ପର୍ଯ୍ୟନ୍ତ ସେହି ଆତ୍ମା ସକଳ ନରନାରୀ, ସକଳ ଶିଶୁ, ସକଳ ଜୀବଜନ୍ତୁ, ସମଗ୍ର ବିଶ୍ୱକୁ ନିଜ ମଧ୍ୟରେ ମିଳିତ କରେ । ତାହା କ୍ରମଶଃ ବଢ଼ି ବଢ଼ି ଏକ ସାର୍ବଜନୀନ ପ୍ରେମ—ଅନନ୍ତ ପ୍ରେମରେ ପରିଣତ ହୁଏ, ଏବଂ ଏହି ପ୍ରେମ ହିଁ ଈଶ୍ୱର ।

ଏହିପରି ଆମେମାନେ ପରାଭକ୍ତିରେ ଉପନୀତ ହେଉ—ଏ ଅବସ୍ଥାରେ ଅନୁଷ୍ଠାନ ଓ ପ୍ରତୀକ ପ୍ରଭୃତିର ଆଉ କୌଣସି ପ୍ରୟୋଜନ ନ ଥାଏ । ଯେ ସେହି ଅବସ୍ଥାରେ ପହଞ୍ଚିଛି, ସେ ଅନ୍ୟ କୌଣସି ସମ୍ପ୍ରଦାୟଭୁକ୍ତ ହୋଇପାରେ ନାହିଁ, କାରଣ ସମସ୍ତ ସମ୍ପ୍ରଦାୟ ହିଁ ତାହାର ଭିତରେ ରହିଛି । ସେ ଆଉ କେଉଁ ସମ୍ପ୍ରଦାୟ ଭୁକ୍ତ ହେବ ? ସମସ୍ତ ଗୀର୍ଜା ଓ ମନ୍ଦିରଗୁଡ଼ିକ ତ ତା'ରି ଭିତରେ ରହିଛି । ଏତେବଡ଼ ଗୀର୍ଜା କେଉଁଠି, ଯାହା ତା' ପକ୍ଷରେ ପର୍ଯ୍ୟାପ୍ତ ହୋଇପାରେ ? ଏଭଳି ବ୍ୟକ୍ତି ନିଜକୁ କେତେଗୁଡ଼ିଏ ନିର୍ଦ୍ଦିଷ୍ଟ ଅନୁଷ୍ଠାନ ମଧ୍ୟରେ ଆବଦ୍ଧ କରି ରଖିପାରନ୍ତି ନାହିଁ । ଯେଉଁ ଅସୀମ ପ୍ରେମ ସହିତ ସେ ଏକ ହୋଇ ମିଶିଯାଇଛନ୍ତି, ତାହାର ଆଉ କଅଣ ସୀମା ଅଛି ? ଯେଉଁସବୁ ଧର୍ମ ଏହି ପ୍ରେମର ଆଦର୍ଶକୁ ଗ୍ରହଣ କରିଛି, ସେସବୁ ଧର୍ମରେ ପ୍ରେମକୁ ବିଭିନ୍ନ ଭାବରେ ବ୍ୟକ୍ତ କରିବାର ଚେଷ୍ଟା ଦେଖାଯାଏ । ଯଦିଓ ଆମେମାନେ ଜାଣୁ, ଏହି ପ୍ରେମ କହିଲେ କଅଣ ବୁଝାଏ, ଯଦିଓ ଆମେମାନେ ଜାଣୁ, ଏହି ବିଭିନ୍ନ ଆସକ୍ତି ଓ ଆକର୍ଷଣପୂର୍ଣ୍ଣ ଜଗତରେ ସମସ୍ତ ହିଁ ସେହି ଅନନ୍ତ ପ୍ରେମର ଆଂଶିକ ବା ଅନ୍ୟ ଭାବର ପ୍ରକାଶ ମାତ୍ର, ତଥାପି ଆମେ ସର୍ବଦା ତାହାକୁ କଥାରେ ପ୍ରକାଶ କରିପାରୁ ନାହିଁ । ବିଭିନ୍ନ ଦେଶର ସାଧୁ ମହାପୁରୁଷଗଣ ତାହାକୁ ବିଭିନ୍ନ ଭାବରେ ବ୍ୟକ୍ତ କରିବା ପାଇଁ ଚେଷ୍ଟା କରିଛନ୍ତି । ଆମେମାନେ ଦେଖିବାକୁ ପାଉ, ସେମାନେ ଏହି ପ୍ରେମର ତାତ୍ପର୍ଯ୍ୟର ସାମାନ୍ୟ ଟିକେ ପ୍ରକାଶ କରିବା ପାଇଁ ଭାଷାର ଭଣ୍ଡାରକୁ ତନ୍ନତନ୍ନ କରି ଅନୁସନ୍ଧାନ କରିଛନ୍ତି; ଏପରିକି ଅତିଶୟ ଇନ୍ଦ୍ରିୟ-ଭୋଗବାଚକ ଶବ୍ଦଗୁଡ଼ିକୁ ମଧ୍ୟ ଦିବ୍ୟଭାବରେ ରୂପାନ୍ତରିତ କରି ସେମାନେ ବ୍ୟବହାର କରିଛନ୍ତି ।

ହିବ୍ରୁ ରାଜର୍ଷି [୧] ଏବଂ ଭାରତୀୟ ମହାପୁରୁଷଗଣ ମଧ୍ୟ ଏହି ଭାବରେ ଏହି ପ୍ରେମର

[୧] ଦ୍ରଷ୍ଟବ୍ୟ : 'ସଲୋମନଙ୍କର ଗୀତ' ( The Song of Solomon ) Old Test., Ch. VIII

ବର୍ଣ୍ଣନା କରଯାଇଛନ୍ତି । 'ହେ ପ୍ରିୟତମ, ତୁମେ ଯାହାକୁ ଥରେ ମାତ୍ର ଚୁମ୍ବନ କରଛ, ତୁମ ଦ୍ୱାରା ଥରେ ମାତ୍ର ଚୁମ୍ବିତ ହେଲେ ତୁମ ପାଇଁ ତା'ର ପିପାସା କ୍ରମଶଃ ବଢ଼ିଥାଏ । ସେତେବେଳେ ସମସ୍ତ ଦୁଃଖ ଦୂର ହୋଇଯାଏ ଏବଂ ସେ ଭୂତ ଭବିଷ୍ୟତ ବର୍ତ୍ତମାନ ସବୁ ଭୁଲି କେବଳ ତୁମରି ଚିନ୍ତା ହିଁ କରିବାକୁ ଲାଗେ ।'[୧] ଏହା ହିଁ ପ୍ରେମିକର ଉନ୍ମତ୍ତ ଅବସ୍ଥା—ଏହି ଅବସ୍ଥାରେ ସମସ୍ତ ବାସନା ଲୁପ୍ତ ହୋଇଯାଏ । ପ୍ରେମିକ କହେ—ମୁକ୍ତି କିଏ ଚାହେଁ ? କିଏ ମୁକ୍ତ ହେବାକୁ ଇଚ୍ଛା କରେ ? ଏପରକି, କିଏ ପୂର୍ଣ୍ଣତ୍ୱ ବା ନିର୍ବାଣପଦର ଅଭିଳାଷ କରେ ?

'ମୁଁ ଧନ ଚାହେଁ ନାହିଁ, ମୁଁ ସ୍ୱାସ୍ଥ୍ୟ ମଧ୍ୟ ପ୍ରାର୍ଥନା କରେ ନାହିଁ, ମୁଁ ରୂପଯୌବନ ମଧ୍ୟ ଚାହେଁ ନାହିଁ, ମୁଁ ତୀକ୍ଷ୍ଣ ବୁଦ୍ଧି କାମନା କରେ ନାହିଁ । ଏହି ସଂସାରର ସମୁଦାୟ ଅଶୁଭ ଭିତରେ ମୋର ବାରମ୍ବାର ଜନ୍ମ ହେଉ—ମୁଁ ସେଥିରେ କିଛିମାତ୍ର ବିରକ୍ତି ପ୍ରକାଶ କରିବି ନାହିଁ; କିନ୍ତୁ ମୋର ଯେପରି ତୁମପ୍ରତି ଅହେତୁକ ପ୍ରେମ ରହିଥାଏ ।'[୨] ଏହି ପ୍ରେମର ଉନ୍ମତ୍ତତା ହିଁ ପୂର୍ବୋକ୍ତ ସଙ୍ଗୀତାବଳୀରେ ଅଭିବ୍ୟକ୍ତ ହୋଇଛି । ମାନବୀୟ ପ୍ରେମ ଭିତରେ ସ୍ତ୍ରୀ-ପୁରୁଷଙ୍କର ପ୍ରେମ ହିଁ ସର୍ବୋଚ୍ଚ ଭାବରେ ବ୍ୟକ୍ତ, ପ୍ରବଳତମ ଓ ଅତଶୟ ମନୋହର । ଏହି କାରଣରୁ ଭଗବଦ୍-ପ୍ରେମର ବର୍ଣ୍ଣନାରେ ସାଧକମାନେ ଏହି ପ୍ରେମର ଭାଷା ବ୍ୟବହାର କରିଛନ୍ତି । ଏହି ମାନବୀୟ ପ୍ରେମର ମତ୍ତତା ସାଧୁମହାପୁରୁଷଗଣଙ୍କର ଉନ୍ମତ୍ତ ପ୍ରେମର କ୍ଷୀଣତମ ପ୍ରତଧ୍ୱନି ମାତ୍ର । ଯଥାର୍ଥ ଭଗବତ୍ପ୍ରେମିକଗଣ ଈଶ୍ୱରଙ୍କର ପ୍ରେମ-ମଦିରା ପାନ କରି ଉନ୍ମତ୍ତ ହେବାକୁ ଚାହାଁନ୍ତି । ସେମାନେ 'ଭଗବତ୍-ପ୍ରେମୋନ୍ମତ୍ତ ପୁରୁଷ' । ସମସ୍ତ ଧର୍ମର ସାଧୁମହାପୁରୁଷଗଣ ଯେଉଁ ପ୍ରେମ-ମଦିରା ପ୍ରସ୍ତୁତ କରିଛନ୍ତି, ଯାହା ଉପରେ ନିଷ୍କାମ ଭକ୍ତଗଣଙ୍କର ସମଗ୍ର ମନପ୍ରାଣ ନିବଦ୍ଧ, ସେମାନେ ସେହି ପ୍ରେମର ପାନପାତ୍ର ନିଃଶେଷ କରିବାକୁ ଚାହାଁନ୍ତି । ସେମାନେ ଏହି ପ୍ରେମ ବ୍ୟତୀତ ଅନ୍ୟ କିଛି ଚାହାଁନ୍ତି ନାହିଁ—ପ୍ରେମ ହିଁ ପ୍ରେମର ଏକମାତ୍ର ପୁରସ୍କାର ଏବଂ କି ଅପୂର୍ବ ଏହି ପୁରସ୍କାର । ଏହା ହିଁ ଏକମାତ୍ର ବସ୍ତୁ, ଯାହାଦ୍ୱାରା ସକଳ ଦୁଃଖ ଦୂରୀଭୂତ ହୁଏ; ଏହା ହିଁ ଏକମାତ୍ର ପାନପାତ୍ର, ଯେଉଁଥିରୁ ପାନ କଲେ ଭବବ୍ୟାଧି ଅନ୍ତର୍ହିତ ହୁଏ, ସେତେବେଳେ ମନୁଷ୍ୟ ଈଶ୍ୱରପ୍ରେମରେ ମତ୍ତ ହୋଇଯାଏ ଏବଂ ସେ ଯେ ମଣିଷ, ତାହା ଭୁଲିଯାଏ । ଶେଷରେ ଆମେ ଦେଖିବାକୁ ପାଉ ବିଭିନ୍ନ ସାଧନ-ପ୍ରଣାଳୀ ପରିଣାମରେ ପୂର୍ଣ୍ଣ ଏକତ୍ୱରୂପକ ଏକକେନ୍ଦ୍ରର ଅଭିମୁଖୀ । ଆମେମାନେ ଚିରକାଳ ହିଁ ଦ୍ୱୈତବାଦୀଭାବରେ ସାଧନା ଆରମ୍ଭ କରିଥାଉ । ସେତେବେଳେ ଏହି ଜ୍ଞାନ ଥାଏ ଯେ, ଈଶ୍ୱର ଏବଂ ମୁଁ ସମ୍ପୂର୍ଣ୍ଣ ପୃଥକ୍ ବସ୍ତୁ । ପ୍ରେମ ଉଭୟଙ୍କ ମଧ୍ୟସ୍ଥଳରେ ଆସି ଉପସ୍ଥିତ ହୁଏ । ସେତେବେଳେ ମଣିଷ ଭଗବାନଙ୍କ ଆଡ଼କୁ ଅଗ୍ରସର ହୋଇଥାଏ, ଭଗବାନ ମଧ୍ୟ ଯେପରି ମନୁଷ୍ୟ ଆଡ଼କୁ ଆସିଥାନ୍ତି । ପିତା ମାତା ସଖା ପ୍ରେମିକ ପ୍ରଭୃତିର ଭାବ ମନୁଷ୍ୟ ଭଗବାନଙ୍କ ଉପରେ ଆରୋପ କରେ ଏବଂ ଯେତେବେଳେ ସେ ତା'ର ଉପାସ୍ୟ ବସ୍ତୁ ସହିତ ଅଭିନ୍ନ

---

୧ ଶ୍ରୀମଦ୍ଭାଗବତ, ୧୦।୩୧।୧୪

୨ 'ନ ଧନଂ ନ ଜନଂ ନ ସୁନ୍ଦରୀଂ...'—ଶିକ୍ଷାଷ୍ଟକମ୍, ଶ୍ରୀକୃଷ୍ଣଚୈତନ୍ୟ

ହୋଇଯାଏ ସେତିକିବେଳେ ଚରମାବସ୍ଥା ଲାଭ କରେ । ସେତେବେଳେ 'ମୁଁ ହିଁ ତୁମେ' ଓ 'ତୁମେ ହିଁ ମୁଁ' ହୋଇଯାଏ । ଦେଖାଯାଏ, ତୁମର ଉପାସନା କଲେ ମୋର ଏବଂ ମୋର ଉପାସନା କଲେ ତୁମର ଉପାସନା କରେ । ସେହି ଅବସ୍ଥାରେ ପହଞ୍ଚିଲେ ମାନବ ଯେଉଁ ଅବସ୍ଥାରୁ ତା'ର ଜୀବନ ବା ଉନ୍ନତି ଆରମ୍ଭ କରିଥିଲା, ତାହାର ସର୍ବୋଚ୍ଚ ପରିଣତି ଦେଖି-ବାକୁ ପାଇଥାଏ । ମଣିଷ ଯେଉଁଠାରୁ ଆରମ୍ଭ କରେ, ସେହିଠାରେ ହିଁ ଶେଷ କରିଥାଏ । ପ୍ରଥମେ ଥିଲା ଆତ୍ମପ୍ରେମ, କିନ୍ତୁ ଆତ୍ମାକୁ କ୍ଷୁଦ୍ର 'ଅହଂ' ବୋଲି ଭ୍ରମ ହେବାରୁ ପ୍ରେମକୁ ସ୍ୱାର୍ଥ-ପରତା ଦୂଷିତ କରିଥିଲା । ପରିଣାମରେ ଆତ୍ମା ଯେତେବେଳେ ଅନନ୍ତସ୍ୱରୂପ ହୋଇଗଲା, ସେତିକିବେଳେ ହିଁ ପୂର୍ଣ୍ଣ ଆଲୋକର ପ୍ରକାଶ ହେଲା । ଯେଉଁ ଈଶ୍ୱରଙ୍କୁ ପ୍ରଥମେ କୌଣସି ଗୋଟିଏ ସ୍ଥାନବିଶେଷରେ ଅବସ୍ଥିତ ପୁରୁଷବିଶେଷ ବୋଲି ଧାରଣା କରାଯାଇଥିଲା, ସେ ହିଁ ବର୍ତ୍ତମାନ ଯେପରି ଅନନ୍ତ ପ୍ରେମରେ ପରିଣତ ହେଲେ । ସାଧକ ସେତେବେଳେ ନିଜେ ସମ୍ପୂର୍ଣ୍ଣ ପରିବର୍ତ୍ତିତ ହୋଇଯାଏ । ସେ ସେତେବେଳେ ଈଶ୍ୱର-ସାମୀପ୍ୟ ଲାଭ କରିଥାଏ । ପୂର୍ବେ ତାହାର ଯେଉଁ ସମସ୍ତ ବୃଥା ବାସନା ଥିଲା, ସେତେବେଳେ ସେସବୁ ଚାଲିଯାଏ । ବାସନା ଦୂର ହେଲେ ସ୍ୱାର୍ଥପରତା ଦୂର ହୁଏ ଏବଂ ପ୍ରେମର ଚରମ ଶିଖରରେ ଆରୋହଣ କରି ସାଧକ ଦେଖିବାକୁ ପାଏ—ପ୍ରେମ, ପ୍ରେମାସ୍ପଦ ଓ ପ୍ରେମିକ—ଏକ ଏବଂ ଅଭିନ୍ନ ।

# ଶ୍ରୀରାମକୃଷ୍ଣସ୍ତୋତ୍ରାଣି

## (୧)

ଓଁ ହ୍ରୀଂ ଋତଂ ତ୍ୱମଚଲୋ ଗୁଣଜିତ୍ ଗୁଣେଡ୍ୟଃ
ନ-କ୍ତନ୍ଦିବଂ ସକରୁଣଂ ତବ ପାଦପଦ୍ମମ୍ ।
ମୋ-ହଙ୍କଷଂ ବହୁକୃତଂ ନ ଭଜେ ଯତୋଽହଂ
ତସ୍ମାତ୍ତ୍ୱମେବ ଶରଣଂ ମମ ଦୀନବନ୍ଧୋ ! ୧

ଓଁ ହ୍ରୀଂ ତୁମେ ସତ୍ୟ, ସ୍ଥିର, ତ୍ରିଗୁଣଜୟୀ, ଅଥଚ ନାନାପ୍ରକାର ଗୁଣସମନ୍ୱିତ । ଯେହେତୁ ତୁମର ମୋହନିବାରକ ପାଦପଦ୍ମକୁ ମୁଁ ବ୍ୟାକୁଳଭାବରେ ଦିନରାତି ଭଜନା କରି-ପାରୁ ନାହିଁ, ସେଥିପାଇଁ, ହେ ଦୀନବନ୍ଧୋ ! ମୁଁ ତୁମର ଶରଣାଗତ । ୧ ।

ଭ-କ୍ତିର୍ଭଗଶ୍ଚ ଭଜନଂ ଭବଭେଦକାରି
ଗ-ଚ୍ଛନ୍ତ୍ୟଲଂ ସୁବିପୁଲଂ ଗମନାୟ ତତ୍ତ୍ୱମ୍ ।
ବ-କ୍ତ୍ରୋଦ୍ଧୃତୋଽପି ହୃଦୟେ ନ ମେ ଭାତି କିଞ୍ଚିତ୍
ତସ୍ମାତ୍ତ୍ୱମେବ ଶରଣଂ ମମ ଦୀନବନ୍ଧୋ ! ୨

ସଂସାର-ବନ୍ଧନ-ନାଶକାରୀ ଭଜନ, ଭକ୍ତି ଓ ବୈରାଗ୍ୟାଦି ଷଡ଼ୈଶ୍ୱର୍ଯ୍ୟ ସେହି ଅତି ମହାନ୍ ବ୍ରହ୍ମତତ୍ତ୍ୱପ୍ରାପ୍ତି ପାଇଁ ଯଥେଷ୍ଟ—ଏହି କଥା ମୁଖରେ ଉଚ୍ଚାରିତ ହେଲେ ସୁଦ୍ଧା ମୋର ଅନ୍ତଃକରଣରେ ତିଳେମାତ୍ର ପ୍ରତିଭାତ ହେଉ ନାହିଁ । ଅତଏବ ହେ ଦୀନବନ୍ଧୋ ! ମୁଁ ତୁମର ଶରଣାଗତ । ୨ ।

ତେ-ଜସ୍ତରନ୍ତି ତରସା ତ୍ୱୟି ତୃପ୍ତତୃଷ୍ଣାଃ
ରା-ଗେ କୃତେ ଋତପଥେ ତ୍ୱୟି ରାମକୃଷ୍ଣେ ।
ମ-ର୍ତ୍ତ୍ୟାମୃତଂ ତବ ପଦଂ ମରଣୋର୍ମିନାଶଂ
ତସ୍ମାତ୍ତ୍ୱମେବ ଶରଣଂ ମମ ଦୀନବନ୍ଧୋ ! ୩

ହେ ରାମକୃଷ୍ଣ ! ସତ୍ୟର ପଥସ୍ୱରୂପ ତୁମଠାରେ ଯେଉଁମାନେ ଅନୁରକ୍ତ, ସେମାନଙ୍କର ସମସ୍ତ କାମନା ତୁମକୁ ଲାଭ କରି ପରିତୃପ୍ତ ହୁଏ; ସୁତରାଂ ସେମାନେ ଅତିଶୀଘ୍ର ରଜୋ-ଗୁଣକୁ ଅତିକ୍ରମ କରନ୍ତି । ମରଣଶୀଳ ନରଲୋକରେ ଅମୃତସ୍ୱରୂପ ତୁମର ପାଦପଦ୍ମ ମୃତ୍ୟୁ-ରୂପକ ତରଙ୍ଗକୁ ନାଶ କରେ । ତେଣୁ ହେ ଦୀନବନ୍ଧୋ ! ମୁଁ ତୁମର ଶରଣାଗତ । ୩ ।

କୃ-ତ୍ୟଂ କରୋତି କଲୁଷଂ କୁହକାନ୍ତକାରି
ଷ୍ଣା-ନ୍ତଂ ଶିବ ସୁବିମଲଂ ତବ ନାମ ନାଥ ।
ଯ-ସ୍ମାଦହଂ ତ୍ୱଶରଣୋ ଜଗଦେକଗମ୍ୟ
ତସ୍ମାତ୍ତ୍ୱମେବ ଶରଣଂ ମମ ଦୀନବନ୍ଧୋ ! ୪

ହେ ପ୍ରଭୋ ! ମାଦୃଶ ଦୁରକାରୀ ମଙ୍ଗଳମୟ ଅତିପବିତ୍ର ତୁମର 'ଶ୍ମାନ୍ତ' ( ରାମକୃଷ୍ଣ ) ନାମ ପାପକୁ ମଧ୍ୟ ପୁଣ୍ୟରେ ପରିଣତ କରେ । ହେ ଜଗତର ଏକମାତ୍ର ଲଭ୍ୟ, ଯେହେତୁ ମୁଁ ନିରାଶ୍ରୟ, ସେଥିପାଇଁ ହେ ଦୀନବନ୍ଧୋ ! ମୁଁ ତୁମର ଶରଣାଗତ । ୪ ।

(୨)

ଆଚଣ୍ଡାଳାପ୍ରତିହତରୟୋ ଯସ୍ୟ ପ୍ରେମପ୍ରବାହଃ
ଲୋକାତୀତୋଽପ୍ୟହହ ନ ଜହୌ ଲୋକକଲ୍ୟାଣମାର୍ଗମ୍ ।
ତ୍ରୈଲୋକ୍ୟେଽପ୍ୟପ୍ରତିମମହିମା ଜାନକୀପ୍ରାଣବନ୍ଧଃ
ଭକ୍ତ୍ୟା ଜ୍ଞାନଂ ବୃତବରବପୁଃ ସୀତୟା ଯୋ ହି ରାମଃ ॥ ୧
ସ୍ତବ୍ଧୀକୃତ୍ୟ ପ୍ରଳୟକଳିତଂ ବାହବୋତ୍ଥଂ ମହାନ୍ତଂ
ହିତ୍ୱା ରାତ୍ରିଂ ପ୍ରକୃତିସହଜାମନ୍ଧତାମିସ୍ରମିଶ୍ରାମ୍ ।
ଗୀତଂ ଶାନ୍ତଂ ମଧୁରମପି ଯଃ ସିଂହନାଦଂ ଜଗର୍ଜ
ସୋଽୟଂ ଜାତଃ ପ୍ରଥିତପୁରୁଷୋ ରାମକୃଷ୍ଣସ୍ତ୍ୱିଦାନୀମ୍ ॥ ୨

ଯାହାଙ୍କର ପ୍ରେମସ୍ରୋତ ଚଣ୍ଡାଳ ପର୍ଯ୍ୟନ୍ତ ଅପ୍ରତିହତବେଗରେ ପ୍ରବାହିତ, ଆହା ! ଯେ ଅତିମାନବସ୍ୱଭାବ ହୋଇ ମଧ୍ୟ ଲୋକମାନଙ୍କର କଲ୍ୟାଣର ପଥ ପରିତ୍ୟାଗ କରିନାହାନ୍ତି, ସ୍ୱର୍ଗ ମର୍ତ୍ତ୍ୟ ପାତାଳ—ଏହି ତିନଲୋକରେ ଯାହାଙ୍କର ମହିମାର ତୁଳନା ନାହିଁ, ଯେ ସୀତାଙ୍କର ପ୍ରାଣସ୍ୱରୂପ (ଶ୍ରୀରାମଚନ୍ଦ୍ର), ଯେ ଭକ୍ତିର ସହିତ ଶ୍ରେଷ୍ଠ ଜ୍ଞାନର କଲ୍ୟାଣମୂର୍ତ୍ତି ଧାରଣ କରିଥିଲେ; ୧

କୁରୁକ୍ଷେତ୍ର-ଯୁଦ୍ଧ ସମୟରେ ଯେଉଁ ଭୟଙ୍କର ପ୍ରଳୟତୁଲ୍ୟ ହୁହୁଙ୍କାର ଉଠିଥିଲା, ତାହାକୁ ସ୍ତବ୍ଧ କରି ଏବଂ ( ଅର୍ଜୁନଙ୍କର ) ଘୋରତର ସ୍ୱାଭାବିକ ଅନ୍ଧତମ-ସ୍ୱରୂପ ଅଜ୍ଞାନ-ରଜନୀକୁ ଦୂର କରିଦେଇ ଶାନ୍ତ ଓ ମଧୁର ଗୀତ ( ଗୀତାଶାସ୍ତ୍ର ) ଯେ ସିଂହନାଦରୂପରେ ଗର୍ଜନ କରି କହିଥିଲେ—ସେହି ବିଖ୍ୟାତ ପୁରୁଷ ହିଁ ଏବେ ଶ୍ରୀରାମକୃଷ୍ଣରୂପରେ ଜନ୍ମଗ୍ରହଣ କରିଛନ୍ତି । ୨

(୩)

ନରଦେବ ଦେବ ଜୟ ଜୟ ନରଦେବ
ଶକ୍ତିସମୁଦ୍ରସମୁତ୍ଥିତରଙ୍ଗଂ
ଦର୍ଶିତପ୍ରେମବିଜୃମ୍ଭିତରଙ୍ଗଂ
ସଂଶୟରାକ୍ଷସନାଶମହାସ୍ତ୍ରଂ
ଯାମି ଗୁରୁଂ ଶରଣଂ ଭବବୈଦ୍ୟଂ
ନରଦେବ ଦେବ ଜୟ ଜୟ ନରଦେବ ॥ ୧

ଅଦ୍ୱୟତତ୍ତ୍ୱସମାହିତଚିତ୍ତଂ
ପ୍ରୋଜ୍ଜ୍ୱଲଭକ୍ତିପଟାବୃତବୃତ୍ତଂ
କର୍ମକଲେବରମଦ୍ଭୁତଚେଷ୍ଟଂ
ଯାମି ଗୁରୁଂ ଶରଣଂ ଭବବୈଦ୍ୟଂ
ନରଦେବ ଦେବ ଜୟ ଜୟ ନରଦେବ ॥ ୨

ହେ ନରଦେବ ଦେବ ! ତୁମର ଜୟ ହେଉ । ଯେ ଶକ୍ତି-ସମୁଦ୍ରରୁ ଉତ୍ଥିତ ତରଙ୍ଗ-ସ୍ୱରୂପ, ଯେ ପ୍ରେମର ଲୀଳା ଦେଖାଇଛନ୍ତି, ଯେ ସନ୍ଦେହରୂପକ ରାକ୍ଷସକୁ ବିନାଶ ପାଇଁ ମହାସ୍ତ୍ର-ସ୍ୱରୂପ, ସଂସାରରୂପକ ରୋଗର ଚିକିତ୍ସକ ସେହି ଗୁରୁଙ୍କର ମୁଁ ଆଶ୍ରୟ ଗ୍ରହଣ କରୁଛି । ହେ ନରଦେବ ଦେବ ! ତୁମର ଜୟ ହେଉ । ୧

ଯାହାଙ୍କର ଚିତ୍ତ ଅଦ୍ୱୟ ବ୍ରହ୍ମରେ ସମାହିତ, ଯାହାଙ୍କର ଚରିତ୍ର ଅତି ଶ୍ରେଷ୍ଠ ଭକ୍ତି-ରୂପକ ବସ୍ତ୍ରଦ୍ୱାରା ଆଚ୍ଛାଦିତ—ଅର୍ଥାତ୍ ଯାହାଙ୍କ ଭିତରେ ଜ୍ଞାନ ଏବଂ ବାହାରେ ଭକ୍ତି, ଯେ ଦେହଦ୍ୱାରା କ୍ରମାଗତ ଲୋକହିତାର୍ଥ କର୍ମ କରିଛନ୍ତି, ଯାହାଙ୍କର କାର୍ଯ୍ୟକଳାପ ଅଦ୍ଭୁତ, ସଂସାର-ରୂପକ ରୋଗର ଚିକିତ୍ସକ ସେହି ଗୁରୁଙ୍କର ମୁଁ ଆଶ୍ରୟ ଗ୍ରହଣ କରୁଛି । ହେ ନରଦେବ ଦେବ ! ତୁମର ଜୟ ହେଉ । ୨

(୪)

ସାମାଖ୍ୟାଦ୍ୟୈର୍ଗୀତିସୁମଧୁରୈର୍ମେଘଗମ୍ଭୀରଘୋଷୈ-
ର୍ଯଜ୍ଞଧ୍ୱାନ-ଧ୍ୱନିତଗଗନୈର୍ବ୍ରାହ୍ମଣୈର୍ଜ୍ଞାତବେଦୈଃ ।
ବେଦାନ୍ତାଖ୍ୟୈଃ ସୁବିହିତ-ମଖୋଭିନ୍ନ-ମୋହାନ୍ଧକାରୈଃ
ସ୍ତୁତୋ ଗୀତୋ ଯ ଇହ ସତତଂ ତଂ ଭଜେ ରାମକୃଷ୍ଣମ୍ ॥

ବେଦତତ୍ତ୍ୱଜ୍ଞ ବ୍ରାହ୍ମଣଗଣ ଯଜ୍ଞସ୍ଥଳରେ ମନ୍ତ୍ରୋଚ୍ଚାରଣଦ୍ୱାରା ଆକାଶପାତାଳ ମୁଖରିତ କରୁଥିଲେ, ବିଧିପୂର୍ବକ ଯଜ୍ଞ-ସମ୍ପାଦନ କରିବା ଫଳରେ ସେମାନଙ୍କର ଶୁଦ୍ଧ ହୃଦୟରୁ ବେଦାନ୍ତବାକ୍ୟଦ୍ୱାରା ଭ୍ରମ ଓ ଅଜ୍ଞାନର ଅନ୍ଧକାର ଦୂରୀଭୂତ ହୋଇଥିଲା; ସେମାନେ ମେଘ-ଭଳି ଗମ୍ଭୀର ସୁମଧୁର ସ୍ୱରରେ ସାମବେଦ ପ୍ରଭୃତି ଦ୍ୱାରା ଯାହାଙ୍କର ସ୍ତବ କରିଛନ୍ତି, ଯାହା-ଙ୍କର ମହିମା କୀର୍ତ୍ତନ କରିଛନ୍ତି—ମୁଁ ସର୍ବଦା ସେହି ଶ୍ରୀରାମକୃଷ୍ଣଙ୍କର ଭଜନା କରୁଛି ।

## ଶ୍ରୀରାମକୃଷ୍ଣପ୍ରଣାମଃ

ସ୍ଥାପକାୟ ଚ ଧର୍ମସ୍ୟ ସର୍ବଧର୍ମସ୍ୱରୂପିଣେ ।
ଅବତାରବରିଷ୍ଠାୟ ରାମକୃଷ୍ଣାୟ ତେ ନମଃ ॥

ଧର୍ମର ସଂସ୍ଥାପକ, ସକଳଧର୍ମସ୍ୱରୂପ, ଅବତାରଗଣଙ୍କ ମଧ୍ୟରେ ଶ୍ରେଷ୍ଠ ହେ ରାମକୃଷ୍ଣ, ତୁମକୁ ପ୍ରଣାମ କରୁଛି ।

# ଦେବବାଣୀ

୧୮୯୫ ଖ୍ରୀଷ୍ଟାବ୍ଦରେ ସ୍ୱାମୀ ବିବେକାନନ୍ଦ ଆମେରିକାରେ ବକ୍ତୃତା ପରେ ବକ୍ତୃତା ଦେଇ କ୍ଳାନ୍ତ ହୋଇପଡ଼ିଲେ । କେତେ ସପ୍ତାହ ପାଇଁ ସେ ନିଉୟର୍କଠାରୁ ଅଳ୍ପ ଦୂରବର୍ତ୍ତୀ ସହସ୍ର ଦ୍ୱୀପୋଦ୍ୟାନ (Thousand Island Park) ନାମକ ସ୍ଥାନରେ ନିର୍ଜନରେ ବାସ କରିଥିଲେ । କେତେଜଣ ଆମେରିକାବାସୀ ତାହାଙ୍କ ଉପଦେଶରେ ଏପରି ଆକୃଷ୍ଟ ହୋଇଥିଲେ ଯେ, ସେମାନେ ଏହି ସୁଯୋଗରେ ସର୍ବଦା ତାହାଙ୍କ ନିକଟରେ ବାସକରି ବିଶେଷ ଭାବରେ ସାଧନ-ଭଜନ ଶିକ୍ଷା କରିବାକୁ ଆରମ୍ଭ କଲେ । ସ୍ୱାମୀଜୀ ସେଠାରେ ପ୍ରତିଦିନ ସକାଳେ ଯେଉଁସବୁ ଉପଦେଶ ଦେଉଥିଲେ ତହିଁରୁ କିଛି କିଛି ତାହାଙ୍କର ଜନୈକ ଶିଷ୍ୟା ଲିପିବଦ୍ଧ କରି ରଖିଥିଲେ । ସେଗୁଡ଼ିକ ଏକତ୍ର ସଂଗୃହୀତ ହୋଇ ୧୯୦୮ ଖ୍ରୀଷ୍ଟାବ୍ଦରେ ମାନ୍ଦ୍ରାଜ ରାମକୃଷ୍ଣ ମଠପକ୍ଷରୁ (Inspired Talks) ନାମରେ ପ୍ରକାଶିତ ହୋଇଥିଲା । ବର୍ତ୍ତମାନ ପୁସ୍ତକଟି ତାହାର ଅନୁବାଦ ।

ଅନୁବାଦକ

# ଇଂରାଜୀ ପ୍ରଥମ ସଂସ୍କରଣର ଭୂମିକାରୁ

ସ୍ୱାମୀ ବିବେକାନନ୍ଦଙ୍କର ସାକ୍ଷାତ୍ ସଂସ୍ପର୍ଶରେ ଆସିବାର ସୌଭାଗ୍ୟ ଯେଉଁମାନଙ୍କର ହୋଇଥିଲା, ସେମାନେ ସମସ୍ତେ ଏକବାକ୍ୟରେ ସ୍ୱୀକାର କରିବେ ଯେ, କେବଳ ବକ୍ତୃତା-ମଞ୍ଚରେ ବକ୍ତାରୂପେ ସ୍ୱାମୀଜୀଙ୍କୁ ଜାଣି ତାଙ୍କର ଯଥାର୍ଥ ଶକ୍ତି ଓ ମହତ୍ତ୍ୱର ଅତି ସାମାନ୍ୟ ପରିଚୟ ସେମାନେ ପାଇଛନ୍ତି । ଅନ୍ତରଙ୍ଗ ବନ୍ଧୁ ଓ ଶିଷ୍ୟମାନଙ୍କ ସହିତ ଘନିଷ୍ଠ କଥା-ବାର୍ତ୍ତାରେ ତାହାଙ୍କ ଜ୍ଞାନାଲୋକର ଅପୂର୍ବ ସ୍ଫୁରଣ, ବାଗ୍ମିତାର ଶ୍ରେଷ୍ଠ ବିକାଶ ଏବଂ ଗମ୍ଭୀରତମ ପ୍ରଜ୍ଞାର ଅଭିବ୍ୟକ୍ତି ହେଉଥିଲା । ଦୁର୍ଭାଗ୍ୟକ୍ରମେ ଅଦ୍ୟାବଧି ମୁଦ୍ରିତ ସ୍ୱାମୀଜୀଙ୍କ ଗ୍ରନ୍ଥାବଳୀରେ ସେ ଆମମାନଙ୍କ ନିକଟରେ କେବଳ ବକ୍ତାରୂପେ ହିଁ ଜଣାଯାଇଛନ୍ତି । ଯେଉଁ ଅଳ୍ପ କେତେଜଣ ଭାଗ୍ୟବାନ ବ୍ୟକ୍ତି ବିବେକାନନ୍ଦଙ୍କ ପଦତଳେ ବସି ଶିକ୍ଷାଲାଭ କରିବାର ସୁଯୋଗ ପାଇଥିଲେ, ସେହିମାନେ ହିଁ କେବଳ ତାଙ୍କୁ ବନ୍ଧୁ, ଆଚାର୍ଯ୍ୟ ଓ ସ୍ନେହମୟ ଗୁରୁରୂପରେ ଜାଣିପାରିଛନ୍ତି । ଏହା ସତ୍ୟ ଯେ, ପ୍ରକାଶିତ ପତ୍ରାବଳୀରୁ ତାଙ୍କର ଆଧ୍ୟାତ୍ମିକ ମହାଶକ୍ତିର ଆଭାସ ମିଳିଥାଏ; କିନ୍ତୁ ଅନ୍ତରଙ୍ଗ ଅନୁଗାମୀ ଓ ଶିଷ୍ୟମାନଙ୍କ ସାନ୍ନିଧ୍ୟରେ (ଦିବ୍ୟଭାବରେ) ସେ ଯେଉଁସବୁ କଥା କହିଥିଲେ, ସେଗୁଡ଼ିକ ଏହି ଗ୍ରନ୍ଥରେ ପ୍ରଥମ କରି ପ୍ରକାଶିତ ହେଲା ।

ସ୍ୱାମୀଜୀଙ୍କର ଏହି କଥାଗୁଡ଼ିକ ନିଉୟର୍କର ମିସ୍. ଏସ୍. ଇ. ୱାଲ୍‌ଡୋ ଲେଖି ରଖିଥିଲେ । ମିସ୍ ୱାଲ୍‌ଡୋ ସ୍ୱାମୀଜୀଙ୍କର ଆମେରିକାରେ ବକ୍ତୃତା-ଯାତ୍ରାର ପ୍ରଥମରୁ ତାହାଙ୍କୁ ଅସୀମ ଭକ୍ତିର ସହିତ ସେବା କରିଛନ୍ତି । ମିସ୍ ୱାଲ୍‌ଡୋ ନିଜେ କହିଛନ୍ତି— ବିବେକାନନ୍ଦଙ୍କ ଚିନ୍ତାରାଶି ତାହାଙ୍କ ମଧ୍ୟଦେଇ ପ୍ରବାହିତ ହୋଇ ଲିପିବଦ୍ଧ ହୋଇଅଛି । ଦିନେ ମିସ୍ ୱାଲ୍‌ଡୋ ଉକ୍ତ ପାର୍କରେ କେତେଜଣ ନବାଗତଙ୍କ ନିକଟରେ ସ୍ୱାମୀଜୀଙ୍କ ବକ୍ତୃତାର ନୋଟ୍‌ରୁ କିଛି ପଢ଼ି ଶୁଣାଉଥିଲେ । ସ୍ୱାମୀଜୀ ଘର ଭିତରେ ପଦଚାରଣା କରୁ କରୁ ତାହାକୁ ଶୁଣିପାରିଲେ; କିନ୍ତୁ ବିଷୟଟି କିଛି ବୁଝିପାରିଲେ ନାହିଁ । ନବାଗତ ବ୍ୟକ୍ତିମାନେ ଚାଲିଗଲା ପରେ ୱାଲ୍‌ଡୋଙ୍କୁ କହିଥିଲେ, "ତୁମେ କିପରି ମୋର ଚିନ୍ତା ଓ କଥାଗୁଡ଼ିକୁ ଏପରି ନିଖୁଣ ଭାବରେ ଧରିପାରିଲ ? ମନେ ହେଉଥିଲା ମୁଁ ନିଜ କଥା ହିଁ ନିଜେ ଶୁଣୁଛି ।"

ଦେବମାତା

ମାନ୍ଦ୍ରାଜ,
ନଭେମ୍ବର ୧୯୦୮

# ଇଂରାଜୀ ଦ୍ୱିତୀୟ ସଂସ୍କରଣର ଭୂମିକାରୁ

ସମଗ୍ର ସାରା ପୃଥିବୀରେ ସ୍ୱାମୀଜୀ ସର୍ବାପେକ୍ଷା ଶକ୍ତିମାନ୍ ଓ ଶ୍ରେଷ୍ଠ ବେଦାନ୍ତ-ବ୍ୟାଖ୍ୟାତା ବୋଲି ପରିଚିତ । ଭାରତ ଓ ବିଦେଶରେ ଅନେକେ ତାଙ୍କର ବାଗ୍ମିତାର ଦୁର୍ବାର ମନୋହାରିତ୍ୱ ଅନୁଭବ କରିଛନ୍ତି । ଏହି ଗ୍ରନ୍ଥରେ ସ୍ୱାମୀଜୀ ଝଞ୍ଜା ଭଳି ବାଗ୍ମିତା ସହିତ ତାଙ୍କର ଅକାଟ୍ୟ ଯୁକ୍ତି, ମନୋମୁଗ୍ଧକର ବ୍ୟକ୍ତିତ୍ୱ, ଅତିଶୟ ନିଗୂଢ଼ ତତ୍ତ୍ୱସମୂହ ପ୍ରାଞ୍ଜଳ ଭାବରେ ବ୍ୟାଖ୍ୟା କରିବାର ଦୁର୍ଲ୍ଲଭ ଶକ୍ତିଦ୍ୱାରା ବିଶାଳ ଶ୍ରୋତୃବର୍ଗଙ୍କ ହୃଦୟ ଜୟ କରିବା ଲାଗି କୌଣସି ବକ୍ତୃତା-ମଞ୍ଚରେ ଦଣ୍ଡାୟମାନ ହୋଇ ନାହାନ୍ତି । ସେ ବସିଛନ୍ତି କେତେକଜଣ ନିର୍ବାଚିତ ଭକ୍ତ-ଶିଷ୍ୟଙ୍କ ସମ୍ମୁଖରେ, ଯେଉଁମାନେ ତାହାଙ୍କୁ ଅଜ୍ଞାନ ଓ ଦୁଃଖକୁ ଅତିକ୍ରମ କରି ନେବା ପାଇଁ ଏକମାତ୍ର ପଥ-ପ୍ରଦର୍ଶକରୂପେ ଦେଖିବାକୁ ଆରମ୍ଭ କରିଛନ୍ତି । ସେଠାରେ ସ୍ୱାମୀଜୀ ବସିଛନ୍ତି ସ୍ୱକୀୟ ଦେଦୀପ୍ୟମାନ ଉପଲବ୍ଧି-ମହିମାରେ ମଧୁର ଓ ସୁକଣ୍ଠ ସ୍ୱରରେ ନିଜ ଅନ୍ତର୍ଜ୍ୟୋତିର ଶାନ୍ତ କିରଣରାଶି ଭକ୍ତ-ଅନୁରାଗୀଙ୍କ ମଧ୍ୟରେ ବିକିରଣ କରି ଓ ସେମାନଙ୍କର ହୃଦୟ-ପଦ୍ମକୁ ଧୀରେ ଧୀରେ ପ୍ରସ୍ଫୁଟିତ କରାଇ । ତାଙ୍କର ଚତୁର୍ଦ୍ଦିଗରେ ଶାନ୍ତି ବିରାଜମାନ । ଯେଉଁ କେତେକଜଣ ଭାଗ୍ୟବାନ୍ ଶିଷ୍ୟ ଏଭଳି ମହାନ୍ ଋଷି ଏବଂ ଗୁରୁଙ୍କ ପାଦତଳେ ବସିବାର ଦୁର୍ଲ୍ଲଭ ଅଧିକାର ପାଇଥିଲେ, ସେମାନେ ବାସ୍ତବିକ୍ ଧନ୍ୟ ।

ସ୍ୱାମୀ ବିବେକାନନ୍ଦ ସେଠାରେ ଝଞ୍ଜାଭଳି ଆଲୋଡ଼ନ ସୃଷ୍ଟି କରି ସମସ୍ତଙ୍କ ହୃଦୟ ଜୟ କରି ନାହାନ୍ତି । ପ୍ରଶାନ୍ତ ଋଷିଙ୍କ ଭଳି କେତେକଜଣ ଯଥାର୍ଥ ଅନୁରାଗୀ-ଭକ୍ତଙ୍କ ନିକଟରେ ସେ ଶାନ୍ତି ଓ ଆନନ୍ଦର ବାଣୀ ବିତରଣ କରିଛନ୍ତି । ତାହାଙ୍କ ଶ୍ରୀମୁଖର ମଧୁର ବାଣୀଗୁଡ଼ିକ କେତେ ଆଲୋକପ୍ରଦ ଓ ସାନ୍ତ୍ୱନାଦାୟକ ! ମନେହୁଏ—ଯେପରି ହାସ୍ୟ-ମୟୀ, ମୃଦୁମନ୍ଦ-ସମୀରଣ-ସଞ୍ଚାରିଣୀ ଉଷା ରକ୍ତିମ ପୂର୍ବାକାଶର କୋଡ଼ରୁ ଆବିର୍ଭୂତ ହୋଇ ଅନ୍ଧକାର ଦୂର କରୁଛି । ସ୍ୱାମୀଜୀଙ୍କର ବାଣୀରେ ଯଦି କେତେକଜଣଙ୍କ ପ୍ରାଣରେ ସାନ୍ତ୍ୱନା ଦେବାର ଶକ୍ତି ନିହିତ ଥାଏ, ତେବେ ତାହା ସମସ୍ତଙ୍କ ହୃଦୟରେ ମଧ୍ୟ ଶାନ୍ତି ଆଣି ଦେବ । ସ୍ୱାମୀଜୀଙ୍କର ଜୀବନଦାୟିନୀ ବାଣୀଗୁଡ଼ିକୁ କାଳଗର୍ଭରେ ବିଲୁପ୍ତ ହେବା ପୂର୍ବରୁ ଯେ ଯତ୍ନରେ ରକ୍ଷା କରିଛନ୍ତି, ସେହି ପ୍ରିୟ ଶିଷ୍ୟାଙ୍କ ମାତୃହୃଦୟ ଧନ୍ୟ ହେଉ । ବର୍ତ୍ତମାନ ଗ୍ରନ୍ଥରେ ଲିପିବଦ୍ଧ ସ୍ୱାମୀଜୀଙ୍କର 'ଦେବବାଣୀ' (Inspired Talks) ଲାଗି ମାତା ହରିଦାସୀ (ମିସ୍ ଏସ୍. ଏଲେନ୍ ୱାଲ୍‌ଡୋ)ଙ୍କ ପାଖରେ ସମସ୍ତ ଜଗତ ଋଣୀ । ଏହି ବାଣୀଗୁଡ଼ିକ ଅପେକ୍ଷା ଆଉ କେହି ମାନବଜାତିର ଅଧିକ ହିତକର ବନ୍ଧୁ ଓ ମହତ୍ତର ପଥପ୍ରଦର୍ଶକ ହୋଇପାରିବେ ନାହିଁ । ବାଣୀଗୁଡ଼ିକରେ ନିହିତ ଅମୃତକୁ ଯେ ପାନ କରିବେ, ସେ ନିଶ୍ଚୟ ଜାଣିବେ ଯେ, ସେ ଅମର । ଯେ ଜ୍ଞାନାଲୋକ, ଶାନ୍ତି ଓ ଆନନ୍ଦ ପାଇବାକୁ ଚାହାଁନ୍ତି, ସେ ତାହା ଏହି ବାଣୀଗୁଡ଼ିକରୁ ପାଇବେ ଏବଂ ଚିରଦିନ ପାଇଁ ତାହାଙ୍କ ଦୁଃଖର ଅବସାନ ହେବ ।

ମାନ୍ଦ୍ରାଜ — ରାମକୃଷ୍ଣାନନ୍ଦ
୯ ଡିସେମ୍ବର ୧୯୧୦

# ଆମେରିକାରେ ସ୍ୱାମୀଜୀ

୧୮୯୩ ମସିହାର ଗ୍ରୀଷ୍ମକାଳରେ ଜଣେ ତରୁଣବୟସ୍କ ହିନ୍ଦୁ ସନ୍ନ୍ୟାସୀ ଆମେରିକାରେ ପଦାର୍ପଣ କଲେ । ସେ ଚିକାଗୋର ଧର୍ମମହାସଭାରେ ଯୋଗଦାନ କରିବା ଉଦ୍ଦେଶ୍ୟରେ ଯାତ୍ରା କରିଥିଲେ; କିନ୍ତୁ କୌଣସି ସର୍ବଜନପରିଚିତ ଧର୍ମସଂଘର ନିଯୋଗପ୍ରାପ୍ତ ପ୍ରତିନିଧିଭାବରେ ନୁହେଁ । କେହି ତାଙ୍କୁ ଚିହ୍ନି ନ ଥିଲେ ଓ ତାଙ୍କର ନିଜର ସାଂସାରିକ ଜ୍ଞାନ ମଧ୍ୟ ଅଳ୍ପ ଥିଲା । ତଥାପି ମାନ୍ଦ୍ରାଜର କେତେକ ଉତ୍ସାହୀ ଯୁବକ ତାଙ୍କୁ ହିଁ ଏହି ମହତ୍ତ୍ୱ କାର୍ଯ୍ୟ ପାଇଁ ମନୋନୀତ କରିଥିଲେ; କାରଣ ସେମାନଙ୍କର ଧ୍ରୁବ ବିଶ୍ୱାସ ଥିଲା ଯେ, ଅନ୍ୟ ଯେକୌଣସି ବ୍ୟକ୍ତି ଅପେକ୍ଷା ସେ ଭାରତର ପାରମ୍ପରିକ ଧର୍ମର ଯୋଗ୍ୟତମ ପ୍ରତିନିଧି ହୋଇପାରିବେ ଓ ଏହି ବିଶ୍ୱାସର ବଶବର୍ତ୍ତୀ ହୋଇ ସେମାନେ ଦ୍ୱାର ଦ୍ୱାର ବୁଲି ଭିକ୍ଷା କରି ତାଙ୍କର ପାଥେୟ ସଂଗ୍ରହ କରିଥିଲେ । ଏହି ଅର୍ଥ ଓ ଜଣେ ଦୁଇଜଣ ଦେଶୀୟ ରାଜା ଯାହା ଦାନ କରିଥିଲେ, ତାହାକୁ ସମ୍ବଳ କରି ତରୁଣ ସନ୍ନ୍ୟାସୀ—ତଦାନୀନ୍ତନ ଅପରିଚିତ ସ୍ୱାମୀ ବିବେକାନନ୍ଦ—ଏହି ଦୀର୍ଘପଥ ଅତିକ୍ରମ କରିବାକୁ ପ୍ରବୃତ୍ତ ହେଲେ ।

ଏଭଳି ଗୋଟିଏ ମହାନ୍ ଉଦ୍ଦେଶ୍ୟ ନେଇ ଯାତ୍ରା କରିବା ଲାଗି ତାହାଙ୍କୁ ବିପୁଳ ସାହସ ଅବଲମ୍ବନ କରିବାକୁ ପଡ଼ିଥିଲା । ଭାରତର ପୁଣ୍ୟଭୂମି ପରିତ୍ୟାଗ କରି ବିଦେଶଯାତ୍ରା କରିବା ଯେ ଜଣେ ହିନ୍ଦୁ ପକ୍ଷରେ କିଭଳି ଗୁରୁତର ଘଟଣା, ତାହା ଆମଭଳି ପାଶ୍ଚାତ୍ୟବାସୀଙ୍କ ଧାରଣାତୀତ ।* ସନ୍ନ୍ୟାସୀମାନଙ୍କ ପକ୍ଷରେ ଏହା ବିଶେଷଭାବରେ ପ୍ରଯୋଜ୍ୟ; କାରଣ, ଜୀବନର ବ୍ୟାବହାରିକ ଭୌତିକ ଅଂଶ ସହିତ ସେମାନଙ୍କର ସମସ୍ତ ଅଧ୍ୟାତ୍ମ ଶିକ୍ଷାଦୀକ୍ଷାର କୌଣସି ସମ୍ପର୍କ ନାହିଁ । ଟଙ୍କା ପଇସା ନେଇ କାରବାର କରିବା ବା ନିଜ ଗୋଡ଼ ଛଡ଼ା ଅନ୍ୟ କୌଣସି ଉପାୟରେ ଭ୍ରମଣ କରିବା ଅଭ୍ୟାସ ନ ଥିବାରୁ ସ୍ୱାମୀଜୀ ଏହି ସୁଦୀର୍ଘ ପଥର ପ୍ରତ୍ୟେକଅଂଶରେ ପ୍ରତାରିତ ହୋଇଥିଲେ ଏବଂ ଲୋକେ ତାଙ୍କ ଅର୍ଥ ଅପହରଣ କରିଥିଲେ । ଅବଶେଷରେ ସେ ଯେତେବେଳେ ଚିକାଗୋରେ ପହଞ୍ଚିଲେ, ସେତେବେଳେ ସେ ପ୍ରାୟ କପର୍ଦ୍ଦକଶୂନ୍ୟ । ସେ ସଙ୍ଗରେ କୌଣସି ପରିଚୟପତ୍ର ଆଣି ନ ଥିଲେ ଓ ଏହି ବିରାଟ ନଗରୀରେ କାହାକୁ ମଧ୍ୟ ଚିହ୍ନି ନ ଥିଲେ ।** ଏହିପରି ସ୍ୱଦେଶରୁ ହଜାର ହଜାର ମାଇଲ ବ୍ୟବଧାନରେ ଅପରିଚିତ ଲୋକଙ୍କ ଗହଣରେ ଏକାକୀ ବାସ କରିବା ଜଣେ ଦୃଢ଼ଚେତା ବ୍ୟକ୍ତିର ମନରେ ମଧ୍ୟ ଭୟ ସୃଷ୍ଟି କରେ; କିନ୍ତୁ ସ୍ୱାମୀଜୀ ସବୁ

---

* ସେତେବେଳେ ଭାରତରେ ହିନ୍ଦୁସମାଜ ଖୁବ୍ ରକ୍ଷଣଶୀଳ ଥିଲା ।

** ପରେ ଜଣେ ମାନ୍ଦ୍ରାଜୀବ୍ରାହ୍ମଣ ଚିକାଗୋନିବାସୀ ଜଣେ ଭଦ୍ରଲୋକଙ୍କୁ ସ୍ୱାମୀଜୀଙ୍କ ସମ୍ବନ୍ଧରେ ଲେଖିଥିଲେ ଏବଂ ସେ ଏହି ହିନ୍ଦୁ ଯୁବକଙ୍କୁ ନିଜ ପରିବାରରେ ସ୍ଥାନ ଦେଇଥିଲେ ।

ଦାୟିତ୍ୱ ଭଗବାନଙ୍କ ନିକଟରେ ସମର୍ପଣ କରିଥିଲେ; ତାଙ୍କର ଦୃଢ଼ବିଶ୍ୱାସ ଥିଲା ଯେ ଭଗବାନଙ୍କ କୃପା ତାହାଙ୍କୁ ସତତ ରକ୍ଷା କରିବ ହିଁ କରିବ ।

ପ୍ରାୟ ଏକବର୍ଷଧରି ସେ ତାଙ୍କ ହୋଟେଲର ମାଲିକ ଓ ଅନ୍ୟ ଲୋକଙ୍କ ଅତ୍ୟଧିକ ଦାବି ପୂରଣ କରିବାକୁ ସମର୍ଥ ହୋଇଥିଲେ । ତାଙ୍କ ନିକଟରେ ଯେଉଁ ସାମାନ୍ୟ ଅର୍ଥ ଥିଲା, ତାହା ଏତେ କମିଯାଇଥିଲା ଯେ, ସେ ଭଲ ଭାବରେ ବୁଝିପାରିଥିଲେ – ଯଦି ସେ ରାସ୍ତାରେ ଅନାହାରରେ ପ୍ରାଣତ୍ୟାଗ କରିବାକୁ ନ ଚାହାଁନ୍ତି, ତା'ହେଲେ ତାଙ୍କୁ ତତ୍‌କ୍ଷଣାତ୍ ଏଭଳି ଗୋଟିଏ ସ୍ଥାନ ଖୋଜି ନେବାକୁ ପଡ଼ିବ, ଯେଉଁଠାରେ ରହିବାର ଖର୍ଚ୍ଚ ଅପେକ୍ଷାକୃତ କମ୍ ହେବ । ଯେଉଁ ମହତ୍ କାର୍ଯ୍ୟଭାର ସେ ସାହସର ସହିତ ଗ୍ରହଣ କରିଥିଲେ ତାହା ପରିତ୍ୟାଗ କରି ଚାଲିଯିବା ତାଙ୍କ ପକ୍ଷରେ ଅତ୍ୟନ୍ତ କଷ୍ଟକର ହେଲା । ମୁହୂର୍ତ୍ତିକ ପାଇଁ ନୈରାଶ୍ୟ ଓ ସନ୍ଦେହର ଗୋଟିଏ ଢେଉ ତାଙ୍କ ଉପରେ ବୋହିଗଲା ଏବଂ ସେ ଏହା ଭାବି ବିସ୍ମୟାନ୍ୱିତ ହେବାକୁ ଲାଗିଲେ । କାହିଁକି ସେ ନିର୍ବୋଧଙ୍କ ପରି ସେହି ସବୁ ଗରମ୍-ମିଜାଜି ମାନ୍ଦ୍ରାଜି ସ୍କୁଲ୍ ଟୋକାଙ୍କ କଥାରେ ପଡ଼ିଲେ ? ତଥାପି ଉପାୟାନ୍ତର ନ ଦେଖି ସେ ଦୁଃଖିତ ମନରେ ଟଙ୍କା ପାଇଁ ତାର କରିବାକୁ ଓ ଦରକାର ପଡ଼ିଲେ ଭାରତ ଫେରିଯିବା ଲାଗି କୃତସଂକଳ୍ପ ହୋଇ ବୋଷ୍ଟନ ଅଭିମୁଖରେ ଯାତ୍ରା କଲେ ।

କିନ୍ତୁ ଯାହାଙ୍କ ଉପରେ ସେ ଏତେ ଦୃଢ଼ ବିଶ୍ୱାସ ରଖିଥିଲେ, ସେହି ଈଶ୍ୱରଙ୍କ ଇଚ୍ଛା ଅନ୍ୟ ପ୍ରକାର ହେଲା । ରେଳଗାଡ଼ିରେ ଜଣେ ବର୍ଷୀୟସୀ ମହିଳାଙ୍କ ସହିତ ତାଙ୍କର ସାକ୍ଷାତ୍ ହେଲା ଓ ସେ ତାଙ୍କର ଆଗ୍ରହ ଉଦ୍‌ବୋଧିତ କରିବାକୁ ଏତେ ଦୂର ସମର୍ଥ ହେଲେ ଯେ, ସେହି ମହିଳା ତାଙ୍କ ନିଜ ଘରେ ଆତିଥ୍ୟ ଗ୍ରହଣ କରିବା ଲାଗି ତାଙ୍କୁ ଆମନ୍ତ୍ରଣ କଲେ ।* ସେହିଠାରେ ହାର୍ଭାର୍ଡ଼ ବିଶ୍ୱବିଦ୍ୟାଳୟର ଜଣେ ଅଧ୍ୟାପକଙ୍କ ସହିତ ତାଙ୍କର ବନ୍ଧୁତା ହେଲା । ଦିନେ ସେ ସ୍ୱାମୀଜୀଙ୍କ ସହିତ ନିର୍ଜ୍ଜନରେ ଚାରି ଘଣ୍ଟା ଧରି ଏକାଠି ରହିବା ପରେ ତାଙ୍କର ଅସାଧାରଣ କ୍ଷମତାରେ ଏପରି ମୁଗ୍ଧ ହୋଇଥିଲେ ଯେ, ତାହାଙ୍କୁ ଜିଜ୍ଞାସା କରିଥିଲେ, "ଆପଣ ଚିକାଗୋ ଧର୍ମସଭାକୁ କାହିଁକି ହିନ୍ଦୁଧର୍ମର ପ୍ରତିନିଧିରୂପେ ଯୋଗ ଦେବାକୁ ଯାଉ ନାହାନ୍ତି ?"

ସ୍ୱାମୀଜୀ ତାଙ୍କୁ ନିଜ ଅସୁବିଧାଗୁଡ଼ିକ ବୁଝାଇ ଦେଇଥିଲେ ଏବଂ କହିଥିଲେ ଯେ, ତାଙ୍କର ଅର୍ଥ ମଧ୍ୟ ନାହିଁ ଓ ଉକ୍ତ ମହାସଭାସହ ସଂପୃକ୍ତ କୌଣସି ବ୍ୟକ୍ତିଙ୍କ ନାମରେ ପରିଚୟପତ୍ର ମଧ୍ୟ ନାହିଁ । ଅଧ୍ୟାପକ ସଙ୍ଗେ ସଙ୍ଗେ କହିଲେ, "ଶ୍ରୀଯୁକ୍ତ ବନି ମୋର ବନ୍ଧୁ, ମୁଁ ଆପଣଙ୍କୁ ତାଙ୍କ ନାମରେ ଗୋଟିଏ ପତ୍ର ଦେବି ।" ଏହା କହି ସେ ତତ୍‌କ୍ଷଣାତ୍ ତାହା

---

* ଏହିପରି ଭାବରେ ଯେଉଁ ବନ୍ଧୁତ୍ୱର ସୂତ୍ରପାତ ହେଲା, ତାହା ସ୍ୱାମୀଜୀ ଜୀବିତ ଥିବା ପର୍ଯ୍ୟନ୍ତ ଅକ୍ଷୁଣ୍ଣ ରହିଥିଲା । ପରିବାରଭୁକ୍ତ ସମସ୍ତେ ସ୍ୱାମୀଜୀଙ୍କୁ ଅତିଶୟ ଭଲ ପାଉଥିଲେ, ତାଙ୍କ ଅପୂର୍ବ ସଦ୍‌ଗୁଣରାଜିର ଗୁଣଗ୍ରାହୀ ହୋଇଥିଲେ ଏବଂ ତାଙ୍କ ଚରିତର ପବିତ୍ରତା ଓ ସରଳତାର ସମାଦର କରୁଥିଲେ । ଏହିସବୁ ବିଷୟ ସମ୍ବନ୍ଧରେ ସେମାନେ ପ୍ରାୟ ପ୍ରୀତି ଓ ଆଗ୍ରହର ସହିତ ଉଲ୍ଲେଖ କରୁଥିଲେ ।

ଲେଖିଦେଲେ । ତନ୍ମଧ୍ୟରେ ଏହି କେତୋଟି କଥା ଉଲ୍ଲେଖ କରିଥିଲେ, "ଦେଖିଲି, ଏହି ଅଜ୍ଞାତନାମା ହିନ୍ଦୁ ଆମର ସମସ୍ତ ପଣ୍ଡିତଙ୍କୁ ଏକତ୍ର କଲେ ଯାହା ହେବ, ତଦପେକ୍ଷା ମଧ୍ୟ ବେଶୀ ପଣ୍ଡିତ ।" ଏହି ପତ୍ରଖଣ୍ଡିକ ଏବଂ ଅଧ୍ୟାପକ ଦେଇଥିବା ଖଣ୍ଡିଏ ଟିକଟ ନେଇ ସ୍ୱାମୀଜୀ ଚିକାଗୋ ପ୍ରତ୍ୟାବର୍ତ୍ତନ କଲେ ଓ ନିର୍ବିବାଦରେ ପ୍ରତିନିଧିରୂପରେ ପରିଗୃହୀତ ହେଲେ ।

ଅବଶେଷରେ ମହାସଭା ଆରମ୍ଭ ହେବାର ଦିନ ଉପାଗତ ହେଲା ଓ ସ୍ୱାମୀ ବିବେକାନନ୍ଦ ପ୍ରାଚ୍ୟ ପ୍ରତିନିଧିଗଣଙ୍କ ମଧ୍ୟରେ ସ୍ଥାନ ଲାଭ କରି ପ୍ରଥମ ଦିବସର ଅଧିବେଶନରେ ସଭାମଞ୍ଚରେ ପଦାର୍ପଣ କଲେ । ତାଙ୍କ ଉଦ୍ଦେଶ୍ୟ ସଫଳ ହେଲା; କିନ୍ତୁ ସେହି ବିରାଟ ଶ୍ରୋତୃମଣ୍ଡଳୀ ଆଡ଼କୁ ଦୃଷ୍ଟିପାତ କରିବା ମାତ୍ରେ ଏକ ଆକସ୍ମିକ ଉଦ୍‌ବେଗ ତାଙ୍କୁ ଅଭିଭୂତ କଲା । ଅନ୍ୟ ସମସ୍ତେ ବକ୍ତୃତା ପ୍ରସ୍ତୁତ କରି ଆଣିଥିଲେ, କିନ୍ତୁ ତାଙ୍କର କିଛି ନ ଥିଲା । ସେହି ଛ ସାତ ହଜାର ନରନାରୀଙ୍କ ବିରାଟ ଜନତାକୁ ସେ କ'ଣ କହିବେ ? ସମସ୍ତ ପ୍ରାତଃକାଳ ଧରି ତାଙ୍କ ନାମ ଆସିବା ମାତ୍ରେ ସେ ତାହା କ୍ରମାଗତ ପଛକୁ ରଖିବାକୁ ଲାଗିଲେ । ପ୍ରତିଥର ସେ ସଭାପତିଙ୍କ କାନରେ କହୁଥିଲେ, "ଆଉ କାହାକୁ ଆଗ କହିବାକୁ ଦିଅନ୍ତୁ ।" ଅପରାହ୍ଣରେ ମଧ୍ୟ ଏଭଳି ହେଲା । ଶେଷରେ ପ୍ରାୟ ୫ଟା ସମୟରେ ଡକ୍ଟର ବ୍ୟାରୋଜ୍ ତାହାଙ୍କୁ ପରବର୍ତ୍ତୀ ବକ୍ତା ବୋଲି ତାଙ୍କର ନାମ ଘୋଷଣା କଲେ ।

ଏହି ଘୋଷଣା ବିବେକାନନ୍ଦଙ୍କ ସ୍ନାୟୁମଣ୍ଡଳୀର ସ୍ଥିରତା ସମ୍ପାଦନ କରି ତାଙ୍କ ସାହସକୁ ଉଦ୍‌ବୋଧିତ କରିଦେଲା । ସେ ତତ୍‌କ୍ଷଣାତ୍ ଛନ୍ଦୋପଯୋଗୀ କାର୍ଯ୍ୟ କରିବା ପାଇଁ ଠିଆ ହେଲେ । ବକ୍ତୃତା ଦେବା ଲାଗି ଠିଆ ହେବା, ବିଶେଷତଃ ବହୁ ଶ୍ରୋତାଙ୍କ ସମ୍ମୁଖରେ ବକ୍ତୃତା ପ୍ରଦାନ କରିବା ତାଙ୍କ ଜୀବନରେ ଏହା ହିଁ ପ୍ରଥମ; କିନ୍ତୁ ଫଳ ହେଲା —ତଡ଼ିତ୍‌ଶକ୍ତି ଭଳି । ସେହି ସାଗରୋପମ ସହସ୍ର ଉତ୍ସୁକ ନରନାରୀଙ୍କ ମୁହଁ ଆଡ଼କୁ ଚାହିଁ ତାଙ୍କ ଶକ୍ତି ଓ ବାଗ୍ମିତା ପୂର୍ଣ୍ଣରୂପେ ଜାଗରିତ ହୋଇ ଉଠିଲା ଓ ସେ ତାଙ୍କ ମଧୁନିସ୍ୟନ୍ଦୀ କଣ୍ଠରେ ଶ୍ରୋତୃବର୍ଗଙ୍କୁ 'ଆମେରିକାବାସୀ ଭଗିନୀ ଓ ଭ୍ରାତୃଗଣ' ବୋଲି ସମ୍ବୋଧନ କଲେ । ସେହି ମୁହୂର୍ତ୍ତରେ ହିଁ ସିଦ୍ଧି ତାଙ୍କ କରତଳଗତ ହେଲା ଓ ଯେତେଦିନ ମହାସଭାର ଅଧିବେଶନ ହୋଇଥିଲା, ସେତେ ଦିନ ତାଙ୍କର ଆଦର ଦିନକ ପାଇଁ ମଧ୍ୟ କମି ନ ଥିଲା । ସମସ୍ତେ ବରାବର ତାଙ୍କ କଥା ଅତି ଆଗ୍ରହ ସହକାରେ ଶୁଣୁଥିଲେ ଓ ତାଙ୍କର ବକ୍ତୃତା ଶୁଣିବା ଲାଗି ଗରମ ଦିନରେ ମଧ୍ୟ ଦୀର୍ଘ ଅଧିବେଶନର ଶେଷ ପର୍ଯ୍ୟନ୍ତ ଅପେକ୍ଷା କରି ରହୁଥିଲେ ।

ଯୁକ୍ତରାଷ୍ଟ୍ରରେ ଏହା ହିଁ ତାଙ୍କର କାର୍ଯ୍ୟର ପ୍ରାରମ୍ଭ । ମହାସଭାର କାର୍ଯ୍ୟ ଶେଷହେବା ପରେ ସ୍ୱାମୀଜୀ ନିଜ ଆବଶ୍ୟକ ଦ୍ରବ୍ୟାଦି ସଂଗ୍ରହ ଲାଗି ଏକ ବକ୍ତୃତା କମ୍ପାନୀର (Lecture Bureau) ଅନୁରୋଧରେ ସେମାନଙ୍କ ପକ୍ଷରୁ ଆମେରିକାର ପଶ୍ଚିମ ଅଞ୍ଚଳରେ ବକ୍ତୃତାଦେଇ ବୁଲିବାକୁ ସ୍ୱୀକୃତ ହେଲେ । ବହୁ ଶ୍ରୋତୃମଣ୍ଡଳୀର ମନୋଯୋଗ ଆକର୍ଷଣ କରିଥିଲେ ମଧ୍ୟ

ସେ ଅତଶୀଘ୍ର ଏହି ଅପ୍ରୀତିକର କାର୍ଯ୍ୟ ପରିତ୍ୟାଗ କରିଥିଲେ । ସେ ଧର୍ମାଗୃର୍ଯ୍ୟ ଭାବରେ ଏଠାକୁ ଆସିଥିଲେ, ଐହିକ ବିଷୟରେ ସୁବକ୍ତା ଭାବରେ ନୁହେଁ । ସୁତରାଂ ଏହା ଅତି ଲାଭ-ଜନକ ହେଲେ ମଧ୍ୟ ସେ ଶୀଘ୍ର ଏହା ପରିତ୍ୟାଗ କଲେ ଓ ୧୮୯୪ ଖ୍ରୀଷ୍ଟାବ୍ଦର ପ୍ରାରମ୍ଭରେ ତାଙ୍କର ପ୍ରକୃତ କାର୍ଯ୍ୟ ଆରମ୍ଭ କରିବା ଉଦ୍ଦେଶ୍ୟରେ ନ୍ୟୁୟର୍କକୁ ଯାତ୍ରା କଲେ । ଚିକାଗୋରେ ଅବସ୍ଥାନ କାଳ ମଧ୍ୟରେ ଯେଉଁମାନଙ୍କ ସହିତ ତାଙ୍କର ବନ୍ଧୁତା ହୋଇଥିଲା, ସେ ପ୍ରଥମେ ସେହିମାନଙ୍କ ସହିତ ସାକ୍ଷାତ୍ କଲେ । ସେମାନେ ପ୍ରଧାନତଃ ଧନାଢ୍ୟ ଶ୍ରେଣୀର ଲୋକ ଥିଲେ । ସେ ମଝିରେ ମଝିରେ ସେମାନଙ୍କ ବୈଠକଖାନାରେ ବକ୍ତୃତା ଦେଉଥିଲେ; କିନ୍ତୁ ଏଥିରେ ମଧ୍ୟ ତାଙ୍କର ମନଃପୂତ ହେଲା ନାହିଁ । ସେ ବୁଝିପାରିଲେ ଯେ, ସେ ଲୋକଙ୍କ ମନରେ ଯେଉଁ ଅନୁରାଗ ସୃଷ୍ଟି କରିଛନ୍ତି, ତାହା ସେ ଯାହା ଚାହାଁନ୍ତି ତାହା ନୁହେଁ, ତାହା ଅତ୍ୟନ୍ତ ଉପାଣିଆ ଜିନିଷ, ଅଳ୍ପମାତ୍ରାରେ ଆମୋଦପ୍ରିୟତା ମାତ୍ର । ଏଥିପାଇଁ ସେ ନିଜର ଗୋଟିଏ ସ୍ଥାନ ନିରୂପଣ କରିବା ଲାଗି ସଙ୍କଳ୍ପ କଲେ, ଯେଉଁଠାକୁ ଧନୀ ନିର୍ଦ୍ଧନ—ସମସ୍ତ ଅନୁରାଗୀ ସତ୍ୟାନୁସନ୍ଧିତ୍ସୁ ବ୍ୟକ୍ତି ନିଃସଙ୍କୋଚରେ ଆସିପାରିବେ ।

ବ୍ରୁକଲିନର—ନୀତି-ସଭା ସମ୍ମୁଖରେ ଗୋଟିଏ ଭାଷଣ ତାଙ୍କର ଏହିପରି ଈପ୍ସିତ ଶିକ୍ଷାଦାନର ପନ୍ଥା ସୁଗମ କରିଦେଲା । ଉକ୍ତ ସଭାର ଅଧ୍ୟକ୍ଷ ଡକ୍ଟର ଲୁଇସଜି ଜେନସ୍ ଏହି ହିନ୍ଦୁ ଯୁବା-ସନ୍ନ୍ୟାସୀଙ୍କ ବକ୍ତୃତା ଶୁଣିଥିଲେ ଏବଂ ତାଙ୍କ ତେଜରେ ଓ ପଶ୍ଚିମ ଗୋଲାର୍ଦ୍ଧ-ବାସୀ ଆମମାନଙ୍କ ନିକଟରେ ତାଙ୍କ ଉପଦେଶବାଣୀଦ୍ୱାରା ଏତେଦୂର ଆକୃଷ୍ଟ ହୋଇ-ଥିଲେ ଯେ, ତାହାଙ୍କୁ ଉକ୍ତ ସଭାସମ୍ମୁଖରେ ଭାଷଣ ଦେବା ଲାଗି ନିମନ୍ତ୍ରଣ କରିଥିଲେ । ୧୮୯୪ ଖ୍ରୀଷ୍ଟାବ୍ଦର ଶେଷଦିନ ନୀତି-ସଭାର ଅଧିବେଶନଗୃହ 'ପାଉଚ-ପ୍ରାସାଦ' ଲୋକାରଣ୍ୟ ହୋଇଥିଲା । ବକ୍ତୃତାର ବିଷୟ ଥିଲା—ହିନ୍ଦୁଧର୍ମ । ସ୍ୱାମୀଜୀ ଯେତେବେଳେ ଲମ୍ବା ଆଲ୍-ଖାଲ୍ଲା ଓ ପଗଡ଼ି ସଜ୍ଜିତ ହୋଇ ତାଙ୍କ ମାତୃଭୂମିର ପ୍ରାଚୀନ ଧର୍ମର ବ୍ୟାଖ୍ୟା କରିବାକୁ ଲାଗିଲେ, ସେତେବେଳେ ଲୋକଙ୍କ ଆଗ୍ରହ ଏତେ ପ୍ରବଳ ହୋଇଉଠିଲା ଯେ, ବକ୍ତୃତାନ୍ତେ ବ୍ରୁକ୍ଲିନରେ ନିୟମିତ ଭାବରେ ଯେପରି କ୍ଲାସ୍ ହୁଏ, ସେଥିଲାଗି ଲୋକେ ବିଶେଷ ଜିଦ୍ କରିବାକୁ ଲାଗିଲେ । ସ୍ୱାମୀଜୀ ଅନୁଗ୍ରହ କରି ଏ ବିଷୟରେ ସମ୍ମତି ପ୍ରଦାନ କଲେ ଏବଂ ପାଉଚ୍ ପ୍ରାସାଦରେ ଓ ଅନ୍ୟତ୍ର କେତୋଟି କ୍ଲାସ୍ ଏବଂ ସର୍ବସାଧାରଣଙ୍କ ଆଗରେ କତିପୟ ବକ୍ତୃତା ମଧ୍ୟ ଦିଆହୋଇଥିଲା ।

ବ୍ରୁକ୍ଲିନ୍‌ରେ ଯେଉଁମାନେ ତାଙ୍କ ଭାଷଣ ଶୁଣିଥିଲେ, ସେମାନଙ୍କ ମଧ୍ୟରୁ କେତେ ଜଣ ତାଙ୍କ ନ୍ୟୁୟର୍କସ୍ଥ ରହଣୀ ସ୍ଥାନକୁ ଯିବାକୁ ଆରମ୍ଭ କଲେ । ଗୋଟିଏ ଭଡ଼ା ଘରର ଉପରମହଲରେ ଏକ ଛୋଟିଆ କୋଠରୀରେ ସେ ରହୁଥିଲେ ଏବଂ କ୍ଲାସ୍‌ରେ ଛାତ୍ରସଂଖ୍ୟା ଖୁବ୍ ଶୀଘ୍ର ବୃଦ୍ଧି ପାଇବା ଫଳରେ ସେଠାରେ ଯେତେବେଳେ ଆଉ ଚେୟାର୍ ପକାଇବା ସ୍ଥାନ ହେଲା ନାହିଁ, ଛାତ୍ରମାନେ ଏରୁଣ୍ଡିବନ୍ଧ, ହାତ ମୁହଁ ଧୋଇବାଲାଗି ଥିବା ଉଚ୍ଚ ସ୍ଥାନ ଓ ତଳେ ବସିବାକୁ ଲାଗିଲେ; ସ୍ୱାମୀଜୀ ମଧ୍ୟ ତାଙ୍କ ସ୍ୱଦେଶର ପ୍ରଥାନୁଯାୟୀ ତଳେ ଆସନ ପକାଇ ବସି ଆଗ୍ରହୀ ଶିଷ୍ୟମାନଙ୍କୁ ବେଦାନ୍ତର ମହାସତ୍ୟଗୁଡ଼ିକ ଶିକ୍ଷା ଦେଉଥିଲେ ।

ଏତେବେଳେ ସେ ବୁଝିଲେ ଯେ, ସ୍ୱୀୟ ଆଚାର୍ଯ୍ୟ ଶ୍ରୀରାମକୃଷ୍ଣ ଦେବଙ୍କ ସକଳ ଧର୍ମର ସତ୍ୟତା ଓ ମୌଳିକ ଏକତ୍ୱ-ପ୍ରତିପାଦକ ଉପଦେଶବାଣୀ ପାଶ୍ଚାତ୍ୟ ଜଗତ୍ ନିକଟରେ ପ୍ରଚାର କରିବା ଫଳରେ ନିଜର ଅଭିପ୍ସିତ ମହତ୍ କାର୍ଯ୍ୟରେ ସେ କେତେକ ପରିମାଣରେ ଅଗ୍ରସର ହୋଇଛନ୍ତି । କ୍ଲାସ୍‌ଟି ଏତେ ଶୀଘ୍ର ବଢ଼ିଗଲା ଯେ, ଉପରର ଫ୍ଲାଟ ଘରଟିରେ ଆଉ ସ୍ଥାନ ହେଲା ନାହିଁ; ସୁତରାଂ ତଳର ବଡ଼ ବୈଠକଖାନା ଦୁଇଟି ଭଡ଼ା ନିଆଗଲା । ଏହିଠାରେ ହିଁ ସ୍ୱାମୀଜୀ ସେହି ଋତୁର ଶେଷ ପର୍ଯ୍ୟନ୍ତ ଶିକ୍ଷା ଦେବାକୁ ଲାଗିଲେ । ଏହି ଶିକ୍ଷା ପୂରାପୂରି ବିନା ଦରମାରେ ଦିଆ ଯାଉଥିଲା, ସ୍ୱେଚ୍ଛାରେ ଯେ ଯାହା ଦେଉଥିଲେ, ତଦ୍ୱାରା ଆବଶ୍ୟକ ବ୍ୟୟ ତୁଲାଇବାର ଚେଷ୍ଟା କରା ହେଉଥିଲା; କିନ୍ତୁ ସଂଗୃହୀତ ଅର୍ଥ ଘରଭଡ଼ା ଓ ସ୍ୱାମୀଜୀଙ୍କ ଆହାରାଦି ଖର୍ଚ୍ଚ ପକ୍ଷରେ ଯଥେଷ୍ଟ ନ ହେବାରୁ ଅର୍ଥାଭାବରେ କ୍ଲାସ୍‌ଟି ଉଠିଯିବାର ଉପକ୍ରମ ହେଲା । ତା'ପରେ ସ୍ୱାମୀଜୀ ଘୋଷଣା କଲେ ଯେ, ଐହିକ ବିଷୟରେ ସେ ସର୍ବସାଧାରଣଙ୍କ ସମ୍ମୁଖରେ ନିୟମିତଭାବରେ କେତେଗୁଡ଼ିଏ ବକ୍ତୃତା ଦେବେ । ଏଥିପାଇଁ ପାରିଶ୍ରମିକ ଗ୍ରହଣ କରିବାରେ ତାଙ୍କର ଆପତ୍ତି ନ ଥିଲା; ସେହି ଅର୍ଥରେ ସେ ଧର୍ମସଂକ୍ରାନ୍ତ କ୍ଲାସ୍ ଚଳାଇବାକୁ ଲାଗିଲେ । ସେ ବୁଝାଇଦେଲେ ଯେ, ହିନ୍ଦୁ-ମାନଙ୍କ ଦୃଷ୍ଟିରେ କେବଳ ବିନାମୂଲ୍ୟରେ ଶିକ୍ଷାଦାନ କଲେ ଧର୍ମବ୍ୟାଖ୍ୟାର କର୍ତ୍ତବ୍ୟ ଶେଷ ହେଲା ନାହିଁ; ସମ୍ଭବ ହେଲେ ତାଙ୍କୁ ଏହି କାର୍ଯ୍ୟର ବ୍ୟୟଭାର ମଧ୍ୟ ବହନ କରିବାକୁ ହେବ । ପୂର୍ବକାଳରେ ଭାରତରେ ଏଭଳି ନିୟମ ଥିଲା ଯେ, ଉପଦେଷ୍ଟା ଶିଷ୍ୟମାନଙ୍କ ଆହାର ଓ ବାସସ୍ଥାନର ମଧ୍ୟ ବ୍ୟବସ୍ଥା କରିବେ ।

ଏହା ମଧ୍ୟରେ କେତେକ ଛାତ୍ର ସ୍ୱାମୀଜୀଙ୍କ ଉପଦେଶଦ୍ୱାରା ଏତେଦୂର ମୁଗ୍ଧ ହୋଇପଡ଼ିଲେ ଯେ, ପରବର୍ତ୍ତୀ ଗ୍ରୀଷ୍ମଋତୁରେ ସେମାନେ ଯେପରି ଏହି ଶିକ୍ଷାଲାଭ କରିପାରିବେ, ସେଥିପାଇଁ ଉତ୍ସୁକ ହେଲେ; କିନ୍ତୁ ସେ ଗୋଟିଏ ଋତୁର କଠୋର ପରିଶ୍ରମରେ କ୍ଳାନ୍ତ ହୋଇ ପଡ଼ିଥିଲେ ଏବଂ ପୁଣି ଗ୍ରୀଷ୍ମକାଳରେ ଏଭଳି ପରିଶ୍ରମ କରିବା ଲାଗି ପ୍ରଥମେ ଆପତ୍ତି କରିଥିଲେ । ତା'ପରେ ବହୁ ଛାତ୍ର ବର୍ଷର ସେହି ସମୟରେ ସହରରେ ରହିବେ ନାହିଁ; କିନ୍ତୁ ପ୍ରଶ୍ନଟିର ମୀମାଂସା ଆପଣାଛାଏଁ ହୋଇଗଲା । ଆମ ମଧ୍ୟରୁ ଜଣକର ସେଣ୍ଟ ଲରେନ୍‌ସ ନଦୀବକ୍ଷସ୍ଥ ବୃହତ୍ତମ ଦ୍ୱୀପ 'ସହସ୍ର ଦ୍ୱୀପୋଦ୍ୟାନ'ଠାରେ (Thousand Island Park) ଗୋଟିଏ ଫ୍ଲାଟ ଘର ଥିଲା; ସେ ସ୍ୱାମୀଜୀ ଓ ଆମମାନଙ୍କ ମଧ୍ୟରୁ ଯେତେଜଣଙ୍କ ପାଇଁ ସେଠାରେ ସ୍ଥାନ ହେବ, ସେତେ ଲୋକଙ୍କ ବ୍ୟବହାର ଲାଗି ଛାଡ଼ିଦେବାର ପ୍ରସ୍ତାବ କଲେ । ଏହି ବ୍ୟବସ୍ଥା ସ୍ୱାମୀଜୀଙ୍କ ମନଃପୂତ ହେଲା; ସେ ତାଙ୍କର ଜଣେ ବନ୍ଧୁଙ୍କ 'ମେଇନ କ୍ୟାମ୍ପ' (Maincamp) ନାମକ ଭବନରୁ ପ୍ରତ୍ୟାଗତ ହେବାମାତ୍ରେ ସେଠାକୁ ଆସିବେ ବୋଲି ସ୍ୱୀକୃତ ହେଲେ ।

ଯେଉଁ ଛାତ୍ରୀ ସେହି ଘରର ଅଧିକାରିଣୀ ଥିଲେ, ତାଙ୍କ ନାମ ଥିଲା ମିସ୍ ଡାଚର୍ । ସେ ବୁଝିଲେ ଯେ, ଏ ଉପଲକ୍ଷରେ ଗୋଟିଏ ପୃଥକ୍ କକ୍ଷ ନିର୍ମାଣ କରାଯିବା ଆବଶ୍ୟକ— ଯେଉଁଠି କେବଳ ପବିତ୍ର ଭାବର ସ୍ପନ୍ଦନ ରହିବ, ଏବଂ ତାଙ୍କ ଗୁରୁଙ୍କ ପ୍ରତି ପ୍ରକୃତ ଭକ୍ତିଅର୍ଘ୍ୟ

ହିସାବରେ ମୂଳଘରଟି ଯେତେ ବଡ଼ ଥିଲା, ଠିକ୍ ସେହି ଆକାରର ଗୋଟିଏ ନୂଆ ପାର୍ଶ୍ୱଘର ନିର୍ମାଣ କରିଦେଲେ । ଘରଟି ଏକ ଉଚ୍ଚଭୂମି ଉପରେ ଅତି ସୁନ୍ଦର ସ୍ଥାନରେ ଅବସ୍ଥିତ ଥିଲା; ସେଠାରୁ ସୁରମ୍ୟ ନଦୀଟିର ବହୁଅଂଶ ଏବଂ ତାହାର ବହୁଦୂରବିସ୍ତୃତ ସହସ୍ର ଦ୍ୱୀପର ବହୁ ଅଞ୍ଚଳ ଦୃଷ୍ଟିଗୋଚର ହେଉଥିଲା । ଦୂରରେ କ୍ଲେଟନ୍‌ର କେତେକାଂଶ ଦେଖା ଯାଉଥିଲା ଏବଂ ଉତ୍ତରରେ ଅପେକ୍ଷାକୃତ ନିକଟବର୍ତ୍ତୀ ବିସ୍ତୃତ କାନାଡ଼ା-ଉପକୂଳ ଦୃଷ୍ଟି ଅବରୋଧ କରୁଥିଲା । ଗୋଟିଏ ପାହାଡ଼ ଉପରେ ଘରଟି ଅବସ୍ଥିତ ଥିଲା । ପାହାଡ଼ର ଉତ୍ତର ଓ ପଶ୍ଚିମ ଦିଗ ହଠାତ୍ ଢାଲୁ ହୋଇ ନଦୀକୂଳକୁ ଏବଂ ସେହି ନଦୀର ଯେଉଁ କ୍ଷୁଦ୍ର ଅଂଶଟି ଭିତର ଆଡ଼କୁ ପଶି ଆସିଛି, ତାହାର କୂଳ ପର୍ଯ୍ୟନ୍ତ ଯାଇଥିଲା; ଶେଷୋକ୍ତ ଜଳଭାଗଟି ଗୋଟିଏ କ୍ଷୁଦ୍ର ହ୍ରଦସଦୃଶ ଘରର ପଶ୍ଚାତ୍ ଭାଗରେ ରହିଥିଲା । ଘରଟି ସତକୁ ସତ (ବାଇବେଲର ଭାଷାରେ) 'ଗୋଟିଏ ପାହାଡ଼ ଉପରେ ନିର୍ମିତ' ଏବଂ ତାହାର ଚାରିପଟେ ବଡ଼ ବଡ଼ ପଥରଖଣ୍ଡ ପଡ଼ିଥିଲା । ନବନିର୍ମିତ ପାର୍ଶ୍ୱଘରଟି ପାହାଡ଼ର ଅତି ଢାଲୁ ଅଂଶରେ ଛିଡ଼ା ହୋଇଥିବାରୁ ତାହା ଯେପରି ଗୋଟିଏ ବିରାଟ ବତୀଘର ପରି ଦେଖାଯାଉଥିଲା । ଘରର ତିନି ଦିଗରେ ଝରକା ଥିଲା ଏବଂ ଏହାର ପଛଭାଗ ତିନିତାଲ ଓ ସାମ୍ନା ଭାଗ ଦ୍ୱିତଳ ଥିଲା । ତଳ ଘରଟିରେ ଛାତ୍ରମାନଙ୍କ ମଧ୍ୟରୁ ଜଣେ ରହୁଥିଲେ; ତାହାର ଉପରେ ଥିବା କୋଠରୀକୁ ଘରର ପ୍ରଧାନ ଅଂଶରୁ ବିଭିନ୍ନଦ୍ୱାର ଦେଇ ଯିବାର ବ୍ୟବସ୍ଥା ଥିଲା । ସେହି କୋଠରୀଟି ପ୍ରଶସ୍ତ ଓ ସୁବିଧାଜନକ ହୋଇଥିବାରୁ ସେଠାରେ ଆମ କ୍ଲାସ୍ ବସୁଥିଲା ଏବଂ ସ୍ୱାମୀଜୀ ବହୁ ସମୟ ଧରି ଆମର ସୁପରିଚିତ ବନ୍ଧୁ ଭଳି ଉପଦେଶ ଦେଉଥିଲେ । ଏହି କୋଠରୀର ଉପର କୋଠରୀଟି କେବଳ ସ୍ୱାମୀଜୀଙ୍କ ବ୍ୟବହାର ପାଇଁ ନିର୍ଦ୍ଦିଷ୍ଟ ଥିଲା । ତାହା ଯେପରି ସମ୍ପୂର୍ଣ୍ଣରୂପେ ନିରୁପଦ୍ରବ ହୋଇପାରେ, ସେଥିଲାଗି ମିସ୍ ଡାଚ୍ଚର୍ ତାହାର ପଛକୁ ଏକ ପୃଥକ୍ ସିଡ଼ି କରାଇ ଦେଇଥିଲେ । ସେଥିରେ ଅବଶ୍ୟ ଦୁଇତାଲର ବାରଣ୍ଡାକୁ ଆସିବା ପାଇଁ ଏକ ଦ୍ୱାର ମଧ୍ୟ ଥିଲା ।

ଏହି ଉପର ମହଲର ବାରଣ୍ଡାଟି ଆମ ଜୀବନ ସହିତ ଅତି ଘନିଷ୍ଠ ଭାବରେ ସଶ୍ଳିଷ୍ଟ ଥିଲା; କାରଣ, ସ୍ୱାମୀଜୀଙ୍କର ସମସ୍ତ ସାନ୍ଧ୍ୟ କଥୋପକଥନ ଏହି ସ୍ଥାନରେ ହିଁ ହେଉଥିଲା । ବାରଣ୍ଡାଟି ପ୍ରଶସ୍ତ ଥିବାରୁ ସେଠାରେ ଅନେକଙ୍କ ପାଇଁ ସ୍ଥାନ ହେଉଥିଲା । ତାହା ଉପରେ ଛାତ ଥିଲା, ଏବଂ ତାହା ଘରର ଦକ୍ଷିଣ ଓ ପଶ୍ଚିମ ଆଡ଼କୁ ବିସ୍ତୃତ ଥିଲା । ମିସ୍ ଡାଚ୍ଚର୍ ତାହାର ପଶ୍ଚିମଭାଗକୁ ଗୋଟିଏ ପର୍ଦ୍ଦା ଦେଇ ଯତ୍ନରେ ପୃଥକ୍ କରାଇ ଦେଇଥିଲେ; ସୁତରାଂ ଯେଉଁ ଅପରିଚିତ ବ୍ୟକ୍ତିଗଣ ଏହି ବାରଣ୍ଡାରୁ ଚତୁର୍ଦ୍ଦିଗର ଅପୂର୍ବ ଦୃଶ୍ୟ ଦେଖିବାଲାଗି ପ୍ରାୟ ଆସୁଥିଲେ, ସେମାନେ ଆମର ନିସ୍ତବ୍ଧତା ଭଙ୍ଗ କରିପାରୁ ନ ଥିଲେ । ଏହିଠାରେ ଆମର ଅବସ୍ଥାନ କାଳ ସମସ୍ତରେ ପ୍ରତି ସନ୍ଧ୍ୟାରେ ଆଚାର୍ଯ୍ୟଦେବ ତାଙ୍କ ଦ୍ୱାର ନିକଟରେ ବସି ଆମମାନଙ୍କ ସହିତ କଥାବାର୍ତ୍ତା ହେଉଥିଲେ । ଆମେମାନେ ମଧ୍ୟ ସନ୍ଧ୍ୟାର ସ୍ତିମିତ ଆଲୋକରେ ନିର୍ବାକ୍ ହୋଇ ବସି ବସି ତାଙ୍କର ଅପୂର୍ବ ଜ୍ଞାନଗର୍ଭକ ବଚନାମୃତ ଆଗ୍ରହରେ ପାନ କରୁଥିଲୁ । ସ୍ଥାନଟି ସତେ ଯେପରି ଏକ ପୁଣ୍ୟନିକେତନ ଥିଲା । ନିମ୍ନ-

ଭାଗରେ ହରିତ୍‌ପତ୍ରବିଶିଷ୍ଟ ବୃକ୍ଷ-ଶୀର୍ଷଗୁଡ଼ିକ ହରିତ୍‌-ସାଗରଭଳି ଆନ୍ଦୋଳିତ ହେଉଥିଲା । କାରଣ, ସମଗ୍ର ଅଞ୍ଚଳଟି ଘନ ଅରଣ୍ୟରେ ପରିବୃତ ଥିଲା । ସୁବୃହତ୍ ଗ୍ରାମଟିର ଗୋଟିଏ ସୁଦ୍ଧା ଘର ସେଠାରୁ ଦେଖା ଯାଉ ନ ଥିଲା, ଆମେ ଯେପରି ଲୋକାଳୟଠାରୁ ବହୁ ଯୋଜନ ଦୂରରେ କୌଣସି ନିବିଡ଼ ଅରଣ୍ୟ ମଧ୍ୟରେ ବାସ କରୁଥିଲୁ । ବୃକ୍ଷଶ୍ରେଣୀଠାରୁ ଦୂରରେ ବିସ୍ତୃତ ସେଣ୍ଟଲରେନ୍‌ସ ନଦୀବକ୍ଷରେ ଏଠି ସେଠି ଥିବା ଦ୍ୱୀପସମୂହ; ସେଥିମଧ୍ୟରୁ କେତେକ ଦ୍ୱୀପ ପୁଣି ହୋଟେଲ୍ ଓ ଭୋଜନାଳୟଗୁଡ଼ିକର ଉଜ୍ଜ୍ୱଳ ଆଲୋକରେ ଝଲମଲ କରୁଥିଲା । ସେସବୁ ଏତେ ଦୂରରେ ଥିଲା ଯେ, ସେସବୁ ବାସ୍ତବ ଅପେକ୍ଷା ଚିତ୍ରିତ ଦୃଶ୍ୟ ବୋଲି ପ୍ରତୀୟମାନ ହେଉଥିଲା । ଆମର ଏହି ନିର୍ଜନ ସ୍ଥାନରେ ଜନ-କୋଳାହଳ ମଧ୍ୟ ଆଦୌ ପ୍ରବେଶ କରୁ ନ ଥିଲା । ଆମେ କେବଳ କୀଟପତଙ୍ଗମାନଙ୍କର ଅସ୍ଫୁଟ ଶବ୍ଦ, ପକ୍ଷୀମାନଙ୍କ ମଧୁର କାକଳି ଅଥବା ଗଛପତ୍ର ଭିତରେ ବହି ଯାଉଥିବା ପବନର ମର୍ମରଧ୍ୱନି ଶୁଣିବାକୁ ପାଉଥିଲୁ । ଦୃଶ୍ୟଟିର କିୟଦଂଶ ସ୍ନିଗ୍ଧ ଚନ୍ଦ୍ରାଲୋକରେ ଉଦ୍ଭାସିତ ରହୁଥିଲା ଏବଂ ନିମ୍ନଭାଗରେ ଥିବା ସ୍ଥିର ଜଳରାଶିବକ୍ଷରେ ଦର୍ପଣ ସଦୃଶ ଚନ୍ଦ୍ରର ମୁଖଚ୍ଛବି ପ୍ରତିବିମ୍ବିତ ହେଉଥିଲା । ଏହି ଗନ୍ଧର୍ବରାଜ୍ୟରେ ଆମେ ଆଚାର୍ଯ୍ୟଦେବଙ୍କ ସହିତ ଦିବ୍ୟାନନ୍ଦରେ ସାତଟି ସପ୍ତାହ ତାଙ୍କ ଅତୀନ୍ଦ୍ରିୟ ରାଜ୍ୟର ବାର୍ତ୍ତାସମନ୍ୱିତ ଅପୂର୍ବ ବଚନାବଳୀ ଶ୍ରବଣ କରି କରି ଅତିବାହିତ କରିଥିଲୁ—ସେତେବେଳେ ଆମେ ମଧ୍ୟ ପୃଥିବୀକୁ ଭୁଲି ଯାଇଥିଲୁ, ପୃଥିବୀ ମଧ୍ୟ ଆମକୁ ଭୁଲି ଯାଇଥିଲା । ଏହି ସମୟରେ ପ୍ରତ୍ୟହ ସାନ୍ଧ୍ୟ ଭୋଜନ ସମାପନାନ୍ତେ ଆମେ ସମସ୍ତ ଉପର ବାରଣ୍ଡାକୁ ଯାଇ ଆଚାର୍ଯ୍ୟଦେବଙ୍କ ଆଗମନକୁ ପ୍ରତୀକ୍ଷା କରି ରହୁଥିଲୁଁ । ବେଶୀ ସମୟ ଅପେକ୍ଷା କରିବାକୁ ପଡ଼ୁ ନ ଥିଲା; କାରଣ, ଆମେ ସମବେତ ହେଉ ନ ହେଉଣୁ ତାଙ୍କ ପ୍ରକୋଷ୍ଠର ଦ୍ୱାର ଉନ୍ମୁକ୍ତ ହେଉଥିଲା ଏବଂ ସେ ଧୀରେ ଧୀରେ ବାହାରକୁ ଆସି ତାଙ୍କ ଅଭ୍ୟସ୍ତ ଆସନ ଗ୍ରହଣ କରୁଥିଲେ । ସେ ଆମମାନଙ୍କ ସହିତ ପ୍ରତ୍ୟହ ଦୁଇଘଣ୍ଟା ଏବଂ ଅନେକ ସମୟରେ ତଦଧିକ ସମୟ କଟାଉଥିଲେ । ଏକ ଅପୂର୍ବସୌନ୍ଦର୍ଯ୍ୟମୟୀ ରଜନୀରେ (ସେଦିନ ପୂର୍ଣ୍ଣିମା ଥିଲା) କଥା କହୁ କହୁ ଚନ୍ଦ୍ରାସ୍ତ ହୋଇଗଲା; ଆମେମାନେ ଯେପରି ଏହି କାଳକ୍ଷେପ ବିଷୟ କିଛି ଜାଣିପାରି ନ ଥିଲୁ, ସ୍ୱାମୀଜୀ ମଧ୍ୟ ଠିକ୍ ସେହିପରି ଜାଣିପାରି ନ ଥିଲେ ।

ଏହିସବୁ କଥୋପକଥନ ଲିପିବଦ୍ଧ କରି ରଖିବା ସମ୍ଭବପର ହୋଇନାହିଁ; ସେଗୁଡ଼ିକ କେବଳ ଶ୍ରୋତୃବର୍ଗଙ୍କ ହୃଦୟରେ ହିଁ ଗ୍ରଥିତ ହୋଇ ରହିଛି । ଏହିସବୁ ଦିବ୍ୟ ମୁହୂର୍ତ୍ତରେ ଆମେ ଯେଉଁ ସବୁ ଉଚ୍ଚାଙ୍ଗ ଗଭୀର ଧର୍ମାନୁଭୂତି ଲାଭ କରୁଥିଲୁ, ତାହା ଆମମାନଙ୍କ ଭିତରୁ କେହି କେବେ ଭୁଲିପାରିବେ ନାହିଁ । ସ୍ୱାମୀଜୀ ଏହି ସବୁ ମୁହୂର୍ତ୍ତରେ ତାଙ୍କ ହୃଦୟର ଦ୍ୱାର ଖୋଲି ଦେଉଥିଲେ । ଧର୍ମ ଲାଭ କରିବା ଲାଗି ତାଙ୍କୁ ଯେଉଁସବୁ ବାଧାବିଘ୍ନ ଅତିକ୍ରମ କରିଯିବାକୁ ହୋଇଥିଲା, ସେଗୁଡ଼ିକ ଯେପରି ପୁଣି ଆମମାନଙ୍କ ଦୃଷ୍ଟିଗୋଚର ହେଉଥିଲା । ତାଙ୍କର ଗୁରୁଦେବ ଯେପରି ସୂକ୍ଷ୍ମ ଶରୀରରେ ତାଙ୍କ ମୁଖାବଲମ୍ବନରେ ଆମମାନଙ୍କ ଆଗରେ କଥା କହୁଥିଲେ, ଆମମାନଙ୍କର ସବୁ ସନ୍ଦେହ ଦୂର କରୁଥିଲେ, ସବୁ

ପ୍ରଶ୍ନର ଉତ୍ତର ଦେଉଥିଲେ ଓ ସବୁ ଭୟ ଦୂର କରୁଥିଲେ । ଅନେକ ସମୟରେ ସ୍ୱାମୀଜୀ ଯେପରି ଆମମାନଙ୍କ ଉପସ୍ଥିତ ଭୁଲି ଯାଉଥିଲେ—ସେତେବେଳେ ଆମେ କାଳେ ତାଙ୍କ ଚିନ୍ତା-ପ୍ରବାହରେ ବାଧା ଦେବୁ—ଏହି ଆଶଙ୍କାରେ ଆମେ ଶ୍ୱାସ ରୁଦ୍ଧ କରି ରହୁଥିଲୁ । ସେ ଆସନରୁ ଉଠି ବାରଣ୍ଡାର ସଂକୀର୍ଣ୍ଣ ସୀମା ଭିତରେ ପଦଚାରଣ କରୁ କରୁ ଅନର୍ଗଳ କହି ଯାଉଥିଲେ । ଏହି ସମୟଗୁଡ଼ିକରେ ସେ ଯେପରି କୋମଳ-ପ୍ରକୃତି ଥିଲେ ଓ ସମସ୍ତଙ୍କ ଶ୍ରଦ୍ଧା ଆକର୍ଷଣ କରୁଥିଲେ, ତାହା ଆଉ କେବେ ଦେଖାଯାଇ ନାହିଁ । ତାଙ୍କ ଗୁରୁଦେବ ତାଙ୍କର ଶିଷ୍ୟମାନଙ୍କୁ ଯେପରି ଶିକ୍ଷା ଦେଉଥିଲେ, ଏହା ବୋଧହୁଏ ଅନେକ ପରିମାଣରେ ତଦ୍ରୂପ । ସେ ନିଜେ ନିଜେ ହିଁ ଆତ୍ମା ସହିତ ଭାବମୁଖରେ କଥା କହି ଯାଉଥିଲେ ଓ ଶିଷ୍ୟମାନେ ଶୁଣୁଥିଲେ ।

ସ୍ୱାମୀ ବିବେକାନନ୍ଦଙ୍କ ପରି ଜଣେ ବ୍ୟକ୍ତିଙ୍କ ସହ ଅବସ୍ଥାନ କରିବା ହିଁ ଅବିଶ୍ରାନ୍ତ ଉଚ୍ଚ ଉଚ୍ଚ ଅନୁଭୂତି ଲାଭ କରିବା । ସକାଳୁ ରାତି ପର୍ଯ୍ୟନ୍ତ ସେହି ଗୋଟିଏ ଭାବ—ଆମେ ଏକ ଘନୀଭୂତ ଧର୍ମଭାବ-ରାଜ୍ୟରେ ବାସ କରୁଥିଲୁ । ସ୍ୱାମୀଜୀ ବେଳେ ବେଳେ ପିଲାଙ୍କ ଭଳି କ୍ରୀଡ଼ାଶୀଳ ଓ କୌତୁକପ୍ରିୟ ହେଲେ ମଧ୍ୟ ଓ ଉଲ୍ଲସିତ ହୋଇ ପରିହାସ କରିବାକୁ ଓ କଥାର ଚଟାପଟ ଉତ୍ତର ଦେବାରେ ଅଭ୍ୟସ୍ତ ଥିଲେ ସୁଦ୍ଧା ମୁହୂର୍ତ୍ତିକ ପାଇଁ ମଧ୍ୟ ତାଙ୍କ ଜୀବନର ମୂଳମନ୍ତ୍ରରୁ ଲକ୍ଷ୍ୟଭ୍ରଷ୍ଟ ହେଉ ନ ଥିଲେ । ପ୍ରତ୍ୟେକ ପଦାର୍ଥରୁ ସେ କିଛି ନା କିଛି କହିବା ବା ଉଦାହରଣ ଦେବାର ଉପାଦାନ ପାଉଥିଲେ ଏବଂ ସମସ୍ତ ସମୟରେ ସେ ଆମମାନଙ୍କୁ କୌତୁକପ୍ରଦ ହିନ୍ଦୁ-ପୌରାଣିକ ଗଳ୍ପରୁ ଏକାବେଳକେ ଗଭୀର ଦର୍ଶନ ଭିତରକୁ ନେଇ ଯାଉଥିଲେ । ସ୍ୱାମୀଜୀ ପୌରାଣିକ ଗଳ୍ପସମୂହର ଅଫୁରନ୍ତ ଭଣ୍ଡାର ଥିଲେ ଓ ପ୍ରକୃତ ପକ୍ଷରେ ଏହି ପ୍ରାଚୀନ ଆର୍ଯ୍ୟମାନଙ୍କ ଭଳି ଆଉ କୌଣସି ଜାତି ମଧ୍ୟରେ ଏତେ ଅଧିକ ପରିମାଣ ପୌରାଣିକ ଗଳ୍ପର ପ୍ରଚଳନ ନାହିଁ । ସେ ଆମମାନଙ୍କୁ ଏହିସବୁ ଗଳ୍ପ ଶୁଣାଇ ଆନନ୍ଦିତ ହେଉଥିଲେ ଓ ଆମେ ମଧ୍ୟ ଶୁଣିବାକୁ ଭଲ ପାଉଥିଲୁ । କାରଣ, ସେ କେବେହେଲେ ଏହିସବୁ ଗଳ୍ପର ଅନ୍ତରାଳରେ ନିହିତ ଥିବା ସତ୍ୟର ସନ୍ଧାନ ଦେବାକୁ ଓ ସେଥିରୁ ମୂଲ୍ୟବାନ ଧର୍ମବିଷୟକ ଉପଦେଶ ଆବିଷ୍କାର କରିବାକୁ ବିସ୍ମୃତ ହେଉ ନ ଥିଲେ । କୌଣସି ଭାଗ୍ୟବାନ୍ ଶିଷ୍ୟମଣ୍ଡଳୀ ଏଭଳି ପ୍ରତିଭାବାନ୍ ଆଚାର୍ଯ୍ୟ ଲାଭ କରି ନିଜକୁ ଧନ୍ୟ ଜ୍ଞାନ କରିବାର ଏପରି ସୁଯୋଗ ପାଇଥିଲେ କି ନା ସନ୍ଦେହ ।

ଆଶ୍ଚର୍ଯ୍ୟ, କାକତାଳୀୟ ନ୍ୟାୟ ଅନୁଯାୟୀ ଠିକ୍ ଦ୍ୱାଦଶ ଜଣ ଛାତ୍ରୀ ଓ ଛାତ୍ର ସହସ୍ର ଦ୍ୱୀପୋଦ୍ୟାନରେ ସ୍ୱାମୀଜୀଙ୍କ ଅନୁଗମନ କରିଥିଲେ ଏବଂ ସେ ଆମମାନଙ୍କୁ କହିଥିଲେ ଯେ, ସେ ଆମମାନଙ୍କୁ ପ୍ରକୃତ ଶିଷ୍ୟରୂପେ ଗ୍ରହଣ କରିଛନ୍ତି ଏବଂ ସେଇଥିପାଇଁ ସେ ଆମମାନଙ୍କୁ ଏଭଳି ଦିନ ରାତି ପ୍ରାଣ ଖୋଲି ତାଙ୍କ ନିକଟରେ ଯାହା କିଛି ଶ୍ରେଷ୍ଠ ବସ୍ତୁ ଥିଲା ସବୁ କିଛି ଶିକ୍ଷା ଦେଉଥିଲେ । ଏହି ବାରଜଣଯାକ ସମସ୍ତେ ଏକ ସମୟରେ ଏକତ୍ର ହୋଇ ନ ଥିଲେ, ଊର୍ଦ୍ଧ୍ୱ ସଂଖ୍ୟାରେ ଦଶ ଜଣରୁ ଅଧିକ କୌଣସି ସମୟରେ ଉପସ୍ଥିତ ନ ଥିଲେ । ପରେ ଆମମାନଙ୍କ ମଧ୍ୟରୁ ଦୁଇ ଜଣ ସହସ୍ରଦ୍ୱୀପୋଦ୍ୟାନରେ ହିଁ ସନ୍ନ୍ୟାସ-ଦୀକ୍ଷା ଗ୍ରହଣ କରି

ସନ୍ନ୍ୟାସୀ ହୋଇଥିଲେ । ଦ୍ୱିତୀୟ ବ୍ୟକ୍ତି ଯେତେବେଳେ ସନ୍ନ୍ୟାସ-ଦୀକ୍ଷା ନେଲେ, ସେହି ସମୟରେ ସ୍ୱାମୀଜୀ ଆମ ଭିତରୁ ପାଞ୍ଚ ଜଣଙ୍କୁ ବ୍ରହ୍ମଚର୍ଯ୍ୟ-ବ୍ରତରେ ଦୀକ୍ଷିତ କରିଥିଲେ ଏବଂ ଅବଶିଷ୍ଟ କେତେ ଜଣ ପରେ ନ୍ୟୁୟର୍କ ନଗରରେ ସ୍ୱାମୀଜୀଙ୍କ ଦ୍ୱାରା ଅନ୍ୟ କେତେଜଣ ଶିଷ୍ୟଙ୍କ ସହିତ ଏକସଙ୍ଗରେ ଦୀକ୍ଷା ଗ୍ରହଣ କରିଥିଲେ ।

'ସହସ୍ର ଦ୍ୱୀପୋଦ୍ୟାନ'କୁ ଯିବା ସମୟରେ ସ୍ଥିର କରାଯାଇଥିଲା ଯେ, ଆମେ ପରସ୍ପର ମିଳିମିଶି ଏକ ଢଙ୍ଗରେ ରହିବୁ; ପ୍ରତ୍ୟେକେ ଗୃହକର୍ମର ନିଜ ନିଜ ଅଂଶ ସମ୍ପନ୍ନ କରିବେ, କୌଣସି ବାହାର ଲୋକଙ୍କ ସଂସ୍ପର୍ଶରେ ଆମ ଗୃହର ଶାନ୍ତି ଭଙ୍ଗ ହେବ ନାହିଁ । ସ୍ୱାମୀଜୀ ସ୍ୱୟଂ ଜଣେ ପକ୍କା ରାନ୍ଧୁଣୀ ଥିଲେ ଏବଂ ପ୍ରାୟ ଆମମାନଙ୍କ ପାଇଁ ଉପାଦେୟ ବ୍ୟଞ୍ଜନାଦି ପ୍ରସ୍ତୁତ କରୁଥିଲେ । ତାଙ୍କ ଗୁରୁଦେବଙ୍କ ଦେହାନ୍ତ ପରେ ଯେତେବେଳେ ସେ ଗୁରୁଭାଇମାନଙ୍କର ସେବା କରୁଥିଲେ, ସେହି ସମୟରେ ହିଁ ସେ ରନ୍ଧନ କାର୍ଯ୍ୟ ଶିଖିଥିଲେ । ଏହି ଯୁବକମାନେ ଯେପରି ଶ୍ରୀରାମକୃଷ୍ଣଙ୍କ ପ୍ରଚାରିତ ସତ୍ୟସମୂହ ସମଗ୍ର ଜଗତରେ ପ୍ରଚାର କରିବାର ଉପଯୁକ୍ତ ଅଧିକାରୀ ହୋଇପାରିବେ, ସେ ଦୃଷ୍ଟିରୁ ତାଙ୍କର ଗୁରୁଦେବ ଯେଉଁ ଶିକ୍ଷାଦାନ ଆରମ୍ଭ କରିଥିଲେ ତାହା ସମ୍ପୂର୍ଣ୍ଣ କରିବା ପାଇଁ ଏହି ଯୁବକମାନଙ୍କୁ ସଂଘବଦ୍ଧ କରିବାର ଦାୟିତ୍ୱ ତାଙ୍କ ଉପରେ ପଡ଼ିଥିଲା ।

ପ୍ରତିଦିନ ସକାଳେ ଆମ ପ୍ରତ୍ୟେକଙ୍କର ନିର୍ଦ୍ଦିଷ୍ଟ କାମଗୁଡ଼ିକ ଶେଷ ହେବା ସଙ୍ଗେ ସଙ୍ଗେ (ଅନେକ ସମୟରେ ତା'ପୂର୍ବରୁ ମଧ୍ୟ) ସ୍ୱାମୀଜୀ ଆମମାନଙ୍କୁ, ଯେଉଁ ପ୍ରଶସ୍ତ ବୈଠକଖାନାରେ ଆମର କ୍ଲାସ୍ ହେଉଥିଲା, ସେଠାରେ ସମବେତ କରାଇ ଶିକ୍ଷାଦାନ ଆରମ୍ଭ କରୁଥିଲେ । ପ୍ରତ୍ୟହ ସେ କୌଣସି ଗୋଟିଏ ବିଶେଷ ବିଷୟ ବାଛି ନେଇ ସେ ସମ୍ପର୍କରେ ଉପଦେଶ ଦେଉଥିଲେ, କିମ୍ବା ଶ୍ରୀମଦ୍‌ଭଗବଦ୍‌ଗୀତା, ଉପନିଷଦ୍ ବା ବ୍ୟାସକୃତ ବେଦାନ୍ତସୂତ୍ର ପ୍ରଭୃତି କୌଣସି ଧର୍ମଗ୍ରନ୍ଥ ନେଇ ତାହାର ବ୍ୟାଖ୍ୟା କରୁଥିଲେ । ବେଦାନ୍ତସୂତ୍ରରେ ବେଦାନ୍ତାନ୍ତର୍ଗତ ମହାସତ୍ୟଗୁଡ଼ିକ ଯେତେଦୂର ସମ୍ଭବ ସ୍ୱଳ୍ପାକ୍ଷରରେ ନିବଦ୍ଧ ଅଛି । ସେଗୁଡ଼ିକର କର୍ତ୍ତା କିମ୍ବା କିଛି ନାହିଁ ଓ ସୂତ୍ରକାରଗଣ ଅନାବଶ୍ୟକ ପଦଗୁଡ଼ିକ ପରିହାର କରିବାକୁ ଏଭଳି ଆଗ୍ରହାନ୍ୱିତ ଥିଲେ ଯେ, ହିନ୍ଦୁମାନଙ୍କ ମଧ୍ୟରେ ଗୋଟିଏ ପ୍ରବାଦ ଅଛି—ସୂତ୍ରକାର ବରଂ ତାଙ୍କର ଗୋଟିଏ ପୁତ୍ରକୁ ପରିତ୍ୟାଗ କରିବାକୁ ପ୍ରସ୍ତୁତ, କିନ୍ତୁ ତାଙ୍କ ସୂତ୍ରରେ ଗୋଟିଏ ସୁଦ୍ଧା ଅଧିକ ଅକ୍ଷର ବସାଇବାକୁ ପ୍ରସ୍ତୁତ ନୁହନ୍ତି ।

ବେଦାନ୍ତସୂତ୍ରଗୁଡ଼ିକ ଅତ୍ୟନ୍ତ ସ୍ୱଳ୍ପାକ୍ଷରବିଶିଷ୍ଟ ହୋଇଥିବାରୁ ଭାଷ୍ୟକାରମାନଙ୍କ ପକ୍ଷରେ ମୁଣ୍ଡ ଖେଳାଇବାର ଯଥେଷ୍ଟ ଅବକାଶ ରହିଛି । ଶଙ୍କର, ରାମାନୁଜ ଓ ମଧ୍ୱ, ଏହି ତିନି ଜଣ ହିନ୍ଦୁ ମହାଦାର୍ଶନିକ ସୂତ୍ରଗୁଡ଼ିକ ଉପରେ ବିସ୍ତୃତ ଭାଷ୍ୟ ଲେଖି ଯାଇଛନ୍ତି । ପ୍ରାତଃକାଳର କଥୋପକଥନ ସମୟରେ ସ୍ୱାମୀଜୀ ଏହି ଭାଷ୍ୟଗୁଡ଼ିକ ମଧ୍ୟରୁ ଗୋଟିକ ପରେ ଗୋଟିଏ ବ୍ୟାଖ୍ୟା କରୁଥିଲେ ଓ ପ୍ରତ୍ୟେକ ଭାଷ୍ୟକାର କିଭଳି ନିଜ ମତ ଅନୁଯାୟୀ ସୂତ୍ରଗୁଡ଼ିକର କଦର୍ଥ କରିବାର ଅପରାଧରେ ଅପରାଧୀ ତାହା ଦର୍ଶାଉଥିଲେ । ସେ ଦେଖାଇ ଦେଉଥିଲେ ଯେ, ସେମାନଙ୍କ ନିଜ ବ୍ୟାଖ୍ୟାକୁ ଯାହା ସମର୍ଥନ କରୁଛି, ନିଃସଙ୍କୋଚରେ

ସେହିଭଳି ଅର୍ଥ ହିଁ ସୂତ୍ର-ମଧ୍ୟରେ ସେମାନେ ସନ୍ନିବେଶ କରିଛନ୍ତି । ଜୋର୍ କରି ମୂଳ ବିଷୟର ବିକୃତାର୍ଥ କରିବା ଭଳି ବଦଭ୍ୟାସ ଯେ କେତେ ପୁରାତନ, ସ୍ୱାମୀଜୀ ଆମମାନଙ୍କୁ ତାହା ପ୍ରାୟ ଦେଖାଇ ଦେଉଥିଲେ ।

କାର୍ଯ୍ୟତଃ, ଏହି କଥୋପକଥନ ମଧ୍ୟରେ କେଉଁଦିନ ମଧ୍ୱବର୍ଣ୍ଣିତ ଶୁଦ୍ଧାଦ୍ୱୈତବାଦ, କେଉଁଦିନ ବା ରାମାନୁଜ-ପ୍ରବର୍ତ୍ତିତ ବିଶିଷ୍ଟାଦ୍ୱୈତବାଦ ବ୍ୟାଖ୍ୟା କରାଯାଉଥିଲା; କିନ୍ତୁ ଶଙ୍କରଙ୍କ ଅଦ୍ୱୈତମୂଳକ ବ୍ୟାଖ୍ୟା ହିଁ ସର୍ବାପେକ୍ଷା ଅଧିକ ବ୍ୟାଖ୍ୟା କରାଯାଉଥିଲା । ତେବେ ଶଙ୍କରଙ୍କ ବ୍ୟାଖ୍ୟାରେ ଅତି ଟିକିନିଖି ବିଚାର ଅଛି ବୋଲି ତାହା ସହଜବୋଧ ନ ଥିଲା, ସୁତରାଂ ରାମାନୁଜ ହିଁ ଛାତ୍ରମାନଙ୍କ ମନଲାଖି ବ୍ୟାଖ୍ୟାକାର ଥିଲେ ।

ସ୍ୱାମୀଜୀ କେବେ କେବେ ନାରଦୀୟ ଭକ୍ତିସୂତ୍ର ନେଇ ବ୍ୟାଖ୍ୟା କରୁଥିଲେ । ଏହି ସୂତ୍ରଗୁଡ଼ିକରେ ଈଶ୍ୱରଭକ୍ତିର ସଂକ୍ଷିପ୍ତ ଆଲୋଚନା ରହିଛି, ଏବଂ ତାହା ପାଠ କଲେ କଥାଟିର ଧାରଣା ହୁଏ— ହିନ୍ଦୁମାନଙ୍କ ପ୍ରକୃତ, ସର୍ବଗ୍ରାସୀ, ଆଦର୍ଶ ଈଶ୍ୱରପ୍ରେମ କି ପ୍ରକାରର— ବାସ୍ତବରେ ସେହି ପ୍ରେମସାଧକ ମନର ଅନ୍ୟ ସମସ୍ତ ଚିନ୍ତା ଦୂର କରି ନିଜକୁ ଭୂତଗ୍ରସ୍ତ ହେଲାଭଳି ବୋଧ କରେ ।

ହିନ୍ଦୁମାନଙ୍କ ମତରେ ଭକ୍ତ ଈଶ୍ୱରଙ୍କ ସହିତ ତାଦାତ୍ମ୍ୟଭାବ ଲାଭ କରିବାର ଏକ ପ୍ରକୃଷ୍ଟ ପନ୍ଥା—ଏହି ଉପାୟ ଭକ୍ତମାନଙ୍କୁ ସ୍ୱଭାବତଃ ଭଲ ଲାଗେ । ଈଶ୍ୱରଙ୍କୁ—କେବଳ ତାହାଙ୍କୁ ହିଁ—ଭଲ ପାଇବାର ନାମ ହିଁ ଭକ୍ତି ।

ଏହି କଥୋପକଥନରେ ସ୍ୱାମୀଜୀ ସର୍ବପ୍ରଥମେ ଆମମାନଙ୍କ ନିକଟରେ ତାଙ୍କ ମହାନ୍ ଆଚାର୍ଯ୍ୟ ଶ୍ରୀରାମକୃଷ୍ଣ ଦେବଙ୍କ ବିଷୟ ବିସ୍ତୃତଭାବରେ ବର୍ଣ୍ଣନା କରୁଥିଲେ । ସ୍ୱାମୀଜୀ ତାଙ୍କ ସହିତ କିଭଳି କାଳାତିପାତ କରୁଥିଲେ, ଏବଂ ତାହାଙ୍କୁ କିଭଳି ନିଜ ନାସ୍ତିକ ମତ ପ୍ରତି ରହିଥିବା ଝୁଙ୍କ ଦମନ କରିବା ପାଇଁ କଠୋର ଚେଷ୍ଟା କରିବାକୁ ପଡ଼ୁଥିଲା ଏବଂ ସମସ୍ତ ସମୟରେ ତାହା ଯେ ତାଙ୍କ ଗୁରୁଦେବଙ୍କୁ ସନ୍ତାପିତ କରି କନ୍ଦାଉଥିଲା—ଏସବୁ କଥା କହୁଥିଲେ । ଶ୍ରୀରାମକୃଷ୍ଣଙ୍କ ଅନ୍ୟାନ୍ୟ ଶିଷ୍ୟମାନେ ପ୍ରାୟ ଉଲ୍ଲେଖ କରିଛନ୍ତି ଯେ, ସେ ସେମାନଙ୍କୁ କହୁଥିଲେ—ସ୍ୱାମୀଜୀ ଜଣେ ମୁକ୍ତ ମହାପୁରୁଷ, ତାଙ୍କ କାର୍ଯ୍ୟରେ ବିଶେଷଭାବରେ ସାହାଯ୍ୟ କରିବା ପାଇଁ ଆଗମନ କରିଛନ୍ତି ଓ ସେ କିଏ ତାହା ଜାଣିବା ମାତ୍ରେ ସେ ଦେହ-ତ୍ୟାଗ କରିବେ; କିନ୍ତୁ ଶ୍ରୀରାମକୃଷ୍ଣ ଆଉ ମଧ୍ୟ କହୁଥିଲେ ଯେ, ସେହି ସମୟ ଉପସ୍ଥିତ ହେବା ପୂର୍ବରୁ ସ୍ୱାମୀଜୀଙ୍କୁ କେବଳ ଭାରତର କଲ୍ୟାଣ ପାଇଁ ନୁହେଁ, କିନ୍ତୁ ଅନ୍ୟ ସବୁ ଦେଶ ପାଇଁ ମଧ୍ୟ କୌଣସି ଏକ ବିଶେଷ କାର୍ଯ୍ୟ କରିବାକୁ ହେବ । ସେ ପ୍ରାୟ କହୁଥିଲେ, "ବହୁ ଦୂରରେ ମୋର ଆଉ କେତେକ ଶିଷ୍ୟ ଅଛନ୍ତି; ସେମାନେ ଏଭଳି ଭାଷାରେ କଥା କହନ୍ତି, ଯାହା ମୁଁ ଜାଣେ ନାହିଁ ।"

'ସହସ୍ର ଦ୍ୱୀପୋଦ୍ୟାନ'ରେ ସାତ ସପ୍ତାହକାଳ ଅତିବାହିତ କରି ସ୍ୱାମୀଜୀ ନ୍ୟୁୟର୍କ ପ୍ରତ୍ୟାବର୍ତ୍ତନ କଲେ ଓ ପରେ ଅନ୍ୟ ସ୍ଥାନକୁ ଭ୍ରମଣ କରିବା ପାଇଁ ବାହାରିଗଲେ । ନଭେମ୍ବର ମାସ ଶେଷ ପର୍ଯ୍ୟନ୍ତ ସେ ଇଂଲଣ୍ଡରେ ବକ୍ତୃତା ଦେଉଥିଲେ ଓ ଛାତ୍ରମାନଙ୍କୁ

ଶିକ୍ଷାଦାନ କରୁଥିଲେ । ତା'ପରେ ନ୍ୟୁୟର୍କ ଫେରି ସେ ସେଠାରେ ପୁଣି କ୍ଲାସ୍ ଆରମ୍ଭ କଲେ । ଏହି ସମୟରେ ତାଙ୍କ ଛାତ୍ରମାନେ ଜଣେ ଉପଯୁକ୍ତ ସାଙ୍କେତିକ-ଲିଖନବିତ୍‌ଙ୍କୁ (Stenographer) ସଂଗ୍ରହ କରିଥିଲେ ଏବଂ ଏହିଭଳି ଭାବରେ ସ୍ୱାମୀଜୀଙ୍କ ଉକ୍ତିଗୁଡ଼ିକୁ ଲିପିବଦ୍ଧ କରାଇ ରଖିଥିଲେ । ଏହି କ୍ଲାସ୍ ବକ୍ତୃତାଗୁଡ଼ିକ କିଛିଦିନ ପରେ ପୁସ୍ତକାକାରରେ ପ୍ରକାଶିତ ହୋଇଥିଲା । ଏହି ପୁସ୍ତକଗୁଡ଼ିକ ଓ ପୁସ୍ତିକାକାରରେ ନିବଦ୍ଧ ତାଙ୍କର ସାଧାରଣ ସଭାରେ ଭାଷଣଗୁଡ଼ିକ ହିଁ ଆଜି ସ୍ୱାମୀ ବିବେକାନନ୍ଦଙ୍କ ଆମେରିକାରେ ପ୍ରଚାର-କାର୍ଯ୍ୟର ସ୍ଥାୟୀ ସ୍ମୃତିଚିହ୍ନରୂପେ ବିଦ୍ୟମାନ ରହିଛି । ଆମମାନଙ୍କ ମଧ୍ୟରୁ ଯେଉଁମାନେ ଏହି ବକ୍ତୃତା ସମୟରେ ଉପସ୍ଥିତ ଥିବାର ସୌଭାଗ୍ୟ ଲାଭ କରିଥିଲେ, ସେମାନଙ୍କଦ୍ୱାରା ମୁଦ୍ରିତ ପୃଷ୍ଠାଗୁଡ଼ିକରେ ସ୍ୱାମୀଜୀଙ୍କୁ ଯେପରି ସଜୀବ ମନେ ହୁଏ ଏବଂ ସେ ଯେପରି ସେମାନଙ୍କ ସହିତ କଥାବାର୍ତ୍ତା କରୁଛନ୍ତି, ଏପରି ମନେହୁଏ । ତାଙ୍କ ବକ୍ତୃତାଗୁଡ଼ିକ ଯେ ଏଭଳି ଯଥାଯଥ ଭାବରେ ଲିପିବଦ୍ଧ ହୋଇପାରିଥିଲା, ତାହାର ଗୌରବ ହିଁ ଜଣେ ମାତ୍ର ବ୍ୟକ୍ତିଙ୍କର ପ୍ରାପ୍ୟ, ଯେ କି ପରେ ସ୍ୱାମୀଜୀଙ୍କର ଜଣେ ମହା-ଅନୁରାଗୀ ଭକ୍ତରେ ପରିଣତ ହୋଇଥିଲେ । ଗୁରୁ ଓ ଶିଷ୍ୟ ଉଭୟଙ୍କ କାର୍ଯ୍ୟ ନିଷ୍କାମ-ପ୍ରେମ-ପ୍ରସୂତ ଥିଲା । ସୁତରାଂ ଏହି କାର୍ଯ୍ୟ ଉପରେ ଈଶ୍ୱରଙ୍କର ଆଶୀର୍ବାଦ ବର୍ଷିତ ହୋଇଥିଲା ।

ନିଉୟର୍କ ୧୯୦୮

ଏସ୍. ଇ. ଓସ୍ୱାଲ୍‌ଡୋ

# ଦେବବାଣୀ

**ବୁଧବାର, ୧୯ ଜୁନ୍, ୧୮୯୫**

ସହସ୍ରଦ୍ୱୀପୋଦ୍ୟାନରେ ଏହି ଦିନରୁ ସ୍ୱାମୀଜୀ ନିୟମିତ ଶିକ୍ଷାଦାନ ଆରମ୍ଭ କଲେ । ଆମେମାନେ ସମସ୍ତେ ସେତେବେଳେ ଉପସ୍ଥିତ ହୋଇ ନ ଥିଲୁ, କିନ୍ତୁ ଆଚାର୍ଯ୍ୟଙ୍କର ହୃଦୟ ବକ୍ତୃତା ଆରମ୍ଭ କରିବା ପାଇଁ ପ୍ରସ୍ତୁତ ହୋଇ ଯାଇଛି; ଯେଉଁ ତିନିଚାରିଜଣ ଉପସ୍ଥିତ ଥିଲେ, ସେମାନଙ୍କ ଆଡ଼କୁ ଲକ୍ଷ୍ୟ କରି ଶିକ୍ଷା ଦେବା ଆରମ୍ଭ କଲେ ।

ସ୍ୱାମୀଜୀ ହାତରେ ଖଣ୍ଡିଏ ବାଇବେଲ ନେଇ ଛାତ୍ରମାନଙ୍କ ନିକଟରେ ଉପସ୍ଥିତ ହେଲେ ଏବଂ ଏହାର ନବସନ୍ଧିଭାଗର (New Testament) ମଧ୍ୟରେ ଥିବା ଜନ୍ ସେଣ୍ଟ ଗ୍ରନ୍ଥଖଣ୍ଡି ଖୋଲି କହିଲେ, ତୁମେମାନେ ସମସ୍ତେ ଯେତେବେଳେ ଖ୍ରୀଷ୍ଟିଆନ, ସେତେବେଳେ ଖ୍ରୀଷ୍ଟୀୟ ଶାସ୍ତ୍ରରୁ ହିଁ ଆରମ୍ଭ କରିବା ସବୁଠାରୁ ଭଲ ହେବ ।

ଜନ୍‌ଙ୍କ ଗ୍ରନ୍ଥର ପ୍ରାରମ୍ଭରେ ଏହି କଥାଗୁଡ଼ିକ ଅଛି—"ପ୍ରଥମରେ କେବଳ ଶବ୍ଦ ମାତ୍ର ଥିଲା, ସେହି ଶବ୍ଦ ବ୍ରହ୍ମ ସହିତ ବିଦ୍ୟମାନ ଥିଲା ଏବଂ ସେହି ଶବ୍ଦ ହିଁ ବ୍ରହ୍ମ ।"

ହିନ୍ଦୁମାନେ ଏହି 'ଶବ୍ଦ'କୁ 'ମାୟା' ବା ବ୍ରହ୍ମର ବ୍ୟକ୍ତଭାବ ବୋଲି କହନ୍ତି, କାରଣ

ଏହା ହେଉଛି ବ୍ରହ୍ମର ଶକ୍ତି । ଯେତେବେଳେ ସେହି ନିରପେକ୍ଷ ବ୍ରହ୍ମସତ୍ତାକୁ ଆମେ ବିଶ୍ୱ-ଜଗତରେ ପ୍ରତିଫଳିତ ହେବା ଦେଖୁ, ସେତେବେଳେ ଆମେ ତାହାକୁ 'ପ୍ରକୃତି' ବୋଲି କହିଥାଉ । 'ଶକ୍ତି'ର ଦୁଇଟି ବିକାଶ, ଗୋଟିଏ ଏହି 'ପ୍ରକୃତି'—ଏହା ହିଁ ସାଧାରଣ ବିକାଶ । ଏହାର ବିଶେଷ ବିକାଶ ହେଉଛନ୍ତି କୃଷ୍ଣ, ବୁଦ୍ଧ, ଈଶା, ରାମକୃଷ୍ଣ ପ୍ରଭୃତି ଅବତାର-ପୁରୁଷଗଣ । ସେହି ନିର୍ଗୁଣବ୍ରହ୍ମର ବିଶେଷ ବିକାଶ ଯେଉଁ ଖ୍ରୀଷ୍ଟ, ତାଙ୍କୁ ଆମେ ଜାଣିଥାଉ, ସେ ଆମର ଜ୍ଞେୟ; କିନ୍ତୁ ନିର୍ଗୁଣ ବ୍ରହ୍ମ ବସ୍ତୁକୁ ଆମେ ଜାଣିପାରୁ ନାହିଁ । ଆମେ ପରମ ପିତାଙ୍କୁ* ଜାଣିପାରୁ ନାହିଁ; କିନ୍ତୁ ତାଙ୍କ ପୁତ୍ରଙ୍କୁ** ଜାଣିପାରୁ । ନିର୍ଗୁଣ ବ୍ରହ୍ମକୁ ଆମେ କେବଳ ମଣିଷର ରୂପ-ରଙ୍ଗ ମଧ୍ୟଦେଇ ଦେଖିପାରୁ, ଖ୍ରୀଷ୍ଟଙ୍କ ଭିତର ଦେଇ ଦେଖିପାରୁ ।

ଜନ୍‌ଙ୍କ ଲିଖିତ ଗ୍ରନ୍ଥର ପ୍ରଥମ ପାଞ୍ଚୋଟି ଶ୍ଳୋକ ମଧ୍ୟରେ ଖ୍ରୀଷ୍ଟଧର୍ମର ସାରତତ୍ତ୍ୱ ନିହିତ । ଏହାର ପ୍ରତ୍ୟେକ ଶ୍ଳୋକ ଗମ୍ଭୀରତମ ଦାର୍ଶନିକ ତଥ୍ୟରେ ପୂର୍ଣ୍ଣ ।

ଯେ ପୂର୍ଣ୍ଣସ୍ୱରୂପ, ସେ କେବେହେଲେ ଅପୂର୍ଣ୍ଣ ନୁହନ୍ତି । ସେ ଅନ୍ଧକାର ମଧ୍ୟରେ ଅଛନ୍ତି ସତ, କିନ୍ତୁ ସେହି ଅନ୍ଧକାର ତାଙ୍କୁ ସ୍ପର୍ଶ କରିପାରେ ନାହିଁ । ଈଶ୍ୱରଙ୍କର ଦୟା ସମସ୍ତଙ୍କ ଉପରେ ରହିଛି; କିନ୍ତୁ କାହାର ପାପ ତାଙ୍କୁ ସ୍ପର୍ଶ କରିପାରେ ନାହିଁ । ଆମେ ଚକ୍ଷୁରୋଗାକ୍ରାନ୍ତ ହୋଇ ସୂର୍ଯ୍ୟଙ୍କୁ ଅନ୍ୟ ରୂପରେ ଦେଖିପାରୁ, କିନ୍ତୁ ସୂର୍ଯ୍ୟଙ୍କର କୌଣସି ପରିବର୍ତ୍ତନ ଘଟେ ନାହିଁ ।

ଜନ୍‌ଙ୍କର ଊନତିଂଶ ଶ୍ଳୋକରେ ଯାହା ଲେଖା ଅଛି, 'ସେ ଜଗତର ପାପ ଦୂର କରନ୍ତି'—ତାହାର ଅର୍ଥ ଏହି ଯେ ଖ୍ରୀଷ୍ଟ ଆମକୁ ପୂର୍ଣ୍ଣତା ଲାଭ କରିବାର ବାଟ ଦେଖାଇ ଦେବେ । ଈଶ୍ୱର ଖ୍ରୀଷ୍ଟ ହୋଇ ଜନ୍ମଲାଭ କଲେ—ମନୁଷ୍ୟକୁ ତାହାର ପ୍ରକୃତ ସ୍ୱରୂପ ଦେଖାଇ ଦେବା ପାଇଁ—ଆମେ ଯେ ପ୍ରକୃତରେ ବ୍ରହ୍ମସ୍ୱରୂପ ଏହି କଥା ଜଣାଇ ଦେବା ନିମିତ୍ତ । ଆମେ ହେଉଛୁ ସେହି ଦେବତ୍ୱ ଉପରେ ମନୁଷ୍ୟତ୍ୱର ଆବରଣ ମାତ୍ର; କିନ୍ତୁ ଦେବତ୍ୱବାପନ୍ନ ମନୁଷ୍ୟ ହିସାବରେ ଖ୍ରୀଷ୍ଟ ଓ ଆମମାନଙ୍କ ମଧ୍ୟରେ ସ୍ୱରୂପତଃ କୌଣସି ପାର୍ଥକ୍ୟ ନାହିଁ ।

ତ୍ରିତ୍ୱବାଦୀଙ୍କର (Trinitarian)*** ଯେଉଁ ଖ୍ରୀଷ୍ଟ, ସେ ଆମଭଳି ସାଧାରଣ ମନୁଷ୍ୟଠାରୁ ଅନେକ ଉଚ୍ଚରେ ଅବସ୍ଥିତ । ଏକତ୍ୱବାଦୀଙ୍କର (Unitarian) ଖ୍ରୀଷ୍ଟ ଈଶ୍ୱର ନୁହନ୍ତି, ସେ ଜଣେ ସାଧୁପୁରୁଷ । ଏ ଉଭୟଙ୍କ କେହି ଆମକୁ ସାହାଯ୍ୟ କରିପାରନ୍ତି ନାହିଁ; କିନ୍ତୁ ଯେଉଁ ଖ୍ରୀଷ୍ଟ ଈଶ୍ୱରଙ୍କ ଅବତାର, ସେ ନିଜ ଈଶ୍ୱରତ୍ୱ ବିସ୍ମୃତ ହୁଅନ୍ତି ନାହିଁ । ସେହି ଖ୍ରୀଷ୍ଟ ହିଁ ଆମକୁ ସାହାଯ୍ୟ କରିପାରନ୍ତି, ତାଙ୍କଠାରେ କୌଣସି ଅପୂର୍ଣ୍ଣତା ନାହିଁ । ଏହି

* God the Father ** God the Son

*** ତ୍ରିତ୍ୱବାଦୀ, Trinitarian—ଏମାନଙ୍କ ମତରେ ପିତା, ପୁତ୍ର ଓ ପବିତ୍ରାତ୍ମାଭେଦରେ ଈଶ୍ୱର ଏକରେ ହିଁ ତିନି । ଅପର ସମ୍ପ୍ରଦାୟ ଏହା ଅସ୍ୱୀକାର କରନ୍ତି ।

ସବୁ ଅବତାର ନିଜକୁ ଈଶ୍ୱର ବୋଲି ଜାଣିଥାଆନ୍ତି । ସେମାନେ ଆଜନ୍ମରୁ ଏହା ଜାଣନ୍ତି । ସେମାନେ ଯେପରି ସେହିସବୁ ଅଭିନେତାମାନଙ୍କ ପରି, ଯାହାଙ୍କର ନିଜ ନିଜ ଅଂଶର ଅଭିନୟ ଶେଷ ହୋଇଯାଇଛି—ନିଜ ପାଇଁ ଆଉ କୌଣସି ପ୍ରୟୋଜନ ନାହିଁ, ଖାଲି କେବଳ ଅନ୍ୟକୁ ଆନନ୍ଦ ଦେବା ପାଇଁ ରଙ୍ଗମଞ୍ଚକୁ ଫେରି ଆସନ୍ତି । ଏହି ମହାପୁରୁଷମାନଙ୍କୁ ସଂସାରର କୌଣସି ମଳିନତା ସ୍ପର୍ଶ କରିପାରେ ନାହିଁ । ସେମାନେ କେବଳ ଆମକୁ ଶିକ୍ଷା ଦେବା ଲାଗି କିଛିକାଳ ପାଇଁ ଆମଭଳି ମନୁଷ୍ୟ ସାଜି ଆସନ୍ତି, ଆମମାନଙ୍କ ପରି ବଦ୍ଧ ବୋଲି ଅଭିନୟ କରନ୍ତି; କିନ୍ତୁ ପ୍ରକୃତରେ ସେମାନେ ବଦ୍ଧ ନୁହନ୍ତି, ସର୍ବଦା ମୁକ୍ତସ୍ୱଭାବ । ***

ମଙ୍ଗଳ ବା କଲ୍ୟାଣ ଭାବ ସତ୍ୟର ସମୀପବର୍ତ୍ତୀ ସତ, ମାତ୍ର ଏହା ପୂର୍ଣ୍ଣ ସତ୍ୟ ନୁହେଁ । ଅମଙ୍ଗଳ ଯେପରି ଆମକୁ ବିଚଳିତ କରି ନ ପାରେ, ମଙ୍ଗଳ ଯେପରି ଆମକୁ ସୁଖୀ କରି ନ ପାରେ, ଏହା ଶିଖିବାକୁ ହେବ । ଆମକୁ ଜାଣିବାକୁ ହେବ ଯେ, ଆମେ ମଙ୍ଗଳ-ଅମଙ୍ଗଳ ଦୁଇଟିଯାକର ବାହାରେ । ଏହି ଉଭୟଙ୍କ ପାଇଁ ଯେଉଁ ସ୍ଥାନ ନିର୍ଦ୍ଦିଷ୍ଟ ରହିଛି, ତାହା ଆମକୁ ଲକ୍ଷ୍ୟ କରିବାକୁ ହେବ; ଆଉ ବୁଝିବାକୁ ହେବ ଯେ, ଗୋଟିଏ ରହିଲେ ଅପରଟି ନିଶ୍ଚୟ ହିଁ ରହିବ ।

ଦ୍ୱୈତବାଦର ଭାବଟି ପ୍ରାଚୀନ ପାରସିକମାନଙ୍କ* ନିକଟରୁ ଆସିଛି । ପ୍ରକୃତପକ୍ଷରେ ଭଲମନ୍ଦ ଦୁଇଟିଯାକ ଗୋଟିଏ ଜିନିଷ ଏବଂ ଆମ ମନରେ ହିଁ ଉଭୟେ ଅଛନ୍ତି । ମନ ଯେତେବେଳେ ସ୍ଥିର ଓ ଶାନ୍ତ ହୁଏ, ସେତେବେଳେ ଭଲ-ମନ୍ଦ କିଛି ତାହାକୁ ସ୍ପର୍ଶ କରିପାରେ ନାହିଁ । ଶୁଭାଶୁଭ ଦୁହିଙ୍କର ବନ୍ଧନ ଛିନ୍ନ କରି ଏକାବେଳକେ ମୁକ୍ତ ହୁଅ, ସେତେବେଳେ ଏମାନେ କେହି ଆଉ ତୁମକୁ ସ୍ପର୍ଶ କରିପାରିବେ ନାହିଁ, ତୁମେ ମୁକ୍ତି ପାଇ ପରମାନନ୍ଦ ଭୋଗ କରିବ । ଅଶୁଭ ଯେପରି ଲୁହାଶିକୁଳି ଓ ଶୁଭ ଯେପରି ସୁନାର ଶିକୁଳି; କିନ୍ତୁ ଦୁଇଟିଯାକ ଶିକୁଳି । ମୁକ୍ତ ହୁଅ ଏବଂ ଜନ୍ମଜନ୍ମାନ୍ତର ପାଇଁ ଜାଣିରଖ ଯେ, କୌଣସି ଶିକୁଳି ତୁମକୁ ବାନ୍ଧିପାରିବ ନାହିଁ । ସୁନା ଶିକୁଳିର ସାହାଯ୍ୟରେ ଲୁହା ଶିକୁଳିକୁ ଅଲଗା କରିନିଅ, ତା'ପରେ ଦୁଇଟିକୁ ଫୋପାଡ଼ି ଦିଅ । ଅଶୁଭରୂପକ କଣ୍ଟା ଆମ ଶରୀରରେ ରହିଛି; ଏହି ଗଛର ଆଉ ଗୋଟିଏ କଣ୍ଟା (ଶୁଭରୂପ) ନେଇ ପୂର୍ବର କଣ୍ଟାଟିକୁ ବାହାର କରି ପରିଶେଷରେ ଦୁଇଟିକୁ ଫୋପାଡ଼ି ଦିଅ ଓ ମୁକ୍ତ ହୁଅ । ***

ଜଗତରେ ସର୍ବଦା ଦାତାର ଆସନ ଗ୍ରହଣ କର । ସର୍ବସ୍ୱ ଦେଇଦିଅ । ଆଉ କିଛି ଆଶା କର ନାହିଁ । ସ୍ନେହ ଦିଅ, ସାହାଯ୍ୟ ଦିଅ, ସେବା ଦିଅ, ତୁମର ଯେତେ ସାମାନ୍ୟ ମଧ୍ୟ ଦେବାର ଅଛି ତାହା ଦେଇଯାଅ; କିନ୍ତୁ ସାବଧାନ, ତାହା ବିନିମୟରେ କୌଣସି କିଛି ଆଶା କର ନାହିଁ । କୌଣସି ସର୍ତ୍ତସର୍ତ୍ତି କର ନାହିଁ, ତା'ହେଲେ ତୁମ ଉପରେ ମଧ୍ୟ କୌଣସି ସର୍ତ୍ତ ଲଦି ହେବ ନାହିଁ । ଆମେ ଯେପରି ଆମ ନିଜର ବଦାନ୍ୟତାରୁ ଦେଇ

* ଜରଥୁଷ୍ଟ୍ରଙ୍କ ଅନୁଗାମୀ ପ୍ରାଚୀନ ପାରସ୍ୟବାସୀଗଣ ବିଶ୍ୱାସ କରୁଥିଲେ ଆହୁର୍ ମଜ୍‌ଦା ଓ ଅହ୍‌ରିମାନ ନାମରେ ଶୁଭାଶୁଭର ଅଧିଷ୍ଠାତା ଦେବଦ୍ୱୟଙ୍କ ଦ୍ୱାରା ସମଗ୍ର ଜଗତ୍ ସୃଷ୍ଟ ହୋଇଅଛି ।

ଯାଉଛୁ—ଠିକ୍ ଈଶ୍ୱର ସେହିପରି ଆମକୁ ଦେଇଥାଆନ୍ତି ।

ଈଶ୍ୱର ଏକମାତ୍ର ଦେଲବାଲା, ଜଗତର ସମସ୍ତେ ତ କେବଳ ଦୋକାନଦାର୍ ମାତ୍ର ।···ତାଙ୍କର ସହିକରା ହୁଣ୍ଡି (ଚେକ୍) ଯୋଗାଡ଼ କର, ସର୍ବତ୍ର ତାହାର ଖାତର୍ ହେବ ।

ଈଶ୍ୱର ଅନିର୍ବଚନୀୟ ପ୍ରେମସ୍ୱରୂପ—ସେ ଉପଲବ୍ଧିର ବସ୍ତୁ; କିନ୍ତୁ ତାଙ୍କୁ କେବେ ବେଳେ ହେଲେ ମଧ୍ୟ 'ଇତି' 'ଇତି' କହି ନିର୍ଦ୍ଦିଷ୍ଟ କରାଯାଇପାରେ ନାହିଁ । ***

ଆମେ ଯେତେବେଳେ ଦୁଃଖକଷ୍ଟ ଏବଂ ସଂଘର୍ଷ ଭିତରେ ପଡ଼ୁ, ସେତେବେଳେ ଜଗତ୍ ଆମ ନିକଟରେ ଏକ ଭୟଙ୍କର ସ୍ଥାନ ବୋଲି ମନେହୁଏ; କିନ୍ତୁ ଦୁଇଟି କୁକୁରଛୁଆ ପରସ୍ପର ଖେଳାଖେଳି ବା କାମୁଡ଼ାକାମୁଡ଼ି ହେବାର ଦେଖିଲେ ଆମେ ସେ ଆଡ଼କୁ ଯେପରି ଦୃଷ୍ଟି ନ ଦେଉ, ଜାଣୁ ଯେ ଦୁଇଟିଯାକ ମଜା କରୁଛନ୍ତି, ଏପରି କି ମଝିରେ ମଝିରେ ଜୋର୍‌ରେ କାମୁଡ଼ାକାମୁଡ଼ି ହେଲେ ସୁଦ୍ଧା ଦେଖିରେ ବିଶେଷ କିଛି କ୍ଷତି ହେବ ବୋଲି ମନେକରୁନା, ସେହିପରି ଆମ ଭିତରେ ଯେପରି ଭାବରେ ମରାମରି ପ୍ରଭୃତି ଲାଗିଛି ତାହା ଈଶ୍ୱରଙ୍କ ଚକ୍ଷୁରେ ଖେଳ ବ୍ୟତୀତ ଆଉ ଅନ୍ୟ କିଛି ନୁହେଁ । ଏହି ସମୁଦାୟ ଜଗତ୍‌ଟା କେବଳ ଖେଳ ପାଇଁ—ଭଗବାନଙ୍କର ଏଥିରେ ଖାଲି ମଜା ହୁଏ ମାତ୍ର । ଜଗତରେ ଯାହା ଘଟୁନା କାହିଁକି—କୌଣସି କଥା ତାଙ୍କର କ୍ରୋଧ ସୃଷ୍ଟି କରିପାରେ ନାହିଁ ।

'ପଡ଼ି ଭବସାଗରରେ ବୁଡ଼େ ମା ତନୁର ତରୀ ।
ମାୟା-ଝଡ଼ ମୋହ-ତୋଫାନ କ୍ରମେ ବଢ଼େ ଗୋ ଶଙ୍କରୀ ।
ମନମାଝି ଏଣେ ଅନାଡ଼ି, କୁଜନ ଷଡ଼ରିପୁ ନାଉରୀ,
କୁବତାସେ ଭେଳା ଗୁଡ଼ି, ଅଥଯ ଜଳରେ ମରି;
ଭାଙ୍ଗିଲଣି ଭକ୍ତିର ହାଲ, ଉଡ଼ିଗଲା ଶ୍ରଦ୍ଧାର ପାଲ,
ଭଗ୍ନ ତରୀ ଟଳମଳ, କିବା ଉପାୟ ମୋହରି ।
ନ ଦେଖି ଆଉ ଉପାୟ, ଭାବି ନୀଲକମଲ ଅଭୟ,
ତରଙ୍ଗେ ଦିଏ ସନ୍ତରି, ଦୁର୍ଗାନାମ ଭେଳା ଧରି ।'

ମାତଃ, ତୁମର ପ୍ରକାଶ ଯେ କେବଳ ସାଧୁଙ୍କଠାରେ ଅଛି ଏବଂ ପାପୀଙ୍କ ପାଖରେ ନାହିଁ, ତା' ନୁହେଁ; ଏ ପ୍ରକାଶ ପ୍ରେମିକର ଭିତରେ ଯେପରି ଅଛି, ହତ୍ୟାକାରୀର ଭିତରେ ମଧ୍ୟ ସେହିପରି ଅଛି । ମା ସମସ୍ତଙ୍କ ଭିତର ଦେଇ ନିଜକୁ ଅଭିବ୍ୟକ୍ତ କରୁଛନ୍ତି । ଆଲୋକ ଅଶୁଚି ବସ୍ତୁ ଉପରେ ପଡ଼ିଲେ ତାହା ଅଶୁଚି ହୁଏ ନାହିଁ, ଆଉ ଶୁଚି ବସ୍ତୁ ଉପରେ ପଡ଼ିଲେ ତା'ର ଗୁଣ ମଧ୍ୟ ବଢ଼େ ନାହିଁ । ଆଲୋକ ନିତ୍ୟ ଶୁଦ୍ଧ, ସର୍ବଦା ଅପରିଣାମୀ । ସକଳ ପ୍ରାଣୀ ପଛରେ ସେହି 'ସୌମ୍ୟାଉ ସୌମ୍ୟତରା' ନିତ୍ୟ ଶୁଦ୍ଧସ୍ୱଭାବା ସର୍ବଦା ଅପରିଣାମିନୀ ମା ରହିଛନ୍ତି । "ଯା ଦେବୀ ସର୍ବଭୂତେଷୁ ଚେତନେତ୍ୟଭିଧୀୟତେ ।
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋନମଃ ॥"*

* ଦେବୀମାହାତ୍ମ୍ୟ, ଚଣ୍ଡୀ, ୫।୧୭

ସେ ଦୁଃଖକଷ୍ଟ, କ୍ଷୁଧାତୃଷ୍ଣାର ଭିତରେ ମଧ୍ୟ ଅଛନ୍ତି, ଆହ୍ଲାଦ ସୁଖ ମଧ୍ୟରେ, ଉଦାତ୍ତ ଭାବ ଭିତରେ ମଧ୍ୟ ରହିଛନ୍ତି । ଯେତେବେଳେ ଭ୍ରମର ମଧୁପାନ କରେ ସେତେବେଳେ ପ୍ରଭୁ ହିଁ ଭ୍ରମରରୂପରେ ମଧୁପାନ କରନ୍ତି । ଈଶ୍ୱର ସର୍ବଦା ରହିଛନ୍ତି ଜାଣି ଜ୍ଞାନୀ ବ୍ୟକ୍ତିମାନେ ନିନ୍ଦା-ସ୍ତୁତି ଦୁଇଟିଯାକ ଛାଡ଼ି ଦିଅନ୍ତି । ଜାଣିରଖ ଯେ, କେହି ତୁମର କୌଣସି ଅନିଷ୍ଟ କରିପାରିବ ନାହିଁ । କିପରି ବା କରିବ ? ତୁମେ କଅଣ ମୁକ୍ତ ନୁହଁ ? ତୁମେ କଅଣ ଆତ୍ମା ନୁହଁ ? ତୁମେ ଆମମାନଙ୍କର ପ୍ରାଣର ପ୍ରାଣ, ଚକ୍ଷୁର ଚକ୍ଷୁ, ଶ୍ରୋତ୍ରର ଶ୍ରୋତ୍ର-ସ୍ୱରୂପ ।*

ଆମେ ସଂସାର ଭିତର ଦେଇ ଚାଲିଛୁ, ଯେପରି ପଛପଟବାଲା ଆମକୁ ଧରିବା ପାଇଁ ପଛେ ପଛେ ଗୋଡ଼େଇଛି—ସେଥିପାଇଁ ଜଗତର ଯାହା ସୁନ୍ଦର, ତାହାର କେବଳ କିଞ୍ଚିତ୍ ଆଭାସମାତ୍ର ଆମେ ଦେଖିଥାଉ । ଏହି ଯେ ଆମର ଏତେ ଭୟ, ଏହା ଜଡ଼କୁ ସତ୍ୟ ବୋଲି ବିଶ୍ୱାସ କରିବାରୁ ହିଁ ଆସିଛି । ଜଡ଼ର ଯାହା କିଛି ସତ୍ତା, ତାହା ତ କେବଳ ତା' ପଛରେ ମନ ରହିଛି ବୋଲି । ଆମେ ଜଗତ୍ ବୋଲି ଯାହା ଦେଖୁଛୁ, ତାହା ଈଶ୍ୱର—ପ୍ରକୃତି ଭିତର ଦେଇ ପ୍ରକାଶ ପାଇଛନ୍ତି ।

**ରବିବାର, ୨୩ ଜୁନ**

ସାହସୀ ଓ ଅକପଟ ହୁଅ—ତା'ପରେ ତୁମେ ଯେଉଁ ବାଟରେ ଇଚ୍ଛା ଭକ୍ତି ଓ ବିଶ୍ୱାସର ସହିତ ଅଗ୍ରସର ହୁଅ । ନିଶ୍ଚୟ ସେହି ପୂର୍ଣ୍ଣ ବସ୍ତୁକୁ ଲାଭ କରିବ । ଯଦି କୌଣସି ମତେ ଶିକୁଳିର ଗୋଟିଏ କଡ଼ା ଧରିପାର, ତେବେ ସମସ୍ତ ଶିକୁଳିକୁ ମଧ୍ୟ ଟାଣି ଆଣି ପାରିବ । ଗଛର ଚେରରେ ଯଦି ପାଣି ଦିଅ, ସମସ୍ତ ଗଛ ପାଣି ପାଇବ । ଭଗବାନଙ୍କୁ ଯଦି ଆମେ ଲାଭ କରିପାରୁ, ତେବେ ସମସ୍ତ ମିଳିଲା ।

ଆଖିବୁଜାଭାବରେ ସବୁବେଳେ ଗୋଟିଏ ଭାବକୁ ଧରି ରଖିବା ଭାରି ଅନିଷ୍ଟକର । ତୁମେ ନିଜ ଭିତରେ ଯେତେ ଭିନ୍ନ ଭିନ୍ନ ଭାବର ବିକାଶ କରାଇପାରିବ, ସେତେ ସେତେ ଜଗତକୁ ବିଭିନ୍ନ ଭାବରେ—କେତେବେଳେ ଜ୍ଞାନୀର ଦୃଷ୍ଟିରେ, କେତେବେଳେ ଭକ୍ତର ଦୃଷ୍ଟିରେ ଉପଭୋଗ କରିପାରିବ । ନିଜ ପ୍ରକୃତିକୁ ଆଗ ଠିକ୍ କର, ତା'ପରେ ସେହି ପ୍ରକୃତି ଅନୁଯାୟୀ ପଥ ଅବଲମ୍ବନ କରି ସେଥିରେ ଲାଗିପଡ଼ । ପ୍ରବର୍ତ୍ତକ ପକ୍ଷରେ ନିଷ୍ଠା (ଗୋଟିଏ ଭାବରେ ଦୃଢ଼ ହେବା) ହେଉଛି ଏକମାତ୍ର ଉପାୟ; କିନ୍ତୁ ଯଦି ପ୍ରକୃତ ଭକ୍ତି-ବିଶ୍ୱାସ ଥାଏ ଏବଂ 'ଭାବ-ରାଜ୍ୟରେ ଘୋର' ନ ଥାଏ, ତେବେ ଏହି ନିଷ୍ଠା ତୁମକୁ ଗୋଟିଏ ଭାବରୁ ଅନ୍ୟ ସମସ୍ତ ଭାବକୁ ନେଇଯିବ । ଗୀର୍ଜା, ମନ୍ଦିର, ମତ, ମତାନ୍ତର, ନାନାବିଧ ଅନୁଷ୍ଠାନ, ଏଗୁଡ଼ିକ ଯେପରି ଚାରା ଗଛକୁ ରକ୍ଷା କରିବା ପାଇଁ ତା'ର ଚାରିପାଖର ବାଡ଼ ଦେବାର ବ୍ୟବସ୍ଥା ସଦୃଶ; କିନ୍ତୁ ଗଛକୁ ବଢ଼ାଇବାକୁ ହେଲେ ପରିଶେଷରେ ସେଗୁଡ଼ିକୁ ଭାଙ୍ଗି ଦେବାକୁ ହେବ । ଏହିପରି ବିଭିନ୍ନ ଧର୍ମ, ବେଦ, ବାଇବେଲ, ମତ-ମତାନ୍ତର—ଏ

* ଶ୍ରୋତ୍ରସ୍ୟ ଶ୍ରୋତ୍ରଂ...ସ ଉ ପ୍ରାଣସ୍ୟ ଚକ୍ଷୁଷଶ୍ଚକ୍ଷୁଃ । —କେନୋପନିଷତ୍, ୧/୨

ସବୁ ଯେପରି ଘୃତଗଛର କୁଣ୍ଡ ଭଳି, କିନ୍ତୁ କୁଣ୍ଡରୁ ତାକୁ ଦିନେ ନା ଦିନେ ବାହାରି ଆସିବାକୁ ପଡ଼ିବ । ନିଷ୍ଠା ଯେପରି କୁଣ୍ଡ ଭିତରେ ଘୃତଗଛକୁ ରକ୍ଷିଲା ଭଳି—ସାଧକକୁ ତାହାର ନବାଗତ ପଥରେ ଅଟକାଇ ରଖିବା । ***

ସମଗ୍ର ସମୁଦ୍ରକୁ ଦେଖ, ଗୋଟିଏ ଗୋଟିଏ ତରଙ୍ଗକୁ ଦେଖ ନାହିଁ; ଗୋଟିଏ ପିମ୍ପୁଡ଼ି ଓ ଗୋଟିଏ ଦେବତା ମଧ୍ୟରେ କୌଣସି ପ୍ରଭେଦ ଦେଖ ନାହିଁ । ପ୍ରତ୍ୟେକ କୀଟ ପର୍ଯ୍ୟନ୍ତ ପ୍ରଭୁ ଈଶାଙ୍କର ଭାଇ । ଗୋଟିଏକୁ ବଡ଼, ଅନ୍ୟଟିକୁ ଶ୍ରେଷ୍ଠ କାହିଁକି କହ ? ନିଜ ନିଜର କ୍ଷେତ୍ର ଭିତରେ ସମସ୍ତେ ପ୍ରଧାନ । ଆମେ ଯେପରି ଏଠାରେ ରହିଛୁ, ସେହିପରି ସୂର୍ଯ୍ୟ, ଚନ୍ଦ୍ର, ତାରା ମଧ୍ୟ ରହିଛନ୍ତି । ଆତ୍ମା ଦେଶକାଳାତୀତ ଓ ସର୍ବବ୍ୟାପୀ । ଯେ କୌଣସି ତୁଣ୍ଡରେ ସେହି ପ୍ରଭୁଙ୍କର ଗୁଣ ଗାନ ଉଚ୍ଚାରିତ ହେଉଛି ତାହା ହିଁ ମୋର ମୁହଁ । ଯେକୌଣସି ଚକ୍ଷୁ କୌଣସି ବସ୍ତୁ ଦେଖୁଛି, ତାହା ମୋର ଚକ୍ଷୁ । ଆମେ କୌଣସି ନିର୍ଦ୍ଦିଷ୍ଟ ସ୍ଥାନରେ ସୀମାବଦ୍ଧ ନୋହୁଁ; ଆମେ ଦେହ ନୋହୁଁ, ସମଗ୍ର ବ୍ରହ୍ମାଣ୍ଡ ଆମର ଦେହ । ଆମେ ଯେପରି ଐନ୍ଦ୍ରଜାଲିକ ପରି ମାୟାଯଷ୍ଟି ବୁଲାଉଛୁ, ଏବଂ ଇଚ୍ଛାନୁଯାୟୀ ଆମମାନଙ୍କ ସମ୍ମୁଖରେ ନାନା ଦୃଶ୍ୟ ସୃଷ୍ଟି କରୁଛୁ ! ଆମେ ଯେପରି ବୁଢ଼ିଆଣୀ ପରି ନିଜଦ୍ୱାରା ନିର୍ମିତ ବୃହତ୍ ଜାଲ ଭିତରେ ଅବସ୍ଥାନ କରୁଛୁ—ବୁଢ଼ିଆଣୀ ଯେତେବେଳେ ଇଚ୍ଛା କରେ, ସେତେ-ବେଳେ ତା'ର ଜାଲର ଯେକୌଣସି ସୂତା ଉପରେ ଯାଇପାରେ । ବର୍ତ୍ତମାନ ସେ ଯେଉଁ-ଠାରେ ଅଛି, ସେହି ଜାଗାଟିକୁ ହିଁ କେବଳ ଜାଣିପାରୁଛି; କିନ୍ତୁ ସମୟରେ ସମସ୍ତ ଜାଲକୁ ହିଁ ଜାଣିପାରିବ । ଆମେମାନେ ମଧ୍ୟ ଆମର ଦେହ ବର୍ତ୍ତମାନ ଯେଉଁଠାରେ ଅଛି, ସେଠାରେ ହିଁ କେବଳ ନିଜ ସତ୍ତାକୁ ଅନୁଭବ କରୁଛୁ, ବର୍ତ୍ତମାନ ଆମେ କେବଳ ଗୋଟିଏ ମସ୍ତିଷ୍କକୁ ବ୍ୟବହାର କରିପାରୁ; କିନ୍ତୁ ଯେତେବେଳେ ପୂର୍ଣ୍ଣଜ୍ଞାନ ବା ଜ୍ଞାନାତୀତ ଅବସ୍ଥାରେ ଉପନୀତ ହେବୁ, ସେତେବେଳେ ଆମେ ସବୁ ଜାଣିପାରିବୁ, ସମସ୍ତ ମସ୍ତିଷ୍କ ବ୍ୟବହାର କରିପାରିବୁ । ଏକ୍ଷଣି ଆମେ ଆମର ବର୍ତ୍ତମାନ ଜ୍ଞାନକୁ ଆଘାତ ଦେଇ ଏପରି ସ୍ଥାନଚ୍ୟୁତ କରିଦେଇପାରୁ ଯେ, ସେ ତା'ର ସୀମା ତ୍ୟାଗ କରି ପୂର୍ଣ୍ଣଜ୍ଞାନ ବା ଜ୍ଞାନାତୀତ ସ୍ଥାନରେ କାର୍ଯ୍ୟ କରିପାରିବ ।

ଆମେ ଚେଷ୍ଟା କରୁଛୁ କେବଳ ଅସ୍ତିସ୍ୱରୂପ ସତ୍ସ୍ୱରୂପ ହେବା ପାଇଁ—ସେଥିରେ 'ମୁଁ' ପର୍ଯ୍ୟନ୍ତ ରହିବ ନାହିଁ—ଶୁଦ୍ଧ ସ୍ଫଟିକ-ସଙ୍କାଶ ହିଁ ହେବ, ସେଥିରେ ସମଗ୍ର ଜଗତର ପ୍ରତିବିମ୍ବ ପଡ଼ିବ, କିନ୍ତୁ ତାହା ଯେପରି ଅଛି ସେହିପରି ରହିବ । ଏହି ଅବସ୍ଥା ପ୍ରାପ୍ତ ହେଲେ ଆଉ କୌଣସି କାର୍ଯ୍ୟ ରହେ ନାହିଁ; ଶରୀର କେବଳ ଯନ୍ତ୍ରପରି ହୋଇଯାଏ; ତାହା ସଦା ଶୁଦ୍ଧ-ଭାବାପନ୍ନ ରହେ, ତା'ର ଶୁଦ୍ଧତା ପାଇଁ ଆଉ କୌଣସି ଉଦ୍ୟମ କରିବାକୁ ହୁଏ ନାହିଁ; ସେ ଅପବିତ୍ର ହୋଇପାରେ ନାହିଁ ।

ନିଜକୁ ସେହି ଅନନ୍ତସ୍ୱରୂପ ବୋଲି ଜାଣ, ତା' ହେଲେ ଭୟ ଏକାବେଳକେ ଚାଲିଯିବ । ସର୍ବଦା କହ, "ମୁଁ ଓ ମୋର ପିତା (ଈଶ୍ୱର) ଏକ ।"* ***

ଅଙ୍ଗୁର ଗଛରେ ଯେପରି ଥୋଲି ଥୋଲି ଅଙ୍ଗୁର ଫଳେ, ଭବିଷ୍ୟତରେ ସେହିପରି

* I and my Father are one.—ବାଇବେଲ୍

ଦଳ ଦଳ ଖ୍ରୀଷ୍ଟଙ୍କର ଅଭ୍ୟୁଦୟ ହେବ । ସେତେବେଳେ ସଂସାରର ଖେଳ ଶେଷ ହୋଇ-ଯିବ । ସମସ୍ତେ ସଂସାରଚକ୍ର ଭିତରୁ ବାହାର ମୁକ୍ତ ହୋଇଯିବେ । ଯେପରି ଗୋଟିଏ କେଟିଲରେ ପାଣି ବସା ହୋଇଛି, ପାଣି ଫୁଟିବା ଆରମ୍ଭ ହେବା ମାତ୍ରେ ଗୋଟିକ ପରେ ଗୋଟିଏ କରି ବୁଦ୍‌ବୁଦ ଉଠିଥାଏ, କ୍ରମେ ଏହି ବୁଦ୍‌ବୁଦଗୁଡ଼ିକର ସଂଖ୍ୟା ବେଶୀ ହୋଇ-ଥାଏ, ଶେଷରେ ସମସ୍ତ ପାଣିଟା ଟକ୍‌ମକ୍ କରି ଫୁଟି ଉଠେ ଓ ବାଷ୍ପ ହୋଇ ବାହାରିଯାଏ । ବୁଦ୍ଧ ଓ ଖ୍ରୀଷ୍ଟ ପୃଥିବୀ ଭିତରେ ସର୍ବାପେକ୍ଷା ଦୁଇଟି ବଡ଼ ବୁଦ୍‌ବୁଦ । ମୁଣ୍ଡ ଥିଲେ ଗୋଟିଏ ଛୋଟ ବୁଦ୍‌ବୁଦ, ତା'ପରେ ତା'ଠାରୁ ବଡ଼, ତା'ଠାରୁ ବଡ଼ ଆଉ ସବୁ ବୁଦ୍‌ବୁଦର ଉଦୟ ହୋଇଛି । କେଉଁ ସମୟରେ କିନ୍ତୁ ସମଗ୍ର ଜଗତ ଏହିପରି ବୁଦ୍‌ବୁଦ ହୋଇ ବାଷ୍ପାକାରରେ ବାହାରିଯିବ, କିନ୍ତୁ ସୃଷ୍ଟି ତ ଅବିରାମ ପ୍ରବାହରେ ଚାଲିଛି, ପୁନରାୟ ନୂତନ ଜଳର ସୃଷ୍ଟି ହୋଇ ଏହି ପୂର୍ବ ପ୍ରକ୍ରିୟା ଭିତର ଦେଇ ଚାଲିଥିବ ।

ସୋମବାର, ୨୪ ଜୁନ୍

ସ୍ୱାମୀଜୀ 'ନାରଦୀୟ ଭକ୍ତିସୂତ୍ର'ରୁ ସ୍ଥାନେ ସ୍ଥାନେ ପଢ଼ି ବ୍ୟାଖ୍ୟା କରିବାକୁ ଲାଗିଲେ ।

"ଭକ୍ତି ଈଶ୍ୱରଙ୍କର ପରମ ପ୍ରେମସ୍ୱରୂପ ଏବଂ ଅମୃତସ୍ୱରୂପ—ଯାହାକୁ ଲାଭ କରି ମନୁଷ୍ୟ ସିଦ୍ଧ ହୁଏ, ଅମୃତତ୍ୱ ଲାଭ କରେ ଓ ତୃପ୍ତ ହୁଏ—ଯାହା ପାଇଲେ ଆଉ କୌଣସି ଆକାଙ୍‌କ୍ଷା ରହେ ନାହିଁ, କୌଣସି ଶୋକ ରହେ ନାହିଁ, କାହା ପ୍ରତି ଦ୍ୱେଷ ରହେ ନାହିଁ, ଅନ୍ୟ କୌଣସି ବିଷୟରେ ସୁଖ ଅନୁଭବ କରେ ନାହିଁ ଏବଂ କୌଣସି ସାଂସାରିକ ବିଷୟରେ ଉତ୍ସାହ ବୋଧ କରେ ନାହିଁ—ଯାହା ଜାଣି ମନୁଷ୍ୟ ମତ୍ତ ହୁଏ, ସ୍ତବ୍ଧ ହୁଏ ଓ ଆତ୍ମାରାମ ହୁଏ ।"*

ଗୁରୁ ମହାରାଜ କହୁଥିଲେ, "ଏହି ଜଗତ୍ ଗୋଟିଏ ବିରାଟ ପାଗଳାଗାରଦ । ଏଠାରେ ସମସ୍ତେ ପାଗଳ, କେହି ଟଙ୍କା ପାଇଁ ପାଗଳ, କେହି ସ୍ତ୍ରୀ-ଲୋକ ପାଇଁ ପାଗଳ, କେହି ନାମ ଓ ଯଶ ପାଇଁ ପାଗଳ, ଏବଂ ଆଉ କେତେ ଜଣ ଈଶ୍ୱରଙ୍କ ପାଇଁ ପାଗଳ । ଅନ୍ୟାନ୍ୟ ବସ୍ତୁ ପାଇଁ ପାଗଳ ନ ହୋଇ ଈଶ୍ୱରଙ୍କପାଇଁ ପାଗଳ ହେବା ଭଲ ନୁହେଁ କି ? ଈଶ୍ୱର ହେଉଛନ୍ତି ସ୍ପର୍ଶମଣି । ତାଙ୍କ ସ୍ପର୍ଶରେ ମଣିଷ ମୁହୂର୍ତ୍ତିକ ମଧ୍ୟରେ ସୁନା ହୋଇଯାଏ;

---

* ଓଁ ସା କସ୍ମୈ ପରମପ୍ରେମରୂପା ।
ଓ ଅମୃତସ୍ୱରୂପା ଚ ।
ଓଁ ଯତ୍ ଲବ୍‌ଧ୍ୱା ପୁମାନ୍ ସିଦ୍ଧୋ ଭବତି ଅମୃତୋ ଭବତି ତୃପ୍ତୋଭବତି ।
ଓଁ ଯତ୍ ପ୍ରାପ୍ୟ ନ କିଞ୍ଚିତ୍ ବାଞ୍ଛତି ନ ଶୋଚତି ନ ଦ୍ୱେଷ୍ଟି ନ ରମତେ ନୋତ୍ସାହୀ ଭବତି ।
ଓଁ ଯଜ୍‌ଜ୍ଞାନାତ୍ ମତ୍ତୋ ଭବତି ସ୍ତବ୍‌ଧୋ ଭବତି ଆତ୍ମାରାମୋଭବତି ।
—ନାରଦଭକ୍ତିସୂତ୍ର, ୧ମ ଅନୁବାକ୍, ୨ୟ ରୁକ୍, ୬ଷ୍ଠ ସୂତ୍ର ।

ଆକାର ଯେପରି ସେପରି ଥାଏ ସତ, କିନ୍ତୁ ତା'ର ପ୍ରକୃତି ବଦଳି ଯାଏ—ମନୁଷ୍ୟର ଆକାର ରହେ; କିନ୍ତୁ ତଦ୍ଦ୍ୱାରା କାହାରି ଅନିଷ୍ଟ ସାଧନ କରାଯାଇପାରେ ନାହିଁ କିମ୍ବା କୌଣସି ଅନ୍ୟାୟ କାମ ହୋଇପାରେ ନାହିଁ ।" "ଈଶ୍ୱରଙ୍କ ଚିନ୍ତା କରି କରି କେହି କାନ୍ଦେ, କେହି ହସେ, କେହି ଗାଏ, କେହି ନାଚେ, କେହି କେହି ଅଭୁତ କଥା ସବୁ କହନ୍ତି; କିନ୍ତୁ ସମସ୍ତେ ସେହି ଏକ ଈଶ୍ୱରଙ୍କ କଥା କହନ୍ତି ।"*

ମହାପୁରୁଷମାନେ ଧର୍ମ ପ୍ରଚାର କରିଥାନ୍ତି; କିନ୍ତୁ ଯୀଶୁ, ବୁଦ୍ଧ, ରାମକୃଷ୍ଣ ପ୍ରଭୃତିଙ୍କ ପରି ଅବତାରମାନେ ଧର୍ମ ଦେଇପାରନ୍ତି । ସେମାନେ କଟାକ୍ଷଦ୍ୱାରା ବା ସ୍ପର୍ଶ ମାତ୍ରକେ ଅପର ଭିତରେ ଧର୍ମଶକ୍ତି ସଞ୍ଚାରିତ କରିପାରନ୍ତି । ଖ୍ରୀଷ୍ଟଧର୍ମରେ ଏହାକୁ ହିଁ ପବିତ୍ରାତ୍ମାର (Holy Ghost) ଶକ୍ତି ବୋଲି କୁହାଯାଏ—ଏହି ବ୍ୟାପାରକୁ ଲକ୍ଷ୍ୟ କରି 'ହସ୍ତ-ସ୍ପର୍ଶ'ର (the laying of hands) କଥା ବାଇବେଲରେ କୁହାଯାଇଛି । ଆଚାର୍ଯ୍ୟ (ଖ୍ରୀଷ୍ଟ) ପ୍ରକୃତରେ ଶିଷ୍ୟଗଣଙ୍କ ଭିତରେ ଶକ୍ତି ସଞ୍ଚାର କରିଥିଲେ । ଏହାକୁ 'ଗୁରୁ-ପରମ୍ପରାଗତ ଶକ୍ତି' କହନ୍ତି । ଏହି ଯଥାର୍ଥ ବ୍ୟାପଟିଜିମ୍ (Baptism, ଦୀକ୍ଷା) ଅନାଦି କାଳରୁ ଜଗତରେ ଚଳି ଆସିଛି । "ଭକ୍ତିକୁ କୌଣସି ବାସନା-ପୂରଣର ସହାୟକରୂପେ ଗ୍ରହଣ କରାଯାଇ ପାରେ ନାହିଁ, କାରଣ ଭକ୍ତି ହିଁ ସମୁଦାୟ ବାସନା-ନିରୋଧର କାରଣସ୍ୱରୂପ ।"** ନାରଦ-ଭକ୍ତିର ନିମ୍ନଲିଖିତ ଲକ୍ଷଣ ଦେଇଛନ୍ତି, "ଯେତେବେଳେ ସମସ୍ତ ଚିନ୍ତା, ସମସ୍ତ ବାକ୍ୟ ଓ ସମସ୍ତ କ୍ରିୟା ତାଙ୍କ ପ୍ରତି ଅର୍ପିତ ହୁଏ ଏବଂ କ୍ଷଣକାଳ ପାଇଁ ତାଙ୍କୁ ବିସ୍ମୃତ ହେଲେ ହୃଦୟରେ ପରମ ବ୍ୟାକୁଳତା ଉପସ୍ଥିତ ହୁଏ, ସେତେବେଳେ ଯଥାର୍ଥ ଭକ୍ତିର ଉଦୟ ହୋଇଛି ବୋଲି ବୁଝିବାକୁ ହେବ ।"***

"ପୂର୍ବୋକ୍ତ ଭକ୍ତି ହିଁ ପ୍ରେମର ସର୍ବୋଚ୍ଚ ଅବସ୍ଥା । କାରଣ ଅନ୍ୟାନ୍ୟ ସାଧାରଣ ପ୍ରେମରେ ପ୍ରେମିକ ପ୍ରେମାସ୍ପଦ ନିକଟରୁ ତାହାର ପ୍ରେମର ପ୍ରତିଦାନ ଆକାଙ୍କ୍ଷା କରେ; କିନ୍ତୁ ଭକ୍ତ ଏହି ପ୍ରେମରେ କେବଳ ତା'ର ସୁଖରେ ସୁଖୀ ହୋଇଥାଏ ।"୧

"ପ୍ରକୃତ ଭକ୍ତିଲାଭ ହେଲେ ଯେ ସମସ୍ତ ତ୍ୟାଗ ହୁଏ ବୋଲି କୁହାଯାଇଛି, ତା'ର ତାତ୍ପର୍ଯ୍ୟ ଏହି ଯେ, ସେହି ଲୋକର ସମସ୍ତ ଲୌକିକ ଓ ବୈଦିକ କର୍ମ ତ୍ୟାଗ

---

* ଭାଗବତରେ ନିମ୍ନଲିଖିତ ଶ୍ଳୋକରେ ଏହି ଭାବ ଉଲ୍ଲିଖିତ ରହିଛି—
କ୍ୱଚଦ୍ରୁଦନ୍ତ୍ୟଚ୍ୟୁତଚିନ୍ତୟା କ୍ୱଚିଦ୍ଧସନ୍ତି ନନ୍ଦନ୍ତି ବଦନ୍ତ୍ୟଲୌକିକାଃ ।
ନୃତ୍ୟନ୍ତି ଗାୟନ୍ତ୍ୟନୁଶୀଲୟନ୍ତ୍ୟଜଂ ଭବନ୍ତି ତୁଷ୍ଣୀଂ ପରମେତ୍ୟ ନିର୍ବୃତାଃ ।
—ଶ୍ରୀମଦ୍ଭାଗବତ, ୧୧ଶସ୍କନ୍ଧ, ୩ୟ ଅଧ୍ୟାୟ, ୩୨ଶ ଶ୍ଳୋକ ।

** ଓଁ ସା ନ କାମୟମାନା ନିରୋଧରୂପାତ୍—ନାରଦଭକ୍ତିସୂତ୍ର, ୨।୭

*** ଓ ନାରଦସ୍ତୁ ତଦର୍ପିତାଖିଳାଚାରତା ତଦ୍ୱିସ୍ମରଣେ ପରମବ୍ୟାକୁଳତେତି ।
—ନାରଦଭକ୍ତିସୂତ୍ର, ୩ୟ ଅନୁବାକ୍, ୧୯ଶ ସୂତ୍ର ।

୧ ଓ ନାସ୍ତ୍ୟେବ ତସ୍ମିନ୍ ତତ୍ସୁଖସୁଖିତ୍ୱମ୍ । ନାରଦଭକ୍ତି ସୂତ୍ର, ୩।୨୪

ହୋଇଯାଏ । ''ଯେତେବେଳେ ଅନ୍ୟ ସବୁ ଆଶ୍ରୟ ତ୍ୟାଗ କରି ତାଙ୍କ ପ୍ରତି ଆସକ୍ତ ହୁଏ ଏବଂ ତାଙ୍କର ବିରୋଧୀ ସମସ୍ତ ବିଷୟରେ ଉଦାସୀନ ହୁଏ, ସେତେବେଳେ ଯଥାର୍ଥ ଭକ୍ତିଲାଭ ହୋଇଛି ବୋଲି ବୁଝିବାକୁ ହେବ ।''*

''ଯେତେଦିନଯାଏ ଭକ୍ତିର ଦୃଢ଼ ପ୍ରତିଷ୍ଠା ନ ହୋଇଛି, ସେତେଦିନଯାଏ ଶାସ୍ତ୍ରବିଧି ମାନି ଚାଲିବାକୁ ହେବ ।''**

ଯେତେଦିନ ଯାଏ ତୁମର ଭକ୍ତିର ଦୃଢ଼ତା ନ ହୋଇଛି ଯେ, ଶାସ୍ତ୍ରବିଧି ପ୍ରତିପାଦନ ନ କଲେ ତୁମ ହୃଦୟର ଯଥାର୍ଥ ଭକ୍ତିଭାବ ନଷ୍ଟ ହେବ, ସେତେଦିନଯାଏ ଏଗୁଡ଼ିକୁ ମାନି ଚାଲ, ତା'ପରେ ତୁମେ ଶାସ୍ତ୍ର ଅତିକ୍ରମ କରିଯାଇପାର । ଶାସ୍ତ୍ରର ବିଧି-ନିର୍ଦ୍ଦେଶ ମାନି ଚାଲିବା ଜୀବନର ଚରମ ଉଦ୍ଦେଶ୍ୟ ନୁହେଁ । ଆଧ୍ୟାତ୍ମିକ ସତ୍ୟର ଏକମାତ୍ର ପ୍ରମାଣ ପ୍ରତ୍ୟକ୍ଷୀ-କରଣ, ପ୍ରତ୍ୟେକଙ୍କୁ ନିଜେ ନିଜେ ପରୀକ୍ଷା କରି ଦେଖିବାକୁ ହେବ, ତାହା ସତ୍ୟ କି ନୁହେଁ । ଯଦି କୌଣସି ଧର୍ମାଚାର୍ଯ୍ୟ କହନ୍ତି, ମୁଁ ଏହି ସତ୍ୟ ଦର୍ଶନ କରିଛି, କିନ୍ତୁ ତୁମେ କୌଣସି କାଳେ ପାରିବ ନାହିଁ, ତାଙ୍କ କଥାରେ ବିଶ୍ୱାସ କର ନାହିଁ; କିନ୍ତୁ ଯେ କହନ୍ତି ତୁମେ ଚେଷ୍ଟା କଲେ ଦର୍ଶନ କରିପାରିବ, କେବଳ ତାଙ୍କରି କଥାରେ ବିଶ୍ୱାସ କର । ଜଗତରେ ସକଳ ଯୁଗର ସକଳ ଦେଶର ସମସ୍ତ ଶାସ୍ତ୍ର, ସମସ୍ତ ସତ୍ୟ ହିଁ ବେଦ । କାରଣ ଏହି ସକଳ ସତ୍ୟ ପ୍ରତ୍ୟକ୍ଷ କରିବାକୁ ହୁଏ, ଆଉ ସମସ୍ତେ ଏ ସକଳ ସତ୍ୟ ଆବିଷ୍କାର କରିପାରନ୍ତି ।

ଯେତେବେଳେ ଭକ୍ତି-ସୂର୍ଯ୍ୟଙ୍କର କିରଣଦ୍ୱାରା ଦିଗନ୍ତ ପ୍ରଥମେ ଉଦ୍ଭାସିତ ହୋଇ ଉଠେ, ସେତେବେଳେ ଆମେ ଆମର ସମସ୍ତକର୍ମ ଈଶ୍ୱରଙ୍କୁ ସମର୍ପଣ କରିବାକୁ ଚାହୁଁ ଏବଂ ଗୋଟିଏ ମୁହୂର୍ତ୍ତ ତାଙ୍କୁ ବିସ୍ମୃତ ହେଲେ ଅତ୍ୟନ୍ତ କଷ୍ଟ ଅନୁଭବ କରୁ ।

ଈଶ୍ୱର ଏବଂ ତାଙ୍କ ପ୍ରତି ତୁମର ଭକ୍ତି—ଏ ଦୁହିଁଙ୍କ ମଝିରେ ଯେପରି ଆଉ ଏପରି କିଛି ନ ଆସେ, ଯାହା ତାଙ୍କ ଆଡ଼କୁ ଅଗ୍ରସର ହେବାରେ ତୁମକୁ ବାଧା ଦେଇପାରେ । ତାଙ୍କୁ ଭକ୍ତି କର, ତାଙ୍କ ପ୍ରତି ଅନୁରାଗୀ ହୁଅ, ତାଙ୍କୁ ଭଲ ପାଅ, ଜଗତର ଲୋକ ଯେ ଯାହା କହୁଛନ୍ତି କହନ୍ତୁ, ଗ୍ରାହ୍ୟ କର ନାହିଁ । ପ୍ରେମ-ଭକ୍ତି ତିନି ପ୍ରକାର—ସମର୍ଥା, ସମଞ୍ଜସା, ସାଧାରଣୀ । ସାଧାରଣୀରେ ପ୍ରୀତିସମ୍ପନ୍ନ ବ୍ୟକ୍ତି ପ୍ରେମାସ୍ପଦ ନିକଟରେ କେବଳ ଏହା ଦିଅ, ତାହା ଦିଅ ବୋଲି କାମନା କରେ, କିନ୍ତୁ ନିଜେ କିଛି ଦିଏ ନାହିଁ; ସମଞ୍ଜସାରେ ବିନିମୟର ଭାବ ଥାଏ; ସମର୍ଥାରେ କିନ୍ତୁ କିଛି ପ୍ରତିଦାନର କାମନା ନ ଥାଏ, ଯେପରି ପତଙ୍ଗର ଆଲୋକ ପ୍ରତି ଆସକ୍ତି—ପୋଡ଼ି ମରିବ ପଛେ, କିନ୍ତୁ ଭଲ ପାଇବାକୁ ଛାଡ଼ିବ ନାହିଁ ।

---

* ଓଁ ନିରୋଧସ୍ତୁ ଲୋକବେଦବ୍ୟାପାରସନ୍ନ୍ୟାସଃ ।
ଓଁ ତସ୍ମିନ୍ ଅନନ୍ୟତା ତଦ୍ବିରୋଧିଷୁ ଉଦାସୀନତା ।
—ନାରଦ ଭକ୍ତିସୂତ୍ର, ୨ୟ ଅନୁବାକ୍, ୮ମ ଓ ୯ମ ସୂତ୍ର ।

** ଓଁ ଭବତୁ ନିଷ୍ଟଦ୍ରଢ଼ିମାଦୂର୍ଦ୍ଧ୍ୱଂ ଶାସ୍ତ୍ରରକ୍ଷଣମ୍ ।
—ନାରଦଭକ୍ତିସୂତ୍ର, ୨ୟ ଅନୁବାକ୍, ୧୨ଶ ସୂତ୍ର ।

"ଏହି ଭକ୍ତି—କର୍ମ, ଜ୍ଞାନ, ଓ ଯୋଗଠାରୁ ଶ୍ରେଷ୍ଠ ।"*

କର୍ମଦ୍ୱାରା କର୍ମକର୍ତ୍ତାର ନିଜର ଚିତ୍ତଶୁଦ୍ଧି ହୁଏ, ତାହାଦ୍ୱାରା ଅପରର କୌଣସି ଉପକାର ହୁଏ ନାହିଁ । ଆମେ ନିଜେ ସାଧନା କରି ନିଜର ଉନ୍ନତି ବିଧାନ କରିବାକୁ ହେବ, ମହାପୁରୁଷମାନେ କେବଳ ଆମକୁ ପଥ ଦେଖାଇ ଦିଅନ୍ତି । ଯାହା ଚିନ୍ତା କରୁଛ, ସେହିପରି ହୋଇଯାଅ । "ଯାଦୃଶୀ ଭାବନା ଯସ୍ୟ ସିଦ୍ଧିର୍ଭବତି ତାଦୃଶୀ ।" ଯୀଶୁଙ୍କଠାରେ ଯଦି ତୁମେ ତୁମର ଦାୟିତ୍ୱ ଅର୍ପଣ କର, ତାହାହେଲେ ତୁମକୁ ସର୍ବଦା ତାଙ୍କ ଚିନ୍ତା କରିବାକୁ ହେବ, ଏହି ଚିନ୍ତାଫଳରେ ତୁମେ ତଦ୍‌ଭାବାପନ୍ନ ହୋଇଯିବ, ତାଙ୍କୁ ଭଲପାଇବ । ଏହିପରି ସର୍ବଦା ଭାବନାର ନାମ ଭକ୍ତି ବା ପ୍ରେମ । "ପରାଭକ୍ତି ଓ ପରା ବିଦ୍ୟା ଗୋଟିଏ ଜିନିଷ ।"

ତେବେ ଈଶ୍ୱରଙ୍କ ସମ୍ବନ୍ଧରେ ନାନା ମତ ମତାନ୍ତରର ଆଲୋଚନା କଲେ ଚଳିବ ନାହିଁ, ତାଙ୍କୁ ଭଲ ପାଇବାକୁ ହେବ ଓ ସାଧନା କରିବାକୁ ହେବ । ସଂସାର ଓ ସାଂସାରିକ ବିଷୟ ସବୁ ତ୍ୟାଗ କର, ବିଶେଷତଃ ଯେତେଦିନ ଯାଏ—'ସ୍ୱର୍ଗଛି'—ମନଟି ଦୃଢ଼ ହୋଇ ନାହିଁ । ଦିନରାତି ଈଶ୍ୱର-ଚିନ୍ତା କର ଏବଂ ଯେତେଦୂର ସମ୍ଭବ ଅନ୍ୟ ବିଷୟର ଚିନ୍ତା ତ୍ୟାଗ କର । ପ୍ରତିଦିନ ଯେଉଁସବୁ କର୍ତ୍ତବ୍ୟ ଓ ଚିନ୍ତା ନ କଲେ ନ ଚଳେ, ସେଗୁଡ଼ିକ ସବୁ ତଦ୍‌ଭାବଭାବିତରୂପେ କରାଯାଇପାରେ ।

"ଶୟନେ ପ୍ରଣାମ-ଜ୍ଞାନ ନିଦ୍ରାରେ କର ମା'ଙ୍କୁ ଧ୍ୟାନ,
ଆହାର କର ମନେ କର, ଆହୁତି ଦିଏଁ ଶ୍ୟାମା ମା'ରେ ।"

ସକଳ କାର୍ଯ୍ୟରେ ସକଳ ବସ୍ତୁରେ ତାଙ୍କୁ ଦର୍ଶନ କର । ଅନ୍ୟ ସହିତ ଈଶ୍ୱରଙ୍କ ସମ୍ପର୍କରେ ଆଲାପ କର, ଏଥିରେ ଆମର ସାଧନାପଥରେ ବହୁତ ସାହାଯ୍ୟ ମିଳିଥାଏ ।

ଭଗବାନ ଅଥବା ତାଙ୍କର ଯୋଗ୍ୟତମ ସନ୍ତାନ ମହାପୁରୁଷମାନଙ୍କ କୃପା ଲାଭ କର ।** ଏହି ଦୁଇଟି ହେଉଛି ଭଗବାନଙ୍କୁ ପାଇବାର ପ୍ରଧାନ ଉପାୟ ।

ଏହିସବୁ ମହାପୁରୁଷମାନଙ୍କର ସଙ୍ଗଲାଭ ବଡ଼ କଠିନ, ପାଞ୍ଚମିନିଟ୍ ମାତ୍ର ପାଇଁ ତାଙ୍କ ସଂସ୍ପର୍ଶରେ ଆସିଲେ ସାରା ଜୀବନ ବଦଳିଯାଏ ।*** ଆଉ ଯଦି ପ୍ରକୃତରେ ପ୍ରାଣେ ପ୍ରାଣେ ଏହି ମହାପୁରୁଷଙ୍କ ସାନ୍ନିଧ୍ୟ ଇଚ୍ଛା କର, ତେବେ ତୁମର କୌଣସି ନା କୌଣସି ମହାପୁରୁଷଙ୍କର ସଙ୍ଗଲାଭ ହେବ ହିଁ ହେବ ।

---

* ଓଁ ସା ତୁ କର୍ମଜ୍ଞାନଯୋଗେଭ୍ୟୋଽପ୍ୟଧିକତରା ।

—ନାରଦଭକ୍ତିସୂତ୍ର, ୪ର୍ଥ ଅନୁବାକ୍, ୨୫ଶ ସୂତ୍ର ।

** ଓଁ ମୁଖ୍ୟତସ୍ତୁ ମହଦ୍‌କୃପୟୈବ ଭଗବତ୍‌କୃପାଲେଶାଦ୍‌ବା ।

—ନାରଦଭକ୍ତିସୂତ୍ର, ୫ମ ଅନୁବାକ୍, ୩୮ଶ ସୂତ୍ର ।

*** ମହତ୍‌ସଙ୍ଗସ୍ତୁ ଦୁର୍ଲଭୋଽଗମ୍ୟୋଽମୋଘଶ୍ଚ

—ନାରଦଭକ୍ତିସୂତ୍ର, ୫ମ ଅନୁବାକ୍, ୩୯ଶ ସୂତ୍ର ।

ଏହି ଭକ୍ତମାନେ ଯେଉଁ ସ୍ଥାନରେ ରହନ୍ତି ସେ ସ୍ଥାନ ତୀର୍ଥସ୍ୱରୂପ ହୋଇଯାଏ, ସେମାନେ ଯାହା କହନ୍ତି ତାହା ଶାସ୍ତ୍ରସ୍ୱରୂପ, ସେମାନେ ଯେକୌଣସି କାର୍ଯ୍ୟ କରନ୍ତି ତାହା ସତ୍କର୍ମ । ଏହିପରି ତାଙ୍କର ମାହାତ୍ମ୍ୟ ।* ସେମାନେ ଯେଉଁ ଜାଗାରେ ବାସ କରନ୍ତି, ସେ ସ୍ଥାନ ତାଙ୍କର ଦେହ-ନିଃସୃତ ପବିତ୍ର ଶକ୍ତି-ସ୍ପନ୍ଦନରେ ପୂର୍ଣ୍ଣ ହୋଇଯାଏ; ଯିଏ ସେଠାକୁ ଯାଏ, ସେ ଏହି ସ୍ପନ୍ଦନ ଅନୁଭବ କରେ, ତେଣୁ ତା' ଭିତରେ ପବିତ୍ର ଭାବର ସଞ୍ଚାର ହୋଇଥାଏ ।

"ଏହିପରି ଭକ୍ତଗଣଙ୍କ ମଧ୍ୟରେ ଜାତି, ବିଦ୍ୟା, ରୂପ, କୁଳ, ଧନ ପ୍ରଭୃତିର ଭେଦ ନାହିଁ, ଯେହେତୁ ସେମାନେ ତାଙ୍କର ।"**

ଅସତ୍‌ସଙ୍ଗ ସମ୍ପୂର୍ଣ୍ଣଭାବରେ ଛାଡ଼ି ଦିଅ, ବିଶେଷତଃ ପ୍ରଥମାବସ୍ଥାରେ, ବିଷୟୀ ଲୋକର ସଙ୍ଗ ତ୍ୟାଗ କର, ସେଥିରେ ଚିତ୍ତଚାଞ୍ଚଲ୍ୟ ଉପସ୍ଥିତ ହୋଇଥାଏ । 'ମୁଁ' 'ମୋର' ଏହି ଭାବ ସମ୍ପୂର୍ଣ୍ଣରୂପେ ତ୍ୟାଗ କର । ଯାହାର ଜଗତରେ 'ମୋର' ବୋଲି କିଛି ନାହିଁ, ତା' ନିକଟରେ ଭଗବାନ ଆବିର୍ଭୂତ ହୁଅନ୍ତି । ସବୁ ପ୍ରକାର ମାୟା-ପ୍ରୀତିର ବନ୍ଧନ ଛିନ୍ନ କରିଦିଅ । ଆଳସ୍ୟ ତ୍ୟାଗ କର । ଆଉ 'ମୋର' କ'ଣ ହେବ—ଏପ୍ରକାର ଭାବନା ଆଦୌ ଭାବ ନାହିଁ । ତୁମେ ଯେଉଁ ସବୁ କାମ କରିଛ, ତା'ର ଫଳାଫଳ ଜାଣିବା ପାଇଁ ଚାହିଁ ନାହିଁ । ଭଗବାନଙ୍କୁ ସମର୍ପଣ କରି କାମ କରିଯାଅ; କିନ୍ତୁ ଫଳାଫଳର ଚିନ୍ତା ଆଦୌ କର ନାହିଁ ।*** ଯେତେବେଳେ ସମସ୍ତ ମନପ୍ରାଣ ଏକ ଅବିଚ୍ଛିନ୍ନ ଧାରରେ ଭଗବାନଙ୍କ ଆଡ଼କୁ ଯାଏ, ଯେତେବେଳେ ଟଙ୍କାକଉଡ଼ି ବା ନାମଯଶ ଖୋଜି ବୁଲିବାର ସମୟ ନ ଥାଏ, ଭଗବାନଙ୍କ ଛଡ଼ା ଅନ୍ୟ କିଛି ଚିନ୍ତା କରିବାର ଅବସର ନ ଥାଏ, ସେତେବେଳେ ହୃଦୟରେ ସେହି ଅପାର ଅପୂର୍ବ ପ୍ରେମାନନ୍ଦଙ୍କର ଉଦୟ ହେବ । ବାସନାଗୁଡ଼ିକ କେବଳ କାଚମାଲି ପରି ଅସାର ବସ୍ତୁ ।

ପ୍ରକୃତ ପ୍ରେମ ବା ଭକ୍ତି ଅହୈତୁକୀ—"ଏଥିରେ କୌଣସି କାମନା ନାହିଁ, ଏହା ନିତ୍ୟ ନୂତନ ଓ ପ୍ରତିକ୍ଷଣ ବୃଦ୍ଧି ପାଉଥାଏ ।" ଏହା ସୂକ୍ଷ୍ମ ଅନୁଭବସ୍ୱରୂପ । ଅନୁଭବଦ୍ୱାରା

---

* ଓ ତୀର୍ଥୀ କୁର୍ବନ୍ତି ତୀର୍ଥାନି, ସୁକର୍ମୀକୁର୍ବନ୍ତି କର୍ମାଣି, ସଚ୍ଛାସ୍ତ୍ରୀକୁର୍ବନ୍ତି ଶାସ୍ତ୍ରାଣି ।
ଓଁ ତନ୍ମୟାଃ । —ନାରଦଭକ୍ତିସୂତ୍ର, ୯ମ ଅନୁବାକ୍, ୬୯ ଓ ୭୦ ସୂତ୍ର ।

** ଓଁ ନାସ୍ତି ତେଷୁ ଜାତିବିଦ୍ୟାରୂପକୁଳଧନକ୍ରିୟାଦିଭେଦଃ ଓଁ ଯତସ୍ତଦୀୟାଃ
—ଐ, ୯ମ ଅନୁବାକ୍, ୭୨ ଓ ୭୩ ସୂତ୍ର ।

*** ଓଁ ଦୁଃସଙ୍ଗଃ ସର୍ବଥୈବ ତ୍ୟାଜ୍ୟଃ ।
ଓଁ କାମକ୍ରୋଧମୋହସ୍ମୃତିଭ୍ରଂଶ ବୁଦ୍ଧିନାଶଃ କାରଣତ୍ୱାତ୍ ।
ଓଁ ତରଙ୍ଗାୟିତା ଅପୀମେ ସଙ୍ଗାତ୍ ସମୁଦ୍ରାୟନ୍ତି ।
ଓଁ କସ୍ତରତି କସ୍ତରତି ମାୟାମ୍ ? ଯଃ ସଙ୍ଗଂ ତ୍ୟଜତି,
ଯୋ ମହାନୁଭାବଂ ସେବତେ, ନିର୍ମମୋ ଭବତି,

ଏହାକୁ ବୁଝି ହୁଏ; ବ୍ୟାଖ୍ୟା କରି ବୁଝାଇ ହୁଏ ନାହିଁ ।[୧]

"ଭକ୍ତି ସବୁଠାରୁ ସହଜସାଧନ, ଭକ୍ତି ସ୍ୱାଭାବିକ, ଏଥିରେ ଅନ୍ୟ କୌଣସି ଯୁକ୍ତି-ତର୍କର ଅପେକ୍ଷା ନାହିଁ; ଭକ୍ତି ସ୍ୱୟଂପ୍ରମାଣ, ଏଥିରେ ଆଉ ଅନ୍ୟ କୌଣସି ପ୍ରମାଣର ଦରକାର ନାହିଁ ।"[୨] ଯୁକ୍ତିତର୍କ କାହାକୁ କହନ୍ତି ?—କୌଣସି ବିଷୟକୁ ଆମ ମନରେ ସୀମାବଦ୍ଧ କରିବା; ଆମେ ଯେପରି (ମନରୂପକ) ଜାଲ୍ ପକାଇ କୌଣସି ବସ୍ତୁକୁ ଧରି କହୁ ଏହି ବିଷୟଟି ପ୍ରମାଣ କରିଛୁ, କିନ୍ତୁ ଈଶ୍ୱରଙ୍କୁ ଆମେ କେବେ ହେଲେ ଜାଲଦ୍ୱାରା ଧରିପାରିବୁ ନାହିଁ—କୌଣସି କାଳରେ ବି ନୁହେଁ ।

ଭକ୍ତି ଅହେତୁକୀ ହେବା ଦରକାର । ଏପରିକି ଆମେ ଯେତେବେଳେ ପ୍ରେମର ଅଯୋଗ୍ୟ କୌଣସି ବସ୍ତୁ ବା ବ୍ୟକ୍ତିକୁ ଭଲପାଉ, ସେତେବେଳେ ତାହା ପ୍ରକୃତ ପ୍ରେମ, ପ୍ରକୃତ ଆନନ୍ଦର ଖେଳ । ପ୍ରେମକୁ ଯେ ଭାବରେ ବ୍ୟବହାର କରାଯାଉ ନା କାହିଁକି, "ପ୍ରେମ କିନ୍ତୁ ସ୍ୱଭାବତଃ ଶାନ୍ତି ଓ ଆନନ୍ଦସ୍ୱରୂପ ।"[୩]

ହତ୍ୟାକାରୀ ଯେତେବେଳେ ନିଜ ଶିଶୁକୁ ଚୁମ୍ବନ କରେ, ସେତେବେଳେ ସେ ଭଲ ପାଇବା ଛଡ଼ା ଆଉ ସବୁ ଭୁଲିଯାଏ । ଅହଂ ଭାବକୁ ଏକାବେଳକେ ନଷ୍ଟ କରିଦିଅ, କାମ କ୍ରୋଧ ତ୍ୟାଗ କର—ଈଶ୍ୱରଙ୍କୁ ସର୍ବସ୍ୱ ସମର୍ପଣ କର । 'ମୁଁ ନୁହେଁ, ତୁମେ, ତୁମେ'—ପୁରାତନ ମଣିଷ ସମ୍ପୂର୍ଣ୍ଣ ଚାଲିଯାଇଛି, କେବଳମାତ୍ର ତୁମେ ହିଁ ଅଛ । 'ମୁଁ—ତୁମେ' । କାହାକୁ ନିନ୍ଦା କର ନାହିଁ । ଯଦି ଦୁଃଖ ବିପଦ ଆସେ, ଜାଣ ଯେ, ଈଶ୍ୱର ତୁମ ସଙ୍ଗରେ ଖେଳୁଛନ୍ତି—ଏବଂ ଏହି ଜାଣି, ଦୁଃଖ ଭିତରେ ପରମ ସୁଖୀ ହୁଅ ।

ଭକ୍ତି ବା ପ୍ରେମ ଦେଶ-କାଳର ଅତୀତ, ଏହା ପୂର୍ଣ୍ଣ ସ୍ୱରୂପ, ନିରପେକ୍ଷ ।

ମଙ୍ଗଳବାର, ୨୫ ଜୁନ୍

ଯେତେବେଳେ କୌଣସି ସୁଖ ଭୋଗ କରିବ, ତା' ପରେ ଦୁଃଖ ନିଶ୍ଚୟ ଆସିବ

---

ଓଁ ଯୋ ବିବିକ୍ତସ୍ଥାନଂ ସେବତେ, ଯୋ ଲୋକବନ୍ଧମୁନ୍ମୂଲୟତି,
ନିସ୍ତ୍ରୈଗୁଣ୍ୟୋ ଭବତି, ଯୋଗକ୍ଷେମଂ ତ୍ୟଜତି ।
ଓଁ ଯଃ କର୍ମଫଳଂ ତ୍ୟଜତି, କର୍ମାଣି ସନ୍ନ୍ୟସତି ତତୋନିର୍ଦ୍ୱନ୍ଦ୍ୱୋ ଭବତି ।
ଓଁ ବେଦାନପି ସନ୍ନ୍ୟସତି କେବଳମ୍ ବିଚ୍ଛିନ୍ନାନୁରାଗଂ ଲଭତେ ।
—ନାରଦଭକ୍ତିସୂତ୍ର, ୬ଷ୍ଠ ଅନୁବାକ୍, ୪୭ରୁ ୪୯ ସୂତ୍ର ।

[୧] ଓ ଗୁଣରହିତଂ କାମନାରହିତଂ ପ୍ରତିକ୍ଷଣବର୍ଦ୍ଧମାନମବିଚ୍ଛିନ୍ନଂ ସୂକ୍ଷ୍ମତରମନୁଭବରୂପମ୍ । —ନାରଦଭକ୍ତିସୂତ୍ର ୭ମ ଅନୁବାଦ୍ ୫୪କ୍ ସୂତ୍ର ।

[୨] ଓଁ ଅନ୍ୟସ୍ମାତ୍ତ୍ୱ ସୌଲଭ୍ୟ ଭକ୍ତୌ ।
ଓ ପ୍ରମାଣାନ୍ତରସ୍ୟାନପେକ୍ଷତ୍ୱାତ୍ ସ୍ୱୟଂ ପ୍ରମାଣତ୍ୱାତ୍ ।
—ନାରଦଭକ୍ତିସୂତ୍ର, ୮।୫୮-୫୯ ।

[୩] ଓ ଶାନ୍ତିରୂପାତ୍ ପରମାନନ୍ଦରୂପାଚ୍ଚ ।
—ନାରଦଭକ୍ତିସୂତ୍ର, ୮ମ ଅନୁବାକ୍, ୬୦ ସୂତ୍ର ।

—ଏହି ଦୁଃଖ ସେତେବେଳେ ସଙ୍ଗେ ସଙ୍ଗେ ଆସିପାରେ, ଅଥବା ଖୁବ୍ ବିଳମ୍ବରେ ଆସିପାରେ । ଯେଉଁ ଆତ୍ମା ଯେତେ ଉନ୍ନତ, ତାଙ୍କର ସୁଖ ପରେ ଦୁଃଖ ସେତେ ଶୀଘ୍ର ଆସିବ ।

ଆମେ ସୁଖ ଦୁଃଖ ଉଭୟର ଅତୀତକୁ ଯିବାକୁ ଚାହୁଁ । ଏ ଉଭୟ ହିଁ ଆମର ପ୍ରକୃତ ସ୍ୱରୂପକୁ ଭୁଲାଇଦିଏ । ଉଭୟ ହେଉଛି ଶିକୁଳି—ଗୋଟିଏ ଲୁହାର ଶିକୁଳି, ଅନ୍ୟଟି ସୁନାର ଶିକୁଳି । ଏ ଉଭୟର ପଶ୍ଚାତ୍‌ରେ ଆତ୍ମାର ଅବସ୍ଥାନ—ସେଥିରେ ସୁଖ ନାହିଁ, ଦୁଃଖ ନାହିଁ । ସୁଖ ଦୁଃଖ ଉଭୟ ଅବସ୍ଥାବିଶେଷ, ଅବସ୍ଥା ମାତ୍ରେ ହିଁ ସର୍ବଦା ପରିବର୍ତ୍ତନ-ଶୀଳ; କିନ୍ତୁ ଆତ୍ମା ଆନନ୍ଦସ୍ୱରୂପ, ଅପରିଣାମୀ, ଶାନ୍ତସ୍ୱରୂପ । ଆମେ ଯେ ଆତ୍ମାକୁ ଲାଭ କରିବୁ ତାହା ନୁହେଁ; ଆମେ ଆତ୍ମାକୁ ପାଇସାରିଛୁ; କିନ୍ତୁ ତା' ଉପରେ ଯେଉଁ ମଇଳା ପଡ଼ିଛି, ତାକୁ ଧୋଇ ସଫା କରି ତାକୁ ଦେଖ ।

ଏହି ଆତ୍ମସ୍ୱରୂପରେ ପ୍ରତିଷ୍ଠିତ ହୁଅ । ତାହାହେଲେ ଆମେ ଜଗତକୁ ଠିକ୍‌ରୂପେ ଭଲ ପାଇପାରିବୁ । ଖୁବ୍ ଉଚ୍ଚଭାବରେ ନିଜକୁ ପ୍ରତିଷ୍ଠିତ କର । ମୁଁ ଯେ ସେହି ଅନନ୍ତ ଆତ୍ମସ୍ୱରୂପ—ଏହା ଜାଣି ଆମକୁ ଜଗତ୍-ପ୍ରପଞ୍ଚ ପ୍ରତି ସମ୍ପୂର୍ଣ୍ଣ ଶାନ୍ତଭାବରେ ଦୃଷ୍ଟି ଦେବାକୁ ହେବ । ଏହି ଜଗତ୍ ଗୋଟିଏ ଛୋଟ ଶିଶୁର ଖେଳଘର ପରି । ଆମେ ଯେତେବେଳେ ତା' ଜାଣୁ, ସେତେବେଳେ ଜଗତ୍‌ରେ ଯାହା ହେଉନା କାହିଁକି, କିଛି ଆମକୁ ଚଞ୍ଚଳ କରି-ପାରିବ ନାହିଁ । ଯଦି ପ୍ରଶଂସା ପାଇଲେ ମନ ଉତ୍‌ଫୁଲ୍ଲ ହୁଏ, ତେବେ ନିନ୍ଦାରେ ନିଶ୍ଚୟ ବିଷଣ୍ଣ ହେବ । ଇନ୍ଦ୍ରିୟର ଏପରିକି ମନର ସମସ୍ତ ଦୁଃଖ ଅନିତ୍ୟ; କିନ୍ତୁ ଆମ ଭିତରେ ସେହି ନିରପେକ୍ଷ ସୁଖ ଅଛି, ଯେଉଁ ସୁଖ କାହାରି ଉପରେ ନିର୍ଭର କରେ ନାହିଁ । ଏ ସୁଖ ସମ୍ପୂର୍ଣ୍ଣ ସ୍ୱାଧୀନ ସୁଖ, ଏ ସୁଖ ଆନନ୍ଦସ୍ୱରୂପ । ସୁଖ ନିମିତ୍ତ ବାହାର ବସ୍ତୁ ଉପରେ ନିର୍ଭର ନ କରି ଯେତେ ଅନ୍ତର ଉପରେ ନିର୍ଭର କରିବୁ -ଯେତେ ଆମର 'ଅନ୍ତଃସୁଖ ଅନ୍ତରାରାମ' ହେବ ଆମେ ସେତେ ଧାର୍ମିକ ହେବୁ । ଏହି ଆତ୍ମାନନ୍ଦକୁ ଜଗତରେ ଧର୍ମ କୁହାଯାଏ ।

ଅନ୍ତର୍ଜଗତ—ଯାହା ବାସ୍ତବିକ୍ ସତ୍ୟ, ତାହା ବହିର୍ଜଗତ ଅପେକ୍ଷା ଅନନ୍ତଗୁଣରେ ବଡ଼ । ବହିର୍ଜଗତଟି ସେହି ସତ୍ୟ ଅନ୍ତର୍ଜଗତର ଛାୟାମୟ ବହିଃପ୍ରକାଶ ମାତ୍ର । ଏହି ଜଗତ୍‌ଟି ସତ୍ୟ ନୁହେଁ, ମିଥ୍ୟା ମଧ୍ୟ ନୁହେଁ, ଏହା ସତ୍ୟର ଛାୟାସ୍ୱରୂପ ମାତ୍ର । କବି କହି-ଛନ୍ତି, କଳ୍ପନା ସତ୍ୟର ସୁନେଲି ଛାୟା ।

ଆମକୁ ବାଦ ଦେଲେ ଜଗତ୍ ମୃତ ଅଚେତନ ଜଡ଼ ପଦାର୍ଥ ମାତ୍ର । ଆମେ ଯେତେ-ବେଳେ ଜଗତ୍‌ରେ ପ୍ରବେଶ କରୁ, ସେତେବେଳେ ତା' ଆମ ପକ୍ଷରେ ସଜୀବ ହୋଇଉଠେ । ଆମେ ଜଗତ୍‌ର ପଦାର୍ଥସମୂହକୁ ଜୀବନଦାନ କରୁଛୁ; କିନ୍ତୁ ଆମେ ନିର୍ବୋଧ ପରି ଏହି କଥା ଭୁଲିଯାଇ କେବେ କେବେ ସେଥିରୁ ଭୟ ପାଉଛୁ, କେବେ କେବେ ପୁନର୍ବାର ତାହା ଭୋଗ କରିବାକୁ ଯାଉଛୁ । ସେହି କେଉଟ୍ଟୁଣୀମାନଙ୍କର ଯେପରି ହୋଇଥିଲା—ତୁମର ଯେପରି ତାହା ନ ହୁଏ । କେତେକ କେଉଟ୍ଟୁଣୀ ମାଛଟୋକେଇ ମୁଣ୍ଡେଇ ବଜାରରୁ ଘରକୁ ଫେରୁଥିଲେ । ଏପରି ସମୟରେ ଖୁବ୍ ଝଡ଼ ବର୍ଷା ହେଲା । ସେମାନେ ଘରକୁ ଯାଇ ନ

ପାଖ ବାଟରେ ତାଙ୍କର ଜଣେ ପରିଚିତା ମାଳୁଣୀର ବଗିଚାଘରେ ଆଶ୍ରୟ ନେଲେ । ମାଳୁଣୀ ଘରେ ସେମାନଙ୍କୁ ଯେଉଁ ଘରେ ଶୋଇବାକୁ ଦେଲା, ତା ପାଖରେ ଫୁଲ-ବଗିଚାଟି ଥିଲା । ପବନରେ ବଗିଚାର ସୁନ୍ଦର ସୁନ୍ଦର ଫୁଲର ସୁଗନ୍ଧ ଭାସି ଆସି ସେମାନଙ୍କ ନାକରେ ଲାଗିଲା—ସେହି ସୁଗନ୍ଧ ସେମାନଙ୍କୁ ଏତେ ଅସହ୍ୟ ବୋଧ ହେଲା ଯେ, ସେମାନେ ଆଦୌ ଶୋଇପାରିଲେ ନାହିଁ । ଶେଷରେ ସେମାନଙ୍କ ମଧ୍ୟରୁ ଜଣେ କହିଲା, 'ଦେଖ, ଆମ ମାଛଟୋକେଇଗୁଡ଼ିକରେ ପାଣି ଛିଞ୍ଚି ମୁଣ୍ଡ ପାଖରେ ରଖି ଦିଆଯାଉ ।' ସେହିଭଳି କରି-ବାରୁ ଯେତେବେଳେ ନାକରେ ମାଛଟୋକେଇର ଗନ୍ଧ ବାଜିଲା, ସେତେବେଳେ ସେମାନେ ଆରାମରେ ଘୁଙ୍ଗୁଡ଼ି ମାରି ଶୋଇବାକୁ ଲାଗିଲେ ।

ଏହି ସଂସାରଟା ମାଛଟୋକେଇ ପରି—ଆମେ ଯେପରି ସୁଖଭୋଗ ପାଇଁ ଏହା ଉପରେ ନିର୍ଭର ନ କରୁ; ଯେଉଁମାନେ କରନ୍ତି, ସେମାନେ ତାମସପ୍ରକୃତି ବା ବଦ୍ଧଜୀବ । ତା'ପରେ ଆହୁରି ରାଜସପ୍ରକୃତିର ଲୋକ ଅଛନ୍ତି; ସେମାନଙ୍କର ଅହଂବୁଦ୍ଧିଟା ଖୁବ୍ ପ୍ରବଳ, ସେମାନେ ସର୍ବଦା 'ମୁଁ ମୁଁ' କହିଥାଆନ୍ତି । ସେମାନେ କେବେ କେବେ ସତ୍‌କାର୍ଯ୍ୟ କରିଥାଆନ୍ତି, ଚେଷ୍ଟା କଲେ ସେମାନେ ଧାର୍ମିକ ହୋଇପାରନ୍ତି; କିନ୍ତୁ ସାତ୍ତ୍ୱିକ ପ୍ରକୃତି ହିଁ ସର୍ବଶ୍ରେଷ୍ଠ—ସେମାନେ ସର୍ବଦା ଅନ୍ତର୍ମୁଖ—ସେମାନେ ସର୍ବଦା ଆତ୍ମନିଷ୍ଠ । ପ୍ରତ୍ୟେକ ବ୍ୟକ୍ତିଠାରେ ଏହି ସତ୍ତ୍ୱ, ରଜଃ ଓ ତମ ଗୁଣ ଅଛି; ସମୟ ସମୟରେ ମନୁଷ୍ୟ-ଠାରେ ଗୋଟିଏ ଗୋଟିଏ ଗୁଣର ପ୍ରାଧାନ୍ୟ ଦେଖାଦିଏ ।

ସୃଷ୍ଟି କହିଲେ ଗୋଟାଏ କିଛି ନିର୍ମିତ ବା ପ୍ରସ୍ତୁତ ପଦାର୍ଥ ନୁହେଁ; ସୃଷ୍ଟିର ଅର୍ଥ-ଯେଉଁ ସାମ୍ୟଭାବ ନଷ୍ଟ ହୋଇଯାଇଛି, ଯାହାକୁ ପୁନର୍ଲାଭ କରିବାର ଚେଷ୍ଟା—ଯେପରି ଗୋଟିଏ ସୋଲଠିପି (କର୍କ)କୁ ଖଣ୍ଡ ଖଣ୍ଡ କରି ପାଣିରେ ପକାଇ ଦିଆଯାଏ, ତାହାହେଲେ ସେଗୁଡ଼ିକ ଯେପରି ଅଲଗା ଅଲଗା ବା କେତେକ ଏକସଙ୍ଗରେ ପାଣି ଉପରକୁ ଭାସି ଉଠିବାକୁ ଚେଷ୍ଟା କରେ, ସେହିପରି । ଯେଉଁଠାରେ ଜୀବନ, ଯେଉଁଠାରେ ଜଗତ୍, ସେଠାରେ କିଛି ନା କିଛି ମନ୍ଦ, କିଛି ନା କିଛି ଅଶୁଭ ରହିବ । ଗୋଟିଏ ଅଶୁଭରୁ ହିଁ ଜଗତ୍‌ର ସୃଷ୍ଟି ହୋଇଛି । ଜଗତ୍‌ରେ ଯେ କିଛି କିଛି ମନ୍ଦ ରହିଛି, ଏହା ଖୁବ୍ ଭଲ; କାରଣ ସାମ୍ୟଭାବ ଆସିଲେ ଏହି ଜଗତ୍ ନଷ୍ଟ ହୋଇଯିବ । ସାମ୍ୟ ଓ ବିନାଶ ଏକା କଥା । ଯେତେଦିନ ଏ ଜଗତ୍ ରହିଛି ସେତେଦିନ ଜଗତ୍ ସଙ୍ଗେ ସଙ୍ଗେ ହିଁ ଭଲ ମନ୍ଦ ରହିବ; କିନ୍ତୁ ଯେତେବେଳେ ଆମେ ଜଗତ୍‌କୁ ଅତିକ୍ରମ କରୁ, ସେତେବେଳେ ଭଲ-ମନ୍ଦ ଉଭୟର ବାହାରକୁ ଚାଲିଯାଉ—ପରମାନନ୍ଦ ଲାଭ କରୁଁ ।

ଦୁନିଆରେ ଦୁଃଖରହିତ ସୁଖ, ଅଶୁଭରହିତ ଶୁଭ—କେତେବେଳେ ପାଇବାର ସମ୍ଭାବନା ନାହିଁ । କାରଣ, ଜୀବନର ଅର୍ଥ ହେଉଛି ବିନଷ୍ଟ ସାମ୍ୟଭାବ । ଆମେମାନେ ଚାହୁଁ ମୁକ୍ତି; ଜୀବନ ସୁଖ ବା ଶୁଭ—ଏସବୁ ଭିତରୁ କୌଣସିଟା ନୁହେଁ । ସୃଷ୍ଟିପ୍ରବାହ ଅନନ୍ତକାଳ ଧରି ଚାଲିଛି—ତା'ର ଆଦି ନାହିଁ, ଅନ୍ତ ବି ନାହିଁ—ଯେପରି ଗୋଟିଏ ଅଗାଧ ହ୍ରଦ ଉପରିସ୍ଥ ନିତ୍ୟ ଗତିଶୀଳ ତରଙ୍ଗ । ଏହି ହ୍ରଦରେ ଏଭଳି ସବୁ ଗଭୀର ସ୍ଥାନ ଅଛି,

ଯେଉଁଠାରେ କି ଆମେ ଏଯାଏଁ ପହଞ୍ଚିପାରି ନାହୁଁ ଏବଂ ଆଉ କେତେକ ସ୍ଥାନ ଅଛି, ଯେଉଁଠାରେ ସାମ୍ୟଭାବ ପୁନଃ ସଂସ୍ଥାପିତ ହୋଇଛି—କିନ୍ତୁ ଉପରର ତରଙ୍ଗ ସର୍ବଦା ଚାଲିଛି, ସେଠାରେ ଅନନ୍ତକାଳଧରି ସାମ୍ୟଭାବର ପୁନର୍ଲାଭ ପାଇଁ ଚେଷ୍ଟା ଚାଲିଛି । ଜୀବନ ଓ ମୃତ୍ୟୁ ଗୋଟିଏ କଥାର ଭିନ୍ନ ଭିନ୍ନ ନାମ ମାତ୍ର, ଗୋଟିଏ ମୁଦ୍ରାର ଏପଟ ସେପଟ । ଉଭୟ ମାୟା—ଏହି ଅବସ୍ଥାକୁ ପରିଷ୍କାରଭାବେ ବୁଝିବାର ଶକ୍ତି ନାହିଁ—ଗୋଟିଏ ସମୟରେ ବଞ୍ଚିବା ପାଇଁ ଚେଷ୍ଟା ହେଉଛି—ପୁଣି ଅନ୍ୟ ମୁହୂର୍ତ୍ତିରେ ବିନାଶ ବା ମୃତ୍ୟୁର ଆୟୋଜନ ଚାଲିଛି । ଆମମାନଙ୍କର ଯଥାର୍ଥ ସ୍ୱରୂପ ଆତ୍ମା—ଏହି ଉଭୟରୁ ମୁକ୍ତ । ଆମେ ଯେତେବେଳେ ଈଶ୍ୱରଙ୍କ ଅସ୍ତିତ୍ୱ ସ୍ୱୀକାର କରୁ, ତାହା ଅନ୍ୟ କିଛି ନୁହେଁ, ତାହା ପ୍ରକୃତପକ୍ଷେ ସେହି ଆତ୍ମା—ଯେଉଁଥିରୁ ଆମେ ଆମକୁ ଅଲଗା କରିପାରୁଛୁ, ଏବଂ ଆମଠାରୁ ପୃଥକ୍ ବୋଲି ଉପାସନା କରୁଛୁ । କିନ୍ତୁ ସେହି ଉପାସ୍ୟ ଚିରକାଳ ହିଁ ଆମର ପ୍ରକୃତ ଆତ୍ମା—ଏକ ଓ ଏକମାତ୍ର ଈଶ୍ୱର ସେହି ପରମାତ୍ମା ।

ସେହି ନଷ୍ଟ ସାମ୍ୟାବସ୍ଥାର ପୁନଃପ୍ରାପ୍ତି ନିମନ୍ତେ ଆମମାନଙ୍କୁ ପ୍ରଥମେ ରଜଃଦ୍ୱାରା ତମଃକୁ ଓ ପରେ ସତ୍ତ୍ୱଦ୍ୱାରା ରଜଃକୁ ଜୟ କରିବାକୁ ହେବ । ସତ୍ତ୍ୱ ଅର୍ଥ ହେଉଛି, ସେହି ସ୍ଥିର, ଧୀର, ପ୍ରଶାନ୍ତ ଅବସ୍ଥା, ଯାହା ଧୀରେ ଧୀରେ ବୃଦ୍ଧି ପାଇ ଶେଷରେ ଅନ୍ୟାନ୍ୟ ଭାବ ଅର୍ଥାତ୍ ରଜଃ ତମଃ ଏକାବେଳକେ ଚାଲିଯିବ । ବନ୍ଧନ ଛିନ୍ନ କରି ଫିଙ୍ଗି ଦିଅ, ମୁକ୍ତ ହୁଅ, ଯଥାର୍ଥ 'ଈଶ୍ୱରତନୟ' ହୁଅ, ତେବେ ଯୀଶୁ ଭଳି ପିତାଙ୍କୁ ଦେଖିବାକୁ ପାଇବ । ଧର୍ମ ଓ ଈଶ୍ୱର କହିଲେ ଅନନ୍ତ ଶକ୍ତି, ଅନନ୍ତବୀର୍ଯ୍ୟ ବୁଝାଏ । ଦୁର୍ବଳତା, ଦାସତ୍ୱ ତ୍ୟାଗ କର । ଯଦି ତୁମେ ମୁକ୍ତସ୍ୱଭାବ ହୁଅ, ତେବେ ତୁମେ କେବଳ ମାତ୍ର ଆତ୍ମା; ଯଦି ମୁକ୍ତସ୍ୱଭାବ ହୁଅ, ତେବେ ଅମୃତତ୍ୱ ତୁମର କରତଳଗତ; ତେବେ କହିବାକୁ ହେବ ଈଶ୍ୱର ଯଥାର୍ଥ ଅଛନ୍ତି—ଯଦି ସେ ମୁକ୍ତସ୍ୱଭାବ ହୁଅନ୍ତି ।

ଜଗତ୍ ମୋ ପାଇଁ, ମୁଁ କେବେ ଜଗତ୍ ପାଇଁ ନୁହେଁ । ଭଲମନ୍ଦ ଆମମାନଙ୍କର ଦାସସ୍ୱରୂପ, ଆମେମାନେ କେବେହେଲେ ସେମାନଙ୍କର ଦାସ ନୋହୁଁ । ପଶୁର ସ୍ୱଭାବ ହେଉଛି—ଯେଉଁ ଅବସ୍ଥାରେ ଅଛି ସେହି ଅବସ୍ଥାରେ ପଡ଼ିଥିବା; ମନୁଷ୍ୟର ସ୍ୱଭାବ ହେଉଛି ମନ୍ଦ ତ୍ୟାଗ କରି ଭଲ ପାଇବାକୁ ଚେଷ୍ଟା କରିବା । ଆଉ ଦେବତାର ସ୍ୱଭାବ—ଭଲ ମନ୍ଦ କୌଣସି କଥା ପାଇଁ ଚେଷ୍ଟା ରହିବ ନାହିଁ—ସର୍ବଦା ସବୁ ଅବସ୍ଥାରେ ଆନନ୍ଦମୟ ହୋଇ ରହିବା । ଆମମାନଙ୍କୁ ଦେବତା ହେବାକୁ ହେବ । ହୃଦୟକୁ ସମୁଦ୍ର ପରି ମହାନ୍ କରି ଗଢ଼; ଜଗତର କ୍ଷୁଦ୍ର କ୍ଷୁଦ୍ର ଭାବସମୂହକୁ ଅତିକ୍ରମ କରିଯାଅ; ଏପରିକି ଅଶୁଭ ଆସିଲେ ମଧ୍ୟ ଆନନ୍ଦରେ ଉନ୍ମତ୍ତ ହୁଅ, ଜଗତକୁ ଏକ ଛବି ସଦୃଶ ଦେଖ; ଏହା ଜାଣି ରଖ ଯେ, ଜଗତରେ କିଛି ତୁମକୁ ବିଚଳିତ କରିପାରିବ ନାହିଁ ଏବଂ ଏହା ଜାଣି ଜଗତର ସୌନ୍ଦର୍ଯ୍ୟ ଆସ୍ୱାଦନ କର । ଜଗତର ସୁଖ କିପରି ଜାଣ ? ଯେପରି ଛୋଟ ଛୋଟ ପିଲାମାନେ ଖେଳୁ ଖେଳୁ କାଦୁଅଭିତରୁ କାଚର ମାଳି ଗୋଟାଇ ପାଇଛନ୍ତି । ଜଗତର ସୁଖଦୁଃଖକୁ ଶାନ୍ତ ଭାବରେ ଦେଖ । ଭଲମନ୍ଦ ଉଭୟଙ୍କୁ ଏକ ବୋଲି ଦେଖ—ଉଭୟ ହିଁ ଭଗବାନଙ୍କର

ଖେଳ; ସୁତରାଂ ଭଲମନ୍ଦ, ସୁଖଦୁଃଖ ସବୁଥିରେ ଆନନ୍ଦ କର । ***

ଗୁରୁ ମହାରାଜ କହନ୍ତି, "ସମସ୍ତେ ନାରାୟଣ ଅଟନ୍ତି, କିନ୍ତୁ ବାଘନାରାୟଣଙ୍କ ନିକଟରୁ ଦୂରେଇ ରହିବାକୁ ହୁଏ । ସବୁ ପାଣି ନାରାୟଣ, ତେବେ ମଇଳା ପାଣି ପିଆଯାଏ ନାହିଁ ।"

"ଗଗନରୂପୀ ଥାଳରେ ଜଳେ ଚନ୍ଦ୍ରସୂର୍ଯ୍ୟର ଦୀପ"—ଅନ୍ୟ ମନ୍ଦିରରେ ଆଉ କ'ଣ ଦରକାର ? ସବୁ ଚକ୍ଷୁ ତୁମର ଚକ୍ଷୁ ଅଥଚ ତୁମର ଚକ୍ଷୁ ନାହିଁ; ସବୁ ହାତ ତୁମର ହାତ, ଅଥଚ ତୁମର ହାତ ନାହିଁ ।"

କିଛି ପାଇବାର ଚେଷ୍ଟା କର ନାହିଁ, କିଛି ଛାଡ଼ିବାର ବି ଚେଷ୍ଟା କର ନାହିଁ —ହାନ-ଉପାଦେୟ-ବର୍ଜ୍ଜିତ ହୁଅ, ଯେତିକି ପାଉଛ ସେତିକରେ ସନ୍ତୁଷ୍ଟ ହୁଅ । ଯେତେବେଳେ ତୁମକୁ କୌଣସି କଥା ବିଚଳିତ କରିପାରିବ ନାହିଁ, ସେତେବେଳେ ବୁଝିବାକୁ ହେବ ଯେ, ତୁମେ ସ୍ୱାଧୀନତା ବା ମୁକ୍ତି ଲାଭ କରିଛ । କେବଳ ସହ୍ୟ କରିଗଲେ ହେବ ନାହିଁ । ଏକାବେଳକେ ଅନାସକ୍ତ ହୁଅ । ସେହି ଷଣ୍ଢର କଥାଟି ମନେରଖ । ଗୋଟିଏ ମଶା—ଅନେକ ସମୟ ପର୍ଯ୍ୟନ୍ତ ଗୋଟିଏ ଷଣ୍ଢର ଶିଙ୍ଗ ଉପରେ ବସିଥିଲା—ବହୁ ସମୟ ବସିବା ପରେ ତା'ର ଔଚିତ୍ୟବୁଦ୍ଧି ଜାଗ୍ରତ ହେଲା—ହୁଏତ ଷଣ୍ଢର ଶିଙ୍ଗ ଉପରେ ବସିବାରୁ ତା'ର ବଡ଼ କଷ୍ଟ ହେଉଛି—ଏହା ମନେକରି ସେ ଷଣ୍ଢକୁ ସମ୍ବୋଧନ କରି କହିବାକୁ ଲାଗିଲା, 'ହେ ଷଣ୍ଢ ଭାଇ, ମୁଁ ବହୁ ସମୟ ହେବ ତୁମ ଶିଙ୍ଗ ଉପରେ ବସିଅଛି, ବୋଧହୁଏ ତୁମର ଅସୁବିଧା ହେଉଛି, ମୋତେ କ୍ଷମା କର, ମୁଁ ବର୍ତ୍ତମାନ ଉଡ଼ି ଚାଲିଯାଉଛି ।' ଷଣ୍ଢ କହିଲା, 'ନା, ନା, ତୁ ସପରିବାର ଆସି ମୋ ଶିଙ୍ଗ ଉପରେ ବାସ କର —ମୋର ସେଥିରେ କଅଣ ଯାଏ ଆସେ ।'

ବୁଧବାର, ୨୬ ଜୁନ୍

ଯେତେବେଳେ ଆମମାନଙ୍କର ଅହଂଜ୍ଞାନ ରହେ ନାହିଁ, ସେତେବେଳେ ଆମେମାନେ ସବୁଠାରୁ ଭଲକାମ କରିପାରୁ, ଅନ୍ୟକୁ ଆମମାନଙ୍କ ଭାବରେ ସବୁଠାରୁ ବେଶୀ ଅଭିଭୂତ କରିପାରୁ । ବିଶିଷ୍ଟ ବିଶିଷ୍ଟ ପ୍ରତିଭାଶାଳୀ ବ୍ୟକ୍ତିମାନେ ଏକଥା ଜାଣନ୍ତି । ଈଶ୍ୱର ହେଉଛନ୍ତି ଏକମାତ୍ର ଯଥାର୍ଥ କର୍ତ୍ତା—ତାଙ୍କ ନିକଟରେ ହୃଦୟ ଖୋଲିଦିଅ, ନିଜେ କିଛି କରିବାକୁ ଯାଅ ନାହିଁ । ଶ୍ରୀକୃଷ୍ଣ ଗୀତାରେ କହିଛନ୍ତି, 'ନ ମେ ପାର୍ଥାସ୍ତି କର୍ତ୍ତବ୍ୟଂ ତ୍ରିଷୁ ଲୋକେଷୁ କିଞ୍ଚନ ।' 'ହେ ଅର୍ଜୁନ, ତ୍ରିଲୋକରେ ମୋର କର୍ତ୍ତବ୍ୟ ବୋଲି କିଛି ନାହିଁ ।' ତାଙ୍କ ଉପରେ ସମ୍ପୂର୍ଣ୍ଣ ନିର୍ଭର କର, ସମ୍ପୂର୍ଣ୍ଣଭାବରେ ଅନାସକ୍ତ ହୁଅ, ତା' ହେଲେ ତୁମଦ୍ୱାରା କିଛି କାର୍ଯ୍ୟ ହେବ । ଯେଉଁ ସକଳ ଶକ୍ତିଦ୍ୱାରା କାର୍ଯ୍ୟ ହୁଏ, ତାହାକୁ ତ ଆଉ ଆମେ ଦେଖିବାକୁ ପାଉ ନାହିଁ, ଆମେ କେବଳ ତା'ର ଫଳକୁ ହିଁ ଦେଖିବାକୁ ପାଉ ମାତ୍ର । ଅହଂକୁ ଦୂର କରିଦିଅ, ନଷ୍ଟ କରିଦିଅ, ଭୁଲିଯାଅ । ତୁମ ଭିତରଦେଇ ଈଶ୍ୱର କାର୍ଯ୍ୟ କରନ୍ତୁ— ଏହା ତ ତାଙ୍କର କାର୍ଯ୍ୟ, ସେ ବୁଝନ୍ତୁ । ଆମମାନଙ୍କୁ ଆଉ କିଛି କରିବାକୁ ହେବ ନାହିଁ—ତାଙ୍କୁ କାମ କରିବାକୁ ଦେଇ କେବଳ ଦୂରରେ ଠିଆ ହୋଇ ରହିବାକୁ ହେବ ।

ଆମେ ଯେତେ ଘୃଞ୍ଚିଯିବୁ, ଈଶ୍ୱର ସେତିକି ଆମ ଭିତରକୁ ଆସିବେ । 'ଅପରିପକ୍ୱ ମୁଁ'କୁ ବିନଷ୍ଟ କରି ଦିଅ—କେବଳ 'ପାଚିଲା ମୁଁ' ହିଁ ରହିଯାଉ ।

ବର୍ତ୍ତମାନ ଆମେ ଯାହା ହୋଇଛୁ, ତାହା ଆମମାନଙ୍କ ଚିନ୍ତାଗୁଡ଼ିକର ଫଳସ୍ୱରୂପ । ସୁତରାଂ ତୁମେ କି ପ୍ରକାର ଚିନ୍ତା କର, ସେଥିପ୍ରତି ବିଶେଷ ଲକ୍ଷ୍ୟ ରଖିବ । ବାକ୍ୟ ତ ଗୌଣବସ୍ତୁ; ଚିନ୍ତାଗୁଡ଼ିକ ହିଁ ବହୁକାଳ ସ୍ଥାୟୀ ଏବଂ ସେମାନଙ୍କର ଗତି ସୁଦୂରବ୍ୟାପୀ । ଆମେ ଯେକୌଣସି ଚିନ୍ତା କରୁ, ସେଥିରେ ଆମର ଚରିତ୍ରର ଛାପ ଲାଗିଯାଏ; ସେହି ହେତୁରୁ ସାଧୁ ପୁରୁଷଙ୍କ ଥଟ୍ଟା ବା ଗାଳିରେ ମଧ୍ୟ ସେମାନଙ୍କ ଅନ୍ତରର ସ୍ନେହ ଓ ପବିତ୍ରତାର କିଛି ଅଂଶ ରହିଯାଏ ଏବଂ ତାହା ଆମର ମଙ୍ଗଳ ସାଧନ କରେ ।

କିଛି କାମନା କର ନାହିଁ । ଈଶ୍ୱର-ଚିନ୍ତା କର; କିନ୍ତୁ କୌଣସି ଫଳପ୍ରାପ୍ତିର କାମନା କର ନାହିଁ । ଯେଉଁମାନେ କାମନାଶୂନ୍ୟ, ସେମାନଙ୍କର କାମ ଫଳପ୍ରସୂ ହୁଏ । ଭିକ୍ଷାଜୀବୀ ସନ୍ନ୍ୟାସୀମାନେ ଲୋକମାନଙ୍କର ଦ୍ୱାରେ ଦ୍ୱାରେ ଧର୍ମ ବିତରଣ କରିଥାନ୍ତି; କିନ୍ତୁ ସେମାନେ ମନେକରନ୍ତି, ଆମେ କିଛି କରି ନାହୁଁ । ସେମାନେ କୌଣସି ପ୍ରକାର ଦାବି କରନ୍ତି ନାହିଁ, ତାଙ୍କର କାମ ତାଙ୍କ ଅଜ୍ଞାତସାରରେ ହୋଇଥାଏ । ଯଦି ସେମାନେ ଐହିକ ଜ୍ଞାନରୂପ ବୃକ୍ଷର ସୁଖଦୁଃଖର ଫଳ* ଖାଆନ୍ତି, ତା' ହେଲେ ତ ସେମାନଙ୍କର ଅହଙ୍କାର ଆସିଯିବ, ଆଉ ଯାହା କିଛି ଲୋକକଲ୍ୟାଣ ସେମାନେ କରିବେ—ସବୁ ଲୋପ ପାଇଯିବ । ଯେତେବେଳେ ଆମେ 'ମୁଁ' ବୋଲି କହୁଁ, ସେତେବେଳେ ଆମେ ନିର୍ବୋଧ ପାଲଟି ଯାଉଁ ଏବଂ କହୁଁ—ଆମେମାନେ ଜ୍ଞାନଲାଭ କରିଛୁ; କିନ୍ତୁ ପ୍ରକୃତରେ 'ଆଖିରେ ପଟିବନ୍ଧା ବଳଦ' ପରି ଘଣାର ଚାରି ପାଖରେ ଘୂରୁ । ଭଗବାନ ନିଜକୁ ଉତ୍ତମରୂପେ ଗୋପନ କରି ରଖିଛନ୍ତି, ତେଣୁ ତାଙ୍କର କାର୍ଯ୍ୟ ସର୍ବୋତ୍ତମ । ଏହିପରି ଯିଏ ଆପଣାକୁ ସମ୍ପୂର୍ଣ୍ଣ ଗୋପନ ରଖିପାରନ୍ତି, ସେ ସମସ୍ତଙ୍କଠାରୁ ଅଧିକ କାର୍ଯ୍ୟ କରିପାରନ୍ତି । ନିଜକୁ ଜୟ କର, ତା'ହେଲେ ସମସ୍ତ ଜଗତ୍ ତୁମ ଗୋଡ଼ ତଳକୁ ଆସିବ ।

ସତ୍ତ୍ୱଗୁଣରେ ଅବସ୍ଥିତ ହେଲେ ଆମେ ସକଳ ପଦାର୍ଥର ପ୍ରକୃତ ସ୍ୱରୂପ ଦେଖିବାକୁ ପାଉ; ସେତେବେଳେ ଆମେ ପଞ୍ଚେନ୍ଦ୍ରିୟ ଓ ବୁଦ୍ଧିର ଅତୀତ ରାଜ୍ୟକୁ ଚାଲିଯାଉ । ଅହଂ ହେଉଛି ସେହି ବଜ୍ରଦୃଢ଼ ପ୍ରାଚୀର, ଯାହାକି ଆମମାନଙ୍କୁ ବନ୍ଦ କରି ରଖିଛି—ସତ୍ୟର ଉନ୍ମୁକ୍ତ ରାଜ୍ୟକୁ ଆମକୁ ଯିବାକୁ ଦେଉ ନାହିଁ—ସବୁ ବିଷୟ ଓ ସବୁ କାମରେ ତାହା 'ମୁଁ ମୋର' ଏହି ଭାବନା ମନଭିତରେ ସୃଷ୍ଟି କରେ—ଆମେ ମନେକରୁ ଯେ, ମୁଁ ଏ କାମ କରିଛି, ସେ କାମ କରିଛି, ଇତ୍ୟାଦି । ଏହି କ୍ଷୁଦ୍ର ମୁଁ ତ୍ୱ-ଭାବକୁ ଦୂର କରିଦିଅ, ଆମ ଭିତରେ

* ବାଇବେଲରେ ବର୍ଣ୍ଣିତ ଅଛି ଯେ, ପ୍ରଥମ ସୃଷ୍ଟ ମାନବ ମାନବୀ ଆଦମ୍ ଓ ଇଭ୍‌ଙ୍କୁ ଈଶ୍ୱର ନନ୍ଦନକାନନରେ ପ୍ରତିଷ୍ଠିତ କରି ସେଠାରେ ଥିବା ଜ୍ଞାନ-ବୃକ୍ଷର ଫଳ ଖାଇବାକୁ ମନା କରିଥିଲେ । କିନ୍ତୁ ସେମାନେ ସଇତାନର ପ୍ରରୋଚନାରେ ତାହା ଖାଇ ପୂର୍ବର ନିଷ୍ପାପ ସ୍ୱଭାବରୁ ଭ୍ରଷ୍ଟ ହେଲେ । ଏଠାରେ ଜ୍ଞାନ ଅର୍ଥରେ ସୁଖଦୁଃଖ, ଭଲମନ୍ଦ ପ୍ରଭୃତି ଆପେକ୍ଷିକ ଜ୍ଞାନ ।

ଏହି ଯେଉଁ ଅହଂରୂପକ ପୈଶାଚିକ ଭାବ ରହିଛି, ତା'କୁ ସମ୍ପୂର୍ଣ୍ଣରୂପେ ବିନାଶ କରିଦିଅ । 'ନାହଂ ନାହଂ, ତୁହୁଁ ତୁହୁଁ' ଏହି ମନ୍ତ୍ର ଉଚ୍ଚାରଣ କର; ପ୍ରାଣେ ପ୍ରାଣେ ଏହା ଅନୁଭବ କର; ଜୀବନରେ ଏହି ଭାବର ପ୍ରତିଷ୍ଠା କର । ଯେତେ ଦିନଯାଏ ଅହଂଭାବ ବିଜଡ଼ିତ ଏହି ଜଗତକୁ ଆମେ ତ୍ୟାଗ ନ କରିଛୁ, ସେତେ ଦିନଯାଏ ଆମେ ସ୍ୱର୍ଗରାଜ୍ୟରେ ପ୍ରବେଶ କରିପାରିବୁ ନାହିଁ, କେହି କେବେ ପାରି ନାହାନ୍ତି, ଆଉ ପାରିବେ ନାହିଁ ମଧ୍ୟ । ସଂସାର ତ୍ୟାଗ କରିବା ଅର୍ଥ—ଏହି 'ଅହଂ'କୁ ଏକାବେଳକେ ବିସ୍ମୃତ ହେବା, ଅହଂ ପ୍ରତି ଏକାବେଳକେ ଖିଆଲ ନ ରଖିବା । ଦେହ ମଧ୍ୟରେ ବାସ କରିପାରିପାରେ; କିନ୍ତୁ ଆମେ ଯେପରି ଦେହର ହୋଇ ନ ଯାଉ । ଏହି ଦୁଷ୍ଟ 'ମୁଁ'କୁ ସମ୍ପୂର୍ଣ୍ଣ ନଷ୍ଟ କରିବାକୁ ହେବ । ଲୋକେ ଯେତେବେଳେ ତୁମକୁ ମନ୍ଦ କହିବେ, ସେତେବେଳେ ତୁମେ ସେମାନଙ୍କୁ ଆଶୀର୍ବାଦ କର; ଭାବି ଦେଖ ସେମାନେ ତୁମର କେତେ ଉପକାର କରିଛନ୍ତି; ଅନିଷ୍ଟ ଯଦି କାହାର ହୁଏ, ତେବେ ତାହା କେବଳ ସେମାନଙ୍କ ନିଜର ହେଉଛି । ଏପରି ସ୍ଥାନକୁ ଯାଅ ଯେଉଁଠାରେ ଲୋକେ ତୁମକୁ ଘୃଣା କରନ୍ତି; ସେମାନେ ତୁମର ଅହଂଭାବକୁ ମାରି ମାରି ତୁମ ଭିତରୁ ବାହାର କରିଦିଅନ୍ତୁ । ତୁମେ ତା'ହେଲେ ଭଗବାନଙ୍କର ଖୁବ୍ ନିକଟକୁ ଆଗେଇ ଯାଇ ପାରିବ । ବାନରୀ ଯେପରି ନିଜର ଛୁଆକୁ ଜାବୁଡ଼ି ଧରିଥାଏ, କିନ୍ତୁ ପରିଶେଷରେ ବାଧ୍ୟ ହେଲେ ତାକୁ ଫୋପାଡ଼ି ଦେଇ ତାକୁ ପଦଦଳିତ କରିବାକୁ ମଧ୍ୟ ପଶ୍ଚାତ୍ପଦ ହୁଏ ନାହିଁ, ସେହିପରି ଆମେମାନେ ମଧ୍ୟ ଯେତେଦିନ ପାରୁ ସେତେଦିନଯାଏ ଏ ଜଗତକୁ ଜାବୁଡ଼ି ଧରିଥାଉ; କିନ୍ତୁ ପରିଶେଷରେ ତାକୁ ଯେତେବେଳେ ପଦଦଳିତ କରିବାକୁ ବାଧ୍ୟ ହେଉ, ସେତେବେଳେ ଆମେ ଈଶ୍ୱରଙ୍କ ପାଖକୁ ଯିବାର ଅଧିକାରୀ ହେଉ । ଧର୍ମ ପାଇଁ ଯଦି ଅନ୍ୟର ଅତ୍ୟାଚାର ସହ୍ୟ କରିବାକୁ ହୁଏ, ତେବେ ଆମେ ଧନ୍ୟ; ଯଦି ଆମେ ଲେଖା ପଢ଼ା ନ ଜାଣୁ, ତେବେ ମଧ୍ୟ ଆମେ ଧନ୍ୟ ଯେ ଆମମାନଙ୍କୁ ଈଶ୍ୱରଙ୍କଠାରୁ ତଫାତ୍ ରହିବାର ଅନେକ ଜିନିଷ କମିଗଲା ।

ଭୋଗ ହେଉଛି ଲକ୍ଷ-ଫଣାବିଶିଷ୍ଟ ସର୍ପ—ତାକୁ ଆମକୁ ପଦଦଳିତ କରିବାକୁ ହେବ । ଆମେ ଭୋଗ ତ୍ୟାଗ କରି ଅଗ୍ରସର ହେବାକୁ ଲାଗିଲୁ; କିଛି ନ ପାଇ ହୁଏତ ଆମର ନୈରାଶ୍ୟ ଆସିଲା; କିନ୍ତୁ ଲାଗିଥାଅ, ଲାଗିଥାଅ—କେବେ ଛାଡ଼ିଦିଅନା, ଏହି ସଂସାର ଏକ ପିଶାଚ ସଦୃଶ । ଏ ସଂସାର ଯେପରି ଏକ ରାଜ୍ୟ—ଆମ ଭିତରେ ଥିବା କ୍ଷୁଦ୍ର 'ଅହଂ'-ଭାବ ଯେପରି ତା'ର ରାଜା । ତାକୁ ତଡ଼ି ଦେଇ ଦୃଢ଼ ହୁଅ । କାମ-କାଞ୍ଚନ, ନାମଯଶ ତ୍ୟାଗ କରି ଦୃଢ଼ଭାବରେ ଈଶ୍ୱରଙ୍କୁ ଭଜ । ଅବଶେଷରେ ଆମର ସୁଖ-ଦୁଃଖରେ ସମ୍ପୂର୍ଣ୍ଣ ଉଦାସୀନତା ଚାଲି ଆସିବ । ଇନ୍ଦ୍ରିୟ-ଚରିତାର୍ଥତା ହେଉଛି ସୁଖ—ଏହି ଧାରଣା ସମ୍ପୂର୍ଣ୍ଣ ଜଡ଼ବାଦାତ୍ମକ । ଏଥିରେ କଣିକାଏ ମଧ୍ୟ ଯଥାର୍ଥ ସୁଖ ନାହିଁ; ଯାହା କିଛି ସୁଖ ଅଛି, ତାହା ସେହି ପ୍ରକୃତ ଆନନ୍ଦର ପ୍ରତିବିମ୍ବ ମାତ୍ର ।

ଯେଉଁମାନେ ଈଶ୍ୱରଙ୍କ ନିକଟରେ ଆତ୍ମସମର୍ପଣ କରିଛନ୍ତି, ସେମାନେ ତଥାକଥିତ କର୍ମୀମାନଙ୍କ ଅପେକ୍ଷା ଜଗତ ପାଇଁ ଅନେକ ବେଶୀ କାର୍ଯ୍ୟ କରନ୍ତି । ନିଜକୁ ସମ୍ପୂର୍ଣ୍ଣ ଶୁଦ୍ଧ

କରିଥିବା ଜଣେ ବ୍ୟକ୍ତି ହଜାର ହଜାର ଧର୍ମ-ପ୍ରଚାରକଙ୍କଠାରୁ ବହୁତ ଅଧିକ କାମ କରେ । ଚିତ୍ତଶୁଦ୍ଧି ଓ ମୌନତା ଅବଲମ୍ବନଦ୍ୱାରା ନିଜ କଥାରେ ଶକ୍ତି ଆସେ ।

ପଦ୍ମ ସଦ୍ଗୁଣ ହୁଅ । ପଦ୍ମ ଗୋଟିଏ ଜାଗାରେ ଥାଏ, କିନ୍ତୁ ଯେତେବେଳେ ଫୁଟି ଉଠେ, ସେତେବେଳେ ମହୁମାଛି ଖୋଜିଆଡ଼ୁ ଆସି ମେଳା ବାନ୍ଧନ୍ତି ।*

ଶ୍ରୀଯୁକ୍ତ କେଶବଚନ୍ଦ୍ର ସେନ୍ ଓ ଶ୍ରୀରାମକୃଷ୍ଣଙ୍କ ମଧ୍ୟରେ ଏକ ବିଶେଷ ପାର୍ଥକ୍ୟ ଥିଲା । ଶ୍ରୀରାମକୃଷ୍ଣଦେବ ଜଗତ୍ ମଧ୍ୟରେ ପାପ ବା ଅଶୁଭ ଦେଖିପାରି ନ ଥିଲେ—ସେ ଜଗତ୍‌ରେ କିଛି ମନ୍ଦ ଦେଖିବାକୁ ପାଉ ନ ଥିଲେ, କାର୍ଯ୍ୟତଃ ସେହି ମନ୍ଦ ଦୂର କରିବା ନିମିତ୍ତ ଚେଷ୍ଟା କରିବାର କିଛି ପ୍ରୟୋଜନ ଅଛି ବୋଲି ଭାବୁ ନ ଥିଲେ । କେଶବଚନ୍ଦ୍ର ଜଣେ ବଡ଼ ଧର୍ମସଂସ୍କାରକ, ନେତା ଏବଂ ଭାରତବର୍ଷୀୟ ବ୍ରାହ୍ମସମାଜର ପ୍ରତିଷ୍ଠାତା ଥିଲେ । ବାରବର୍ଷ କାଳ ସାଧନା ପରେ ଦକ୍ଷିଣେଶ୍ୱରନିବାସୀ ଏହି ଶାନ୍ତପ୍ରକୃତି ମହାପୁରୁଷ କେବଳ ଭାରତ ନୁହେଁ ସମଗ୍ର ଜଗତର ଭାବରାଜ୍ୟରେ ଏକ ବିରାଟ ପରିବର୍ତ୍ତନ ସୃଷ୍ଟି କରି ଦେଇ ଗଲେ । ଏହିସବୁ ନୀରବ ମହାପୁରୁଷମାନେ ବାସ୍ତବିକ ମହାଶକ୍ତିର ଆଧାର—ସେମାନେ ପ୍ରେମରେ ତନ୍ମୟ ହୋଇ ଜୀବନ-ଯାପନପୂର୍ବକ ଭବରଙ୍ଗମଞ୍ଚରୁ ଅପସରି ଯାଆନ୍ତି । ସେମାନେ କେବେ ହେଲେ 'ମୁଁ, ମୋର' ବୋଲି କହନ୍ତି ନାହିଁ । ସେମାନେ ନିଜକୁ ଈଶ୍ୱରଙ୍କର ଯନ୍ତ୍ରସ୍ୱରୂପ ଜ୍ଞାନ କରି ଧନ୍ୟ ମନେ କରନ୍ତି । ଏହିପରି ବ୍ୟକ୍ତିମାନେ ହିଁ ଖ୍ରୀଷ୍ଟ ଓ ବୁଦ୍ଧ ପ୍ରଭୃତିଙ୍କର ଜନ୍ମଦାତା; ସେମାନେ ସର୍ବଦା ଈଶ୍ୱରଙ୍କ ସହିତ ସମ୍ପୂର୍ଣ୍ଣଭାବେ ତାଦାତ୍ମ୍ୟ ଅନୁଭବ କରନ୍ତି; ଏହି ବାସ୍ତବ ଜଗତ୍‌ଠାରୁ ବହୁ ଦୂରରେ ଏକ ଭାବ-ଜଗତରେ ବାସ କରନ୍ତି । ସେମାନେ କିଛି ହିଁ ଚାହାଁନ୍ତି ନାହିଁ ଏବଂ ଜ୍ଞାତସାରରେ ମଧ୍ୟ କିଛି କରନ୍ତି ନାହିଁ । ସେମାନେ ପ୍ରକୃତପକ୍ଷରେ ଜଗତ୍‌ର ସର୍ବପ୍ରକାର ଉଚ୍ଚ ଭାବର ପ୍ରେରକସ୍ୱରୂପ—ସେମାନେ ଜୀବନ୍ମୁକ୍ତ, ଏକାବେଳକେ ଅହଂଶୂନ୍ୟ । ସେମାନଙ୍କଠାରୁ କ୍ଷୁଦ୍ର ଅହଂଭାବ ଏକାବେଳକେ ଉଭେଇ ଯାଇଛି, ନାମଯଶର ଆକାଙ୍କ୍ଷା ମୋଟେ ନାହିଁ । ସେମାନଙ୍କର ବ୍ୟକ୍ତିତ୍ୱ ସମ୍ପୂର୍ଣ୍ଣ ଲୋପ ପାଇଯାଇଛି, ସେମାନେ ନିରାକାର ତତ୍ତ୍ୱସ୍ୱରୂପ ।

## ଗୁରୁବାର, ୨୭ ଜୁନ୍

(ସ୍ୱାମୀଜୀ ଆଜ ବାଇବେଲ୍‌ର ନିଉ ଟେଷ୍ଟାମେଣ୍ଟ ନେଇ ଆସିଲେ ଏବଂ ପୁନର୍ବାର ଜନ୍‌ଙ୍କ ପୁସ୍ତକ ପଢ଼ି ବ୍ୟାଖ୍ୟା କରିବାକୁ ଲାଗିଲେ ।)

ଯୀଶୁଖ୍ରୀଷ୍ଟ ଯେଉଁ ଶାନ୍ତିଦାତାଙ୍କୁ ପଠାଇ ଦେବେ ବୋଲି କହିଥିଲେ, ମହମ୍ମଦ

* ଅର୍ଥାତ୍ ନିଜେ ସାଧନ-ଭଜନ କରି ଚରିତ୍ରର ଉନ୍ନତି ସାଧନ କର । ତୁମମାନଙ୍କ ଜ୍ଞାନ-ଭକ୍ତିର ସୁଗନ୍ଧରେ ଆକୃଷ୍ଟ ହୋଇ ଲୋକେ ଆପଣାଛାଏଁ ଆସି ତୁମ ନିକଟରୁ ଶିକ୍ଷା ଲଭ କରିବେ; ତୁମମାନଙ୍କୁ କୌଣସିଆଡ଼େ ଧାଁଧପଡ କରି ପ୍ରଚାର କରିବା ଲାଗି ଯିବାକୁ ପଡ଼ିବ ନାହିଁ ।

ନିଜକୁ ସେହି ଶାନ୍ତିଦାତା ବୋଲି ଦାବି କରୁଥିଲେ।* ତାଙ୍କ ମତରେ ଯୀଶୁଖ୍ରୀଷ୍ଟଙ୍କର ଅଲୌକିକ ଭାବରେ ଜନ୍ମ ହୋଇଥିଲା—ଏ କଥା ସ୍ୱୀକାର କରିବାର କୌଣସି ପ୍ରୟୋଜନ ନାହିଁ। ସବୁ ଯୁଗରେ, ସବୁ ଦେଶରେ ଏହିଭଳି ଦାବି ଦେଖିବାକୁ ମିଳେ। ସବୁ ବଡ଼ଲୋକ—ଦେବତାଙ୍କଠାରୁ ସେମାନଙ୍କର ଜନ୍ମ ହୋଇଛି—ଏହି ଦାବି କରିଯାଇଛନ୍ତି।

ଜ୍ଞାନ ଜିନିଷଟି ଆପେକ୍ଷିକ ମାତ୍ର। ଆମେ ଈଶ୍ୱର ହୋଇପାରୁ; କିନ୍ତୁ ତାଙ୍କୁ କେବେହେଲେ ଜାଣିପାରୁ ନାହିଁ। ଜ୍ଞାନ ଏକ ନିମ୍ନତର ଅବସ୍ଥା ମାତ୍ର। ତୁମ ବାଇବେଲରେ ଅଛି, ଆଦମ୍ ଯେତେବେଳେ 'ଜ୍ଞାନ ଲାଭ କଲେ' ସେତେବେଳେ ତାଙ୍କର ପତନ ହେଲା। ତା' ପୂର୍ବରୁ ସେ ସତ୍ୟସ୍ୱରୂପ, ପବିତ୍ରତାସ୍ୱରୂପ ଏବଂ ଈଶ୍ୱରସ୍ୱରୂପ ଥିଲେ। ଆମମାନଙ୍କର ମୁଖ ଆମ ଦେହରୁ ଅଭିନ୍ନ ନୁହେଁ, କିନ୍ତୁ କେତେବେଳେ ହେଲେ ଆମେ ପ୍ରକୃତ ମୁଖଟାକୁ ଦେଖିବାକୁ ପାଉ ନାହିଁ, ଆମକୁ ତା'ର ପ୍ରତିବିମ୍ବ ମାତ୍ର ଦେଖିବାକୁ ହୋଇଥାଏ। ଆମେ ନିଜେ ପ୍ରେମସ୍ୱରୂପ, କିନ୍ତୁ ଯେତେବେଳେ ଏହି ପ୍ରେମ ସମ୍ବନ୍ଧରେ ଚିନ୍ତା କରିବାକୁ ଯାଉ, ସେତେବେଳେ ଦେଖୁଁ ଆମମାନଙ୍କୁ ଏକ କଳ୍ପନାର ଆଶ୍ରୟ ଗ୍ରହଣ କରିବାକୁ ହୋଇଥାଏ। ତଦ୍ୱାରା ପ୍ରମାଣିତ ହୁଏ ଯେ, ଆମେ ଯାହାକୁ ଜଡ଼ କହୁ ତାହା ଚିତ୍-ର ବହିରଭିବ୍ୟକ୍ତି ମାତ୍ର।

ନିବୃତ୍ତି ଅର୍ଥ ସଂସାରଠାରୁ ଦୂରେଇ ଆସିବା। ହିନ୍ଦୁମାନଙ୍କର ପୁରାଣରେ ଅଛି, ପ୍ରଥମ ସୃଷ୍ଟ ଚାରିଜଣ ଋଷିଙ୍କୁ** ହଂସରୂପୀ ଭଗବାନ ଶିକ୍ଷା ଦେଇଥିଲେ ଯେ, ସୃଷ୍ଟି-ପ୍ରପଞ୍ଚ ଗୌଣମାତ୍ର; ସୁତରାଂ ସେ ଆଉ ପ୍ରଜା ସୃଷ୍ଟି କଲେ ନାହିଁ। ଏହାର ତାତ୍ପର୍ଯ୍ୟ ଏହି ଯେ, ଅଭିବ୍ୟକ୍ତିର ଅର୍ଥ ହେଉଛି ଅବନତି; କାରଣ ଆତ୍ମାକୁ ଅଭିବ୍ୟକ୍ତ କରିବାକୁ ଗଲେ ଶବ୍ଦଦ୍ୱାରା ଏହି ଅଭିବ୍ୟକ୍ତି ସାଧିତ ହୁଏ, ଏବଂ ଶବ୍ଦ ଭାବକୁ ନଷ୍ଟ କରିଦିଏ।[୧] ତା' ହେଲେ ହେଁ ତତ୍ତ୍ୱ ଜଡ଼ାବରଣରେ ଆବୃତ ନ ହୋଇ ରହିପାରେ ନାହିଁ, ଯଦିଓ ଆମେ ଜାଣୁ ଯେ, ଅବଶେଷରେ ଏହିପରି ଆବରଣ ପ୍ରତି ଦୃଷ୍ଟି ଦେଇ ଦେଇ ଆମେ ଅସଲକୁ ହରାଇଥାଉ। ସବୁ ବଡ଼ ବଡ଼ ଆଚାର୍ଯ୍ୟ ଏହି କଥା ଜାଣନ୍ତି, ଆଉ ସେଥିପାଇଁ ଅବତାରଗଣ ପୁନଃ ପୁନଃ ଆସି ଆମମାନଙ୍କୁ ମୂଳତତ୍ତ୍ୱଟି ବୁଝାଇ ଦେଇଥାଆନ୍ତି ଏବଂ ସେହି କାଳର ଉପଯୋଗୀ ତାହାର ଏକ ନୂତନ ଆକାର ଦେଇଥାଆନ୍ତି। ଗୁରୁମହାରାଜ କହୁଥିଲେ, ଧର୍ମ ଏକ; ସବୁ ଅବତାର ମଧ୍ୟ ଏହି କଥା ଶିକ୍ଷା ଦେଇ ଯାଇଛନ୍ତି; ତେବେ ସମସ୍ତଙ୍କୁ ସେହି ତତ୍ତ୍ୱ ପ୍ରକାଶ ପାଇଁ—କୌଣସି ନା କୌଣସି ଆକାର ଦେବାକୁ ହୁଏ। ସେଥିପାଇଁ ତାକୁ ତା'ର ପୁରାତନ ଆକାର ମଧ୍ୟରୁ ନେଇ ଏକ ନୂତନ ଆକାରରେ ଆମ ଆଗରେ ଉପସ୍ଥାପନ କରିଥାଆନ୍ତି।

* ଯୀଶୁଖ୍ରୀଷ୍ଟ କହୁଥିଲେ, 'ମୁଁ ତୁମମାନଙ୍କ ନିକଟରୁ ଚାଲିଯିବି ସତ, କିନ୍ତୁ ମୁଁ ତୁମମାନଙ୍କ ମଙ୍ଗଳ ପାଇଁ ଶାନ୍ତିଦାତାଙ୍କୁ (Comforter) ପଠାଇଦେବି।' ଖ୍ରୀଷ୍ଟାନ୍‌ମାନେ କହନ୍ତି, ଏହି Comforter Holy Ghost ବା ପବିତ୍ରାତ୍ମାରୂପୀ ଈଶ୍ୱର।

** ସନକ, ସନାତନ, ସନନ୍ଦନ ଓ ସନତ୍‌କୁମାର।

୧ 'The Letter killeth'—ବାଇବେଲ, ୨ୟ କରିନ୍ଥିୟାନ୍, ୩ୟ ଅଧ୍ୟାୟ, ୬ଷ୍ଠ ଶ୍ଳୋକ।

ଯେତେବେଳେ ଆମେ ନାମରୂପରୁ, ବିଶେଷତଃ ଦେହବନ୍ଧନରୁ ମୁକ୍ତ ହେଉ, ଯେତେବେଳେ ଆମମାନଙ୍କର ଭଲ ମନ୍ଦ କୌଣସି ଦେହର ପ୍ରୟୋଜନ ରହେ ନାହିଁ, ସେତେବେଳେ କେବଳ ଆମେ ବନ୍ଧନ ଅତିକ୍ରମ କରିପାରୁଁ । ଅନନ୍ତ ଉନ୍ନତିର ଅର୍ଥ ଅନନ୍ତ କାଳ ପାଇଁ ବନ୍ଧନ ଓ ତା' ପାଇଁ ସମସ୍ତ ପ୍ରକାର ଆକୃତିର ଧ୍ୱଂସ ହିଁ ବାଞ୍ଛନୀୟ । ଆମମାନଙ୍କୁ ସବଂପ୍ରକାର ଦେହ, ଏପରି କି ଦେବ-ଦେହଠାରୁ ବି ମୁକ୍ତିଲାଭ କରିବାକୁ ହେବ । ଈଶ୍ୱର ହିଁ ଏକମାତ୍ର ଯଥାର୍ଥ ସତ୍ୟବସ୍ତୁ, ଦୁଇଟି ସତ୍ୟବସ୍ତୁ କଦାପି ରହିପାରେ ନାହିଁ । ଏକମାତ୍ର ଆତ୍ମା ହିଁ ରହିଛି ଏବଂ ମୁଁ ହେଉଛି ସେହି ଆତ୍ମା ।

ମୁକ୍ତିଲାଭର ସହାୟକ ଭାବରେ ଶୁଭକର୍ମର ଯାହା କିଛି ମୂଲ୍ୟ ରହିଛି, ତଦ୍ୱାରା କର୍ତ୍ତାର କଲ୍ୟାଣ ହୁଏ, ଅନ୍ୟ କାହାର କିଛି ହୁଏ ନାହିଁ । ***

ଜ୍ଞାନ ଅର୍ଥ ଶ୍ରେଣୀବଦ୍ଧ କରିବା—କେତେକ ପ୍ରକାର ଜିନିଷକୁ ଏକ ଶ୍ରେଣୀର ଅନ୍ତର୍ଭୁକ୍ତ କରିବା । ଆମେ ଏକ ପ୍ରକାରର ଅନେକଗୁଡ଼ିଏ ଜିନିଷକୁ ଦେଖିଲୁ—ସେ ସମସ୍ତଙ୍କୁ କୌଣସି ଗୋଟିଏ ନାଁ ଦେଲୁ; ସେଥିରେ ଆମର ମନ ଶାନ୍ତ ହେଲା । ଆମେ କେବଳ କେତେକ 'ଘଟଣା' ବା 'ବ୍ୟାପାର' ଆବିଷ୍କାର କରିଥାଉ, କିନ୍ତୁ 'କାହିଁକି' ସେଗୁଡ଼ିକ ଘଟିଛି, ତାହା ଜାଣିପାରୁ ନାହିଁ । ଆମେ ଅଜ୍ଞାନର ଆଉ କେତେକ ସ୍ଥାନରେ ଘେରି ବୁଲି ଆସି ମନେକରୁଁ ଆମେ କିଛି ଜ୍ଞାନଲାଭ କରିଲୁ । ଏହି ଜଗତରେ 'କାହିଁକି'ର କୌଣସି ଉତ୍ତର ମିଳି ନ ପାରେ; 'କାହିଁକି'ର ଉତ୍ତର ପାଇବାକୁ ହେଲେ ଆମମାନଙ୍କୁ ଭଗବାନଙ୍କ ନିକଟକୁ ଯିବାକୁ ହେବ । ଯିଏ ସମସ୍ତଙ୍କର ଜ୍ଞାତା, ତାଙ୍କୁ କେତେବେଳେ ହେଲେ ପ୍ରକାଶ କରିହୁଏ ନାହିଁ । ଏ ଯେପରି ଲୁଣ-ପିତୁଳାର ସମୁଦ୍ର ମାପିବାକୁ ଯିବାପରି —ସମୁଦ୍ର ଭିତରେ ପ୍ରବେଶ କରିବା ମାତ୍ରେ ମିଳେଇଗଲା ।

ବୈଷମ୍ୟ-ସୃଷ୍ଟିର ମୂଳ—ଏକରସତା ବା ସାମ୍ୟ ହିଁ ଈଶ୍ୱର । ଏହି ବୈଷମ୍ୟଭାବକୁ ଅତିକ୍ରମ କରି ଚାଲିଯାଅ, ତାହା ହେଲେ ଜୀବନ ଓ ମୃତ୍ୟୁ ଉଭୟଙ୍କୁ ହିଁ ଜୟ କରିବ, ଏବଂ ଅନନ୍ତ ସମତ୍ୱ ମଧ୍ୟରେ ପହଞ୍ଚିବ—ସେତେବେଳେ ତୁମେ ବ୍ରହ୍ମରେ ପ୍ରତିଷ୍ଠିତ ହେବ; ସ୍ୱୟଂ ବ୍ରହ୍ମସ୍ୱରୂପ ହେବ । ମୁକ୍ତିଲାଭ ପାଇଁ ଚେଷ୍ଟା କର, ସେଥିରେ ପ୍ରାଣ ଯାଉ, ତାହା ହିଁ ସଂକଳ୍ପ । ଖଣ୍ଡିଏ ପୁସ୍ତକ ସହିତ ତା'ର ପୃଷ୍ଠାଗୁଡ଼ିକର ଯେଉଁ ସମ୍ବନ୍ଧ, ଆମମାନଙ୍କ ସହିତ ଆମର ଜନ୍ମର ମଧ୍ୟ ସେହି ସମ୍ପର୍କ; ଆମେ କିନ୍ତୁ ଅପରିଣାମୀ, ସାକ୍ଷୀସ୍ୱରୂପ, ଆତ୍ମସ୍ୱରୂପ । ଆଉ ତାଙ୍କ ଉପରେ ହିଁ ଜନ୍ମାନ୍ତରର ଛାୟା ପଡ଼ିଛି; ଯେପରି ଗୋଟିଏ ମଶାଲକୁ ଖିବ୍ ଜୋରରେ ବୁଲାଇଲେ ଆଖି ଆଗରେ ଏକ ବୃତ୍ତାକାର-ପ୍ରତୀତି ହୁଏ । ଆତ୍ମାରେ ସମସ୍ତ ବ୍ୟକ୍ତିତ୍ୱର ଏକତ୍ୱ, ଆଉ ଯେହେତୁ ଆତ୍ମା ଅନନ୍ତ, ଅପରିଣାମୀ ଓ ଅଚଞ୍ଚଳ, ସେହେତୁ ଆତ୍ମା ବ୍ରହ୍ମସ୍ୱରୂପ । ଆତ୍ମାକୁ ଜୀବନ ବୋଲି କୁହାଯାଇପାରିବ ନାହିଁ; କିନ୍ତୁ ତେଥିରୁ ସମସ୍ତ ଜୀବନ ଗଠିତ ହୁଏ । ଏହାକୁ ସୁଖ କୁହାଯାଏ ନାହିଁ; କିନ୍ତୁ ଏଥିରୁ ସୁଖର ଉତ୍ପତ୍ତି ହୁଏ । ***

ଆଜିକାଲି ଦୁନିଆ ଲୋକେ ଭଗବାନଙ୍କୁ ପରିତ୍ୟାଗ କରୁଛନ୍ତି; କାରଣ ଲୋକଙ୍କ ଧାରଣା—ଜଗତର ଯେତେଦୂର ସୁଖସ୍ୱାଚ୍ଛନ୍ଦ୍ୟ ବିଧାନ କରିବା ଉଚିତ, ତାହା ସେ କରୁ

ନାହାନ୍ତି; ଏହି ହେତୁରୁ ଲୋକେ କହୁଛନ୍ତି, "ତାଙ୍କୁ ନେଇ ଆମର ଲାଭ କଅଣ ?" ଆମମାନଙ୍କୁ କଅଣ ଈଶ୍ୱରଙ୍କୁ କେବଳ ମ୍ୟୁନସିପାଲିଟିର ଜଣେ କର୍ତ୍ତା ବୋଲି ଭାବିବାକୁ ହେବ ନା କଅଣ ? ଆମେ ଏତିକି କରିପାରୁ ଯେ, ଆମର ସମସ୍ତ ବାସନା, ଈର୍ଷା, ଘୃଣା, ଭେଦବୁଦ୍ଧି—ଏହିଗୁଡ଼ିକୁ ଦୂର କରି ଦେଇପାରୁ । 'ଅପରିପକ୍ୱ ମୁଁ'କୁ ଦୂର କରି ଫିଙ୍ଗି ଦେବାକୁ ହେବ, ମନକୁ ଦମନ କରିବାକୁ ହେବ—ଏକ ପ୍ରକାର ମାନସିକ ଆତ୍ମହତ୍ୟା ନୁହେଁ ତ ଆଉ କ'ଣ ! ଶରୀର ଓ ମନକୁ ସୁସ୍ଥ ରଖ—କିନ୍ତୁ ଈଶ୍ୱରଲାଭ କରିବାର ଯନ୍ତ୍ର-ସ୍ୱରୂପରେ; ଏତିକି ମାତ୍ର ଏହାର ପ୍ରକୃତ ପ୍ରୟୋଜନ । କେବଳ ସତ୍ୟ ନିମିତ୍ତ ସତ୍ୟର ଅନୁସନ୍ଧାନ କର, ତଦ୍ୱାରା ଆନନ୍ଦ ମିଳିବ, ଏ କଥା ମନେ କର ନାହିଁ । ଆନନ୍ଦ ନିଜ ଭିତରୁ ଆସିପାରେ; କିନ୍ତୁ ତାହା ଯେପରି ତୁମର ସତ୍ୟ ଲାଭ କରିବାର ପ୍ରରୋଚକ ନ ହୁଏ । ଈଶ୍ୱରଲାଭ ବ୍ୟତୀତ ଅନ୍ୟ କୌଣସି ଅଭିସନ୍ଧି ରଖ ନାହିଁ । ସତ୍ୟ ଲାଭ କରିବାକୁ ହେଲେ ଯଦି ନରକ ଭିତର ଦେଇ ଯିବାକୁ ପଡ଼େ, ତା'ହେଲେ ମଧ୍ୟ ପଶ୍ଚାତ୍‌ପଦ ହୁଅ ନାହିଁ ।

**ଶୁକ୍ରବାର, ୨୮ ଜୁନ୍**

(ଆଜି ସମସ୍ତେ ସ୍ୱାମୀଜୀଙ୍କ ସହିତ ଗୋଟିଏ ଜାଗାକୁ ବଣଭୋଜି ପାଇଁ ଯାଇଥିଲେ । ଯଦିଚ ସ୍ୱାମୀଜୀ ଯେଉଁଠାରେ ଅବସ୍ଥାନ କରନ୍ତି, ସେଠାରେ ତାଙ୍କର ଉପଦେଶ-ଦାନର ବିରାମ ନ ଥିଲା; କିନ୍ତୁ ଆଜିକାର ଉପଦେଶଗୁଡ଼ିକର କୌଣସି 'ନୋଟ୍' ରଖା ହୋଇ ନାହିଁ । ତେବେ ବାହାରିବା ପୂର୍ବରୁ ପ୍ରାତରାଶବେଳେ ସେ ଏହି କେତୋଟି କଥା କହି-ଥିଲେ ।)

ସବୁ ପ୍ରକାର ଅନ୍ନ ପାଇଁ ଭଗବାନଙ୍କ ପାଖରେ କୃତଜ୍ଞ ହୁଅ—ଅନ୍ନ ହେଉଛି ବ୍ରହ୍ମ-ସ୍ୱରୂପ । ତାଙ୍କର ସର୍ବବ୍ୟାପିନୀ ଶକ୍ତି ହିଁ ଆମମାନଙ୍କର ବ୍ୟଷ୍ଟି-ଶକ୍ତିରେ ପରିଣତ ହୋଇ ଆମକୁ ସବୁ ପ୍ରକାର କାର୍ଯ୍ୟ କରିବାରେ ସାହାଯ୍ୟ କରିଥାଏ ।

**ଶନିବାର, ୨୯ ଜୁନ୍**

(ଆଜି ସ୍ୱାମୀଜୀ ହାତରେ ଗୀତା ନେଇ ଉପସ୍ଥିତ ହେଲେ ।)

ଗୀତାରେ ହୃଷୀକେଶ ଅର୍ଥାତ୍ ଇନ୍ଦ୍ରିୟ ବା ଇନ୍ଦ୍ରିୟଯୁକ୍ତ ଜୀବାତ୍ମାମାନଙ୍କର ଈଶ୍ୱର, ଗୁଡ଼ାକେଶ ଅର୍ଥାତ୍ ନିଦ୍ରାର ଅଧୀଶ୍ୱର ବା ନିଦ୍ରାଜୟୀ ଅର୍ଜୁନଙ୍କୁ ଉପଦେଶ ଦେଉଛନ୍ତି । ଏହି ଜଗତ ହିଁ 'ଧର୍ମକ୍ଷେତ୍ର' କୁରୁକ୍ଷେତ୍ର । ପଞ୍ଚପାଣ୍ଡବ (ଅର୍ଥାତ୍ ଧର୍ମ) ଶତ କୌରବଙ୍କ (ଆମେମାନେ ଯେଉଁ ସମସ୍ତ ବିଷୟରେ ଆସକ୍ତ ଏବଂ ଯାହାଙ୍କ ସହିତ ଆମର ସତତ ବିରୋଧ ତାହାଙ୍କ) ସହିତ ଯୁଦ୍ଧ କରୁଛନ୍ତି । ପଞ୍ଚପାଣ୍ଡବଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ବୀର ଅର୍ଜୁନ (ଅର୍ଥାତ୍ ପ୍ରବୁଦ୍ଧ ଜୀବାତ୍ମା) ସେନାପତି । ଆମମାନଙ୍କୁ ସମସ୍ତ ଇନ୍ଦ୍ରିୟସୁଖ ସହିତ ଯୁଦ୍ଧ କରିବାକୁ ହେବ । ତାକୁ ବିନାଶ କରିବାକୁ ହେବ । ଆମକୁ ନିଃସଙ୍ଗ ହୋଇ ଠିଆ ହେବାକୁ ହେବ । ଆମେ ବ୍ରହ୍ମସ୍ୱରୂପ, ଆମର ଅନ୍ୟ ସମସ୍ତ ଭାବକୁ ଏହିଭାବରେ ଲୀନ କରିଦେବାକୁ ହେବ ।

ଶ୍ରୀକୃଷ୍ଣ ସବୁ ପ୍ରକାର କାର୍ଯ୍ୟ କରୁଥିଲେ; କିନ୍ତୁ ସବୁ ପ୍ରକାର ଆସକ୍ତିବର୍ଜ୍ଜିତ ହୋଇ । ସେ ସଂସାରରେ ଥିଲେ ସତ୍ୟ, କିନ୍ତୁ କେତେବେଳେ ସଂସାରୀ ହୋଇଯାଇ ନ ଥିଲେ । ସବୁ କାମ କର, କିନ୍ତୁ ଅନାସକ୍ତ ହୋଇ କର; କାମ ପାଇଁ କାମ କର । ନିଜ ପାଇଁ କେବେ-ହେଲେ କର ନାହିଁ ।

***

କୌଣସି ନାମରୂପାତ୍ମକ ବସ୍ତୁ କେତେବେଳେ ହେଲେ ମୁକ୍ତସ୍ୱଭାବ ହୋଇପାରେ ନାହିଁ । ମାଟିରୁ ଯେପରି ନାମ-ରୂପ ଦ୍ୱାରା ଘଡ଼ା ଆଦି ତିଆରି ହୁଏ, ସେହିପରି ସେହି ମୁକ୍ତସ୍ୱଭାବ ବ୍ରହ୍ମ ସସୀମ ବା ବଦ୍ଧଭାବାପନ୍ନ ହୋଇପଡ଼େ; ସୁତରାଂ ଆପେକ୍ଷିକ ସତ୍ତାକୁ କେବେହେଲେ ମୁକ୍ତସ୍ୱଭାବ କୁହାଯାଇପାରିବ ନାହିଁ । ଘଟ ଯେଉଁ ପର୍ଯ୍ୟନ୍ତ ଘଟ ଥାଏ, ସେତେବେଳ ଯାଏ ଆପଣାକୁ ତାହା ମୁକ୍ତ ବୋଲି କହିପାରେ ନାହିଁ, ଯେତେବେଳେ ସେ ନାମ-ରୂପ ଭୁଲିଯାଏ, ସେତେବେଳେ ସେ ମୁକ୍ତ ହୁଏ । ସମୁଦାୟ ଜଗତ୍ ଆତ୍ମାସ୍ୱରୂପ—ବହୁଭାବରେ ଅଭିବ୍ୟକ୍ତ ଯେପରି ଏକସ୍ୱର ମଧ୍ୟରେ ନାନା ତାଲମାନ ନିହିତ ରହିଥାଏ—ତାହା ନ ହେଲେ ବିରକ୍ତିକର ବୋଧ ହୁଅନ୍ତା । ସମୟ ସମୟରେ ବେସୁରା ରାଗିଣୀ ବାଜେ ସତ, ସେଥିରେ ବରଂ ପରବର୍ତ୍ତୀ ସ୍ୱରର ଐକ୍ୟ ଅଧିକ ମଧୁର ଲାଗେ । ମହାନ୍ ବିଶ୍ୱ ସଙ୍ଗୀତରେ ତିନୋଟି ଭାବର ବିଶେଷ ପ୍ରକାଶ ଦେଖାଯାଏ—ସାମ୍ୟ, ଶକ୍ତି ଓ ସ୍ୱାଧୀନତା ।

ଯଦି ତୁମର ସ୍ୱାଧୀନତାରେ ଅନ୍ୟର କିଛି କ୍ଷତି ହୁଏ, ତେବେ ବୁଝିବାକୁ ହେବ, ସେ ସ୍ୱାଧୀନତା ପ୍ରକୃତ ସ୍ୱାଧୀନତା ନୁହେଁ । ଅନ୍ୟର କୌଣସି ପ୍ରକାର କ୍ଷତି କେବେ କର ନାହିଁ ।

ମିଲ୍‌ଟନ୍ କହିଛନ୍ତି, "ଦୁର୍ବଳତା ହେଉଛି ଦୁଃଖ ।" କର୍ମ ଓ ଫଳଭୋଗ — ଏହି ଦୁଇଟିର ସମ୍ବନ୍ଧ ଅବିଚ୍ଛିନ୍ନ । ଅନେକ ସମୟରେ ଦେଖାଯାଏ, ଯିଏ ବେଶୀ ହସେ, ତାକୁ ବେଶୀ କାନ୍ଦିବାକୁ ହୋଇଥାଏ—ଯେତେ ହସ ତେତେ କାନ୍ଦ । "କର୍ମଣ୍ୟେବାଧିକାରସ୍ତେ ମା ଫଳେଷୁ କଦାଚନ"—କର୍ମରେ ତୁମର ଅଧିକାର, ଫଳରେ ନୁହେଁ ।

***

ଜଡ଼ଭାବରେ ଦେଖିଲେ କୁଚିନ୍ତାଗୁଡ଼ିକୁ ରୋଗଜୀବାଣୁ କୁହାଯାଇପାରେ । ଆମର ଦେହ ଯେପରି ଲୌହପିଣ୍ଡ ସଦୃଶ, ଏବଂ ଆମମାନଙ୍କର ପ୍ରତ୍ୟେକ ଚିନ୍ତା ତା' ଉପରେ ଯେପରି ଧୀରେ ଧୀରେ ହାତୁଡ଼ିର ପାହାର ମାରିବା—ତଦ୍ଦ୍ୱାରା ଆମେ ଦେହକୁ ଯେ ପ୍ରକାର ଇଚ୍ଛା, ସେହି ପ୍ରକାର ଗଠନ କରୁ ।

ଆମେ ଜଗତର ସମସ୍ତ ସୁଚିନ୍ତାରାଶିର ଉତ୍ତରାଧିକାରୀସ୍ୱରୂପ; କିନ୍ତୁ ସେଗୁଡ଼ିକୁ ଆମମାନଙ୍କ ମଧ୍ୟରେ ଅବାଧ ପ୍ରବେଶ ପାଇଁ ସୁଯୋଗ ଦେବା ଦରକାର ।

ଶାସ୍ତ୍ର ସବୁ ତ ଆମମାନଙ୍କ ଭିତରେ ଅଛି । ମୂର୍ଖ, ଶୁଣିପାରୁନ କି—ତୁମ ନିଜ ହୃଦୟ ମଧ୍ୟରେ ଦିନ ରାତି ସେହି ଅନନ୍ତ ସଙ୍ଗୀତ ଧ୍ୱନିତ ହେଉଛି ?—"ସଚ୍ଚିଦାନନ୍ଦଃ, ସଚ୍ଚିଦାନନ୍ଦଃ, ସୋଽହଂ ସୋଽହଂ ।"

ଆମ ପ୍ରତ୍ୟେକଙ୍କ ଭିତରେ—କି କ୍ଷୁଦ୍ର ପିମ୍ପୁଡ଼ି, ସ୍ୱର୍ଗର ଦେବତା—ସମସ୍ତଙ୍କ ମଧ୍ୟରେ ଅନନ୍ତ ଜ୍ଞାନର ପ୍ରସ୍ରବଣ ରହିଛି । ପ୍ରକୃତ ଧର୍ମ ଏକ, ଆମେ ତା'ର ବିଭିନ୍ନ ପ୍ରକାଶ

ନେଇ ଝଗଡ଼ା କରି ମରୁଛୁ । ଯିଏ ଖୋଜିବା ଜାଣିଛି ତା' ନିକଟରେ ବର୍ତ୍ତମାନ ବି ସତ୍ୟ-ଯୁଗ ରହିଛି । ଆମେ ନିଜେ ନଷ୍ଟ ହୋଇଛୁ, ଅଉ ଜଗତକୁ ନଷ୍ଟ ବୋଲି ମନେକରୁଛୁ ।

ଏହି ଜଗତରେ ପୂର୍ଣ୍ଣ ଶକ୍ତିର କୌଣସି କାର୍ଯ୍ୟ ନ ଥାଏ । ତାକୁ କେବଳ 'ଅସ୍ତି' ବା 'ସତ୍' ବୋଲି କୁହାଯାଏ, ତାହାର କୌଣସି କାର୍ଯ୍ୟ ନ ଥାଏ ।

ଯଥାର୍ଥ ସିଦ୍ଧିଲାଭ ଏକ, ତେବେ ଆପେକ୍ଷିକ ସିଦ୍ଧିଲାଭ ନାନାବିଧ ହୋଇପାରେ ।

ରବିବାର, ୩୦ ଜୁନ୍

ଗୋଟିଏ କିଛି କଳ୍ପନାକୁ ଆଶ୍ରୟ ନ କରି ଚିନ୍ତା କରିବାର ଚେଷ୍ଟା ଏବଂ ଅସମ୍ଭବକୁ ସମ୍ଭବ କରିବାର ଚେଷ୍ଟା—ଏକା କଥା । ଆମେ କୌଣସି ଏକ ବିଶେଷ ଗୁଣ୍ୟପାୟୀ ଜୀବକୁ ଅବଲମ୍ବନ ନ କରି ଗୁଣ୍ୟପାୟୀ ଜୀବର କୌଣସି ଧାରଣା କରିପାରିବୁ ନାହିଁ । ଈଶ୍ୱରଙ୍କ ଧାରଣା ସମ୍ପର୍କରେ ଏହି କଥା ।

ଜଗତରେ ଯେତେ ଯାହା ଧାରଣା ଅଛି, ତାହାର ସୂକ୍ଷ୍ମସାରମର୍ମକୁ ଆମେ ଈଶ୍ୱର ବୋଲି କହୁ ।

ପ୍ରତ୍ୟେକ ଚିନ୍ତାର ଦୁଇଟି ଭାଗ ଅଛି—ଗୋଟିଏ ଭାବ ଓ ଆଉ ଗୋଟିଏ ଏହି ଭାବଦ୍ୟୋତକ 'ଶବ୍ଦ'—ଆମକୁ ଏହି ଦୁଇଟିକୁ ହିଁ ନେବାକୁ ହେବ । କି ବିଜ୍ଞାନବାଦୀ (Idealist), କି ଜଡ଼ବାଦୀ (Materialist), କାହାର ମତ ଖାଣ୍ଟି ସତ୍ୟ ନୁହେଁ । ଆମକୁ ଭାବ ଓ ତା'ର ପ୍ରକାଶ ଏ ଦୁହିଁଙ୍କୁ ନେବାକୁ ହେବ ।

ଆମେ ଦର୍ପଣରେ ଆମର ମୁହଁ ଦେଖିବାକୁ ପାଉ—ସମସ୍ତ ଜ୍ଞାନ ହିଁ ସେହିପରି; ଯାହା ବାହାରେ ପ୍ରତିବିମ୍ବିତ ହୁଏ, ତାହା ହିଁ ଜ୍ଞାନ । କେହି କେବେହେଲେ ନିଜର ଆତ୍ମା ବା ଈଶ୍ୱରଙ୍କୁ ଜାଣିପାରିବ ନାହିଁ; କିନ୍ତୁ ଆମେ ସ୍ୱୟଂ ସେହି ଆତ୍ମା, ଆମେ ହିଁ ଈଶ୍ୱର ।

ତୁମେ ଯେତେବେଳେ ନିର୍ବାଣ-ଅବସ୍ଥା ପ୍ରାପ୍ତ ହେବ, ସେତେବେଳେ ତୁମର 'ତୁମତ୍ୱ' ଏକାବେଳକେ ଲୋପ ପାଇଯିବ । ବୁଦ୍ଧ କହିଥିଲେ—"ଯେତେବେଳେ 'ତୁମେ' ରହିବ ନାହିଁ, (ଅର୍ଥାତ୍ ଯେତେବେଳେ 'ମୁଁ' ଗୁଲିଯିବ) ସେତେବେଳେ ତୁମର ଯଥାର୍ଥ ଅବସ୍ଥା—ସେତେବେଳେ ତୁମର ସର୍ବୋଚ୍ଚ ଅବସ୍ଥା ।"

ଅଧିକାଂଶ ବ୍ୟକ୍ତିଙ୍କଠାରେ ସେହି ଆଭ୍ୟନ୍ତରୀଣ ଐଶ୍ୱରିକ ଜ୍ୟୋତି ଆବୃତ ଓ ଅସ୍ପଷ୍ଟ ହୋଇ ରହିଛି । ଯେପରି ଏକ ଲୁହାର ପିମ୍ପା ଭିତରେ ଗୋଟିଏ ଆଲୋକ ରଖାଯାଇଛି, ଏହି ଆଲୋକର ଏତେ ଟିକିଏ ଜ୍ୟୋତି ମଧ୍ୟ ବାହାରକୁ ଆସିପାରୁ ନାହିଁ । ଟିକିଏ ଟିକିଏ କରି ପବିତ୍ରତା ଓ ନିଃସ୍ୱାର୍ଥତା ଅଭ୍ୟାସ କରି କରି ଆମର ମଝିରେ ଥିବା ଏହି ଆଡୁଆଳକୁ ଖୁବ୍ ପତଳା କରି ଉଠେଇ ନେଇ ହେବ । ଅବଶେଷରେ ତାହା କାଚ ସଦୃଶ ସ୍ୱଚ୍ଛ ହୋଇଯିବ । ଶ୍ରୀରାମକୃଷ୍ଣଙ୍କ ପକ୍ଷରେ ଏହି ଲୁହାର ପିମ୍ପା କାଚରେ ପରିଣତ ହୋଇଛି, ତାହା ଭିତରଦେଇ ସେହି ଆଭ୍ୟନ୍ତରୀଣ ଜ୍ୟୋତି ସ୍ପଷ୍ଟଭାବରେ ଦେଖାଯାଉଛି । ଆମେ ସମସ୍ତେ କୌଣସି ସମୟରେ ଏହିପରି କାଚର ପିମ୍ପା ହୋଇଯିବା—ଏପରିକି, ଏହାଠାରୁ

ଉଚ୍ଚ ବିକାଶର ଆଧାରଭୂକ୍ତ ହେବା, କିନ୍ତୁ ଯେତେଦିନ ପର୍ଯ୍ୟନ୍ତ ସିମ୍ପା ରହିଛୁ, ସେତେଦିନ ଆମକୁ ଜଡ଼ ଉପାୟ ସାହାଯ୍ୟରେ ହିଁ ଚିନ୍ତା କରିବାକୁ ହେବ । ଅସହିଷ୍ଣୁ ବ୍ୟକ୍ତି କୌଣସି-କାଳେ ସିଦ୍ଧ ହୋଇପାରିବେ ନାହିଁ । ***

ବଡ଼ ବଡ ସାଧୁପୁରୁଷଗଣ ଆଦର୍ଶ ତତ୍ତ୍ୱର (Principleର) ଦୃଷ୍ଟାନ୍ତସ୍ୱରୂପ; କିନ୍ତୁ ଶିଷ୍ୟମାନେ ବ୍ୟକ୍ତିଙ୍କୁ ହିଁ ଆଦର୍ଶ ବା ତତ୍ତ୍ୱସ୍ଥାନରେ ରଖନ୍ତି ଓ ବ୍ୟକ୍ତିକୁ ଏପଟ ସେପଟ କରୁ କରୁ ତତ୍ତ୍ୱ ଭୂଲିଯାଆନ୍ତି ।

ବୁଦ୍ଧ ସଗୁଣ ଈଶ୍ୱର ବିରୋଧରେ କ୍ରମାଗତ ଆକ୍ରମଣ କରିବା ଫଳରେ ଭାରତରେ ପ୍ରତିମା-ପୂଜାର ସୂତ୍ରପାତ ହେଲା । ବୈଦିକଯୁଗରେ ମୂର୍ତ୍ତିର ଅସ୍ତିତ୍ୱ ନ ଥିଲା, ସେତେବେଳେ ଲୋକେ ସର୍ବତ୍ର ଈଶ୍ୱର ଦର୍ଶନ କରୁଥିଲେ; କିନ୍ତୁ ବୁଦ୍ଧଙ୍କ ପ୍ରଚାର ଫଳରେ ଆମେ ଜଗତ୍-ସ୍ରଷ୍ଟା ଓ ଆମ ସଖାସ୍ୱରୂପ ଈଶ୍ୱରଙ୍କୁ ହରାଇଲୁ ଓ ତା'ର ପ୍ରତିକ୍ରିୟାସ୍ୱରୂପ ମୂର୍ତ୍ତି-ପୂଜାର ଉତ୍ପତ୍ତି ହେଲା । ଲୋକେ ବୁଦ୍ଧଙ୍କ ମୂର୍ତ୍ତି ଗଢ଼ି ପୂଜା କରିବାକୁ ଆରମ୍ଭ କଲେ । ଯୀଶୁଖ୍ରୀଷ୍ଟଙ୍କ ସମ୍ପର୍କରେ ମଧ୍ୟ ତାହା ହିଁ ହୋଇଛି । କାଠ ପଥରରୁ ଆରମ୍ଭ କରି ଯୀଶୁ ବୁଦ୍ଧଙ୍କ ପୂଜା ପର୍ଯ୍ୟନ୍ତ ସବୁ ହିଁ ପ୍ରତିମା-ପୂଜା, କିନ୍ତୁ କୌଣସି ନା କୌଣସି ରୂପରେ ମୂର୍ତ୍ତି ବ୍ୟତୀତ ଆମର ଚଳିବ ନାହିଁ । ***

ବଳପୂର୍ବକ ସଂସ୍କାର-ସାଧନ ଚେଷ୍ଟାର ଫଳ ଏହି ଯେ, ସେଥିରେ ସଂସ୍କାର ବା ଉନ୍ନତିର ଗତିରୋଧ ହୁଏ । କାହାକୁ କହ ନାହିଁ—'ତୁମେ ମନ୍ଦ' । ବରଂ ତାହାକୁ କହ —'ତୁମେ ଭଲ ଅଛ, ଆହୁରି ଭଲ ହୁଅ ।'

ପୁରୋହିତମାନେ ସବୁଦେଶରେ ଅନିଷ୍ଟ କରିଆନ୍ତି; କାରଣ ସେମାନେ ଲୋକଙ୍କୁ ଗାଳି ଦିଅନ୍ତି ଓ ଖରାପ ସମାଲୋଚନା କରନ୍ତି । ସେମାନେ କୌଣସି ଗୋଟିଏ ବିଷୟକୁ ଠିକ୍ ବାଟରେ ନେବା ଉଦ୍ଦେଶ୍ୟରେ ଗୋଟିଏ ଦଉଡ଼ି ଧରି ଟାଣନ୍ତି; କିନ୍ତୁ ଏହା ଫଳରେ ଅନ୍ୟ ଦୁଇ ତିନୋଟା ଦଉଡ଼ି ସ୍ଥାନଭ୍ରଷ୍ଟ ହୋଇଯାଏ । ପ୍ରେମରେ ଗାଳିମନ୍ଦର ସ୍ଥାନ ନାହିଁ, କେବଳ ପ୍ରତିଷ୍ଠାର ଆକାଙ୍କ୍ଷା ହିଁ ଏହିଭଳି ଘଟାଇଥାଏ । 'ନ୍ୟାୟସଙ୍ଗତ ରାଗ' ବୋଲି କିଛି ନାହିଁ ।

ତୁମେ ଯଦି କାହାକୁ ସିଂହ ହେବାକୁ ଦେବ ନାହିଁ, ତେବେ ସେ ଧୂର୍ତ୍ତ ଶୃଗାଳ ହୋଇ ଛିଡ଼ା ହେବ । ସ୍ତ୍ରୀ-ଜାତି ଶକ୍ତି-ରୂପିଣୀ; କିନ୍ତୁ ବର୍ତ୍ତମାନ ଏହି ଶକ୍ତି କେବଳ ମନ୍ଦ ବିଷୟରେ ପ୍ରଯୁକ୍ତ ହେଉଛି । ତାହାର କାରଣ, ପୁରୁଷ ତା' ଉପରେ ଅତ୍ୟାଚାର କରୁଛି । ବର୍ତ୍ତମାନ ସେ ଶୃଗାଳୀ ପରି; କିନ୍ତୁ ଯେତେବେଳେ ତା' ଉପରେ ଅତ୍ୟାଚାର ହେବ ନାହିଁ, ସେତେବେଳେ ସେ ସିଂହୀ ହୋଇ ଠିଆ ହେବ ।

ସାଧାରଣତଃ ଧର୍ମଭାବକୁ ବିଚାର-ବୁଦ୍ଧିଦ୍ୱାରା ନିୟମିତ କରାଯିବା ଉଚିତ । ତା' ନ ହେଲେ, ଏହି ଭାବର ଅବନତି ଘଟି ତାହା କେବଳ ଭାବୁକତାରେ ପରିଣତ ହୋଇ-ପାରେ । ***

ଆସ୍ତିକ ମାତ୍ରେ ସ୍ୱୀକାର କରନ୍ତି ଯେ, ଏହି ପରିଣାମୀ ଜଗତର ପଶ୍ଚାତ୍‌ରେ ଏକ

ଅପରିଣାମୀ ବସ୍ତୁ ରହିଛି—ଯଦିଓ ସେହି ଚରମ ପଦାର୍ଥର ଧାରଣା ସମ୍ପର୍କରେ ସେମାନଙ୍କ ମଧ୍ୟରେ ମତଭେଦ ଅଛି । ବୁଦ୍ଧ ଏହାକୁ ସମ୍ପୂର୍ଣ୍ଣ ଅସ୍ୱୀକାର କରୁଥିଲେ । ସେ କହୁଥିଲେ, "ବ୍ରହ୍ମ ବା ଆତ୍ମା ବୋଲି କିଛି ନାହିଁ ।"

ଚରିତ୍ର ଦୃଷ୍ଟିରୁ ବିଶ୍ୱରେ ବୁଦ୍ଧ ସମସ୍ତଙ୍କଠାରୁ ବଡ଼, ତାଙ୍କ ପରେ ଯୀଶୁଖ୍ରୀଷ୍ଟ; କିନ୍ତୁ ଗୀତାରେ ଶ୍ରୀକୃଷ୍ଣ ଯାହା କହି ଯାଇଛନ୍ତି, ସେଭଳି ମହତ୍ତ୍ୱ ଉପଦେଶ ଆଉ ପୃଥିବୀରେ ନାହିଁ । ଯିଏ ସେହି ଅଦ୍ଭୁତ କାବ୍ୟ ରଚନା କରିଥିଲେ, ସେ ବିରଳ ମହାତ୍ମାମାନଙ୍କ ମଧ୍ୟରେ ଜଣେ, ଯେଉଁମାନଙ୍କ ଜୀବନଦ୍ୱାରା ସମଗ୍ର ଜଗତରେ ଏକ ଏକ ନବ ଜୀବନର ସ୍ରୋତ ବହିଯାଇଛି । ଯିଏ ଗୀତା ଲେଖିଛନ୍ତି, ତାଙ୍କ ଭଳି ଆଶ୍ଚର୍ଯ୍ୟ ମେଧାବୀ ମନୁଷ୍ୟଜାତି ଆଉ କେବେ ଦେଖିବାକୁ ପାଇବ ନାହିଁ ।

***

ଜଗତରେ ଗୋଟିଏ ମାତ୍ର ଶକ୍ତି ରହିଛି—ତାହା କେବେ ମନ୍ଦ, କେବେ ବା ଭଲ ଭାବରେ ଅଭିବ୍ୟକ୍ତ ହେଉଛି । ଈଶ୍ୱର ଓ ସଇତାନ ଗୋଟିଏ ନଦୀ—କେବଳ ସେମାନଙ୍କର ସ୍ରୋତ ପରସ୍ପର ବିପରୀତଗାମୀ ।

**ସୋମବାର, ୯ ଜୁଲାଇ**

**(ଶ୍ରୀରାମକୃଷ୍ଣଦେବ)**

ଶ୍ରୀରାମକୃଷ୍ଣଙ୍କ ପିତା ଜଣେ ଖୁବ୍ ନିଷ୍ଠାବାନ୍ ବ୍ରାହ୍ମଣ ଥିଲେ—ଏପରି କି, ସେ କୌଣସିପ୍ରକାର ଦାନ ମଧ୍ୟ ଗ୍ରହଣ କରୁ ନ ଥିଲେ । ତାଙ୍କ ଜୀବିକା ପାଇଁ ସାଧାରଣଙ୍କ ପରି କୌଣସି କାର୍ଯ୍ୟ କରିବାର ଉପାୟ ନ ଥିଲା । ତାଙ୍କର ବହି ବିକ୍ରି କରିବାର ବା କାହାର ଚାକିରି କରିବାର ଉପାୟ ବି ନ ଥିଲା, କୌଣସି ମନ୍ଦିରରେ ପୌରୋହିତ୍ୟ କରିବାର ଅବକାଶ ମଧ୍ୟ ନ ଥିଲା । ସେ ଏକପ୍ରକାର ଆକାଶବୃତ୍ତି-ଅବଲମ୍ବୀ ଥିଲେ, ଯାହା ଅଯାଚିତ ଭାବରେ ପହଞ୍ଚି ଯାଉଥିଲା, ସେଥିରେ ତାଙ୍କର ଖିଆପିଆ ଚଳୁଥିଲା; କିନ୍ତୁ ସେତକ ମଧ୍ୟ କୌଣସି ପତିତ ବ୍ରାହ୍ମଣ ନିକଟରୁ ସେ ଗ୍ରହଣ କରୁ ନ ଥିଲେ । ହିନ୍ଦୁଧର୍ମରେ ଦେବମନ୍ଦିରର ସେଭଳି ପ୍ରାଧାନ୍ୟ ନାହିଁ । ଯଦି ସବୁ ମନ୍ଦିର ଧ୍ୱଂସ ପାଇଯାଏ, ତା'ହେଲେ ମଧ୍ୟ ହିନ୍ଦୁଧର୍ମର କ୍ଷତି ହେବ ନାହିଁ । ହିନ୍ଦୁମାନଙ୍କ ମତରେ ନିଜ ପାଇଁ ଘର ନିର୍ମାଣ କରିବା ସ୍ୱାର୍ଥପରତାର କାର୍ଯ୍ୟ; କେବଳ ଦେବତା ଓ ଅତିଥିମାନଙ୍କ ପାଇଁ ଘର ତିଆରି କରାଯାଇପାରେ । ସେଥିପାଇଁ ଲୋକେ ଭଗବାନଙ୍କ ଆବାସସ୍ୱରୂପ ମନ୍ଦିରାଦି ନିର୍ମାଣ କରିଥାଆନ୍ତି ।

ଅତିଶୟ ପାରିବାରିକ ଅସ୍ୱଚ୍ଛଳତା ଯୋଗୁଁ ଶ୍ରୀରାମକୃଷ୍ଣ ଅତି ଅଳ୍ପ ବୟସରୁ ଗୋଟିଏ ମନ୍ଦିରରେ ପୂଜାରୀ ହେବାକୁ ବାଧ୍ୟ ହୋଇଥିଲେ । ମନ୍ଦିରରେ ଜଗନ୍ମାତାଙ୍କ ମୂର୍ତ୍ତି ପ୍ରତିଷ୍ଠିତ ହୋଇଥିଲା—ତାହାଙ୍କୁ ପ୍ରକୃତି ବା କାଳୀ ବୋଲି କୁହାଯାଇଥାଏ । ଗୋଟିଏ ସ୍ତ୍ରୀ-ମୂର୍ତ୍ତି ଗୋଟିଏ ପୁରୁଷ-ମୂର୍ତ୍ତି ଉପରେ ଠିଆ ହୋଇଛନ୍ତି—ସେଥିରୁ ଏହା ହିଁ ପ୍ରକାଶ ପାଉଛି ଯେ, ମାୟାର ଆବରଣ ଉନ୍ମୋଚିତ ନ ହେଲା ଯାଏ ଆମେ ଜ୍ଞାନ ଲାଭ କରି ପାରିବୁ ନାହିଁ । ବ୍ରହ୍ମ ସ୍ୱୟଂ ସ୍ତ୍ରୀ ବା ପୁରୁଷ କିଛି ନୁହଁନ୍ତି—ସେ ଅଜ୍ଞାତ ଓ ଅଜ୍ଞେୟ । ସେ ଯେତେବେଳେ ନିଜକୁ ଅଭିବ୍ୟକ୍ତ କରନ୍ତି, ସେତେବେଳେ ସେ ନିଜକୁ ମାୟାର

ଆବରଣରେ ଆବୃତ କରି ଜଗଜ୍ଜନନୀରୂପ ଧାରଣ କରନ୍ତି ଓ ସୃଷ୍ଟିପ୍ରପଞ୍ଚର ବିସ୍ତାର କରନ୍ତି । ଯେଉଁ ପୁରୁଷମୂର୍ତ୍ତି ଶୋଇବା ଅବସ୍ଥାରେ ରହିଛନ୍ତି, ସେ ଶିବ ବା ବ୍ରହ୍ମ, ସେ ମାୟାବୃତ ହୋଇ ଶବ ପାଲଟିଛନ୍ତି । ଅଦ୍ୱୈତବାଦୀ ବା ଜ୍ଞାନୀମାନେ କହନ୍ତି, "ଆମେ ବଳପୂର୍ବକ ମାୟା ଛିନ୍ନ କରି ବ୍ରହ୍ମଙ୍କୁ ପ୍ରକାଶ କରିବୁ ।" କିନ୍ତୁ ଦ୍ୱୈତବାଦୀ ବା ଭକ୍ତମାନେ କହନ୍ତି, "ଆମେ ସେହି ଜଗଜ୍ଜନନୀଙ୍କ ନିକଟରେ ପ୍ରାର୍ଥନା କଲେ ସେ ବାଟ ଛାଡ଼ି ଦେବେ ଓ ସେତେବେଳେ ହିଁ ବ୍ରହ୍ମ ଦେଖା ଦେବେ, ତାଙ୍କରି ହାତରେ ହିଁ ସବୁ ରହିଛି ।"

ପ୍ରତିଦିନ ମା' କାଳୀଙ୍କ ସେବା-ପୂଜା କରୁକରୁ ଏହି ତରୁଣ ପୂଜକଙ୍କ ହୃଦୟରେ କ୍ରମେ ଏଭଳି ତୀବ୍ର ବ୍ୟାକୁଳତା ଓ ଭକ୍ତିଭାବ ଜାଗି ଉଠିଲା ଯେ, ସେ ଆଉ ନିୟମିତ ଭାବରେ ମନ୍ଦିରର ପୂଜା ଅର୍ଚ୍ଚନାଦି ଚଳାଇ ପାରିଲେ ନାହିଁ । ସୁତରାଂ ସେ ତାହା ପରିତ୍ୟାଗ କରି ମନ୍ଦିର-ବେଢ଼ା ଭିତରେ ଯେଉଁଠାରେ ଗୋଟିଏ କ୍ଷୁଦ୍ର ଜଙ୍ଗଲ ଥିଲା, ସେଠାକୁ ଯାଇ ଦିନରାତି ଧ୍ୟାନ-ଧାରଣା କରିବାକୁ ଲାଗିଲେ । ସେହି ସ୍ଥାନଟି ଠିକ୍ ଗଙ୍ଗା-କୂଳରେ ଥିଲା । ଦିନେ ଗଙ୍ଗା ନଦୀର ପ୍ରବଳ ସ୍ରୋତରେ ଗୋଟିଏ କୁଡ଼ିଆ-ନିର୍ମାଣ ଉପଯୋଗୀ ସବୁ ଜିନିଷ ତାଙ୍କ ପାଖକୁ ଭାସି ଆସିଲା । କୁଟୀରରେ ରହି ସେ କ୍ରମାଗତ ପ୍ରାର୍ଥନା କଲେ ଓ କାନ୍ଦିବାକୁ ଲାଗିଲେ—ଜଗଜ୍ଜନନୀଙ୍କ ଛଡ଼ା ତାଙ୍କର ନିଜ ଦେହ ପ୍ରତି ବା ଅନ୍ୟ କୌଣସି ବିଷୟ ପ୍ରତି ଆଉ ଚିନ୍ତା ରହିଲା ନାହିଁ । ଏହି ସମୟରେ ତାଙ୍କର ଜଣେ ଆତ୍ମୀୟ ତାଙ୍କୁ ଦିନରେ ଥରେ ମାତ୍ର ଖୁଆଇ ପିଆଇ ଯାଉଥିଲେ ଓ ତାଙ୍କର ତତ୍ତ୍ୱ ନେଉ-ଥିଲେ । କିଛି ଦିନ ପରେ ଜଣେ ସନ୍ନ୍ୟାସିନୀ ଆସି ତାଙ୍କୁ ତାଙ୍କ ମା'ଙ୍କୁ ପାଇବାରେ ସାହାଯ୍ୟ କରିବାକୁ ଲାଗିଲେ । ତାଙ୍କର ଯେତେବେଳେ ଯେଉଁ ପ୍ରକାର ଗୁରୁ ଦରକାର ହେଉଥିଲେ, ସେ ଆପଣାଛାଏଁ ଆସି ତାଙ୍କ ପାଖରେ ପହଞ୍ଚି ଯାଉଥିଲେ । ବିଭିନ୍ନ ସମ୍ପ୍ରଦାୟର କୌଣସି ନା କୌଣସି ସାଧୁ ଆସି ତାଙ୍କୁ ଉପଦେଶ ଦେଉଥିଲେ ଓ ସେ ଆଗ୍ରହ ସହକାରେ ସମସ୍ତଙ୍କର ଉପଦେଶ ଶୁଣୁଥିଲେ; କିନ୍ତୁ ସେ କେବଳ ସେହି ଜଗଦମ୍ବାଙ୍କର ହିଁ ଉପାସନା କରୁଥିଲେ ଓ ତାଙ୍କୁ ସବୁ କିଛି 'ମା' ବୋଲି ମନେ ହେଉଥିଲା ।

ଶ୍ରୀରାମକୃଷ୍ଣ କାହାର ବିରୋଧରେ କେବେ ହେଲେ କଡ଼ା କଥା କହି ନାହାନ୍ତି । ତାଙ୍କ ହୃଦୟ ଏଭଳି ଉଦାର ଥିଲା ଯେ, ସମସ୍ତ ସମ୍ପ୍ରଦାୟର ଲୋକେ ଭାବୁଥିଲେ, ସେ ତାଙ୍କରି ଗୋଷ୍ଠୀର ଲୋକ । ସେ ସମସ୍ତଙ୍କୁ ଭଲ ପାଉଥିଲେ । ତାଙ୍କ ଦୃଷ୍ଟିରେ ସବୁ ଧର୍ମ ସତ୍ୟ—ସେ କହୁଥିଲେ, ଧର୍ମ-ଜଗତରେ ସବୁ ଧର୍ମର ସ୍ଥାନ ରହିଛି । ସେ ମୁକ୍ତସ୍ୱଭାବ ଥିଲେ; କିନ୍ତୁ ସମସ୍ତଙ୍କ ପ୍ରତି ସମାନ ପ୍ରେମରେ ହିଁ ତାଙ୍କ ମୁକ୍ତସ୍ୱଭାବର ପରିଚୟ ମିଳୁଥିଲା, ତାହା ବଜ୍ରଭଳି କଠୋର ନ ଥିଲା । ଏହିଭଳି କୋମଳ ପ୍ରାଣର ଲୋକ ହିଁ ନୂତନ ଭାବର ସୃଷ୍ଟି କରନ୍ତି ଓ ଆଉ ଦଳେ ତାହାକୁ ଚାରିଆଡ଼େ ପ୍ରଚାର କରିଦିଅନ୍ତି । ସେଣ୍ଟ ପଲ୍ ଏହି ପ୍ରଚାରକଗୋଷ୍ଠୀର ଲୋକ ଥିଲେ । ସେଥିପାଇଁ ସେ ସତ୍ୟର ଆଲୋକକୁ ଚତୁର୍ଦ୍ଦିଗରେ ବିଛାଡ଼ି ଦେଇଥିଲେ ।

ସେଣ୍ଟ ପଲ୍‌ଙ୍କ ଯୁଗ କିନ୍ତୁ ବର୍ତ୍ତମାନ ଆଉ ନାହିଁ । ଆମମାନଙ୍କୁ ହିଁ ଆଧୁନିକ ଜଗତର ନୂତନ ଆଲୋକସ୍ୱରୂପ ହେବାକୁ ପଡ଼ିବ । ଆମ ଯୁଗର ବର୍ତ୍ତମାନ ବିଶେଷ ଆବଶ୍ୟକ ହେଉଛି—ଏଭଳି ଗୋଟିଏ ସଂଘ, ଯାହା କି ଆପଣାଛାଏଁ ନିଜକୁ ଦେଶ-କାଳର ଉପଯୋଗୀ କରି ନେବ । ତା' ଯେତେବେଳେ ହୋଇଯିବ, ସେତେବେଳେ ତାହା ହିଁ ଜଗତର ଶ୍ରେଷ୍ଠ ଧର୍ମ ହୋଇଯିବ । ସଂସାର-ଚକ୍ର ଗଡ଼ିଚାଲିବ—ଆମକୁ ସେଥିରେ ସାହାଯ୍ୟ କରିବାକୁ ପଡ଼ିବ, ତାହାକୁ ବାଧା ଦେଲେ ଚଳିବ ନାହିଁ । ନାନା ପ୍ରକାର ଧର୍ମଭାବ-ରୂପକ ତରଙ୍ଗ ଉଠୁଛି ପଡ଼ୁଛି ଓ ସେସବୁ ତରଙ୍ଗର ଶୀର୍ଷ ଦେଶରେ ସେହି ଯୁଗର ଅବତାର ବିରାଜମାନ ହେଉଅଛନ୍ତି । ରାମକୃଷ୍ଣ ବର୍ତ୍ତମାନ ଯୁଗର ଉପଯୋଗୀ ଧର୍ମ ଶିକ୍ଷା ଦେବାକୁ ଆସିଥିଲେ—ତାଙ୍କ ଧର୍ମରେ କୌଣସି ଭଙ୍ଗାରୁଜା ନାହିଁ, ଗଠନ ହିଁ ତାଙ୍କର ଧର୍ମ । ତାଙ୍କୁ ନୂଆକରି ପ୍ରକୃତି ନିକଟକୁ ଯାଇ ସତ୍ୟକୁ ଉପଲବ୍ଧି କରିବାକୁ ପଡ଼ିଥିଲା, ଫଳରେ ସେ ବୈଜ୍ଞାନିକ ଧର୍ମ ଲାଭ କରିଥିଲେ । ସେହି ଧର୍ମରେ କାହାରିକୁ କିଛି ମାନି ନେବାକୁ କୁହାଯାଇ ନାହିଁ; ବରଂ ନିଜେ ପରଖ କରି ନେବାକୁ ନିର୍ଦ୍ଦେଶ ଅଛି, "ମୁଁ ସତ୍ୟ ଦର୍ଶନ କରୁଛି, ଇଚ୍ଛା କଲେ ତୁମେ ମଧ୍ୟ ଦେଖିପାର ।"—ମୁଁ ଯେଉଁ ସାଧନ ଅବଲମ୍ବନ କରିଛି, ତୁମେ ମଧ୍ୟ ତାହା କର, ତାହା ହେଲେ ତୁମେ ମଧ୍ୟ ମୋଭଳି ସତ୍ୟ ଦର୍ଶନ କରିବ । ଈଶ୍ୱର ସମସ୍ତଙ୍କ ନିକଟକୁ ଆସିବେ—ସେହି ସମଭାବ ସମସ୍ତଙ୍କ ଆୟତ୍ତଭିତରେ ରହିଛି । ଶ୍ରୀରାମକୃଷ୍ଣ ଯାହା ଉପଦେଶ ଦେଇ ଯାଇଛନ୍ତି, ସେଗୁଡ଼ିକ ହିନ୍ଦୁଧର୍ମର ସାର-ସ୍ୱରୂପ, ତାଙ୍କ ନିଜର ସୃଷ୍ଟ କୌଣସି ନୂଆ ବସ୍ତୁ ନୁହେଁ । ତା' ଛଡ଼ା ସେ ସେଗୁଡ଼ିକୁ ତାଙ୍କ ନିଜସ୍ୱ ବୋଲି କେବେ ହେଲେ ଦାବି କରି ନାହାନ୍ତି, ନିଜ ନାମ ଯଶ ପ୍ରତି ତାଙ୍କର କୌଣସି ପ୍ରକାର ଆକାଙ୍‌କ୍ଷା ନ ଥିଲା । ତାଙ୍କୁ ଯେତେବେଳେ ପ୍ରାୟ ୪୦ ବର୍ଷ ବୟସ, ସେତେବେଳେ ସେ ପ୍ରଚାର କରିବାକୁ ଆରମ୍ଭ କଲେ; କିନ୍ତୁ ସେହି ପ୍ରଚାର ଉଦ୍ଦେଶ୍ୟରେ ବାହାରର କୌଣସି ସ୍ଥାନକୁ ଯାଇ ନାହାନ୍ତି । ଯେଉଁମାନେ ତାଙ୍କ ନିକଟରୁ ଉପଦେଶ ଗ୍ରହଣ କରିବେ, ସେମାନଙ୍କୁ ସେ ଅପେକ୍ଷା କରିଥିଲେ ।

ହିନ୍ଦୁସମାଜର ପ୍ରଥା ଅନୁଯାୟୀ ତାଙ୍କ ପିତାମାତା ତାଙ୍କ ଯୌବନର ପ୍ରାରମ୍ଭରେ ଏକ ୫ବର୍ଷର ଛୋଟ ଝିଅ ସହିତ ବିବାହ କରାଇ ଦେଇଥିଲେ । ସେ ବାଳିକା ଏକ ସୁଦୂର ପଲ୍ଲୀରେ ନିଜ ଆତ୍ମୀୟ-ସ୍ୱଜନଙ୍କ ସହିତ ବାସ କରିବାକୁ ଲାଗିଲେ—ତାଙ୍କ ଯୁବକ ସ୍ୱାମୀ ଯେ କିଭଳି କଠୋର ସାଧନା ଭିତରଦେଇ ଈଶ୍ୱରଙ୍କ ଉଦ୍ଦେଶ୍ୟରେ ଅଗ୍ରସର ହେଉଥିଲେ, ସେ ବିଷୟରେ ସେ କିଛି ଜାଣି ନ ଥିଲେ । ଯେତେବେଳେ ସେ ବୟଃପ୍ରାପ୍ତ ହେଲେ, ସେତେବେଳେ ତାଙ୍କ ସ୍ୱାମୀ ଭଗବତ୍‌ପ୍ରେମରେ ତନ୍ମୟ ହୋଇ ଯାଇଥିଲେ । ସେ ଆସି ଦକ୍ଷିଣେଶ୍ୱର କାଳୀବାଡ଼ିରେ ପହଞ୍ଚିଲେ । ସେ ନିଜ ସ୍ୱାମୀଙ୍କୁ ଦେଖି ତାଙ୍କର ଅବସ୍ଥା ଜାଣି-ପାରିଲେ; କାରଣ ସେ ମହାବିଶୁଦ୍ଧା ଓ ଉନ୍ନତସ୍ୱଭାବା ଥିଲେ । ସେ କେବଳ ତାଙ୍କ କାର୍ଯ୍ୟରେ ସାହାଯ୍ୟ କରିବାର ଇଚ୍ଛା ପୋଷଣ କରିଥିଲେ; ତାଙ୍କୁ ଗୃହସ୍ଥ ଆଡ଼କୁ ଟାଣି ନେବାକୁ ସେ କେବେହେଲେ ଇଚ୍ଛା କରି ନ ଥିଲେ ।

ଶ୍ରୀରାମକୃଷ୍ଣ ଭାରତରେ ମହାପୁରୁଷମାନଙ୍କ ମଧ୍ୟରେ ଜଣେ ବୋଲି ପୂଜିତ ହୁଅନ୍ତି । ତାଙ୍କର ଜନ୍ମଦିନ ଧର୍ମୋତ୍ସବରୂପେ ପରିଗଣିତ ହୋଇଥାଏ । ***

ଗୋଟିଏ ବିଶିଷ୍ଟ ଲକ୍ଷଣଯୁକ୍ତ ଗୋଲକାର ଶିଳା ବସ୍ତୁ ଅର୍ଥାତ୍ ସର୍ବବ୍ୟାପୀ ଭଗବାନଙ୍କର ପ୍ରତୀକରୂପେ ବ୍ୟବହୃତ ହୋଇଥାଏ । ସକାଳେ ପୁରୋହିତ ଆସି ସେହି ଶାଳଗ୍ରାମକୁ ଫୁଲ, ଚନ୍ଦନ, ନୈବେଦ୍ୟଦ୍ୱାରା ପୂଜା କରନ୍ତି, ଧୂପ-କର୍ପୂରଦ୍ୱାରା ଆଳତି କରନ୍ତି, ତା'ପରେ ତାଙ୍କୁ ଶୁଆଇ ଦେଇ ଏହିପରି ଭାବରେ ପୂଜା ନିମିତ୍ତ ତାଙ୍କ ନିକଟରେ କ୍ଷମା ପ୍ରାର୍ଥନା କରନ୍ତି । ଈଶ୍ୱର ସ୍ୱରୂପତଃ ରୂପବର୍ଜିତ ହେଲେ ମଧ୍ୟ ସେ ଏହିପରି ପ୍ରତୀକ ବା କୌଣସି ଜଡ଼ ବସ୍ତୁର ସାହାଯ୍ୟ ବ୍ୟତୀତ ତାଙ୍କର ଉପାସନା କରିପାରନ୍ତି ନାହିଁ, ଏହି ଦୋଷ ବା ଦୁର୍ବଳତା ପାଇଁ ସେ ତାଙ୍କ ପାଖରେ କ୍ଷମାପ୍ରାର୍ଥନା କରନ୍ତି । ସେ ଶିଳାଟିକୁ ଗାଧୋଇ ଦିଅନ୍ତି, ଲୁଗା ପିନ୍ଧାଇ ଦିଅନ୍ତି ଏବଂ ନିଜର ବୋଧଶକ୍ତିଦ୍ୱାରା ତାଙ୍କର ପ୍ରାଣ-ପ୍ରତିଷ୍ଠା କରନ୍ତି । ***

ଗୋଟିଏ ସମ୍ପ୍ରଦାୟ ଅଛି, ସେ କହନ୍ତି—ଭଗବାନଙ୍କୁ କେବଳ ଶିବ ଓ ସୁନ୍ଦର-ରୂପେ ପୂଜା କରିବା ଦୁର୍ବଳତା ମାତ୍ର, ଆମକୁ ଅଶିବ ରୂପକୁ ହିଁ ଭଲ ପାଇବାକୁ ହେବ, ପୂଜା କରିବାକୁ ହେବ । ଏହି ସମ୍ପ୍ରଦାୟ ତିବ୍ବତର ସବୁଠାରେ ବିଦ୍ୟମାନ ଓ ସେମାନଙ୍କ ଭିତରେ ବିବାହ-ପଦ୍ଧତି ନାହିଁ । ଭାରତରେ ଏହି ସମ୍ପ୍ରଦାୟ ପ୍ରକାଶ୍ୟଭାବରେ ରହିବାର ଉପାୟ ନ ଥିବାରୁ ସେମାନେ ଗୋପନରେ ଏହିସବୁ ସମ୍ପ୍ରଦାୟ ଗଢ଼ିଥାଆନ୍ତି । କୌଣସି ଭଦ୍ରବ୍ୟକ୍ତି କେବଳ ଗୋପନରେ ଏହିସବୁ ସମ୍ପ୍ରଦାୟରେ ଯୋଗ ଦେଇଥାଆନ୍ତି । ତିବ୍ବତ ଦେଶରେ 'ସମାଧିକାରବାଦକୁ'* ତିନଥର କାର୍ଯ୍ୟରେ ପରିଣତ କରିବା ପାଇଁ ଉଦ୍ୟମ ହୋଇଥିଲା, କିନ୍ତୁ ପ୍ରତ୍ୟେକ ଥର ତାହା ବିଫଳ ହୋଇଛି । ସେମାନେ ଖୁବ୍ ତପସ୍ୟା କରିଥାଆନ୍ତି ଓ ଶକ୍ତି (ବିଭୂତି) ଲାଭ ହିସାବରେ ସେଥିରେ ବିଶେଷ ସଫଳତା ଲାଭ ମଧ୍ୟ କରିଥାଆନ୍ତି ।

'ତପସ୍' ଶବ୍ଦର ଧାତୁ ଅର୍ଥ ତାପ ଦେବା ବା ଉତ୍ତପ୍ତ କରିବା । ଏହା ଆମ-ମାନଙ୍କର ଉଚ୍ଚ ପ୍ରକୃତିକୁ 'ତପ୍ତ' ବା ଉତ୍ତେଜିତ କରିବାର ସାଧନା ବା ପ୍ରକ୍ରିୟା ବିଶେଷ । ଉଦାହରଣସ୍ୱରୂପ ଉଦୟାସ୍ତ ଜପ—ସୂର୍ଯ୍ୟୋଦୟରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ କ୍ରମାଗତ ଓଁକାର ଜପ । ଏସବୁ କ୍ରିୟାଦ୍ୱାରା ଏଭଳି ଏକ ଶକ୍ତି ଜନ୍ମେ, ଯାହାକୁ ଆଧ୍ୟାତ୍ମିକ ବା ଭୌତିକ ଯେକୌଣସି ରୂପରେ ପରିଣତ କରାଯାଇପାରେ । ଏହି ତପସ୍ୟାର ଭାବ ସମଗ୍ର ହିନ୍ଦୁ-ଧର୍ମରେ ଓତଃପ୍ରୋତଭାବରେ ଜଡ଼ିତ ରହିଛି; ଏପରି କି ହିନ୍ଦୁମାନେ କହନ୍ତି ଯେ, ଭଗବାନଙ୍କୁ ମଧ୍ୟ ବିଶ୍ୱ ସୃଷ୍ଟି କରିବା ଲାଗି ତପସ୍ୟା କରିବାକୁ ପଡ଼ିଥିଲା । ଏହା ଯେପରି ମାନସିକ ଯନ୍ତ୍ରବିଶେଷ—ଏହାର ମାଧ୍ୟମରେ ସବୁ କିଛି କରାଯାଇପାରେ । ଶାସ୍ତ୍ରରେ ଅଛି— "ତ୍ରିଭୁବନରେ ଏଭଳି କିଛି ନାହିଁ, ଯାହା ତପସ୍ୟାଦ୍ୱାରା ମିଳିପାରିବ ନାହିଁ ।" ***

* Communism—କାହାର ବ୍ୟକ୍ତିଗତ ସମ୍ପତ୍ତି ରହିବା ଉଚିତ ନୁହେଁ; ସମସ୍ତଙ୍କର ସମ୍ପତ୍ତି ସାଧାରଣ ହେବ, ଏହି ମତ ।

ଯେଉଁମାନେ ଏଭଳି ସଂପ୍ରଦାୟଗୁଡ଼ିକର ମତାମତ ବା କାର୍ଯ୍ୟକଳାପର ସମାଲୋଚନା କରନ୍ତି, ଏଥିପ୍ରତି ଯାହାର ସହାନୁଭୂତି ନାହିଁ, ସେମାନେ ଜ୍ଞାତସାରରେ ହେଉ ବା ଅଜ୍ଞାତସାରରେ ହେଉ ମିଥ୍ୟାବାଦୀ । ଯେଉଁମାନେ ସଂପ୍ରଦାୟବିଶେଷରେ ଦୃଢ଼ ବିଶ୍ୱାସୀ ସେମାନେ ଅପର ସଂପ୍ରଦାୟ ମଧ୍ୟରେ ଯେଉଁ ସତ୍ୟ ରହିଛି, ତାହା ଦେଖିପାରନ୍ତି ନାହିଁ ।

***

ଭକ୍ତଶ୍ରେଷ୍ଠ ହନୁମାନଙ୍କୁ ଥରେ ପ୍ରଶ୍ନ କରାଯାଇଥିଲା—ଆଜି ମାସର କେତେ ତାରିଖ ? ତା'ର ଉତ୍ତରରେ ସେ କହିଥିଲେ "ରାମ ହିଁ ମୋର ସମୂହର ତାରିଖ ସବୁ କିଛି; ମୁଁ ଆଉ କୌଣସି ସମୂହର ତାରିଖ ଜାଣେ ନାହିଁ ।"

**ମଙ୍ଗଳବାର, ୨ ଜୁଲାଇ**

**(ଜଗନ୍ମାତା)**

ଶାକ୍ତମାନେ ଜଗତର ସେହି ସର୍ବବ୍ୟାପିନୀ ଶକ୍ତିକୁ ମା' ବୋଲି ପୂଜା କରିଥାନ୍ତି— କାରଣ, ମା' ନାମଠାରୁ ବଳି ମଧୁର ନାମ ଆଉ କିଛି ନାହିଁ । ଭାରତରେ ମାତା ହିଁ ସ୍ତ୍ରୀଚରିତ୍ରର ସର୍ବୋଚ୍ଚ ଆଦର୍ଶ । ଭଗବାନଙ୍କୁ ମାତୃରୂପରେ, ପ୍ରେମର ଉଚ୍ଚତମ ବିକାଶରୂପେ ପୂଜା କରିବା ବ୍ୟବସ୍ଥାକୁ ହିନ୍ଦୁମାନେ ଦକ୍ଷିଣାଚାର ବା ଦକ୍ଷିଣ ମାର୍ଗ ବୋଲି କହନ୍ତି । ଏହି ଉପାସନାଦ୍ୱାରା ଆମମାନଙ୍କ ଆଧ୍ୟାତ୍ମିକ ଉନ୍ନତି ଘଟେ, ମୁକ୍ତି ହୁଏ—ଏହାଦ୍ୱାରା କେବେ ହେଲେ ଐହିକ ଉନ୍ନତି ଘଟେ ନାହିଁ । ଆଉ ତାଙ୍କ ଭୀଷଣ ରୂପର—ରୁଦ୍ରମୂର୍ତ୍ତିର ଉପାସନାକୁ ବାମାଚାର ବା ବାମମାର୍ଗ ବୋଲି କୁହାଯାଏ; ସାଧାରଣତଃ ଏହାଦ୍ୱାରା ସାଂସାରିକ ଉନ୍ନତି ବିଶେଷଭାବରେ ଘଟିଥାଏ; କିନ୍ତୁ ବିଶେଷ ଆଧ୍ୟାତ୍ମିକ ଉନ୍ନତି ଘଟେ ନାହିଁ । କାଳକ୍ରମେ ଏଥିରୁ ଅବନତି ଘଟିଥାଏ ଓ ଯେଉଁମାନେ ଏହି ସାଧନ କରନ୍ତି, ସେମାନଙ୍କର ପୂରାପୂରି ଧ୍ୱଂସ-ସାଧନ ହୁଏ ।

ଜନନୀ ହିଁ ଶକ୍ତିର ପ୍ରଥମ ବିକାଶସ୍ୱରୂପ ଓ ଜନକର ଧାରଣା ଅପେକ୍ଷା ଜନନୀର ଧାରଣା ଭାରତରେ ଉଚ୍ଚତର ବିବେଚିତ ହୋଇଥାଏ । 'ମା' ନାମ ଜପ କରିବାଦ୍ୱାରା ହିଁ ଶକ୍ତିର ଭାବ, ସର୍ବଶକ୍ତିମତ୍ତା, ଐଶ୍ୱରିକ ଶକ୍ତିର ଭାବ ଆସିଥାଏ । ଶିଶୁ ଯେପରି ନିଜ ମା'କୁ ସର୍ବଶକ୍ତିମତୀ ମନେ କରିଥାଏ—ମା ସବୁ କରିପାରେ । ସେହି ଜଗଜ୍ଜନନୀ ଭଗବତୀ ହିଁ ଆମମାନଙ୍କ ଅଭ୍ୟନ୍ତରରେ ନିଦ୍ରିତା କୁଣ୍ଡଳିନୀ—ତାଙ୍କୁ ଉପାସନା ନ କରି ଆମେ କେବେ ହେଲେ ନିଜକୁ ଜାଣିପାରିବା ନାହିଁ ।

ସର୍ବ-ଶକ୍ତିମତ୍ତା, ସର୍ବବ୍ୟାପିତା ଓ ଅନନ୍ତ ଦୟା ସେହି ଜଗନ୍ମାତା ଭଗବତୀଙ୍କର ଗୁଣ । ଜଗତରେ ଯେତେ ଶକ୍ତି ଅଛି, ସେଗୁଡ଼ିକର ସେ ସମଷ୍ଟିସ୍ୱରୂପିଣୀ; ଜଗତରେ ଯେତେ ଶକ୍ତିର ବିକାଶ ଘଟେ, ସବୁ ସେହି ଜଗଦମ୍ବା । ସେ ପ୍ରାଣରୂପିଣୀ, ସେ ବୁଦ୍ଧିରୂପିଣୀ, ସେ ପ୍ରେମରୂପିଣୀ । ସେ ସମଗ୍ର ଜଗତ୍ ଭିତରେ ରହିଛନ୍ତି, ସେ ପୁଣି ଜଗତରୁ ସଂପୂର୍ଣ୍ଣ ପୃଥକ୍ । ସେ ଜଣେ ବ୍ୟକ୍ତି—ତାଙ୍କୁ ଜାଣି ହୁଏ ଓ ଦେଖାଯାଇପାରେ, (ରାମକୃଷ୍ଣ ଯେପରି ତାଙ୍କୁ ଜାଣିଥିଲେ ଓ ଦେଖିଥିଲେ) । ସେହି ଜଗନ୍ମାତାଙ୍କ ଭାବରେ ପ୍ରତିଷ୍ଠିତ ହୋଇ ଆମେ

ଯାହା ଇଚ୍ଛା ତାହା କରିପାରୁ । ସେ ଅତିଶୀଘ୍ର ଆମମାନଙ୍କ ପ୍ରାର୍ଥନାର ଉତ୍ତର ଦେଇଥାଆନ୍ତି ।

ସେ ଯେତେବେଳେ ଇଚ୍ଛା ଯେକୌଣସି ରୂପରେ ଆମମାନଙ୍କୁ ଦେଖା ଦେଇପାରନ୍ତି । ସେହି ଜଗଜ୍ଜନନୀଙ୍କ ନାମ-ରୂପ ଉଭୟ ବି ଥାଇପାରେ, କିମ୍ବା ରୂପ ନ ଥାଇ କେବଳ ନାମ ଥାଇପାରେ । ତାଙ୍କୁ ଏଭଳି ବିଭିନ୍ନ ଭାବରେ ଉପାସନା କରୁ କରୁ ଆମେ ଏଭଳି ଏକ ଅବସ୍ଥାରେ ପହଞ୍ଚୁ, ଯେଉଁଠି ନାମ ବା ରୂପ କିଛି ନାହିଁ, କେବଳ ଶୁଦ୍ଧ-ସତ୍ତା ମାତ୍ର ବିରାଜିତ ।

ଯେଭଳି ଶରୀରରେ ଥିବା ସମସ୍ତ କୋଷ (Cells) ମିଶି ଗୋଟିଏ ମଣିଷ ହୁଏ, ସେହିପରି ପ୍ରତ୍ୟେକ ଜୀବାତ୍ମା ଯେପରି ଗୋଟିଏ ଗୋଟିଏ କୋଷସ୍ୱରୂପ ଓ ସେମାନଙ୍କର ସମଷ୍ଟି ଈଶ୍ୱର—ଆଉ ସେହି ଅନନ୍ତ ପୂର୍ଣ୍ଣ ତତ୍ତ୍ୱ (ବ୍ରହ୍ମ) ତାହାର ମଧ୍ୟ ଅତୀତ । ସମୁଦ୍ର ଯେତେବେଳେ ସ୍ଥିର ଥାଏ, ତାକୁ ବ୍ରହ୍ମ କୁହାଯାଏ, ଓ ସେହି ସମୁଦ୍ରରେ ଯେତେବେଳେ ତରଙ୍ଗ ଉଠେ, ସେତେବେଳେ ତାହାକୁ ଆମେ ଶକ୍ତି ବା 'ମା' ବୋଲି କହୁ । ସେହି ଶକ୍ତି ବା ମହାମାୟା ହିଁ ଦେଶ-କାଳ-ନିମିତ୍ତ-ସ୍ୱରୂପ । ସେହି ବ୍ରହ୍ମ ହିଁ ମା । ତାହାଙ୍କର ଦୁଇଟି ରୂପ—ଗୋଟିଏ ସବିଶେଷ ବା ସଗୁଣ, ଏବଂ ଅପରଟି ନିର୍ବିଶେଷ ବା ନିର୍ଗୁଣ । ପ୍ରଥମ ରୂପରେ ସେ ଈଶ୍ୱର, ଜୀବ ଓ ଜଗତ୍, ଦ୍ୱିତୀୟ ରୂପରେ ସେ ଅଜ୍ଞାତ ଓ ଅଜ୍ଞେୟ । ସେହି ନିରୁପାଧିକ ସତ୍ତାରୁ ହିଁ ଈଶ୍ୱର, ଜୀବ ଓ ଜଗତ୍ ଏହି ତ୍ରିତ୍ୱଭାବ ଆସିଛି । ସମସ୍ତ ସତ୍ତା—ଯାହାକିଛି ଆମେ ଜାଣିପାରୁ ସବୁ ହିଁ ଏହି ତ୍ରିଗୁଣାତ୍ମକ; ଏହା ହିଁ ବିଶିଷ୍ଟାଦ୍ୱୈତଭାବ ।

ସେହି ଜଗଦମ୍ବାଙ୍କ ଏକ କଣା ବା ଏକ ବିନ୍ଦୁ ହେଉଛନ୍ତି କୃଷ୍ଣ, ଆଉ ଏକ କଣା ବୁଦ୍ଧ ଓ ଆଉ ଏକ କଣା ଖ୍ରୀଷ୍ଟ । ଆମର ପାର୍ଥିବ ଜନନୀଙ୍କ ଭିତରେ ସେହି ଜଗନ୍ମାତାଙ୍କ ଯେଉଁ କଣିକାଟିଏ ପ୍ରକାଶ ପାଇଛି, ତାହାର ଉପାସନାରେ ହିଁ ମହତ୍ତ୍ୱ ଲାଭ ହୋଇଥାଏ । ଯଦି ପରମ ଜ୍ଞାନ ବା ଆନନ୍ଦ ଆଶା କର, ତେବେ ସେହି ଜଗଜ୍ଜନନୀଙ୍କ ଉପାସନା କର ।

**ବୁଧବାର, ୩ ଜୁଲାଇ**

ମୋଟାମୋଟି ଭାବରେ କହିବାକୁ ଗଲେ ଭୟରୁ ହିଁ ମନୁଷ୍ୟର ଧର୍ମର ଆରମ୍ଭ । "ଈଶ୍ୱର-ଭୟରୁ ହିଁ ଜ୍ଞାନର ଆରମ୍ଭ"; କିନ୍ତୁ ସେଥିରୁ ପରେ ଏହି ଉଚ୍ଚତର ଭାବ ଆସେ ଯେ, "ପୂର୍ଣ୍ଣ ପ୍ରେମର ଉଦୟରେ ଭୟ ଦୂରେଇ ଯାଏ ।" ଯେତେବେଳ ପର୍ଯ୍ୟନ୍ତ ଆମେ ଜ୍ଞାନଲାଭ ନ କରିଛୁ, ଯେପର୍ଯ୍ୟନ୍ତ ଈଶ୍ୱର କିଭଳି ବସ୍ତୁ ଆମେ ଜାଣିପାରି ନାହୁଁ, ସେପର୍ଯ୍ୟନ୍ତ କିଛି ନା କିଛି ଭୟ ନିଶ୍ଚୟ ରହିବ । ଯୀଶୁଖ୍ରୀଷ୍ଟ ମଣିଷ ଥିଲେ, ତେଣୁ ସେ ଜଗତରେ ଅପବିତ୍ରତା ଦେଖିବାକୁ ପାଉଥିଲେ—ଆଉ ତା'ର ଖୁବ୍ ନିନ୍ଦା ମଧ୍ୟ କରି ଯାଇଛନ୍ତି; କିନ୍ତୁ ଈଶ୍ୱର ଅନନ୍ତଗୁଣରେ ଶ୍ରେଷ୍ଠ, ସେ ଜଗତରେ କିଛି ଅନ୍ୟାୟ ଦେଖିବାକୁ ପାଆନ୍ତି ନାହିଁ; ସୁତରାଂ ତାଙ୍କର କ୍ରୋଧର ମଧ୍ୟ କୌଣସି କାରଣ ନାହିଁ । ଅନ୍ୟାୟର ପ୍ରତିବାଦ ବା ନିନ୍ଦାବାଦ କଦାପି ସର୍ବୋଚ୍ଚ ଭାବ ହୋଇ ନ ପାରେ । ଡେଭିଡ୍‌ଙ୍କ ହସ୍ତ

ରକ୍ତରେ କଳୁଷିତ ହୋଇଥିଲା, ସେଥିପାଇଁ ସେ ମନ୍ଦିର ନିର୍ମାଣ କରିପାରି ନାହାନ୍ତି ।*

ଆମମାନଙ୍କ ହୃଦୟରେ ପ୍ରେମ, ଧର୍ମ ଓ ପବିତ୍ରତା-ଭାବ ଯେତେ ବଢ଼ିବାକୁ ଲାଗେ, ଆମେ ସେତିକି ବାହାରେ ପ୍ରେମ, ଧର୍ମ ଓ ପବିତ୍ରଭାବ ଦେଖିବାକୁ ପାଉ । ଆମେ ଅନ୍ୟ କାର୍ଯ୍ୟକୁ ଯେଉଁ ନିନ୍ଦା କରୁ, ପ୍ରକୃତରେ ତାହା ଆମ ନିଜର ହିଁ ନିନ୍ଦା । ତୁମ ଆତ୍ମାରେ ଥିବା କ୍ଷୁଦ୍ର ଜଗତକୁ ଠିକ୍ କର—ତାହାହେଲେ ବିଶାଳ ଜଗତ୍ ମଧ୍ୟ ତୁମ ପକ୍ଷରେ ଆପଣା ଛାଏଁ ଠିକ୍ ହୋଇଯିବ । ଏହା ଯେପରି ଜଳସ୍ଥିତି-ବିଜ୍ଞାନର (Hydrostatics) ସମସ୍ୟା ପରି—ଏକ ବିନ୍ଦୁ ଜଳର ଶକ୍ତିରେ ସମଗ୍ର ବିଶ୍ୱକୁ ସାମ୍ୟ ଅବସ୍ଥାରେ ରଖାଯାଇ ପାରେ । ଆମ ଭିତରେ ଯାହା ନାହିଁ, ବାହାରେ ମଧ୍ୟ ଆମେ ତାହା ଦେଖିପାରୁ ନାହୁଁ । ବୃହତ୍ ଇଞ୍ଜିନ୍ ଆଗରେ କ୍ଷୁଦ୍ର ଇଞ୍ଜିନ୍ ଯେଉଁଳି, ସମଗ୍ର ଜଗତ୍ ତୁଳନାରେ ଆମେ ସେହିପରି । କ୍ଷୁଦ୍ର ଇଞ୍ଜିନ୍ ମଧ୍ୟରେ କୌଣସି ଗୋଳମାଳ ଦେଖିଲେ ଆମେ ବୃହତ୍ ଇଞ୍ଜିନ୍ ଭିତରେ ମଧ୍ୟ ଗୋଳମାଳ ହୋଇଥାଏ ବୋଲି କଳ୍ପନା କରିଥାଉ ।

ପୃଥିବୀରେ ପ୍ରକୃତରେ ଯାହା କିଛି ଉନ୍ନତି ଘଟିଛି, ତାହା ପ୍ରେମର ଶକ୍ତିଦ୍ୱାରା ହିଁ ହୋଇଛି । ଦୋଷ ଦେଖାଇ ଦେଖାଇ କେବେ ହେଲେ ଭଲ କାମ କରାଯାଇପାରେ ନାହିଁ । ହଜାର ହଜାର ବର୍ଷ ଧରି ତାହା ପରୀକ୍ଷା କରି ଦେଖାଯାଇଛି । ନିନ୍ଦାବାଦଦ୍ୱାରା କୌଣସି ଫଳ ହୁଏ ନାହିଁ ।

ପ୍ରକୃତ ବୈଦାନ୍ତିକ ସମସ୍ତଙ୍କ ପ୍ରତି ସହାନୁଭୂତିଶୀଳ ହେବା ଉଚିତ । କାରଣ, ଅଦ୍ୱୈତବାଦ ବା ସମ୍ପୂର୍ଣ୍ଣ ଏକତ୍ୱଭାବ ହିଁ ବେଦାନ୍ତର ସାରମର୍ମ । ଦ୍ୱୈତବାଦୀମାନେ ସାଧାରଣତଃ ରକ୍ଷଣଶୀଳ ହୋଇଥାଆନ୍ତି—ସେମାନଙ୍କ ଧାରଣା ଯେ ସେମାନଙ୍କ ମାର୍ଗ ହିଁ ଏକମାତ୍ର ପନ୍ଥା । ଭାରତରେ ବୈଷ୍ଣବସମ୍ପ୍ରଦାୟ ଦ୍ୱୈତବାଦୀ ଓ ସେମାନେ ଅତ୍ୟନ୍ତ ରକ୍ଷଣଶୀଳ । ଶୈବମାନେ ଆଉ ଏକ ଦ୍ୱୈତବାଦୀ ସମ୍ପ୍ରଦାୟ; ସେମାନଙ୍କ ମଧ୍ୟରେ ଘଣ୍ଟାକର୍ଣ୍ଣ ନାମକ ଜଣେ ଭକ୍ତର ଗଳ୍ପ ପ୍ରଚଳିତ ଅଛି । ସେ ଶିବଙ୍କର ଏଭଳି ପରମଭକ୍ତ ଥିଲେ ଯେ, ଅନ୍ୟ କୌଣସି ଦେବତାଙ୍କ ନାମ କାନରେ ସୁଦ୍ଧା ଶୁଣୁ ନ ଥିଲେ । କାଳେ ଅନ୍ୟ କୌଣସି ଦେବତାଙ୍କ ନାମ ଶୁଣିବାକୁ ପଡ଼ିବ, ସେହି ଭୟରେ ସେ ଦୁଇ କାନରେ ଦୁଇଟି ଘଣ୍ଟା ଝୁଲାଇ ରଖୁଥିଲେ । ମହାଦେବ ତାଙ୍କ ପ୍ରଗାଢ଼ ଭକ୍ତିରେ ସନ୍ତୁଷ୍ଟ ହୋଇ ଭାବିଲେ ଶିବ ଓ ବିଷ୍ଣୁଙ୍କ ମଧ୍ୟରେ ଯେ କୌଣସି ପ୍ରଭେଦ ନାହିଁ, ତାହାକୁ ବୁଝାଇଦେବି । ସେଥିପାଇଁ ସେ ଘଣ୍ଟାକର୍ଣ୍ଣ ଆଗରେ ଅର୍ଦ୍ଧବିଷ୍ଣୁ ଓ ଅର୍ଦ୍ଧଶିବ ଅର୍ଥାତ୍ ହରିହର-ମୂର୍ତ୍ତି ଧରି ଆବିର୍ଭୂତ ହେଲେ । ସେହି ସମୟରେ ଘଣ୍ଟାକର୍ଣ୍ଣ ତାଙ୍କୁ ଆରତି କରୁଥିଲେ; କିନ୍ତୁ ସେ ଏତେ ବେଶୀ ରକ୍ଷଣଶୀଳ ଥିଲେ ଯେ, ସେ ଯେତେବେଳେ ଦେଖିଲେ ଧୂପର ଗନ୍ଧ ବିଷ୍ଣୁଙ୍କ ନାକକୁ ଯାଉଛି—ସେତେବେଳେ ବିଷ୍ଣୁ ଯେପରି ସେହି ସୁଗନ୍ଧ ଉପଭୋଗ କରି ନ ପାରିବେ ସେଥିପାଇଁ ତାଙ୍କ ନାକକୁ ଚିପି ଧରିଲେ ।

***

ମାଂସାଶୀ ପ୍ରାଣୀ ସିଂହ, ଅଳ୍ପ ମାତ୍ର ଆଘାତ କରିବା ପରେ ହିଁ କ୍ଲାନ୍ତ ହୋଇ

* ବାଇବେଲ, ଓଲ୍ଡ଼ ଟେଷ୍ଟାମେଣ୍ଟ, ସାମୁଏଲ XVII

ପଡ଼େ । କିନ୍ତୁ ସନ୍ତୁଷ୍ଟ ବଳଦ ଘିନସାଗ ଗୁଳୁଥାଏ ଓ ଗୁଳୁଥିବା ଅବସ୍ଥାରେ ଖାଏ ଓ ଘୁମାଏ ମଧ୍ୟ । ଚଞ୍ଚଳ, ସଦାକ୍ରିୟାଶୀଳ 'ୟାଙ୍କି' (ଆମେରିକାବାସୀ) ଭାତଖିଆ ଚୀନା କୁଲି ସହିତ ଖଟିପାରେ ନାହିଁ । କ୍ଷତ୍ରିୟଶକ୍ତିର ପ୍ରାଧାନ୍ୟ ଥିବାଯାଏ ମାଂସଭୋଜନ ପ୍ରଚଳିତ ରହିବ; କିନ୍ତୁ ବିଜ୍ଞାନର ଉନ୍ନତି ସଙ୍ଗେ ସଙ୍ଗେ ଯୁଦ୍ଧବିଗ୍ରହ କମିଯିବ ଓ ସେତେବେଳେ ନିରାମିଷାଶୀ ଦଳ ପ୍ରବଳ ହେବେ ।

***

ଆମେମାନେ ଯେତେବେଳେ ଭଗବାନଙ୍କୁ ଭଲ ପାଉଁ, ସେତେବେଳେ ଆମେ ଯେପରି ନିଜକୁ ଦୁଇଭାଗ କରି ପକାଉଁ—ମୁଁ ହିଁ ମୋର ଅନ୍ତରାତ୍ମାକୁ ଭଲ ପାଏଁ । ଭଗବାନ୍ ମୋତେ ସୃଷ୍ଟି କରିଛନ୍ତି, ପୁଣି ମୁଁ ମଧ୍ୟ ଭଗବାନଙ୍କୁ ସୃଷ୍ଟି କରିଛି । ଆମେ ଈଶ୍ୱରଙ୍କୁ ଆମ ଅନୁରୂପ ସୃଷ୍ଟି କରିଥାଉଁ । ଆମେ ହିଁ ଈଶ୍ୱରଙ୍କୁ ଆମର ପ୍ରଭୁ ହେବା ପାଇଁ ସୃଷ୍ଟି କରୁଁ, ଈଶ୍ୱର ଆମମାନଙ୍କୁ ତାଙ୍କ ଦାସ କରନ୍ତି ନାହିଁ । ଯେତେବେଳେ ଆମେ ଜାଣିପାରୁଁ, ଆମେ ଈଶ୍ୱରଙ୍କ ସହିତ ଏକ ଓ ଈଶ୍ୱର ଆମ ସଖା, ସେତେବେଳେ ଯାଇ ପ୍ରକୃତ ସାମ୍ୟାବସ୍ଥା ଲାଭ ହୁଏ, ସେତେବେଳେ ହିଁ ଆମମାନଙ୍କର ମୁକ୍ତି ହୁଏ । ସେହି ଅନନ୍ତ ପୁରୁଷଙ୍କଠାରୁ ନିଜକୁ ବାଲକେଶାଗ୍ରକର ତଫାତ୍‌ରେ ରଖିଥିବା ଯାଏ ଭୟ ଦୂର ହୋଇ-ପାରିବ ନାହିଁ ।

ଭଗବଦ୍‌-ସାଧନା କରିବା, ଭଗବାନଙ୍କୁ ଭଲ ପାଇବାଦ୍ୱାରା ପୃଥିବୀର କଅଣ ମଙ୍ଗଳ ହେବ ? ଏଭଳି ପ୍ରଶ୍ନ କେବେହେଲେ କରି ନାହିଁ । ପୃଥିବୀ ଚୁଲିକୁ ଯାଉ, ଭଗବାନଙ୍କୁ ଭଲ ପାଅ ଓ କିଛି ଆଶା କର ନାହିଁ । ଭଲ ପାଅ ଓ ଆଉ ସବୁ ମତ-ମତାନ୍ତର ଭୁଲି ଯାଅ । ପ୍ରେମର ମଦିରା ପାନ କରି ପାଗଳ ହୋଇଯାଅ । କହ, 'ହେ ପ୍ରଭୁ, ମୁଁ ତୁମରି—ଚିରଦିନ ପାଇଁ ତୁମରି' ଓ ଆଉ ସବୁ କିଛି ଭୁଲିଯାଇ ଝାସ ଦିଅ । 'ଈଶ୍ୱର' କହିଲେ ପ୍ରେମ ଛଡ଼ା ଆଉ କିଛି ବୁଝାଏ ନାହିଁ । ଗୋଟିଏ ବିରାଡ଼ି ତାହାର ଛୁଆଗୁଡ଼ିକୁ ଆଦର କରୁଥିବା ଦେଖି ସେହିଠାରେ ଠିଆ ହୋଇଯାଅ ଓ ଭଗବାନଙ୍କର ଉପାସନା କର । ସେଠାରେ ଭଗବାନଙ୍କର ଆବିର୍ଭାବ ଘଟିଛି—ଏହା ଅକ୍ଷରେ ଅକ୍ଷରେ ସତ୍ୟ, ଏହା ବିଶ୍ୱାସ କର । ସବୁବେଳେ କହ, 'ମୁଁ ତୁମର, ମୁଁ ତୁମର'; କାରଣ, ଆମେ ସର୍ବତ୍ର ଭଗବାନଙ୍କୁ ଦର୍ଶନ କରିପାରିବା, ତାହାଙ୍କୁ କୌଣସିଠାରେ ଖୋଜାଖୋଜି କର ନାହିଁ —ସେ ପ୍ରତ୍ୟକ୍ଷ ରହିଛନ୍ତି, ତାଙ୍କୁ କେବଳ ଦେଖିଯାଅ । 'ସେହି ବିଶ୍ୱାତ୍ମା, ଜଗଜ୍ୟୋତିଃ ପ୍ରଭୁ ସର୍ବଦା ତୁମମାନଙ୍କୁ ରକ୍ଷା କରନ୍ତୁ ।'

***

ନିର୍ଗୁଣ ପରଂବ୍ରହ୍ମଙ୍କ ଉପାସନା କରାଯାଇପାରେ ନାହିଁ, ସୁତରାଂ ଆମମାନଙ୍କୁ ଆମରି ପରି ପ୍ରକୃତିସମ୍ପନ୍ନ ତାଙ୍କର ପ୍ରକାଶ-ବିଶେଷକୁ ଉପାସନା କରିବାକୁ ହେବ । ଯୀଶୁ ଆମମାନଙ୍କ ପରି ମନୁଷ୍ୟ-ପ୍ରକୃତିସମ୍ପନ୍ନ ଥିଲେ—ସେ ଖ୍ରୀଷ୍ଟ ହୋଇଥିଲେ । ଆମେ ମଧ୍ୟ ତାଙ୍କପରି ଖ୍ରୀଷ୍ଟ ହୋଇପାରୁ ଓ ଆମମାନଙ୍କୁ ସେଭଳି ହେବାକୁ ହିଁ ପଡ଼ିବ । ଖ୍ରୀଷ୍ଟ ଓ ବୁଦ୍ଧ ଅବସ୍ଥାବିଶେଷର ନାମ—ଯାହା ଆମମାନଙ୍କୁ ଲାଭ କରିବାକୁ ପଡ଼ିବ; ଯୀଶୁ ଓ ଗୌତମଙ୍କ ମଧ୍ୟରେ ହିଁ ସେହି ଅବସ୍ଥା ପ୍ରକାଶ ପାଇଥିଲା । ଜଗନ୍ମାତା ବା ଆଦ୍ୟାଶକ୍ତି

ହିଁ ବ୍ରହ୍ମର ପ୍ରଥମ ଓ ସର୍ବଶ୍ରେଷ୍ଠ ପ୍ରକାଶ । ତା'ପରେ ଖ୍ରୀଷ୍ଟ ଓ ବୁଦ୍ଧଗଣ ସେଥିରୁ ପ୍ରକାଶ ଲାଭ କରିଛନ୍ତି । ଆମେ ହିଁ ଆମର ପାରିପାର୍ଶ୍ୱିକ ଅବସ୍ଥା ଗଠନ କରି ନିଜକୁ ଆବଦ୍ଧ କରୁ ଓ ଆମେ ପୁଣି ଏହି ଶୃଙ୍ଖଳ ଛିନ୍ନ କରି ମୁକ୍ତ ହୋଇଥାଉଁ । ଆତ୍ମା ଅଭୟସ୍ୱରୂପ । ଆମେ ଯେତେବେଳେ ଆମ ଆତ୍ମାର ବହିର୍ଦ୍ଦେଶରେ ଅବସ୍ଥିତ ଈଶ୍ୱରଙ୍କ ଉପାସନା କରୁ, ସେତେବେଳେ ଆମେ ଭଲ ହିଁ କରିଥାଉଁ, ତେବେ ଆମେ ଯେ କ'ଣ କରୁଛୁ ତାହା ଜାଣୁନା; ଆମେ ଯେତେବେଳେ ଆତ୍ମାର ସ୍ୱରୂପ ଜାଣିପାରୁ, ସେତେବେଳେ ଏହି ରହସ୍ୟ ଉପଲବ୍ଧି କରୁ । ଏକତ୍ୱ ହିଁ ପ୍ରେମର ସର୍ବଶ୍ରେଷ୍ଠ ଅଭିବ୍ୟକ୍ତି ।

ପାରସିକ ସୁଫିମାନଙ୍କ କବିତାରେ ଅଛି—"ଦିନେ ଏଭଳି ସମୟ ଥିଲା, ଯେତେବେଳେ ମୁଁ ନାରୀ ଓ ସେ ପୁରୁଷ ଥିଲେ । ଉଭୟଙ୍କ ମଧ୍ୟରେ ପ୍ରେମ ବଢ଼ିବାକୁ ଲାଗିଲା—ଶେଷରେ ସେ ବା ମୁଁ କେହି ରହିଲୁ ନାହିଁ । ବର୍ତ୍ତମାନ କେବଳ ଏତିକ ମାତ୍ର ଅସ୍ପଷ୍ଟ ଭାବରେ ସ୍ମରଣ ହୁଏ ଯେ, ଏକଦା ଦୁଇଜଣ ପୃଥକ୍ ଲୋକ ଥିଲେ; ଶେଷରେ ପ୍ରେମ ଆସି ଉଭୟଙ୍କୁ ଏକ କରିଦେଲା ।*

ଜ୍ଞାନ ଅନାଦି ଅନନ୍ତକାଳ ଧରି ରହିଛି—ଈଶ୍ୱର ଯେତେ ଦିନ ଧରି ଅଛନ୍ତି, ଜ୍ଞାନ ମଧ୍ୟ ସେତିକ ଦିନ ଧରି ରହିଛି । ଯେଉଁ ବ୍ୟକ୍ତି କୌଣସି ଆଧ୍ୟାତ୍ମିକ ନିୟମ ଆବିଷ୍କାର କରନ୍ତି, ତାଙ୍କୁ ହିଁ Inspired ବା ପ୍ରତ୍ୟାଦିଷ୍ଟ ପୁରୁଷ ବା ଋଷି କୁହାଯାଏ; ସେ ଯାହା ପ୍ରକାଶ କରନ୍ତି, ତାକୁ revealation ବା ଅପୌରୁଷେୟ ବାକ୍ୟ କୁହାଯାଏ । କିନ୍ତୁ ଏହି ସବୁ ଅପୌରୁଷେୟ ବାକ୍ୟ ମଧ୍ୟ ଅନନ୍ତ—ଓ ଏପର୍ଯ୍ୟନ୍ତ ଯାହା ହୋଇଛି ସେଥିରେ ହିଁ ତାହା ଶେଷ ହୋଇଯାଇଛି, ଏଭଳି ଅନ୍ଧଭାବରେ ତାହାର ଅନୁସରଣ କରିବାକୁ ହେବ ନାହିଁ । ଏତେ ଦିନଧରି ହିନ୍ଦୁଧର୍ମକୁ ସମାଲୋଚନା କରି ଆସିଥିବାରୁ ବର୍ତ୍ତମାନ ହିନ୍ଦୁମାନେ ଆପଣାର ଧର୍ମର ସମାଲୋଚନା କରିବାକୁ ସାହସ କରନ୍ତି ଓ ତାହା ହିଁ ସେମାନଙ୍କୁ ସ୍ୱାଧୀନଚେତା କରି ଦେଇଛି । ବୈଦେଶିକ ଶାସନକର୍ତ୍ତାମାନେ ଅଜ୍ଞାତସାରରେ ହିନ୍ଦୁମାନଙ୍କ ପାଦର ଶୃଙ୍ଖଳ ଭାଙ୍ଗି ଦେଇଛନ୍ତି । ହିନ୍ଦୁମାନେ ପୃଥିବୀରେ ସବୁଠାରୁ ଧର୍ମପରାୟଣ ଜାତି ହୋଇ ମଧ୍ୟ ପ୍ରକୃତରେ ଭଗବତ୍-ନିନ୍ଦା ବା ଧର୍ମନିନ୍ଦା କାହାକୁ କୁହାଯାଏ, ତାହା ଜାଣନ୍ତି ନାହିଁ । ସେମାନଙ୍କ ମତରେ ଭଗବାନ ବା ଧର୍ମ ସମ୍ବନ୍ଧରେ ଯେକୌଣସି ଭାବର ଆଲୋଚନା କରାଯାଉ ନା କାହିଁକ, ସେଥିରୁ ପବିତ୍ରତା ଓ କଲ୍ୟାଣ ଲାଭ ହୋଇଥାଏ । ସେମାନେ ଅବତାର ବା ଶାସ୍ତ୍ର ବା ଧର୍ମଧ୍ୱଜୀତା ପ୍ରତି କୌଣସି ପ୍ରକାର କୃତ୍ରିମ ଶ୍ରଦ୍ଧା ବା ଭକ୍ତି ଦେଖାନ୍ତି ନାହିଁ ।

ଖ୍ରୀଷ୍ଟୀୟ-ଧର୍ମସମ୍ପ୍ରଦାୟ ଖ୍ରୀଷ୍ଟଙ୍କୁ ସେମାନଙ୍କ ନିଜ ମତାନୁଯାୟୀ ଗଢ଼ି ତୋଳିବାକୁ ଚେଷ୍ଟା କରିଛନ୍ତି; କିନ୍ତୁ ଖ୍ରୀଷ୍ଟୀୟ ଜୀବନ-ଆଦର୍ଶରେ ନିଜକୁ ଗଢ଼ିବାର ଚେଷ୍ଟା କରି

---

* ଶ୍ରୀଚୈତନ୍ୟଙ୍କ ସହିତ ରାୟ ରାମାନନ୍ଦଙ୍କ କଥୋପକଥନରେ ମଧ୍ୟ ଏହି ଭାବ ପ୍ରକାଶ ପାଇଛି—"ନା ସୋ ରମଣ ନା ହାମ ରମଣୀ । ଦୁହୁଁ ମନ ମନୋଭବ ପେଶଲ ଜାଣି ।"
—ଶ୍ରୀଚୈତନ୍ୟଚରିତାମୃତ

ନାହାନ୍ତି । ଏଥିପାଇଁ ଖ୍ରୀଷ୍ଟ ସମ୍ବନ୍ଧୀୟ ଯେଉଁ ସବୁ ଗ୍ରନ୍ଥ ଉକ୍ତ ସମ୍ପ୍ରଦାୟର ସାମୟିକ ଉଦ୍ଦେଶ୍ୟ ସାଧନ କରିବାରେ ସାହାଯ୍ୟ କରିଥିଲା, କେବଳ ସେହିଗୁଡ଼ିକୁ ହିଁ ରଖାଯାଇଥିଲା । ସୁତରାଂ ସେହି ଗ୍ରନ୍ଥଗୁଡ଼ିକ ଉପରେ କେବେହେଲେ ନିର୍ଭର କରାଯାଇ ନ ପାରେ । ତା' ଛଡ଼ା ଏଭଳି ଗ୍ରନ୍ଥ ବା ଶାସ୍ତ୍ର-ଉପାସନା ସବୁଠାରୁ ବଳି ନିକୃଷ୍ଟ ପୌତ୍ତଳିକତା—ତଦ୍ୱାରା ଆମର ହାତ ଗୋଡ ଏକାବେଳକେ ବାନ୍ଧି ଦିଆଯାଏ । ଏମାନଙ୍କ ମତରେ କି ବିଜ୍ଞାନ, କି ଧର୍ମ, କି ଦର୍ଶନ—ସବୁକୁ ହିଁ ଏହି ଶାସ୍ତ୍ରମତାନୁଯାୟୀ ହେବାକୁ ପଡ଼ିବ । ପ୍ରୋଟେଷ୍ଟାଣ୍ଟମାନଙ୍କ ଏହି ବାଇବେଲର ଅତ୍ୟାଚାର ସବୁଠାରୁ ବଳି ଭୀଷଣ । ଖ୍ରୀଷ୍ଟିଆନ୍ ଦେଶସମୂହରେ ପ୍ରତ୍ୟେକଙ୍କ ଉପରେ ଗୋଟିଏ ଗୋଟିଏ ପ୍ରକାଣ୍ଡ ଗୀର୍ଜା ଲଦି ଦିଆଯାଇଛି ଓ ତା' ଉପରେ ଗୋଟିଏ ଧର୍ମଗ୍ରନ୍ଥ; କିନ୍ତୁ ତେବେ ମଧ୍ୟ ମଣିଷ ବଞ୍ଚି ରହିଛି ଓ ତା'ର ଉନ୍ନତି ମଧ୍ୟ ହେଉଛି । ଏଥିରୁ କ'ଣ ପ୍ରମାଣିତ ହେଉ ନାହିଁ ଯେ, ମଣିଷ ଭଗବାନ-ସ୍ୱରୂପ ?

ପ୍ରାଣୀଙ୍କ ମଧ୍ୟରେ ମନୁଷ୍ୟ ହିଁ ସର୍ବୋଚ୍ଚ ଜୀବ ଓ ପୃଥିବୀ ହିଁ ସର୍ବୋଚ୍ଚ ଲୋକ ବା ଭୁବନ । ଆମେ ଈଶ୍ୱରଙ୍କୁ ମଣିଷଠାରୁ ବଡ଼ ବୋଲି ଧାରଣା କରିପାରୁ ନାହୁଁ, ତେଣୁ ଆମର ଈଶ୍ୱର ମାନବଭାବାପନ୍ନ ଓ ମାନବ ଈଶ୍ୱରସ୍ୱରୂପ । ଆମେ ଯେତେବେଳେ ମାନବୀକ ଭାବର ଊର୍ଦ୍ଧ୍ୱକୁ ଉଠି ତାହାର ଅତୀତ କୌଣସି ଉଚ୍ଚ ବସ୍ତୁକୁ ସାକ୍ଷାତ୍ କରୁ,ଯେତେବେଳେ ଆମକୁ ଏ ପୃଥିବୀ ଛାଡ଼ି ଦେହ-ମନ-କଳ୍ପନା—ଏସବୁର ବାହାରକୁ ଡେଇଁ ଚାଲିଯିବାକୁ ହୁଏ । ଆମେ ଯେତେବେଳେ ଉଚ୍ଚାବସ୍ଥା ଲାଭ କରି ସେହି ଅନନ୍ତସ୍ୱରୂପ ହେଉ, ସେତେବେଳେ ଆମେ ଏହି ଜଗତରେ ନ ଥାଉ । ଆମମାନଙ୍କ ପକ୍ଷରେ ଏହି ପୃଥିବୀ ଛଡ଼ା ଅନ୍ୟ କୌଣସି ପୃଥିବୀକୁ ଜାଣିବାର ସମ୍ଭାବନା ନାହିଁ ଓ ମନୁଷ୍ୟ ହିଁ ଏହି ଜଗତର ସର୍ବୋଚ୍ଚ ସୀମା । ପଶୁମାନଙ୍କ ସମ୍ପର୍କରେ ଆମେ ଯାହା ଜାଣୁ ତାହା କେବଳ ସାଦୃଶ୍ୟମୂଳକ ଜ୍ଞାନ । ଆମେ ନିଜେ ଯାହା କିଛି ଅନୁଭବ କରୁ, ସେଥିରୁ ଆମେ ସେସବୁର ବିଚାର କରିଥାଉ ।

ସମୁଦାୟ ଜ୍ଞାନର ସମଷ୍ଟି ସବୁବେଳେ ସମାନ—କେବଳ ତାହା କେତେବେଳେ ବେଶୀ ବା କମ୍ ମାତ୍ରାରେ ଅଭିବ୍ୟକ୍ତ ହୋଇଥାଏ । ଏହି ଜ୍ଞାନର ଏକମାତ୍ର ଉତ୍ସ ଆମର ଭିତରେ ଅଛି ଓ ସେହିଠାରେ ହିଁ କେବଳ ଜ୍ଞାନଲାଭ କରାଯାଇଥାଏ ।

ସମସ୍ତ କାବ୍ୟ, ଚିତ୍ରବିଦ୍ୟା ଓ ସଙ୍ଗୀତ କେବଳ ଭାଷା, ବର୍ଣ୍ଣ ଓ ଧ୍ୱନି ମଧ୍ୟ ଦେଇ ଭାବର ଅଭିବ୍ୟକ୍ତି ଛଡ଼ା ଆଉ କିଛି ନୁହେଁ ।

***

ଯେଉଁମାନେ ଶୀଘ୍ର ଶୀଘ୍ର ପାପର ଫଳ ଭୋଗକରନ୍ତି, ସେମାନେ ହିଁ ଧନ୍ୟ—ସେମାନଙ୍କର ଶୀଘ୍ର ଶୀଘ୍ର ହିସାବ ନିକାଶ ହୋଇଯାଏ । ଯେଉଁମାନଙ୍କ ପାପର ଫଳ ବିଳମ୍ବରେ ଆସେ ସେମାନଙ୍କୁ ଅଧିକ ଭୋଗିବାକୁ ପଡ଼େ ।

ଯେଉଁମାନେ ସମତ୍ୱ ଭାବ ଲାଭ କରିଛନ୍ତି ସେମାନେ ହିଁ ବ୍ରହ୍ମରେ ଅବସ୍ଥିତ ବୋଲି କୁହାଯାଇଥାଏ । ସବୁ ପ୍ରକାର ଘୃଣାର ଅର୍ଥ—ଆତ୍ମାଦ୍ୱାରା ଆତ୍ମାର ବିନାଶ । ସୁତରାଂ ପ୍ରେମ ହିଁ ଜୀବନର ଯଥାର୍ଥ ନିୟାମକ । ପ୍ରେମର ଅବସ୍ଥା ଲାଭ କରିବା ହିଁ ସିଦ୍ଧାବସ୍ଥା; କିନ୍ତୁ

ଆମେ ଯିଜି ଆଡ଼କୁ ଯେତେ ବେଶୀ ଅଗ୍ରସର ହେଉ ଆମର ତଥାକଥିତ କାର୍ଯ୍ୟର ମାତ୍ରା ସେତିକି ପରିମାଣରେ ହ୍ରାସ ହୁଏ । ସାତ୍ତ୍ୱିକ ବ୍ୟକ୍ତିମାନେ ଜାଣନ୍ତି ଓ ଦେଖନ୍ତି ଯେ, ସବୁ କିଛି ପିଲା-ଖେଳ ମାତ୍ର, ତେଣୁ ସେମାନେ କୌଣସି ବିଷୟ ନେଇ ମୁଣ୍ଡ ଖେଳାନ୍ତି ନାହିଁ ।

ଗୋଟିଏ କିଛି କାର୍ଯ୍ୟ ହଠାତ୍ କରିଦେବା ସହଜ କଥା; କିନ୍ତୁ ହାତ ଗୋଡ଼କୁ ସ୍ଥିର ରଖି, 'ହେ ପ୍ରଭୁ ମୁଁ ତୁମର ଶରଣାଗତ ହେଲି' ବୋଲି କହିବା ଏବଂ ସେ ଯାହା କିଛି କରନ୍ତୁ ବୋଲି ଅପେକ୍ଷା କରି ରହିବା ଅତି କଠିନ ।

ଶୁକ୍ରବାର, ୫ ଜୁଲାଇ

ଯେତେବେଳେ ପର୍ଯ୍ୟନ୍ତ ତୁମେ ସତ୍ୟର ଆହ୍ୱାନରେ ଯେକୌଣସି ମୁହୂର୍ତ୍ତରେ ବଦଳିବା ପାଇଁ ପ୍ରସ୍ତୁତ ହୋଇ ନାହଁ, ସେତେବେଳେ ପର୍ଯ୍ୟନ୍ତ ତୁମେ କଦାପି ସତ୍ୟ ଲାଭ କରି ପାରିବ ନାହିଁ; ଅବଶ୍ୟ ତୁମକୁ ଦୃଢ଼ଭାବରେ ସତ୍ୟର ଅନୁସନ୍ଧାନରେ ଲାଗି ରହିବାକୁ ପଡ଼ିବ ।

***

ଚାର୍ବାକ ଭାରତର ଏକ ଅତି ପ୍ରାଚୀନ ସମ୍ପ୍ରଦାୟ—ଏହି ମତବାଦୀମାନେ ସମ୍ପୂର୍ଣ୍ଣ ଜଡ଼ବାଦୀ ଥିଲେ । ବର୍ତ୍ତମାନ ଏହି ସମ୍ପ୍ରଦାୟ ଲୋପ ପାଇଯାଇଛି ଓ ସେମାନଙ୍କର ଅଧିକାଂଶ ଗ୍ରନ୍ଥ ମଧ୍ୟ ତା' ସହିତ ଲୋପ ପାଇଛି । ସେମାନଙ୍କର ମତରେ ଆତ୍ମା—ଦେହ ଓ ଭୌତିକ ଶକ୍ତିରୁ ଉତ୍ପନ୍ନ—ତେଣୁ ଦେହର ବିନାଶରେ ଆତ୍ମାର ବିନାଶ ଓ ଦେହର ବିନାଶ ପରେ ମଧ୍ୟ ଆତ୍ମାର ଯେ ଅସ୍ତିତ୍ୱ ଅଛି, ତା'ର କୌଣସି ପ୍ରମାଣ ନାହିଁ । ସେମାନେ କେବଳ ଇନ୍ଦ୍ରିୟସାହାଯ୍ୟରେ ପ୍ରତ୍ୟକ୍ଷ ଜ୍ଞାନ ସ୍ୱୀକାର କରନ୍ତି—ଅନୁମାନଦ୍ୱାରା ଯେ ଜ୍ଞାନ-ଲାଭ କରାଯାଇପାରେ, ତାହା ସ୍ୱୀକାର କରନ୍ତି ନାହିଁ ।

***

ସମାଧି-ଅର୍ଥ ଜୀବାତ୍ମା ବା ପରମାତ୍ମାର ଅଭେଦ ଭାବ, ଅଥବା ସମତ୍ୱଭାବ ଲାଭ ।

***

ଜଡ଼ବାଦୀମାନେ କହନ୍ତି, 'ଆମେ ମୁକ୍ତ' ବୋଲି ଆମର ଯେଉଁ ଜ୍ଞାନ ହୁଏ, ତାହା ଭୁଲ । ବିଜ୍ଞାନବାଦୀ କହନ୍ତି, 'ଆମେ ଆବଦ୍ଧ' ବୋଲି ଯେଉଁ ଜ୍ଞାନ ହୁଏ, ତାହା ଭୁଲ । ବେଦାନ୍ତବାଦୀ କହନ୍ତି, ତୁମେ ମୁକ୍ତ ଓ ବଦ୍ଧ ଉଭୟ । ବ୍ୟାବହାରିକ କ୍ଷେତ୍ରରେ ତୁମେ କଦାପି ମୁକ୍ତ ନୁହଁ; କିନ୍ତୁ ପାରମାର୍ଥିକ ବା ଆଧ୍ୟାତ୍ମିକ କ୍ଷେତ୍ରରେ ତୁମେ ନିତ୍ୟ ମୁକ୍ତ ।

ମୁକ୍ତି ଓ ବନ୍ଧନ ଉଭୟଙ୍କୁ ପାର ହୋଇଯାଅ ।

ଆମେ ହିଁ ଶିବସ୍ୱରୂପ; ଅତୀନ୍ଦ୍ରିୟ, ଅବିନାଶୀ ଜ୍ଞାନସ୍ୱରୂପ । ପ୍ରତ୍ୟେକ ବ୍ୟକ୍ତି ପଛରେ ଅନନ୍ତ ଶକ୍ତି ରହିଛି; ଜଗଦମ୍ବାଙ୍କ ନିକଟରେ ପ୍ରାର୍ଥନା କଲେ ତୁମେ ଏହି ଶକ୍ତି ଲାଭ କରିବ ।

"ହେ ମାତଃ ବାଗୀଶ୍ୱରି, ତୁମେ ସ୍ୱୟମ୍ଭୂ, ତୁମେ ଆମ ଜିହ୍ୱାରେ ବାକ୍‌ରୂପରେ ଆବିର୍ଭୂତା ହୁଅ ।"

"ହେ ମାତଃ, ବଜ୍ର ତୁମରି ବାଣୀସ୍ୱରୂପ—ତୁମେ ଆମ ଭିତରେ ଆବିର୍ଭୂତା

ହୁଅ । ହେ କାଳ, ତୁମେ ଅନନ୍ତ କାଳରୂପିଣୀ, ତୁମେ ହିଁ ଅମୋଘ ଶକ୍ତିସ୍ୱରୂପିଣୀ !''

**ଶନିବାର, ୭ ଜୁଲାଇ**

(ସ୍ୱାମୀଜୀ ଆଜି ବ୍ୟାସକୃତ ବେଦାନ୍ତସୂତ୍ରର ଶାଙ୍କରଭାଷ୍ୟ ଅବଲମ୍ବନରେ ଉପଦେଶ ଦେବାକୁ ଲାଗିଲେ ।)

ଶଙ୍କରଙ୍କ ମତରେ ପୃଥିବୀକୁ ଦୁଇ ଭାଗରେ ବିଭକ୍ତ କରାଯାଇପାରେ—ଅସ୍ମଦ୍ (ମୁଁ) ଓ ଯୁଷ୍ମଦ୍ (ତୁମେ) । ଆଲୋକ ଓ ଅନ୍ଧାର ଯେପରି ସମ୍ପୂର୍ଣ୍ଣ ବିରୁଦ୍ଧ ବସ୍ତୁ, ଏ ଦୁଇଟି ମଧ୍ୟ ସେହିପରି; ତେଣୁ କହିବା ବାହୁଲ୍ୟ ଯେ, ଏହି ଦୁଇଟି ଭିତରୁ କୌଣସିଟିରୁ ଅନ୍ୟର ଉତ୍ପତ୍ତି ସହଜ ନୁହେଁ । ଏହି ମୁଁ ବା ବିଷୟୀ (subject) ଉପରେ ତୁମେ ବା ବିଷୟର (object) ଆରୋପ ହୋଇଛି; ବିଷୟୀ ହିଁ ଏକମାତ୍ର ସତ୍ୟବସ୍ତୁ, ଅପରଟି ଅର୍ଥାତ୍ ବିଷୟ ହିଁ ଆପାତ-ପ୍ରତୀୟମାନ ସତ୍ତା ମାତ୍ର । ଏହାର ବିରୁଦ୍ଧ ମତ, ଅର୍ଥାତ୍ ବିଷୟ ସତ୍ୟ ଓ ବିଷୟୀ ମିଥ୍ୟା—ଏହି ମତ କେବେହେଲେ ପ୍ରମାଣ କରାଯାଇପାରେ ନାହିଁ । ଜଡ଼ ପଦାର୍ଥ ଓ ବହିର୍ଜଗତ ଆତ୍ମାର ହିଁ ଅବସ୍ଥା-ବିଶେଷ ମାତ୍ର । ପ୍ରକୃତ ପକ୍ଷରେ ଏକ ସତ୍ତା ହିଁ ରହିଛି ।

ଆମର ଅନୁଭୂତ ଏହି ଜଗତ୍ ସତ୍ୟ ଓ ମିଥ୍ୟାର ମିଶ୍ରଣରେ ଉତ୍ପନ୍ନ । ଯେଉଁଭଳି ବଳ-ସମାନ୍ତରିକ*ରେ ଦୁଇ ବିଭିନ୍ନମୁଖୀ ବଳ ପ୍ରୟୋଗ ଫଳରେ ଗୋଟିଏ ବସ୍ତୁରେ କର୍ଣ୍ଣାଭିମୁଖୀ ଗତିର ଉତ୍ପତ୍ତି ହୁଏ, ସେହିଭଳି ଏହି ସଂସାର ମଧ୍ୟ ଆମ ଉପରେ ପ୍ରଯୁକ୍ତ ବିଭିନ୍ନ ବିରୁଦ୍ଧ ଶକ୍ତିସମୂହର ଫଳସ୍ୱରୂପ । ଏହି ଜଗତ୍ ବ୍ରହ୍ମସ୍ୱରୂପ ଓ ସତ୍ୟ, କିନ୍ତୁ ଆମେ ଜଗତକୁ ସେଭଳି ଭାବରେ ଦେଖୁ ନାହୁଁ; ଯେଭଳି ଶାମୁକାକୁ ରଜତ ବୋଲି ଭ୍ରମ ହୁଏ, ସେହିଭଳି ଆମମାନଙ୍କର ମଧ୍ୟ ବ୍ରହ୍ମରେ ଜଗଦ୍‌ଭ୍ରମ ହୋଇଛି । ଏହାକୁ ହିଁ କହନ୍ତି 'ଅଧ୍ୟାସ' (ଆରୋପ) । ଉଦାହରଣସ୍ୱରୂପ ଆମେ ଆଗରୁ ଗୋଟିଏ ଦୃଶ୍ୟ ଦେଖିଛୁ, ବର୍ତ୍ତମାନ ତାହାର ହିଁ ସ୍ମରଣ ହେଲା । ଯେଉଁ ସତ୍ତା ଗୋଟିଏ ସତ୍ୟ ବସ୍ତୁର ଅସ୍ତିତ୍ୱ ଉପରେ ନିର୍ଭର କରେ, ତାହାକୁ ହିଁ ଅଧ୍ୟସ୍ତ (ଆରୋପିତ) ସତ୍ତା କୁହାଯାଏ । ସେହି ସମୟ ପାଇଁ ତାହା ସତ୍ୟ ବୋଲି ଜଣା ପଡ଼େ; କିନ୍ତୁ ପ୍ରକୃତ ପକ୍ଷରେ ତାହା ସତ୍ୟ ନୁହେଁ । ଅଥବା ଅନ୍ୟମାନେ ଆରୋପର ଏହିପରି ଦୃଷ୍ଟାନ୍ତ ଦେଇଛନ୍ତି—ଉଷ୍ଣତା ଜଳର ଧର୍ମ ନୁହେଁ, ଅଥଚ ଯେପରି ଜଳକୁ ଆମେ ଉଷ୍ଣ ବୋଲି କଳ୍ପନା କରିଥାଉ । ସୁତରାଂ ଅଧ୍ୟାସର (ଆରୋପର) ଅର୍ଥ—'ଅତସ୍ମିନ୍ ତଦ୍‌ବୁଦ୍ଧିଃ'—ଯେଉଁ ବସ୍ତୁ ଯାହା ନୁହେଁ ତାକୁ ସେଇଆ କହିବା । ଅତଏବ ବୁଝାଯାଉଛି ଯେ, ଆମେମାନେ ଯେତେବେଳେ ଜଗତକୁ ଦେଖୁଛୁ, ସେତେବେଳେ ସତ୍ୟକୁ ହିଁ ଦର୍ଶନ କରୁଛୁ; କିନ୍ତୁ ମଝିରେ ଏକ ଆବରଣ ରହିଛି—ତାହା ଫଳରେ ବିକୃତ ଭାବାପନ୍ନ କରି ଦେଖୁଛୁ ।

---

* Parallelogram of Forces : ଏକ ସାମନ୍ତରିକ କ୍ଷେତ୍ରର ସଂଲଗ୍ନ ବାହୁଦ୍ୱୟ ଯଦି ଦୁଇ ବଳର ତୀବ୍ରତା ଓ ଗତିରେଖାର ସୂଚନା ଦିଏ, ତା'ହେଲେ ତାହାର କର୍ଣ୍ଣଦ୍ୱାରା ଏହି ଦୁଇଟି ବଳର ସମବାୟଜନିତ ଫଳର ତୀବ୍ରତା ଓ ଗତିରେଖା ନିରୂପିତ ହେବ ।

ତୁମେ ନିଜକୁ ବାହାରେ ପ୍ରକ୍ଷେପ ନ କରି କେବେ ହେଲେ ନିଜକୁ ଜାଣିପାରିବ ନାହିଁ । ଭ୍ରାନ୍ତ-ଅବସ୍ଥାରେ ଆମ ଆଗରେ ଥିବା ବସ୍ତୁସମୂହକୁ ଆମେ ସତ୍ୟ ବୋଲି ମନେ କରୁ, ଅଦୃଷ୍ଟ ବସ୍ତୁଗୁଡ଼ିକ କେବେ ହେଲେ ସତ୍ୟ ବୋଲି ଆମର ମନେହୁଏ ନାହିଁ । ଏହିପରି ଭାବରେ ଆମେ ବିଷୟକୁ ବିଷୟୀ ବୋଲି ଭୁଲ୍ କରିଥାଉ । ଆତ୍ମା କିନ୍ତୁ କଦାପି ବିଷୟ ହୁଏ ନାହିଁ । ମନେ ହେଉଛି ଅନ୍ତଃକରଣ ବା ଅନ୍ତର-ଇନ୍ଦ୍ରିୟ ଓ ବହିରିନ୍ଦ୍ରିୟ-ଗୁଡ଼ିକ ତାହାର ହାତର ଯନ୍ତ୍ରସ୍ୱରୂପ । ବିଷୟୀଠାରେ କେତେକ ପରିମାଣରେ ବହିଃ-ପ୍ରକ୍ଷେପ-ଶକ୍ତି (objectifying power) ରହିଛି ତାହାରି ସାହାଯ୍ୟରେ ସେ 'ମୁଁ ଅଛି' ବୋଲି ନିଜକୁ ଜାଣିପାରନ୍ତି; କିନ୍ତୁ ସେ ଅତ୍ମା ବା ବିଷୟୀ ନିଜର ବିଷୟ, ମନ ବା ଇନ୍ଦ୍ରିୟର ବିଷୟ ନୁହନ୍ତି । ତେବେ ଆମେ ଗୋଟିଏ ଭାବକୁ (idea) ଅନ୍ୟ ଏକ ଭାବ ଉପରେ ଆରୋପ କରିପାରୁ—ଯଥା ଆମେ ଯେତେବେଳେ କହୁ 'ଆକାଶ ନୀଳ'—ସେତେବେଳେ ଆକାଶ ଏକ ଭାବ ମାତ୍ର ଏବଂ ନୀଳତ୍ୱ ମଧ୍ୟ ଅନ୍ୟ ଏକ ଭାବ ମାତ୍ର—ଆମେ ନୀଳତ୍ୱ ଭାବକୁ ଆକାଶ ଉପରେ ଆରୋପ ବା ଅଧ୍ୟାସ କରିଥାଉଁ ।

ବିଦ୍ୟା ଓ ଅବିଦ୍ୟା ବା ଜ୍ଞାନ ଓ ଅଜ୍ଞାନ ଏ ଦୁଇକୁ ନେଇ ଜଗତ୍, କିନ୍ତୁ ଆତ୍ମା କେବେ ଅବିଦ୍ୟାଚ୍ଛନ୍ନ ନୁହେଁ । ଆପେକ୍ଷିକ ଜ୍ଞାନ ମଧ୍ୟ ଭଲ, କାରଣ ତାହା ସେହି ଚରମ-ଜ୍ଞାନ-ଆରୋହଣର ସୋପାନ; କିନ୍ତୁ ଇନ୍ଦ୍ରିୟଜ ଜ୍ଞାନ ବା ମାନସିକ ଜ୍ଞାନ, ଏପରି କି, ବେଦ-ପ୍ରମାଣ ନିମିତ୍ତ ଜ୍ଞାନ ମଧ୍ୟ କଦାପି ପାରମାର୍ଥିକ ସତ୍ୟ ହୋଇ ନ ପାରେ, କାରଣ ଏହିସବୁ ଆପେକ୍ଷିକ ଜ୍ଞାନର ସୀମା ଭିତରେ । ପ୍ରଥମେ 'ମୁଁ ଦେହ' ଏହି ଭ୍ରମ ଦୂର କରିଦିଅ, ତା'ହେଲେ ଯଥାର୍ଥ ଜ୍ଞାନର ଆକାଙ୍କ୍ଷା ହେବ । ମାନବିକ ଜ୍ଞାନ, ପାଶବିକ ଜ୍ଞାନର ଉଚ୍ଚତର ଅବସ୍ଥା ମାତ୍ର ।

***

ବେଦର ଏକ ଅଂଶରେ କର୍ମକାଣ୍ଡ—ନାନାବିଧ ଅନୁଷ୍ଠାନପଦ୍ଧତି, ଯାଗ-ଯଜ୍ଞ ପ୍ରଭୃତି ସମ୍ପର୍କରେ ଉପଦେଶ ରହିଛି । ଅପରାଂଶରେ ବ୍ରହ୍ମଜ୍ଞାନ ଓ ଯଥାର୍ଥ ଆଧ୍ୟାତ୍ମିକ ଧର୍ମ-ସମ୍ପର୍କରେ ବର୍ଣ୍ଣନା ରହିଛି । ବେଦର ଏହି ଭାବରେ ଆତ୍ମତତ୍ତ୍ୱ ସମ୍ବନ୍ଧୀୟ ଉପଦେଶ ଦିଆ ଯାଇଛି ଓ ସେଥିପାଇଁ ବେଦର ଏହି ଅଂଶର ଜ୍ଞାନ ଯଥାର୍ଥ ପାରମାର୍ଥିକ ଜ୍ଞାନର ଅତି ସମୀପବର୍ତ୍ତୀ; ସେହି ଅନନ୍ତ ପୂର୍ଣ୍ଣ ପରଂବ୍ରହ୍ମଜ୍ଞାନ କୌଣସି ଶାସ୍ତ୍ର ଉପରେ ବା ଅନ୍ୟ କିଛି ଉପରେ ନିର୍ଭର କରେ ନାହିଁ; ଏହି ଜ୍ଞାନ ସ୍ୱୟଂ ପୂର୍ଣ୍ଣସ୍ୱରୂପ । ବହୁ ଶାସ୍ତ୍ରପାଠଦ୍ୱାରା ମଧ୍ୟ ଏହି ଜ୍ଞାନ ଲାଭ ହୁଏ ନାହିଁ; ଏହା କୌଣସି ମତବିଶେଷ ନୁହେଁ, ଏହି ଜ୍ଞାନ ଅପରୋକ୍ଷାନୁଭୂତି ସ୍ୱରୂପ । ଦର୍ପଣ ଉପରେ ଯେଉଁ ମଇଳା ଜମି ରହିଛି, ତାକୁ ପରିଷ୍କାର କରିଦିଅ । ନିଜ ମନକୁ ପବିତ୍ର କର, ତାହାହେଲେ ଦପ୍‌କରି ତୁମର ଏହି ଜ୍ଞାନ ଉଦିତ ହେବ ଯେ, ତୁମେ ବ୍ରହ୍ମ । କେବଳ ବ୍ରହ୍ମ ଅଛନ୍ତି—ଜନ୍ମ ନାହିଁ, ମୃତ୍ୟୁ ନାହିଁ, ଦୁଃଖ ନାହିଁ, କଷ୍ଟ ନାହିଁ, ନରହତ୍ୟା ନାହିଁ ଓ କୌଣସି ପରିଣାମ ନାହିଁ, ଭଲ ନାହିଁ, ମନ୍ଦ ମଧ୍ୟ ନାହିଁ, ସବୁ କିଛିରେ ହିଁ ଆମେ ରଜ୍ଜୁକୁ ସର୍ପ ବୋଲି ଭ୍ରମ କରୁଛୁ—ଭ୍ରମ ଆମର । ଆମେ ଯେତେ-ବେଳେ ଭଗବାନଙ୍କୁ ଭଲ ପାଉ ଓ ସେ ଆମକୁ ଭଲ ପାଆନ୍ତି, କେବଳ ସେତେବେଳେ

ହିଁ ଆମେ ଜଗତର ମଙ୍ଗଳ କରିପାରୁ । ହତ୍ୟାକାରୀ ବ୍ୟକ୍ତି ମଧ୍ୟ ବ୍ରହ୍ମସ୍ୱରୂପ—ତାହା ଉପରେ ହତ୍ୟାକାରୀ ରୂପର ଯେଉଁ ଆବରଣ ରହିଛି, ତାହା କେବଳ ଅଧ୍ୟସ୍ତ ବା ଆରୋପିତ ହୋଇଛି ମାତ୍ର । ତାହାକୁ ଧୀରେ ଧୀରେ ଏହି ସତ୍ୟ ଜଣାଇ ଦିଅ ।

ଆତ୍ମାରେ କୌଣସି ଜାତିଭେଦ ନାହିଁ; 'ଅଛି'-ଭାବ ହିଁ ବ୍ରହ୍ମ । ସେହିପରି 'ଆତ୍ମାର ଜୀବନ ବା ମରଣ ବା କୌଣସି ପ୍ରକାର ଗତି ବା ଗୁଣ ରହିଛି' ଏହା ଭାବିବା ଭୁଲ । ଆତ୍ମାର କଦାପି ପରିଣାମ ହୁଏ ନାହିଁ; ଆତ୍ମା କେବେ ଯାଏ ନାହିଁ ବା ଆସେ ନାହିଁ । ଆତ୍ମା ନିଜର ସମସ୍ତ ପ୍ରକାଶସମୂହର ଅନନ୍ତସାକ୍ଷୀସ୍ୱରୂପ; କିନ୍ତୁ ଆମେ ତାକୁ ସେହି ପ୍ରକାଶ ବୋଲି ମନେକରୁଛୁଁ । ଏହି ଅନାଦି ଅନନ୍ତ ଭ୍ରମ ଚିରକାଳ ଧରି ଚାଲିଛି । ତେବେ ବେଦକୁ ଆମର ନିକଟକୁ ଓହ୍ଲାଇ ଆସି ଆମକୁ ଉପଦେଶ ଦେବାକୁ ପଡ଼ୁଛି, କାରଣ ବେଦ ଯଦି ଉଚ୍ଚତମ ସତ୍ୟକୁ ଉଚ୍ଚତମ ଭାବ ଓ ଭାଷାରେ ଆମ ନିକଟରେ ପ୍ରକାଶ କରନ୍ତେ, ଆମେ ତାହା ବୁଝିପାରନ୍ତୁ ନାହିଁ ।

ସ୍ୱର୍ଗ ଆମମାନଙ୍କର ବାସନା-ସୃଷ୍ଟ କୁସଂସ୍କାର ମାତ୍ର ଓ ବାସନା ଚିରକାଳ ହିଁ ବନ୍ଧନ ଓ ଅବନତିର ଦ୍ୱାରସ୍ୱରୂପ । ବ୍ରହ୍ମଦୃଷ୍ଟି ବ୍ୟତୀତ ଅନ୍ୟ କୌଣସି ଭାବରେ କୌଣସି ବସ୍ତୁକୁ ଦେଖ ନାହିଁ । ତାହା ଯଦି କର, ତା'ହେଲେ ଅନ୍ୟାୟ ବା ମନ୍ଦ ଦେଖିବ, କାରଣ ଆମେ ଯେଉଁ ବସ୍ତୁକୁ ଦେଖିବାକୁ ପାଉ, ତା' ଉପରେ ଏକ ଭ୍ରମାତ୍ମକ ଆବରଣ ପ୍ରକ୍ଷେପ କରୁ, ତେଣୁ ମନ୍ଦ ଦେଖିବାକୁ ପାଉ । ଏହିସବୁ ଭ୍ରମରୁ ମୁକ୍ତ ହୁଅ ଓ ପରମାନନ୍ଦ ଉପଭୋଗ କର । ସବୁପ୍ରକାର ଭ୍ରମରୁ ମୁକ୍ତ ହେବା ହିଁ ମୁକ୍ତି ।

ଗୋଟିଏ ହିସାବରେ ସବୁ ମନୁଷ୍ୟ ବ୍ରହ୍ମକୁ ଜାଣନ୍ତି, କାରଣ ସେମାନେ ଜାଣନ୍ତି 'ମୁଁ ଅଛି', କିନ୍ତୁ ମନୁଷ୍ୟ ନିଜର ଯଥାର୍ଥ ସ୍ୱରୂପ ଜାଣେ ନାହିଁ । ଆମେ ସମସ୍ତେ ଜାଣୁ ଯେ, ଆମେ ଅଛୁ; କିନ୍ତୁ କିପରି ଅଛୁ ତାହା ଜାଣୁନା । ଅଦ୍ୱୈତବାଦ ବ୍ୟତୀତ ଜଗତର ଅନ୍ୟାନ୍ୟ ନିମ୍ନତର ବ୍ୟାଖ୍ୟା ଆଂଶିକ ସତ୍ୟ ମାତ୍ର; କିନ୍ତୁ ବେଦର ତତ୍ତ୍ୱ ଏହି ଯେ, ଆମ ପ୍ରତ୍ୟେକଙ୍କ ଭିତରେ ଯେଉଁ ଆତ୍ମା ରହିଛି ତାହା ବ୍ରହ୍ମସ୍ୱରୂପ । ଜଗତ୍-ପ୍ରପଞ୍ଚ ମଧ୍ୟରେ ସବୁ କିଛି ଜନ୍ମ, ମରଣ, ବୃଦ୍ଧି, ଉତ୍ପତ୍ତି, ସ୍ଥିତି ଓ ପ୍ରଳୟଦ୍ୱାରା ସୀମାବଦ୍ଧ । ଆମର ଅପରୋକ୍ଷାନୁଭୂତି ବେଦର ମଧ୍ୟ ଅତୀତ, କାରଣ ବେଦର ପ୍ରାମାଣ୍ୟ ମଧ୍ୟ ଏହି ଅପରୋକ୍ଷାନୁଭୂତି ଉପରେ ନିର୍ଭର କରେ । ସର୍ବୋଚ୍ଚ ବେଦାନ୍ତ ହେଉଛି ପ୍ରପଞ୍ଚାତୀତ ସତ୍ତାର ତତ୍ତ୍ୱଜ୍ଞାନ ।

ସୃଷ୍ଟିର ଆଦି ଅଛି ବୋଲି କୁହାଗଲେ ସବୁ ପ୍ରକାର ଦାର୍ଶନିକ ବିଚାରମୂଳରେ କୁଠାରାଘାତ କରାଗଲା ବୋଲି କୁହାଯିବ ।

ଜଗତ୍-ପ୍ରପଞ୍ଚାନ୍ତର୍ଗତ ଅବ୍ୟକ୍ତ ଓ ବ୍ୟକ୍ତ ଶକ୍ତିକୁ ମାୟା କୁହାଯାଏ । ଯେତେବେଳ-ଯାଏ ସେହି ମାତୃସ୍ୱରୂପିଣୀ ମହାମାୟା ଆମକୁ ଛାଡ଼ିବେ ନାହିଁ, ସେତେବେଳଯାଏ ଆମେ ମୁକ୍ତ ହୋଇପାରିବୁ ନାହିଁ ।

ପୃଥିବୀ ଆମର ସମ୍ଭୋଗ ନିମନ୍ତେ ପଡ଼ି ରହିଛି; କିନ୍ତୁ କେବେହେଲେ କୌଣସି କିଛିର ଅଭାବ ବୋଧ କର ନାହିଁ । ଅଭାବ ବୋଧ କରିବା ଦୁର୍ବଳତା, ଅଭାବବୋଧ ହିଁ ଆମ-

ମାନଙ୍କୁ ଭିକାରି କରିଦିଏ, କିନ୍ତୁ ଆମେ କଅଣ ଭିକାରି ? ଆମେ ରାଜପୁତ୍ର !

**ରବିବାର ୭ ଜୁଲାଇ, ପ୍ରାତଃକାଳ**

ଅନନ୍ତ ଜଗତ୍-ପ୍ରପଞ୍ଚକୁ ଯେତେଭାଗରେ ବିଭକ୍ତ କରାଯାଉନା କାହିଁକି, ତାହା ଅନନ୍ତ ହୋଇ ରହିବ ଓ ତାହାର ପ୍ରତ୍ୟେକ ଭାଗ ମଧ୍ୟ ଅନନ୍ତ ।

ପରିଣାମୀ ଓ ଅପରିଣାମୀ, ବ୍ୟକ୍ତ ଓ ଅବ୍ୟକ୍ତ—ଉଭୟ ଅବସ୍ଥାରେ ବ୍ରହ୍ମ ଏକ । ଜ୍ଞାତା ଓ ଜ୍ଞେୟକୁ ଏକ ବୋଲି ଜାଣ । ଜ୍ଞାତା, ଜ୍ଞାନ ଓ ଜ୍ଞେୟ—ଏହି ତ୍ରୟୀ ଜଗତ୍ ପ୍ରପଞ୍ଚରୂପରେ ପ୍ରକାଶ ପାଉଛି । ଯୋଗୀ ଧ୍ୟାନବଳରେ ଯେଉଁ ଈଶ୍ୱରଙ୍କ ଦର୍ଶନ କରନ୍ତି, ତାହା ତାଙ୍କ ନିଜ ଆତ୍ମାଶକ୍ତିରେ ହିଁ ଦେଖିଥାନ୍ତି । ଆମେ ଯାହାକୁ ସ୍ୱଭାବ ବା ଅଦୃଷ୍ଟ ବୋଲି କହୁ, ତାହା କେବଳ ଈଶ୍ୱରେଚ୍ଛା ମାତ୍ର । ଯେତେଦିନ ଯାଏ ବନ୍ଧନ ଥିବ, ସେତେଦିନ ଯାଏ ଭୋଗସୁଖ ଖୋଜା ଚାଲିଥିବ । ଅପୂର୍ଣ୍ଣ ଥିବାଯାଏ ଭୋଗ ସମ୍ଭବ, କାରଣ ଭୋଗର ଅର୍ଥ ଅପୂର୍ଣ୍ଣ ବାସନାର ପରିପୂର୍ତ୍ତି । ଜୀବାତ୍ମା ପ୍ରକୃତିକୁ ସମ୍ଭୋଗ କରିଥାଏ । ପ୍ରକୃତି, ଜୀବାତ୍ମା ଓ ଈଶ୍ୱର ଏହି ସବୁର ଅନ୍ତର୍ନିହିତ ସତ୍ତା ହେଉଛନ୍ତି ବ୍ରହ୍ମ; କିନ୍ତୁ ଆମେ ତାହାକୁ ପ୍ରକାଶ ନ କରିବାଯାଏ ତାଙ୍କୁ ଦେଖିପାରୁ ନା । ଘର୍ଷଣଦ୍ୱାରା ଯେପରି ଅଗ୍ନି ଜାତ କରାଯାଇପାରେ, ସେହିପରି ମନ୍ଥନଦ୍ୱାରା ମଧ୍ୟ ବ୍ରହ୍ମର ପ୍ରକାଶ ସମ୍ଭବ ହୋଇପାରେ । ଦେହକୁ ନିମ୍ନ ଅରଣି, ପ୍ରଣବ ବା ଓଁ କାରକୁ ଉତ୍ତରାରଣି ବୋଲି କଳ୍ପନା କର ଓ ଧ୍ୟାନ ଯେପରି ମନ୍ଥନସ୍ୱରୂପ ।* ତାହେଲେ ଆତ୍ମା ମଧ୍ୟରେ ଯେଉଁ ବ୍ରହ୍ମଜ୍ଞାନସ୍ୱରୂପ ଅଗ୍ନି ରହିଛି ତାହା ପ୍ରକାଶିତ ହୋଇ ପାରିବ । ତପସ୍ୟାଦ୍ୱାରା ଏହା କରିବାକୁ ଚେଷ୍ଟା କର । ଦେହକୁ ସରଳଭାବରେ ରଖି ଇନ୍ଦ୍ରିୟଗୁଡ଼ିକୁ ମନରେ ଆହୁତି ଦିଅ । ଇନ୍ଦ୍ରିୟ-କେନ୍ଦ୍ରଗୁଡ଼ିକ ଭିତରେ ରହିଛି ଓ ତାହାର ଯନ୍ତ୍ର ବା ଗୋଲକଗୁଡ଼ିକ ବାହାରେ ରହିଛି । ସୁତରାଂ ସେଗୁଡ଼ିକୁ ଜୋର୍‌କରି ମନ ମଧ୍ୟରେ ପ୍ରବେଶ କରାଅ । ତା'ପରେ ଧାରଣା ସାହାଯ୍ୟରେ ମନକୁ ଧ୍ୟାନରେ ସ୍ଥିର କର । ଦୁଧର ସବୁ ଅଂଶରେ ଯେପରି ଘିଅ ରହିଛି, ସେହିପରି ଜଗତରେ ସର୍ବତ୍ର ବ୍ରହ୍ମ ବର୍ତ୍ତମାନ; କିନ୍ତୁ ମନ୍ଥନଦ୍ୱାରା ସେ ଏକ ବିଶେଷ ସ୍ଥାନରେ ପ୍ରକାଶ ପାଆନ୍ତି । ମନ୍ଥନ କଲେ ଦୁଧରୁ ଯେପରି ଲହୁଣୀ ବାହାରେ ସେହିପରି ଧ୍ୟାନଦ୍ୱାରା ଆତ୍ମା ମଧ୍ୟରେ ବ୍ରହ୍ମର ସାକ୍ଷାତ୍‌କାର ଘଟିଥାଏ ।**

ସମସ୍ତ ହିନ୍ଦୁ-ଦର୍ଶନରେ କୁହାଯାଇଛି, ଆମର ପଞ୍ଚ-ଇନ୍ଦ୍ରିୟ ବ୍ୟତୀତ ଏକ ଷଷ୍ଠ-ଇନ୍ଦ୍ରିୟ ରହିଛି । ତାହାର ସାହାଯ୍ୟରେ ଅତୀନ୍ଦ୍ରିୟ ଜ୍ଞାନ ଲାଭ ହୋଇଥାଏ । ***

ଜଗତ୍ ଏକ ଅବିରାମ ଗତିସ୍ୱରୂପ, ଓ ଘର୍ଷଣ (friction) ଦ୍ୱାରା ହିଁ ସବୁ କିଛିର

---

* ସ୍ୱଦେହମରଣିଂ କୃତ୍ୱା ପ୍ରଣବଂ ଚୋତ୍ତରାରଣିମ୍ ।
ଧ୍ୟାନନିର୍ମଥନାଭ୍ୟାସାଦେବଂ ପଶ୍ୟେନ୍ନିଗୂଢ଼ବତ୍ ॥—ଶ୍ୱେତାଶ୍ୱ. ଉପ., ୧।୧୪

** ଘୃତମିବ ପୟସି ନିଗୂଢ଼ଂ ଭୂତେ ଭୂତେ ଚ ବସତି ବିଜ୍ଞାନମ୍ ।
ସତତଂ ମନ୍ଥୟିତବ୍ୟଂ ମନସା ମନ୍ଥାନଭୂତେନ ॥ ବ୍ରହ୍ମବିନ୍ଦୁ ଉପନିଷଦ୍, ୨୦

ବିନାଶ ହେବ, ତାହାର କିଛିଦିନ ପରେ ପୁନର୍ବାର ସବୁ ଆରମ୍ଭ ହେବ ।

ଯେତେଦିନ ଧରି 'ଦିଗମ୍ବର' ମନୁଷ୍ୟକୁ ବେଢ଼ି ରହିଥାଏ, ଅର୍ଥାତ୍ ସେ ଯେତେଦିନ ଧରି ନିଜକୁ ଦେହ ସହିତ ଅଭିନ୍ନ ବୋଲି ମନେକରେ, ସେତେଦିନଯାଏ ସେ ଈଶ୍ୱରଙ୍କୁ ଦର୍ଶନ କରିପାରେ ନାହିଁ ।

**ରବିବାର, ଅପରାହ୍ଣ**

ଭାରତରେ ୬ଟି ଦର୍ଶନକୁ ଆସ୍ତିକ ଦର୍ଶନ କୁହାଯାଏ, କାରଣ ସେମାନେ ବେଦରେ ବିଶ୍ୱାସୀ ।

ବ୍ୟାସଙ୍କ ଦର୍ଶନ ବିଶେଷଭାବରେ ଉପନିଷଦ୍ ଉପରେ ପ୍ରତିଷ୍ଠିତ । ବୀଜଗଣିତ-ଶାସ୍ତ୍ରରେ କେତୋଟି ଅକ୍ଷରସାହାଯ୍ୟରେ ଅତି ସଂକ୍ଷେପରେ ଯେଉଁଭଳି ଭାବ ପ୍ରକାଶ କରାଯାଏ, ସେ ସେହିପରି ସୂତ୍ରାକାରରେ ଏହା ଲେଖିଥିଲେ—ଏଥିରେ କର୍ତ୍ତା କ୍ରିୟା ବିଶେଷ କିଛି ନାହିଁ । ବ୍ୟାସସୂତ୍ର ଏଭଳି ସଂକ୍ଷେପରେ ରଚିତ ହୋଇଥିବାରୁ ତା'ର ଅର୍ଥ ବୁଝିବାରେ ଏଭଳି ଗୋଳମାଳ ହେଲା ଯେ, ସେହି ଗୋଟିଏ ସୂତ୍ରରୁ ଅଦ୍ୱୈତବାଦ, ବିଶିଷ୍ଟାଦ୍ୱୈତବାଦ ଓ ଅଦ୍ୱୈତବାଦ ବା 'ବେଦାନ୍ତ-କେଶରୀ'ର ସୃଷ୍ଟି ହେଲା । ଏହିସବୁ ବିଭିନ୍ନ ମତର ପ୍ରସିଦ୍ଧ ଭାଷ୍ୟକାରମାନେ ବେଦର ଅକ୍ଷରରାଶିକୁ ସେମାନଙ୍କର ଦର୍ଶନ ସହିତ ଖାପ ଖୁଆଇବା ଉଦ୍ଦେଶ୍ୟରେ ବେଳେ ବେଳେ ଜାଣିଶୁଣି ମିଥ୍ୟାବାଦୀ ହୋଇଛନ୍ତି ।

ଉପନିଷଦ୍‌ରେ କୌଣସି ବ୍ୟକ୍ତିବିଶେଷର କାର୍ଯ୍ୟକଳାପର ଇତିହାସ ଅତି ଅଳ୍ପ ମିଳିଥାଏ; କିନ୍ତୁ ଅନ୍ୟସବୁ ଶାସ୍ତ୍ରରେ କୌଣସି ବ୍ୟକ୍ତିବିଶେଷର ବିଶେଷଭାବରେ ଉଲ୍ଲେଖ ରହିଛି ।

ବେଦରେ କେବଳ ଦାର୍ଶନିକ ତତ୍ତ୍ୱର ଆଲୋଚନା ହିଁ ରହିଛି । ଦର୍ଶନ-ବର୍ଜିତ ଧର୍ମ କୁସଂସ୍କାରରେ ଯାଇ ପହଞ୍ଚିଥାଏ । ପୁଣି ଧର୍ମବର୍ଜିତ ଦର୍ଶନ କେବଳ ନାସ୍ତିକତାରେ ପରିଣତ ହୋଇଥାଏ ।

ବିଶିଷ୍ଟାଦ୍ୱୈତବାଦ ଅର୍ଥ ଅଦ୍ୱୈତବାଦ, କିନ୍ତୁ ବିଶେଷଯୁକ୍ତ । ତାହାର ବ୍ୟାଖ୍ୟାକାର ରାମାନୁଜ । ସେ କହନ୍ତି, "ବେଦରୂପିକ କ୍ଷୀରସମୁଦ୍ର ମନ୍ଥନ କରି ବ୍ୟାସ ମାନବଜାତିର ମଙ୍ଗଳ ପାଇଁ ଏହି ବେଦାନ୍ତଦର୍ଶନ-ସ୍ୱରୂପ ଲହୁଣୀ ବାହାର କରିଛନ୍ତି ।" ସେ ପୁଣି କହିଛନ୍ତି, "ଜଗତ୍‌ପ୍ରଭୁ ବ୍ରହ୍ମ ଅଶେଷକଲ୍ୟାଣଗୁଣସମନ୍ୱିତ ପୁରୁଷୋତ୍ତମ ।" ମଧ୍ୱ ପୂରାପୂରି ଦ୍ୱୈତବାଦୀ । ସେ କହନ୍ତି, ସ୍ତ୍ରୀ-ଲୋକଙ୍କର ମଧ୍ୟ ବେଦପାଠ କରିବାର ଅଧିକାର ରହିଛି । ସେ ପ୍ରଧାନତଃ ପୁରାଣରୁ ତାଙ୍କ ମତ ପ୍ରତିଷ୍ଠା ପାଇଁ ଶ୍ଳୋକ ଉଦ୍ଧାର କରିଛନ୍ତି । ସେ କହନ୍ତି, ବ୍ରହ୍ମ ଅର୍ଥ ବିଷ୍ଣୁ—ଶିବ ନୁହନ୍ତି, କାରଣ ବିଷ୍ଣୁ ଭିନ୍ନ ଆଉ କେହି ମୁକ୍ତିଦାତା ନୁହନ୍ତି ।

**ସୋମବାର, ୮ ଜୁଲାଇ**

ମଧ୍ୱାଚାର୍ଯ୍ୟଙ୍କ ବ୍ୟାଖ୍ୟା ଭିତରେ ବିଚାରର ସ୍ଥାନ ନାହିଁ । ସେ ଶାସ୍ତ୍ରପ୍ରମାଣ ଦ୍ୱାରା ହିଁ ସବୁ ଗ୍ରହଣ କରିଛନ୍ତି ।

ରାମାନୁଜ କହନ୍ତି, ବେଦ ହିଁ ସବୁଠାରୁ ବଳି ପବିତ୍ର ପଠନୀୟ ଗ୍ରନ୍ଥ । ତ୍ରୈବର୍ଣ୍ଣିକ ଅର୍ଥାତ୍ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ଏହି ତିନି ଉଚ୍ଚ ବର୍ଣ୍ଣର ସନ୍ତାନମାନେ ଯଜ୍ଞୋପବୀତ ଗ୍ରହଣ ପରେ ଅଷ୍ଟମ, ଦଶମ ବା ଏକାଦଶ ବର୍ଷ ବୟସରେ ବେଦାଧ୍ୟୟନ ଆରମ୍ଭ କରିବା ଉଚିତ । ବେଦାଧ୍ୟୟନ ଅର୍ଥ ଗୁରୁଗୃହକୁ ଯାଇ ନିୟମିତ ସ୍ୱର ଓ ଉଚ୍ଚାରଣ ସହିତ ବେଦର ଶବ୍ଦରାଶି ମୂଳରୁ ଶେଷ ପର୍ଯ୍ୟନ୍ତ କଣ୍ଠସ୍ଥ କରିବା ।

ଜପ ଅର୍ଥ ଭଗବାନଙ୍କର ପବିତ୍ର ନାମ ବାରମ୍ବାର ଉଚ୍ଚାରଣ; ଏହି ଜପ କରୁ କରୁ ସାଧକ କ୍ରମେ ସେହି ଅନନ୍ତ ରୂପରେ ଉପନୀତ ହୁଅନ୍ତି । ଯାଗଯଜ୍ଞାଦି ଯେପରି ନୌକା ବା ଭେଳାସ୍ୱରୂପ । ବ୍ରହ୍ମକୁ ଜାଣିବାକୁ ହେଲେ ଏହି ଯାଗଯଜ୍ଞ ଛଡ଼ା ଆଉ କିଛି ଦରକାର । ବ୍ରହ୍ମଜ୍ଞାନ ହିଁ ମୁକ୍ତି । ଅଜ୍ଞାନର ବିନାଶ ହିଁ ମୁକ୍ତି । ବ୍ରହ୍ମଜ୍ଞାନଦ୍ୱାରା ହିଁ ଏହି ଅଜ୍ଞାନର ବିନାଶ ଘଟେ । ବେଦାନ୍ତର ତାତ୍ପର୍ଯ୍ୟ ଜାଣିବା ଲାଗି ଯେ ଏହିସବୁ ଯାଗଯଜ୍ଞ କରିବାକୁ ହେବ, ଏପରି କିଛି କଥା ନାହିଁ; କେବଳ ଓଁକାର ଜପ କଲେ ହିଁ ଯଥେଷ୍ଟ ।

ଭେଦଦର୍ଶନ ହିଁ ସମସ୍ତ ଦୁଃଖର କାରଣ, ଓ ଅଜ୍ଞାନ ହିଁ ଏହି ଭେଦ-ଦର୍ଶନର କାରଣ । ଏହି କାରଣରୁ ଯାଗଯଜ୍ଞାଦି ଅନୁଷ୍ଠାନର କୌଣସି ଆବଶ୍ୟକତା ନାହିଁ । କାରଣ ତାହାଦ୍ୱାରା ଭେଦଜ୍ଞାନ ଆହୁରି ବଢ଼ିଯାଏ । ଏହି ଯାଗଯଜ୍ଞାଦିର ଉଦ୍ଦେଶ୍ୟ କିଛି (ଭୋଗସୁଖ) ଲାଭ କରିବା ଅଥବା କୌଣସି କିଛି (ଦୁଃଖ)ରୁ ଉଦ୍ଧାର ପାଇବା ।

ବ୍ରହ୍ମ ନିଷ୍କ୍ରିୟ ଆତ୍ମା ହିଁ ବ୍ରହ୍ମ, ଓ ଆମେ ସେହି ଆତ୍ମସ୍ୱରୂପ—ଏହି ଧରଣର ଜ୍ଞାନ-ଦ୍ୱାରା ସବୁ ଭ୍ରାନ୍ତି ଦୂର ହୁଏ । ପ୍ରଥମେ ଏହି ତତ୍ତ୍ୱ ଶୁଣିବାକୁ ହେବ, ପରେ ମନନ ଅର୍ଥାତ୍ ବିଚାରଦ୍ୱାରା ଧାରଣା କରିବାକୁ ହେବ, ଅବଶେଷରେ ପ୍ରତ୍ୟକ୍ଷ ଉପଲବ୍ଧି କରିବାକୁ ହେବ । ମନନ ଅର୍ଥ ବିଚାର କରିବା—ବିଚାରଦ୍ୱାରା ଯୁକ୍ତି-ତର୍କଦ୍ୱାରା ଏହି ଜ୍ଞାନ ନିଜ ଭିତରେ ପ୍ରତିଷ୍ଠିତ କରିବା । ପ୍ରତ୍ୟକ୍ଷାନୁଭୂତି ଓ ସାକ୍ଷାତ୍କାର ଅର୍ଥ ସର୍ବଦା ଚିନ୍ତା ବା ଧ୍ୟାନଦ୍ୱାରା ତାହାକୁ ଆମ ଜୀବନର ଅଙ୍ଗୀଭୂତ କରି ପକାଇବା । ଏହି ଅବିରାମ ଚିନ୍ତା ବା ଧ୍ୟାନ ଯେପରି ଗୋଟିଏ ପାତ୍ରରୁ ଅପର ପାତ୍ରରେ ପ୍ରକ୍ଷିପ୍ତ ଅବିଚ୍ଛିନ୍ନ ତୈଳଧାରା ପରି । ଧ୍ୟାନ ମନକୁ ଦିନରାତି ଏହି ଭାବ ମଧ୍ୟରେ ରଖିଥାଏ ଓ ତାହାରଦ୍ୱାରା ଆମକୁ ମୁକ୍ତିଲାଭ କରିବାରେ ସାହାଯ୍ୟ କରେ । ସର୍ବଦା—'ସୋଽହମ୍' 'ସୋଽହମ୍' ଏହି ଚିନ୍ତା କର—ଏ ପ୍ରକାର ଚିନ୍ତା ମୁକ୍ତିର ନିକଟବର୍ତ୍ତୀ । ଦିନରାତି କହ—'ସୋଽହମ୍' 'ସୋଽହମ୍' । ଏଭଳି ଚିନ୍ତାଫଳରେ ଅପରୋକ୍ଷାନୁଭୂତିଲାଭ ସମ୍ଭବ ହେବ । ଭଗବାନଙ୍କୁ ଏଭଳି ତନ୍ମୟଭାବରେ ସର୍ବଦା ସ୍ମରଣ କରିବାର ନାମ ହିଁ ଭକ୍ତି ।

ସବୁ ପ୍ରକାର ଶୁଭ କାର୍ଯ୍ୟ ଏହି ଭକ୍ତିଲାଭ କରିବାରେ ଗୌଣଭାବରେ ସାହାଯ୍ୟ କରିଥାଏ; ଶୁଭଚିନ୍ତା ଓ ଶୁଭକାର୍ଯ୍ୟ ଅଶୁଭଚିନ୍ତା ଓ ଅଶୁଭକାର୍ଯ୍ୟ ଅପେକ୍ଷା କମ୍ ଭେଦ-ଜ୍ଞାନ ସୃଷ୍ଟି କରେ; ସୁତରାଂ ଏସବୁ ଗୌଣଭାବରେ ମୁକ୍ତି ଆଡକୁ ଆଗେଇ ନିଏ । କର୍ମ କର; କିନ୍ତୁ କର୍ମଫଳ ଭଗବାନଙ୍କୁ ଅର୍ପଣ କର । କେବଳ ଜ୍ଞାନଦ୍ୱାରା ହିଁ ପୂର୍ଣ୍ଣତା ବା ସିଦ୍ଧାବସ୍ଥା ଲାଭ ହୁଏ । ଯେ ଭକ୍ତିପୂର୍ବକ ସତ୍ୟସ୍ୱରୂପ ଭଗବାନଙ୍କୁ ସାଧନା କରେ, ତା'

ଆଗରେ ସେହି ସତ୍ୟସ୍ୱରୂପ ଭଗବାନ ପ୍ରକାଶିତ ହୁଅନ୍ତି । ***

ଆମେ ଯେପରି ପ୍ରଦୀପ-ସ୍ୱରୂପ, ଓ ଆମେ ଯାହାକୁ ଜୀବନ କହୁଁ ତାହା ଏହି ପ୍ରଦୀପର ଶିଖାସ୍ୱରୂପ । ଯେତେବେଳେ ଅମ୍ଳଜାନ ଶେଷ ହୋଇଯିବ, ଆଲୁଅ ମଧ୍ୟ ଲିଭିଯିବ । ଆମେ କେବଳ ପ୍ରଦୀପକୁ ପରିଷ୍କାର ରଖିପାରୁଁ । ଜୀବନ କେତେକ ଜିନିଷର ମିଶ୍ରଣସ୍ୱରୂପ, ଏହା ଏକ କାର୍ଯ୍ୟସ୍ୱରୂପ, ସୁତରାଂ ତାହା ନିଶ୍ଚୟ ତାହାର ଉପାଦାନକାରଣଗୁଡ଼ିକ ଭିତରେ ଲୀନ ହୋଇଯିବ ।

**ମଙ୍ଗଳବାର, ୯ ଜୁଲାଇ**

ଅତ୍ମା ହିସାବରେ ମନୁଷ୍ୟ ପ୍ରକୃତରେ ମୁକ୍ତ; କିନ୍ତୁ ମଣିଷଭାବରେ ସେ ବଦ୍ଧ, ପ୍ରତ୍ୟେକ ଭୌତିକ ଅବସ୍ଥାଦ୍ୱାରା ସେ ପରିଣାମ ଲାଭ କରୁଛି । ମନୁଷ୍ୟ ହିସାବରେ ତାକୁ ଏକ ଯନ୍ତ୍ରବିଶେଷ କୁହାଯାଇପାରେ, କେବଳ ତା' ଭିତରେ ଏକ ମୁକ୍ତ ବା ସ୍ୱାଧୀନତା-ଭାବ ରହିଛି; କିନ୍ତୁ ପୃଥିବୀର ସବୁ ଶରୀର ମଧ୍ୟରେ ଏହି ମନୁଷ୍ୟ-ଶରୀର ହିଁ ସର୍ବଶ୍ରେଷ୍ଠ ଶରୀର ଓ ମନ ଭିତରେ ମନୁଷ୍ୟମନ ହିଁ ସର୍ବଶ୍ରେଷ୍ଠ । ଯେତେବେଳେ ମନୁଷ୍ୟ ଆତ୍ମୋପଲବ୍ଧି କରେ—ସେତେବେଳେ ସେ ଆବଶ୍ୟକ ଅନୁଯାୟୀ ଯେକୌଣସି ଶରୀର ଧାରଣ କରିପାରେ; ସେତେବେଳେ ସେ ସବୁ ନିୟମର ଊର୍ଦ୍ଧ୍ୱରେ । ଏହା ପ୍ରଥମତଃ ଗୋଟିଏ ଉକ୍ତି ମାତ୍ର; ଏହାକୁ ପ୍ରମାଣ କରି ଦେଖିବାକୁ ପଡ଼ିବ । ପ୍ରତ୍ୟେକ ବ୍ୟକ୍ତିକୁ ତା'ର କାର୍ଯ୍ୟରେ ଏହା ପ୍ରମାଣ କରିବାକୁ ହେବ; ଆମେ ନିଜ ମନକୁ ବୁଝାଇପାରୁ, କିନ୍ତୁ ଅନ୍ୟର ମନକୁ ବୁଝାଇ ପାରୁ ନାହିଁ । ଧର୍ମ-ବିଜ୍ଞାନ ମଧ୍ୟରୁ ଏକମାତ୍ର ରାଜଯୋଗକୁ ହିଁ ପ୍ରମାଣ କରାଯାଇପାରେ । ମୁଁ ନିଜେ ଯାହା ପ୍ରତ୍ୟକ୍ଷ ଉପଲବ୍ଧି କରି ଠିକ୍ ବୋଲି ଜାଣିଛି, କେବଳ ତାହା ହିଁ ଶିକ୍ଷା ଦେଇଥାଏ । ବିଚାରଶକ୍ତିର ସମ୍ପୂର୍ଣ୍ଣ ବିକାଶପ୍ରାପ୍ତ ଅବସ୍ଥା ହିଁ ପ୍ରାତିଭ ବା ଅପରୋକ୍ଷ ଜ୍ଞାନ; କିନ୍ତୁ ତାହା କେବେହେଲେ ଯୁକ୍ତିବିରୋଧୀ ହୋଇ ନ ପାରେ ।

କର୍ମଦ୍ୱାରା ଚିତ୍ତ ଶୁଦ୍ଧ ହୁଏ, ତେଣୁ କର୍ମ ବିଦ୍ୟା ବା ଜ୍ଞାନର ସହାୟକ । ବୌଦ୍ଧମାନଙ୍କ ମତରେ ମନୁଷ୍ୟ ଓ ଇତର୍ପ୍ରାଣୀଜାତିର ହିତସାଧନ ହିଁ ଏକମାତ୍ର କର୍ମ; ବ୍ରାହ୍ମଣ ବା ହିନ୍ଦୁମାନଙ୍କ ମତରେ ଉପାସନା ଓ ସବୁପ୍ରକାର ଯାଗ-ଯଜ୍ଞାଦି ଅନୁଷ୍ଠାନ ମଧ୍ୟ ଠିକ୍ ସେହିଭଳି କର୍ମ ଏବଂ ଚିତ୍ତଶୁଦ୍ଧିର ସହାୟକ । ଶଙ୍କରଙ୍କ ମତରେ, "ଶୁଭାଶୁଭ ସବୁ ପ୍ରକାର କର୍ମ ହିଁ ଜ୍ଞାନର ପ୍ରତିବନ୍ଧକ ।" ଯେଉଁସବୁ କାର୍ଯ୍ୟ ଅଜ୍ଞାନ ଆଡ଼କୁ ଟାଣି ନିଏ, ସେଗୁଡ଼ିକ ପାପ—ସାକ୍ଷାତ୍ ସମ୍ବନ୍ଧରେ ନୁହେଁ; କିନ୍ତୁ କାରଣସ୍ୱରୂପରେ—ଯେହେତୁ ସେଗୁଡ଼ିକଦ୍ୱାରା ରଜଃ ଓ ତମଃ ବଢ଼ିଯାଏ । ସତ୍ତ୍ୱଦ୍ୱାରା ହିଁ କେବଳ ଜ୍ଞାନ ଲାଭ ହୁଏ । ପୁଣ୍ୟ ଓ ଶୁଭ କର୍ମଦ୍ୱାରା ଜ୍ଞାନର ଆବରଣ ଦୂର ହୁଏ ଓ କେବଳ ଜ୍ଞାନଦ୍ୱାରା ହିଁ ଈଶ୍ୱରଦର୍ଶନ ସମ୍ଭବ ହୁଏ ।

ଜ୍ଞାନ କେବେହେଲେ ଉତ୍ପାଦନ କରାଯାଇପାରେ ନାହିଁ, ତାହାକୁ କେବଳ ଆବିଷ୍କାର କରାଯାଇପାରେ । ଯେଉଁ ବ୍ୟକ୍ତି କୌଣସି ବଡ଼ ଆବିଷ୍କ୍ରିୟା କରନ୍ତି, ତାଙ୍କୁ ହିଁ ପ୍ରତ୍ୟାଦିଷ୍ଟ (inspired) ପୁରୁଷ କୁହାଯାଇପାରେ । ସେ ଯଦି କେବଳ ଆଧ୍ୟାତ୍ମିକ ସତ୍ୟ ଆବିଷ୍କାର

କରନ୍ତି—ଆମେ ତାହାଙ୍କୁ ଋଷି ବା ଅବତାର କହୁ ଓ ତାହା ଯେତେବେଳେ କୌଣସି ଜଡ଼ଜଗତର ସତ୍ୟ ହୁଏ, ତାହାଙ୍କୁ ବୈଜ୍ଞାନିକ କହୁଁ । ଯେହ୍ତୁ ବ୍ରହ୍ମ ସମସ୍ତ ସତ୍ୟର ମୂଳ ହେଲେ ହେଁ ଆମେ ପ୍ରଥମୋକ୍ତ ଶ୍ରେଣୀକୁ ଉଚ୍ଚତର ଆସନ ଦେଇଥାଉ ।

ଶଙ୍କର କହନ୍ତି, ବ୍ରହ୍ମ ସବୁ ପ୍ରକାର ଜ୍ଞାନର ସାର ଓ ଭିତ୍ତିସ୍ୱରୂପ । ଜ୍ଞାତା, ଜ୍ଞାନ ଓ ଜ୍ଞେୟସ୍ୱରୂପ ଯେଉଁ ଅଭିବ୍ୟକ୍ତି, ତାହା ବ୍ରହ୍ମରେ କାଳ୍ପନିକ ଭେଦ ମାତ୍ର । ରାମାନୁଜ ବ୍ରହ୍ମରେ ଜ୍ଞାନର ଅସ୍ତିତ୍ୱ ସ୍ୱୀକାର କରିଛନ୍ତି । ଖାଣ୍ଟି ଅଦ୍ୱୈତବାଦୀମାନେ ବ୍ରହ୍ମରେ କୌଣସି ଗୁଣ ସ୍ୱୀକାର କରନ୍ତି ନାହିଁ—ଏପରିକି ସତ୍ତା ପର୍ଯ୍ୟନ୍ତ ନୁହେଁ—ସତ୍ତା କହିଲେ ଆମେ ଯାହା ବୁଝୁଁନା କାହିଁକି । ରାମାନୁଜ କହନ୍ତି, ସଚରାଚର ଆମେ ଯାହାକୁ ଜ୍ଞାନ ବୋଲି କହୁ ବ୍ରହ୍ମ ତାହାର ସାରସ୍ୱରୂପ । ଅବ୍ୟକ୍ତ ବା ସାମ୍ୟଭାବାପନ୍ନ ଜ୍ଞାନ—ବ୍ୟକ୍ତ ବା ବୈଷମ୍ୟ ଅବସ୍ଥା ପ୍ରାପ୍ତ ହେଲେ ଜଗତ୍-ପ୍ରପଞ୍ଚର ଉତ୍ପତ୍ତି ହୁଏ । ***

ଜଗତର ଉଚ୍ଚତମ ଦାର୍ଶନିକ ଧର୍ମସମୂହ ମଧ୍ୟରେ ଅନ୍ୟତମ ବୌଦ୍ଧଧର୍ମ ଭାରତର ସବୁ ଶ୍ରେଣୀର ଲୋକଙ୍କ ମଧ୍ୟରେ ପ୍ରସାର ଲାଭ କରିଥିଲା । ଚିନ୍ତା କରି ଦେଖ ଦେଖି, ଅଢ଼େଇ ହଜାର ବର୍ଷ ପୂର୍ବେ ଆର୍ଯ୍ୟସଭ୍ୟତା ଓ ଶିକ୍ଷା କିଭଳି ଅଦ୍ଭୁତ ଥିଲା, ଯଦ୍ଦ୍ୱାରା ସେମାନେ ଏଭଳି ଉଚ୍ଚ ଭାବର ଧାରଣା କରିପାରିଥିଲେ ।

ଭାରତୀୟ ଶ୍ରେଷ୍ଠ ଦାର୍ଶନିକଙ୍କ ମଧ୍ୟରେ କେବଳ ବୁଦ୍ଧ ହିଁ ଜାତିଭେଦ ସ୍ୱୀକାର କରି ନାହାନ୍ତି । ବର୍ତ୍ତମାନ ଭାରତରେ ଜଣେ ସୁଦ୍ଧା ବୌଦ୍ଧ ଦେଖାଯାଆନ୍ତି ନାହିଁ । ଅନ୍ୟ ସମସ୍ତ ଦାର୍ଶନିକ ଅଳ୍ପ ବହୁତ ସାମାଜିକ କୁସଂସ୍କାରଗୁଡ଼ିକୁ ପ୍ରଶ୍ରୟ ଦେଇଥିଲେ । ସେମାନେ ଯେତେ ଉଚ୍ଚକୁ ଯାଇଥାଆନ୍ତୁ ନା କାହିଁକି, ସେମାନଙ୍କ ମଧ୍ୟରେ ଅଳ୍ପ-ବେଶୀ ମାତ୍ରାରେ ଚିଲ-ଶାଗୁଣା ଭାବ ଥିଲା । ଗୁରୁମହାରାଜ କହୁଥିଲେ, 'ଚିଲ-ଶାଗୁଣା' ଏତେ ଉଚ୍ଚକୁ ଉଠନ୍ତି ଯେ ସେମାନଙ୍କୁ ଦେଖାଯାଏ ନାହିଁ; କିନ୍ତୁ ସେମାନଙ୍କର ଶବ ଉପରେ ନଜର ରହିଥାଏ । କେଉଁଠି ପଶୁ ମାଂସ ଖଣ୍ଡ ପଡ଼ିଛି, ତା' ଉପରେ ସେମାନଙ୍କର ଦୃଷ୍ଟି ନିବଦ୍ଧ ରହିଥାଏ ।" ***

ପ୍ରାଚୀନ ହିନ୍ଦୁମାନେ ଅସାଧାରଣ ପଣ୍ଡିତ ଥିଲେ—ଯେପରି ଜୀବନ୍ତ ବିଶ୍ୱକୋଷ । ସେମାନେ କହୁଥିଲେ ।

'ପୁସ୍ତକସ୍ଥା ତୁ ଯା ବିଦ୍ୟା ପରହସ୍ତଗତଂ ଧନମ୍
କାର୍ଯ୍ୟକାଲେ ସମୁତ୍ପନ୍ନେ ନ ସା ବିଦ୍ୟା ନ ତଦ୍ଧନମ୍ ।'

—ଚାଣକ୍ୟନୀତି

ଅର୍ଥାତ୍ ବିଦ୍ୟା ଯଦି ପୁସ୍ତକଗତ ହୁଏ ଓ ଧନ ଯଦି ପର ହାତରେ ଥାଏ, କାର୍ଯ୍ୟକାଳ ଉପସ୍ଥିତ ହେଲେ ସେହି ବିଦ୍ୟା ବିଦ୍ୟା ନୁହେଁ ଓ ସେହି ଧନ ଧନ ନୁହେଁ ।

ଶଙ୍କରଙ୍କୁ ଅନେକେ ଶିବଙ୍କ ଅବତାର ବୋଲି ଜ୍ଞାନ କରିଥାଆନ୍ତି ।

**ବୁଧବାର, ୧୦ ଜୁଲାଇ**

ଭାରତରେ ସାଢ଼େ ୬ କୋଟି ମୁସଲମାନ ଅଛନ୍ତି । ସେମାନଙ୍କ ମଧ୍ୟରୁ କେତେକ

ସୂଫୀ ସମ୍ପ୍ରଦାୟଭୁକ୍ତ । ଏହି ସୂଫୀମାନେ ଜୀବାତ୍ମାକୁ ପରମାତ୍ମାଙ୍କ ସହିତ ଅଭିନ୍ନ ଜ୍ଞାନ କରନ୍ତି । ତାଙ୍କଦ୍ୱାରା ହିଁ ଏହି ଭାବ ୟୁରୋପକୁ ଆସିଛି । ସେମାନେ କହନ୍ତି, 'ଆନଅଲ୍ ହକ୍' ଅର୍ଥାତ୍ ମୁଁ ହିଁ ସତ୍ୟସ୍ୱରୂପ । ତେବେ ସେମାନଙ୍କ ମଧ୍ୟରେ ବହିରଙ୍ଗ ବା ପ୍ରକାଶ୍ୟ ଓ ଅନ୍ତରଙ୍ଗ ବା ଗୋପନୀୟ ମତ ଅଛି । ମହମ୍ମଦ ଅବଶ୍ୟ ନିଜେ ଏହା ବିଶ୍ୱାସ କରୁ ନ ଥିଲେ । 'ହାଶାଶିନ' ଶବ୍ଦରୁ ଇଂରେଜୀ assassin (ହତ୍ୟାକାରୀ) ଶବ୍ଦ ଆସିଛି ।*

ମୁସଲମାନମାନଙ୍କର ଏକ ପ୍ରାଚୀନ ସମ୍ପ୍ରଦାୟ ସେମାନଙ୍କ ଧର୍ମମତର ଅଙ୍ଗସ୍ୱରୂପ ବିବେଚନା କରି ଅବିଶ୍ୱାସୀ ଅର୍ଥାତ୍ ଅନ୍ୟ ଧର୍ମାବଲମ୍ବୀମାନଙ୍କୁ ହତ୍ୟା କରୁଥିଲେ ।

ମୁସଲମାନମାନଙ୍କ ଉପାସନା ସମୟରେ ସେମାନଙ୍କ ଆଗରେ ଏକ ମାଠିଆ ପାଣି ରଖାଯାଏ । ଈଶ୍ୱର ସମଗ୍ର ଜଗତ୍‌ବ୍ୟାପୀ ରହିଛନ୍ତି । ଏହା ତା'ର ପ୍ରତୀକସ୍ୱରୂପ ।**

***

ହିନ୍ଦୁମାନେ ଦଶାବତାରରେ ବିଶ୍ୱାସ କରନ୍ତି । ସେମାନଙ୍କ ମତରେ ନଅଟି ଅବତାରଙ୍କର ଆବିର୍ଭାବ ଘଟି ସାରିଛି ଓ ଦଶମ ଅବତାର ଆସିବେ ।

***

ବେଦର ବାକ୍ୟସବୁ ତତ୍ତ୍ୱପ୍ରସୂତ ଦର୍ଶନର ସମର୍ଥକ—ଏହା ପ୍ରମାଣ କରିବା ପାଇଁ ଶଙ୍କରଙ୍କୁ ବେଳେ ବେଳେ କୂଟତର୍କର ଆଶ୍ରୟ ନେବାକୁ ପଡ଼ିଛି । ବୁଦ୍ଧ ଅନ୍ୟ ଧର୍ମଗୁରୁଙ୍କ ଅପେକ୍ଷା ଅଧିକ ସାହସୀ ଓ ଅକପଟୀ ଥିଲେ । ସେ କହି ଯାଇଛନ୍ତି, "କୌଣସି ଶାସ୍ତ୍ରରେ ବିଶ୍ୱାସ କର ନାହିଁ । ବେଦ*** ମିଥ୍ୟା । ଯଦି ମୋର ଉପଲବ୍ଧି ସହ ବେଦ ମିଳିଯାଏ, ତାହା ହେଲେ ତାହା ବେଦର ସୌଭାଗ୍ୟ । ମୁଁ ସର୍ବଶ୍ରେଷ୍ଠ ଶାସ୍ତ୍ର; ଯାଗ ଯଜ୍ଞ ଓ ଦେବ-ଉପାସନାର କୌଣସି ଫଳ ନାହିଁ ।" ମାନବଜାତି ମଧ୍ୟରେ ବୁଦ୍ଧ ହିଁ ପ୍ରଥମେ ପୃଥିବୀକୁ ସର୍ବାଙ୍ଗସମ୍ପନ୍ନ ନୀତି-ବିଜ୍ଞାନ ଶିକ୍ଷା ଦେଇଥିଲେ । ସେ ମହତ୍ ଜୀବନ ସକାଶେ ମହତ୍ ଜୀବନଯାପନ କରୁଥିଲେ; ପ୍ରେମ ସକାଶେ ପ୍ରେମ କରୁଥିଲେ, ତାଙ୍କର ଅନ୍ୟ କୌଣସି ଅଭିସନ୍ଧି ନ ଥିଲା ।

ଶଙ୍କର କହୁଥିଲେ, ବ୍ରହ୍ମଙ୍କୁ ମନନ କରିବାକୁ ହେବ, କାରଣ ବେଦରେ ଏହିଭଳି ନିର୍ଦ୍ଦେଶ ଦିଆଯାଇଛି । ବିଚାର ଅତୀନ୍ଦ୍ରିୟ ଜ୍ଞାନର ସହାୟକ । ବେଦ ଓ ବ୍ୟକ୍ତିଗତ ଅନୁଭୂତି ଉଭୟ ହିଁ ବ୍ରହ୍ମଙ୍କ ଅସ୍ତିତ୍ୱର ପ୍ରମାଣ । ତାଙ୍କ ମତରେ ବେଦ ଏକ ପ୍ରକାର

---

* ଏହି ଧର୍ମସମ୍ପ୍ରଦାୟ ମଧ୍ୟ-ଏକାଦଶ ଶତାବ୍ଦୀରେ ସିରିଆରେ ପ୍ରଚଳିତ ଥିଲା । ସେମାନେ ଏହି ସମ୍ପ୍ରଦାୟ-ନେତାଙ୍କ ଆଦେଶାନୁସାରେ ବହୁ ଗୁପ୍ତ ହତ୍ୟା କରୁଥିଲେ । 'ହାଶାଶିନ୍' ଶବ୍ଦର ଅର୍ଥ ହାଶିଶ୍-ଭକ୍ଷକ । ହାଶିଶ୍ ହେଉଛି ଏକ ପ୍ରକାର ମଦ । ଏହି ସମ୍ପ୍ରଦାୟର ହତ୍ୟାକାରୀମାନେ ଏହି ମଦ ବ୍ୟବହାର କରି ହତ୍ୟା-କାର୍ଯ୍ୟ ପାଇଁ ପ୍ରସ୍ତୁତ ହେଉଥିଲେ ବୋଲି ଏମାନଙ୍କ ନାମ ସେଭଳି ହୋଇଛି ।

** ତୁଳନୀୟ—ବୈଦିକ ଓ ତାନ୍ତ୍ରିକ କ୍ରିୟାକର୍ମରେ ଘଟସ୍ଥାପନ ।

*** ଏଠାରେ ବେଦର କର୍ମକାଣ୍ଡକୁ ଲକ୍ଷ୍ୟ କରାଯାଇଛି ।

ଅନନ୍ତ ଜ୍ଞାନର ସାକାର ବିଗ୍ରହସ୍ୱରୂପ । ନେତିର ପ୍ରମାଣ ଏହି ଯେ, ତାହା ବ୍ରହ୍ମରୁ ପ୍ରସୃତ, ପୁଣି ବହ୍ମର ପ୍ରମାଣ ଏହି ଯେ ବେଦଭିନ୍ନ ଅଭୂତ ଗ୍ରନ୍ଥ ବ୍ରହ୍ମ ବ୍ୟତୀତ ଆଉ କାହାର ପ୍ରକାଶ କରିବାର ସାଧ ନାହିଁ । ବେଦ ସବୁପ୍ରକାର ଜ୍ଞାନର ଖଣିସ୍ୱରୂପ, ଆଉ ମଣିଷ ଯେପରି ନିଃଶ୍ୱାସଦ୍ୱାରା ବାହାରକୁ ବାୟୁ ଛାଡ଼େ, ସେହିପରି ବେଦ ମଧ୍ୟ ବ୍ରହ୍ମଙ୍କ ଭିତରୁ ପ୍ରକାଶିତ ହେଉଛି । ସେଥିପାଇଁ ଆମେ ଜାଣିପାରୁ ସେ ସର୍ବଶକ୍ତିମାନ୍ ଓ ସର୍ବଜ୍ଞ । ସେ ଜଗତ୍ ସୃଷ୍ଟି କରିଥାନ୍ତୁ ବା ନ ଥାନ୍ତୁ ସେଥିରେ ବିଶେଷ କିଛି ଯାଏ ଆସେ ନାହିଁ; କିନ୍ତୁ ସେ ଯେ ବେଦ ପ୍ରକାଶ କରିଛନ୍ତି, ଏହା ହିଁ ବଡ଼ କଥା । ବେଦ ସାହାଯ୍ୟରେ ହିଁ ଜଗତ୍ ବ୍ରହ୍ମ ସମ୍ବନ୍ଧରେ ଜାଣିପାରିଛି—ତାଙ୍କୁ ଜାଣିବା ପାଇଁ ଆଉ କୌଣସି ଉପାୟ ନାହିଁ ।

ଶଙ୍କରଙ୍କ ଏହି ମତ, ଅର୍ଥାତ୍ ବେଦ ସମସ୍ତ ଜ୍ଞାନର ଖଣି—ଏହା ସମଗ୍ର ହିନ୍ଦୁଜାତିର ଏଭଳି ମଜ୍ଜାଗତ ହୋଇଯାଇଛି ଯେ, ସେମାନଙ୍କ ଭିତରେ ପ୍ରବାଦ ଅଛି "ଗୋରୁ ହଜିଗଲେ ମଧ୍ୟ ବେଦରୁ ଗୋରୁର ସନ୍ଧାନ ମିଳିଯିବ ।"

ଶଙ୍କର ପୁଣି କହନ୍ତି—କର୍ମକାଣ୍ଡର ବିଧି-ନିଷେଧ ମାନି ଚଳିବା ଜ୍ଞାନ ନୁହେଁ । ବ୍ରହ୍ମଜ୍ଞାନ କୌଣସି ପ୍ରକାର ନୈତିକ ବାଧ-ବାଧକତା, ଯାଗଯଜ୍ଞାଦି ଅନୁଷ୍ଠାନ ବା ଆମମାନଙ୍କ ମତ ଉପରେ ନିର୍ଭର କରେ ନାହିଁ । ଉଦାହରଣସ୍ୱରୂପ କୌଣସି ଗୋଟିଏ ଠୁଣ୍ଟା ବୃକ୍ଷରୁ ଜଣେ ଭୂତ ବୋଲି ମନେକରେ ବା ଅନ୍ୟ ଜଣେ ଠୁଣ୍ଟା ଗଛ ବୋଲି ମନେକରେ, ସେଥିରେ ଠୁଣ୍ଟା ବୃକ୍ଷର କିଛି ଯାଏ ଆସେ ନାହିଁ ।

ଆମ ପକ୍ଷରେ ବେଦାନ୍ତ-ବେଦ୍ୟ ଜ୍ଞାନର ବିଶେଷ ପ୍ରୟୋଜନ ରହିଛି । କାରଣ ବିଚାର ବା ଶାସ୍ତ୍ରଦ୍ୱାରା ଆମ ପକ୍ଷରେ ବ୍ରହ୍ମ-ଉପଲବ୍ଧି ସମ୍ଭବ ନୁହେଁ । ତାହାଙ୍କୁ ସମାଧି-ଦ୍ୱାରା ଉପଲବ୍ଧି କରିବାକୁ ହେବ ଓ ବେଦାନ୍ତ ହିଁ ଏହି ଅବସ୍ଥାଲାଭର ଉପାୟ ଦେଖାଇ ଦିଏ । ଆମକୁ ସଗୁଣ ବ୍ରହ୍ମ ବା ଈଶ୍ୱରଙ୍କ ଭାବ ଅତିକ୍ରମ କରି ସେହି ନିର୍ଗୁଣ ବ୍ରହ୍ମରେ ପହଞ୍ଚିବାକୁ ହେବ । ସବୁ ଅନୁଭୂତି ଭିତରେ ପ୍ରତ୍ୟେକ ବ୍ୟକ୍ତି ବ୍ରହ୍ମକୁ ଅନୁଭବ କରୁଛନ୍ତି,* ବ୍ରହ୍ମ ବ୍ୟତୀତ ଅନୁଭବ କରିବାର ଆଉ ଦ୍ୱିତୀୟ ବସ୍ତୁ କିଛି ନାହିଁ । ଆମ ଭିତରେ ଯାହା 'ମୁଁ ମୁଁ' ବୋଲି କହୁଛି, ତାହା ହିଁ ବ୍ରହ୍ମ । ଆମେ ତାହାକୁ ଦିନରାତି ଅନୁଭବ କରୁଥିଲେ ମଧ୍ୟ ଏହା ଜାଣିପାରୁ ନାହୁଁ । ଯେଉଁ ମୁହୂର୍ତ୍ତରେ ଆମେ ଏହି ସତ୍ୟ ଜାଣିପାରୁ, ସେହି ମୁହୂର୍ତ୍ତରେ ହିଁ ଆମର ସବୁ ଦୁଃଖକଷ୍ଟ ଚାଲିଯାଏ । ଆମକୁ ଏହି ସତ୍ୟକୁ ଜାଣିବାକୁ ହିଁ ହେବ । ଏକତ୍ୱ ଅବସ୍ଥା ଲାଭ କର, ତାହାହେଲେ ଆଉ ଦ୍ୱୈତଭାବ ଆସିବ ନାହିଁ; କିନ୍ତୁ ଯାଗଯଜ୍ଞାଦି ଦ୍ୱାରା ଜ୍ଞାନଲାଭ ହୁଏ ନାହିଁ, ଆତ୍ମାକୁ ଅନ୍ୱେଷଣ, ଉପାସନା ଓ ସାକ୍ଷାତ୍ କରିବା—ଏହିସବୁଦ୍ୱାରା ହିଁ ସେହି ଜ୍ଞାନ ଲାଭ କରାଯାଇପାରିବ ।

ବ୍ରହ୍ମବିଦ୍ୟା ହିଁ ପରାବିଦ୍ୟା, ଅପରାବିଦ୍ୟା ହେଉଛି ବିଜ୍ଞାନ । ମୁଣ୍ଡକୋପନିଷତ୍ (ସନ୍ନ୍ୟାସୀଙ୍କ ପାଇଁ ଉପଦିଷ୍ଟ ଉପନିଷଦ୍ )ରେ ଏହି ଉପଦେଶ ଦିଆଯାଇଛି ।** ଦୁଇପ୍ରକାର

* କେନ ଉପ., ୨।୪

** ମୁଣ୍ଡକ ଉପ., ୧।୧।୪

ବିଦ୍ୟା ଅଛି—ପରା ଓ ଅପରା । ସେଥିମଧ୍ୟରୁ ବେଦର ଯେଉଁ ଅଂଶରେ ଦେବ-ଉପାସନା ଓ ନାନାବିଧ ଯାଗଯଜ୍ଞର ଉପଦେଶ ରହିଛି ସେହି କର୍ମକାଣ୍ଡ ଓ ସବୁବିଧ ଲୌକିକ ଜ୍ଞାନ ହିଁ ଅପରା ବିଦ୍ୟା । ଯାହାଦ୍ୱାରା ସେହି ଅକ୍ଷର-ପୁରୁଷଙ୍କୁ ଲାଭ କରାଯାଇପାରେ, ତାହା ପରାବିଦ୍ୟା । ସେହି ଅକ୍ଷର-ପୁରୁଷ ନିଜ ଭିତରୁ ସବୁ ସୃଷ୍ଟି କରୁଛନ୍ତି—ବାହାରର ଅନ୍ୟ କିଛି ତାଙ୍କ ଉପରେ ଆଉ କିଛି କାମ କରୁ ନାହିଁ । ସେହି ବ୍ରହ୍ମହିଁ ସମସ୍ତ ଶକ୍ତିସ୍ୱରୂପ । ଯାହା କିଛି ଅଛି, ସେସବୁ କେବଳ ବ୍ରହ୍ମ । ଯେ ଆତ୍ମଜ୍ଞାନୀ ସେ ହିଁ କେବଳ ବ୍ରହ୍ମଙ୍କୁ ଜାଣନ୍ତି । ଅଜ୍ଞାନୀମାନେ ବାହ୍ୟ ପୂଜାକୁ ଶ୍ରେଷ୍ଠ ମନେକରନ୍ତି । ସେମାନେ ଭାବନ୍ତି କର୍ମଦ୍ୱାରା ବ୍ରହ୍ମଲାଭ ହୋଇପାରେ । ଯେଉଁମାନେ ସୁଷୁମ୍ନା-ବର୍ତ୍ମରେ (ଯୋଗୀଙ୍କ ମାର୍ଗରେ) ଗମନ କରନ୍ତି, ସେହିମାନେ କେବଳ ଆତ୍ମାକୁ ଲାଭ କରନ୍ତି । ଏହି ବ୍ରହ୍ମବିଦ୍ୟା ଶିକ୍ଷା କରିବାକୁ ହେଲେ ଗୁରୁଙ୍କ ନିକଟକୁ ଯିବାକୁ ହେବ । ସମଷ୍ଟିରେ ଯାହା ଅଛି ବ୍ୟଷ୍ଟିରେ ମଧ୍ୟ ତାହା ଅଛି, ସବୁ କିଛି ଆତ୍ମାରୁ ପ୍ରସୂତ ହେଉଛି । ଓଁକାର ହେଉଛି ଧନୁ ଓ ଆତ୍ମା ତାହାର ତୀର ଓ ବ୍ରହ୍ମ ତାହାର ଲକ୍ଷ୍ୟ । ଅପ୍ରମତ୍ତ ହୋଇ ତାହାଙ୍କୁ ବିଦ୍ଧ କରିବାକୁ ହେବ । ତାଙ୍କ ସହିତ ମିଶି ଏକ ହୋଇଯିବାକୁ ପଡ଼ିବ ।* ସସୀମ ଅବସ୍ଥାରେ ଆମେ ସେହି ଅସୀମଙ୍କୁ କେବେହେଲେ ପ୍ରକାଶ କରିପାରିବା ନାହିଁ; କିନ୍ତୁ ଆମେ ହିଁ ସେହି ଅସୀମସ୍ୱରୂପ । ଏହି ଜ୍ଞାନ ହେଲେ ଆଉ କାହା ସହିତ ତର୍କବିତର୍କର ଆବଶ୍ୟକତା ନାହିଁ । ଭକ୍ତି, ଧ୍ୟାନ, ବ୍ରହ୍ମଚର୍ଯ୍ୟଦ୍ୱାରା ସେହି ଜ୍ଞାନଲାଭ କରିବାକୁ ହେବ ।

"ସତ୍ୟମେବ ଜୟତେ ନାନୃତମ୍,
ସତ୍ୟେନୈବ ପନ୍ଥା ବିତତୋ ଦେବଯାନଃ ।"**

ସତ୍ୟର ହିଁ ଜୟ ହୁଏ, ମିଥ୍ୟାର କେବେହେଲେ ଜୟ ହୁଏ ନାହିଁ । ସତ୍ୟ ଭିତରଦେଇ ବ୍ରହ୍ମଲାଭର ଏକମାତ୍ର ପଥ ରହିଛି; କେବଳ ସେହିଠାରେ ହିଁ ପ୍ରେମ ଓ ସତ୍ୟ ବିଦ୍ୟମାନ ।

### ଗୁରୁବାର, ୧୧ ଜୁଲାଇ

ମା'ଙ୍କ ସ୍ନେହ ବ୍ୟତୀତ କୌଣସି ସୃଷ୍ଟି ସ୍ଥାୟୀ ହୋଇପାରେ ନାହିଁ । ପୃଥିବୀର କୌଣସି କିଛି ସମ୍ପୂର୍ଣ୍ଣ ଜଡ଼ ନୁହେଁ, ସମ୍ପୂର୍ଣ୍ଣ ଚିତ୍ ମଧ୍ୟ ନୁହେଁ, ଜଡ଼ ଓ ଚିତ୍ ପରସ୍ପର ସାପେକ୍ଷ, ଗୋଟିଏ ଦ୍ୱାରା ଅପରର ବ୍ୟାଖ୍ୟା ହୁଏ । ଏହି ପରିଦୃଶ୍ୟମାନ ଜଗତର ଯେ ଏକ ଭିତ୍ତି ଅଛି, ଏ ବିଷୟରେ ଆସ୍ତିକ ମାନେ ହିଁ ଏକମତ; କେବଳ ସେହି ଭିତ୍ତିସ୍ଥାନୀୟ ବସ୍ତୁର ପ୍ରକୃତ ବା ସ୍ୱରୂପ ସମ୍ପର୍କରେ ହିଁ ସେମାନଙ୍କର ମତଭେଦ ରହିଛି । ଜଡ଼ବାଦୀମାନେ ଜଗତର ଏହିଭଳି କୌଣସି ଭିତ୍ତି ଅଛି ବୋଲି ସ୍ୱୀକାର କରନ୍ତି ନାହିଁ ।

---

* ପ୍ରଣବୋ ଧନୁଃ ଶରୋ ହ୍ୟାତ୍ମା ବ୍ରହ୍ମ ତଲ୍ଲକ୍ଷ୍ୟମୁଚ୍ୟତେ ।
ଅପ୍ରମତ୍ତେନ ବେଦ୍ଧବ୍ୟଂ ଶରବତ୍ତନ୍ମୟୋ ଭବେତ୍ ॥—ମୁଣ୍ଡକ ଉପ., ୨।୨।୪

** ମୁ. ଉପ., ୩।୧।୬

ସମସ୍ତ ଧର୍ମର ଜ୍ଞାନାତୀତ ବା ତୁରୀୟ ଅବସ୍ଥା ଏକ। ଦେହଜ୍ଞାନ ଅତିକ୍ରମ କଲେ ହିନ୍ଦୁ, ଖ୍ରୀଷ୍ଟାନ, ମୁସଲମାନ, ବୌଦ୍ଧ—ଏପରିକି ଯେଉଁମାନେ କୌଣସି ପ୍ରକାର ଧର୍ମମତ ସ୍ୱୀକାର କରନ୍ତି ନାହିଁ, ସମସ୍ତଙ୍କର ହିଁ ଠିକ୍ ଏକପ୍ରକାର ଅନୁଭୂତି ହୋଇଥାଏ। ***

ଯୀଶୁ ଦେହତ୍ୟାଗ କରିବାର ୨୫ ବର୍ଷ ପରେ ତାଙ୍କ ଶିଷ୍ୟ ଟମାସ୍ (Apostle Thomas) ଙ୍କ ଦ୍ୱାରା ପୃଥିବୀର ସବୁଠାରୁ ବିଶୁଦ୍ଧ ଖ୍ରୀଷ୍ଟିଆନ୍ ସମ୍ପ୍ରଦାୟ ଭାରତରେ ପ୍ରତିଷ୍ଠିତ ହୋଇଥିଲା। ଆଙ୍ଗ୍ଲୋ ସାକ୍ସନ-(Anglo Saxons) ମାନେ ସେତେବେଳେ ମଧ୍ୟ ଅସଭ୍ୟ ଥିଲେ। ଦେହରେ ଚିତା କୁଟାଉଥିଲେ ଓ ପର୍ବତଗୁହାରେ ବାସ କରୁଥିଲେ। ଏକଦା ଭାରତରେ ପ୍ରାୟ ୩୦ ଲକ୍ଷ ଖ୍ରୀଷ୍ଟିଆନ୍ ଥିଲେ ଏବଂ ବର୍ତ୍ତମାନ ପ୍ରାୟ ସେମାନଙ୍କ ସଂଖ୍ୟା ୧୦ ଲକ୍ଷ ହେବ।

ଖ୍ରୀଷ୍ଟଧର୍ମ ଚିରକାଳ ତରବାରିବଳରେ ପ୍ରଚାରିତ ହୋଇଛି। କି ଆଶ୍ଚର୍ଯ୍ୟ, ଖ୍ରୀଷ୍ଟଙ୍କଭଳି ନିରୀହ ମହାପୁରୁଷଙ୍କ ଶିଷ୍ୟମାନେ ପୁଣି ଏତେ ନରହତ୍ୟା କରିଛନ୍ତି! ବୌଦ୍ଧ, ମୁସଲମାନ ଓ ଖ୍ରୀଷ୍ଟଧର୍ମ—ପୃଥିବୀରେ ଏହି ତିନୋଟି ହିଁ ପ୍ରଚାରଶୀଳ ଧର୍ମ। ଏସବୁର ପୂର୍ବବର୍ତ୍ତୀ ତିନୋଟି ଧର୍ମ, ଯଥା—ହିନ୍ଦୁ, ଇହୁଦୀ ଓ ଜରଥୁଷ୍ଟ୍ରଙ୍କର (ପାରସୀ) ଧର୍ମ କେବେହେଲେ ପ୍ରଚାରଦ୍ୱାରା ଦଳପୁଷ୍ଟି ପାଇଁ ଚେଷ୍ଟା କରି ନାହିଁ। ବୌଦ୍ଧମାନେ କେବେହେଲେ ନରହତ୍ୟା କରି ନାହାନ୍ତି, ତଥାପି ସେମାନେ କେବଳ କୋମଳ ବ୍ୟବହାରଦ୍ୱାରା ଏକ ସମୟରେ ପୃଥିବୀର ତିନି-ଚତୁର୍ଥାଂଶ ଲୋକଙ୍କୁ ନିଜ ମତରେ ଦୀକ୍ଷିତ କରିଥିଲେ।

ବୌଦ୍ଧମାନେ ସବୁଠାରୁ ବଳି ଯୁକ୍ତିସଙ୍ଗତ ଅଜ୍ଞେୟବାଦୀ। ବାସ୍ତବିକ ଶୂନ୍ୟବାଦ, ଅଦ୍ୱୈତବାଦ ଏହି ଦୁଇଟି ମଝିରେ କୌଣସିଠାରେ ଯୁକ୍ତି ତିଷ୍ଠିପାରିବ ନାହିଁ। ବୌଦ୍ଧମାନେ ବିଚାରଦ୍ୱାରା ସବୁ କାଟି ଦେଇଥିଲେ—ସେମାନେ ସେମାନଙ୍କ ମତ ଯୁକ୍ତିବଳରେ ଯେତେଦୂର ନିଆଯାଇପାରେ ତାହା କରିଥିଲେ। ଅଦ୍ୱୈତବାଦୀମାନେ ମଧ୍ୟ ସେମାନଙ୍କ ମତକୁ ଯୁକ୍ତିର ଚରମ ସୀମାକୁ ନେଇଯାଇଥିଲେ ଓ ସେହି ଏକ ଅଖଣ୍ଡ ଅଦ୍ୱୟ ବ୍ରହ୍ମବସ୍ତୁରେ ପହଞ୍ଚିଥିଲେ—ଯେଉଁଥିରୁ ସମୁଦାୟ ଜଗତ-ପ୍ରପଞ୍ଚ ବ୍ୟକ୍ତ ହେଉଛି। ବୌଦ୍ଧ ଓ ଅଦ୍ୱୈତବାଦୀ ଉଭୟଙ୍କର ହିଁ ଏକା ସାଙ୍ଗରେ ଏକତ୍ୱ ଓ ବହୁତ୍ୱ (ଅଭେଦ ଓ ଭେଦ)-ବୋଧ ରହିଛି। ଏହି ଦୁଇ ଅନୁଭୂତି ମଧ୍ୟରେ ଗୋଟିଏ ସତ୍ୟ ଓ ଅପରଟି ନିଶ୍ଚୟ ମିଥ୍ୟା ହେବ। ଶୂନ୍ୟବାଦୀମାନେ କହନ୍ତି, ବହୁତ୍ୱବୋଧ ସତ୍ୟ; ଅଦ୍ୱୈତବାଦୀମାନେ କହନ୍ତି, ଏକତ୍ୱବୋଧ ହିଁ ସତ୍ୟ; ସମସ୍ତ ଜଗତରେ ଏହି ବିବାଦ ହିଁ ଚାଲିଛି। ଏହାକୁ ନେଇ ଭିଡ଼ା ଓଟରି (tug-of-war) ଚାଲିଛି।

ଅଦ୍ୱୈତବାଦୀମାନେ ପ୍ରଶ୍ନ କରନ୍ତି, ଶୂନ୍ୟବାଦୀ କେଉଁଠାରୁ ଏପରି ଏକତ୍ୱ-ଭାବ ପାଆନ୍ତି? ଘୂର୍ଣ୍ଣମାନ ଆଲୋକ ବୃତ୍ତାକାର ମନେହୁଏ କିପରି? ଗୋଟିଏ ସ୍ଥିତି ସ୍ୱୀକାର କଲେ ସିନା ଗତିର ବ୍ୟାଖ୍ୟା ହୋଇପାରେ? ସବୁ ଜିନିଷ ପଛରେ ଏକ ଅଖଣ୍ଡ ସତ୍ତା ପ୍ରତୀୟମାନ, ତାହାକୁ ଶୂନ୍ୟବାଦୀ କହନ୍ତି, ଭ୍ରମ ମାତ୍ର; କିନ୍ତୁ ଏଭଳି ଭ୍ରମ-ସୃଷ୍ଟିର କାରଣ କ'ଣ ତାହା ସେମାନେ କୌଣସି ପ୍ରକାରେ ବ୍ୟାଖ୍ୟା କରିପାରନ୍ତି ନାହିଁ। ପୁଣି ଅଦ୍ୱୈତ-

ବାଦୀମାନେ ବୁଝାଇପାରନ୍ତି ନାହିଁ ଯେ, ଏକ କିଭଳି ବହୁ ହେଲା । ଏହାର ବ୍ୟାଖ୍ୟା କେବଳ ମାତ୍ର ପଞ୍ଚେନ୍ଦ୍ରିୟର ଅତୀତ ଅବସ୍ଥାରେ ପହଞ୍ଚିଲେ ଯାଇ ସମ୍ଭବ ହୋଇପାରେ । ଆମକୁ ଉଚ୍ଚସ୍ତ ଭୂମିକୁ ଉଠିବାକୁ ହେବ, ଏକାବେଳକେ ଅତୀନ୍ଦ୍ରିୟ ଅବସ୍ଥାକୁ ଯିବାକୁ ପଡ଼ିବ । ଉକ୍ତ ଅବସ୍ଥାକୁ ଯିବାର ଶକ୍ତି ଯେପରି ଏକ ଯନ୍ତ୍ରସ୍ୱରୂପ ଓ ଏହି ଯନ୍ତ୍ରର ବ୍ୟବହାର ଅଦ୍ୱୈତବାଦୀଙ୍କ ଆୟତ୍ତାଧୀନ । ସେହିଁ ବ୍ରହ୍ମସତ୍ତା ଅନୁଭବ କରିବାକୁ ସମର୍ଥ । 'ବିବେକାନନ୍ଦ' ନାମକ ମଣିଷଟି ନିଜକୁ ବ୍ରହ୍ମସତ୍ତାରେ ପରିଣତ କରିପାରେ, ପୁଣି ସେହି ଅବସ୍ଥାରୁ ମାନବୀୟ ଅବସ୍ଥାକୁ ଫେରି ଆସିପାରେ । ସୁତରାଂ ତା' ପକ୍ଷରେ ଜଗତ୍‌-ସମସ୍ୟାର ମୀମାଂସା ହୋଇ-ଯାଇଛି ଓ ଗୌଣଭାବରେ ଅପର ପକ୍ଷରେ ମଧ୍ୟ ଏହି ସମାଧାନ ହେଉଛି; କାରଣ ସେ ଅନ୍ୟକୁ ଏହି ଅବସ୍ଥାରେ ପହଞ୍ଚିପାରିବାର ବାଟ ଦେଖାଇ ଦେଇପାରେ । ଏଥିରୁ ବୁଝାଯାଉଛି ଯେ, ଯେଉଁଠି ଦର୍ଶନର ଶେଷ ସେହିଠି ଧର୍ମର ଆରମ୍ଭ । ଏହିଭଳି ଉପଲବ୍ଧିଦ୍ୱାରା ଜଗତର ମଙ୍ଗଳ ଏହାହିଁ ହେବ ଯେ, ବର୍ତ୍ତମାନ ଯାହା ଜ୍ଞାନାତୀତ ରହିଛି, ସମୟକ୍ରମେ ତାହା ସର୍ବ-ସାଧାରଣଙ୍କ ପକ୍ଷରେ ଜ୍ଞାନଗମ୍ୟ ହୋଇପାରିବ । ସୁତରାଂ ଜଗତର ଧର୍ମଲାଭ ହିଁ ହେଉଛି ସର୍ବଶ୍ରେଷ୍ଠ କାର୍ଯ୍ୟ ଓ ମାନବ ଅଜ୍ଞାତସାରରେ ଏହା ଅନୁଭବ କରିଛି ବୋଲି ସେ ଆବହମାନକାଳ ପାଇଁ ଧର୍ମଭାବକୁ ଆଶ୍ରୟ କରି ରହିଛି ।

ଧର୍ମ ବହୁଗୁଣଶାଳିନୀ ପୟସ୍ୱିନୀ ଗାଭୀ-ସ୍ୱରୂପ । ସେ ଅନେକ ନାତ ମାରୁଛି; କିନ୍ତୁ ସେଥିରେ କଅଣ ଯାଏ ଆସେ ? ସେ ପ୍ରଚୁର ଦୁଧ ଦିଏ । ଯେଉଁ ଗୋରୁ ଭଲ ଦୁଧ ଦିଏ, ଗଉଡ଼ ତା'ର ନାତ ସହ୍ୟ କରିଯାଏ ।

'ପ୍ରବୋଧଚନ୍ଦ୍ରୋଦୟ ନାଟକ'ରେ ଅଛି—ମହାମୋହ ଓ ବିବେକ ଏହି ଦୁଇରାଜାଙ୍କ ଭିତରେ ଲଢ଼େଇ ଲାଗିଥିଲା; ବିବେକ-ରାଜା ସମ୍ପୂର୍ଣ୍ଣ ବିଜୟଲାଭ କରିପାରି ନ ଥିଲେ, ଶେଷରେ ବିବେକ-ରାଜାଙ୍କ ସଙ୍ଗରେ ଉପନିଷତ୍‌-ଦେବୀଙ୍କ ପୁନର୍ମିଳନ ହେଲା ଓ ସେମାନଙ୍କର ପ୍ରବୋଧରୂପକ ପୁତ୍ର ଜାତ ହେଲା । ସେ ପୁତ୍ରର ପ୍ରଭାବରେ ତାଙ୍କର ଆଉ ଶତ୍ରୁ ବୋଲି କେହି ରହିଲେ ନାହିଁ । ସେତେବେଳେ ସେମାନେ ପରମ ସୁଖରେ ବାସ କରିବାକୁ ଲାଗିଲେ । ଆମକୁ ପ୍ରବୋଧ ବା ଧର୍ମସାକ୍ଷାତ୍କାରରୂପ ମହୈଶ୍ୱର୍ଯ୍ୟବାନ୍ ପୁତ୍ର ଲାଭ କରିବାକୁ ହେବ । ଏହି ପ୍ରବୋଧରୂପକ ପୁତ୍ରକୁ ଖୁଆଇ ପିଆଇ ମଣିଷ କରିବାକୁ ହେବ, ତା' ହେଲେ ଯାଇ ସେ ଏକ ବଡ଼ ବୀର ହୋଇ ଠିଆ ହେବ ।

ଭକ୍ତି ବା ପ୍ରେମଦ୍ୱାରା ବିନାଚେଷ୍ଟାରେ ମନୁଷ୍ୟର ସମସ୍ତ ଇଚ୍ଛାଶକ୍ତି ଏକମୁଖୀ ହୋଇପଡ଼େ । ସ୍ତ୍ରୀ-ପୁରୁଷଙ୍କ ପ୍ରେମ ହିଁ ଏହାର ଦୃଷ୍ଟାନ୍ତ । ଭକ୍ତିମାର୍ଗ ସ୍ୱାଭାବିକ ପଥ ଓ ସେ ବାଟରେ ଯିବା ଅତି ଆରାମଦାୟକ । ଜ୍ଞାନମାର୍ଗ କିପରି ? —ନା ଗୋଟିଏ ପ୍ରବଳ ବେଗଶାଳୀ ପାହାଡ଼ିଆ ନଦୀକୁ ତାହାର ଉତ୍ପତ୍ତିସ୍ଥଳ ଆଡ଼କୁ ବଳପୂର୍ବକ ଠେଲି ନେଇ ଗଲାଭଳି । ଏଥିରେ ଅତିଶୀଘ୍ର ବସ୍ତୁ ଲାଭହୁଏ ସତ, କିନ୍ତୁ ଅତି କଠିନ । ଜ୍ଞାନମାର୍ଗ କହେ, 'ସମସ୍ତ ପ୍ରବୃତ୍ତିକୁ ନିରୋଧ କର ।' ଭକ୍ତିମାର୍ଗ କହେ 'ସ୍ରୋତରେ ଦେହକୁ ଭସାଇ ଦିଅ; ଚିରଦିନ ପାଇଁ ସମ୍ପୂର୍ଣ୍ଣ ଆତ୍ମସମର୍ପଣ କର ।' ଏ ପଥ-ଦୀର୍ଘ ହେଲେ ମଧ୍ୟ ଅପେକ୍ଷାକୃତ

ସହଜ ଓ ସୁଖକର ।

ଭକ୍ତ କହନ୍ତି—'ପ୍ରଭୁ ଚିରକାଳ ପାଇଁ ମୁଁ ତୁମର । ବର୍ତ୍ତମାନଠାରୁ ମୁଁ ଯାହା କିଛି କରୁଛି ବୋଲି ମନେକରେ, ତାହା ବାସ୍ତବିକ ତୁମେ ହିଁ କରୁଛ ଓ 'ମୁଁ' ବା 'ମୋର' ବୋଲି କିଛି ନାହିଁ ।'

'ହେ ପ୍ରଭୁ, ମୋର ଅର୍ଥ ନାହିଁ ଯେ, ମୁଁ ଦାନ କରିବି; ମୋର ବୁଦ୍ଧି ନାହିଁ ଯେ, ମୁଁ ଶାସ୍ତ୍ର ଶିକ୍ଷା କରିବି; ମୋର ସମୟ ନାହିଁ ଯେ, ମୁଁ ଯୋଗାଭ୍ୟାସ କରିବି; ହେ ପ୍ରେମ-ମୟ, ସେଥିପାଇଁ ମୁଁ ମୋର ଦେହ ମନ ସବୁ ତୁମକୁ ଅର୍ପଣ କଲି ।'

ଯେତେ କିଛି ଅଜ୍ଞାନ ବା ଭ୍ରାନ୍ତ ଧାରଣା ଆସୁ ଜୀବାତ୍ମା ଓ ପରମାତ୍ମା ମଧ୍ୟରେ କେବେହେଲେ ବ୍ୟବଧାନ ଘଟାଇପାରିବ ନାହିଁ । ଭଗବାନ୍ କହନ୍ତି: କେହି ଯଦି ନାହାନ୍ତି ତେବେ ମଧ୍ୟ ପ୍ରେମଭାବକୁ ଦୃଢ଼ଭାବରେ ଧରି ରଖ । କୁକୁର ପରି ସଢ଼ା ମୁର୍ଦ୍ଦାର ଖୋଜି ଖୋଜି ମରିବା ଅପେକ୍ଷା ଈଶ୍ୱରଙ୍କ ଅନ୍ୱେଷଣ କରି ମରିବା ଭଲ । ସର୍ବଶ୍ରେଷ୍ଠ ଆଦର୍ଶ ବାଛିନିଅ, ଆଉ ସେହି ଆଦର୍ଶକୁ ଲାଭ କରିବା ପାଇଁ ସାରା ଜୀବନ ନିୟୋଜିତ କର । ମୃତ୍ୟୁ ଯେତେବେଳେ ସୁନିଶ୍ଚିତ, ସେତେବେଳେ ଏକ ମହାନ୍ ଉଦ୍ଦେଶ୍ୟ ପାଇଁ ଜୀବନପାତ କରିବାଠାରୁ ବଳି ଆଉ ବଡ଼ କଥା କିଛି ନାହିଁ—"ସନ୍ନିମିତ୍ତେ ବରଂ ତ୍ୟାଗୋ ବିନାଶେ ନିୟତେ ସତି ।" (ହିତୋପଦେଶ)

ଭକ୍ତିଦ୍ୱାରା ବିନା ଆୟାସରେ ଜ୍ଞାନଲାଭ ହୁଏ—ଏହି ଜ୍ଞାନ ପରେ ପରାଭକ୍ତି ଆସେ । ଜ୍ଞାନୀ ଅତି ସୂକ୍ଷ୍ମ ବିଚାର କରିବାକୁ ସୁଖ ପାଏ, ଅତି ସାମାନ୍ୟ ବିଷୟକୁ ନେଇ ମଧ୍ୟ ଗୋଟାଏ ଚହଲ ପକେଇ ଦିଏ; କିନ୍ତୁ ଭକ୍ତ କହେ, 'ଈଶ୍ୱର ତାଙ୍କର ଯଥାର୍ଥ ସ୍ୱରୂପ ମୋ ନିକଟରେ ପ୍ରକାଶ କରିବେ' ସେଥିପାଇଁ ସେ ସବୁ ମାନେ ।

ରାବିୟା

ରାବିୟା ରୋଗରେ ହୋଇ ମୁହ୍ୟମାନ
କରିଥିଲି ନିଜ ଶଯ୍ୟାରେ ଶୟନ ।
ଏମନ ସମୟେ ନିକଟେ ତାହାର
ଆଗମନ ହେଲ ମହାତ୍ମା ଦ୍ୱୟର—
ପବିତ୍ର ମାଲିକ ଜ୍ଞାନୀ ସେ ହାସାନ୍
ଯାହାଙ୍କୁ ପୂଜନ୍ତି ସବୁ ମୁସଲ୍‌ମାନ ।
ହାସାନ୍ ତାହାକୁ କହିଲେ ଯେ ଧୀରେ,
"ପବିତ୍ର ଭାବରେ ପ୍ରାର୍ଥନା ଯେ କରେ,
ଯେ ଶାସ୍ତି ଈଶ୍ୱର ଦିଅନ୍ତି ତାହାରେ,
ସନ୍ତୁଷ୍ଟ ଭାବରେ ବହନ ସେ କରେ ।"
ପବିତ୍ର ମାଲିକ—ମହାମନା ଗୁଣୀ,
କହିଲେ ନିଜର ଅନୁଭବ-ବାଣୀ,

"ପ୍ରଭୁଙ୍କର ଇଚ୍ଛା ପ୍ରିୟ ଅଟେ ଯା'ର,
ଆନନ୍ଦ ମିଳିବ ଶାନ୍ତିରେ ତାହାର ।"
ଶୁଣିଣ ସ୍ୱବସ୍ଥା ଦୁଇ ସାଧୁବାଣୀ,
ସ୍ୱାର୍ଥଗନ୍ଧହୀନ ବୋଲି ତାହା ମଣି;
କହିଲି, "ହେ ଈଶ୍ୱ-କୃପାର ଭାଜନ,
ବିନୟେ କରୁଛି ମୁହିଁ ନିବେଦନ—
ଯେ ଜନ ଦେଖିଛି ପ୍ରଭୁଙ୍କ ବଦନ,
ଆନନ୍ଦସାଗରେ ହୋଇବ ମଗନ ।
ପ୍ରାର୍ଥନାକାଳରେ ମନରେ ତାହାର
ନ ଉଠିବ କେବେ ଏପରି ବିଗ୍ଭର—
ପାଇଅଛି ମୁହିଁ କେଉଁକାଳେ ଶାନ୍ତି;
ନ ଜାଣିବ କେବେ କି ଅଟଇ ଶାନ୍ତି ।"

—ପାରସୀ କବିତା

**ଶୁକ୍ରବାର, ୨୬ ଜୁଲାଇ**

(ଆଜି ବେଦାନ୍ତସୂତ୍ରର ଶଙ୍କର-ଭାଷ୍ୟରୁ ପଢ଼ା ହୋଇଥିଲା ।)

'ତତ୍ ତୁ ସମନ୍ୱୟାତ୍'—ବ୍ୟାସସୂତ୍ର ୧।୧।୪ —ଆତ୍ମା ବା ବ୍ରହ୍ମ ହିଁ ସମସ୍ତ ବେଦାନ୍ତର ପ୍ରତିପାଦ୍ୟ ।

ଈଶ୍ୱରଙ୍କୁ ବେଦାନ୍ତରୁ ଜାଣିବାକୁ ହେବ । ସମସ୍ତ ବେଦରେ ଜଗତ୍କାରଣ ସୃଷ୍ଟି-ସ୍ଥିତି-ପ୍ରଳୟକର୍ତ୍ତା ଈଶ୍ୱରଙ୍କ ବିଷୟ କଥିତ ଅଛି । ସମସ୍ତ ହିନ୍ଦୁ ଦେବଦେବୀଙ୍କ ଉପରେ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ଏହି ତିନିଦେବତା ରହିଛନ୍ତି । ଈଶ୍ୱର ଏହି ତିନିଙ୍କର ଏକୀଭାବ । ବେଦ ତୁମକୁ ବ୍ରହ୍ମ ଦର୍ଶନ କରାଇପାରେ ନାହିଁ, ତୁମେ ତ ସେହି ବ୍ରହ୍ମ ହିଁ ରହିଛ । ଆମ ଅକ୍ଷି ଆଗରେ ଯେଉଁ ଆବରଣ ରହି ସତ୍ୟକୁ ଆଢ଼ୁଆଳ କରି ରଖିଛି, ବେଦ କେବଳ ତାହାକୁ ଦୂର କରିବାରେ ସାହାଯ୍ୟ କରିପାରେ । ପ୍ରଥମେ ଅଜ୍ଞାନ-ଆବରଣ ଗ୍ଭଲିଯାଏ । ତା'ପରେ ଯାଏ ପାପ; ତା'ପରେ ବାସନା ଓ ସ୍ୱାର୍ଥପରତା ଦୂର ହୁଏ । ସୁତରାଂ ସବୁ ଦୁଃଖକଷ୍ଟର ଅବସାନ ଘଟେ । ଯେତେବେଳେ ଆମେ ଜାଣିପାରୁ ଯେ, ବ୍ରହ୍ମ ଓ ମୁଁ ଏକ, ସେତେବେଳେ ହିଁ ଅଜ୍ଞାନର ତିରୋଭାବ ସମ୍ଭବ ହୋଇପାରେ, ଅର୍ଥାତ୍ ନିଜକୁ ଆତ୍ମା ସହିତ ଅଭିନ୍ନ କରି ଦେଖ, ମାନବୀୟ ଉପାଧିଗୁଡ଼ିକ ସହିତ ନୁହେଁ । ଦେହାତ୍ମବୁଦ୍ଧି ଦୂର କରିଦିଅ, ତା' ହେଲେ ଯାଇ ସବୁ ଦୁଃଖ ଦୂର ହେବ । ମନୋବଳରେ ରୋଗ ଆରୋଗ୍ୟ କରିଦେବାର ଏହା ହିଁ ରହସ୍ୟ, ଏ ପୃଥିବୀ ଏକ ସମ୍ମୋହନର (hypnotism) ବ୍ୟାପାର; ନିଜ ଉପରୁ ଏହି ସମ୍ମୋହନର ଆବେଶ ଦୂର କରିଦିଅ, ତା'ହେଲେ ତୁମର ଆଉ କଷ୍ଟ ରହିବ ନାହିଁ ।

ମୁକ୍ତ ହେବାକୁ ପଡ଼ିଲେ ପ୍ରଥମେ ପାପ ତ୍ୟାଗ କରି ପୁଣ୍ୟ ଉପାର୍ଜ୍ଜନ କରିବାକୁ

ହେବ, ତାହାପରେ ପାପପୁଣ୍ୟ ଉଭୟ ହିଁ ତ୍ୟାଗ କରିବାକୁ ପଡ଼ିବ । ପ୍ରଥମେ ରଜଃଦ୍ୱାରା ତମକୁ ଜୟ କରିବାକୁ ହେବ, ପରେ ସତ୍ତ୍ୱଗୁଣ ସାହାଯ୍ୟରେ ଏହି ଉଭୟଙ୍କୁ ଜୟ କରିବାକୁ ପଡ଼ିବ—ସର୍ବଶେଷରେ ଏହି ତ୍ରିଗୁଣାତୀତ ଗୁଣକୁ ହିଁ ଅତିକ୍ରମ କରିବାକୁ ହେବ । ଏପରି ଏକ ଅବସ୍ଥା ଲଭ କର, ଯେଉଁଠାରେ ତୁମର ପ୍ରତି ଶ୍ୱାସ-ପ୍ରଶ୍ୱାସରେ ମଧ୍ୟ ଈଶ୍ୱରୋପାସନାର ସଙ୍କେତ ପ୍ରକାଶ ପାଇବ । ଯେତେବେଳେ ଦେଖିବ ଯେ, ଅନ୍ୟର କଥାରୁ କିଛି ଶିକ୍ଷା କରୁଛ, ଜାଣିରଖ ଯେ ପୂର୍ବ ଜନ୍ମରେ ତୁମର ଉକ୍ତ ବିଷୟରେ ଅଭିଜ୍ଞତା ହୋଇଥିଲା । କାରଣ ଅଭିଜ୍ଞତା ହିଁ ଆମର ଏକମାତ୍ର ଶିକ୍ଷକ ।*

ଯେତେ ବେଶୀ କ୍ଷମତା ଲଭ ହେବ, ଦୁଃଖ ସେତିକି ବଢ଼ିଯିବ; ସୁତରାଂ ବାସନାକୁ ଏକାବେଳକେ ନାଶ କରିପକାଅ । କୌଣସି ବାସନା ପୋଷଣ କରିବାର ଅର୍ଥ ବିରୁଡ଼ି-ବସାକୁ ଠେକା ମାରିବା । ବାସନାଗୁଡ଼ିକ ସୁନାପୁଟିଦିଆ ବିଷବଟିକା ସ୍ୱରୂପ—ଏହା ଜାଣିବାର ନାମ ହିଁ ବୈରାଗ୍ୟ ।

'ମନ ବ୍ରହ୍ମ ନୁହେଁ ।' 'ତତ୍ତ୍ୱମସି'—ତୁମେ ହିଁ ସେ । 'ଅହଂ ବ୍ରହ୍ମାସ୍ମି'—ମୁଁ ହିଁ ବ୍ରହ୍ମ । ମନୁଷ୍ୟ ଯେତେବେଳେ ଏହା ଉପଲବ୍ଧି କରେ, ସେତେବେଳେ 'ଭିଦ୍ୟତେ ହୃଦୟଗ୍ରନ୍ଥିଶ୍ଛିଦ୍ୟନ୍ତେ ସର୍ବସଂଶୟାଃ' —ତାହାର ହୃଦୟର ସମସ୍ତ ଗ୍ରନ୍ଥି ଛିଣ୍ଡିଯାଏ, ସବୁ ସଂଶୟ ଲୋପ ପାଏ । ଯେତେଦିନଯାଏ ଆମ ଉପରେ କେହି, ଏପରି କି ଈଶ୍ୱର ପର୍ଯ୍ୟନ୍ତ ରହିବେ, ସେତେଦିନଯାଏ ଅଭୟ ଅବସ୍ଥା ଲଭ ହୋଇପାରିବ ନାହିଁ । ଆମକୁ ସେହି ଈଶ୍ୱର ବା ବ୍ରହ୍ମ ହୋଇଯିବାକୁ ପଡ଼ିବ । ଯଦି ଏଭଳି କୌଣସି ବସ୍ତୁ ଥାଏ, ଯାହା ବ୍ରହ୍ମରୁ ପୃଥକ୍, ତାହା ଚିରକାଳ ଧରି ପୃଥକ୍ ରହିବ; ତୁମେ ଯଦି ସ୍ୱରୂପତଃ ବ୍ରହ୍ମରୁ ପୃଥକ୍ ହୁଅ, ତା'ହେଲେ ତୁମେ କେବେ ହେଲେ ତାହା ସହିତ ଏକ ହୋଇପାରିବ ନାହିଁ; ପୁଣି ବିପରୀତକ୍ରମରେ, ତୁମେ ଯଦି ଏକ ହୁଅ ତା'ହେଲେ କଦାପି ପୃଥକ୍ ରହିପାରିବ ନାହିଁ । ଯଦି ପୁଣ୍ୟ-ବଳରେ ତୁମର ବ୍ରହ୍ମ ସହିତ ଯୋଗ ହୁଏ, ତାହାହେଲେ ପୁଣ୍ୟକ୍ଷୟଯୋଗୁ ହିଁ ବିଚ୍ଛେଦ ଆସିବ । ପ୍ରକୃତ କଥା ହେଉଛି ଯେ, ବ୍ରହ୍ମ ସହିତ ତୁମର ନିତ୍ୟ ଯୋଗ ରହିଛି—ପୁଣ୍ୟ କର୍ମ କେବଳ ଆବରଣ ଦୂର କରିବାରେ ସାହାଯ୍ୟ କରେ । ଆମେ ଆଜାଦ୍ ଅର୍ଥାତ୍ ମୁକ୍ତ, ଆମକୁ ଏହା ହିଁ ଉପଲବ୍ଧି କରିବାକୁ ହେବ ।

'ଯମେବୈଷ ବୃଣୁତେ'**—ଯାହାଙ୍କୁ ଏ ଆତ୍ମା ବରଣ କରନ୍ତି—ଏହାର ତାତ୍ପର୍ଯ୍ୟ

---

* ଯେତେବେଳେ ଆମେ କୌଣସି ବ୍ୟକ୍ତି, ସ୍ଥାନ ବା ବସ୍ତୁକୁ ଜାଣୁ, ସେତେବେଳେ ତାହା ସ୍ମୃତି ମାଧ୍ୟମରେ ହିଁ ଜାଣୁ, ନ ହେଲେ କିଛି ଜାଣୁନାହିଁ । ଯାହା ସମ୍ବନ୍ଧରେ ଅଭିଜ୍ଞତା ଅଛି, ତାହା ସମ୍ବନ୍ଧରେ ହିଁ ସ୍ମୃତି ସମ୍ଭବ । ଏଣୁ ଅଭିଜ୍ଞତା ହିଁ ଏସବୁର ଶିକ୍ଷକ ।

** ନାୟମାତ୍ମା ପ୍ରବଚନେନ ଲଭ୍ୟଃ ନ ମେଧୟା ନ ବହୁନା ଶ୍ରୁତେନ,
ଯମେବୈଷ ବୃଣୁତେ ତେନ ଲଭ୍ୟସ୍ତସ୍ୟୈଷ ଆତ୍ମା ବିବୃଣୁତେ ତନୂଂସ୍ୱାମ୍ ॥
—କଠ ଉପ., ୧।୨।୨୩

ହେଉଛୁ ଆମେ ହିଁ ଆତ୍ମା ଓ ଆମେ ନିଜକୁ ବରଣ କରୁ ।

ବ୍ରହ୍ମଦର୍ଶନ କିଅଣ ଆମ ନିଜ ଚେଷ୍ଟା ଓ ପୁରୁଷକାର ଉପରେ ନିର୍ଭର କରୁଛି ? ଅଥବା ବାହାରର କାହାର ସାହାଯ୍ୟ ଉପରେ ନିର୍ଭର କରୁଛି ?—ଆମ ନିଜ ଚେଷ୍ଟା ଉପରେ ଏହା ନିର୍ଭର କରେ । ଆମ ନିଜ ଚେଷ୍ଟାରେ ହିଁ ଦର୍ପଣ ଉପରେ ଥିବା ମଇଳା ଦୂର ହୁଏ—ଦର୍ପଣ ଯେପରି, ସେହିପରି ଥାଏ । ଜ୍ଞାତା, ଜ୍ଞାନ ଓ ଜ୍ଞେୟ ଏହି ତିନୋଟିର ବାସ୍ତବିକ ଅସ୍ତିତ୍ୱ ନାହିଁ । 'ଯେ ମନେ କରନ୍ତି ଯେ ସେ ଜାଣନ୍ତି ନାହିଁ, ସେ ହିଁ ଠିକ୍ ଠିକ୍ ଜାଣନ୍ତି । ଯେ କେବଳ ଗୋଟିଏ ମତକୁ ଆଶ୍ରୟ କରି ବସିଛନ୍ତି, ସେ କିଛି ଜାଣନ୍ତି ନାହିଁ ।'*

ଆମେ ବଦ୍ଧ, ଏହି ଧାରଣା ହିଁ ଭୁଲ ।

ଧର୍ମ ଜିନିଷଟି ଜାଗତିକ ନୁହେଁ; ଧର୍ମ ହେଉଛି ଚିତ୍ତ-ଶୁଦ୍ଧିର ବ୍ୟାପାର; ଏହି ଜଗତ୍ ଉପରେ ଏହାର ପ୍ରଭାବ ଗୌଣମାତ୍ର । ମୁକ୍ତି ଜିନିଷଟି ଆତ୍ମା-ସ୍ୱରୂପରୁ ଅଭିନ୍ନ । ଆତ୍ମା ସର୍ବଦା ଶୁଦ୍ଧ, ସର୍ବଦା ପୂର୍ଣ୍ଣ, ସର୍ବଦା ଅପରିଣାମୀ । ଏହି ଆତ୍ମାକୁ ତୁମେ କେବେହେଲେ ଜାଣିପାରି ନାହିଁ, ଆମେ ଏହି ଆତ୍ମା ସମ୍ପର୍କରେ 'ନେତି ନେତି' ଛଡ଼ା ଆଉ କିଛି କହି ପାରୁନା । ଶଙ୍କର କହନ୍ତି, 'ଯାହାକୁ ଆମେ ମନ ବା କଳ୍ପନାର ସମସ୍ତ ଶକ୍ତି ପ୍ରୟୋଗ କରି ମଧ୍ୟ ଦୂର କରିପାରୁ ନାହିଁ, ସେ ହିଁ ବ୍ରହ୍ମ ।''

***

ଏହି ଜଗତ୍ ପ୍ରପଞ୍ଚଭାବ ମାତ୍ର; ଆଉ ବେଦ ଏହି ଭାବ-ପ୍ରକାଶକ ଶବ୍ଦ-ରାଶି ମାତ୍ର । ଆମେ ଇଚ୍ଛାନୁଯାୟୀ ଏହି ଜଗତ୍-ପ୍ରପଞ୍ଚକୁ ସୃଷ୍ଟି କରିପାରୁ, ପୁଣି ଧ୍ୱଂସ କରିପାରୁ । ଗୋଟିଏ ସମ୍ପ୍ରଦାୟର କର୍ମୀମାନଙ୍କ ମତ ଏହି ଯେ, ଶବ୍ଦର ବାରମ୍ବାର ଉଚ୍ଚାରଣଦ୍ୱାରା ତାହାର ଅବ୍ୟକ୍ତ ଭାବଟି ଜାଗରିତ ହୁଏ, ଏବଂ ଫଳସ୍ୱରୂପ ଗୋଟିଏ ବ୍ୟକ୍ତ କାର୍ଯ୍ୟ ଉତ୍ପନ୍ନ ହୁଏ । ସେମାନେ କହନ୍ତି, ଆମେ ପ୍ରତ୍ୟେକେ ଜଣେ ଜଣେ ସୃଷ୍ଟିକର୍ତ୍ତା । ଶବ୍ଦବିଶେଷ ଉଚ୍ଚାରଣ କଲେ ହିଁ ତତ୍-ସଶ୍ଳିଷ୍ଟ ଭାବଟି ଉତ୍ପନ୍ନ ହେବ, ଏବଂ ତାହାର ଫଳ ଦେଖାଯିବ । ମୀମାଂସକ ସମ୍ପ୍ରଦାୟ କହନ୍ତି, 'ଭାବ ହେଉଛି ଶବ୍ଦର ଶକ୍ତି ଏବଂ ଶବ୍ଦ ହେଉଛି ଭାବର ଅଭିବ୍ୟକ୍ତି ।'

**ଶନିବାର, ୨୭ ଜୁଲାଇ**

ଆମେ ଯାହା କିଛି ଜାଣୁ ତାହା ମିଶ୍ରଣସ୍ୱରୂପ, ଏବଂ ଆମର ସମସ୍ତ ବିଷୟାନୁଭୂତି ବିଶ୍ଳେଷଣରୁ ହିଁ ଆସିଥାଏ । ମନକୁ ଅମିଶ୍ର ସ୍ୱତନ୍ତ୍ର ବା ସ୍ୱାଧୀନ ବସ୍ତୁ ବୋଲି ଭାବିବା ହିଁ ଦ୍ୱୈତବାଦ । ଶାସ୍ତ୍ର ବା ବହି ପଢ଼ି ଦାର୍ଶନିକ ଜ୍ଞାନ ବା ତତ୍ତ୍ୱଜ୍ଞାନ ହୁଏ ନାହିଁ । ବରଂ ଯେତେ ବହି ପଢ଼ିବ, ମନ ସେତିକି ଗୋଳେଇ ହୋଇଯିବ । ଯେଉଁସବୁ ଦାର୍ଶନିକ-ବିଶେଷ ଚିନ୍ତାଶୀଳ ନୁହଁନ୍ତି, ସେମାନେ ଭାବନ୍ତି ଯେ, ମନ ଏକ ଅମିଶ୍ର ବସ୍ତୁ, ଓ ସେଥିରୁ ସେମାନେ, 'ସ୍ୱାଧୀନ ଇଚ୍ଛା' ନାମକ ମତବାଦରେ ବିଶ୍ୱାସୀ ହୋଇଥିଲେ; କିନ୍ତୁ ମନୋ-

* ଯସ୍ୟାମତଂ ତସ୍ୟ ମତଂ ମତଂ ଯସ୍ୟ ନ ବେଦ ସଃ ।
ଅବିଜ୍ଞାତଂ ବିଜାନତାଂ ବିଜ୍ଞାତମବିଜାନତାମ୍ ॥—କେନ ଉପ., ୨।୩

ବିଜ୍ଞାନ ଶାସ୍ତ୍ର (Psychology) ମନର ଅବସ୍ଥାସମୂହର ବିଶ୍ଳେଷଣ କରି ଦେଖାଇଛି ଯେ, ମନ ଏକ ମିଶ୍ରବସ୍ତୁ, ଏବଂ ଯେହେତୁ ମିଶ୍ରବସ୍ତୁ କୌଣସି ନା କୌଣସି ବାହ୍ୟ ବସ୍ତୁ ବଳରେ ବିଧୃତ ଥାଏ, ସେହି ହେତୁ ମନ ବା ଇଚ୍ଛା ମଧ୍ୟ ବହିଃସ୍ଥ ଶକ୍ତିସମୂହର ସଂଯୋଗରେ ବିଧୃତ ରହିଛି । ଏପରିକି ଯେତେବେଳେ ପର୍ଯ୍ୟନ୍ତ ମନୁଷ୍ୟର କ୍ଷୁଧା ନ ହେଉଛି, ସେତେବେଳେ ପର୍ଯ୍ୟନ୍ତ ସେ ଖାଇବା ପାଇଁ ଇଚ୍ଛା କରିପାରେ ନାହିଁ । ଇଚ୍ଛା ବା ସଂକଳ୍ପ (will) ବାସନାର (desire) ଅଧୀନ; କିନ୍ତୁ ତେବେ ମଧ୍ୟ ଆମେ ସ୍ୱାଧୀନ ବା ମୁକ୍ତସ୍ୱଭାବ—ସମସ୍ତେ ଏହା ଅନୁଭବ କରିଥାଆନ୍ତି ।

ଅଜ୍ଞେୟବାଦୀମାନେ କହନ୍ତି, ଏହି ଧାରଣା ଭ୍ରମମାତ୍ର । ତା'ହେଲେ ଜଗତର ଅସ୍ତିତ୍ୱର ପ୍ରମାଣ କିପରି ହେବ ? ତାହାର ଏହା ହିଁ ପ୍ରମାଣ ଯେ, ଆମେ ସମସ୍ତେ ଜଗତକୁ ଦେଖୁଛୁ ଓ ତା'ର ଅସ୍ତିତ୍ୱକୁ ଅନୁଭବ କରୁଛୁ । ତା'ହେଲେ ଆମେ ଯେ ସମସ୍ତେ ନିଜ ନିଜକୁ ମୁକ୍ତସ୍ୱଭାବ ବୋଲି ଅନୁଭବ କରୁଛୁ, ଏହି ଅନୁଭବ ଯଥାର୍ଥ ନ ହେବ କାହିଁକି ? ଯଦି ସମସ୍ତେ ଅନୁଭବ କରୁଛନ୍ତି ବୋଲି ଜଗତର ଅସ୍ତିତ୍ୱକୁ ସ୍ୱୀକାର କରିବାକୁ ହୁଏ, ତା'ହେଲେ ସମସ୍ତେ ଯେତେବେଳେ ନିଜକୁ ମୁକ୍ତସ୍ୱଭାବ ବା ସ୍ୱାଧୀନ-ପ୍ରକୃତି ବୋଲି ଅନୁଭବ କରୁଛନ୍ତି, ସେତେବେଳେ ତାହାର ଅସ୍ତିତ୍ୱ ମଧ୍ୟ ସ୍ୱୀକାର କରିବାକୁ ପଡ଼ିବ । ତେବେ ଇଚ୍ଛାକୁ ଆମେ ଯେଉଁଭଳି ଦେଖୁଛୁ, ସେ ସମ୍ପର୍କରେ 'ସ୍ୱାଧୀନ' ଶବ୍ଦକୁ ପ୍ରୟୋଗ କଲେ ଚଳିବ ନାହିଁ । ମନୁଷ୍ୟର ନିଜ ମୁକ୍ତସ୍ୱଭାବ ସମ୍ପର୍କରେ ଏହି ସ୍ୱାଭାବିକ ବିଶ୍ୱାସ ହିଁ ସମସ୍ତ ତର୍କ ଯୁକ୍ତି ଓ ବିଚାରର ଭିତ୍ତି । 'ଇଚ୍ଛା' ବଦ୍ଧଭାବାପନ୍ନ ହେବା ଆଗରୁ ଯେପରି ଥିଲା, ତାହା ହିଁ ମୁକ୍ତସ୍ୱଭାବ । ଏହି ଯେ ମନୁଷ୍ୟର ସ୍ୱାଧୀନ ଇଚ୍ଛାର ଧାରଣା,ଏହାଦ୍ୱାରା ପ୍ରତିମୁହୂର୍ତ୍ତରେ ଦେଖାଯାଉଛି ଯେ, ମନୁଷ୍ୟ ବନ୍ଧନ କଟାଇବାର ଚେଷ୍ଟା କରୁଛି । ଏକମାତ୍ର ବସ୍ତୁ ପ୍ରକୃତ ମୁକ୍ତସ୍ୱଭାବ ହୋଇପାରେ—ତାହା ଅନନ୍ତ, ଅସୀମ, ଦେଶକାଳ ନିମିତ୍ତର ବାହାରେ । ମନୁଷ୍ୟ ଭିତରେ ବର୍ତ୍ତମାନ ଯେଉଁ ସ୍ୱାଧୀନତା ରହିଛି, ତାହା ଏକ ପୂର୍ବ ସ୍ମୃତି ମାତ୍ର, ସ୍ୱାଧୀନତା ବା ମୁକ୍ତିଲାଭର ଚେଷ୍ଟାମାତ୍ର ।

ଜଗତରେ ସବୁ ଜିନିଷ ବୁଲି ବୁଲି ଗୋଟିଏ ବୃତ୍ତ ସଂପୂର୍ଣ୍ଣ କରିବାର ଚେଷ୍ଟା କରୁଛି—ତା'ର ଉତ୍ପତ୍ତି ସ୍ଥାନକୁ ଯିବାର, ତାହାର ଏକମାତ୍ର ଯଥାର୍ଥ ଉତ୍ପତ୍ତିସ୍ଥାନ ଆତ୍ମା ନିକଟକୁ ଯିବାର ଚେଷ୍ଟା କରୁଛି । ମନୁଷ୍ୟ ଯେଉଁ ସୁଖର ଅନ୍ୱେଷଣ କରୁଛି, ତାହା ଅନ୍ୟ କିଛି ନୁହେଁ—ତାହା ଯେଉଁ ସାମ୍ୟଭାବ ହରାଇଛି, ତାହାକୁ ପାଇବାକୁ ପୁଣି ଚେଷ୍ଟା କରୁଛି । ଏହି ନୀତି-ପାଳନ ମଧ୍ୟ ବଦ୍ଧଭାବାପନ୍ନ ଇଚ୍ଛାର ମୁକ୍ତ ହେବାର ଚେଷ୍ଟା ଓ ଏଥିରୁ ପ୍ରମାଣିତ ହୁଏ ଯେ, ଆମେ ପୂର୍ଣ୍ଣାବସ୍ଥାରୁ ତଳକୁ ଖସି ଆସିଛୁ । ***

କର୍ତ୍ତବ୍ୟର ଧାରଣା ଦୁଃଖରୂପକ ମଧ୍ୟାହ୍ନ ମାର୍ତ୍ତଣ୍ଡ ପରି—ଆତ୍ମାକୁ ଯେପରି ଦଗ୍ଧ କରି ପକାଉଛି । 'ହେ ରାଜନ୍, ଏହି ଏକ ବିନ୍ଦୁ ଅମୃତ ପାନ କରି ସୁଖୀ ହୁଅ ।' ଆତ୍ମା ଅକର୍ତ୍ତା—ଏହି ଧାରଣା ହିଁ ଅମୃତ ।

କାର୍ଯ୍ୟ କରିଚାଲ, କିନ୍ତୁ ତାହାର ପ୍ରତିକ୍ରିୟା ଯେପରି ନ ଆସେ । କାର୍ଯ୍ୟ ଯେପରି

ସୁଖକର ହୋଇପାରେ । ସମସ୍ତ ଦୁଃଖ ହେଉଛି ପ୍ରତିକ୍ରିୟାର ଫଳ । ଶିଶୁ ନିଆଁରେ ହାତ ଦିଏ—ତା'ର ସୁଖ ହୁଏ ବୋଲି, କିନ୍ତୁ ଯେତେବେଳେ ତାହାର ଶରୀର ପ୍ରତିକ୍ରିୟା କରେ, ସେତେବେଳେ ପୋଡ଼ିଯିବାର କଷ୍ଟ ବୋଧ ହୋଇଥାଏ । ଏହି ପ୍ରତିକ୍ରିୟା ବନ୍ଦ କରି ପାରିଲେ ଆମର ଭୟର କାରଣ ଆଉ କିଛି ନାହିଁ । ମସ୍ତିଷ୍କକୁ ନିଜ ବଶକୁ ନେଇଆସ, ସେ ଯେପରି ପ୍ରତିକ୍ରିୟାର ଖବର ରଖି ନ ପାରେ । ସାକ୍ଷୀସ୍ୱରୂପ ହୁଅ, ପ୍ରତିକ୍ରିୟା ଯେପରି ନ ଆସେ ଦୃଷ୍ଟି ଦିଅ । କେବଳ ତା'ହେଲେ ଯାଇ ତୁମେ ସୁଖୀ ହୋଇପାରିବ । ଆମେ ଯେଉଁ ସମୟରେ ନିଜକୁ ଏକାବେଳକେ ବିସ୍ମୃତ ହେଉ, ତାହା ହିଁ ଆମ ଜୀବନର ସବୁଠାରୁ ସୁଖକର ମୁହୂର୍ତ୍ତ । ସ୍ୱାଧୀନଭାବରେ ପ୍ରାଣ ଖୋଲି କାର୍ଯ୍ୟ କର, କର୍ତ୍ତବ୍ୟର ଭାବରୁ କାର୍ଯ୍ୟ କର ନାହିଁ । ଆମର କୌଣସି କର୍ତ୍ତବ୍ୟ ନାହିଁ । ଏହି ପୃଥିବୀ ତ ଏକ କ୍ରୀଡ଼ାଭୂମି—ଆମେ ଏଠାରେ ଖେଳୁଛୁ, ଆମ ଜୀବନ ତ ଆନନ୍ଦାବକାଶ ।

ଜୀବନର ସମସ୍ତ ରହସ୍ୟ ହେଉଛି ନିର୍ଭୀକ ହେବା । ତୁମର କଅଣ ହେବ, ଏହି ଭୟ କେବେ ହେଲେ କର ନାହିଁ, କାହାରି ଉପରେ ନିର୍ଭର କର ନାହିଁ । ଯେତେବେଳେ ତୁମେ ଅନ୍ୟର ସାହାଯ୍ୟ ଆଶା ଛାଡ଼ିଦିଅ, କେବଳ ସେହି ମୁହୂର୍ତ୍ତରେ ହିଁ ତୁମେ ମୁକ୍ତ । ଯେଉଁ ସ୍ପଞ୍ଜ ପୂରାପୂରି ପାଣି ଶୋଷି ନେଇଛି, ସେ ଆଉ ପାଣି ଟାଣିପାରିବ ନାହିଁ । ***

ଆତ୍ମରକ୍ଷା ପାଇଁ ମଧ୍ୟ ସଂଗ୍ରାମ କରିବା ଅନ୍ୟାୟ—ଯଦ୍ୟପି ଉପରେ ପଡ଼ି ଅପରକୁ ଆକ୍ରମଣ କରିବାଠାରୁ ତାହା ଉଚ୍ଚକୋଟିର । 'ନ୍ୟାଯ୍ୟ କ୍ରୋଧ' ବୋଲି କୌଣସି ଜିନିଷ ନାହିଁ; କାରଣ, ସବୁ ଜିନିଷରେ ସମତ୍ୱବୁଦ୍ଧିର ଅଭାବରୁ ହିଁ କ୍ରୋଧ ଆସିଥାଏ ।

**ରବିବାର, ୨୪ ଜୁଲାଇ**

ଭାରତର ଦର୍ଶନଶାସ୍ତ୍ରର ଅର୍ଥ ହେଉଛି—ଯେଉଁ ଶାସ୍ତ୍ର ବା ବିଦ୍ୟାଦ୍ୱାରା ଆମେ ଈଶ୍ୱର-ସାକ୍ଷାତ୍କାର କରିପାରୁ । ଦର୍ଶନ ହେଉଛି ଧର୍ମର ଯୁକ୍ତିସଙ୍ଗତ ବ୍ୟାଖ୍ୟାସ୍ୱରୂପ । ସୁତରାଂ କୌଣସି ହିନ୍ଦୁ କେବେହେଲେ ଧର୍ମ ଓ ଦର୍ଶନ ମଧ୍ୟରେ ସଂଯୋଗସୂତ୍ର କଅଣ ତାହା ଜାଣିବାକୁ ଚାହିଁବ ନାହିଁ ।

ଦାର୍ଶନିକ ଚିନ୍ତାପ୍ରଣାଳୀର ତିନୋଟି ସୋପାନ ରହିଛି; ପ୍ରଥମ—ସ୍ଥୂଳବସ୍ତୁ-ସମୂହର ପୃଥକ୍ ପୃଥକ୍ ଜ୍ଞାନ (concrete) ୨ୟ—ଏହିଗୁଡ଼ିକୁ ଏକ ଏକ ଶ୍ରେଣୀରେ ଶ୍ରେଣୀଭୁକ୍ତ କରିବା ବା ସେମାନଙ୍କ ମଧ୍ୟରେ ସାମାନ୍ୟ ଆବିଷ୍କାର କରିବା (generalised). ୩ୟ—ସେହି ସାମାନ୍ୟଗୁଡ଼ିକ ଭିତରୁ ପୁଣି ସୂକ୍ଷ୍ମ ବିଚାରଦ୍ୱାରା ଐକ୍ୟ ଆବିଷ୍କାର କରିବା (abstract) । ସମସ୍ତ ବସ୍ତୁ ଯେଉଁଠାରେ ଏକତ୍ୱ ପ୍ରାପ୍ତ ହୁଏ, ସେହି ଚୂଡ଼ାନ୍ତ ବସ୍ତୁ ହେଉଛନ୍ତି ଅଦ୍ୱିତୀୟ ବ୍ରହ୍ମ । ଧର୍ମର ପ୍ରଥମାବସ୍ଥାରେ ଭିନ୍ନ ଭିନ୍ନ ପ୍ରତୀକ ବା ରୂପବିଶେଷର ସହାୟତା ଗୃହୀତ ହୋଇଥିବାର ଦେଖାଯାଏ, ୨ୟାବସ୍ଥାରେ ନାନାବିଧ ପୌରାଣିକ ବର୍ଣ୍ଣନା ଓ ଉପଦେଶର ବାହୁଲ୍ୟ; ସର୍ବଶେଷ ଅବସ୍ଥାରେ ଦାର୍ଶନିକ ତତ୍ତ୍ୱସମୂହର ବିବୃତି । ଏମାନଙ୍କ ମଧ୍ୟରେ ପ୍ରଥମ ଦୁଇଟି କେବଳ ସାମୟିକ ପ୍ରୟୋଜନ ପାଇଁ; କିନ୍ତୁ ଦର୍ଶନ ହିଁ ଏହି ସମସ୍ତର ମୂଳ-ଭିତ୍ତିସ୍ୱରୂପ ଓ ଅନ୍ୟଗୁଡ଼ିକ ସେହି ଚରମ ତତ୍ତ୍ୱରେ ପହଞ୍ଚିବାର ସୋପାନ-ସ୍ୱରୂପ ମାତ୍ର ।

ପାଶ୍ଚାତ୍ୟ ଦେଶରେ ଧର୍ମର ଧାରଣା ଏହି ଯେ, ବାଇବେଲର ନିଉ ଟେଷ୍ଟାମେଣ୍ଟ ଓ ଖ୍ରୀଷ୍ଟଙ୍କ ବ୍ୟତୀତ ଧର୍ମ ହୋଇପାରିବ ନାହିଁ । ଇହୁଦୀଧର୍ମରେ ମଧ୍ୟ ମୁଶା ଓ ପ୍ରଫେଟ୍‌ମାନଙ୍କ ସମ୍ବନ୍ଧରେ ଏହି ପ୍ରକାର ଧାରଣା ଅଛି । ଏହିଭଳି ଧାରଣାର କାରଣ ଏହି ଯେ, ଏସବୁ ଧର୍ମ କେବଳ ପୌରାଣିକ ବର୍ଣ୍ଣନା ଉପରେ ନିର୍ଭର କରେ । ଯାହା ପ୍ରକୃତ ସର୍ବୋଚ୍ଚ ଧର୍ମ ତାହା ଏହିସବୁ ପୌରାଣିକ ବର୍ଣ୍ଣନା ବାହାରେ; ସେହି ଧର୍ମ କେବେହେଲେ ଏସବୁ ଉପରେ ନିର୍ଭର କରିପାରେ ନାହିଁ । ଆଧୁନିକ ବିଜ୍ଞାନ ବାସ୍ତବିକ୍ ଧର୍ମର ଭିତ୍ତିକୁ ଅଧିକ ସୁଦୃଢ଼ କରିଛି । ସମଗ୍ର ବ୍ରହ୍ମାଣ୍ଡ ଯେ ଏକ ଅଖଣ୍ଡ ବସ୍ତୁ, ତାହା ବିଜ୍ଞାନଦ୍ୱାରା ପ୍ରମାଣ କରାଯାଇ-ପାରେ । ଦାର୍ଶନିକ ଯାହାକୁ ସତ୍ତା (being) ବୋଲି କହନ୍ତି, ବୈଜ୍ଞାନିକମାନେ ତାହାକୁ 'ଜଡ଼' (matter) ବୋଲି କହିଥାନ୍ତି; କିନ୍ତୁ ଯଥାର୍ଥଭାବରେ ଦେଖିବାକୁ ଗଲେ ଏହି ଦୁଇ ପକ୍ଷ ମଧ୍ୟରେ କୌଣସି ବିରୋଧ ନାହିଁ । କାରଣ ଉଭୟେ ସମାନ ଜିନିଷ । ପରମାଣୁ ଅଦୃଶ୍ୟ ଓ ଅଚିନ୍ତ୍ୟ, ଅଥଚ ତାହାଠାରେ ବ୍ରହ୍ମାଣ୍ଡର ସମସ୍ତ ଶକ୍ତି ଓ ସମ୍ଭାବନା ରହିଛି । ବେଦାନ୍ତୀମାନେ ମଧ୍ୟ ଆତ୍ମା ସମ୍ପର୍କରେ ଠିକ୍ ଏହିଭଳି କଥା କହିଥାନ୍ତି । ପ୍ରକୃତ ପକ୍ଷରେ ସମସ୍ତ ସମ୍ପ୍ରଦାୟ ବିଭିନ୍ନ ଭାଷାରେ ଏହି ସମାନ କଥା କହିଛନ୍ତି ।

ବେଦାନ୍ତ ଓ ଆଧୁନିକ ବିଜ୍ଞାନ ଉଭୟ ହିଁ ଜଗତର କାରଣସ୍ୱରୂପ ଏଭଳି ଏକ ବସ୍ତୁକୁ ନିର୍ଦ୍ଦେଶ କରିଛନ୍ତି ଯେଉଁଥିରୁ ଅନ୍ୟ କିଛିର ସାହାଯ୍ୟ ବିନା ଜଗତର ପ୍ରକାଶ ଘଟିଛି । ସେହି ଏକ କାରଣ ହିଁ ନିମିତ୍ତ ଏବଂ ସମବାୟ ଓ ଅସମବାୟ ଉପାଦାନ -କାରଣ ସବୁ କିଛି । କୁମ୍ଭକାର ଯେପରି ମାଟିରୁ ଘଟ ତିଆରି କରୁଛି; ଏଠାରେ କୁମ୍ଭକାର ହେଉଛି ନିମିତ୍ତ-କାରଣ, ମୃତ୍ତିକା ହେଉଛି ସମବାୟ-ଉପାଦାନ-କାରଣ ଏବଂ କୁମ୍ଭକାର ଓ ଚକ ଅସମବାୟ-ଉପାଦାନ-କାରଣ; କିନ୍ତୁ ଏହି ତିନି ହିଁ ଆତ୍ମା । ଆତ୍ମା କାରଣ ଅଟନ୍ତି ଓ ଅଭିବ୍ୟକ୍ତ ବା କାର୍ଯ୍ୟ ମଧ୍ୟ ଅଟନ୍ତି । ବେଦାନ୍ତୀ କହନ୍ତି—ଏହି ଜଗତ୍ ସତ୍ୟ ନୁହେଁ, ଏହା ଆପାତ-ପ୍ରତୀୟମାନ ସତ୍ତାମାତ୍ର । ପ୍ରକୃତ ଅନ୍ୟ କିଛି ନୁହେଁ, ଅବିଦ୍ୟାବରଣର ମଧ୍ୟଦେଇ ପ୍ରକାଶିତ ବ୍ରହ୍ମମାତ୍ର । ବିଶିଷ୍ଟାଦ୍ୱୈତବାଦୀମାନେ କହନ୍ତି, ଈଶ୍ୱର ପ୍ରକୃତି ବା ଏହି ଜଗତ୍-ପ୍ରପଞ୍ଚ ହୋଇଛନ୍ତି । ଅଦ୍ୱୈତବାଦୀମାନେ କହନ୍ତି, ଈଶ୍ୱର ଏହି ଜଗତ୍-ପ୍ରପଞ୍ଚରୂପେ ପ୍ରତୀୟମାନ ହେଉଛନ୍ତି ସତ୍ୟ, କିନ୍ତୁ ସେ ଜଗତ୍ ନୁହଁନ୍ତି ।

ଆମେ ଅନୁଭୂତିବିଶେଷକୁ ଏକ ମାନସିକ ପ୍ରକ୍ରିୟାରୂପେ ଜାଣିପାରୁ—ଏହାକୁ ମାନସିକ ଏକ ଘଟଣାରୂପରେ ଓ ମସ୍ତିଷ୍କ ମଧ୍ୟରେ ଗୋଟିଏ ଦାଗରୂପରେ ଜାଣିପାରୁ । ଆମେ ମସ୍ତିଷ୍କକୁ ଆଗକୁ ବା ପଛକୁ ଚଳାଇପାରୁ ନାହିଁ; କିନ୍ତୁ ମନକୁ ପାରୁ । ମନକୁ ଭୂତ, ଭବିଷ୍ୟତ, ବର୍ତ୍ତମାନ—ସବୁକାଳରେ ପ୍ରସାରିତ କରାଯାଇପାରେ; ସୁତରାଂ ମନ ମଧ୍ୟରେ ଯାହା ଯାହା ଘଟେ, ତାହା ଅନନ୍ତକାଳ ଲଗି ସଞ୍ଚିତ ରହିଥାଏ । ମନ ମଧ୍ୟରେ ସବୁ ଘଟଣା ପୂର୍ବରୁ ହିଁ ସଂସ୍କାର-ଆକାରରେ ରହିଛି, କାରଣ ମନ ସର୍ବବ୍ୟାପୀ ।

ଦେଶ-କାଳ-ନିମିତ୍ତ ଯେ ଚିନ୍ତାର ପ୍ରଣାଳୀବିଶେଷ—ଏହି ଆବିଷ୍କ୍ରିୟା ହିଁ କାଣ୍ଟଙ୍କ ଶ୍ରେଷ୍ଠ କୃତିତ୍ୱ; କିନ୍ତୁ ବେଦାନ୍ତ ବହୁ ପୂର୍ବରୁ ଏହି କଥା ଶିକ୍ଷା ଦେଇ ଯାଇଛି ଓ ଏହାକୁ

'ମାୟା' ଆଖ୍ୟା ଦେଇଛୁ । କେବଳ ଯୁକ୍ତିକୁ ଭିତ୍ତି କରି ସୋପେନହାଓ୍ୱାର୍ ବେଦାନ୍ତ ତତ୍ତ୍ୱଗୁଡ଼ିକୁ ଯୁକ୍ତି ସାହାଯ୍ୟରେ ବ୍ୟାଖ୍ୟା କରିବାକୁ ଚେଷ୍ଟା କରିଛନ୍ତି । ଶଙ୍କର ବେଦକୁ 'ଆର୍ଷ' ବୋଲି କହି ଯାଇଛନ୍ତି ।

***

ବହୁସଂଖ୍ୟକ ବୃକ୍ଷ ଦେଖି ସେମାନଙ୍କର ସାଧାରଣ ଧର୍ମ ଯେ ବୃକ୍ଷତ୍ୱ—ଏହି ଆବିଷ୍କାରର ନାମ ହିଁ ଜ୍ଞାନ । ଆଉ ସେହି ଏକ ବସ୍ତୁର ଜ୍ଞାନ ହେଉଛି ସର୍ବୋଚ୍ଚ ଜ୍ଞାନ ।···

ସମସ୍ତ ଜଗତ୍-ପ୍ରପଞ୍ଚର ଚରମ ସାମାନ୍ୟ ବା ସାଧାରଣ ଭାବ ହିଁ ସଗୁଣ ଈଶ୍ୱର; କେବଳ ତାହା ଅସ୍ପଷ୍ଟ ଓ ସୁନିର୍ଦ୍ଦିଷ୍ଟ ଏବଂ ଦାର୍ଶନିକ ବିଶ୍ୱରସମ୍ମତ ନୁହେଁ ।···

ସେହି ଏକ ତତ୍ତ୍ୱ ସ୍ୱୟଂ ଅଭିବ୍ୟକ୍ତ ହେଉଛି ଏବଂ ସେଥିରୁ ସବୁ କିଛି ଘଟୁଛି ।···

ଘଟଣାବଳୀର ଆବିଷ୍କାର ହିଁ —ପଦାର୍ଥବିଜ୍ଞାନର କାର୍ଯ୍ୟ ଏବଂ ଦର୍ଶନ ଏହି ବିଭିନ୍ନ ଘଟଣାରୂପକ ଫୁଲଗୁଡ଼ିକୁ ନେଇ ଗୁଚ୍ଛ ବାନ୍ଧିବା ସୂତାଭଳି । ଚିନ୍ତା ସାହାଯ୍ୟରେ ଐକ୍ୟ-ଆବିଷ୍କାରର ଚେଷ୍ଟା ମାତ୍ର ହିଁ ଦର୍ଶନର କ୍ଷେତ୍ରାଧୀନ । ଏପରି କି, ଗୋଟିଏ ଗଛ ମୂଳରେ ସାର ଦେବା ବିଷୟରେ ମଧ୍ୟ ଏହିଭଳି ଏକ ଐକ୍ୟାବିଷ୍କାର ପ୍ରଣାଳୀର (proces of abstraction) ସାହାଯ୍ୟ ନେବାକୁ ହୁଏ ।···

ଧର୍ମ ଭିତରେ ସ୍ଥୂଳ, ଅପେକ୍ଷାକୃତ ସୂକ୍ଷ୍ମତତ୍ତ୍ୱ ଓ ଚରମ ଏକତ୍ୱ—ଏ ତିନି ଭାବ ରହିଛି । କେବଳ ସ୍ଥୂଳ ବା ବିଶେଷକୁ ନେଇ ପଡ଼ି ରହ ନାହିଁ । ସେହି ଚରମ ସୂକ୍ଷ୍ମ ତତ୍ତ୍ୱକୁ, ସେହି ଏକତ୍ୱକୁ ବୁଝିଯାଅ ।

***

ଅସୁରମାନେ ତମଃପ୍ରଧାନ ଯନ୍ତ୍ର, ଦେବତାମାନେ ସତ୍ତ୍ୱପ୍ରଧାନ ଯନ୍ତ୍ର; କିନ୍ତୁ ଉଭୟେ ଯନ୍ତ୍ର; ମନୁଷ୍ୟ ହିଁ କେବଳ ଜୀବନ୍ତ, ଯନ୍ତ୍ରବତ୍ ନୁହେଁ । ଯନ୍ତ୍ରବତ୍ ଭାବକୁ ଦୂର କରିଦିଅ, ଦେବ ଓ ଅସୁର, ଏହି ଦୁଇ ଅପେକ୍ଷା ତୁମେ ଶ୍ରେଷ୍ଠ—ଏହା ହିଁ ଧାରଣା କର, ତେବେ ଯାଇଁ ତୁମେ ମୁକ୍ତ ହୋଇପାରିବ । ଏହି ପୃଥିବୀ ହିଁ ଏକମାତ୍ର ସ୍ଥାନ, ଯେଉଁଠାରେ ମଣିଷ ନିଜର ମୁକ୍ତି-ସାଧନ କରିପାରେ ।

'ଯମେବୈଷ ବୃଣୁତେ ତେନ ଲଭ୍ୟଃ'—

ଏହି ଆତ୍ମା ଯାହାକୁ ବରଣ କରନ୍ତି, ଏ କଥାଟି ସତ୍ୟ । ବରଣ ବା ମନୋନୀତ କରିବାଟା ହେଉଛି ସତ୍ୟ; କିନ୍ତୁ ଭିତର ଦିଗରୁ ଏହାର ଅର୍ଥ କରିବାକୁ ହେବ । ବାହାର ଆଡ଼ୁ କେହି ବରଣ କରୁଛି—କଥାଟିକୁ ଯଦି ଏହିଭଳି ଅଦୃଷ୍ଟବାଦମୂଳକ ବ୍ୟାଖ୍ୟା କରାଯାଏ, ତେବେ ଏହା ଭୀଷଣ ଆକାର ଧାରଣ କରିବ ।

**ସୋମବାର, ୨୫ ଜୁଲାଇ**

ଜଗତ ଭଳି ଯେଉଁଠାରେ ସ୍ତ୍ରୀ-ଲୋକମାନଙ୍କର ବହୁ-ବିବାହପ୍ରଥା ପ୍ରଚଳିତ ରହିଛି, ସେଠାରେ ସ୍ତ୍ରୀଲୋକମାନେ ପୁରୁଷମାନଙ୍କ ଅପେକ୍ଷା ଅଧିକ ବଳବତୀ ହୋଇଥାନ୍ତି । ଯେତେବେଳେ ଇଂରେଜମାନେ ସେ ଦେଶକୁ ଯାଆନ୍ତି, ଏହି ସ୍ତ୍ରୀ-ଲୋକମାନେ ଯୁବକ ପୁରୁଷମାନଙ୍କୁ କାନ୍ଧରେ ବସାଇ ପାହାଡ଼କୁ ଉଠନ୍ତି ।

ମାଲବାର ଦେଶରେ ଅବଶ୍ୟ ସ୍ତ୍ରୀ-ଲୋକମାନଙ୍କର ବହୁ-ବିବାହ ନାହିଁ; କିନ୍ତୁ

ସେଠାରେ ସବୁ ବିଷୟରେ ସ୍ତ୍ରୀଲୋକଙ୍କର ପ୍ରାଧାନ୍ୟ ରହିଛି । ସେଠାରେ ସବଂଦା ଖୁବ୍ ପରିଷ୍କାର ପରିଚ୍ଛନ୍ନ ରଖିବା ଦିଗରେ ଦୃଷ୍ଟି ଦିଆଯାଏ ଓ ବିଦ୍ୟା-ଚର୍ଚ୍ଚା ଉପରେ ବିଶେଷ ଉତ୍ସାହ ରହିଛି । ମୁଁ ଯେତେବେଳେ ସେହି ଦେଶକୁ ଯାଇଥିଲି, ବହୁ ସ୍ତ୍ରୀ-ଲୋକଙ୍କୁ ଭଲ ଭାବରେ ସଂସ୍କୃତ କହୁଥିବାର ଦେଖିଥିଲି; କିନ୍ତୁ ଭାରତର ଅନ୍ୟ ସ୍ଥାନରେ ଦଶଲକ୍ଷ ଲୋକଙ୍କ ଭିତରେ ଜଣେ ଏଭଳି କହିପାରିବେ କି ନାହିଁ ସନ୍ଦେହ । ସ୍ୱାଧୀନତାଦ୍ୱାରା ଉନ୍ନତି ହୋଇଥାଏ; କିନ୍ତୁ ଦାସତ୍ୱ ଯୋଗୁ ଅବନତି ଘଟିଥାଏ । ପର୍ତ୍ତୁଗୀଜ ବା ମୁସଲମାନ-ମାନେ କେବେହେଲେ ମାଲବାର ଜୟ କରି ନାହାନ୍ତି ।

ଦ୍ରାବିଡ଼ମାନେ ମଧ୍ୟ-ଏସିଆର ଏକ ଅନାର୍ଯ୍ୟ ଜାତି—ଆର୍ଯ୍ୟମାନଙ୍କ ଆଗରୁ ସେମାନେ ଭାରତକୁ ଆସିଥିଲେ ଓ ଦାକ୍ଷିଣାତ୍ୟରେ ଦ୍ରାବିଡ଼ମାନେ ହିଁ ସବୁଠାରୁ ସଭ୍ୟ ଥିଲେ । ସେମାନଙ୍କ ମଧ୍ୟରେ ପୁରୁଷ ଅପେକ୍ଷା ନାରୀର ସାମାଜିକ ଅବସ୍ଥା ଉନ୍ନତ ଥିଲା । ପରେ ସେମାନେ ବିଭକ୍ତ ହୋଇଗଲେ, କେତେକ ମିଶର କେତେକ ବାବିଲୋନ୍‌କୁ ଚାଲି-ଗଲେ; ଅବଶିଷ୍ଟ ଭାଗ ଭାରତରେ ରହିଲେ ।

**ମଙ୍ଗଳବାର, ୨୬ ଜୁଲାଇ**

**(ଶଙ୍କର)**

ଅଦୃଷ୍ଟ (ଅର୍ଥାତ୍ ଅବ୍ୟକ୍ତ କାରଣ ବା ସଂସ୍କାର) ଆମମାନଙ୍କୁ ଯାଗଯଜ୍ଞ ଉପାସନାଦି କରାଇଥାଏ, ସେଥିରୁ ବ୍ୟକ୍ତ ଫଳ ଉତ୍ପନ୍ନ ହୁଏ; କିନ୍ତୁ ମୁକ୍ତିଲାଭ କରିବାକୁ ହେଲେ ଆମ-ମାନଙ୍କୁ ବ୍ରହ୍ମସମ୍ପର୍କରେ ପ୍ରଥମେ ଶ୍ରବଣ, ପରେ ମନନ ଓ ତା'ପରେ ନିଦିଧ୍ୟାସନ କରିବାକୁ ହେବ ।

କର୍ମଫଳ ଓ ଜ୍ଞାନର ଫଳ ସମ୍ପୂର୍ଣ୍ଣ ପୃଥକ୍ । ସମସ୍ତ ନୀତି-ଧର୍ମର ମୂଳ ହେଉଛି ବିଧିନିଷେଧ—'ଏହି କାର୍ଯ୍ୟ କର' ଏବଂ 'ଏହି କାର୍ଯ୍ୟ କର ନାହିଁ'; କିନ୍ତୁ ପ୍ରକୃତ ପକ୍ଷରେ ଦେହ ମନ ସାଙ୍ଗରେ ଏହାର ସମ୍ବନ୍ଧ । ଏହାର ଫଳସ୍ୱରୂପ ସୁଖ-ଦୁଃଖ ଇନ୍ଦ୍ରିୟ ସହିତ ଅଚ୍ଛେଦ୍ୟ ଭାବରେ ଜଡ଼ିତ; ସୁତରାଂ ସୁଖ-ଦୁଃଖ ଭୋଗ କରିବାକୁ ଗଲେ ଶରୀରର ପ୍ରୟୋଜନ । ଯାହାର ଦେହ ଯେତେ ଶ୍ରେଷ୍ଠ ହେବ, ତାହାର ଧର୍ମ ବା ପୁଣ୍ୟର ଆଦର୍ଶ ସେତିକି ଉଚ୍ଚତର ହେବ; ଏହିପରି ବ୍ରହ୍ମା ପର୍ଯ୍ୟନ୍ତ; କିନ୍ତୁ ସମସ୍ତଙ୍କର ହିଁ ଶରୀର ଅଛି । ଆଉ ଯେପର୍ଯ୍ୟନ୍ତ ଦେହ ଅଛି, ସେପର୍ଯ୍ୟନ୍ତ ସୁଖ-ଦୁଃଖ ରହିବ; କେବଳ ଦେହାତୀତ ବା ବିଦେହ ହେଲେ ସୁଖ-ଦୁଃଖକୁ ଏକାବେଳକେ ଅତିକ୍ରମ କରାଯାଇପାରେ । ଶଙ୍କର କହନ୍ତି, ଆତ୍ମା ବିଦେହ ।

କୌଣସି ବିଧିନିଷେଧଦ୍ୱାରା ମୁକ୍ତିଲାଭ ହୋଇପାରେ ନାହିଁ । ତୁମେ ସବଂଦା ମୁକ୍ତ ଅଛ । ଯଦି ପୂର୍ବରୁ ତୁମେ ମୁକ୍ତ ନ ଥାଅ, କିଛି ତୁମକୁ ମୁକ୍ତ ଦେଇପାରିବ ନାହିଁ । ଆତ୍ମା ସ୍ୱପ୍ରକାଶ । କାର୍ଯ୍ୟକାରଣ ଆତ୍ମାକୁ ସ୍ପର୍ଶ କରିପାରେ ନାହିଁ—ଏହି ବିଦେହ ଅବସ୍ଥାର ନାମ ହିଁ ମୁକ୍ତି । ବ୍ରହ୍ମ ଭୂତ, ଭବିଷ୍ୟତ୍ ଓ ବର୍ତ୍ତମାନ—ସମସ୍ତର ଉପରେ । ଯଦି ମୁକ୍ତି କୌଣସି କର୍ମର ଫଳସ୍ୱରୂପ ହୁଅନ୍ତା, ତେବେ ତାହାର କୌଣସି ମୂଲ୍ୟ ରହନ୍ତା ନାହିଁ, ତାହା ଏକ

ଯୌଗିକ ବସ୍ତୁ ହୁଅନ୍ତା; ସୁତରାଂ ତାହା ଭିତରେ ବନ୍ଧନର ବୀଜ ନିହିତ ଥାଆନ୍ତା । ଏହି ମୁକ୍ତି ହିଁ ଆତ୍ମାର ଏକ ମାତ୍ର ନିତ୍ୟ ସଙ୍ଗୀ; ତାହାକୁ ଲାଭ କରି ହୁଏ ନାହିଁ, ତାହା ଆତ୍ମାର ଯଥାର୍ଥ ସ୍ୱରୂପ ।

ତେବେ ଆତ୍ମା ଉପରେ ଯେଉଁ ଆବରଣ ପଡ଼ିରହିଛି, ତାହାକୁ ଅପସାରଣ କରିବା ଲାଗି ଓ ବନ୍ଧନ ଏବଂ ଭ୍ରମ ଦୂର କରିବା ପାଇଁ କର୍ମ ଓ ଉପାସନା ଆବଶ୍ୟକ; ଏସବୁ ମୁକ୍ତି ଦେଇପାରନ୍ତି ନାହିଁ ସତ; ତଥାପି ଆମେ ଯଦି ନିଜେ ଚେଷ୍ଟା ନ କରୁଁ ତା'ହେଲେ ଆମର ଆଖି ଫିଟେ ନାହିଁ ଓ ଆମେ ଆମର ସ୍ୱରୂପ ଜାଣିପାରୁ ନାହିଁ । ଶଙ୍କର କହିଛନ୍ତି, ଅଦ୍ୱୈତ-ବାଦ ହିଁ ବେଦର ଗୌରବ-ମୁକୁଟ-ସ୍ୱରୂପ; କିନ୍ତୁ ବେଦର ନିମ୍ନ ଭାଗଗୁଡ଼ିକର ମଧ୍ୟ ପ୍ରୟୋଜନ ରହିଛି, କାରଣ ସେଥିରୁ ଆମର କର୍ମ ଓ ଉପାସନା ପାଇଁ ଉପଦେଶ ମିଳିଥାଏ ଓ ଏଗୁଡ଼ିକର ସାହାଯ୍ୟରେ ମଧ୍ୟ ଅନେକେ ଭଗବାନଙ୍କ ନିକଟକୁ ଯାଇଥାନ୍ତି । ହେବେ ଏଭଳି ଅନେକେ ଥିବେ, ଯେଉଁମାନେ କେବଳ ଅଦ୍ୱୈତବାଦ ସାହାଯ୍ୟରେ ହିଁ ସେହି ଅବସ୍ଥାରେ ପହଞ୍ଚିବେ । ଅଦ୍ୱୈତବାଦ ଯେଉଁ ଅବସ୍ଥାକୁ ନେଇଯାଏ, କର୍ମ ଓ ଉପାସନା ମଧ୍ୟ ସେହି ଅବସ୍ଥାକୁ ନେଇଯାଏ ।

ଶାସ୍ତ୍ର ବ୍ରହ୍ମସମ୍ପର୍କରେ କିଛି ଶିକ୍ଷା ଦେଇପାରେ ନାହିଁ, କେବଳ ଅଜ୍ଞାନ ଦୂର କରି-ପାରେ । ସେସବୁ କାର୍ଯ୍ୟ ନିଷେଧାତ୍ମକ (negative) । ଶଙ୍କରଙ୍କ ପ୍ରଧାନ କୃତିତ୍ୱ ହେଉଛି ଏହି ଯେ, ସେ ଶାସ୍ତ୍ରକୁ ମଧ୍ୟ ମାନିଥିଲେ, ଅଥଚ ସମସ୍ତଙ୍କ ଆଗରେ ମୁକ୍ତିର ବାଟ ମଧ୍ୟ ଖୋଲି ଦେଇଥିଲେ; କିନ୍ତୁ ଯାହା କିଛି ନା କାହିଁକି ଏହାକୁ ନେଇ ଅତି ସୂକ୍ଷ୍ମ ବିଚାର କରିବାକୁ ପଡ଼ୁଛି; ପ୍ରଥମେ ମନୁଷ୍ୟକୁ ଏକ ସ୍ଥୂଳ ଅବଲମ୍ବନ ଦିଅ, ତା'ପରେ ଧୀରେ ଧୀରେ ତାହାକୁ ସର୍ବୋଚ୍ଚ ଅବସ୍ଥାକୁ ନେଇଯାଅ ।

ବିଭିନ୍ନ ପ୍ରକାର ଧର୍ମ ଏହି ଚେଷ୍ଟା ହିଁ କରୁଛନ୍ତି ଓ ଏଥିରୁ ବୁଝାଯାଏ—ଏହିସବୁ ଧର୍ମ କାହିଁକି ଜଗତରେ ଏପର୍ଯ୍ୟନ୍ତ ତିଷ୍ଠି ରହିଛନ୍ତି ଓ କିପରି ପ୍ରତ୍ୟେକ ଧର୍ମ ମନୁଷ୍ୟର ଉନ୍ନତି ପାଇଁ କୌଣସି ନା କୌଣସି ଅବସ୍ଥାର ଉପଯୋଗୀ । ଶାସ୍ତ୍ର ଯେଉଁ ଅବିଦ୍ୟା ଦୂର କରିବାକୁ ପ୍ରବୃତ୍ତ ହୋଇଛି—ସେ ନିଜେ ହିଁ ସେହି ଅବିଦ୍ୟାର ଅନ୍ତର୍ଗତ । ଶାସ୍ତ୍ରର କାମ ହେଉଛି ଜ୍ଞାନ ଉପରେ ଯେଉଁ ଅଜ୍ଞାନରୂପକ ଆବରଣ ଆସି ପଡ଼ିଛି, ତାହାକୁ ଦୂର କରିବା । 'ସତ୍ୟ ଅସତ୍ୟକୁ ଦୂର କରିଦେବ ।' ତୁମେ ତ ମୁକ୍ତ, ତୁମକୁ ପୁଣି କିଏ ମୁକ୍ତ କରିବ ? ଯେପର୍ଯ୍ୟନ୍ତ ତୁମେ ଧର୍ମମତ-ବିଶେଷ ଅବଲମ୍ବନ କରି ରହିଛ, ସେପର୍ଯ୍ୟନ୍ତ ତୁମେ ବ୍ରହ୍ମଙ୍କୁ ଲାଭ କରି ନାହଁ । 'ଯେ ମନେ କରନ୍ତି ମୁଁ ଜାଣେ, ସେ ଜାଣନ୍ତି ନାହିଁ ।'* ଯେ ସ୍ୱୟଂ ଜ୍ଞାତସ୍ୱରୂପ, ତାଙ୍କୁ କିଏ ଜାଣିପାରେ !** ଦୁଇଟି ଚିରନ୍ତନ ବସ୍ତୁ ଅଛି—ବ୍ରହ୍ମ ଓ ଜଗତ୍ । ସେଥିମଧ୍ୟରେ ବ୍ରହ୍ମ ଅପରିଣାମୀ, ଜଗତ୍ ପରିଣାମୀ । ଜଗତ୍ ଅନନ୍ତକାଳ ଧରି ରହିଛି । ତୁମେ ତ ଅନନ୍ତ ତାକୁ ହିଁ କହିଥାଅ, ଯେଉଁଠାରେ ଯେଉଁ ପରିଣାମ ହେଉଛି,

* କେନ ଉପନିଷଦ୍, ୨।୩

** ବୃହ. ଉପ., ୨।୪।୧୪, ୪।୫।୧୫

ମନ ତାହା ଯେତେବେଳେ ଧରି ନ ପାରେ । ଜଗତ୍ ଓ ବ୍ରହ୍ମ ଏକ—ସତ; କିନ୍ତୁ ଏକ-ସମୟରେ ତ ତୁମେ ଦୁଇଟିକୁ ଦେଖିବାକୁ ପାଅ ନାହିଁ ।—ଗୋଟିଏ ପଥର ଉପରେ ଗୋଟିଏ ଛବି ଖୋଦିତ ହୋଇଛି, ଯେତେବେଳେ ତୁମର ପଥର ପ୍ରତି ଖିଆଲ ଥାଏ, ସେତେବେଳେ ସେହି ଖୋଦିତ ଛବି ପ୍ରତି ଦୃଷ୍ଟି ନ ଥାଏ; ପୁଣି ଯେତେବେଳେ ଖୋଦିତ ଛବି ପ୍ରତି ଦୃଷ୍ଟି ଥାଏ, ସେତେବେଳେ ପଥର ପ୍ରତି ତୁମର ଧାରଣା ନ ଥାଏ, ଅଥଚ ଦୁହେଁ ଏକ ।

***

ତୁମେ କ'ଣ ଗୋଟିଏ ମୁହୂର୍ତ୍ତି ପାଇଁ ନିଜକୁ ସମ୍ପୂର୍ଣ୍ଣ ସ୍ଥିର ରଖିପାର ? ଯୋଗୀମାନେ କହନ୍ତି ଏହା କରିବା ସମ୍ଭବ ।

***

ନିଜକୁ ଦୁର୍ବଳ ମନେ କରିବା ସବୁଠାରୁ ବେଶୀ ପାପ । ତୁମଠାରୁ ବଡ଼ ଆଉ କେହି ନାହିଁ; ଉପଲବ୍ଧି କର ଯେ, ତୁମେ ବ୍ରହ୍ମସ୍ୱରୂପ । ଯେକୌଣସି ବସ୍ତୁରେ ତୁମେ ଶକ୍ତିର ବିକାଶ ଦେଖ, ସେହି ଶକ୍ତି ତୁମ ଦ୍ୱାରା ହିଁ ପ୍ରଦତ୍ତ ।

ଆମେ ସୂର୍ଯ୍ୟ, ଚନ୍ଦ୍ର, ତାରା, ଏପରି କି ସମସ୍ତ ଜଗତ୍-ପ୍ରପଞ୍ଚ ଉପରେ ରହିଛୁଁ । ଶିକ୍ଷା ଦିଅ ଯେ, ମନୁଷ୍ୟ ବ୍ରହ୍ମସ୍ୱରୂପ । ମନ୍ଦ ବୋଲି ଯେ କିଛି ଅଛି, ଏହା ସ୍ୱୀକାର କର ନାହିଁ । ଯାହା ନାହିଁ, ତାକୁ ଆଉ ନୂଆ କରି ସ୍ୱୀକାର କର ନାହିଁ । ସଦର୍ପରେ କହ—ମୁଁ ପ୍ରଭୁ, ମୁଁ ସମସ୍ତଙ୍କର ପ୍ରଭୁ । ଆମେ ହିଁ ନିଜ ନିଜର ଶୃଙ୍ଖଳ ଗଢ଼ିଛୁ ଓ ଆମେ ହିଁ କେବଳ ଶୃଙ୍ଖଳ ଭାଙ୍ଗିପାରିବା ।

କୌଣସି ପ୍ରକାର କର୍ମ ତୁମକୁ ମୁକ୍ତ ଦେଇପାରିବ ନାହିଁ, କେବଳ ଜ୍ଞାନଦ୍ୱାରା ହିଁ ମୁକ୍ତ ହୋଇପାରେ । ଜ୍ଞାନ ଅପ୍ରତିରୋଧନୀୟ; ଇଚ୍ଛା ହେଲି ତାକୁ ଗ୍ରହଣ କଲି—ଇଚ୍ଛା ହେଲି ତାକୁ ତ୍ୟାଗ କଲି—ମନ ଏପରି କରିପାରିବ ନାହିଁ । ଯେତେବେଳେ ଜ୍ଞାନୋଦୟ ହେବ, ମନକୁ ତାହା ଗ୍ରହଣ କରିବାକୁ ହେବ । ସୁତରାଂ ଏହି ଜ୍ଞାନଲାଭ ମନର କାର୍ଯ୍ୟ ନୁହେଁ, ତେବେ ମନରେ ଏହି ଜ୍ଞାନ ହୋଇଥାଏ ।

କର୍ମ ବା ଉପାସନାର ଫଳ ହେଉଛି ଏହି ଯେ, ତଦ୍ୱାରା ତୁମେ ଯେଉଁ ସ୍ୱରୂପ ଭୁଲିଥିଲ, ତାହାକୁ ଫେରିପାଇବା । ଆତ୍ମା ଯେ ଦେହ, ଏହା ମନେ କରିବା ସମ୍ପୂର୍ଣ୍ଣ ଭ୍ରମ; ସୁତରାଂ ଆମେ ଏହି ଶରୀରରେ ଥିବା ଅବସ୍ଥାରେ ମୁକ୍ତ ହୋଇପାରୁ । ଦେହସଙ୍ଗରେ ଆତ୍ମାର କୌଣସି ପ୍ରକାର ସାଦୃଶ୍ୟ ନାହିଁ । ମାୟାର ଅର୍ଥ, 'କିଛି ନୁହେଁ' । ଅସତ୍‌କୁ ସତ୍ ବୋଲି ଗ୍ରହଣ କରିବା ହିଁ ମାୟା ।

## ବୁଧବାର, ୨୭ ଜୁଲାଇ

ରାମାନୁଜ ଜଗତ୍-ପ୍ରପଞ୍ଚକୁ ଚିତ୍ (ଜୀବାତ୍ମା ବା ଚେତନ) ଅଚିତ୍ (ଜଡ଼ପ୍ରକୃତି ବା ଅବଚେତନ) ଏବଂ ଈଶ୍ୱର (ଅଧିଚେତନ)—ଏହି ତିନି ଭାଗରେ ବିଭକ୍ତ କରିଛନ୍ତି । ଶଙ୍କର କିନ୍ତୁ କହନ୍ତି, ଚିତ୍ ବା ଜୀବାତ୍ମା ଏବଂ ପରମାତ୍ମା ବା ଈଶ୍ୱର ଏକ ବସ୍ତୁ । ବ୍ରହ୍ମ ସତ୍‌ସ୍ୱରୂପ, ଜ୍ଞାନସ୍ୱରୂପ, ଅନନ୍ତସ୍ୱରୂପ; ଏହି ସତ୍ୟ, ଜ୍ଞାନ ଓ ଅନନ୍ତ ତାଙ୍କର ଗୁଣ ନୁହେଁ । ଈଶ୍ୱରଙ୍କ ଚିନ୍ତା କରିବାକୁ ଗଲେ ହିଁ ତାଙ୍କୁ ବିଶିଷ୍ଟ କରିଦିଏ; ତାଙ୍କ ସମ୍ବନ୍ଧରେ ଖୁବ୍

ବେଶୀ ହେଲେ, 'ଓଁ ତତ୍‌ସତ୍‌'—ଅର୍ଥାତ୍ ସେ ସତ୍ତାସ୍ୱରୂପ, ସେ ଅସ୍ତିସ୍ୱରୂପ ଏତିକିମାତ୍ର କୁହାଯାଇପାରେ ।

ଶଙ୍କର ପୁଣି ପ୍ରଶ୍ନ କରିଛନ୍ତି—ତୁମେ କ'ଣ ସତ୍ତାକୁ ଅନ୍ୟ ସବୁ ବସ୍ତୁଠାରୁ ପୃଥକ୍ କରି ଦେଖିପାର ? ଦୁଇଟି ବସ୍ତୁ ମଧ୍ୟରେ ପାର୍ଥକ୍ୟ କେଉଁଠାରେ ? ଇନ୍ଦ୍ରିୟଜ୍ଞାନ ନୁହେଁ, କାରଣ ତାହାହେଲେ ସବୁ ଜିନିଷ ଏକପ୍ରକାର ବୋଧ ହୁଅନ୍ତା । ଆମର ବିଷୟଜ୍ଞାନ ଗୋଟିକ ପରେ ଗୋଟିଏ, ଏହି କ୍ରମରେ ହୋଇଥାଏ । ଗୋଟିଏ ବସ୍ତୁ କ'ଣ, ତାହା ଜାଣିବାକୁ ଗଲେ ତା'ସଙ୍ଗେ ସଙ୍ଗେ ତାହା କ'ଣ ନୁହେଁ, ତାହା ମଧ୍ୟ ଜାଣିବାକୁ ପଡ଼ିବ । ଦୁଇଟି ବସ୍ତୁ ମଧ୍ୟରେ ପାର୍ଥକ୍ୟଗୁଡ଼ିକ ଆମର ସ୍ମୃତିମଧ୍ୟରେ ଅବସ୍ଥିତ, ଓ ମସ୍ତିଷ୍କରେ ଯାହା ସଞ୍ଚିତ ରହିଛି, ତାହା ସଙ୍ଗେ ତୁଳନା କରି ଆମେ ଏଗୁଡ଼ିକୁ ଜାଣିପାରୁ । ବସ୍ତୁର ସ୍ୱରୂପ ମଧ୍ୟରେ ଭେଦ ନାହିଁ, ତାହା ଆମର ମସ୍ତିଷ୍କ ଭିତରେ ରହିଛି । ବାହାରେ ଏକ ଅଖଣ୍ଡ ବସ୍ତୁ ହିଁ ରହିଛି; ଭେଦ କେବଳ ଭିତରେ, ଆମ ମନରେ, ସୁତରାଂ ବହୁଜ୍ଞାନ ମନର ହିଁ ସୃଷ୍ଟି ।

ଏହି 'ବିଶେଷ'ଗୁଡ଼ିକ ହିଁ ଗୁଣପଦବାଚ୍ୟ ହୁଏ, ଯେତେବେଳେ ସେମାନେ ପୃଥକ୍ ଥାଆନ୍ତି ଅଥଚ କୌଣସି ଗୋଟିଏ ବସ୍ତୁ ସହିତ ଜଡ଼ିତ ଥାଆନ୍ତି । ଏହି ବିଶେଷ ବସ୍ତୁଟି ଯେ କ'ଣ, ଆମେ ଠିକ୍ କରି କହିପାରୁ ନାହିଁ । ଆମେ ବିଭିନ୍ନ ବସ୍ତୁ ମଧ୍ୟରେ ଦେଖିବାକୁ ପାଉଁ ଓ ଅନୁଭବ କରୁ କେବଳ ସତ୍ତା, ଅସ୍ତିତ୍ୱ । ଆଉ ଯାହା କିଛି ସବୁ ଆମ ଭିତରେ ହିଁ ରହିଛି । କୌଣସି ବସ୍ତୁର ସତ୍ତା ସମ୍ପର୍କରେ ଆମେ କେବଳ ନିଃସଂଶୟ ପ୍ରମାଣ ପାଇଥାଉ । ବିଶେଷ ବା ଭେଦଗୁଡ଼ିକ ପ୍ରକୃତ ପକ୍ଷରେ ଗୌଣଭାବରେ ସତ୍ୟ—ଯେଉଁଭଳି ରଜ୍ଜୁରେ ସର୍ପଜ୍ଞାନ । କାରଣ, ଏହି ସର୍ପଜ୍ଞାନର ମଧ୍ୟ ସତ୍ୟତା ଅଛି—କାହିଁକି ନା ଅଯଥାର୍ଥଭାବରେ ହେଲେ ମଧ୍ୟ ଗୋଟିଏ କିଛି ତ ଦେଖା ଯାଉଛି । ଯେତେବେଳେ ରଜ୍ଜୁ-ଜ୍ଞାନର ଲୋପ ହୁଏ, ସେତେବେଳେ ହିଁ ସର୍ପଜ୍ଞାନର ଆବିର୍ଭାବ ଘଟେ, ପୁଣି ବିପରୀତକ୍ରମେ ସର୍ପଜ୍ଞାନର ଲୋପରେ ରଜ୍ଜୁଜ୍ଞାନର ଆବିର୍ଭାବ; କିନ୍ତୁ ତୁମେ ଗୋଟିଏ ମାତ୍ର ବସ୍ତୁ ଦେଖିଛ ବୋଲି ପ୍ରମାଣ ହୁଏ ନାହିଁ ଯେ, ଅନ୍ୟ ବସ୍ତୁଟି ନାହିଁ । ଜଗତ୍‌ଜ୍ଞାନ ବ୍ରହ୍ମଜ୍ଞାନର ପ୍ରତିବନ୍ଧକସ୍ୱରୂପ ହୋଇ ତାହାକୁ ଆଚ୍ଛାଦନ କରି ରଖିଛି, ତାକୁ ଦୂର କରିବାକୁ ହେବ; କିନ୍ତୁ ତାହାର ମଧ୍ୟ ଯେ ଅସ୍ତିତ୍ୱ ଅଛି, ତାକୁ ସ୍ୱୀକାର କରିବାକୁ ହେବ ।

ଶଙ୍କର ପୁଣି କହନ୍ତି ଯେ, ଅନୁଭୂତି ହିଁ (perception) ଅସ୍ତିତ୍ୱର ଚରମ ପ୍ରମାଣ । ଅନୁଭୂତି ସ୍ୱୟଂଜ୍ୟୋତିଃ ଓ ସ୍ୱୟଂପ୍ରକାଶ; କାରଣ ଇନ୍ଦ୍ରିୟଜ୍ଞାନର ବାହାରକୁ ଗିବାକୁ ହେଲେ ଆମେ ତାକୁ ଛାଡ଼ିପାରୁ ନାହିଁ; ଅନୁଭୂତି କୌଣସି ଇନ୍ଦ୍ରିୟ ବା କରଣ-ସାପେକ୍ଷ ନୁହେଁ, ଏହା ସମ୍ପୂର୍ଣ୍ଣ ନିରପେକ୍ଷ । ଚେତନା (consciousness) ବ୍ୟତୀତ ଅନୁଭୂତି ହୋଇ ନ ପାରେ; ଅନୁଭବ ସ୍ୱପ୍ରକାଶ; ତାହାର ହିଁ ଆଂଶିକ ପ୍ରକାଶକୁ ସଂଜ୍ଞା କୁହାଯାଏ । କୌଣସି ପ୍ରକାର ଅନୁଭବ-କ୍ରିୟା ହିଁ ଚେତନା-ରହିତ ହୋଇପାରେ ନାହିଁ; ପ୍ରକୃତ ପକ୍ଷରେ ପ୍ରତ୍ୟେକ ଅନୁଭୂତିର ସ୍ୱରୂପ ହିଁ ସଂଜ୍ଞା । ସତ୍ତା ଓ ଅନୁଭବ ଏକ ବସ୍ତୁ— ଦୁଇଟି ପୃଥକ୍ ପୃଥକ୍ ବସ୍ତୁ ଏକସଙ୍ଗେ ଯୁକ୍ତ ନୁହେଁ ଓ ଯାହାର କୌଣସି କାରଣ ନାହିଁ,

ତାହା ହିଁ ଅନନ୍ତ; ସୁତରାଂ ଅନୁଭୂତ ଯେତେବେଳେ ନିଜେ ନିଜର ଚରମ ପ୍ରମାଣ, ସେତେବେଳେ ଅନୁଭୂତ ମଧ୍ୟ ଅନନ୍ତସ୍ୱରୂପ; ଏହା ସର୍ବଦା ହିଁ ସ୍ୱସ୍ୱଂବେଦ୍ୟ । ଅନୁଭୂତ ନିଜେ ହିଁ ନିଜର ଜ୍ଞାତାସ୍ୱରୂପ; ଏହା ମନର ଧର୍ମ ନୁହେଁ, କିନ୍ତୁ ସେଥିରୁ ମନ ହୋଇଛି; ଅନୁଭୂତ ନିରପେକ୍ଷ, ପୂର୍ଣ୍ଣ ହିଁ ଏକମାତ୍ର ଜ୍ଞାତା, ସୁତରାଂ ପ୍ରକୃତ ପକ୍ଷରେ ଅନୁଭୂତ ହିଁ ଆତ୍ମା । ଏହା ସ୍ୱୟଂ ଅନୁଭବସ୍ୱରୂପ; କିନ୍ତୁ ଆତ୍ମାକୁ ସାଧାରଣ ଅର୍ଥରେ ଏକ ଜ୍ଞାତା ବୋଲି କୁହାଯାଇପାରେ ନାହିଁ, କାରଣ ତଦ୍ଦ୍ୱାରା ଜ୍ଞାନରୂପ କ୍ରିୟାର କର୍ତ୍ତାକୁ ବୁଝାଏ; କିନ୍ତୁ ଶଙ୍କର କହନ୍ତି, ଆତ୍ମା ଅହଂ ନୁହେଁ, କାରଣ ସେଥିରେ 'ମୁଁ ଅଛି' ଏହି ଭାବଟି ନାହିଁ । ଆମେ ସେ ଆତ୍ମାର ପ୍ରତିବିମ୍ବ ମାତ୍ର; ଆତ୍ମା ଓ ବ୍ରହ୍ମ ଏକ ।

ଯେତେବେଳେ ତୁମେ ସେହି ପୂର୍ଣ୍ଣବ୍ରହ୍ମ ସମ୍ପର୍କରେ କିଛି କହ ବା ଚିନ୍ତା କର, ସେତେବେଳେ ଆପେକ୍ଷିକଭାବରେ ସେଗୁଡ଼ିକ କରିବାକୁ ହୁଏ । ସୁତରାଂ ସେଠାରେ ଏହିସବୁ ଯୁକ୍ତି ବିଚାର ଖାଟେ, କିନ୍ତୁ ଯୋଗାବସ୍ଥାରେ ଅନୁଭୂତ ଓ ଅପରୋକ୍ଷାନୁଭୂତ ଏକ ହୋଇଯାଏ । ରାମାନୁଜ-ବ୍ୟାଖ୍ୟାତ ବିଶିଷ୍ଟାଦ୍ୱୈତବାଦ ଆଂଶିକଭାବରେ ଏକତ୍ୱ ଦର୍ଶନ; ସୁତରାଂ ତାହା ମଧ୍ୟ ସେହି ଅଦ୍ୱୈତାବସ୍ଥାର ଏକ ସୋପାନସ୍ୱରୂପ । 'ବିଶିଷ୍ଟ' ମାନେ ହିଁ ଭେଦଯୁକ୍ତ । 'ପ୍ରକୃତି' ମାନେ ଜଗତ୍, ତା'ର ସର୍ବଦା ପରିମାମ ହେଉଛି । ପରିଣାମୀ ଚିନ୍ତାରାଶି ପରିଣାମଶୀଳ ଶବ୍ଦରାଶିଦ୍ୱାରା ଅଭିବ୍ୟକ୍ତ ହୋଇ କେବେହେଲେ ସେହି ପୂର୍ଣ୍ଣ ସ୍ୱରୂପକୁ ପ୍ରମାଣ କରିପାରିବ ନାହିଁ । ଏହିପରି ଭାବରେ ଆମେ ଏପରି ଏକ ଜିନିଷରେ ଉପନୀତ ହେଉ, ଯେଉଁଠାରେ କେତେଗୁଡ଼ିଏ ଗୁଣକୁ ପରିହାର କରାଯାଇଛି, କିନ୍ତୁ ଯାହା ସ୍ୱୟଂ ବ୍ରହ୍ମସ୍ୱରୂପ ନୁହେଁ । ଆମେ କେବଳ ଶବ୍ଦଗତ ଏକତ୍ୱରେ ପହଞ୍ଚୁ, ତା'ଠାରୁ ଆଉ ଚରମ ଐକ୍ୟ ବାହାର କରିହାଇପାରେ ନାହିଁ; କିନ୍ତୁ ସେଥିରେ ଆପେକ୍ଷିକ ଜଗତର ବିଲୋପସାଧନ ହୁଏ ନାହିଁ ।

## ଗୁରୁବାର, ୯ ଜୁଲାଇ

(ଆଜିର ଆଲୋଚ୍ୟ ବିଷୟ ପ୍ରଧାନତଃ ସାଂଖ୍ୟଦର୍ଶନ ବିରୋଧରେ ଶଙ୍କରାଚାର୍ଯ୍ୟଙ୍କର ଯୁକ୍ତି)

ସାଂଖ୍ୟବାଦୀ କହନ୍ତି : ଜ୍ଞାନ ଏକ ମିଶ୍ର ପଦାର୍ଥ ଓ ତାହାର ବାହାରେ ବିଶ୍ଳେଷଣ କରୁ କରୁ ଶେଷରେ ଆମେ ସାକ୍ଷୀସ୍ୱରୂପ ପୁରୁଷଙ୍କ ଅସ୍ତିତ୍ୱ ଅବଗତ ହୋଇଥାଉ । ଏହି ପୁରୁଷ ସଂଖ୍ୟାରେ ବହୁ; ଆମେ ପ୍ରତ୍ୟେକେ ଗୋଟିଏ ଗୋଟିଏ ପୁରୁଷ । ଅଦ୍ୱୈତବେଦାନ୍ତ କିନ୍ତୁ ଏହାର ବିରୋଧରେ କହନ୍ତି—ପୁରୁଷ କେବଳ ଏକମାତ୍ର ହୋଇପାରେ । ପୁରୁଷର ଜ୍ଞାନ, ଅଜ୍ଞାନ ବା ଅନ୍ୟ କିଛି ଗୁଣ ବା ଧର୍ମ ରହିପାରେ ନାହିଁ, କାରଣ ଗୁଣ ଥିଲେ ସେଗୁଡ଼ିକ ତା'ର ବନ୍ଧନର କାରଣ ହେବ ଓ ପରିଣାମରେ ସେଗୁଡ଼ିକର ଲୋପ ମଧ୍ୟ ହେବ । ଅତଏବ ସେ ଏକ ବସ୍ତୁ, ଯେକି ଅବଶ୍ୟ ହିଁ ସବୁ ପ୍ରକାର ଗୁଣରହିତ, ଏପରିକି, ଜ୍ଞାନ ପର୍ଯ୍ୟନ୍ତ ସେଥିରେ ରହିପାରେ ନାହିଁ, ଓ ତାହା ଜଗତ୍ ବା ଆଉ କିଛିର କାରଣ ହୋଇପାରେ ନାହିଁ । ବେଦ କହେ, 'ସଦେବ ସୌମ୍ୟେଦମଗ୍ର ଆସୀଦେକମେବାଦ୍ୱିତୀୟମ୍'

—ହେ ସୌମ୍ୟ, ପ୍ରଥମେ ସେହି ଏକ ଅଦ୍ୱିତୀୟ ସତ୍ ହିଁ ଥିଲା।* ***

ଯେଉଁଠାରେ ସତ୍ତ୍ୱଗୁଣ, ସେଠାରେ ଜ୍ଞାନ ଦେଖାଯାଏ ବୋଲି ଏହା ପ୍ରମାଣିତ ହୁଏ ନାହିଁ ଯେ, ସତ୍ତ୍ୱ ହିଁ ଜ୍ଞାନର ଉତ୍ପତ୍ତିର କାରଣ। ବରଂ ମାନବର ଭିତର ଜ୍ଞାନ ପୂର୍ବରୁ ହିଁ ରହିଛି। ସତ୍ତ୍ୱର ସାନ୍ନିଧ୍ୟରେ ସେହି ଜ୍ଞାନ ପ୍ରକାଶିତ ହୁଏ ମାତ୍ର। ଯେପରି ନିଆଁ ପାଖରେ ଗୋଟିଏ ଲୌହ-ଗୋଲକ ରଖିଲେ ଏହି ନିଆଁ ଲୌହଗୋଲକର ଭିତରେ ପୂର୍ବରୁ ଅବ୍ୟକ୍ତଭାବରେ ଥିବା ତେଜକୁ ପ୍ରକାଶ କରି ତାହାକୁ ଉତ୍ତପ୍ତ କରେ—ତା'ର ଭିତରେ ପ୍ରବେଶ କରେ ନାହିଁ, ସେହିପରି।

ଶଙ୍କର କହନ୍ତି : ଜ୍ଞାନ ଏକ ବନ୍ଧନ ନୁହେଁ, କାରଣ ଏହା ସେହି ପୁରୁଷ ବା ବ୍ରହ୍ମର ସ୍ୱରୂପ। ଜଗତ୍ ବ୍ୟକ୍ତ ବା ଅବ୍ୟକ୍ତରୂପରେ ସର୍ବଦା ରହିଛି। ସୁତରାଂ ସେହି ଜ୍ଞାନସ୍ୱରୂପର ଜ୍ଞେୟ ବସ୍ତୁର କସ୍ମିନ୍‌କାଳେ ଅଭାବ ହୁଏ ନାହିଁ। ଜ୍ଞାନ-ବଳ-କ୍ରିୟା ହିଁ ଈଶ୍ୱର। ଜ୍ଞାନଲାଭ ପାଇଁ ତାଙ୍କର ଦେହ-ଇନ୍ଦ୍ରିୟାଦି କୌଣସି ଆକାରର ପ୍ରୟୋଜନ ନାହିଁ—ଯେ ସସୀମ ତା' ପକ୍ଷରେ ସେହି ଅନନ୍ତ ଜ୍ଞାନକୁ ଧରିରଖିବା ପାଇଁ ଏକ ପ୍ରତିବନ୍ଧକର (ଅର୍ଥାତ୍ ଦେହ-ଇନ୍ଦ୍ରିୟ ଆଦିର) ପ୍ରୟୋଜନ ଅଛି ସତ, କିନ୍ତୁ ଈଶ୍ୱରଙ୍କର ଏହିଭଳି ସହାୟତାର ଆଦୌ କୌଣସି ଆବଶ୍ୟକତା ନାହିଁ। ବାସ୍ତବିକ ଏକ ଆତ୍ମା ହିଁ ଅଛନ୍ତି, ବିଭିନ୍ନ-ଲୋକଗାମୀ ଜୀବାତ୍ମା ବୋଲି ସ୍ୱତନ୍ତ୍ର ଆତ୍ମା କିଛି ନାହିଁ। ପଞ୍ଚପ୍ରାଣ ଯେଉଁଠି ଏକୀଭୂତ ହୋଇଛନ୍ତି, ଏହି ଦେହର ସେହି ଚେତନ ନିୟନ୍ତାଙ୍କୁ ହିଁ ଜୀବାତ୍ମା କୁହାଯାଏ; କିନ୍ତୁ ସେହି ଜୀବାତ୍ମା ହିଁ ପରମାତ୍ମା, ଯେହେତୁ ଆତ୍ମା ହିଁ ସ୍ୱରୂପ। ତୁମେ ତାକୁ ଯେ ଅନ୍ୟଭଳି ବୋଧ କରୁଛ, ସେହି ଭ୍ରାନ୍ତି ତୁମର, ଜୀବରେ ସେ ଭ୍ରାନ୍ତି ନାହିଁ। ତୁମେ ହିଁ ବ୍ରହ୍ମ ଓ ତୁମେ ନିଜକୁ ଆଉ ଯାହା କିଛି ଭାବୁଛ, ତାହା ଭୁଲ। କୃଷ୍ଣଙ୍କୁ କୃଷ୍ଣ ବୋଲି ପୂଜା କର ନାହିଁ, କୃଷ୍ଣଙ୍କ ମଧ୍ୟରେ ଯେଉଁ ଆତ୍ମା ଅଛନ୍ତି ତାଙ୍କରି ହିଁ ଉପାସନା କର। କେବଳ ଆତ୍ମାର ଉପାସନାରେ ହିଁ ମୁକ୍ତିଲାଭ ହେବ। ଏପରି କି ସଗୁଣ ଈଶ୍ୱର ପର୍ଯ୍ୟନ୍ତ ସେହି ଆତ୍ମାର ବହିଃପ୍ରକାଶ ମାତ୍ର। ଶଙ୍କର କହିଛନ୍ତି, "ସ୍ୱ-ସ୍ୱରୂପାନୁସନ୍ଧାନମ୍ ଭକ୍ତିରିତ୍ୟଭିଧୀୟତେ।" —ନିଜ ସ୍ୱରୂପର ଆନ୍ତରିକ ଅନୁସନ୍ଧାନକୁ ହିଁ ଭକ୍ତି କୁହାଯାଏ।

ଆମେ ଈଶ୍ୱର-ଲାଭ ପାଇଁ ଯେତେ ବିଭିନ୍ନ ଉପାୟ ଅବଲମ୍ବନ କରିଥାଉଁ, ସେସବୁ ସତ୍ୟ। କେବଳ, ଯେପରି ଅରୁନ୍ଧତୀ ନକ୍ଷତ୍ରକୁ ଦେଖାଇବାକୁ ହେଲେ ତା'ର ଆଖପାଖର ନକ୍ଷତ୍ରଗୁଡ଼ିକର ସାହାଯ୍ୟ ନେବାକୁ ହୁଏ, ଏହା ମଧ୍ୟ ସେହିଭଳି। ***

ଭଗବଦ୍‌ଗୀତା ବେଦାନ୍ତ ସମ୍ବନ୍ଧରେ ଶ୍ରେଷ୍ଠ ପ୍ରାମାଣିକ ଗ୍ରନ୍ଥ।

**ଶୁକ୍ରବାର, ୧୯ ଜୁଲାଇ**

ଯେତେଦିନ ଆମର 'ମୁଁ' 'ତୁମେ' ଏହିପରି ଭେଦଜ୍ଞାନ ଅଛି, ସେତେଦିନ 'ଜଣେ ଭଗବାନ ଆମକୁ ରକ୍ଷାକରୁଛନ୍ତି'—ଏ କଥା କହିବାର ଅଧିକାର ଆମର ଅଛି। ଯେତେଦିନ ଆମର ଏହିପରି ଭେଦବୋଧ ରହିଛି, ସେତେଦିନ ଏହି ଭେଦବୋଧରୁ ଯେଉଁ ସମସ୍ତ

---

* ଛାନ୍ଦୋଗ୍ୟ ଉପ., ୬।୨।୧

ଅନିବାର୍ଯ୍ୟ ସିଦ୍ଧାନ୍ତ ଆସେ, ସେଗୁଡ଼ିକୁ ହିଁ ଗ୍ରହଣ କରିବାକୁ ହେବ । 'ମୁଁ', 'ତୁମେ' ସ୍ୱୀକାର କଲେ ହିଁ ଆମର ଆଦର୍ଶସ୍ଥାନୀୟ ଆଉ ଏକ ତୃତୀୟ ବସ୍ତୁ ସ୍ୱୀକୃତ ହେବ, ଯାହା ଏହି ଉଭୟର ମଝିରେ ଅଛି; ତାହା ହିଁ ଈଶ୍ୱର—ତ୍ରିଭୁଜର ଶୀର୍ଷବିନ୍ଦୁ ସ୍ୱରୂପ । ଯେପରି ବାଷ୍ପରୁ ଜଳ ହୁଏ, ସେହି ଜଳ ପୁଣି ଗଙ୍ଗାଦି ପ୍ରଭୃତି ବିଭିନ୍ନ ନାମରେ ପ୍ରସିଦ୍ଧ ହୁଏ; କିନ୍ତୁ ଯେତେବେଳେ ବାଷ୍ପାବସ୍ଥା ସେତେବେଳେ ଆଉ ଗଙ୍ଗା ନାହିଁ; ପୁଣି ଯେତେବେଳେ ଜଳ, ସେତେବେଳେ ଆଉ ତାକୁ ବାଷ୍ପ ବୋଲି କୁହାଯାଏ ନାହିଁ ।

ସୃଷ୍ଟି ବା ପରିଣାମର ଧାରଣା ସଙ୍ଗେ ଇଚ୍ଛାଶକ୍ତିର ଧାରଣା ଅଚ୍ଛେଦ୍ୟଭାବେ ଜଡ଼ିତ । ଯେତେଦିନ ପର୍ଯ୍ୟନ୍ତ ଆମେ ଜଗତକୁ ଗତିଶୀଳ ବୋଲି ଦେଖୁଛୁ, ସେତେଦିନଯାଏ ତା'ର ପଛଆଡ଼େ ଇଚ୍ଛାଶକ୍ତିର ଅସ୍ତିତ୍ୱ ଆମକୁ ସ୍ୱୀକାର କରିବାକୁ ହେବ । ଇନ୍ଦ୍ରିୟଜ୍ଞାନ ଯେ ସମ୍ପୂର୍ଣ୍ଣ ଭ୍ରାନ୍ତ, ପଦାର୍ଥବିଜ୍ଞାନ ତାହା ପ୍ରମାଣ କରିଦିଏ; ଆମେ କୌଣସି ଜିନିଷକୁ ଯେପରି ଦେଖୁ, ଶୁଣୁ, ସ୍ପର୍ଶ, ଘ୍ରାଣ ବା ଆସ୍ୱାଦନ କରୁ, ସ୍ୱରୂପତଃ ଜିନିଷଟି ବାସ୍ତବିକ ତାହା ନୁହେଁ । ବିଶେଷ ବିଶେଷ ପ୍ରକାରର ସ୍ପନ୍ଦନ ବିଶେଷ ବିଶେଷ ଫଳ ଉତ୍ପାଦନ କରୁଛି ଓ ସେଗୁଡ଼ିକ ଆମ ଇନ୍ଦ୍ରିୟ ଉପରେ କାର୍ଯ୍ୟ କରୁଛି; ଆମେ କେବଳ ଆପେକ୍ଷିକ ସତ୍ୟ ଜାଣିପାରୁ ।

'ସତ୍ୟ' ଶବ୍ଦ 'ସତ୍' ରୁ ଆସିଛି । ଯାହା 'ସତ୍', ଅର୍ଥାତ୍ ଯାହା 'ଅଛି', ଯାହା 'ଅସ୍ତିସ୍ୱରୂପ' ତାହା ହିଁ ସତ୍ୟ । ଆମର ବର୍ତ୍ତମାନ ଦୃଷ୍ଟିରୁ ଏହି ଜଗତ୍‌ପ୍ରପଞ୍ଚ ଇଚ୍ଛା ଓ ଜ୍ଞାନ-ଶକ୍ତିର ପ୍ରକାଶ ବୋଲି ବୋଧ ହେଉଛି । ଆମର ଅସ୍ତିତ୍ୱ ଯେତେ ପରିମାଣରେ ସତ୍ୟ, ସଗୁଣ ଈଶ୍ୱର ମଧ୍ୟ ସେତିକି ସତ୍ୟ, ତଦପେକ୍ଷା ଅଧିକ ସତ୍ୟ ନୁହେଁ । ଆମର ରୂପ ଯେପରି ଦେଖାଯାଏ, ଈଶ୍ୱରଙ୍କ ମଧ୍ୟ ତଦ୍ରୂପ ସାକାରଭାବେ ଦେଖାଯାଇପାରେ । ଯେତେଦିନ ଆମେ ମନୁଷ୍ୟ ହୋଇ ରହିଛୁ, ସେତେଦିନଯାଏ ଆମର ଈଶ୍ୱରଙ୍କଠାରେ ପ୍ରୟୋଜନ ଅଛି; ଆମେ ଯେତେବେଳେ ନିଜେ ବ୍ରହ୍ମସ୍ୱରୂପ ହୋଇଯିବା, ସେତେବେଳେ ଆମର ଈଶ୍ୱରଙ୍କ ପ୍ରୟୋଜନ ଆଉ ରହିବ ନାହିଁ । ସେଥିପାଇଁ ଶ୍ରୀରାମକୃଷ୍ଣ ସେହି ଜଗତ୍-ଜନନୀଙ୍କୁ ସର୍ବଦା ତାଙ୍କ ନିକଟରେ ଦେଖିଛନ୍ତି—ତାଙ୍କ ଚତୁର୍ପାର୍ଶ୍ୱସ୍ଥ ଅନ୍ୟାନ୍ୟ ସବୁ ବସ୍ତୁ ଅପେକ୍ଷା ତାଙ୍କୁ ଅଧିକ ବାସ୍ତବ ବୋଲି ଦେଖୁଥିଲେ; କିନ୍ତୁ ସମାଧି ଅବସ୍ଥାରେ ତାଙ୍କ ଆତ୍ମା ବ୍ୟତୀତ ଆଉ କିଛିର ଅନୁଭବ ନ ଥିଲା । ସେହି ସଗୁଣ ଈଶ୍ୱର କ୍ରମଶଃ ଆମର ନିକଟତର ହୁଅନ୍ତି, ଶେଷରେ ସେ ଯେପରି ମିଳେଇ ଯାଆନ୍ତି, ସେତେବେଳେ ଆମର 'ଈଶ୍ୱର' ରହନ୍ତି ନାହିଁ, 'ମୁଁ' ମଧ୍ୟ ରହେ ନାହିଁ—ସବୁ ସେହି ଆତ୍ମାରେ ଲୀନ ହୋଇଯାଏ ।

ଆମମାନଙ୍କର ଏହି ଚେତନାର ବୋଧ ବା ଜ୍ଞାନ ଏକ ବନ୍ଧନସ୍ୱରୂପ । ସୃଷ୍ଟି ଦେଖି ସ୍ରଷ୍ଟାଙ୍କର କଳ୍ପନା କରିବା ଗୋଟିଏ ମତ, ସେଥିରେ ରୂପାଦି ସୃଷ୍ଟି ପୂର୍ବରୁ ବୁଦ୍ଧିର ଅସ୍ତିତ୍ୱ ସ୍ୱୀକାର କରି ନଆଯାଏ; କିନ୍ତୁ ଜ୍ଞାନ ଯଦି କିଛିର କାରଣ ହୁଏ, ତାହା ମଧ୍ୟ ଅନ୍ୟ କିଛିର କାର୍ଯ୍ୟସ୍ୱରୂପ । ଏହାକୁ ହିଁ ମାୟା କହନ୍ତି । ଈଶ୍ୱର ଆମକୁ ସୃଷ୍ଟି କରନ୍ତି, ଆମେ ପୁଣି ଈଶ୍ୱରଙ୍କୁ ସୃଷ୍ଟି କରୁ—ଏହା ହିଁ ମାୟା । ସର୍ବତ୍ର ଏହିପରି ଚକ୍ରଗତି ପରିଲକ୍ଷିତ ହୁଏ ।

ମନ ଦେହକୁ ସୃଷ୍ଟି କରୁଛୁ, ପୁଣି ଦେହ ସେହି ମନକୁ ସୃଷ୍ଟି କରୁଛି—ଅଣ୍ଡାରୁ ପକ୍ଷୀ, ପୁଣି ପକ୍ଷୀରୁ ଅଣ୍ଡା; ଗଛରୁ ମଞ୍ଜି ଓ ମଞ୍ଜିରୁ ଗଛ। ଏହି ଜଗତ୍‌ପ୍ରପଞ୍ଚ ସମ୍ପୂର୍ଣ୍ଣ ବୈଷମ୍ୟଭାବାପନ୍ନ ନୁହେଁ, ପୁଣି ସମ୍ପୂର୍ଣ୍ଣ ସାମ୍ୟଭାବାପନ୍ନ ମଧ୍ୟ ନୁହେଁ। ମନୁଷ୍ୟ ସ୍ୱାଧୀନ। ତାହାକୁ ଏହି ଦୁଇଟି ଭାବର ଊର୍ଦ୍ଧ୍ୱକୁ ଯିବାକୁ ହେବ। ଏହି ଦୁଇଟି ହିଁ ନିଜ ନିଜ ପ୍ରକାଶଭୂମିରେ ସତ୍ୟ, କିନ୍ତୁ ସେହି ଯଥାର୍ଥ ସତ୍ୟ, ସେହି ଅସ୍ତିସ୍ୱରୂପକୁ ଲାଭ କରିବାକୁ ହେଲେ ଆମେ ଯାହା-କିଛି ଅସ୍ତିତ୍ୱ, ଇଚ୍ଛା, ଜ୍ଞାନ, କରିବା, ଯିବା, ଜାଣିବା ବୋଲି ଜାଣୁ, ସେସବୁକୁ ଅତିକ୍ରମ କରିବାକୁ ହେବ। ଜୀବାତ୍ମାର ପ୍ରକୃତ ବ୍ୟକ୍ତିତ୍ୱ ନାହିଁ – ତାହା ମିଶ୍ର ବସ୍ତୁ ବୋଲି ଦିନେ ଖଣ୍ଡ ଖଣ୍ଡ ହୋଇ ନଷ୍ଟ ହୋଇଯିବ। ଯାହାକୁ ଆଉ କୌଣସି ପ୍ରକାରେ ବିଶ୍ଳେଷଣ କରାଯାଏ ନାହିଁ, କେବଳ ସେହିବସ୍ତୁ ହିଁ ଅମିଶ୍ର ଏବଂ କେବଳ ତାହା ହିଁ ସତ୍ୟସ୍ୱରୂପ, ମୁକ୍ତ-ସ୍ୱଭାବ, ଅମୃତ ଓ ଆନନ୍ଦସ୍ୱରୂପ। ଏହି ଭ୍ରମାତ୍ମକ ସ୍ୱାତନ୍ତ୍ର୍ୟକୁ ରକ୍ଷା କରିବାର ଯେତେ ଚେଷ୍ଟା, ସବୁ ବାସ୍ତବିକ ପାପ—ଓ ଏହି ସ୍ୱାତନ୍ତ୍ର୍ୟକୁ ବିନାଶ କରିବାର ସବୁ ଉଦ୍ୟମ ହିଁ ଧର୍ମ ବା ପୁଣ୍ୟ। ଏହି ଜଗତ୍‌ରେ ସବୁକିଛି ଜ୍ଞାତସାରରେ ବା ଅଜ୍ଞାତସାରରେ ହେଉ, ଏହି ସ୍ୱାତନ୍ତ୍ର୍ୟକୁ ଭାଙ୍ଗିବାକୁ ଚେଷ୍ଟା କରୁଛି। ନୀତିଜ୍ଞାନ (morality)ର ଭିତ୍ତି ହେଉଛି ଏହି ପାର୍ଥକ୍ୟଜ୍ଞାନ ବା ଭ୍ରମାତ୍ମକ ସ୍ୱାତନ୍ତ୍ର୍ୟକୁ ଭାଙ୍ଗିବାର ଚେଷ୍ଟା; କାରଣ ଏହା ହିଁ ସବୁପ୍ରକାର ପାପର ମୂଳ; ନୀତିଜ୍ଞାନ ପୂର୍ବରୁ ରହିଛି, ତାହା କାହାର ମନଗଢ଼ା ଜିନିଷ ନୁହେଁ, ପରେ ଧର୍ମଶାସ୍ତ୍ର ତାକୁ ବିଧିବଦ୍ଧ କରିଛି ମାତ୍ର। ପ୍ରଥମେ ସମାଜରେ ସ୍ୱଭାବତଃ ନାନାବିଧ ପ୍ରଥା ଉତ୍ପନ୍ନ ହୋଇଥାଏ, ସେଗୁଡ଼ିକର ବ୍ୟାଖ୍ୟା ପାଇଁ ପରେ ପୁରାଣର ଉତ୍ପତ୍ତି। ଯେତେବେଳେ ଘଟଣାସବୁ ଘଟିଯାଏ, ସେତେବେଳେ ସେଗୁଡ଼ିକ ଯୁକ୍ତି-ବିଚାର ଅପେକ୍ଷା ଉଚ୍ଚତର କୌଣସି ନିୟମ ଅନୁଯାୟୀ ହିଁ ଘଟିଥାଏ। ଯୁକ୍ତି-ବିଚାରର ଆବିର୍ଭାବ ପରେ ହୁଏ—ଏହି ସବୁକୁ ବୁଝାଇବା ପାଇଁ। ଯୁକ୍ତି-ବିଚାରର କୌଣସି କିଛି ଘଟାଇବାର ଶକ୍ତି ନାହିଁ। ଏହା ଯେପରି ଘଟଣାଗୁଡ଼ିକ ଘଟିଯିବା ପରେ ତା'ର ରୋମନ୍ଥନ କରିବା। ଯୁକ୍ତିତର୍କ ଯେପରି ମନୁଷ୍ୟ-କାର୍ଯ୍ୟକଳାପର ଐତିହାସିକ (historian)।

***

ବୁଦ୍ଧ ଜଣେ ମହା ବୈଦାନ୍ତିକ ଥିଲେ, (କାରଣ ବୌଦ୍ଧଧର୍ମ ପ୍ରକୃତ ପକ୍ଷରେ ବେଦାନ୍ତର ଶାଖାବିଶେଷ ମାତ୍ର) ଓ ଶଙ୍କରଙ୍କୁ ମଧ୍ୟ କେହି କେହି ପ୍ରଚ୍ଛନ୍ନ ବୌଦ୍ଧ ବୋଲି କହୁଥିଲେ। ବୁଦ୍ଧ ବିଶ୍ଳେଷଣ କରିଥିଲେ—ଶଙ୍କର ସେଗୁଡ଼ିକର ସଂଶ୍ଳେଷଣ ବା ସମନ୍ୱୟ କଲେ। ବୁଦ୍ଧ କେବେହେଲେ ବେଦ ବା ଜାତିଭେଦ ବା ପୁରୋହିତ ବା ସାମାଜିକପ୍ରଥା କାହାର ପାଖରେ ମୁଣ୍ଡ ନୁଆଁଇ ନାହାନ୍ତି। ଯେତେଦୂର ପର୍ଯ୍ୟନ୍ତ ଯୁକ୍ତି-ବିଚାର ଚାଲିପାରେ, ସେ ସେତେଦୂର ନିର୍ଭୀକ ଭାବରେ ଯୁକ୍ତି-ବିଚାର କରିଯାଇଛନ୍ତି। ଏହିପରି ନିର୍ଭୀକ ସତ୍ୟାନୁସନ୍ଧାନ, ପୁଣି ସବୁ ପ୍ରାଣୀଙ୍କ ପ୍ରତି ଏପରି ସ୍ନେହ ଜଗତରେ କେହି କେବେହେଲେ ଦେଖି ନାହିଁ। ବୁଦ୍ଧ ଯେପରି ଧର୍ମ-ଜଗତର ୱାଶିଂଟନ୍ ଥିଲେ। ସେ ସିଂହାସନ ଜୟ କରିଥିଲେ କେବଳ ଜଗତକୁ ଦେବା ପାଇଁ, ଯେପରି ୱାଶିଂଟନ୍ ମାର୍କିନ ଜାତି ପାଇଁ କରିଥିଲେ। ସେ ନିଜ ପାଇଁ କୌଣସି ଆକାଙ୍‌କ୍ଷା ପୋଷଣ କରୁ ନ ଥିଲେ।

**ଶନିବାର, ୨୦ ଜୁଲାଇ**

ପ୍ରତ୍ୟକ୍ଷାନୁଭୂତ ହିଁ ଯଥାର୍ଥ ଜ୍ଞାନ ବା ଯଥାର୍ଥ ଧର୍ମ । ଯଦି ଆମେ ଅନନ୍ତ ଯୁଗଧରି ଧର୍ମ ସମ୍ପର୍କରେ କେବଳ କଥା କହୁଥାଉ, ସେଥିରେ କେବେହେଲେ ଆମର ଆତ୍ମଜ୍ଞାନ ହେବ ନାହିଁ । କେବଳ ମତବିଶେଷରେ ବିଶ୍ୱାସୀ ହେବା ଓ ନାସ୍ତିକତା ମଧ୍ୟରେ କୌଣସି ପ୍ରଭେଦ ନାହିଁ, ବରଂ ଏଭଳି ଆସ୍ତିକ ଓ ନାସ୍ତିକଙ୍କ ମଧ୍ୟରେ ନାସ୍ତିକ ହିଁ ବେଶୀ ଖାଣ୍ଟି । ସେହି ପ୍ରତ୍ୟକ୍ଷାନୁଭୂତର ଆଲୋକରେ ମୁଁ ଯେଉଁ କେତେ ପାଦ ଅଗ୍ରସର ହେବି, ସେଥିରୁ କେହି ମୋତେ କେବେହେଲେ ହଟାଇପାରିବ ନାହିଁ । ତୁମେ ନିଜେ କୌଣସି ଦେଶ ଦେଖିଲେ ଯାଇ ସେ ସମ୍ପର୍କରେ ତୁମର ଯଥାର୍ଥ ଜ୍ଞାନ ହୁଏ । ଆମର ପ୍ରତ୍ୟେକଙ୍କୁ ନିଜକୁ ନିଜେ ଦେଖିବାକୁ ହେବ । ଆଚାର୍ଯ୍ୟମାନେ ଆମ ନିକଟରେ କେବଳ 'ଆଧ୍ୟାତ୍ମିକ ଖାଦ୍ୟ' ଆଣି ପହଞ୍ଚାଇ ପାରନ୍ତି—ଏହି ଖାଦ୍ୟରୁ ପୁଷ୍ଟିଲାଭ କରିବାକୁ ହେଲେ ଆମକୁ ତାହା ଖାଇବାକୁ ପଡ଼ିବ । ତର୍କ-ଯୁକ୍ତିଦ୍ୱାରା ଈଶ୍ୱରଙ୍କୁ ଠିକ୍ ଠିକ୍ ଭାବରେ ପ୍ରମାଣ କରାଯାଇପାରେ ନାହିଁ, କେବଳ ଯୁକ୍ତିସଂଗତ ଏକ ସିଦ୍ଧାନ୍ତରୂପେ ତାଙ୍କୁ ଉପସ୍ଥାପିତ କରାଯାଇପାରେ ।

ଭଗବାନଙ୍କୁ ଆମ ବାହାରେ ପାଇବା ଅସମ୍ଭବ । ବାହାରେ ଯେଉଁ ଈଶ୍ୱରତତ୍ତ୍ୱର ଉପଲବ୍ଧି ହୁଏ, ତାହା ଆମ ଆତ୍ମାର ହିଁ ପ୍ରକାଶ ମାତ୍ର । ଆମେ ହେଉଛୁ ଭଗବାନଙ୍କର ସର୍ବଶ୍ରେଷ୍ଠ ମନ୍ଦିର । ବାହାରେ ଯାହା ଦେଖାଯାଏ, ତାହା ଆମ ଭିତର ଜିନିଷର ହିଁ ଅତି ଅସ୍ପଷ୍ଟ ଅନୁକରଣ ମାତ୍ର ।

ଆମ ମନର ଶକ୍ତିଗୁଡ଼ିକର ଏକାଗ୍ରତା ହିଁ ଆମକୁ ଈଶ୍ୱରଦର୍ଶନରେ ସାହାଯ୍ୟ କରିବାର ଏକମାତ୍ର ଯନ୍ତ୍ର । ଯଦି ତୁମେ ଗୋଟିଏ ଆତ୍ମାକୁ (ନିଜ ଆତ୍ମାକୁ) ଜାଣିପାର, ତା'ହେଲେ ତୁମେ ଭୂତ, ଭବିଷ୍ୟତ୍ ଓ ବର୍ତ୍ତମାନର ସବୁ ଆତ୍ମାକୁ ଜାଣିପାରିବ । ଇଚ୍ଛାଶକ୍ତି-ଦ୍ୱାରା ମନର ଏକାଗ୍ରତା ସାଧିତ ହୁଏ—ଆଚାର, ବିଚାର, ଭକ୍ତି, ପ୍ରାଣାୟାମ, ପ୍ରେମ ଇତ୍ୟାଦି ବିଭିନ୍ନ ଉପାୟଦ୍ୱାରା ଏହି ଇଚ୍ଛାଶକ୍ତି ଉଦ୍‌ବୁଦ୍ଧ ଓ ବଶୀଭୂତ ହୋଇପାରେ । ଏକାଗ୍ର ମନ ଏକ ପ୍ରଦୀପ-ସ୍ୱରୂପ—ଏହାଦ୍ୱାରା ଆତ୍ମାର ସ୍ୱରୂପ ତନ୍ନ ତନ୍ନ କରି ଦେଖାଯାଏ ।

ଏକ ପ୍ରକାର ସାଧନପ୍ରଣାଳୀ ସମସ୍ତଙ୍କର ଉପଯୋଗୀ ହୋଇପାରେ ନାହିଁ; କିନ୍ତୁ ଏହିସବୁ ବିଭିନ୍ନ ସାଧନପ୍ରଣାଳୀ ଯେ ସୋପାନ ଭଳି ଗୋଟିକ ପରେ ଗୋଟିଏ ଅବଲମ୍ବନ କରିବାକୁ ହେବ, ତାହା ନୁହେଁ । କ୍ରିୟାକଳାପ ଅନୁଷ୍ଠାନାଦି ସର୍ବନିମ୍ନ ସାଧନ, ତା'ପରେ ଈଶ୍ୱରଙ୍କୁ ଆମେ ଆମର ବାହାରେ ଦେଖିବା, ତା'ପରେ ଆମର ଆତ୍ମା ଭିତରେ ବ୍ରହ୍ମ-ସାକ୍ଷାତ୍‌କାର କରିବା । ସ୍ଥଳବିଶେଷରେ ଗୋଟାକ ପରେ ଆଉ ଗୋଟିଏ ଏହିପରି କ୍ରମର ଆବଶ୍ୟକତା ହୋଇପାରେ; କିନ୍ତୁ ଅଧିକାଂଶ ସ୍ଥଳରେ ଗୋଟିଏ ମାର୍ଗ ହିଁ ଆବଶ୍ୟକ ହୋଇଥାଏ । 'ଜ୍ଞାନଲାଭ କରିବାକୁ ହେଲେ ତୁମକୁ ପ୍ରଥମେ କର୍ମ ଓ ଭକ୍ତିପଥଦେଇ ଯିବାକୁ ହିଁ ପଡ଼ିବ'—ଏଭଳି କଥା ସମସ୍ତଙ୍କୁ କହିବା ଚରମ ମୂର୍ଖତା ।

ଯେତେଦିନ ପର୍ଯ୍ୟନ୍ତ ଯୁକ୍ତି-ବିଚାରର ଅତୀତ କୌଣସି ତତ୍ତ୍ୱ ଲାଭ ନ କରିଛ, ସେତେଦିନ ତୁମେ ତୁମର ଯୁକ୍ତି-ବିଚାରକୁ ଧରି ରହିଥାଅ, ଓ ଏହି ଅବସ୍ଥାରେ ପହଞ୍ଚିଲେ

ତୁମେ ବୁଝିବ ଯେ, ଏହା ଯୁକ୍ତି-ବିଚାର ଅପେକ୍ଷା ଶ୍ରେଷ୍ଠ ପଦାର୍ଥ, କାରଣ ତାହା ତୁମ ଯୁକ୍ତିର ବିରୋଧୀ ହେବ ନାହିଁ । ଯୁକ୍ତିବିଚାର ବା ଜ୍ଞାନର ଅତୀତ ଏହି ଭୂମି ହେଉଛି ସମାଧି—କିନ୍ତୁ ସ୍ନାୟବିକ ରୋଗର ତାଡ଼ନାରେ ମୂର୍ଚ୍ଛାବିଶେଷକୁ ସମାଧି ବୋଲି ଭୁଲ୍ କର ନାହିଁ । ଅନେକ ମିଛରେ ସମାଧି ହୋଇଛି ବୋଲି ଦାବି କରିଥାଆନ୍ତି, ପଶୁଭଳି ସ୍ୱାଭାବିକ ବା ସହଜ ଜ୍ଞାନକୁ ସମାଧି ଅବସ୍ଥା ବୋଲି ଭ୍ରମ କରିଥାଆନ୍ତି—ଏହା ସାଙ୍ଘାତିକ କଥା । ଯଥାର୍ଥ ଭାବ-ସମାଧି ନା ସ୍ନାୟବିକ ରୋଗ ତାହା ବାହାରୁ ଆଉ ନିର୍ଣ୍ଣୟ କରିବାର କୌଣସି ଉପାୟ ନାହିଁ । ଯଥାର୍ଥ ସମାଧି ଅବସ୍ଥା କ'ଣ ନୁହେଁ, ନିଜେ ନିଜେ ହିଁ ତା'ର ସୂଚନା ପାଇପାର । ତେବେ ଯୁକ୍ତି-ବିଚାରର ସାହାଯ୍ୟ ନେଲେ ଭୁଲଭ୍ରାନ୍ତିରୁ ରକ୍ଷା ମିଳିବା ସମ୍ଭବ ହୁଏ—ସୁତରାଂ ଏହାକୁ ବ୍ୟତିରେକୀ ପରୀକ୍ଷା କୁହାଯାଇପାରେ; ଧର୍ମଲାଭର ଅର୍ଥ—ଯୁକ୍ତି-ତର୍କର ବାହାରକୁ ଯିବା; କିନ୍ତୁ କେବଳ ଯୁକ୍ତି-ବିଚାର ମଧ୍ୟଦେଇ ଧର୍ମଲାଭ କରିବା ହିଁ ଏକମାତ୍ର ପଥ । ସହଜାତ ଜ୍ଞାନ ଯେପରି ବରଫ ଓ ଯୁକ୍ତିବିଚାର ଜ୍ଞାନ ଯେପରି ଜଳ, ଏବଂ ଅଲୌକିକ ଜ୍ଞାନ ବା ସମାଧି ଯେପରି ବାଷ୍ପ—ସବୁଠାରୁ ସୂକ୍ଷ୍ମ ଅବସ୍ଥା । ଗୋଟିକ ପରେ ଆଉ ଗୋଟିଏ ଆସେ । ସବୁ ସ୍ଥାନରେ ହିଁ ଏହି ନିତ୍ୟ ପୌର୍ବାପର୍ଯ୍ୟ ବା କ୍ରମ ରହିଛି, ଯେପରି ଅଜ୍ଞାନ, ସଂଜ୍ଞା ବା ଆପେକ୍ଷିକ ଜ୍ଞାନ ଓ ବୋଧି; ଜଡ଼ ପଦାର୍ଥ, ଦେହ, ମନ । ଆମେ ଏହି ଶୃଙ୍ଖଳର ଯେଉଁ କଡ଼ିକୁ (link) ପ୍ରଥମେ ଧରୁ, ସେଥିରୁ ହିଁ ଶୃଙ୍ଖଳଟି ଆରମ୍ଭ ହୋଇଛି ବୋଲି ଆମର ମନେ ହୁଏ । ଅର୍ଥାତ୍ କିଏ କହେ, ଦେହରୁ ମନର ଉତ୍ପତ୍ତି ଓ ଅନ୍ୟ କିଏ କହେ ଯେ, ମନରୁ ଦେହର ଉତ୍ପତ୍ତି । ଉଭୟ ପକ୍ଷରେ ହିଁ ଯୁକ୍ତିର ସମାନ ମୂଲ୍ୟ ଓ ଉଭୟ ମତ ହିଁ ସତ୍ୟ । ଆମକୁ ଏହି ଦୁଇଟିର ଊର୍ଦ୍ଧ୍ୱକୁ ଯିବାକୁ ହେବ—ଏଭଳି ଜାଗାକୁ ଯିବାକୁ ହେବ, ଯେଉଁଠାରେ ଦେହ ଓ ମନ କୌଣସିଟି ନାହିଁ । ଏହି ଯେଉଁ କ୍ରମ ଓ ପୌର୍ବାପର୍ଯ୍ୟ—ଏହା ମଧ୍ୟ ମାୟା ।

ଧର୍ମ ଯୁକ୍ତି-ବିଚାରର ଊର୍ଦ୍ଧ୍ୱରେ, ଧର୍ମ ଅତିପ୍ରାକୃତ । ବିଶ୍ୱାସର ଅର୍ଥ କିଛି ମାନିନେବା ନୁହେଁ—ବିଶ୍ୱାସର ଅର୍ଥ ସେହି ଚରମ ପଦାର୍ଥକୁ ଧାରଣା କରିବା—ବିଶ୍ୱାସ ହୃଦୟ-କନ୍ଦରକୁ ଉଦ୍ଭାସିତ କରିଦିଏ । ପ୍ରଥମେ ସେହି ଆତ୍ମତତ୍ତ୍ୱ ସମ୍ପର୍କରେ ଶୁଣ, ତା'ପରେ ବିଚାର କର—ବିଚାରଦ୍ୱାରା ଉକ୍ତ ଆତ୍ମତତ୍ତ୍ୱ ସମ୍ପର୍କରେ କେତେଦୂର ଜାଣିହେବ ତାହା ଦେଖ, ଏହାର ଉପରଦେଇ ବିଚାରର ବନ୍ୟା ବହିଯାଉ—ତା'ପରେ ବାକି ଯାହା ରହିବ ତାହାକୁ ଗ୍ରହଣ କର । ଯଦି କିଛି ବାକି ନ ରହେ, ତେବେ ଭଗବାନଙ୍କୁ ଧନ୍ୟବାଦ ଦିଅ ଯେ, ତୁମେ ଗୋଟିଏ କୁସଂସ୍କାରରୁ ରକ୍ଷା ପାଇଗଲ । ଆଉ ତୁମେ ଯେତେବେଳେ ସିଦ୍ଧାନ୍ତ କରିବ ଯେ, ଆତ୍ମାକୁ କେହି ଉଡ଼ାଇ ଦେଇପାରିବ ନାହିଁ, ଯେତେବେଳେ ଆତ୍ମା ସବୁ ପ୍ରକାର ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବ, ସେତେବେଳେ ତାହାକୁ ଦୃଢ଼ଭାବରେ ଧରି ରଖ ଓ ସମସ୍ତଙ୍କୁ ଏହି ଆତ୍ମତତ୍ତ୍ୱ ଶିକ୍ଷା ଦିଅ; ସତ୍ୟ କେବେହେଲେ ବ୍ୟକ୍ତିବିଶେଷର ସମ୍ପତ୍ତି ହୋଇପାରେ ନାହିଁ, ତଦ୍ଦ୍ୱାରା ସମସ୍ତଙ୍କର ମଙ୍ଗଳ ହେବ । ସର୍ବଶେଷରେ ସ୍ଥିରଭାବରେ ଓ ଶାନ୍ତଚିତ୍ତରେ ତାଙ୍କ ଉପରେ ନିଦିଧ୍ୟାସନ କର ବା ତାଙ୍କ ଧ୍ୟାନ କର, ତୁମର ମନକୁ ତାଙ୍କ ଉପରେ

ଏକାଗ୍ର କର, ଏହି ଆତ୍ମା ସହିତ ନିଜକୁ ଏକ ଭାବାପନ୍ନ କରି ପକାଅ । ସେତେବେଳେ ଆଉ ବାକ୍ୟର କୌଣସି ପ୍ରୟୋଜନ ରହିବ ନାହିଁ, ତୁମର ଏହି ମୌନଭାବ ହିଁ ଅପରର ଅନ୍ତରରେ ସତ୍ୟ ତତ୍ତ୍ୱ ସଞ୍ଚାର କରିବ । ବୃଥା ବାକ୍ୟାଡ଼ମ୍ବରରେ ଶକ୍ତିକ୍ଷୟ କର ନାହିଁ, ଧୀରସ୍ଥିର ଭାବରେ ଧ୍ୟାନ କର । ବହିର୍ଜଗତର ଗଣ୍ଡଗୋଳ ଯେପରି ତୁମକୁ ବ୍ୟତିବ୍ୟସ୍ତ ନ କରେ । ଯେତେବେଳେ ତୁମର ମନ ସର୍ବୋଚ୍ଚ ଅବସ୍ଥାରେ ଉପନୀତ ହୁଏ, ସେତେବେଳେ ତୁମେ ତାହା ଜାଣିପାର ନାହିଁ । ଧୀର ସ୍ଥିର ରହି ଶକ୍ତି ସଞ୍ଚୟ କର ଓ ଆଧ୍ୟାତ୍ମିକତାର ଡାଇନାମୋ (ବିଦ୍ୟୁତ୍‌ସଞ୍ଚାରକ ଯନ୍ତ୍ର) ହୋଇଯାଅ । ଭିକ୍ଷୁକ ପୁଣି କଅଣ ଦେଇପାରେ ? ଯେ ରାଜା ସେହି କେବଳ ଦେଇପାରେ—ସେ ପୁଣି ସେତେବେଳେ ହିଁ ଦେଇପାରେ, ଯେତେବେଳେ ସେ ନିଜେ କିଛି ଚାହେଁ ନାହିଁ । ***

ତୁମର ଯାହା କିଛି ଟଙ୍କା ପଇସା ଅଛି, ତାହାକୁ ତୁମ ନିଜର ବୋଲି ମନେ କର ନାହିଁ । ନିଜକୁ ଭଗବାନଙ୍କ ଗଚ୍ଛିତଘରର ରକ୍ଷକ ବୋଲି ମନେକର । ସେଥିପ୍ରତି ଆସକ୍ତି ରଖ ନାହିଁ । ନାମଯଶ, ଟଙ୍କାକଉଡ଼ି ସବୁ ଯାଉ, ଏସବୁ ତ ଭୀଷଣ ବନ୍ଧନସ୍ୱରୂପ । ସ୍ୱାଧୀନତାର ଅପୂର୍ବ ମୁକ୍ତ ବାୟୁ ସମ୍ଭୋଗ କର । ତୁମେ ତ ମୁକ୍ତ ମୁକ୍ତ ମୁକ୍ତ । ଅବିରତ କହ—ମୁଁ ସଦାନନ୍ଦମୟ, ମୁଁ ମୁକ୍ତସ୍ୱଭାବ, ମୁଁ ଅନନ୍ତସ୍ୱରୂପ, ମୋର ଆତ୍ମାର ଆଦି ଅନ୍ତ ନାହିଁ, ସବୁ ମୋର ଆତ୍ମାସ୍ୱରୂପ ।

**ରବିବାର, ୨୧ ଜୁଲାଇ**

**(ପାତଞ୍ଜଳଯୋଗସୂତ୍ର)**

ଚିତ୍ତ ବା ମନ ଯଦ୍ଦ୍ୱାରା ବୃତ୍ତିରୂପେ ବିଭକ୍ତ ନ ହୁଏ, ଯୋଗଶାସ୍ତ୍ର ତାହା ହିଁ ଶିକ୍ଷା ଦେଇଥାଏ—'ଯୋଗଶ୍ଚିତ୍ତବୃତ୍ତିନିରୋଧଃ ।' ମନ ବିଷୟସମୂହର ରୂପ ଓ ଅନୁଭୂତିର ଅର୍ଥାତ୍ କ୍ରିୟା ଓ ପ୍ରତିକ୍ରିୟାର ମିଶ୍ରଣସ୍ୱରୂପ, ସୁତରାଂ ତାହା ନିତ୍ୟ ହୋଇପାରେ ନାହିଁ । ମନର ଏକ ସୂକ୍ଷ୍ମଶରୀର ରହିଛି, ସେହି ଶରୀରଦ୍ୱାରା ମନ ସ୍ଥୂଳ ଦେହ ଉପରେ କାର୍ଯ୍ୟ କରିଥାଏ । ବେଦାନ୍ତ କହନ୍ତି, ମନର ପଶ୍ଚାତ୍ତରେ ଯଥାର୍ଥ ଆତ୍ମା ବିଦ୍ୟମାନ । ବେଦାନ୍ତ ଅପର ଦୁଇଟିକୁ, ଅର୍ଥାତ୍ ଦେହ ଓ ମନକୁ ତ ସ୍ୱୀକାର କରିଥାଆନ୍ତି, କିନ୍ତୁ ଆଉ ଏକ ତୃତୀୟ ପଦାର୍ଥ ମଧ୍ୟ ସ୍ୱୀକାର କରନ୍ତି—ଯାହା ଅନନ୍ତ, ଚରମତତ୍ତ୍ୱସ୍ୱରୂପ, ବିଶ୍ଳେଷଣର ଶେଷ ଫଳସ୍ୱରୂପ, ଏକ ଅଖଣ୍ଡ ବସ୍ତୁ— ଯାହାକୁ ଆଉ ବିଭକ୍ତ କରାଯାଇପାରେ ନାହିଁ । ଜନ୍ମ ହେଉଛି ପୁନର୍ଯୋଜନ, ମୃତ୍ୟୁ ହେଉଛି ବିଯୋଜନ; ବିଶ୍ଳେଷଣ କରୁ କରୁ ଶେଷରେ ଆତ୍ମାକୁ ପାଇ ହୁଏ । ଆତ୍ମାକୁ ଆଉ ବିଭକ୍ତ କରି ହୁଏ ନାହିଁ, ସୁତରାଂ ଆତ୍ମାରେ ପହଞ୍ଚିଲେ ନିତ୍ୟ ସନାତନ ତତ୍ତ୍ୱରେ ପହଞ୍ଚି ହୁଏ ।

ପ୍ରତ୍ୟେକ ତରଙ୍ଗ ପଛରେ ସମଗ୍ର ସମୁଦ୍ର ରହିଛି—ଯେତେ କିଛି ଅଭିବ୍ୟକ୍ତି, ସମୁଦାୟ ହିଁ ତରଙ୍ଗ । ତେବେ କେତେକ ଖୁବ୍ ବଡ଼ ଓ ଆଉ କେତେକ ଛୋଟ, ଏତିକି ମାତ୍ର; କିନ୍ତୁ ପ୍ରକୃତ ପକ୍ଷରେ ଏହି ସବୁ ତରଙ୍ଗ ସ୍ୱରୂପତଃ ସମୁଦ୍ର—ସମସ୍ତ ସମୁଦ୍ରଟା ହିଁ; କିନ୍ତୁ ତରଙ୍ଗଭାବରେ ପ୍ରତ୍ୟେକଟି ଗୋଟିଏ ଗୋଟିଏ ଅଂଶ । ତରଙ୍ଗସମୂହ ଯେତେବେଳେ

ଶାନ୍ତ ହୋଇଯାଏ, ସେତେବେଳେ ଦୁଇ ଏକ । ପତଞ୍ଜଳି କହନ୍ତି—'ଦୃଶ୍ୟବିହୀନ ଦ୍ରଷ୍ଟା ।' ଯେତେବେଳେ ମନ କ୍ରିୟାଶୀଳ ଥାଏ, ସେତେବେଳେ ଆତ୍ମା ତାହାର ତରଙ୍ଗରେ ମିଶିଥାଏ । ଅନୁଭୂତ ପୁରାତନ ବିଷୟଗୁଡ଼ିକର ଦ୍ରୁତବେଗରେ ପୁନରାବୃତ୍ତିକୁ ସ୍ମୃତି କୁହାଯାଏ ।

ଅନାସକ୍ତ ହୁଅ । ଜ୍ଞାନ ହିଁ ଶକ୍ତି ଏବଂ ଜ୍ଞାନ ହେଲେ ହିଁ ତୁମର ଶକ୍ତି ଆସିବ । ଜ୍ଞାନଦ୍ୱାରା, ଏପରିକି, ଏହି ଜଡ଼ ଜଗତକୁ ମଧ୍ୟ ତୁମେ ଉଡ଼ାଇ ଦେଇପାର । ଯେତେବେଳେ ତୁମେ କୌଣସି ବସ୍ତୁରୁ ଗୋଟି ଗୋଟି କରି ଗୁଣ ବାଦ୍ ଦେଇ ଦେଇ ସବୁଗୁଣକୁ କ୍ରମେ ବାଦ୍ ଦେଇପାରିବ, ସେତେବେଳେ ତୁମେ ଇଚ୍ଛା କଲେ ସମଗ୍ର ବିଷୟକୁ ତୁମ ଜ୍ଞାନରୁ ଦୂର କରିଦେଇପାରିବ ।

ଯେଉଁମାନେ ଉତ୍ତମ ଅଧିକାରୀ, ସେମାନେ ଯୋଗରେ ଖୁବ୍ ଶୀଘ୍ର ଉନ୍ନତି କରି ପାରିବେ—ଛମାସରେ ସେମାନେ ଯୋଗୀ ହୋଇପାରିବେ । ଯେଉଁମାନେ ତଦପେକ୍ଷା ନିମ୍ନାଧିକାରୀ, ସେମାନଙ୍କୁ ଯୋଗରେ ସିଦ୍ଧିଲାଭ କରିବାକୁ କେତେବର୍ଷ ବିତି ଯାଇପାରେ ଓ ଯେକୌଣସି ବ୍ୟକ୍ତି ନିଷ୍ଠା ସହ ସାଧନ କଲେ—ଅନ୍ୟ ସବୁକାର୍ଯ୍ୟ ଛାଡ଼ି ଦେଇ ସର୍ବଦା କେବଳ ସାଧନାରେ ରତ ହେଲେ ଦ୍ୱାଦଶ ବର୍ଷରେ ସିଦ୍ଧି ଲାଭ କରିପାରିବେ । ଏହି ସବୁ ମାନସିକ ବ୍ୟାୟାମ ନ କରି କେବଳ ଭକ୍ତିଦ୍ୱାରା ମଧ୍ୟ ଏ ଅବସ୍ଥାରେ ପହଞ୍ଚି ହେବ, କିନ୍ତୁ ସେଥିରେ କିଛି ବିଳମ୍ବ ଘଟେ । ମନଦ୍ୱାରା ସେ ଆତ୍ମାକୁ ଯେଉଁଭଳି ଭାବରେ ଦେଖିବା ଓ ଧରିବା ସମ୍ଭବ ହୋଇପାରେ, ତାକୁ ହିଁ ଈଶ୍ୱର କୁହାଯାଏ । ତାଙ୍କର ସର୍ବଶ୍ରେଷ୍ଠ ନାମ ଓଁ, ତେଣୁ ଏହି ଓଁକାର ଜପ କରୁ, ଧ୍ୟାନ କର ତା' ଭିତରେ ଯେଉଁ ଅପୂର୍ବ ଅର୍ଥସମୂହ ନିହିତ, ତାହା ଚିନ୍ତା କର । ସର୍ବଦା ଓଁକାର-ଜପ ହିଁ ଯଥାର୍ଥ ଉପାସନା । ଓଁକାର ସାଧାରଣ ଶବ୍ଦମାତ୍ର ନୁହେଁ, ସ୍ୱୟଂ ଈଶ୍ୱରସ୍ୱରୂପ ।

ଧର୍ମ ତୁମକୁ ନୂଆ କିଛି ଦିଏ ନାହିଁ । କେବଳ ପ୍ରତିବନ୍ଧକଗୁଡ଼ିକୁ ଅପସାରଣ କରି ତୁମ ନିଜର ସ୍ୱରୂପ ଦେଖିବାକୁ ଦିଏ । ବ୍ୟାଧି ହିଁ ପ୍ରଥମ ବଡ଼ ବାଧକ—ସୁସ୍ଥ ଶରୀର ହିଁ ସେହି ଯୋଗାବସ୍ଥା ଲାଭ କରିବାର ସର୍ବୋତ୍କୃଷ୍ଟ ଯନ୍ତ୍ରସ୍ୱରୂପ । ଦୌର୍ମନସ୍ୟ ବା ମନ ଖରାପ ହେବା ରୂପକ ବିଘ୍ନଟିକୁ ଦୂର କରିବା ଏକ ପ୍ରକାର ଅସମ୍ଭବ ବୋଲି କୁହାଯାଇପାରେ । ତେବେ ତୁମେ ଥରେ ଯଦି ବ୍ରହ୍ମକୁ ଜାଣିପାର, ପରେ ତୁମର ମନ ଆଉ ଖରାପ ହେବାର ସମ୍ଭାବନା ରହିବ ନାହିଁ ! ସଂଶୟ, ଅଧ୍ୟବସାୟର ଅଭାବ, ଭ୍ରାନ୍ତ ଧାରଣା—ଏଗୁଡ଼ିକ ମଧ୍ୟ ଅନ୍ୟାନ୍ୟ ବିଘ୍ନ ।

***

ପ୍ରାଣ ହେଉଛି ଶରୀରସ୍ଥ ଅତିସୂକ୍ଷ୍ମ ଶକ୍ତି—ଦେହର ସବୁ ପ୍ରକାର ଗତିର କାରଣସ୍ୱରୂପ । ପ୍ରାଣ ସର୍ବଶୁଦ୍ଧ ଦଶଟି—ତନ୍ମଧ୍ୟରେ ପାଞ୍ଚଟି ଅନ୍ତର୍ମୁଖ ଓ ଆଉ ପାଞ୍ଚଟି ବହିର୍ମୁଖ । ଏଥିରୁ ଗୋଟିଏ ପ୍ରାଣପ୍ରବାହ ଉପର ଦିଗରେ ପ୍ରବାହିତ ଓ ଅପରଗୁଡ଼ିକ ନିମ୍ନଦିଗରେ ପ୍ରବାହିତ ହେଉଛି । ପ୍ରାଣାୟାମର ଅର୍ଥ ଶ୍ୱାସ-ପ୍ରଶ୍ୱାସର ନିୟମନଦ୍ୱାରା ପ୍ରାଣସମୂହକୁ ନିୟମିତ କରିବା । ଶ୍ୱାସ ଇନ୍ଧନସ୍ୱରୂପ, ପ୍ରାଣ ବାଷ୍ପସ୍ୱରୂପ ଓ ଶରୀର

ଇଞ୍ଜିନ୍‌ସ୍ୱରୂପ । ପ୍ରାଣାୟାମରେ ତିନୋଟି କ୍ରିୟା ଅଛି: ପୂରକ—ଶ୍ୱାସକୁ ଭିତରକୁ ନେବା, କୁମ୍ଭକ—ଶ୍ୱାସକୁ ଭିତରେ ଧାରଣ କରି ରଖିବା ଓ ରେଚକ—ବାହାରକୁ ଶ୍ୱାସ ଛାଡ଼ିବା ।

ଗୁରୁ ହେଉଛନ୍ତି ସେହି ଆଧାର, ଯାହାଙ୍କ ମଧ୍ୟଦେଇ ଆଧ୍ୟାତ୍ମିକ ଶକ୍ତି ଲୋକଙ୍କ ନିକଟରେ ପହଞ୍ଚିଥାଏ । ଯେ କେହି ଶିକ୍ଷା ଦେଇପାରେ ସତ୍ୟ, କିନ୍ତୁ ଗୁରୁ ହିଁ ଶିଷ୍ୟ ମଧ୍ୟରେ ଆଧ୍ୟାତ୍ମିକ ଶକ୍ତି ସଞ୍ଚାରିତ କରିଥାଆନ୍ତି, ତାହାଦ୍ୱାରା ଆଧ୍ୟାତ୍ମିକ ଉନ୍ନତିରୂପକ ଫଳ ଲାଭ ହୋଇଥାଏ । ଶିଷ୍ୟମାନଙ୍କ ମଧ୍ୟରେ ପରସ୍ପର ଭାଇ ଭାଇ ସମ୍ପର୍କ ଓ ଭାରତର ଆଇନ୍ ଏ ସମ୍ବନ୍ଧ ସ୍ୱୀକାର କରିଥାଏ । ଗୁରୁ ତାଙ୍କ ପୂର୍ବବର୍ତ୍ତୀ ଆଚାର୍ଯ୍ୟମାନଙ୍କ ନିକଟରୁ ଯେଉଁ ମନ୍ତ୍ର ବା ଭାବଶକ୍ତିମୟ ଶବ୍ଦ ପାଇଛନ୍ତି, ଶିଷ୍ୟଙ୍କ ମଧ୍ୟରେ ତାହା ହିଁ ସଙ୍କ୍ରମିତ କରନ୍ତି—ଗୁରୁ ବ୍ୟତୀତ ସାଧନ ଭଜନ କିଛି ହୋଇପାରେ ନାହିଁ, ବରଂ ବିପଦର ଆଶଙ୍କା ଯଥେଷ୍ଟ ରହିଛି । ସାଧାରଣତଃ ଗୁରୁଙ୍କ ସାହାଯ୍ୟ ନ ନେଇ ଏସବୁ ଯୋଗ ଅଭ୍ୟାସ କରିବାକୁ ଗଲେ କାମର ପ୍ରାବଲ୍ୟ ହୋଇଥାଏ; କିନ୍ତୁ ଗୁରୁଙ୍କ ସାହାଯ୍ୟ ଥିଲେ ପ୍ରାୟ ଏହା ଘଟେ ନାହିଁ । ପ୍ରତ୍ୟେକ ଇଷ୍ଟଦେବତାଙ୍କର ଗୋଟିଏ ଗୋଟିଏ ମନ୍ତ୍ର ଅଛି । ଇଷ୍ଟ ଅର୍ଥରେ ବିଶେଷ ବିଶେଷ ଉପାସକଙ୍କର ବିଶେଷ ବିଶେଷ ଆଦର୍ଶକୁ ବୁଝାଇଥାଏ । ମନ୍ତ୍ର ହେଉଛି ଏହି ଭାବ-ବିଶେଷର ବ୍ୟଞ୍ଜକ ଶବ୍ଦ । ଏ ଶବ୍ଦର କ୍ରମାଗତ ଜପଦ୍ୱାରା ଆଦର୍ଶଟିକୁ ମନରେ ଦୃଢ଼ଭାବରେ ରଖିବାରେ ସହାୟକ ହୋଇଥାଏ । ଏହିପରି ଉପାସନାପ୍ରଣାଳୀ ଭାରତର ସମସ୍ତ ସାଧକଙ୍କ ମଧ୍ୟରେ ପ୍ରଚଳିତ ।

**ମଙ୍ଗଳବାର, ୨୦ ଜୁଲାଇ**

(ଭଗବଦ୍‌ଗୀତା—କର୍ମଯୋଗ)

କର୍ମଦ୍ୱାରା ମୁକ୍ତିଲାଭ କରିବାକୁ ହେଲେ ନିଜକୁ କର୍ମରେ ନିଯୁକ୍ତ କର; କିନ୍ତୁ କୌଣସି କାମନା କର ନାହିଁ—ତୁମର ଯେପରି ଫଳାକାଙ୍‌କ୍ଷା ନ ଥାଏ । ଏହିପରି କର୍ମଦ୍ୱାରା ଜ୍ଞାନଲାଭ ହୋଇଥାଏ—ଏହି ଜ୍ଞାନଦ୍ୱାରା ମୁକ୍ତି ହୁଏ । ଜ୍ଞାନଲାଭ କରିବା ପୂର୍ବରୁ କର୍ମତ୍ୟାଗ କଲେ ଦୁଃଖ ହିଁ ଆସିଥାଏ । ଆତ୍ମା ପାଇଁ କର୍ମ କଲେ ସେଥିରୁ କୌଣସି ବନ୍ଧନ ଆସେ ନାହିଁ । କର୍ମରୁ କୌଣସି ସୁଖର ଆକାଙ୍‌କ୍ଷା ମଧ୍ୟ କର ନାହିଁ, ପୁଣି କର୍ମ କଲେ କଷ୍ଟ ହେବ, ଏ ଭୟ ମଧ୍ୟ କର ନାହିଁ—ଦେହ-ମନ ହିଁ କାର୍ଯ୍ୟ କରିଥାଏ, ମୁଁ କରେ ନାହିଁ । ସର୍ବଦା ନିଜକୁ ଏହା ହିଁ କହ ଓ ଏହାକୁ ପ୍ରତ୍ୟକ୍ଷ କରିବାକୁ ଚେଷ୍ଟା କର । ଚେଷ୍ଟା କର, ଯେପରି ତୁମେ କିଛି କରୁଛ—ଏହି ଜ୍ଞାନ ତୁମର ନ ହୁଏ ।

ସମସ୍ତ କର୍ମ ଭଗବାନଙ୍କଠାରେ ଅର୍ପଣ କର । ସଂସାରରେ ରହ; କିନ୍ତୁ ସଂସାରର ହୁଅ ନାହିଁ—ପଦ୍ମପତ୍ରର ମୂଳ ଯେପରି ପଙ୍କ ମଧ୍ୟରେ ଥାଏ, କିନ୍ତୁ ତାହା ଯେପରି ସର୍ବଦା ଶୁଦ୍ଧ ଥାଏ, ସେହିପରି ଲୋକେ ତୁମପ୍ରତି ଯେଉଁଭଳି ବ୍ୟବହାର କରନ୍ତୁ ନା କାହିଁକି, ତୁମର ସ୍ନେହ ଯେପରି କାହାରି ପ୍ରତି ଊଣା ନ ହୁଏ । ଯେ ଅନ୍ଧ, ତାହାର ବର୍ଣ୍ଣର ଜ୍ଞାନ ରହିପାରେ ନାହିଁ—ସୁତରାଂ ମୋ ନିଜ ଭିତରେ ଦୋଷ ନ ଥିଲେ ଅନ୍ୟର ଦୋଷ ଦେଖିବି କିପରି ?

ଆମେ ଆମ ନିଜ ମଧ୍ୟରେ ଯାହା ରହିଛି, ତାହା ସହିତ ବାହାରେ ଯାହା ଦେଖିବାକୁ ପାଉ, ତାହାକୁ ତୁଳନା କରୁ ଓ ସେହି ଅନୁସାରେ କୌଣସି ବିଷୟରେ ଆମ ମତାମତ ବ୍ୟକ୍ତ କରିଥାଉ । ଯଦି ଆମେ ନିଜେ ପବିତ୍ର ହେଉ, ତେବେ ବାହ୍ୟ ଅପବିତ୍ରତା ଦେଖିବାକୁ ପାଇବା ନାହିଁ । ବାହାରେ ଅପବିତ୍ରତା ଥାଇପାରେ, କିନ୍ତୁ ଆମ ପକ୍ଷରେ ତା'ର ଅସ୍ତିତ୍ୱ ରହିବ ନାହିଁ । ପ୍ରତ୍ୟେକ ନରନାରୀ, ବାଳକ-ବାଳିକାଙ୍କ ମଧ୍ୟରେ ବ୍ରହ୍ମଙ୍କୁ ଦର୍ଶନ କର । ଅନ୍ତର୍ଜ୍ୟୋତିଦ୍ୱାରା ତାଙ୍କୁ ଦେଖ, ଯଦି ସବୁଠାରେ ସେହି ବ୍ରହ୍ମ-ସାକ୍ଷାତ୍କାର ଘଟେ, ତେବେ ଆମେ ଆଉ କିଛି ଦେଖିବାକୁ ପାଇବା ନାହିଁ । ଏହି ସଂସାରକୁ ଚାହଁ ନାହିଁ, କାରଣ ଯିଏ ଯାହା ଚାହେଁ, ସେ ତାହା ହିଁ ପାଇଥାଏ । ଭଗବାନଙ୍କୁ—କେବଳ ଭଗବାନଙ୍କୁ ହିଁ ଅନ୍ୱେଷଣ କର । ଯେତେ ଅଧିକ ଶକ୍ତି ଲାଭ କରିବ ସେତେ ବନ୍ଧନ ଆସିବ, ସେତିକ ଭୟ ଆସିବ । ଗୋଟିଏ ସାମାନ୍ୟ ପିମ୍ପୁଡ଼ିଠାରୁ ଆମେ କେତେ ବେଶୀ ଭୟାଳୁ ଓ ଦୁଃଖୀ । ଏହି ସମସ୍ତ ଜଗତ୍-ପ୍ରପଞ୍ଚର ବାହାରେ ଭଗବାନଙ୍କ ନିକଟକୁ ଯାଅ । ସ୍ରଷ୍ଟାଙ୍କର ତତ୍ତ୍ୱ ଜାଣିବାକୁ ଚେଷ୍ଟା କର, ସୃଷ୍ଟିର ତତ୍ତ୍ୱ ଜାଣିବାକୁ ଚେଷ୍ଟା କର ନାହିଁ ।

"ମୁଁ ହିଁ କର୍ତ୍ତା ଓ ମୁଁ ହିଁ କାର୍ଯ୍ୟ ।" "ଯେ କାମ-କ୍ରୋଧର ବେଗ ଧାରଣ କରି ପାରନ୍ତି, ସେ ମହାଯୋଗୀ ପୁରୁଷ ।"*

"କେବଳ ଅଭ୍ୟାସ ଓ ବୈରାଗ୍ୟଦ୍ୱାରା ହିଁ ମନକୁ ନିରୋଧ କରାଯାଇପାରେ ।"**

***

ଆମର ପୂର୍ବପୁରୁଷମାନେ ଚପ୍‌ଚାପ୍ ବସି ଧର୍ମ ଓ ଈଶ୍ୱର ସମ୍ପର୍କରେ ଚିନ୍ତା କରି ଯାଇଛନ୍ତି ଓ ଆମର ମଧ୍ୟ ଏସବୁ ବିଷୟରେ ଖଟାଇବା ପାଇଁ ମସ୍ତିଷ୍କ ରହିଛି; କିନ୍ତୁ ବର୍ତ୍ତମାନ ଆମେ ଟଙ୍କା-ପଇସା ପାଇଁ ଯେପରି ଧାଁ-ଧଉଡ଼ ଆରମ୍ଭ କରିଛୁ, ତଦ୍ୱାରା ତାହା ନଷ୍ଟ ହେବାକୁ ବସିଛି ।

***

ଶରୀରର ନିଜକୁ ନିଜେ ଆରୋଗ୍ୟ କରିବାର ଏକ ଶକ୍ତି ଅଛି ଏବଂ ମାନସିକ ଅବସ୍ଥା, ଔଷଧ, ବ୍ୟାୟାମ ପ୍ରଭୃତି ନାନା ବିଷୟ ଏହି ଆରୋଗ୍ୟ-ଶକ୍ତିକୁ ଜଗାଇ ଦେଇପାରେ । ଆମେ ଯେତେଦିନଯାଏ ଭୌତିକ ଅବସ୍ଥା-ଚକ୍ରଦ୍ୱାରା ବିଚଳିତ ହେଉ, ସେତେଦିନ ଆମର ଜଡ଼ର ସାହାଯ୍ୟ ପ୍ରୟୋଜନ । ଆମେ ଯେତେଦିନ ଯାଏ ସ୍ନାୟୁସମୂହର ଦାସତ୍ୱ କଟାଇ ନ ପାରିଛୁ, ସେତେଦିନ ତାହାକୁ ଆମେ ଉପେକ୍ଷା କରିପାରିବୁ ନାହିଁ ।

ଆମର ସାଧାରଣ ଜ୍ଞାନ-ଭୂମିର ନିମ୍ନରେ ଆଉ ଏକ ଭୂମି ଅଛି—ତାକୁ ଅଜ୍ଞାନ-ଭୂମି ବା ଅବଚେତନ ମନ କୁହାଯାଇପାରେ । ଆମେ ଯାହାକୁ ସମଗ୍ର ମନୁଷ୍ୟ କହୁ, ଜ୍ଞାନ ତାହାର ଏକ ଅଂଶ ମାତ୍ର । ଧର୍ମ କିନ୍ତୁ ପ୍ରତ୍ୟକ୍ଷାନୁଭୂତି ଉପରେ ପ୍ରତିଷ୍ଠିତ—ପ୍ରତ୍ୟକ୍ଷ ଦର୍ଶନ, ଯାହା ଜ୍ଞାନର ଏକମାତ୍ର ଭିତ୍ତି—ତାହା ଉପରେ ପ୍ରତିଷ୍ଠିତ । ମନ ଯେତେ-

---

* ଗୀତା, ୫।୨୩

** ଗୀତା, ୬।୩୫

ବେଳେ ଜ୍ଞାନର ଅତୀତ ଭୂମିକୁ ଚାଲିଯାଏ, ସେତେବେଳେ ତାହା ଯଥାର୍ଥ ବସ୍ତୁ, ଯଥାର୍ଥ ବିଷୟକୁ ଉପଲବ୍‌ଧି କରେ । 'ଆପ୍ତ' ତାହାଙ୍କୁ କହନ୍ତି, ଯିଏ ଧର୍ମକୁ ପ୍ରତ୍ୟକ୍ଷ କରିଛନ୍ତି; ସେମାନେ ଯେ ଉପଲବ୍‌ଧି କରିଛନ୍ତି, ତା'ର ପ୍ରମାଣ ଏହି ଯେ, ତୁମେ ଯଦି ତାଙ୍କର ପ୍ରଣାଳୀ ଅନୁସରଣ କର ତୁମେ ବି ଦେଖିପାରିବ । ପ୍ରତ୍ୟେକ ବିଜ୍ଞାନର ହିଁ ବିଶେଷ ବିଶେଷ ପ୍ରଣାଳୀ ଓ ବିଶେଷ ବିଶେଷ ଯନ୍ତ୍ରର ପ୍ରୟୋଜନ । ଜଣେ ଜ୍ୟୋତିଷୀ ରନ୍ଧା ଘରର ସମସ୍ତ ହାଣ୍ଡିକୁଣ୍ଡେଇ ସାହାଯ୍ୟ ନେଇ ଶନିଗ୍ରହର ବଳୟଗୁଡ଼ିକୁ ଦେଖାଇପାରେ ନାହିଁ—ଦେଖାଇବାକୁ ହେଲେ ଦୂରବୀକ୍ଷଣ ଯନ୍ତ୍ରର ପ୍ରୟୋଜନ । ସେହିପରି ଧର୍ମର ମହାନ୍ ସତ୍ୟ ଦେଖାଇବାକୁ ହେଲେ ଯିଏ ପୂର୍ବରୁ ସେଗୁଡ଼ିକୁ ପ୍ରତ୍ୟକ୍ଷ କରିଛନ୍ତି, ତାଙ୍କଦ୍ୱାରା ଉପଦିଷ୍ଟ ପ୍ରଣାଳୀଗୁଡ଼ିକର ଅନୁସରଣ କରିବାକୁ ହେବ । ଯେଉଁ ବିଜ୍ଞାନ ଯେତେ ବଡ଼, ତା'ର ଶିକ୍ଷା କରିବାର ଉପାୟ ମଧ୍ୟ ସେତେ ବିବିଧ । ଆମେ ସଂସାରକୁ ଆସିବା ପୂର୍ବରୁ ଭଗବାନ ଏଥିରୁ ବାହାରି ଯିବାର ଉପାୟ ମଧ୍ୟ କରି ରଖିଛନ୍ତି । ସୁତରାଂ ଆମର ସେହି ଉପାୟଟିକୁ ଜାଣିବା ହିଁ ଦରକାର । ତେବେ ବିଭିନ୍ନ ପ୍ରଣାଳୀ ନେଇ ମରାମରି କର ନାହିଁ । କେବଳ ଯେଉଁଥିରେ ତୁମର ଅପରୋକ୍ଷାନୁଭୂତି ହୁଏ, ତା'ର ଚେଷ୍ଟା କର । କେବଳ ଯେଉଁଥିରେ ତୁମର ଅପରୋକ୍ଷାନୁଭୂତି ହୁଏ, ତାକୁ ଅବଲମ୍ବନ କର ଓ ଯେଉଁ ସାଧନପ୍ରଣାଳୀ ତୁମ ପକ୍ଷରେ ସବୁଠାରୁ ଉପଯୋଗୀ ହେବ, ତାହା ଅବଲମ୍ବନ କର । ତୁମେ ଆମ୍ବ ଖାଇଯାଅ, ଅନ୍ୟମାନେ ଝୁଡ଼ିକୁ ନେଇ ବାଡ଼ଅପିଟା ହୋଇ ମରନ୍ତୁ । ଖ୍ରୀଷ୍ଟଙ୍କୁ ଦର୍ଶନ କର—ତେବେ ଯାଇ ତୁମେ ଯଥାର୍ଥ ଖ୍ରୀଷ୍ଟିଆନ୍ ହେବ । ଆଉ ସବୁ କିଛି ବାଜେ କଥା ମାତ୍ର—କଥା ଯେତେ କମ୍ ହେବ ସେତିକି ଭଲ ।

ଯାହାର ଜଗତରେ କିଛି ବାର୍ତ୍ତା ବହନ କରିବାର ବା ଶିକ୍ଷା ଦେବାର ଥାଏ, ତାଙ୍କୁ ହିଁ ବାର୍ତ୍ତାବହ ବା ଦୂତ କୁହାଯାଇପାରେ—ଦେବତା ରହିଲେ ଯାଇ ତାହାଙ୍କୁ ମନ୍ଦିର କୁହାଯାଇପାରେ । ଏହାର ବିପରୀତ ସତ୍ୟ ନୁହେଁ ।

ଯେତେଦିନ ପର୍ଯ୍ୟନ୍ତ ତୁମର ମୁଖ ବ୍ରହ୍ମବିତ୍ ସତ୍ୟକାମଙ୍କ ପରି ପ୍ରଭାସିତ ନ ହୋଇଛି, ସେତେଦିନ ପର୍ଯ୍ୟନ୍ତ ଶିକ୍ଷା କର ।*

ମୋର ମଧ୍ୟ ଆନୁମାନିକ ଜ୍ଞାନ, ଅପରର ମଧ୍ୟ ଆନୁମାନିକ ଜ୍ଞାନ—ଏପରି କ୍ଷେତ୍ରରେ ଗଣ୍ଡଗୋଳ ଘଟିବା ସ୍ୱାଭାବିକ; କିନ୍ତୁ ପ୍ରତ୍ୟକ୍ଷ ଦର୍ଶନ କରି ସେହି ବିଷୟରେ କଥା କହି ଦେଖି—ଏଭଳି ମନୁଷ୍ୟହୃଦୟ ନାହିଁ, ଯାହା ତାହାକୁ ସ୍ୱୀକାର କରିବାକୁ ବାଧ୍ୟ ନ ହୁଏ । ପ୍ରତ୍ୟକ୍ଷାନୁଭୂତି କରିବାଦ୍ୱାରା ହିଁ ସେଣ୍ଟ ପଲ୍‌ଙ୍କୁ (St. Paul) ଇଚ୍ଛା ବିରୋଧରେ ଖ୍ରୀଷ୍ଟଧର୍ମ ଗ୍ରହଣ କରିବାକୁ ପଡ଼ିଥିଲା ।

ଅପରାହ୍ଣ

(ମଧ୍ୟାହ୍ନ ଭୋଜନ ପରେ ଅଳ୍ପ ସମୟ କଥାବାର୍ତ୍ତା ହୋଇଥିଲା—ସେହି କଥାବାର୍ତ୍ତା ପ୍ରସଙ୍ଗରେ ସ୍ୱାମୀଜୀ କହିଲେ :)

* ଛାନ୍ଦୋଗ୍ୟ ଉପ., ୪।୭।୨

ଭ୍ରମ ହିଁ ଭ୍ରମ ସୃଷ୍ଟି କରିଥାଏ । ଭ୍ରମ ନିଜକୁ ନିଜେ ସୃଷ୍ଟି କରୁଛି, ପୁଣି ନିଜକୁ ନିଜେ ନଷ୍ଟ କରୁଛି । ଏହାକୁ ମାୟା କହନ୍ତି । ତଥାକଥିତ ସମସ୍ତ ଜ୍ଞାନର ଭିତ୍ତି ହିଁ ମାୟା । ପୁଣି ଏପରି ଏକ ସମୟ ଆସେ—ଯେତେବେଳେ ଲୋକେ ବୁଝିପାରନ୍ତି ଯେ, ଏହି ଜ୍ଞାନ ଅନ୍ୟୋନ୍ୟାଶ୍ରୟଦୋଷଦୁଷ୍ଟ । ସେତେବେଳେ ଏହି ଜ୍ଞାନ ନିଜେ ନିଜକୁ ନଷ୍ଟ କରିବାକୁ ଚେଷ୍ଟା କରେ । 'ଛାଡ଼ିଦିଅ ରଜ୍ଜୁ—ଆକର୍ଷଣ ଯାଉ ।' ଭ୍ରମ କେବେହେଲେ ଆତ୍ମାକୁ ସ୍ପର୍ଶ କରିପାରେ ନାହିଁ, ଆମେ ଯେତେବେଳେ ସେ ଦଉଡ଼ିକୁ ଧରୁ, ମାୟା ସହିତ ନିଜକୁ ମିଶାଇ ଦେଉ, ସେତେବେଳେ ହିଁ ସେ ଆମମାନଙ୍କ ଉପରେ ଶକ୍ତି ବିସ୍ତାର କରେ । ମାୟା କେଉଁଠାକୁ ଯିବ ଯାଉ । ତାକୁ ଛାଡ଼ିଦିଅ । କେବଳ ସାକ୍ଷୀସ୍ୱରୂପ ହୋଇ ଥାଅ । ତା'ହେଲେ ଯାଇ ଅବିଚଳିତ ରହି ଜଗତ୍-ପ୍ରପଞ୍ଚରୂପକ ଛବିର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇପାରିବ ।

**ବୁଧବାର, ୨୪ ଜୁଲାଇ**

ଯୋଗରେ ଯିଏ ସମ୍ପୂର୍ଣ୍ଣ ଶୁଦ୍ଧି ଲାଭ କରିଛନ୍ତି, ତାଙ୍କ ପକ୍ଷରେ ଯୋଗସିଦ୍ଧିଗୁଡ଼ିକ ବିଘ୍ନ ନୁହେଁ; କିନ୍ତୁ ପ୍ରବର୍ତ୍ତକଙ୍କ ପକ୍ଷରେ ସେଗୁଡ଼ିକ ବିଘ୍ନସ୍ୱରୂପ ହୋଇପାରିବ; କାରଣ ଏହି-ଗୁଡ଼ିକୁ ପ୍ରୟୋଗ କରୁ କରୁ ଏସବୁରେ ଗୋଟିଏ ଆନନ୍ଦ ଓ ବିସ୍ମୟର ଭାବ ଆସିପାରେ । ସିଦ୍ଧି ବା ବିଭୂତିଗୁଡ଼ିକ ଯୋଗ-ସାଧନା-ପଥରେ ଯେ ଯଥାଯଥଭାବରେ ଅଗ୍ରଗତି କରାଯାଉଛି, ତାହାର ହିଁ ଚିହ୍ନସ୍ୱରୂପ; କିନ୍ତୁ ସେଗୁଡ଼ିକ ମନ୍ତ୍ରଜପ, ଉପାସନାଦି, ତପସ୍ୟା, ଯୋଗସାଧନ, ଏପରି କି, ଔଷଧବିଶେଷର ବ୍ୟବହାରଦ୍ୱାରା ମଧ୍ୟ ଆସିପାରେ । ଯେଉଁ ଯୋଗୀ ଯୋଗସିଦ୍ଧି ସମୂହରେ ମଧ୍ୟ ବୈରାଗ୍ୟ ଅବଲମ୍ବନ କରନ୍ତି ଏବଂ ସମସ୍ତ କର୍ମଫଳ ତ୍ୟାଗ କରନ୍ତି, ତାଙ୍କର ଧର୍ମମେଘ ନାମକ ସମାଧି ଲାଭ ହୁଏ । ମେଘ ଯେପରି ବାରି ବର୍ଷଣ କରେ, ସେପରି ସେ ଯେଉଁ ଯୋଗାବସ୍ଥା ଲାଭ କରନ୍ତି, ସେଥିରେ ଈଶ୍ୱରଆଡ଼େ ଧର୍ମ ବା ପବିତ୍ରତାର ପ୍ରଭାବ ବିସ୍ତାରିତ ହେବାକୁ ଲାଗେ ।

ଯେତେବେଳେ ଏକ ପ୍ରକାର ପ୍ରତ୍ୟୟର କ୍ରମାଗତ ଆବୃତ୍ତି ହେଉଥାଏ, ସେତେବେଳେ ହିଁ ତାହା ଧ୍ୟାନପଦବାଚ୍ୟ; କିନ୍ତୁ ସମାଧି ଗୋଟିଏ ବସ୍ତୁରେ ହିଁ ହୋଇଥାଏ ।

ମନ ଆତ୍ମାର ଜ୍ଞେୟ; କିନ୍ତୁ ମନ ସ୍ୱପ୍ରକାଶ ନୁହେଁ । ଆତ୍ମା କୌଣସି ବସ୍ତୁର କାରଣ ହୋଇପାରେ ନାହିଁ । କିପରି ହେବ ? ପୁରୁଷ ପ୍ରକୃତି ସହିତ ଯୁକ୍ତ ହେବ କିପରି ? ପୁରୁଷ ପ୍ରକୃତ ପକ୍ଷରେ କେବେହେଲେ ପ୍ରକୃତି ସହିତ ଯୁକ୍ତ ହୁଏ ନାହିଁ—ଅବିବେକିତା ଯୋଗୁଁ ପୁରୁଷ ପ୍ରକୃତିରେ ଯୁକ୍ତ ହୋଇଛି ବୋଲି ମନେହୁଏ ମାତ୍ର । ***

ଲୋକଙ୍କୁ ଦୟା-ଦୃଷ୍ଟିରେ ନ ଦେଖି ଅଥବା ସେମାନେ ଅତି ହୀନ ଦଶାରେ ପଡ଼ିଛନ୍ତି—ଏ ଭଳି ମନେ ନ କରି ଅପରକୁ ସାହାଯ୍ୟ କରିବାକୁ ଶିକ୍ଷା କର; ଶତ୍ରୁ ମିତ୍ର ଉଭୟଙ୍କ ପ୍ରତି ସମଦୃଷ୍ଟି-ସମ୍ପନ୍ନ ହେବାକୁ ଶିକ୍ଷା କର । ଯେତେବେଳେ ତାହା ହୋଇପାରିବ ଓ ଯେତେବେଳେ ତୁମର କୌଣସି ବାସନା ରହିବ ନାହିଁ, ସେତେବେଳେ

ତୁମର ଚରମାବସ୍ଥା ଲାଭ ହୋଇଛି ବୋଲି ବୁଝିବାକୁ ହେବ ।

ବାସନା-ରୂପକ ଅଶ୍ୱତ୍ଥବୃକ୍ଷକୁ ଅନାସକ୍ତି-ରୂପକ କୁଠାରଦ୍ୱାରା କାଟି ପକାଅ, ତା'ହେଲେ ତାହା ଏକାବେଳକେ ଚାଲିଯିବ । ଏହା ତ ଏକ ଭ୍ରମମାତ୍ର । "ଯାହାଙ୍କର ମୋହ ଓ ଶୋକ ଚାଲିଯାଇଛି, ଯେ ସଙ୍ଗ-ଦୋଷ ଜୟ କରିଛନ୍ତି, ସେ ହିଁ କେବଳ 'ଆଜାଦ୍' ବା ମୁକ୍ତ ।"

କୌଣସି ବ୍ୟକ୍ତିକୁ ବିଶେଷଭାବରେ ଭଲ ପାଇବା ହେଉଛି ବନ୍ଧନ । ସମସ୍ତଙ୍କୁ ସମାନ ଭାବରେ ସ୍ନେହ କର—ତାହାହେଲେ ସବୁ ବାସନା ଚାଲିଯିବ ।

ସର୍ବଭକ୍ଷକ କାଳ ଆସିଲେ ସମସ୍ତଙ୍କୁ ହିଁ ଯିବାକୁ ହେବ । ଅତଏବ ପୃଥିବୀର ଉନ୍ନତି ପାଇଁ, କ୍ଷଣସ୍ଥାୟୀ ପ୍ରଜାପତିକୁ ରଙ୍ଗ ବେରଙ୍ଗ କରିବା ପାଇଁ କାହିଁକି ଚେଷ୍ଟା କର ? ସବୁ ତ ଶେଷରେ ଚାଲିଯିବ । ଧଳାମୂଷା ପରି ପଞ୍ଜୁରୀ ଭିତରେ ବସି କେବଳ ଡିଆଁ ମାରି ନାହିଁ; ସବୁବେଳେ ବ୍ୟସ୍ତ ଅଥଚ ପ୍ରକୃତ କାମ କିଛି ହେଉ ନାହିଁ । ବାସନା ଭଲ ହେଉ ବା ମନ୍ଦ ହେଉ ସେ ଜିନିଷଟା ହିଁ ଖରାପ । ଏହା ଯେପରି କୁକୁର ପରି ମାଂସଖଣ୍ଡ ପାଇବା ପାଇଁ ଦିନରାତି ଡେଇଁବା, ଅଥଚ ମାଂସଖଣ୍ଡ କ୍ରମାଗତ ଆଗକୁ ଘୁଞ୍ଚିଘୁଞ୍ଚି ଯାଉଛି ଓ ଶେଷରେ କୁକୁର ପରି ମୃତ୍ୟୁବରଣ କରିବା । ସେପରି ହୁଅ ନାହିଁ । ସମସ୍ତ ବାସନା ନଷ୍ଟ କରି ପକାଅ । ***

ପରମାତ୍ମା ଯେତେବେଳେ ମାୟାଧୀଶ, ସେତେବେଳେ ତାହାଙ୍କୁ କହନ୍ତି ଈଶ୍ୱର; ପୁଣି ସେ ଯେତେବେଳେ ମାୟାର ଅଧୀନ, ସେତେବେଳେ ଜୀବାତ୍ମାପଦବାଚ୍ୟ । ସମସ୍ତ ଜଗତ୍-ପ୍ରପଞ୍ଚର ସମଷ୍ଟି ହିଁ ମାୟା, ଦିନେ ତାହା ଏକାବେଳକେ ଛାଡ଼ିଯିବ ।

ବୃକ୍ଷର ବୃକ୍ଷତ୍ୱ ହିଁ ମାୟା—ଗଛ ଦେଖିବା ସମୟରେ ଆମେ ପ୍ରକୃତ ପକ୍ଷରେ ଭଗବତ୍‌ସ୍ୱରୂପକୁ ହିଁ ମାୟାବୃତ ଭାବରେ ଦେଖୁଛୁ । କୌଣସି ଘଟଣା ସମ୍ପର୍କରେ 'କାହିଁକି' ଏହି ପ୍ରଶ୍ନ ପଚାରିବା ହିଁ ମାୟାର ଅନ୍ତର୍ଗତ । ସୁତରାଂ ମାୟା କିପରି ଆସିଲା, ଏହା ବୃଥା ପ୍ରଶ୍ନ, କାରଣ ମାୟା ଭିତରୁ ତାହାର ଉତ୍ତର କଦାପି ଦିଆଯାଇପାରେ ନାହିଁ ଓ ଯେତେବେଳେ ମାୟାର ଊର୍ଦ୍ଧ୍ୱକୁ ଚାଲିଯିବ, ସେତେବେଳେ କିଏ ଏହି ପ୍ରଶ୍ନ ପଚାରିବ ? ମନ୍ଦ ବା ମାୟା ବା ଅସଦ୍‌ବୃଷ୍ଟି ହିଁ 'କାହିଁକି' ଏହି ପ୍ରଶ୍ନ ସୃଷ୍ଟି କରେ; କିନ୍ତୁ 'କାହିଁକି' ପ୍ରଶ୍ନରୁ ମାୟା ଆସେ ନାହିଁ—ମାୟା ହିଁ ଏହି 'କାହିଁକି' ଜିଜ୍ଞାସା କରେ । ଭ୍ରମ ଭ୍ରମକୁ ନଷ୍ଟ କରିଦିଏ । ଯୁକ୍ତିବିଚାର ନିଜେ ହିଁ ଏକ ବିରୋଧ ଉପରେ ପ୍ରତିଷ୍ଠିତ, ସୁତରାଂ ଏହା ଏକ ବୃତ୍ତସ୍ୱରୂପ, କାର୍ଯ୍ୟତଃ ତାହା ନିଜକୁ ନିଜେ ନଷ୍ଟ କରିଥାଏ । ଇନ୍ଦ୍ରିୟଜ ଅନୁଭୂତି ଏକ ଆନୁମାନିକ ଜ୍ଞାନ, ପୁଣି ସମସ୍ତ ଆନୁମାନିକ ଜ୍ଞାନର ଭିତ୍ତି ଅନୁଭୂତି ।

ଅଜ୍ଞାନରେ ଯେତେବେଳେ ବ୍ରହ୍ମଜ୍ୟୋତିଃ ପ୍ରତିବିମ୍ବିତ ହୁଏ, ସେତେବେଳେ ହିଁ ଅଜ୍ଞାନ ଦେଖାଯାଏ—ସ୍ୱତନ୍ତ୍ର ଭାବରେ ଧରିଲେ ତାହା ଶୂନ୍ୟସ୍ୱରୂପ ଛଡ଼ା ଆଉ କିଛି ନୁହେଁ । ମେଘରେ ସୂର୍ଯ୍ୟକିରଣ ପ୍ରତିଫଳିତ ନ ହେଲେ ମେଘ ଦେଖାଯାଏ ନାହିଁ । ***

ଚାରିଜଣ ଲୋକ ଦେଶ ଭ୍ରମଣ କରୁ କରୁ ଏକ ଅତି ଉଚ୍ଚ କାନ୍ଥପାଖରେ ଆସି

ଉପସ୍ଥିତ ହେଲେ । ପ୍ରଥମ ପଥିକ ଅତି କଷ୍ଟରେ କାନ୍ଥ ଉପରକୁ ଉଠିଲା ଓ ପଛକୁ ନ ଚାହିଁ ସେପାଖକୁ ଡେଇଁ ପଡ଼ିଲା । ଦ୍ୱିତୀୟ ପଥିକ କାନ୍ଥ ଉପରେ ଉଠିଲା, ଭିତର ଆଡ଼କୁ ଅନାଇଁଲା ଓ ଆନନ୍ଦ-ଧ୍ୱନି କରି ସେ ପାଖରେ ପଡ଼ିଲା । ତା'ପରେ ତୃତୀୟ ଜଣକ କାନ୍ଥ ଉପରକୁ ଯାଇ ତା'ର ସାଥୀମାନେ କୁଆଡ଼େ ଯାଇଛନ୍ତି ତାହା ଲକ୍ଷ୍ୟ କରି ଦେଖିଲା । ତା'ପରେ ଆନନ୍ଦରେ ହାହା କରି ହସି ସେମାନଙ୍କର ଅନୁସରଣ କଲା; କିନ୍ତୁ ଚତୁର୍ଥ ପଥିକ କାନ୍ଥ ଉପରକୁ ଉଠି ସାଥୀମାନଙ୍କର କଅଣ ହେଲା, ଲୋକମାନଙ୍କୁ ଜଣାଇବା ଲାଗି ଫେରି ଆସିଲା । ଏହି ସଂସାର-ପ୍ରପଞ୍ଚର ବାହାରେ ଯେ କିଛି ଅଛି, ଆମ ନିକଟରେ ତାହାର ପ୍ରମାଣ ହେଉଛି—ଯେଉଁସବୁ ମହାପୁରୁଷ ମାୟାର କାନ୍ଥ ଡେଇଁ ଭିତରେ ପଡ଼ିଛନ୍ତି, ସେମାନେ ପଡ଼ିବା ଆଗରୁ ଆନନ୍ଦରେ ଯେଉଁ ହା ହା କରି ହସିଉଠନ୍ତି, ସେହି ହାସ୍ୟ ।

***

ଆମେ ଯେତେବେଳେ ସେହି ପୂର୍ଣ୍ଣ ସତ୍ତାରୁ ନିଜକୁ ପୃଥକ୍ କରି ସେଥିରେ କେତେକ ଗୁଣ ଆରୋପ କରୁଁ, ସେତେବେଳେ ହିଁ ଆମେ ତାଙ୍କୁ ଈଶ୍ୱର କହୁଁ । ଈଶ୍ୱର ହେଉଛନ୍ତି—ଆମ ମନଦ୍ୱାରା ଦୃଷ୍ଟ ଏହି ଜଗତ୍-ପ୍ରପଞ୍ଚର ମୂଳ ସତ୍ତା । ଏବଂ ସଇତାନ କହିଲେ—ଜଗତର ସମସ୍ତ ମନ୍ଦ ଓ ଦୁଃଖରାଶିକୁ କୁସଂସ୍କାରାଚ୍ଛନ୍ନ ମନ ଯେଉଁଭାବରେ ଦେଖେ, ତାହାକୁ ହିଁ ବୁଝାଏ ।

**ଗୁରୁବାର, ୨୫ ଜୁଲାଇ**

**(ପାତଞ୍ଜଲଯୋଗସୂତ୍ର)**

କାର୍ଯ୍ୟ ତିନପ୍ରକାରର ହୋଇପାରେ—କୃତ (ତୁମେ ନିଜେ ଯାହା କରୁଛ), କାରିତ (ଯାହା ଅନ୍ୟଦ୍ୱାରା କରାଉଛ) ଓ ଅନୁମୋଦିତ (ଅପରର କାର୍ଯ୍ୟରେ ତୁମର ଅନୁମୋଦନ ଅଛି, କୌଣସି ଆପତ୍ତି ନାହିଁ) । ଆମ ଉପରେ ଏହି ତିନପ୍ରକାର କାର୍ଯ୍ୟର ଫଳ ପ୍ରାୟ ଏକପ୍ରକାର ।

ପୂର୍ଣ୍ଣ ବ୍ରହ୍ମଚର୍ଯ୍ୟଦ୍ୱାରା ମାନସିକ ଓ ଆଧ୍ୟାତ୍ମିକ ଶକ୍ତି ଖୁବ୍ ପ୍ରବଳ ହୋଇଥାଏ । ବ୍ରହ୍ମଚାରୀକୁ କାୟମନୋବାକ୍ୟରେ ମୈଥୁନ-ବର୍ଜିତ ହେବାକୁ ପଡ଼ିବ । ଦେହର ଯତ୍ନ ଭୁଲିଯାଅ । ଯେତେଦୂର ସମ୍ଭବ ଦେହଜ୍ଞାନ ଛାଡ଼ିଦିଅ ।

ଯେଉଁ ଅବସ୍ଥାରେ ସ୍ଥିରଭାବରେ ଓ ସୁଖରେ ଅନେକ ସମୟ ବସାଯାଇପାରେ, ତାକୁ ହିଁ ଆସନ କୁହାଯାଏ । ସର୍ବଦା ଅଭ୍ୟାସଦ୍ୱାରା ଏବଂ ମନକୁ ଅନନ୍ତଭାବରେ ଭାବିତ କରିପାରିଲେ ଏହା ହୋଇପାରେ ।

ଗୋଟିଏ ବିଷୟରେ ସର୍ବଦା ଚିତ୍ତବୃତ୍ତିକୁ ପ୍ରବାହିତ କରିବାର ନାମ ଧ୍ୟାନ । ସ୍ଥିର ଜଳରେ ଯଦି ଗୋଟିଏ ପ୍ରସ୍ତରଖଣ୍ଡ ନିକ୍ଷେପ କରାଯାଏ, ତା'ହେଲେ ଜଳରେ ଅନେକଗୁଡ଼ିଏ ବୃତ୍ତାକାର ତରଙ୍ଗର ସୃଷ୍ଟି ହୁଏ—ବୃତ୍ତଗୁଡ଼ିକ ସବୁ ପୃଥକ୍ ପୃଥକ୍ ଅଥଚ ପରସ୍ପର ଉପରେ କାର୍ଯ୍ୟ କରୁଛି । ଆମର ମନଭିତରେ ଏହିପରି ବୃତ୍ତିପ୍ରବାହ ଚାଲିଛି; ତେବେ ଆମ ଭିତରେ ତାହା ଅଜ୍ଞାତସାରରେ ହେଉଛି ଓ ଯୋଗୀମାନଙ୍କ ଭିତରେ ଏଭଳି କାର୍ଯ୍ୟ ସେମାନଙ୍କ

ଜ୍ଞାତସାରରେ ହୋଇଥାଏ । ଆମେ ଯୋଗାଭ୍ୟାସଦ୍ୱାର ବୁଡ଼ିଆଣୀ ପରି ଜାଲର ଯେଉଁ ଅଂଶକୁ ଇଚ୍ଛା ଯାଇପାରୁଁ । ଯେଉଁମାନେ ଅଯୋଗୀ, ସେମାନେ ଯେଉଁଠାରେ ଥାଆନ୍ତି ସେହି ନିର୍ଦ୍ଦିଷ୍ଟ ସ୍ଥଳବିଶେଷରେ ଆବଦ୍ଧ ରହିବାକୁ ବାଧ୍ୟ ହୁଅନ୍ତି । ***

ଅନ୍ୟକୁ ହିଂସା କରିବାଦ୍ୱାରା ବନ୍ଧନ ଆସେ ଓ ଆମ ସମ୍ମୁଖରୁ ସତ୍ୟକୁ ଘୋଡ଼ାଇ ପକାଏ । କେବଳ ନିଷେଧାତ୍ମକ ଧର୍ମସାଧନା ହିଁ ଯଥେଷ୍ଟ ନୁହେଁ । ମାୟାକୁ ଜୟ କରିବାକୁ ହେବ । ତା'ହେଲେ ଯାଇ ମାୟା ଆମ ପଛରେ ଧାଇଁବ । ଯେତେବେଳେ କୌଣସି ବସ୍ତୁ ଆମକୁ ବାନ୍ଧିପାରେ ନାହିଁ, ସେତେବେଳେ ହିଁ ସେହି ବସ୍ତୁକୁ ପାଇବାରେ ଆମର ଯଥାର୍ଥ ଅଧିକାର ହୁଏ । ଯେତେବେଳେ ବନ୍ଧନ ଛିଣ୍ଡିଯାଏ, ସେତେବେଳେ ସବୁକିଛି ଆମ ନିକଟରେ ଆସି ପହଞ୍ଚେ । ଯେଉଁମାନଙ୍କର କୌଣସି ବସ୍ତୁର ଅଭାବ ନାହିଁ, ସେହିମାନେ ହିଁ ପ୍ରକୃତିକୁ ଜୟ କରିଥାନ୍ତି; ଏପରି କୌଣସି ମହାତ୍ମାଙ୍କର ଶରଣାଗତ ହୁଅ, ଯେ ନିଜେ ବନ୍ଧନମୁକ୍ତ ହୋଇଛନ୍ତି, ସେ ହିଁ ସମୟରେ ଦୟାପରବଶ ହୋଇ ତୁମକୁ ମୁକ୍ତ କରିଦେବେ । ଈଶ୍ୱରଙ୍କର ଶରଣାଗତି ଏହା ଅପେକ୍ଷା ଉଚ୍ଚଭାବ, କିନ୍ତୁ ଅତି କଠିନ; ପ୍ରକୃତ ପକ୍ଷରେ ଏହାକୁ କାର୍ଯ୍ୟରେ ପରିଣତ କରିବା ଭଳି ଲୋକ ଖୁବ୍ ବେଶୀ ହେଲେ ହୁଏତ ଗୋଟିଏ ଶତାବ୍ଦୀରେ ଜଣେ ଦେଖାଯାଆନ୍ତି । କିଛି ଅନୁଭବ କର ନାହିଁ, କିଛି ଜାଣ ନାହିଁ, କିଛି କର ନାହିଁ, ନିଜର ବୋଲି କିଛି ରଖ ନାହିଁ—ସବୁକିଛି ଈଶ୍ୱରଙ୍କୁ ସମର୍ପଣ କର ଓ ସର୍ବାନ୍ତଃକରଣରେ କହ, 'ପ୍ରଭୋ, ତୁମର ଇଚ୍ଛା ହିଁ ପୂର୍ଣ୍ଣ ହେଉ ।'

ଆମେ ବଦ୍ଧ—ଏହି ଭାବ ଆମର ସ୍ୱପ୍ନମାତ୍ର । ଜାଗିଉଠ—ବନ୍ଧନ ସବୁ ଚାଲିଯାଉ । ଈଶ୍ୱରଙ୍କ ଶରଣାପନ୍ନ ହୁଅ, ଏହି ମାୟା-ମରୁ ଅତିକ୍ରମ କରିବାର ଏହି ଏକମାତ୍ର ଉପାୟ । ଗ୍ରନ୍ଥିବିଧ ଛିନ୍ନ କରି ହେ ସନ୍ନ୍ୟାସୀ ! ଓଁ ତତ୍ ସତ୍ ଓଁ ।*

ଆମେ ଯେ ଅନ୍ୟର ସେବା କରିପାରୁଛୁ, ଏହା ଆମର ଏକ ବିଶେଷ ସୌଭାଗ୍ୟ — କାରଣ ଏଭଳି ଅନୁଷ୍ଠାନଦ୍ୱାରା ହିଁ ଆମର ଆତ୍ମୋନ୍ନତି ହେବ । କଷ୍ଟ ପାଉଥିବା ଲୋକଙ୍କର ଉପକାର କରିବାଦ୍ୱାରା ଆମର ମଙ୍ଗଳ ହେବ । ଅତଏବ ଦାତା ଦାନ କରିବା ସମୟରେ ଗ୍ରହୀତା ସମ୍ମୁଖରେ ଆଣ୍ଠୁ ମାଡ଼ି ବସନ୍ତୁ ଓ ନିଜକୁ ଧନ୍ୟ ମନେକରନ୍ତୁ । ସବୁପ୍ରାଣୀଙ୍କ ପଛରେ ପ୍ରଭୁଙ୍କୁ ଦର୍ଶନ କରି ତାଙ୍କୁ ହିଁ ଦାନ କର । ଯେତେବେଳେ ଆମେ ଆଉ କୌଣସି ମନ୍ଦ ଦେଖିବାକୁ ପାଇବା ନାହିଁ, ସେତେବେଳେ ଆମ ପକ୍ଷରେ ଜଗତ୍-ପ୍ରପଞ୍ଚ ଆଉ ରହିବ ନାହିଁ; କାରଣ ପ୍ରକୃତିର ଅସ୍ତିତ୍ୱର ଉଦ୍ଦେଶ୍ୟ ହେଉଛି, ଆମମାନଙ୍କୁ ଏହି ଭ୍ରମରୁ ମୁକ୍ତ କରିବା । ଅସମ୍ପୂର୍ଣ୍ଣତା କିଛି ଅଛି ବୋଲି ଭାବିବା ହିଁ ଅସମ୍ପୂର୍ଣ୍ଣତା ସୃଷ୍ଟି କରିବା । ଆମେ ପୂର୍ଣ୍ଣସ୍ୱରୂପ ଓ ଓଜଃସ୍ୱରୂପ, ଏହି ଚିନ୍ତାଦ୍ୱାରା ହିଁ କେବଳ ଏହା ଦୂର ହୋଇପାରେ । ଯେତେ ଭଲ କାମ କରନା କାହିଁକି, ସେଥିରେ କିଛି ନା କିଛି ମନ୍ଦ ଲାଗି ରହିଥିବ । ତେବେ ସମସ୍ତ କାର୍ଯ୍ୟ ନିଜର ବ୍ୟକ୍ତିଗତ ଫଳାଫଳ ପ୍ରତି ଦୃଷ୍ଟି ନ ଦେଇ କରିଯାଅ, ସବୁ

---

* 'ସନ୍ନ୍ୟାସୀର ଗୀତି' (Songs of the Sannyasin)-ରୁ । ଏହି କବିତାଟି ଏହି ସମୟରେ ରଚିତ ।

ଫଳ ଈଶ୍ୱରଙ୍କୁ ସମର୍ପଣ କର; ତା'ହେଲେ ତା'ର ଭଲ ବା ମନ୍ଦ କୌଣସିଟି ତୁମକୁ ଅଭିଭୂତ କରିପାରିବ ନାହିଁ ।

କାର୍ଯ୍ୟ କରିବା ହିଁ ଧର୍ମ ନୁହେଁ ସତ, ତେବେ ଠିକ୍‌ରୂପେ କାର୍ଯ୍ୟ କଲେ ମୁକ୍ତି ଆଡ଼କୁ ଆଗେଇଯାଇ ହୁଏ । ପ୍ରକୃତ ପକ୍ଷରେ ଅନ୍ୟକୁ କରୁଣାପୂର୍ଣ୍ଣ ଦୃଷ୍ଟିରେ ଦେଖିବା ଅଜ୍ଞାନତା ମାତ୍ର, କାରଣ ଆମେ କାହାକୁ କରୁଣା କରିବୁ ? ତୁମେ କଅଣ ଈଶ୍ୱରଙ୍କୁ କରୁଣାଦୃଷ୍ଟିରେ ଦେଖିପାର ? ଈଶ୍ୱରଙ୍କ ଛଡ଼ା ଆଉ କିଛି ଅଛି କି ? ଈଶ୍ୱର ତୁମକୁ ତୁମର ଆତ୍ମୋନ୍ନତି ପାଇଁ ଏହି ଜଗତ୍-ରୂପକ ନୈତିକ ବ୍ୟାୟାମଶାଳା ପ୍ରଦାନ କରିଛନ୍ତି, ସେଥିପାଇଁ ତାଙ୍କୁ ଧନ୍ୟବାଦ ଦିଅ; କିନ୍ତୁ କେବେହେଲେ ମନେ କର ନାହିଁ ଯେ—ତୁମେ ଏହି ଜଗତ୍‌କୁ ସାହାଯ୍ୟ କରିପାର । ତୁମକୁ ଯଦି କିଏ ଗାଳି ଦିଏ, ତା' ପ୍ରତି କୃତଜ୍ଞ ହୁଅ; କାରଣ ଗାଳିମନ୍ଦ ବା ଅଭିଶାପ ବସ୍ତୁଟି କଅଣ ତାହା ଦେଖିବା ପାଇଁ ତୁମ ସମ୍ମୁଖରେ ସେପରି ସେ ଗୋଟିଏ ଦର୍ପଣ ଥୋଇଛି ଓ ତୁମକୁ ଆତ୍ମସଂଯମ ଅଭ୍ୟାସ ପାଇଁ ଅବସର ଦେଇଛି । ସୁତରାଂ ତାହାକୁ ଆଶୀର୍ବାଦ କର ଓ ସୁଖୀ ହୁଅ । ଅଭ୍ୟାସ କରିବାର ଅବକାଶ ନ ହେଲେ ଶକ୍ତିର ବିକାଶ ହୋଇପାରେ ନାହିଁ ଓ ସମ୍ମୁଖରେ ଦର୍ପଣ ନ ଥିଲେ ଆମେ ନିଜର ମୁଖ ନିଜେ ଦେଖିପାରୁ ନାହିଁ ।

ଅପବିତ୍ର ଚିନ୍ତା ଓ କଳ୍ପନା ଅପବିତ୍ର କ୍ରିୟାପରି ଦୋଷାବହ । କାମନାକୁ ଦମନ କଲେ ସେଥିରୁ ଉଚ୍ଚତମ ଫଳ ଲାଭ ହୁଏ । କାମ-ଶକ୍ତିକୁ ଆଧ୍ୟାତ୍ମିକ ଶକ୍ତିରେ ପରିଣତ କର; କିନ୍ତୁ ନିଜକୁ ପୁରୁଷତ୍ୱହୀନ କର ନାହିଁ; କାରଣ ତଦ୍ୱାରା ଶକ୍ତିର ଅପଚୟ ମାତ୍ର ହେବ । ଏହି ଶକ୍ତି ଯେତେ ପ୍ରବଳ ହେବ, ତଦ୍ୱାରା ସେତେ ବେଶୀ କାମ ହୋଇପାରିବ । ପ୍ରବଳ ଜଳସ୍ରୋତ ପାଇଲେ ହିଁ ତା' ସାହାଯ୍ୟରେ ଖଣିର କାମ କରାଯାଇପାରେ ।

ଆଜିକାଲି ଆମର ବିଶେଷ ପ୍ରୟୋଜନ ଏହି ଯେ, ଆମମାନଙ୍କୁ ଜାଣିବାକୁ ହେବ, ଜଣେ ଈଶ୍ୱର ଅଛନ୍ତି ଓ ଏଠାରେ ଏହି ମୁହୂର୍ତ୍ତରେ ହିଁ ଆମେ ତାଙ୍କୁ ଅନୁଭବ କରିପାରୁ, ଦେଖିପାରୁ । ଶିକାଗୋର ଜଣେ ଅଧ୍ୟାପକ କହନ୍ତି, "ଏହି ଜଗତ୍‌ର ତତ୍ତ୍ୱାବଧାନ କର, ଈଶ୍ୱର ପରଲୋକର ଖବର ନେବେ ।" କି ନିର୍ବୋଧ କଥା ! ଆମେ ଯଦି ଏହି ଜଗତ୍‌ର ସବୁ ବନ୍ଦୋବସ୍ତ କରିବା ପାଇଁ ସମର୍ଥ, ତେବେ ପରଲୋକର ଭାର ନେବା ପାଇଁ ପୁଣି ଅକାରଣରେ ଜଣେ ଈଶ୍ୱରଙ୍କର କଅଣ ଆବଶ୍ୟକତା ?

**ଶୁକ୍ରବାର, ୨୬ ଜୁଲାଇ**

**(ବୃହଦାରଣ୍ୟକୋପନିଷତ୍)**

ସବୁ ବସ୍ତୁକୁ ଭଲ ପାଅ, କେବଳ ଆତ୍ମା ପାଇଁ । ଯାଜ୍ଞବଲ୍‌କ୍ୟ ତାଙ୍କର ସ୍ତ୍ରୀ ମୈତ୍ରେୟୀଙ୍କୁ କହିଥିଲେ, "ଆତ୍ମାଦ୍ୱାରା ହିଁ ଆମେ ସବୁ ଜିନିଷ ଜାଣିପାରୁଛୁ ।" ଆତ୍ମା କେବେହେଲେ ଜ୍ଞାନର ବିଷୟ ହୋଇପାରେ ନାହିଁ—ଯିଏ ନିଜେ ଜ୍ଞାତା, ସେ କିପରି ଜ୍ଞେୟ ହେବ ?* ଯିଏ ନିଜକୁ ଆତ୍ମା ବୋଲି ଜାଣିପାରନ୍ତି, ତାଙ୍କ ପକ୍ଷରେ ଆଉ କିଛି

* ବୃହ. ଉପ., ୨।୦।୧୪

ବନ୍ଧନମୋକ୍ଷ ରହେ ନାହିଁ । ଯେ ଜାଣିପାରନ୍ତି, ସେ ହିଁ ଏହି ଜଗତ୍-ପ୍ରପଞ୍ଚସ୍ୱରୂପ ଓ ଏହାର ସ୍ରଷ୍ଟା ମଧ୍ୟ ।

***

ପୁରାତନ ପୌରାଣିକ ବ୍ୟାପାରଗୁଡ଼ିକୁ ରୂପକ ଆକାରରେ ଚିରସ୍ଥାୟୀ କରିବାର ଚେଷ୍ଟା କଲେ ଏବଂ ତାକୁ ନେଇ ବେଶୀ ଘଣ୍ଟାଚକଟା କଲେ କୁସଂସ୍କାରର ସୃଷ୍ଟି ହୁଏ ଏବଂ ଏହା ବାସ୍ତବିକ ଦୁର୍ବଳତା । ସତ୍ୟ ସହିତ ଯେପରି ଆଉ କିଛିରେ ଆପୋଷ କରା ନ ହୁଏ । ସତ୍ୟର ଉପଦେଶ ଦିଅ, ଆଉ କୌଣସି ପ୍ରକାର କୁସଂସ୍କାରର ଯୁକ୍ତି ଦେବା ପାଇଁ ଚେଷ୍ଟା କର ନାହିଁ, ଅଥବା ସତ୍ୟକୁ ଶିକ୍ଷାର୍ଥୀର ଧାରଣା-ଶକ୍ତିର ଉପଯୋଗୀ କରିବା ପାଇଁ ଖସାଇଆଣ ନାହିଁ ।

**ଶନିବାର, ୨୭ ଜୁଲାଇ**

**(କଠୋପନିଷତ୍)**

ଅପରୋକ୍ଷାନୁଭୂତିସମ୍ପନ୍ନ ବ୍ୟକ୍ତି ବ୍ୟତୀତ ଅନ୍ୟ କାହା ନିକଟକୁ ଆତ୍ମତତ୍ତ୍ୱ ଶିକ୍ଷା କରିବାକୁ ଯାଅ ନାହିଁ । ଅନ୍ୟ ନିକଟରେ ତାହା କେବଳ କଥାର କଥା ମାତ୍ର । ପ୍ରତ୍ୟକ୍ଷାନୁଭୂତି ହେଲେ ମନୁଷ୍ୟ ଧର୍ମାଧର୍ମ, ଭୂତ-ଭବିଷ୍ୟତ୍, ସବୁ ପ୍ରକାର ଦ୍ୱନ୍ଦ୍ୱର ବାହାରକୁ ଚାଲିଯାଏ । "ନିଷ୍କାମ ବ୍ୟକ୍ତି ସେହି ଆତ୍ମାକୁ ଦର୍ଶନ କରେ, ଆଉ ତା'ର ଆତ୍ମାର ଶାଶ୍ୱତ ଶାନ୍ତି ଆସିଥାଏ ।"* ମୁହଁରେ କହିବା, ବିଚାର, ଶାସ୍ତ୍ରପାଠ ଓ ବୁଦ୍ଧିର ଚୂଡ଼ାନ୍ତ ପରିଚାଳନା କରିବା, ଏପରିକି ବେଦ ପର୍ଯ୍ୟନ୍ତ—ଏସବୁ କିଛି ମନୁଷ୍ୟକୁ ସେହି ଆତ୍ମଜ୍ଞାନ ଦେଇ-ପାରିବ ନାହିଁ ।

ଆମ ଭିତରେ ଜୀବାତ୍ମା ଓ ପରମାତ୍ମା ଉଭୟେ ଅଛନ୍ତି । ଜ୍ଞାନୀମାନେ ଜୀବାତ୍ମାକୁ ଛାୟାସ୍ୱରୂପ ଓ ପରମାତ୍ମାକୁ ଯଥାର୍ଥ ସୂର୍ଯ୍ୟ ବୋଲି ଜ୍ଞାନ କରନ୍ତି ।

ଆମେ ଯଦି ମନକୁ ଇନ୍ଦ୍ରିୟଗୁଡ଼ିକ ସହିତ ସଂଯୁକ୍ତ ନ କରୁ, ତା'ହେଲେ ଆମେ ଚକ୍ଷୁ, କର୍ଣ୍ଣ, ନାସିକା ପ୍ରଭୃତି ଇନ୍ଦ୍ରିୟଦ୍ୱାରା କୌଣସି ଜ୍ଞାନ ଲାଭ କରିପାରିବା ନାହିଁ । ମନ ଏହି ବହିଃ-ଇନ୍ଦ୍ରିୟଗୁଡ଼ିକୁ ବ୍ୟବହାର କରିଥାଏ । ଇନ୍ଦ୍ରିୟଗୁଡ଼ିକୁ ବାହାରକୁ ଯିବାକୁ ଦିଅ ନାହିଁ—ତା'ହେଲେ ଦେହ ଓ ବହିର୍ଜଗତ୍ ଉଭୟକୁ ଏଡ଼ିଦେଇପାରିବ ।

ଏହି ଯେ ଅଜ୍ଞାତ ବସ୍ତୁକୁ ଆମେ ବହିର୍ଜଗତ ବୋଲି ଦେଖୁଛୁ, ମୃତ୍ୟୁ ପରେ ନିଜ ନିଜ ମନର ଅବସ୍ଥାନୁସାରେ ଏହାକୁ କେହି ସ୍ୱର୍ଗ, କେହି ବା ନରକ ବୋଲି ଦେଖନ୍ତି । ଇହଲୋକ ପରଲୋକ—ଏହି ଦୁଇଟି ହିଁ ସ୍ୱପ୍ନ ମାତ୍ର, ଶେଷୋକ୍ତଟି ପ୍ରଥମର ଛାଞ୍ଚରେ ଗଢ଼ା । ଏହି ଦୁଇପ୍ରକାର ସ୍ୱପ୍ନରୁ ମୁକ୍ତ ହୁଅ, ଜାଣ, ସବୁହିଁ ସର୍ବବ୍ୟାପୀ, ସବୁ ହିଁ ବର୍ତ୍ତମାନ । ପ୍ରକୃତି, ଦେହ ଓ ମନର ହିଁ ମୃତ୍ୟୁ ହୁଏ, ଆତ୍ମାର ମୃତ୍ୟୁ ହୁଏ ନାହିଁ; ଆମେ ଯାଉ ନାହିଁ କି ଆସୁ ନାହିଁ । ଏହି ଯେ 'ସ୍ୱାମୀ ବିବେକାନନ୍ଦ' ବୋଲି ମନୁଷ୍ୟଟି ରହିଛି—ଏହାର ସତ୍ତା ପ୍ରକୃତି ମଧ୍ୟରେ, ସୁତରାଂ ଏହାର ଜନ୍ମ ହୋଇଛି, ମୃତ୍ୟୁ ମଧ୍ୟ ହେବ; କିନ୍ତୁ ଆତ୍ମା—ଯାହାକୁ ଆମେ ସ୍ୱାମୀ ବିବେକାନନ୍ଦ ରୂପରେ ଦର୍ଶନ କରୁଛୁ—ତାଙ୍କର କେବେ ହେଲେ ଜନ୍ମ ହୋଇ

---

* କଠୋ. ଉପ., ୨।୨।୧୩

ନାହିଁ, ସେ କେବେ ହେଲେ ମରିବେ ନାହିଁ—ସେ ଅନନ୍ତ ଓ ଅପରିଣାମୀ ସତ୍ତା ।

ଆମେ ମନଃଶକ୍ତିକୁ ପଞ୍ଚ-ଇନ୍ଦ୍ରିୟଶକ୍ତିରୂପେ ଭାଗ କରୁ, ଅଥବା ଗୋଟିଏ ଶକ୍ତିରୂପେ ଦେଖୁ ନା କାହିଁକି, ମନଃଶକ୍ତି ଏକପ୍ରକାର ହିଁ ରହେ । ଜଣେ ଅନ୍ଧ କହେ, 'ପ୍ରତ୍ୟେକ ଜିନିଷର ଭିନ୍ନ ଭିନ୍ନ ପ୍ରକାର ପ୍ରତିଧ୍ୱନି ଅଛି, ସୁତରାଂ ମୁଁ ହାତତାଳି ଦେଇ ବିଭିନ୍ନ ଜିନିଷର ପ୍ରତିଧ୍ୱନିଦ୍ୱାରା ମୋର ଚାରିପାଖରେ କେଉଁଠାରେ କଅଣ ଅଛି, ଠିକ୍ ଠିକ୍ କହିପାରିବି ।' ସୁତରାଂ ଜଣେ ଅନ୍ଧ ଜଣେ ଚକ୍ଷୁଷ୍ମାନ୍ ଲୋକକୁ ସାନ୍ଦ୍ର କୁହୁଡ଼ି ଭିତର ଦେଇ ଅନାୟାସରେ ବାଟ ଦେଖାଇ ନେଇ ଯାଇପାରେ । କାରଣ ତା' ନିକଟରେ କୁହୁଡ଼ି ବା ଅନ୍ଧକାରରେ କିଛି ତଫାତ୍ ହୁଏ ନାହିଁ ।

ମନକୁ ସଂଯତ କର, ଇନ୍ଦ୍ରିୟଗୁଡ଼ିକୁ ନିରୋଧ କର । ତା'ହେଲେ ତୁମେ ଯୋଗୀ ହେଲ; ତା'ପରେ ବାକି ଯାହା କିଛି ସବୁ ହେବ । ଶୁଣିବାକୁ ଦେଖିବାକୁ ଘ୍ରାଣ ବା ସ୍ୱାଦ ନେବାକୁ ଅସ୍ୱୀକାର କର । ବହିରିନ୍ଦ୍ରିୟଗୁଡ଼ିକଠାରୁ ମନଃଶକ୍ତିକୁ ଦୂରେଇ ନିଅ । ତୁମେ ତ ଅଜ୍ଞାତସାରରେ ସର୍ବଦା ଏହା କରୁଛ—ଯେପରି ଯେତେବେଳେ ତୁମର ମନ କୌଣସି ବିଷୟରେ ମଗ୍ନ ଥାଏ; ସୁତରାଂ ତୁମେ ଜ୍ଞାତସାରରେ ଏହା କରିବାକୁ ଅଭ୍ୟାସ କରିପାର । ମନ ଯେଉଁଠାରେ ଇଚ୍ଛା ଇନ୍ଦ୍ରିୟଗୁଡ଼ିକୁ ପ୍ରୟୋଗ କରିପାରେ । ଆମର ଦେହ ସାହାଯ୍ୟରେ ଯେ କାମ କରିବାକୁ ହେବ, ଏହି ମୂଳ କୁସଂସ୍କାରକୁ ଏକାବେଳକେ ଛାଡ଼ି ଦିଅ । ପ୍ରକୃତ ପକ୍ଷରେ ତାହା ତ ନୁହେଁ । ନିଜ ଘରେ ଯାଇ ବସ, ଆଉ ନିଜର ଅନ୍ତରାତ୍ମା ଭିତରେ ଉପନିଷଦ୍‌ର ତତ୍ତ୍ୱଗୁଡ଼ିକୁ ଆବିଷ୍କାର କର । ତୁମେ ସକଳ ବିଷୟରେ ଅନନ୍ତ ଖଣିସ୍ୱରୂପ, ଭୂତ ଭବିଷ୍ୟତ୍ ସବୁ ଗ୍ରନ୍ଥ ମଧ୍ୟରେ ତୁମେ ହିଁ ଶ୍ରେଷ୍ଠ ଗ୍ରନ୍ଥ । ଯେତେଦିନଯାଏ ସେହି ଭିତରର ଅନ୍ତର୍ଯ୍ୟାମୀ ଗୁରୁଙ୍କର ପ୍ରକାଶ ନ ହୋଇଛି, ସେତେଦିନ ବାହାରର ସବୁ ଉପଦେଶ ବୃଥା । ବାହାରର ଶିକ୍ଷାଦ୍ୱାରା ଯଦି ହୃଦୟସ୍ୱରୂପ-ଗ୍ରନ୍ଥି ଖୋଲିଯାଏ, ତେବେ ଯାଇ ତା'ର କିଛି ମୂଲ୍ୟ ଅଛି ବୋଲି କୁହାଯାଇପାରେ ।

ଆମର ଇଚ୍ଛାଶକ୍ତି ହିଁ ସେହି 'କ୍ଷୁଦ୍ର ମୃଦୁ ବାଣୀ'; ସେ ହିଁ ଯଥାର୍ଥ ନିୟନ୍ତା, ଯେ ଆମମାନଙ୍କୁ ସର୍ବଦା ବିଧିନିଷେଧ ଦେଇଛନ୍ତି—କହୁଛନ୍ତି ଏହି କାମ କର, ଏହି କାମ କର ନାହିଁ । ଏହି ଇଚ୍ଛାଶକ୍ତି ଆମକୁ ସବୁ ବନ୍ଧନ ମଧ୍ୟକୁ ଆଣୁଛି । ଅଜ୍ଞ ବ୍ୟକ୍ତିର ଇଚ୍ଛାଶକ୍ତି ତାହାକୁ ବନ୍ଧନରେ ପକାଏ; କିନ୍ତୁ ତାହା ଜ୍ଞାନପୂର୍ବକ ପରିଚାଳିତ ହେଲେ ଆମକୁ ମୁକ୍ତି ଦେଇପାରେ । ସହସ୍ର ସହସ୍ର ଉପାୟରେ ଇଚ୍ଛାଶକ୍ତିକୁ ଦୃଢ଼ କରାଯାଇପାରେ, ପ୍ରତ୍ୟେକ ଉପାୟ ହିଁ ଏକ ଏକ ପ୍ରକାର ଯୋଗ; ତେବେ ପ୍ରଣାଳୀବଦ୍ଧ ଯୋଗଦ୍ୱାରା ଏହା ଖୁବ୍ ଶୀଘ୍ର ସାଧିତ ହୋଇପାରେ । ଭକ୍ତିଯୋଗ, କର୍ମଯୋଗ, ରାଜଯୋଗ ଓ ଜ୍ଞାନଯୋଗଦ୍ୱାରା ଖୁବ୍ ନିଶ୍ଚିତରୂପେ କୃତକାର୍ଯ୍ୟ ହେବା ସମ୍ଭବ । ମୁକ୍ତିଲାଭ କରିବା ପାଇଁ ତୁମର ଯେତେ ପ୍ରକାର ଶକ୍ତି ଅଛି, ସବୁ ପ୍ରୟୋଗ କର; କର୍ମ, ବିଚାର, ଉପାସନା, ଜ୍ଞାନ, ଧ୍ୟାନ—ସବୁ ଅବଲମ୍ବନ କର, ସବୁ ପାଲକୁ ଏକସଙ୍ଗରେ ଟାଣି ଦିଅ, ସବୁ କଳଗୁଡ଼ିକୁ ପୂରା ଦମରେ ଚଲାଅ ଓ ଗନ୍ତବ୍ୟ ସ୍ଥାନରେ ଉପନୀତ ହୁଅ । ଯେତେ ଶୀଘ୍ର ପାର ସେତେ ଭଲ ।

***

ଖ୍ରୀଷ୍ଟାନ୍‌ମାନଙ୍କର ବାପ୍‌ଟିଜମ୍ (Baptism) ଅଥ୍ବାର ଏକ ପ୍ରକାର ବାହ୍ୟ ଶୁଦ୍ଧି— ଏହା ଅନ୍ତଃଶୁଦ୍ଧିର ପ୍ରତୀକ । ବୌଦ୍ଧ ଧର୍ମରୁ ଏହାର ଉତ୍ପତ୍ତି ।

ଖ୍ରୀଷ୍ଟାନ୍‌ମାନଙ୍କର 'ସୁକାରଷ୍ଟ' ନାମକ ଅନୁଷ୍ଠାନ ଅସଭ୍ୟ-ଜାତିସମୂହର ଏକ ଅତି ପ୍ରାଚୀନ ପ୍ରଥାର ଅବଶେଷ ବା ଚିହ୍ନ ମାତ୍ର । ଏହିସବୁ ଅସଭ୍ୟ-ଜାତି କେବେ କେବେ ସେମାନଙ୍କର ବଡ଼ ବଡ଼ ନେତାମାନେ ଯେଉଁସବୁ ଗୁଣରେ ମହତ୍ତ୍ୱ ହୋଇଛନ୍ତି, ସେଗୁଡ଼ିକୁ ପାଇବା ଇଚ୍ଛାରେ ସେମାନଙ୍କୁ ମାରି ପକାଉଥିଲେ ଓ ସେମାନଙ୍କର ମାଂସ ଖାଉଥିଲେ । ସେମାନଙ୍କର ବିଶ୍ୱାସ ଥିଲି ଯେ, ଯେଉଁସବୁ ଶକ୍ତିରେ ସେମାନଙ୍କ ନେତା ବୀର୍ଯ୍ୟବାନ୍ ଓ ଜ୍ଞାନୀ ହୋଇଥିଲେ, ଏହି ଉପାୟରେ ସେହି ଶକ୍ତିଗୁଡ଼ିକ ସେମାନଙ୍କ ଭିତରକୁ ଆସିବ ଓ କେବଳ ଜଣେ ବ୍ୟକ୍ତି ଏହିଭଳି ବୀର୍ଯ୍ୟବାନ ଓ ଜ୍ଞାନୀ ନ ହୋଇ ସମଗ୍ର ଜାତି ଏହିପରି ହେବ । ନରବଳୀପ୍ରଥା ଇହୁଦୀ-ଜାତି ଭିତରେ ମଧ୍ୟ ଥିଲା ଓ ସେମାନଙ୍କର ଈଶ୍ୱର ଜେହୋଭା ଏହି ପ୍ରଥା ପାଇଁ ସେମାନଙ୍କୁ ଅନେକ ଶାସ୍ତି ଦେଇଥିଲେ ମଧ୍ୟ ତାହା ସେମାନଙ୍କ ଭିତରୁ ପୂର୍ଣ୍ଣପୂର୍ଣ୍ଣ ଲୋପ ପାଇ ନାହିଁ । ଯୀଶୁ ନିଜେ ଶାନ୍ତପ୍ରକୃତି ପ୍ରେମିକ ପୁରୁଷ ଥିଲେ; କିନ୍ତୁ ତାଙ୍କୁ ଇହୁଦୀଜାତିର ବିଶ୍ୱାସ ସହିତ ଖାପ ଖୁଆଇ ପ୍ରଚାର କରିବାକୁ ଚେଷ୍ଟା କରିବା ଫଳରେ ଖ୍ରୀଷ୍ଟିଅନ୍‌ମାନଙ୍କ ମଧ୍ୟରେ ଏହି ମତବାଦର ଉତ୍ପତ୍ତି ହେଲା ଯେ, ଯୀଶୁ କ୍ରୁଶରେ ବିଦ୍ଧ ହୋଇ ସମଗ୍ର ମାନବଜାତିର ପ୍ରତିନିଧିସ୍ୱରୂପ ନିଜକୁ ବଳି ଦେଇ ଈଶ୍ୱରଙ୍କୁ ସନ୍ତୁଷ୍ଟ କଲେ । ଇହୁଦୀମାନଙ୍କ ମଧ୍ୟରେ ପୂର୍ବରୁ ଏକ ପ୍ରଥା ଥିଲା—ତାଙ୍କର ପୁରୋହିତମାନେ ମନ୍ତ୍ର ପାଠ କରି ଛେଳି ଉପରେ ମଣିଷର ପାପ ଲଦି ଦେଇ ତାକୁ ଜଙ୍ଗଲକୁ ତଡ଼ି ଦେଉଥିଲେ—ଏଠାରେ ଛେଳି ବଦଳରେ ମଣିଷ, ଏହି ପାର୍ଥକ୍ୟ । ଏହି ନିଷ୍ଠୁର ଭାବ ପ୍ରକାଶ କରିବା ଯୋଗୁଁ ଖ୍ରୀଷ୍ଟଧର୍ମ ଖ୍ରୀଷ୍ଟଙ୍କର ଯଥାର୍ଥ ଶିକ୍ଷାଠାରୁ ଅନେକ ଦୂରକୁ ଘୁଞ୍ଚିଗଲା ଏବଂ ତା' ଭିତରେ ପର ଉପରେ ଅତ୍ୟାଚାର କରିବାର ଓ ଅନ୍ୟର ରକ୍ତପାତ କରିବାର ଭାବ ଆସିଲା ।

***

କୌଣସି କାମ କରିବା ସମୟରେ କହ ନାହିଁ ଯେ, 'ଏହା ମୋର କର୍ତ୍ତବ୍ୟ'; ବରଂ କହ 'ଏହା ମୋର ସ୍ୱଭାବ' ।

''ସତ୍ୟମେବ ଜୟତେ ନାନୃତମ୍''—ସତ୍ୟର ହିଁ ଜୟ ହୁଏ, ମିଥ୍ୟାର ହୁଏ ନାହିଁ । ସତ୍ୟ ଉପରେ ପ୍ରତିଷ୍ଠିତ ହୁଅ, ତା' ହେଲେ ଯାଇ ତୁମେ ଭଗବାନଙ୍କୁ ଲାଭ କରିପାରିବ ।

***

ଅତି ପ୍ରାଚୀନ କାଳରୁ ଭାରତରେ ବ୍ରାହ୍ମଣ-ଜାତି ନିଜକୁ ସବୁ ପ୍ରକାର ବିଧିନିଷେଧର ଅତୀତ ବୋଲି ଘୋଷଣା କରିଛନ୍ତି, ସେମାନେ ନିଜକୁ ଭୂଦେବ ବୋଲି ଦାବି କରନ୍ତି । ସେମାନେ ଅତି ଦରିଦ୍ରଭାବରେ ଥାଆନ୍ତି, ତେବେ ସେମାନଙ୍କର ଦୋଷ ଏହି ଯେ, ସେମାନେ ଆଧିପତ୍ୟ ବା ପ୍ରଭୁତ୍ୱ ଖୋଜନ୍ତି । ଯାହା ହେଉ, ଭାରତରେ ପ୍ରାୟ ଛଅକୋଟି ବ୍ରାହ୍ମଣ ଅଛନ୍ତି; ସେମାନଙ୍କର କୌଣସି ପ୍ରକାର ବିଷୟାଶୟ ନାହିଁ, ଅଥଚ ସେମାନେ ବେଶ୍ ଭଲ ଲୋକ, ନୀତିପରାୟଣ । ଏଭଳି ହେବାର କାରଣ ଏହି ଯେ, ସେମାନେ ବିଧିନିଷେଧର

ଅତୀତ । ସେମାନଙ୍କ ପାଇଁ କୌଣସି ପ୍ରକାର ଶାସ୍ତ୍ରର ବିଧାନ ନାହିଁ । ସେମାନେ ନିଜକୁ ଦ୍ୱିଜ ବା ଈଶ୍ୱରପୁତ୍ର ବୋଲି ଜ୍ଞାନ କରିଥାଆନ୍ତି ।

**ରବିବାର, ୨୮ ଜୁଲାଇ**

(ଦତ୍ତାତ୍ରେୟ* କୃତ ଅବଧୂତ ଗୀତା) "ମନର ସ୍ଥିରତା ଉପରେ ସମସ୍ତ ଜ୍ଞାନ ନିର୍ଭର କରୁଛି ।"

"ସମଗ୍ର ଜଗତ୍‌ପ୍ରପଞ୍ଚରେ ଯେ ପୂର୍ଣ୍ଣଭାବରେ ବିରାଜମାନ କରୁଛନ୍ତି, ଯେ ଆତ୍ମା ଭିତରେ ଆତ୍ମ-ସ୍ୱରୂପ, ତାହାଙ୍କୁ ମୁଁ ନମସ୍କାର କରିବି କିପରି ?"

ଆତ୍ମାକୁ ମୋ ନିଜର ସ୍ୱଭାବ, ନିଜର ସ୍ୱରୂପ ବୋଲି ଜାଣିବା ହିଁ ପୂର୍ଣ୍ଣଜ୍ଞାନ ଓ ପ୍ରତ୍ୟକ୍ଷାନୁଭୂତି । "ମୁଁ ହିଁ ସେ, ଏ ବିଷୟରେ କିଛି ମାତ୍ର ସଂଶୟ ନାହିଁ ।"

"କୌଣସି ଚିନ୍ତା, କୌଣସି ବାକ୍ୟ ବା କୌଣସି କାର୍ଯ୍ୟ ମୋର ବନ୍ଧନ ସୃଷ୍ଟି କରିପାରିବ ନାହିଁ । ମୁଁ ଇନ୍ଦ୍ରିୟାତୀତ, ମୁଁ ଚିଦାନନ୍ଦସ୍ୱରୂପ ।"

'ଅସ୍ତି ନାସ୍ତି' କିଛି ନାହିଁ, ସବୁ କିଛି ଆତ୍ମା-ସ୍ୱରୂପ । ସବୁ ଆପେକ୍ଷିକ ଭାବ । ସବୁ ଦ୍ୱନ୍ଦ୍ୱ ଦୂର କରିଦିଅ, ସବୁ କୁସଂସ୍କାରକୁ ଫିଙ୍ଗି ଦିଅ, ଜାତି କୁଳ ଦେବତା ଆଉ ଯାହା କିଛି ସବୁ ଚାଲିଯାଉ । ବ୍ରହ୍ମ ହେବା ବା ହୋଇଯିବା—ଏହି ସବୁ କଥା କାହିଁକି କହ ? ଦ୍ୱୈତ ବା ଅଦ୍ୱୈତବାଦର କଥା ଛାଡ଼ିଦିଅ । ତୁମେ କେବେ ଦୁଇ ଥିଲ ଯେ ଦ୍ୱୈତ ଓ ଅଦ୍ୱୈତ କଥା କହୁଛ ? ଏହି ଜଗତ୍‌ପ୍ରପଞ୍ଚ ସେହି ଶୁଦ୍ଧ ବ୍ରହ୍ମ ମାତ୍ର, ତାଙ୍କ ଛଡ଼ା ଆଉ କିଛି ନୁହେଁ । ଯୋଗଦ୍ୱାରା ଶୁଦ୍ଧ ହେବ, ଏହା କହ ନାହିଁ—ତୁମେ ସ୍ୱୟଂ ଯେ ଶୁଦ୍ଧସ୍ୱଭାବ । ତୁମକୁ କେହି ଶିକ୍ଷା ଦେଇ ନ ପାରେ ।

ଯେ ଏହି ଗୀତା ଲେଖିଛନ୍ତି, ତାଙ୍କପରି ବ୍ୟକ୍ତି ଧର୍ମକୁ ଜୀବନ୍ତ ରଖିଛନ୍ତି । ସେମାନେ ବାସ୍ତବିକ୍ ହିଁ ସେହି ବ୍ରହ୍ମସ୍ୱରୂପ ଉପଲବ୍ଧି କରିଛନ୍ତି । ସେମାନେ କୌଣସି କିଛି ଖାତିର୍ କରନ୍ତି ନାହିଁ, ଶୀତ-ଉଷ୍ଣ ସୁଖ-ଦୁଃଖ ବା ବିପଦ-ଆପଦ ବା ଅନ୍ୟ କିଛି ଆଦୌ ଗ୍ରାହ୍ୟ କରନ୍ତି ନାହିଁ । ଜ୍ୱଳନ୍ତ ଅଙ୍ଗାର ସେମାନଙ୍କ ଦେହକୁ ଦଗ୍ଧ କରୁଥିଲେ ମଧ୍ୟ ସେମାନେ ସ୍ଥିର ହୋଇ ବସି ଆତ୍ମାନନ୍ଦ ସମ୍ଭୋଗ କରନ୍ତି, ସେମାନଙ୍କ ଦେହ ଯେ ପୋଡ଼ି ଯାଉଛି, ସେମାନେ ତାହାର ସୂଚନା ମଧ୍ୟ ପାଆନ୍ତି ନାହିଁ ।

"ଜ୍ଞାତା, ଜ୍ଞାନ ଓ ଜ୍ଞେୟରୂପକ ତ୍ରିବିଧ ବନ୍ଧନ ଯେତେବେଳେ ଦୂର ହୋଇଯାଏ, ସେତେବେଳେ ହିଁ ଆତ୍ମସ୍ୱରୂପର ପ୍ରକାଶ ହୁଏ ।"

"ଯେତେବେଳେ ବନ୍ଧନ ଓ ମୁକ୍ତିରୂପକ ଭ୍ରମ ଦୂର ହୋଇଯାଏ, ସେତେବେଳେ ହିଁ ଆତ୍ମସ୍ୱରୂପର ପ୍ରକାଶ ହୁଏ ।"

"ମନକୁ ସଂଯତ କର ବା ନ କର ସେଥିରେ କଅଣ ଯାଏ ଆସେ ? ତୁମର ଅର୍ଥ ଥିଲେ କେତେ ନ ଥିଲେ ବା କେତେ ? ତୁମେ ନିତ୍ୟଶୁଦ୍ଧ ଆତ୍ମା । କହ : ମୁଁ ଆତ୍ମା,

---

* ଦତ୍ତାତ୍ରେୟ ମୁନି—ଅତ୍ରି ଓ ଅନସୂୟାଙ୍କର ପୁତ୍ର—ଏକଦେହରେ ବ୍ରହ୍ମା, ବିଷ୍ଣୁ, ଓ ମହେଶ୍ୱରଙ୍କର ଅବତାର ।

କୌଣସି ବନ୍ଧନ କେବେହେଲେ ମୋ ପାଖରେ ପଶିପାରି ନାହିଁ । ମୁଁ ଅପରିଣାମୀ ନିର୍ମଳ ଆକାଶସ୍ୱରୂପ; ନାନାବିଧ ବିଶ୍ୱାସ ବା ଧାରଣାରୂପକ ମେଘ ମୋ ଉପରଦେଇ ଚାଲିଯାଇ-ପାରେ, କିନ୍ତୁ ମୋତେ ସେମାନେ ସ୍ପର୍ଶ କରିପାରନ୍ତି ନାହିଁ ।"

"ଧର୍ମାଧର୍ମ, ପାପପୁଣ୍ୟ ଉଭୟଙ୍କୁ ଦଗ୍ଧ କରି ପକାଅ । ମୁକ୍ତି ପିଲାଳିଆ କଥାମାତ୍ର । ମୁଁ ସେହି ଅବିନାଶୀ ଜ୍ଞାନସ୍ୱରୂପ, ମୁଁ ସେହି ପବିତ୍ରତାସ୍ୱରୂପ ।"

"କେହି କେବେହେଲେ ବଦ୍ଧ ହୋଇ ନାହିଁ, କେହି କେବେହେଲେ ମୁକ୍ତ ମଧ୍ୟ ହୋଇ ନାହିଁ । ମୁଁ ଛଡ଼ା କେହି ନାହିଁ । ମୁଁ ଅନନ୍ତସ୍ୱରୂପ, ନିତ୍ୟମୁକ୍ତସ୍ୱଭାବ । ମୋତେ କେହି ଶିକ୍ଷା ଦେବାକୁ ଆସେ ନାହିଁ—ମୁଁ ଚିଦ୍‌ଘନସ୍ୱଭାବ, କିପରି ମୋର ଏହି ସ୍ୱଭାବ ବଦଳିପାରେ ? ଗୁରୁ ପୁଣି କିଏ ? ଶିଷ୍ୟ ପୁଣି କିଏ ?"

ତର୍କଯୁକ୍ତି, ଜ୍ଞାନବିଚାରକୁ ମଇଳାଗଡ଼ାକୁ ଫୋପାଡ଼ିଦିଅ ।

"ବଦ୍ଧସ୍ୱଭାବ ଲୋକ ହିଁ ଅପରକୁ ବଦ୍ଧ ଦେଖେ, ଭ୍ରାନ୍ତ ବ୍ୟକ୍ତି ହିଁ ଅନ୍ୟକୁ ଭ୍ରାନ୍ତ ଦେଖେ, ଅଶୁଦ୍ଧସ୍ୱଭାବ ଲୋକ ହିଁ ଅନ୍ୟର ଅଶୁଦ୍ଧଭାବ ଦେଖିଥାଏ ।"

ଦେଶକାଳନିମିତ୍ତ—ଏହି ସମସ୍ତ ଭ୍ରମ । ତୁମେ ଯେ ମନେକରୁଛ ତୁମେ ବଦ୍ଧ, ମୁକ୍ତ ହେବ—ଏହା ତୁମର ବ୍ୟାଧି । ତୁମେ ଅପରିଣାମୀ ସତ୍ତା । କଥା ବନ୍ଦ କର, ଚୁପ୍‌ଚାପ୍ ବସିଥାଅ—ସବୁ ଜିନିଷ ତୁମ ଚକ୍ଷୁ ଆଗରୁ ଉଡ଼ିଯାଉ—ସେଗୁଡ଼ିକ ସ୍ୱପ୍ନମାତ୍ର । ପାର୍ଥକ୍ୟ ବା ଭେଦ ବୋଲି କିଛି ନାହିଁ, ଏସବୁ କୁସଂସ୍କାର ମାତ୍ର । ଅତଏବ ମୌନଭାବ ଅବଲମ୍ବନ କରି ଓ ନିଜର ସ୍ୱରୂପ ଅବଗତ ହୁଅ ।

"ମୁଁ ଆନନ୍ଦସ୍ୱରୂପ ।" କୌଣସି ଆଦର୍ଶ ଅନୁସରଣ କରିବାର ପ୍ରୟୋଜନ ନାହିଁ —ତୁମ ଛଡ଼ା ଆଉ କିଏ ଅଛି ? କିଛିରେ ଡରି ଯାଅ ନାହିଁ । ତୁମେ ସାରସତ୍ତାସ୍ୱରୂପ । ଶାନ୍ତିରେ ରହ—ନିଜକୁ ଚଞ୍ଚଳ କର ନାହିଁ । ତୁମେ କେବେହେଲେ ବଦ୍ଧ ହୋଇନାହିଁ । ପୁଣ୍ୟ ବା ପାପ ତୁମକୁ ସ୍ପର୍ଶ କରି ନାହିଁ । ଏହି ସମସ୍ତ ଭ୍ରମ ଦୂର କରି ଶାନ୍ତିରେ ରହ । କାହାକୁ ଉପାସନା କରିବ ? କିଏ ବା ଉପାସନା କରେ ? ସବୁ ତ ଆତ୍ମା । କୌଣସି କଥା କହିବା, କୌଣସି ପ୍ରକାର ଚିନ୍ତା କରିବା ହିଁ କୁସଂସ୍କାର । ପୁନଃ ପୁନଃ କହ—'ମୁଁ ଆତ୍ମା', 'ମୁଁ ଆତ୍ମା ।' ଆଉ ସବୁ ଉଡ଼ିଯାଉ ।

**ସୋମବାର, ୨୯ ଜୁଲାଇ, ପ୍ରାତଃକାଳ**

ଆମେ କେବେ କେବେ କୌଣସି ଜିନିଷକୁ ନିର୍ଦ୍ଦିଷ୍ଟ କରିବାକୁ ଯାଇ ତାହାର ପରିବେଶ ବର୍ଣ୍ଣନା କରିଥାଉଁ । ଏହାକୁ ତଟସ୍ଥ ଲକ୍ଷଣ କୁହାଯାଏ । ଆମେ ଯେତେବେଳେ ବ୍ରହ୍ମକୁ ସଚ୍ଚିଦାନନ୍ଦ ନାମରେ ଅଭିହିତ କରୁ, ପ୍ରକୃତ ପକ୍ଷରେ ଆମେ ସେତେବେଳେ ସେହି ଅନିର୍ବାଚ୍ୟ ସର୍ବାତୀତ ସତ୍ତାରୂପକ ସମୁଦ୍ରକୂଳର କିଛି କିଛି ବର୍ଣ୍ଣନା କରୁ ମାତ୍ର । ଆମେ ଏହାକୁ 'ଅସ୍ତି'-ସ୍ୱରୂପ କହିପାରୁ ନାହିଁ, କାରଣ ଅସ୍ତି କହିବାକୁ ଗଲେ ତା'ର ବିପରୀତ 'ନାସ୍ତି'ର ଜ୍ଞାନ ମଧ୍ୟ ହୋଇଥାଏ, ସୁତରାଂ ତାହା ମଧ୍ୟ ଆପେକ୍ଷିକ । ତାଙ୍କ ସମ୍ପର୍କରେ କୌଣସି ଧାରଣା, କୌଣସି ପ୍ରକାର କଳ୍ପନା ଯଥାଯଥ ହୋଇପାରେ ନାହିଁ । କେବଳ

'ନେତି' 'ନେତି'—ଏହା ନୁହେଁ, ତାହା ନୁହେଁ—ଏହି ଭାବରେ ତାଙ୍କ ବର୍ଣ୍ଣନା କରାଯାଇ-ପାରେ, କାରଣ ତାଙ୍କୁ ଚିନ୍ତା କରିବାକୁ ଗଲେ ମଧ୍ୟ ସୀମାବଦ୍ଧ କରିବାକୁ ହୁଏ; ସୁତରାଂ ଚିନ୍ତାଦ୍ୱାରା ତାଙ୍କୁ ପାଇହେବ ନାହିଁ ।

ଇନ୍ଦ୍ରିୟଗୁଡ଼ିକ ଦିନରାତି ତୁମକୁ ଭ୍ରମଜ୍ଞାନ ଆଣିଦେଇ ପ୍ରତାରିତ କରୁଛନ୍ତି । ବେଦାନ୍ତ ବହୁ ପୂର୍ବରୁ ଏହା ଆବିଷ୍କାର କରିଛି । ଆଧୁନିକ ବିଜ୍ଞାନ ଏବେ ମାତ୍ର ଏହି ତତ୍ତ୍ୱ ବୁଝିବାକୁ ଆରମ୍ଭ କରିଛି । ଗୋଟିଏ ଛବିର ପ୍ରକୃତ ପକ୍ଷରେ କେବଳ ଦୈର୍ଘ୍ୟ ଓ ପ୍ରସ୍ଥ ଅଛି, କିନ୍ତୁ ଚିତ୍ରକର ଛବିଟିରେ କୃତ୍ରିମ ଭାବରେ ଗଭୀରତାର ଭାବ ଫୁଟାଇ ପ୍ରକୃତିର ପ୍ରତାରଣାର ଅନୁକରଣ କରିଥାଏ । ଦୁଇଜଣ ଲୋକ କେବେହେଲେ ଗୋଟିଏ ଜଗତ୍ ଦେଖନ୍ତି ନାହିଁ । ଚୂଡ଼ାନ୍ତ ଜ୍ଞାନଲାଭ ହେଲେ ତୁମେ ଦେଖିପାରିବ—କୌଣସି ବସ୍ତୁରେ କୌଣସି ପ୍ରକାର ଗତି, କୌଣସି ପ୍ରକାର ପରିଣାମ ନାହିଁ । କୌଣସି ପ୍ରକାର ଗତି ବା ପରିଣାମ ଅଛି—ଆମର ଏହି ଧାରଣା ହିଁ ମାୟା । ସମସ୍ତ ପ୍ରକୃତି ଅର୍ଥାତ୍ ସମସ୍ତ ଗତିର ତତ୍ତ୍ୱକୁ ମୋଟାମୋଟିଭାବେ ଆଲୋଚନା କର । ଦେହ ଓ ମନ କେହି ଆମର ଯଥାର୍ଥ ଆତ୍ମା ନୁହନ୍ତି—ଉଭୟେ ପ୍ରକୃତିର ଅନ୍ତର୍ଗତ; କିନ୍ତୁ କାଳକ୍ରମେ ଆମେ ଏମାନଙ୍କ ଭିତରର ସାରସତ୍ୟ—ଯଥାର୍ଥ ତତ୍ତ୍ୱକୁ ଜାଣିପାରୁ । ସେତେବେଳେ ଆମେ ଦେହ-ମନର ଊର୍ଦ୍ଧ୍ୱକୁ ଚାଲିଯାଉ, ସୁତରାଂ ଦେହ ମନଦ୍ୱାରା ଯାହା କିଛି ଅନୁଭୂତ ହୁଏ, ତାହା ମଧ୍ୟ ଚାଲିଯାଏ । ଯେତେବେଳେ ତୁମେ ଏହି ଜଗତ୍‌ପ୍ରପଞ୍ଚକୁ ଦେଖିପାରିବ ନାହିଁ ବା ଜାଣିପାରିବ ନାହିଁ, ସେତେବେଳେ ହିଁ ତୁମର ଆତ୍ମୋପଲବ୍ଧି ହେବ । ଆମର ବାସ୍ତବିକ ପ୍ରୟୋଜନ ଏହି ଦ୍ୱୈତ ବା ଆପେକ୍ଷିକ ଜ୍ଞାନକୁ ଅତିକ୍ରମ କରିବା । ଅନନ୍ତ ମନ ବା ଅନନ୍ତ ଜ୍ଞାନ ବୋଲି କିଛି ନାହିଁ, କାରଣ ମନ ଓ ଜ୍ଞାନ ଉଭୟ ହିଁ ସସୀମ । ଆମେ ବର୍ତ୍ତମାନ ଆବରଣ ମଧ୍ୟଦେଇ ଦେଖୁଛୁ—ତା'ପରେ କ୍ରମଶଃ ଆବରଣକୁ ଅତିକ୍ରମ କରି ଆମେ ଆମର ସମସ୍ତ ଜ୍ଞାନର ସାରସତ୍ୟସ୍ୱରୂପ ସେହି ଅଜ୍ଞାତ ବସ୍ତୁ ନିକଟରେ ପହଞ୍ଚିବା ।

ଯଦି ଆମେ ଗୋଟିଏ କାର୍ଡ଼ବୋର୍ଡ଼ର କ୍ଷୁଦ୍ର ଛିଦ୍ର ମଧ୍ୟଦେଇ ଗୋଟିଏ ଛବି ଦେଖୁ, ତା'ହେଲେ ଏହି ଛବି ସମ୍ପର୍କରେ ଏକ ସମ୍ପୂର୍ଣ୍ଣ ଭ୍ରାନ୍ତ ଧାରଣା ଲାଭ କରୁଁ; କିନ୍ତୁ ଆମେ ଯାହା ଦେଖୁଁ, ତାହା ପ୍ରକୃତରେ ସେହି ଛବି । ଆମେ ଛିଦ୍ରକୁ ଯେତେ ବଢ଼ାଉ, ଛବି ସମ୍ପର୍କରେ ଆମେ ସେତିକି ସ୍ପଷ୍ଟ ଧାରଣା ଲାଭ କରିଥାଉ । ଆମର ନାମ-ରୂପର ଭ୍ରମାତ୍ମକ ଉପଲବ୍ଧି ଅନୁସାରେ ଆମେ ସତ୍ୟ-ଜିନିଷ ସମ୍ପର୍କରେ ବିଭିନ୍ନ ଧାରଣା କରିଥାଉ । ଆମେ ପୁଣି ଯେତେବେଳେ କାର୍ଡ଼ବୋର୍ଡ଼ଟି ଫୋପାଡ଼ି ଦେଉ, ସେତେବେଳେ ଆମେ ସେହି ସମାନ ଛବିକୁ ହିଁ ଦେଖିଥାଉ; କିନ୍ତୁ ଛବିଟିକୁ ଠିକ୍ ଭାବରେ ଦେଖିପାରୁଁ । ଆମେ ଏହି ଛବିଟିରେ ଯେତେ ବିଭିନ୍ନ ପ୍ରକାର ଗୁଣ ବା ଭ୍ରମାତ୍ମକ ଧାରଣା ଆରୋପ କରୁନା କାହିଁକି, ତାହାଦ୍ୱାରା ଛବିର କୌଣସି ପରିବର୍ତ୍ତନ ହୁଏ ନାହିଁ । ଏହିପରି ଆତ୍ମା ହିଁ ସମସ୍ତ ବସ୍ତୁର ମୂଳ ସତ୍ୟସ୍ୱରୂପ । ଆମେ ଯାହାକିଛି ଦେଖୁଛୁ ସବୁ ଆତ୍ମା—କିନ୍ତୁ ଆମେ ଯେଉଁ ଭାବରେ ଏଗୁଡ଼ିକୁ ନାମରୂପାକାର ଦେଖୁଛୁ, ସେହି ଭାବରେ ନୁହେଁ । ଏହି ନାମରୂପ ଆବରଣର

ଅନ୍ତର୍ଗତ—ମାୟାର ଅନ୍ତର୍ଗତ ।

ଏଗୁଡ଼ିକ ଯେପରି ଦୂରବୀକ୍ଷଣର କାଚ ଉପରର ଦାଗ; ତା'ଛଡ଼ା ସୂର୍ଯ୍ୟର ଆଲୋକରେ ଆମେ ଯେପରି ଏହି ଦାଗଗୁଡ଼ିକୁ ଦେଖିବାକୁ ପାଉଁ, ସେହିପରି ବ୍ରହ୍ମରୂପକ ସତ୍ୟବସ୍ତୁ ପଛରେ ନଥିଲେ ଆମେ ମାୟାକୁ ମଧ୍ୟ ଦେଖିପାରନ୍ତୁ ନାହିଁ । 'ସ୍ୱାମୀ ବିବେକାନନ୍ଦ' ବୋଲି ମଣିଷଟି ଏହି ଦୂରବୀକ୍ଷଣର କାଚ ଉପରର ଦାଗମାତ୍ର । ପ୍ରକୃତ 'ମୁଁ' ସତ୍ୟସ୍ୱରୂପ ଅପରିଣାମୀ ଆତ୍ମା ଓ କେବଳ ସେହି ସତ୍ୟବସ୍ତୁ ହିଁ ମୋତେ—ନାମରୂପାତ୍ମକ 'ସ୍ୱାମୀ ବିବେକାନନ୍ଦ'ଙ୍କୁ ଦେଖିବାକୁ ସମର୍ଥ କରୁଛି । ସମସ୍ତ ଭ୍ରମର ସାରସତ୍ତା ଆତ୍ମା—ଆଉ ସୂର୍ଯ୍ୟ ଯେପରି କେବେହେଲେ ଏହି ଉପରର ଦାଗଗୁଡ଼ିକ ସଙ୍ଗେ ମିଶିଯାଏ ନାହିଁ, ଦାଗଗୁଡ଼ିକୁ କେବଳ ଦେଖାଇ ଦିଏ ମାତ୍ର, ସେହିପରି ଆତ୍ମା ମଧ୍ୟ କେବେହେଲେ ନାମରୂପ ସହିତ ମିଶିଯାଏ ନାହିଁ । ଆମମାନଙ୍କ ଶୁଭ ଓ ଅଶୁଭ କର୍ମସମୂହ ଏହି ଦାଗଗୁଡ଼ିକୁ ଯଥାକ୍ରମେ କମାଏ ଓ ବଢ଼ାଏ, କିନ୍ତୁ ସେମାନେ ଆମର ଅଭ୍ୟନ୍ତରସ୍ଥ ଅନ୍ତର୍ଯ୍ୟାମୀ ଈଶ୍ୱରଙ୍କ ଉପରେ କୌଣସି ପ୍ରଭାବ ବିସ୍ତାର କରିପାରନ୍ତି ନାହିଁ । ମନର ଦାଗଗୁଡ଼ିକୁ ସମ୍ପୂର୍ଣ୍ଣରୂପେ ପରିଷ୍କାର କରିପକାଅ । ତା'ହେଲେ ଯାଇ ଆମେ ଦେଖିବା—'ମୁଁ ଓ ମୋର ପିତା ଏକ ।'

ଆମେ ଆଗେ ପ୍ରତ୍ୟକ୍ଷାନୁଭୂତି ଲାଭ କରୁଁ, ଯୁକ୍ତି-ବିଚାର ପରେ ଆସିଥାଏ । ଆମକୁ ଏହି ପ୍ରତ୍ୟକ୍ଷାନୁଭୂତି ଲାଭ କରିବାକୁ ହେବ ଓ ଏହା ହିଁ ହେଲା ବାସ୍ତବିକ ଧର୍ମ । କୌଣସି ବ୍ୟକ୍ତି ଶାସ୍ତ୍ର, ବିଭିନ୍ନ ଧର୍ମମତ ବା ଅବତାରଙ୍କ କଥା ଶୁଣି ନ ଥାଇପାରେ; କିନ୍ତୁ ସେ ଯଦି ପ୍ରତ୍ୟକ୍ଷାନୁଭୂତି କରିଥାଏ, ତା' ପକ୍ଷରେ ଆଉ କିଛି ଦରକାର ନାହିଁ । ଚିତ୍ତ ଶୁଦ୍ଧ କର—ଏହା ହେଉଛି ଧର୍ମର ସାରକଥା । ଆମେ ଯେପର୍ଯ୍ୟନ୍ତ ମନର ଏହି ଦାଗଗୁଡ଼ିକୁ ଦୂର ନ କରିଛୁ, ସେପର୍ଯ୍ୟନ୍ତ ଆମେ ସେହି ସତ୍ୟସ୍ୱରୂପକୁ ଯଥାଯଥଭାବରେ ଦର୍ଶନ କରିପାରିବା ନାହିଁ । ଶିଶୁ ଜଗତ୍ ଭିତରେ କୌଣସି ପାପ ଦେଖିବାକୁ ପାଏ ନାହିଁ, କାରଣ ବାହାରର ପାପର ପରିମାଣ ନିର୍ଣ୍ଣୟ କରିବାର କୌଣସି ମାପକାଠି ତା'ର ନିଜ ଭିତରେ ନାହିଁ । ତୁମ ଭିତରେ ଯେଉଁ ଦୋଷଗୁଡ଼ିକ ଅଛି, ସେସବୁକୁ ଦୂର କରିଦିଅ—ତା'ହେଲେ ତୁମେ ଆଉ ବାହାରେ କୌଣସି ଦୋଷ ଦେଖିବାକୁ ପାଇବ ନାହିଁ । ଗ୍ରେଟ ପିଲ ଆଗରେ ଡକାୟତି ହୋଇଯାଉଛି, ସେ ତାହାର ଅର୍ଥ ବୁଝେ ନାହିଁ । ଧନ୍ଦାର ଛବି ଭିତରେ ଲୁଚିଥିବା ଜିନିଷଟିକୁ ଥରେ ଯଦି ଦେଖିବାକୁ ପାଅ, ତାହାହେଲେ ତୁମେ ପରେ ସବୁବେଳେ ତାହା ଦେଖିବାକୁ ପାଇବ । ଏହିପରି ତୁମେ ଯେତେବେଳେ ଥରେ ମୁକ୍ତ ଓ ନିର୍ଦ୍ଦୋଷ ହୋଇଯିବ, ସେତେବେଳେ ଜଗତ୍-ପ୍ରପଞ୍ଚ ଭିତରେ ତୁମେ ମୁକ୍ତି ଓ ଶୁଦ୍ଧତା ବ୍ୟତୀତ ଆଉ କିଛି ଦେଖିବାକୁ ପାଇବ ନାହିଁ । ସେହି ମୁହୂର୍ତ୍ତରେ ହିଁ ହୃଦୟର ଗଣ୍ଠି ସବୁ ଛିନ୍ନ ହୋଇଯାଏ । ସବୁ ଅଙ୍କାବଙ୍କା ସିଧା ହୋଇଯାଏ ଓ ଏହି ଜଗତ୍‌ପ୍ରପଞ୍ଚ ସ୍ୱପ୍ନପରି ଛିଡ଼ିଭଇଯାଏ । ନିଦ ଭାଙ୍ଗିଗଲେ ଆମେ ସବୁ ବୃଥା ସ୍ୱପ୍ନ ଦେଖିଥିଲୁ ଭାବି ଆଶ୍ଚର୍ଯ୍ୟ ହେଉଁ ।

"ଯାହାଙ୍କୁ ଲାଭ କଲେ ପର୍ବତପ୍ରମାଣ ଦୁଃଖ ମଧ୍ୟ ହୃଦୟକୁ ବିଚଳିତ କରିପାରେ

ନାହିଁ, ତାହାଙ୍କୁ ଲାଭ କରିବାକୁ ହେବ ।"*

ଜ୍ଞାନ-କୁଠାରଦ୍ୱାରା ଦେହମନରୂପକ ଚକ୍ରଦ୍ୱୟକୁ ପୃଥକ୍ କରି ପକାଅ, ତାହା ହେଲେ ଯାଇ ଆତ୍ମା ମୁକ୍ତସ୍ୱରୂପ ହୋଇ ପୃଥକ୍‌ଭାବରେ ଛିଡ଼ା ହୋଇପାରିବ—ଯଦ୍ୟପି ପୂର୍ବତନ ଗତିରେ ସେତେବେଳେ ମଧ୍ୟ ଦେହ-ମନରୂପକ ଚକ୍ର କିଛି ସମୟ ଧରି ଚାଲିବ । ତେବେ ସେତେବେଳେ ଚକ୍ରଟି ସିଧାସଳଖ ଚାଲିବ, ଅର୍ଥାତ୍, ଏହି ଦେହମନଦ୍ୱାରା ଶୁଭ କାର୍ଯ୍ୟ ହିଁ ହେବ । ଯଦି ସେହି ଶରୀରଦ୍ୱାରା କିଛି ମନ୍ଦ କାର୍ଯ୍ୟ ହୁଏ, ତା'ହେଲେ ଜାଣିରଖ ଯେ, ସେହି ବ୍ୟକ୍ତି ଜୀବନ୍ମୁକ୍ତ ନୁହେଁ—ଯଦି ସେ ନିଜକୁ ଜୀବନ୍ମୁକ୍ତ ବୋଲି ଦାବି କରେ, ତେବେ ସେ ମିଛ କଥା କହୁଛି । ଏହା ମଧ୍ୟ ବୁଝିବାକୁ ହେବ ଯେ, ସେତେବେଳେ ଚିତ୍ତଶୁଦ୍ଧିଦ୍ୱାରା ଚକ୍ରର ସରଳ ଗତି ଆସିଯାଇଛି, ସେହି ସମୟରେ ହିଁ ତା' ଉପରେ କୁଠାରପ୍ରୟୋଗ ହେବ । ସମସ୍ତ ଶୁଦ୍ଧିକର କାର୍ଯ୍ୟ ହିଁ ଅଜ୍ଞାନକୁ ଜ୍ଞାତସାରରେ ବା ଅଜ୍ଞାତସାରରେ ନଷ୍ଟ କରୁଛି । ଅନ୍ୟକୁ ପାପୀ ବୋଲି କହିବା ଅପେକ୍ଷା ଆଉ ମନ୍ଦ କାର୍ଯ୍ୟ କିଛି ନାହିଁ । ଭଲ କାମ ନ ଜାଣି କଲେ ମଧ୍ୟ ତାହାର ଫଳ ଏକାପ୍ରକାର ହୁଏ—ତାହା ବନ୍ଧନ-ମୋଚନରେ ସାହାଯ୍ୟ କରେ ।

ଦୂରବୀକ୍ଷଣର କାଚର ଦାଗଗୁଡ଼ିକୁ ଦେଖି ସୂର୍ଯ୍ୟଙ୍କୁ ମଧ୍ୟ ଦାଗଯୁକ୍ତ ମନେ କରିବା ହିଁ ଆମର ପ୍ରଧାନ ଭ୍ରମ । ସେହି 'ମୁଁ'-ରୂପକ ସୂର୍ଯ୍ୟ କୌଣସି ପ୍ରକାର ବାହ୍ୟ ଦୋଷରେ ଲିପ୍ତ ନୁହନ୍ତି—ଏହା ଜାଣି ରଖ ଓ ନିଜକୁ ଏହି ଦାଗଗୁଡ଼ିକୁ ଉଠାଇବାରେ ନିଯୁକ୍ତ କର । ମନୁଷ୍ୟ ଅପେକ୍ଷା ବଡ଼ ପ୍ରାଣୀ ଆଉ କେହି ନାହିଁ । ଶ୍ରୀକୃଷ୍ଣ, ବୁଦ୍ଧ, ଖ୍ରୀଷ୍ଟଙ୍କ ପରି ମନୁଷ୍ୟମାନଙ୍କର ଉପାସନା ହିଁ ସର୍ବଶ୍ରେଷ୍ଠ ଉପାସନା । ତୁମର ଯାହାକିଛି ଅଭାବବୋଧ ହୁଏ, ତୁମେ ହିଁ ତାହା ସୃଷ୍ଟି କରିଥାଅ—ବାସନାମୁକ୍ତ ହୁଅ । ***

ଦେବତାମାନେ ଓ ପରଲୋକଗତ ବ୍ୟକ୍ତିମାନେ ସବୁ ଏହିଠାରେ ହିଁ ରହିଛନ୍ତି— ଏହି ଜଗତକୁ ସେମାନେ ସ୍ୱର୍ଗ ବୋଲି ଦେଖୁଛନ୍ତି । ଏକ ଅଜ୍ଞାତ ବସ୍ତୁକୁ ସମସ୍ତେ ନିଜ ନିଜ ମନର ଭାବ ଅନୁଯାୟୀ ଭିନ୍ନ ଭିନ୍ନ ରୂପରେ ଦେଖୁଛନ୍ତି । ଏହି ପୃଥିବୀରେ କିନ୍ତୁ ଏହି ଅଜ୍ଞାତ ବସ୍ତୁର ସର୍ବାପେକ୍ଷା ଉତ୍କୃଷ୍ଟ ଦର୍ଶନ ଲାଭ ହୋଇପାରେ । କେବେ ହେଲେ ସ୍ୱର୍ଗକୁ ଯିବାର ଇଚ୍ଛା କର ନାହିଁ—ଏହା ହିଁ ସର୍ବାପେକ୍ଷା ଅପକୃଷ୍ଟ ଭ୍ରମ । ଏହି ପୃଥିବୀରେ ଖୁବ୍ ବେଶୀ ଧନ ଓ ଘୋର ଦାରିଦ୍ର୍ୟ ଉଭୟ ହିଁ ବନ୍ଧନ—ଉଭୟ ଆମମାନଙ୍କୁ ଧର୍ମପଥ ଓ ମୁକ୍ତିପଥରୁ ଦୂରରେ ରଖେ । ତିନୋଟି ଜିନିଷ ଏ ପୃଥିବୀରେ ଅତି ଦୁର୍ଲଭ*—ପ୍ରଥମ, ମନୁଷ୍ୟ ଦେହ (ମନୁଷ୍ୟମନରେ ହିଁ ଈଶ୍ୱରଙ୍କର ଉତ୍କୃଷ୍ଟ ପ୍ରତିବିମ୍ବ ବିଦ୍ୟମାନ, ବାଇବେଲରେ ଅଛି, 'ମନୁଷ୍ୟ ଈଶ୍ୱରଙ୍କ ପ୍ରତିମୂର୍ତ୍ତିସ୍ୱରୂପ'); ଦ୍ୱିତୀୟ—ମୁକ୍ତ ହେବା ପାଇଁ ପ୍ରବଳ ଆକାଙ୍କ୍ଷା । ତୃତୀୟ, ମହାପୁରୁଷଙ୍କର ଆଶ୍ରୟଲାଭ—ଯେ ସ୍ୱୟଂ ମାୟାମୋହ-ସମୁଦ୍ର ପାର ହୋଇ

* ଗୀତା, ୬।୨୨

* "ଦୁର୍ଲଭଂ ତ୍ରୟମେବୈତତ୍ ଦେବାନୁଗ୍ରହହେତୁକମ୍ ।
ମନୁଷ୍ୟତ୍ୱଂ ମୁମୁକ୍ଷୁତ୍ୱଂ ମହାପୁରୁଷସଂଶ୍ରୟଃ ।"—ବିବେକଚୂଡ଼ାମଣି, ୩

ଯାଇଛନ୍ତି, ଏପରି ମହାତ୍ମାଙ୍କୁ ଗୁରୁରୂପରେ ଲଭ । ଏହି ଉନୋଟି ଯଦି ପାଇଥାଅ, ତେବେ ଭଗବାନଙ୍କୁ ଧନ୍ୟବାଦ ଦିଅ, ତୁମେ ମୁକ୍ତ ହେବ ହିଁ ହେବ ।

କେବଳ ତର୍କଯୁକ୍ତିଦ୍ୱାରା ଯେଉଁ ତତ୍ତ୍ୱର ଜ୍ଞାନ ଲାଭ ହୁଏ, ତାହା ଏକ ନୂତନ ଯୁକ୍ତିତର୍କଦ୍ୱାରା ଉଡ଼ିଯାଇପାରେ; କିନ୍ତୁ ତୁମେ ଯାହା ସାକ୍ଷାତ୍ ପ୍ରତ୍ୟକ୍ଷ ଅନୁଭବ କର, ତାହା କଦାପି ନଷ୍ଟ ହୋଇ ଯିବାର ନୁହେଁ । ଧର୍ମ ସମ୍ପର୍କରେ କେବଳ ବଚନବାଗୀଶ ହେଲେ କିଛି ଫଳ ହେବ ନାହିଁ । ଯେକୌଣସି ବସ୍ତୁର ସଂସ୍ପର୍ଶରେ ଆସିବ—ଯେପରି ମଣିଷ, ପଶୁ, ଆହାର, କାର୍ଯ୍ୟ—ସବୁ ଉପରେ ବ୍ରହ୍ମଦୃଷ୍ଟି କର, ଏବଂ ଏହିପରି ଦୈନନ୍ଦିନ ବ୍ରହ୍ମଦୃଷ୍ଟି କରିବାଟାକୁ ଏକ ଅଭ୍ୟାସରେ ପରିଣତ କର ।

ଇଙ୍ଗରସୋଲ୍ (ଆମେରିକାର ବିଖ୍ୟାତ ଅଜ୍ଞେୟବାଦୀ) ମୋତେ ଥରେ କହିଲେ, 'ଏହି ଜଗତରୁ ଯେତେଦୂର ଲାଭ କରାଯାଇପାରେ, ସେଥିପାଇଁ ସମସ୍ତେ ଚେଷ୍ଟା କରିବା ଉଚିତ, ଏହା ମୋର ବିଶ୍ୱାସ । କମଳାଲେମ୍ବୁକୁ ଚିପୁଡ଼ି ଯେତେଟା ସମ୍ଭବ ରସ ବାହାର କରି ନେବାକୁ ହେବ, ଯେପରି ଏକ ବିନ୍ଦୁ ରସ ମଧ୍ୟ ବାଦ୍ ନ ଯାଏ; କାରଣ ଆମେ ଏହି ଜଗତ୍ ଛଡ଼ା ଅନ୍ୟ କୌଣସି ଜଗତର ଅସ୍ତିତ୍ୱ ସମ୍ପର୍କରେ ସୁନିଶ୍ଚିତ ନୋହୁଁ ।' ମୁଁ ତାଙ୍କୁ ଉତ୍ତର ଦେଇଥିଲି—'ମୁଁ ଆପଣଙ୍କ ଅପେକ୍ଷା ଏହି ଜଗତ୍‌ରୂପକ କମଳାଲେମ୍ବୁ ଚିପୁଡ଼ିବାର ଉତ୍କୃଷ୍ଟତର ପ୍ରଣାଳୀ ଜାଣେ ଓ ମୁଁ ଏହାଦ୍ୱାରା ବେଶୀ ରସ ପାଇଥାଏ । ମୁଁ ଜାଣେ, ମୋର ମୃତ୍ୟୁ ନାହିଁ; ତେଣୁ ମୋର ଏହି ରସ ଚିପୁଡ଼ି ନେବାରେ ଏତେ ବ୍ୟସ୍ତ ହେବାର କିଛି କାରଣ ନାହିଁ । ମୁଁ ଜାଣେ, ଭୟର କୌଣସି କାରଣ ନାହିଁ, ସୁତରାଂ ଭଲ କରି ଧୀରେ ଧୀରେ ଆନନ୍ଦରେ ଚିପୁଡ଼ୁଛି । ମୋର କୌଣସି କର୍ତ୍ତବ୍ୟ ନାହିଁ, ମୋର ସ୍ତ୍ରୀ-ପୁତ୍ରାଦି ଓ ବିଷୟ-ସମ୍ପତ୍ତିର କୌଣସି ବନ୍ଧନ ନାହିଁ, ମୁଁ ସମସ୍ତ ନରନାରୀଙ୍କୁ ଭଲପାଇପାରେ । ସମସ୍ତେ ମୋ-ପକ୍ଷରେ ବ୍ରହ୍ମସ୍ୱରୂପ । ମନୁଷ୍ୟକୁ ଭଗବାନ ବୋଲି ଭଲ ପାଇଲେ ଯେ କି ଆନନ୍ଦ, ତାହା ଥରେ ଭାବି ଦେଖନ୍ତୁ ତ ! କମଳାଲେମ୍ବୁକୁ ଏହିଭଳି ଭାବରେ ଚିପୁଡ଼ି ଦେଖନ୍ତୁ ତ—ଅନ୍ୟ ଭାବରେ ଚିପୁଡ଼ି ଯେତେ ରସ ପାଆନ୍ତି, ତା'ଠାରୁ ଦଶହଜାର ଗୁଣ ଅଧିକ ରସ ପାଇବେ—ବିନ୍ଦୁଏ ମଧ୍ୟ ବାଦ୍ ଯିବ ନାହିଁ ।'

ଯାହାକୁ ଆମର 'ଇଚ୍ଛା' ବୋଲି ମନେହେଉଛି, ତାହା ପ୍ରକୃତରେ ଆମର ଅଧିଷ୍ଠାନସ୍ୱରୂପ ଆତ୍ମା ଏବଂ ତାହା ବାସ୍ତବିକ ହିଁ ମୁକ୍ତସ୍ୱଭାବ ।

ସୋମବାର, ଅପରାହ୍ନ

ଯୀଶୁଖ୍ରୀଷ୍ଟ ଅସମ୍ପୂର୍ଣ୍ଣ ଥିଲେ, କାରଣ ସେ ଯେଉଁ ଆଦର୍ଶ ପ୍ରଚାର କରିଥିଲେ, ତଦନୁସାରେ ସମ୍ପୂର୍ଣ୍ଣଭାବେ ଜୀବନଯାପନ କରି ନାହାନ୍ତି, ଏବଂ ସର୍ବୋପରି ସେ ନାରୀମାନଙ୍କୁ ପୁରୁଷଙ୍କ ଭଳି ସମ୍ମାନ ଦେଇ ନାହାନ୍ତି । ସ୍ତ୍ରୀ-ଲୋକମାନେ ତାଙ୍କ ପାଇଁ ସବୁ କଲେ, କିନ୍ତୁ ସେ ଇହୁଦୀମାନଙ୍କ ଦେଶାଚାରଦ୍ୱାରା ଏତେଦୂର ବଦ୍ଧ ଥିଲେ ଯେ, ଜଣେ ସୁଦ୍ଧା ନାରୀକୁ ସେ 'ପ୍ରେରିତ ଶିଷ୍ୟ' (Apostle)କୁ ଉନ୍ନୀତ କଲେ ନାହିଁ । ତଥାପି ଉଚ୍ଚତମ ଚରିତ୍ର-ଭାବରେ ବୁଦ୍ଧଙ୍କ ପରେ ହିଁ ତାଙ୍କର ସ୍ଥାନ—ପୁଣି ବୁଦ୍ଧ ଯେ ଏକାବେଳକେ ସମ୍ପୂର୍ଣ୍ଣ

ନିର୍ଦ୍ଦୋଷ ଥିଲେ, ତାହା ମଧ୍ୟ ନୁହେଁ । ଯାହା ହେଉ, ବୁଦ୍ଧ ଧର୍ମରାଜ୍ୟରେ ପୁରୁଷଙ୍କ ସହିତ ସ୍ତ୍ରୀ-ଲୋକଙ୍କର ସମାନ ଅଧିକାର ସ୍ୱୀକାର କରିଥିଲେ । ତାଙ୍କ ନିଜ ସ୍ତ୍ରୀ ହିଁ ତାଙ୍କର ପ୍ରଥମ ଓ ଜଣେ ପ୍ରଧାନ ଶିଷ୍ୟା । ସେ ବୌଦ୍ଧ ଭିକ୍ଷୁଣୀମାନଙ୍କର ଅଧିନାୟିକା ହୋଇଥିଲେ; କିନ୍ତୁ ଏହି ସବୁ ମହାପୁରୁଷମାନଙ୍କର ଦୋଷାନୁସନ୍ଧାନ କରିବା ଆମ ପକ୍ଷରେ ଉଚିତ ହେବ ନାହିଁ । ଆମେ କେବଳ ସେମାନଙ୍କୁ ଆମ ଅପେକ୍ଷା ଅନନ୍ତଗୁଣରେ ଶ୍ରେଷ୍ଠ ବୋଲି ଜ୍ଞାନ କରିବା ଉଚିତ; କିନ୍ତୁ ତା'ହେଲେ ମଧ୍ୟ ସିଏ ଯେତେ ବଡ଼ ହୁଅନ୍ତୁ ନା କାହିଁକି, କୌଣସି ମନୁଷ୍ୟଙ୍କୁ ଆମେ କେବଳ ବିଶ୍ୱାସ କରି ପଡ଼ି ରହିଲେ ଚଳିବ ନାହିଁ; ଆମକୁ ମଧ୍ୟ ବୁଦ୍ଧ ଓ ଖ୍ରୀଷ୍ଟ ହେବାକୁ ପଡ଼ିବ ।

କୌଣସି ବ୍ୟକ୍ତିଙ୍କୁ ତାଙ୍କର ଦୋଷ ବା ଅସମ୍ପୂର୍ଣ୍ଣତା ଦେଖି ବିଚାର କରିବା ଉଚିତ ନୁହେଁ । ମନୁଷ୍ୟର ଯେଉଁ ମହାନ୍ ସଦ୍‌ଗୁଣ ସବୁ ଦେଖାଯାଏ, ତାହା ତାହାର ନିଜର; କିନ୍ତୁ ତା'ର ଦୋଷଗୁଡ଼ିକ ମନୁଷ୍ୟଜାତିର ସାଧାରଣ ଦୁର୍ବଳତା ମାତ୍ର; ସୁତରାଂ ତାହାର ଚରିତ୍ର ବିଚାର କରିବାକୁ ଗଲେ ସେସବୁକୁ କେବେ ହେଲେ ଗଣନା କରାଯିବା ଉଚିତ ନୁହେଁ ।

***

ଇଂରାଜୀର ଭର୍ଚ୍ୟୁ (virtue) ଶବ୍ଦଟି ସଂସ୍କୃତ 'ବୀର' ଶବ୍ଦରୁ ଆସିଛି; କାରଣ ପ୍ରାଚୀନ କାଳରେ ଶ୍ରେଷ୍ଠ ଯୋଦ୍ଧାମାନଙ୍କୁ ହିଁ ଲୋକେ ଶ୍ରେଷ୍ଠ ଧାର୍ମିକ ଲୋକ ବୋଲି ବିବେଚନା କରୁଥିଲେ ।

**ମଙ୍ଗଳବାର, ୩୦ ଜୁଲାଇ**

ଖ୍ରୀଷ୍ଟ, ବୁଦ୍ଧ ପ୍ରଭୃତି କେବଳ ବହିରବଲମ୍ବନସ୍ୱରୂପ । ଆମର ଆଭ୍ୟନ୍ତରୀଣ ଶକ୍ତି-ଗୁଡ଼ିକୁ ଆମେ ସେମାନଙ୍କ ଉପରେ ଆରୋପ କରିଥାଉ ମାତ୍ର । ପ୍ରକୃତ ପକ୍ଷରେ ଆମେ ହିଁ ଆମ ପ୍ରାର୍ଥନାର ଉତ୍ତର ଦେଇଥାଉ ।

ଯୀଶୁ ଯଦି ଜନ୍ମ ନେଇ ନ ଥାନ୍ତେ, ତେବେ ମନୁଷ୍ୟଜାତିର କେବେହେଲେ ଉଦ୍ଧାର ହୋଇ ନ ଥାନ୍ତା—ଏଭଳି ଭାବିବା ଈଶ୍ୱର-ନିନ୍ଦା । ମନୁଷ୍ୟସ୍ୱଭାବ ଭିତରେ ଯେଉଁ ଐଶ୍ୱରିକଭାବ ଅନ୍ତର୍ନିହିତ ରହିଛି, ତାହାକୁ ଏଭଳି ଭାବରେ ଭୁଲିଯିବା ଅତି ମାରାତ୍ମକ—ଏହି ଐଶ୍ୱରିକ-ଭାବ କୌଣସି ନା କୌଣସି ସମୟରେ ଅବଶ୍ୟ ପ୍ରକାଶିତ ହେବ । ମନୁଷ୍ୟ-ସ୍ୱଭାବର ମହତ୍ତ୍ୱକୁ କେବେହେଲେ ଭୁଲିଯାଅ ନାହିଁ ।

ଈଶ୍ୱର ଅତୀତରେ ଯାହା ହୋଇଛନ୍ତି, ଭବିଷ୍ୟତରେ ଯାହା ହେବେ, ତା'ମଧ୍ୟରେ ଆମେମାନେ ହିଁ ଶ୍ରେଷ୍ଠ ପ୍ରକାଶ । ମୁଁ ହିଁ ସେହି ଅନନ୍ତ ମହାସମୁଦ୍ର—ଖ୍ରୀଷ୍ଟ ଓ ବୁଦ୍ଧପ୍ରମୁଖ ତାହାର ହିଁ ତରଙ୍ଗ ମାତ୍ର । ତୁମ ନିଜର ପରମାତ୍ମା ବ୍ୟତୀତ ଆଉ କାହା ନିକଟରେ ମୁଣ୍ଡ ନୁଆଁଅ ନାହିଁ । ତୁମେ ଯେପର୍ଯ୍ୟନ୍ତ ନିଜକୁ ସେହି ଦେବଦେବ ବୋଲି ଜାଣି ନ ପାରିଛ, ସେପର୍ଯ୍ୟନ୍ତ ତୁମର କେବେହେଲେ ମୁକ୍ତ ହୋଇପାରିବ ନାହିଁ ।

ଆମର ସମସ୍ତ ଅତୀତ କର୍ମ ହିଁ ବାସ୍ତବିକ ଭଲ, କାରଣ ଆମର କର୍ମଗୁଡ଼ିକ ହିଁ ଆମକୁ ଆମର ଚରମ ଆଦର୍ଶରେ ପହଞ୍ଚାଇଦିଏ । କାହା ନିକଟରେ ମୁଁ ଭିକ୍ଷା କରିବି ?—ମୁଁ ହିଁ

ଯଥାର୍ଥ ସତ୍ତା, ଓ ଯାହାକିଛି ମୋ ସ୍ୱରୂପରୁ ଭିନ୍ନ ବୋଲି ପ୍ରତୀୟମାନ ହୁଏ, ତାହା ସ୍ୱପ୍ନ ମାତ୍ର । ମୁଁ ସମଗ୍ର ସମୁଦ୍ର; ତୁମେ ନିଜେ ଏହି ସମୁଦ୍ରରେ ଯେଉଁ ଏକ କ୍ଷୁଦ୍ର ତରଙ୍ଗ ସୃଷ୍ଟି କରିଛ, ତାହାକୁ 'ମୁଁ' ବୋଲି କହ ନାହିଁ । ତାହା ଏହି ତରଙ୍ଗ ବ୍ୟତୀତ ଆଉ କିଛି ନୁହେଁ ବୋଲି ଜାଣି ରଖ । ସତ୍ୟକାମ (ଅର୍ଥାତ୍ ସତ୍ୟଲାଭ ପାଇଁ ଯାହାଙ୍କର ପ୍ରବଳ ଆକାଙ୍କ୍ଷା ହୋଇଛି) ଶୁଣିବାକୁ ପାଇଲେ—ତାଙ୍କ ହୃଦୟାଭ୍ୟନ୍ତରୀଣ ବାଣୀ ତାଙ୍କୁ କହୁଛି, 'ତୁମେ ଅନନ୍ତସ୍ୱରୂପ; ସେହି ସର୍ବବ୍ୟାପୀ ସତ୍ତା ତୁମ ଭିତରେ ରହିଛି ।' ନିଜକୁ ସଂଯତ କର ଓ ତୁମର ଯଥାର୍ଥ ଆତ୍ମାର ବାଣୀ ଶୁଣ ।

ଯେଉଁସବୁ ମହାପୁରୁଷ ପ୍ରଚାରକାର୍ଯ୍ୟ ପାଇଁ ପ୍ରାଣପାତ କରି ଯାଇଛନ୍ତି, ସେମାନେ —ଯେଉଁସବୁ ମହାପୁରୁଷ ନୀରବରେ ନିର୍ଜନରେ ଅତି ପବିତ୍ର ଜୀବନଯାପନ କରନ୍ତି, ଉଚ୍ଚ ଉଚ୍ଚ ଚିନ୍ତା କରନ୍ତି ଓ ଏଭଳି ଭାବରେ ଜଗତକୁ ସାହାଯ୍ୟ କରନ୍ତି—ସେମାନଙ୍କ ତୁଳନାରେ ଅପେକ୍ଷାକୃତ ଅସମ୍ପୂର୍ଣ୍ଣ । ଏହିସବୁ ଶାନ୍ତିପ୍ରିୟ ନିର୍ଜନବାସୀ ମହାପୁରୁଷ ଜଣକ ପରେ ଜଣେ ଆବିର୍ଭୂତ ହୁଅନ୍ତି—ଶେଷରେ ସେମାନଙ୍କ ଶକ୍ତିର ହିଁ ଚରମଫଳସ୍ୱରୂପ ଏପରି ଏକ ଶକ୍ତିସମ୍ପନ୍ନ ପୁରୁଷଙ୍କ ଆବିର୍ଭାବ ହୁଏ, ଯେ ସେହି ତତ୍ତ୍ୱଗୁଡ଼ିକୁ ଚାରିଆଡ଼େ ପ୍ରଚାର କରି ଚାଲନ୍ତି । ***

ଜ୍ଞାନ ସ୍ୱତଃ ହିଁ ବିଦ୍ୟମାନ ରହିଛି, ମନୁଷ୍ୟ କେବଳ ତାହା ଆବିଷ୍କାର କରେ ମାତ୍ର । ବେଦସମୂହ ହିଁ ଏହି ଚିରନ୍ତନ ଜ୍ଞାନ—ଯାହାର ସହାୟତାରେ ଈଶ୍ୱର ଏହି ଜଗତ୍ ସୃଷ୍ଟି କରିଛନ୍ତି । ଭାରତର ଦାର୍ଶନିକଗଣ ଉଚ୍ଚତମ ଦାର୍ଶନିକ ତତ୍ତ୍ୱ ପ୍ରକାଶ କରିଥାନ୍ତି, ଏବଂ ଏହି ପ୍ରଚଣ୍ଡ ଦାବି ମଧ୍ୟ କରିଥାଆନ୍ତି । ***

ଯାହା ସତ୍ୟ, ତାହାକୁ ସାହସର ସହିତ ନିର୍ଭୀକଭାବରେ ଲୋକଙ୍କ ନିକଟରେ କହ—ଏହି ସତ୍ୟ, ପ୍ରକାଶ ପାଇଁ ବ୍ୟକ୍ତିବିଶେଷର କଷ୍ଟ ହେଲା ବା ନ ହେଲା, ସେଥିପ୍ରତି ଦୃଷ୍ଟି ଦିଅ ନାହିଁ । ଦୁର୍ବଳତାକୁ ପ୍ରଶ୍ରୟ ଦିଅ ନାହିଁ । ସତ୍ୟର ଜ୍ୟୋତିଃ ବୁଦ୍ଧିମାନ୍ ଲୋକଙ୍କ ପକ୍ଷରେ ଯଦି ଅତିମାତ୍ରାରେ ପ୍ରଖର ବୋଧହୁଏ, ସେମାନେ ଯଦି ସହ୍ୟ କରି ନ ପାରନ୍ତି, ସତ୍ୟର ବନ୍ୟା ଯଦି ସେମାନଙ୍କୁ ଭସାଇ ନେବ, ନେଉ—ଯେତେ ଶୀଘ୍ର ନେବ, ସେତେ ଭଲ । ପିଲାଳିଆ ଭାବସବୁ ଶିଶୁ ଓ ବଣୁଆ ଅସଭ୍ୟମାନଙ୍କୁ ଶୋଭା ପାଏ; କିନ୍ତୁ ଦେଖାଯାଏ, ଏହିସବୁ ଭାବ କେବଳ ଶିଶୁମହଲରେ ବା ଅରଣ୍ୟ ଭିତରେ ଆବଦ୍ଧ ନୁହେଁ; ଏହିସବୁ ଭାବ ଅନେକ ଧର୍ମପ୍ରଚାରକଙ୍କ ମଧ୍ୟରେ ବି ରହିଛି ।

ଆଧ୍ୟାତ୍ମିକ ଉନ୍ନତିଲାଭ ହେଲେ ଆଉ ସମ୍ପ୍ରଦାୟର ସୀମାଭିତରେ ଆବଦ୍ଧ ରହିବା ଖରାପ । ତା' ଭିତରୁ ବାହାରି ଆସି ସ୍ୱାଧୀନତାର ମୁକ୍ତ ବାୟୁରେ ଦେହପାତ କର ।

ଯାହାକିଛି ଉନ୍ନତି, ତାହା ଏହି ବ୍ୟାବହାରିକ ବା ଆପେକ୍ଷିକ ଜଗତରେ ହିଁ ହୋଇଥାଏ । ମାନବଦେହ ହିଁ ସର୍ବଶ୍ରେଷ୍ଠ ଦେହ ଏବଂ ମନୁଷ୍ୟ ହିଁ ସର୍ବୋଚ୍ଚ ପ୍ରାଣୀ, କାରଣ ଏହି ମାନବଦେହରେ—ଏହି ଜନ୍ମରେ ହିଁ ଆମେ ଏହି ଆପେକ୍ଷିକ ଜଗତର ସମ୍ପୂର୍ଣ୍ଣରୂପେ ବାହାରକୁ ଯାଇପାରୁ, ପ୍ରକୃତରେ ମୁକ୍ତିର ଅବସ୍ଥା ଲାଭ କରିପାରୁ; ଏବଂ ଏହି ମୁକ୍ତି ହିଁ

ଆମର ଚରମ ଲକ୍ଷ୍ୟ । କେବଳ ଯେ ଆମେ ପାରୁ ତା' ନୁହେଁ, ଅନେକେ ପ୍ରକୃତରେ ଇହଜୀବନରେ ମୁକ୍ତାବସ୍ଥା ଲାଭ କରିଛନ୍ତି ଓ ପୂର୍ଣ୍ଣତା ପ୍ରାପ୍ତ ହୋଇଛନ୍ତି । ସୁତରାଂ କେହି ଏହି ଶରୀର ତ୍ୟାଗ କରି ଯେତେ ସୂକ୍ଷ୍ମ ବା ସୂକ୍ଷ୍ମତର ଦେହ ଲାଭ କରୁ, ସେତେବେଳେ ମଧ୍ୟ ସେ ଏହି ଆପେକ୍ଷିକ ଜଗତ୍ ମଧ୍ୟରେ ରହିଛୁ, ସେ ଆଉ ଆମ ଅପେକ୍ଷା ଅଧିକ କିଛି କରିପାରିବ ନାହିଁ, କାରଣ ମୁକ୍ତିଲାଭ କରିବା ଛଡ଼ା ଆଉ କଅଣ ବା ଉଚ୍ଚାବସ୍ଥା ଲାଭ କରାଯାଇପାରେ !

ଦେବତାମାନେ (angels) କେବେହେଲେ କୌଣସି ଅନ୍ୟାୟ କାମ କରନ୍ତି ନାହିଁ, ଫଳରେ ସେମାନେ ଶାସ୍ତି ପାଆନ୍ତି ନାହିଁ; ସୁତରାଂ ସେମାନେ ମୁକ୍ତ ମଧ୍ୟ ହୋଇପାରନ୍ତି ନାହିଁ । ସଂସାରର ଧକ୍କା ହିଁ ଆମକୁ ଜଗାଇଦିଏ, ତାହା ହିଁ ଏହି ଜଗତ୍-ସ୍ୱପ୍ନ ଭାଙ୍ଗିବାରେ ସାହାଯ୍ୟ କରେ । ଏହିପରି କ୍ରମାଗତ ଆଘାତ ହିଁ ଏହି ଜଗତର ଅସମ୍ପୂର୍ଣ୍ଣତାକୁ ବୁଝାଇ ଦିଏ, ସେଥିରୁ ଆମର ଏହି ସଂସାରରୁ ପଳାଇବାର ବା ମୁକ୍ତିଲାଭ କରିବାର ଆକାଙ୍କ୍ଷା ଜନ୍ମେ ।

***

ଆମେ ଯେତେବେଳେ କୌଣସି ବସ୍ତୁକୁ ଅସ୍ପଷ୍ଟ ଭାବରେ ଉପଲବ୍ଧି କରୁ, ସେତେବେଳେ ଆମେ ତାହାର ଗୋଟିଏ ନାମକରଣ କରିଥାଉ, ପୁଣି ଆମେ ଯେତେବେଳେ ସେହି ବିଷୟକୁ ସମ୍ପୂର୍ଣ୍ଣ ଉପଲବ୍ଧି କରୁ, ସେତେବେଳେ ଅନ୍ୟ ନାମ ଦେଉ । ଆମର ନୈତିକ ପ୍ରକୃତି ଯେତେ ଉନ୍ନତ ହୁଏ, ଆମର ଉପଲବ୍ଧି ମଧ୍ୟ ସେତିକି ଉତ୍କୃଷ୍ଟତର ହୁଏ, ଆମର ଇଚ୍ଛାଶକ୍ତି ମଧ୍ୟ ସେତିକି ଅଧିକ ବଳବତୀ ହୁଏ ।

**ମଙ୍ଗଳବାର, ଅପରାହ୍ନ**

ଆମେ ଯେ ଜଡ଼ ଓ ଚିନ୍ତାରାଶି ମଧ୍ୟରେ ସାମଞ୍ଜସ୍ୟ ଦେଖିପାରୁ, ତାହାର କାରଣ ଉଭୟେ ହିଁ ଏକ ଅଜ୍ଞାତ ବସ୍ତୁର ଦୁଇଟି ଦିଗ ମାତ୍ର, ସେହି ଜିନିଷ ହିଁ ଦୁଇଭାଗ ହୋଇ ବାହ୍ୟ ଓ ଅନ୍ତର ହୋଇଛି ।

ଇଂରାଜୀ 'ପାରାଡାଇସ୍' ଶବ୍ଦଟି ସଂସ୍କୃତ 'ପରଦେଶ' ଶବ୍ଦରୁ ଆସିଛି; ଏହି ଶବ୍ଦଟି ପାରସ୍ୟ ଭାଷାରେ ପ୍ରବେଶ କରିଥିଲା—(ଫାର୍-ଦୌସ୍) ଏହାର ଶବ୍ଦାର୍ଥ ଦେଉଛି ଦେଶର ବାହାରେ, ଅଥବା ଅନ୍ୟ ଦେଶ ବା ଅନ୍ୟ ଲୋକ । ପ୍ରାଚୀନ ଆର୍ଯ୍ୟମାନେ ସବୁବେଳେ ଆତ୍ମାରେ ବିଶ୍ୱାସ କରୁଥିଲେ; ତେଣୁ ମନୁଷ୍ୟକୁ କେବଳ ଦେହ ବୋଲି ଭାବୁ ନ ଥିଲେ । ସେମାନଙ୍କ ମତରେ ସ୍ୱର୍ଗ ନରକ ଉଭୟ ହିଁ ଅନିତ୍ୟ ଓ ସାନ୍ତ, କାରଣ କୌଣସି କାର୍ଯ୍ୟ ହିଁ କେବେହେଲେ ତା'ର କାରଣ-ନାଶ ପରେ ସ୍ଥାୟୀ ହୋଇପାରେ ନାହିଁ, ଆଉ କୌଣସି କାରଣ କେବେହେଲେ ଚିରସ୍ଥାୟୀ ନୁହେଁ; ସୁତରାଂ କାର୍ଯ୍ୟ ବା ଫଳର ନାଶ ହେବ ହିଁ ହେବ । ନିମ୍ନଲିଖିତ ରୂପକଟିରେ* ସମଗ୍ର ବେଦାନ୍ତଦର୍ଶନର ସାର ରହିଛି :

ସୁନାରଙ୍ଗର ପକ୍ଷ ଥିବା ଦୁଇଟି ପକ୍ଷୀ ଗୋଟିଏ ଗଛରେ ବସିଛନ୍ତି । ଉପରେ ଯେଉଁ ପକ୍ଷୀଟି ବସିଛି, ସେ ସ୍ଥିର ଶାନ୍ତଭାବରେ ନିଜ ମହିମାରେ ନିଜେ ବିଭୋର ହୋଇ

* ମୁଣ୍ଡକୋପନିଷଦ୍, ୩।୧।୧-୩

ରହିଛି; ଆଉ ଯେଉଁ ପକ୍ଷୀଟି ତଳ ଡାଳରେ ରହିଛି, ସେ ସର୍ବଦା ହିଁ ଚଞ୍ଚଳ—ଏହି ଗଛର ଫଳ ଖାଉଛି—କେତେବେଳେ ମିଠା ଫଳ, କେତେବେଳେ ବା ତିକ୍ତ ଫଳ । ଥରେ ସେ ଗୋଟାଏ ଅତିଶକ୍ତ କଟୁଫଳ ଖାଇଲା, ସେତେବେଳେ ସେ ଟିକିଏ ସ୍ଥିର ହୋଇ ଉପରସ୍ଥ ସେହି ମହିମମୟ ପକ୍ଷୀଟି ଆଡ଼େ ଚାହିଁଲା । କିନ୍ତୁ ଆଉ ଥରେ ସେ ଶୀଘ୍ର ତାକୁ ଭୁଲିଯାଇ ପୂର୍ବପରି ସେହି ଗଛର ଫଳ ଖାଇବାକୁ ଲାଗିଲା । ଅନ୍ୟ ଥରେ ସେ କଟୁଫଳ ଖାଇଲା—ଏଥର ସେ ଡେଇଁ ଡେଇଁ ଉପରସ୍ଥ ପକ୍ଷୀର ଗୋଟିଏ ଦୁଇଟି ଡାଳ ନିକଟକୁ ଗଲା । ଏହିପରି ଅନେକ ଥର ହେଲା, ଅବଶେଷରେ ନୀଚସ୍ଥ ପକ୍ଷୀଟି ଏକାବେଳକେ ଉପରେ ଥିବା ପକ୍ଷୀଟିର ଜାଗାରେ ଯାଇ ବସିଲା, ଆଉ ନିଜକୁ ହରାଇ ବସିଲା । ସେ ସେତେବେଳେ ବୁଝିଲା ଯେ, ଦୁଇଟି ପକ୍ଷୀ କୌଣସି କାଳେ ନ ଥିଲେ, ସେ ନିଜେ ବରାବର ଶାନ୍ତ ଓ ସ୍ଥିରଭାବରେ ନିଜ ମହିମାରେ ନିଜେ ମଗ୍ନ ଉପରସ୍ଥ ପକ୍ଷୀ ହିଁ ଥିଲା ।

**ବୁଧବାର, ୩୧ ଜୁଲାଇ**

ପ୍ରୋଟେଷ୍ଟାଣ୍ଟ ଧର୍ମସଂସ୍ଥାପକ ଲୁଥାର୍ ଧର୍ମସାଧନ ମଧ୍ୟରୁ ସନ୍ନ୍ୟାସ ବା ତ୍ୟାଗ ବାଦ୍ ଦେଇ ତା' ସ୍ଥାନରେ କେବଳ ନୀତିକୁ ପ୍ରଚାର କରି ଧର୍ମର ସର୍ବନାଶ କରିଗଲେ । ନାସ୍ତିକ ଓ ଜଡ଼ବାଦୀମାନେ ନୀତିପରାୟଣ ହୋଇପାରନ୍ତି, କେବଳ ଈଶ୍ୱରବିଶ୍ୱାସୀମାନେ ହିଁ ଧର୍ମଲାଭ କରିପାରନ୍ତି ।

ସମାଜ ଯେଉଁମାନଙ୍କୁ ଅସନ୍ତ ବୋଲି କହିଥାଏ, ସେହିମାନେ ହିଁ ମହାପୁରୁଷ-ମାନଙ୍କର ପବିତ୍ରତାର ମୂଲ୍ୟ ଦେଇଥାନ୍ତି—ସୁତରାଂ ସେମାନଙ୍କୁ ଦେଖିଲେ ଘୃଣା ନ କରି ଏହି କଥା ଭାବିବା ଉଚିତ । ଯେପରି ଗରିବ ଲୋକର ପରିଶ୍ରମ ଫଳରେ ବଡ଼ ଲୋକର ବିଳାସିତା ସମ୍ଭବ, ଆଧ୍ୟାତ୍ମିକ ଜଗତରେ ମଧ୍ୟ ସେହିଭଳି । ଭାରତର ସାଧାରଣ ଲୋକଙ୍କର ଯେଉଁ ଅବନତି ଦେଖାଯାଏ, ତାହା ମୀରାବାଈ ବୁଦ୍ଧ ପ୍ରଭୃତି ମହାତ୍ମାମାନଙ୍କର ସୃଷ୍ଟି ପାଇଁ ପ୍ରକୃତିକୁ ତାହାର ମୂଲ୍ୟ ଦେବାକୁ ହୋଇଛି । ***

'ମୁଁ ହିଁ ପବିତ୍ରାତ୍ମାମାନଙ୍କର ପବିତ୍ରତା', 'ମୁଁ ହିଁ ସବୁର ମୂଳ, ପ୍ରତ୍ୟେକେ ତାହାକୁ ନିଜ ଭାବରେ ବ୍ୟବହାର କରିଥାନ୍ତି; କିନ୍ତୁ ସବୁକିଛି ମୁଁ ।' 'ମୁଁ ହିଁ ସବୁ କରୁଛି, ତୁମେ ନିମିତ୍ତମାତ୍ର ।'*

ବେଶୀ କଥା କହ ନାହିଁ, ତୁମ ନିଜ ଭିତରେ ଯେଉଁ ଆତ୍ମା ବିଦ୍ୟମାନ, ତାଙ୍କୁ ଅନୁଭବ କର, ତେବେ ଯାଇ ତୁମେ ଜ୍ଞାନୀ ହେବ । ଏହା ହିଁ ହେଲା ଜ୍ଞାନ, ଆଉ ସବୁ ଅଜ୍ଞାନ । ଜାଣିବାର ବସ୍ତୁ ଏକମାତ୍ର ବ୍ରହ୍ମ, ସେ ହିଁ ସବୁ ।

ସତ୍ତ୍ୱ ମନୁଷ୍ୟକୁ ସୁଖ ଓ ଜ୍ଞାନର ଅନ୍ୱେଷଣରେ ବଦ୍ଧ କରେ; ରଜଃ ବାସନାଦ୍ୱାରା ବଦ୍ଧ କରେ; ତମଃ ଭ୍ରମଜ୍ଞାନ, ଆଳସ୍ୟ ପ୍ରଭୃତିଦ୍ୱାରା ବଦ୍ଧ କରେ ।** ରଜଃ, ତମଃ—ଏହି ଦୁଇ ନିମ୍ନତର ଗୁଣକୁ ସତ୍ତ୍ୱଦ୍ୱାରା ନଷ୍ଟ କର, ତା'ପରେ ସବୁ କିଛି ଈଶ୍ୱରଙ୍କ ନିକଟରେ

* ଗୀତା, ୧୧।୩୩

** ଗୀତା, ୧୪।୯

ସମର୍ପଣ କରି ମୁକ୍ତ ହୁଅ ।

ଭକ୍ତଯୋଗୀ ଅଚିରାତ୍ ବ୍ରହ୍ମୋପଲବ୍ଧି କରନ୍ତି ଓ ତିନଗୁଣର ଊର୍ଦ୍ଧ୍ୱକୁ ଚାଲିଯାନ୍ତି ।*

ଇଚ୍ଛା, ଚେତନା, ଇନ୍ଦ୍ରିୟ, ବାସନା, ରିପୁ—ଏସବୁ ମିଶି ଆମେ ଯାହାକୁ 'ଜୀବାତ୍ମା' କହୁଥାଉଁ, ତାହା ହୋଇଛି ।

ପ୍ରଥମ ପ୍ରାତିଭାସିକ ଆତ୍ମା (ଦେହ); ଦ୍ୱିତୀୟ ମାନସାତ୍ମା—ଯେ ଏହି ଦେହକୁ ମୁଁ ବୋଲି ମନେକରେ (ମାୟାବଦ୍ଧ ବ୍ରହ୍ମ); ତୃତୀୟ ଯଥାର୍ଥ ଆତ୍ମା, ଯେ ନିତ୍ୟଶୁଦ୍ଧ, ନିତ୍ୟ-ମୁକ୍ତ । ତାହାଙ୍କୁ ଆଂଶିକଭାବରେ ଦେଖିଲେ 'ପ୍ରକୃତି' ବୋଲି ବୋଧ ହୁଏ; ପୁଣି ତାଙ୍କୁ ପୂର୍ଣ୍ଣଭାବରେ ଦେଖିଲେ ସମସ୍ତ ପ୍ରକୃତି ଉଭେଇଯାଏ; ଏପରିକି ତାଙ୍କର ସ୍ମୃତି ସୁଦ୍ଧା ଲୁପ୍ତ ହୋଇଯାଏ । ପ୍ରଥମ—ପରିଣାମୀ ଓ ଅନିତ୍ୟ (ମରଣଧର୍ମୀ); ଦ୍ୱିତୀୟ—ସଦା ପରିବର୍ତ୍ତନ-ଶୀଳ, କିନ୍ତୁ ପ୍ରବାହରୂପରେ ନିତ୍ୟ (ପ୍ରକୃତି); ତୃତୀୟ—କୂଟସ୍ଥ ନିତ୍ୟ (ଆତ୍ମା) । ***

ଆଶା ସମ୍ପୂର୍ଣ୍ଣରୂପେ ତ୍ୟାଗ କର; ଏହା ହେଲା ସର୍ବୋଚ୍ଚ ଅବସ୍ଥା । ଆଶା କରିବାର କ'ଣ ଅଛି ? ଆଶାର ବନ୍ଧନ ଛିଣ୍ଡାଇ ପକାଅ; ନିଜ ଆତ୍ମା ଉପରେ ଛିଡ଼ା ହୁଅ; ସ୍ଥିର ହୁଅ; ଯାହା କର ନା କାହିଁକି, ସବୁ ଭଗବାନଙ୍କ ନିକଟରେ ଅର୍ପଣ କର; କିନ୍ତୁ ତା' ଭିତରେ କୌଣସି କପଟତା ରଖ ନାହିଁ ।

ଭାରତରେ କାହାରି କୁଶଳ ପ୍ରଶ୍ନ କଲା ବେଳେ 'ସ୍ୱସ୍ଥ' (ଯହିଁରୁ 'ସ୍ୱାସ୍ଥ୍ୟ' ଶବ୍ଦ ଆସିଛି) —ଏହି ସଂସ୍କୃତ ଶବ୍ଦର ବ୍ୟବହାର ହୋଇଥାଏ । 'ସ୍ୱସ୍ଥ' ଶବ୍ଦର ଅର୍ଥ—ସ୍ୱ ଅର୍ଥାତ୍ ଆତ୍ମାରେ ପ୍ରତିଷ୍ଠିତ ରହିବା । ହିନ୍ଦୁମାନେ କୌଣସି ଜିନିଷ ଦେଖିଥିବା କଥା ବୁଝାଇବା ଲାଗି କହିଥାନ୍ତି, 'ମୁଁ ଏକ ପଦାର୍ଥ ଦେଖିଛି ।' 'ପଦାର୍ଥ' ପଦ ବା ଶବ୍ଦର ଅର୍ଥ, ଅର୍ଥାତ୍ ଶବ୍ଦ-ପ୍ରତିପାଦ୍ୟ ଭାବବିଶେଷ । ଏପରିକି, ଏହି ଜଗତ୍-ପ୍ରପଞ୍ଚ ସେମାନଙ୍କ ନିକଟରେ ଏକ 'ପଦାର୍ଥ' (ଅର୍ଥାତ୍ ଶବ୍ଦର ଅର୍ଥ) । ***

ଜୀବନ୍ମୁକ୍ତ ପୁରୁଷର ଦେହ ଆପଣାଛାଏଁ ଶୁଭକାର୍ଯ୍ୟ କରିଥାଏ, ତା'ଦ୍ୱାରା ଅନ୍ୟାୟ କାର୍ଯ୍ୟ ହୁଏ ନାହିଁ । ତାହା କେବଳ ଶୁଭ କାର୍ଯ୍ୟ ହିଁ କରିପାରେ, କାରଣ ତାହା ସମ୍ପୂର୍ଣ୍ଣ ପବିତ୍ର ହୋଇଯାଇଛି । ଯେଉଁ ଅତୀତ ସଂସ୍କାରରୂପକ ବେଗଦ୍ୱାରା ସେମାନଙ୍କର ଦେହଚକ୍ର ପରିଚାଳିତ ହୋଇଥାଏ—ସେସବୁ ଶୁଭ ସଂସ୍କାର । ମନ୍ଦ ସଂସ୍କାରସବୁ ଦଗ୍ଧ ହୋଇ ଯାଇଛି । ***

'ଯଦଚ୍ୟୁତ-କଥାଲାପ-ରସ-ପୀୟୂଷ-ବର୍ଜିତମ୍
ତଦ୍ଦିନଂ ଦୁର୍ଦ୍ଦିନଂ ମନ୍ୟେ ମେଘାଚ୍ଛନ୍ନଂ ନ ଦୁର୍ଦ୍ଦିନମ୍ ॥'

—'ଯେଉଁ ଦିନ ଆମେ ଭଗବତ୍-ପ୍ରସଙ୍ଗ ନ କରୁ; ସେହି ଦିନକୁ ହିଁ ଯଥାର୍ଥ ଦୁର୍ଦ୍ଦିନ କୁହାଯାଏ; କିନ୍ତୁ ଯେଉଁ ଦିନ ମେଘ-ଝଡ଼-ବୃଷ୍ଟି ହୁଏ, ସେହି ଦିନକୁ ପ୍ରକୃତପକ୍ଷରେ ଦୁର୍ଦ୍ଦିନ କୁହାଯାଏ ନାହିଁ ।'

---

* ଗୀତା, ୧୪।୨୬

ସେହି ପରମ ପ୍ରଭୁଙ୍କ ପ୍ରତି ଶ୍ରଦ୍ଧାକୁ ଯଥାର୍ଥ 'ଭକ୍ତି' କୁହାଯାଏ । ଅନ୍ୟ କୌଣସି ପୁରୁଷ ପ୍ରତି ଶ୍ରଦ୍ଧାକୁ—ସେ ଯେତେ ବଡ଼ ହୁଅନ୍ତୁ ନା କାହିଁକି—'ଭକ୍ତି' କୁହାଯାଏ ନାହିଁ । ଏଠାରେ 'ପରମ ପ୍ରଭୁ' କହିଲେ ପରମେଶ୍ୱରଙ୍କୁ ବୁଝାଉଛି । ତୁମେ ପାଶ୍ଚାତ୍ୟ-ଦେଶରେ ବ୍ୟକ୍ତିସ୍ୱରୂପ-ଈଶ୍ୱର (Personal God) କହିଲେ ଯାହା ବୁଝ, ଭାରତରେ ପରମେଶ୍ୱରଙ୍କ ଧାରଣା ତା' ଅପେକ୍ଷା ବହୁ ଗୁଣରେ ଶ୍ରେଷ୍ଠ । 'ଯହିଁରୁ ଏହି ଜଗତ୍-ପ୍ରପଞ୍ଚର ଉତ୍ପତ୍ତି ହେଉଛି, ଯାହାଙ୍କଠାରେ ଏହାର ସ୍ଥିତି, ପୁଣି ପ୍ରଳୟକାଳରେ ଯାହାଙ୍କ-ଠାରେ ଏହାର ଲୟ ହୁଏ, ସେ ହିଁ ଈଶ୍ୱର—ନିତ୍ୟ, ଶୁଦ୍ଧ, ସର୍ବଶକ୍ତିମାନ୍, ସଦାମୁକ୍ତସ୍ୱଭାବ, ଦୟାମୟ, ସର୍ବଜ୍ଞ, ସମସ୍ତ ଗୁରୁଙ୍କ ଗୁରୁ, ଅନିର୍ବଚନୀୟ ପ୍ରେମସ୍ୱରୂପ ।'

ମନୁଷ୍ୟ ନିଜର ମସ୍ତିଷ୍କରୁ ଭଗବାନଙ୍କୁ ସୃଷ୍ଟି କରେ ନାହିଁ; ତେବେ ତାହାର ଯେତେଦୂର ଶକ୍ତି ସେ ସେହିଭାବରେ ତାଙ୍କୁ ଦେଖିପାରେ, ଓ ନିଜର ସବୁ ସର୍ବୋତ୍କୃଷ୍ଟ ଧାରଣା ତାଙ୍କଠାରେ ଆରୋପ କରେ । ଏହି ଗୋଟିଏ ଗୋଟିଏ ଗୁଣ ହିଁ ଈଶ୍ୱରଙ୍କ ସମସ୍ତ ଗୁଣ ଓ ଏହି ଗୋଟିଏ ଗୋଟିଏ ଗୁଣଦ୍ୱାରା ସବୁଗୁଣକୁ ବୁଝାଇବା ହିଁ ବାସ୍ତବିକ୍ ବ୍ୟକ୍ତି-ସ୍ୱରୂପ ଈଶ୍ୱରଙ୍କର (Personal God) ଦାର୍ଶନିକ ବ୍ୟାଖ୍ୟା । ଈଶ୍ୱର ନିରାକାର, ଅଥଚ ତାଙ୍କର ସବୁ ଆକାର ରହିଛି । ସେ ନିର୍ଗୁଣ, ପୁଣି ତାଙ୍କଠାରେ ସବୁ ଗୁଣ ରହିଛି । ଆମେ ଯେତେବେଳ ପର୍ଯ୍ୟନ୍ତ ମାନବଭାବାପନ୍ନ ରହିଛୁ, ସେପର୍ଯ୍ୟନ୍ତ ଈଶ୍ୱର, ପ୍ରକୃତି ଓ ଜୀବ—ଏହି ତନୋଟି ସତ୍ତା ଆମକୁ ଦେଖିବାକୁ ହୁଏ । ତାହା ନ ଦେଖି ରହିହେବ ନାହିଁ ।

କିନ୍ତୁ ଭକ୍ତପକ୍ଷରେ ଏହିସବୁ ଦାର୍ଶନିକ ପାର୍ଥକ୍ୟ କେବଳ ଅପ୍ରାସଙ୍ଗିକ କଥା ମାତ୍ର । ସେ ଯୁକ୍ତି-ବିଚାରକୁ ଆଦୌ ଗ୍ରହଣ କରେ ନାହିଁ, ସେ ବିଚାର କରେ ନାହିଁ—ସେ ଦେଖେ, ପ୍ରତ୍ୟକ୍ଷ ଅନୁଭବ କରେ । ସେ ଈଶ୍ୱରଙ୍କର ଶୁଦ୍ଧ ପ୍ରେମରେ ଆତ୍ମହରା ହୋଇ-ଯିବାକୁ ଚାହେଁ ଓ ଏଭଳି ଅନେକ ଭକ୍ତ ଅଛନ୍ତି, ଯେଉଁମାନେ କହନ୍ତି: ମୁକ୍ତି ଅପେକ୍ଷା ଏହି ଅବସ୍ଥା ଅଧିକତର ବାଞ୍ଛନୀୟ, ଯେଉଁମାନେ କହନ୍ତି, 'ଚିନି ହେବା ଭଲ ନୁହେଁ, ମନ, ଚିନି ଖାଇବାକୁ ଭଲ ପାଏ'—ମୁଁ ସେହି ପ୍ରେମାସ୍ପଦଙ୍କୁ ଭଲ ପାଇବାକୁ ଚାହେଁ, ତାଙ୍କୁ ସମ୍ଭୋଗ କରିବାକୁ ଚାହେଁ ।

ଭକ୍ତିଯୋଗରେ ପ୍ରଥମ ବିଶେଷ ପ୍ରୟୋଜନ ଏହି ଯେ, ଅକପଟଭାବରେ ଓ ପ୍ରବଳ ଭାବରେ ଈଶ୍ୱରଙ୍କର ଅଭାବବୋଧ କରିବା । ଆମେ ଈଶ୍ୱରଙ୍କ ଛଡ଼ା ଆଉ ସବୁ ଚାହୁଁ, କାରଣ ବହିର୍ଜଗତରୁ ହିଁ ଆମର ସମସ୍ତ ସାଧାରଣ ବାସନା ପୂର୍ଣ୍ଣ ହୋଇଥାଏ । ଯେତେ ଦିନ ଆମର ପ୍ରୟୋଜନ ବା ଅଭାବବୋଧ ଜଡ଼ଜଗତ୍ ଭିତରେ ସୀମାବଦ୍ଧ ଥାଏ, ସେତେ ଦିନ ଆମେ ଈଶ୍ୱରଙ୍କ ପାଇଁ କୌଣସି ଅଭାବ ବୋଧ କରୁ ନାହିଁ; କିନ୍ତୁ ଯେତେ-ବେଳେ ଆମେ ଏହି ଜୀବନରେ ଚାରିଆଡ଼ୁ ପ୍ରବଳ ଧକ୍କା ଖାଉ ଓ ଇହଜଗତର ସବୁ ବିଷୟରେ ନିରାଶ ହେଉ, ସେତେବେଳେ ହିଁ ଉଚ୍ଚତର କୌଣସି ବସ୍ତୁ ପାଇଁ ଆମର ପ୍ରୟୋଜନବୋଧ ହୋଇଥାଏ, ସେତେବେଳେ ଆମେ ଭଗବାନଙ୍କୁ ଅନ୍ୱେଷଣ କରିଥାଉଁ ।

ଭକ୍ତି ଆମର କୌଣସି ବୃତ୍ତିକୁ ଭାଙ୍ଗି ଚୂରମାର କରେ ନାହିଁ, ବରଂ ଭକ୍ତିଯୋଗର

ଶିକ୍ଷା ଏହି ଯେ, ଆମର ସମସ୍ତ ବୃତ୍ତିଗୁଡ଼ିକ ମୁକ୍ତିଲାଭ କରିବାର ଉପାୟସ୍ୱରୂପ ହୋଇ-ପାରେ । ଏହିସବୁ ବୃତ୍ତିଗୁଡ଼ିକୁ ହିଁ ଈଶ୍ୱରାଭିମୁଖୀ କରିବାକୁ ହେବ—ସାଧାରଣତଃ ଯେଉଁ ଶ୍ରଦ୍ଧାକୁ ଅନିତ୍ୟ ଇନ୍ଦ୍ରିୟ-ବିଷୟରେ ଦିଆ ହୋଇଥାଏ, ସେହି ଶ୍ରଦ୍ଧା ଈଶ୍ୱରଙ୍କୁ ଦେବାକୁ ହେବ ।

ତୁମର ପାଶ୍ଚାତ୍ୟ ଧର୍ମର ଧାରଣାରୁ ଭକ୍ତିର ଏହି ଟିକକ ପ୍ରଭେଦ ଯେ, ଭକ୍ତିରେ ଭୟର ସ୍ଥାନ ନାହିଁ—ଭକ୍ତିଦ୍ୱାରା କୌଣସି ପୁରୁଷର କ୍ରୋଧ ଶାନ୍ତ ବା କାହାକୁ ସନ୍ତୁଷ୍ଟ କରିହେବ ନାହିଁ । ଏପରିକି, ଏଭଳି ଭକ୍ତ ମଧ୍ୟ ଅଛନ୍ତି, ଯେଉଁମାନେ ଈଶ୍ୱରଙ୍କୁ ନିଜର ସନ୍ତାନ ରୂପରେ ଉପାସନା କରିଥାଆନ୍ତି—ଏଭଳି ଉପାସନାର ଉଦ୍ଦେଶ୍ୟ ଏହି ଯେ, ଏହି ଉପାସନାରେ ଭୟ ବା ଭୟମିଶ୍ର ଭକ୍ତିର କୌଣସି ଭାବ ନ ଥାଏ । ପ୍ରକୃତ ଭଲ ପାଇବାରେ ଭୟ ରହି ନ ପାରେ ଓ ଯେପର୍ଯ୍ୟନ୍ତ ଟିକିଏ ମାତ୍ର ଭୟ ଥିବ, ସେପର୍ଯ୍ୟନ୍ତ ଭକ୍ତିର ଆରମ୍ଭ ସୁଦ୍ଧା ହୋଇପାରିବ ନାହିଁ । ପୁଣି ଭକ୍ତିରେ ଭଗବାନଙ୍କ ନିକଟରେ ଭିକ୍ଷା ଚାହିଁବା ଅଥବା ତାଙ୍କ ସଙ୍ଗେ ଦେବାନେବା ଭାବ କିଛି ନାହିଁ । ଭଗବାନଙ୍କ ନିକଟରେ କୌଣସି କିଛି ପାଇଁ ପ୍ରାର୍ଥନା ଭକ୍ତଦୃଷ୍ଟିରେ ମହା-ଅପରାଧ । ଭକ୍ତ କେବେହେଲେ ଭଗବାନଙ୍କ ନିକଟରେ ଆରୋଗ୍ୟ ବା ଐଶ୍ୱର୍ଯ୍ୟ ଏପରିକି ସ୍ୱର୍ଗ ପର୍ଯ୍ୟନ୍ତ କାମନା କରନ୍ତି ନାହିଁ ।

ଯେ ଭଗବାନଙ୍କୁ ଭଲ ପାଇବାକୁ ଚାହାଁନ୍ତି, ଭକ୍ତ ହେବାକୁ ଚାହାଁନ୍ତି, ତାଙ୍କୁ ଏହିସବୁ ବାସନାଗୁଡ଼ିକୁ ଗୋଟିଏ ବୁଜୁଲାରେ ବାନ୍ଧି ଦରଜା ବାହାରେ ପକାଇ ଦେଇ ଭିତରେ ପ୍ରବେଶ କରିବାକୁ ହେବ । ଯିଏ ସେହି ଜ୍ୟୋତିଃ-ରାଜ୍ୟରେ ପ୍ରବେଶ କରିବାକୁ ଚାହାଁନ୍ତି, ତାହାଙ୍କୁ ଏହି ଦରଜା ଭିତରେ ପ୍ରବେଶ କରିବାପୂର୍ବରୁ ଦୋକାନଦାରି ଧର୍ମର ବୁଜୁଲା ବାହାରେ ପକାଇ ଆସିବାକୁ ହେବ । ମୁଁ ଏହା କହୁ ନାହିଁ ଯେ, ଭଗବାନଙ୍କ ନିକଟରେ ଯେଉଁ ପ୍ରାର୍ଥନା କରାଯାଏ, ତାହା ମିଳେ ନାହିଁ—ସବୁ କିଛି ମିଳେ; କିନ୍ତୁ ଏଭଳି ପ୍ରାର୍ଥନା କରିବା ଅତି ନୀଚସ୍ତରର ଧର୍ମ, ଭିକାରିର ଧର୍ମ ।

'ଉଷିତ୍ୱା ଜାହ୍ନବୀତୀରେ କୂପଂ ଖନତି ଦୁର୍ମତିଃ ।'

—ସେହି ବ୍ୟକ୍ତି ବାସ୍ତବରେ ମୂର୍ଖ, ଯେ ଗଙ୍ଗାତୀରରେ ବାସ କରି ପାଣି ପାଇଁ କୂଅ ଖୋଳେ ।

ଏହି ସବୁ ଆରୋଗ୍ୟ, ଐଶ୍ୱର୍ଯ୍ୟ ଓ ଐହିକ ଅଭ୍ୟୁଦୟ ପାଇଁ ପ୍ରାର୍ଥନାକୁ ଭକ୍ତି କୁହାଯାଏ ନାହିଁ—ଏଗୁଡ଼ିକ ଅତି ନୀଚସ୍ତରର କର୍ମ । ଭକ୍ତି ଏହା ଅପେକ୍ଷା ଉଚ୍ଚ ଜିନିଷ । ଆମେ ରାଜରାଜଙ୍କ ପାଖରେ ଯିବା ପାଇଁ ଚେଷ୍ଟା କରୁଛୁ । ଆମେ ସେଠାକୁ ଭିକ୍ଷୁକବେଶରେ ଯାଇ ନ ପାରୁ । ଯଦି ଆମେ କୌଣସି ମହାରାଜଙ୍କ ସମ୍ମୁଖରେ ଉପସ୍ଥିତ ହେବାକୁ ଇଚ୍ଛା କରୁ, ଭିକାରି ପରି ଛିଣ୍ଡା ମଇଳା ଲୁଗା ପିନ୍ଧି ଗଲେ ସେଠାରେ କଅଣ ପ୍ରବେଶ କରିବାକୁ ଦେବେ ? କଦାପି ନୁହେଁ । ଦ୍ୱାରୀ ଆମକୁ ଫାଟକରୁ ବାହାର କରିଦେବ । ଭଗବାନ୍ ରାଜାମାନଙ୍କର ରାଜା—ଆମେ ତାଙ୍କ ସମ୍ମୁଖକୁ କେବେ ହେଲେ ଭିକ୍ଷୁକବେଶରେ ଯାଇ

ପାରିବା ନାହିଁ । ଦୋକାନଦାରଙ୍କର ସେଠାରେ ପ୍ରବେଶାଧିକାର ନାହିଁ—ସେଠାରେ କିଣାବିକା ଏକାବେଳକେ ଚାଲିବ ନାହିଁ । ତୁମେ ବାଇବେଲରେ ପଢ଼ିଛ, ଯୀଶୁ କେତା-ବିକେତାମାନଙ୍କୁ ମନ୍ଦିରରୁ ବାହାର କରିଦେଇଥିଲେ ।

ସୁତରାଂ କହିବା ବାହୁଲ୍ୟ ଯେ, ଭକ୍ତ ହେବା ପାଇଁ ଆମର ପ୍ରଥମ କାର୍ଯ୍ୟ ହେଉଛି, ସ୍ୱର୍ଗାଦିର କାମନା ଏକାବେଳକେ ଦୂର କରିଦେବା । ଏପରି ସ୍ୱର୍ଗ ଏହି ସ୍ଥାନ, ଏହି ପୃଥିବୀ ସଦୃଶ, ନୋଚେତ୍ ଏହା ଅପେକ୍ଷା ଟିକିଏ ଭଲ । ଖ୍ରୀଷ୍ଟିଆନଙ୍କ ସ୍ୱର୍ଗଧାରଣା ଏହି ଯେ, ତାହା ଗୋଟିଏ ତୀବ୍ର ଭୋଗର ସ୍ଥାନ । ତାହା କିପରି ଭଗବାନ ହୋଇପାରେ ? ସ୍ୱର୍ଗକୁ ଯିବାର ସମସ୍ତ ବାସନା—କେବଳ ଭୋଗସୁଖର ହିଁ କାମନା । ଏହି ବାସନାକୁ ତ୍ୟାଗ କରିବାକୁ ହେବ । ଭକ୍ତର ଭଲ ପାଇବା ସଂପୂର୍ଣ୍ଣ ବିଶୁଦ୍ଧ ଓ ନିଃସ୍ୱାର୍ଥ ହେବା ଦରକାର—ନିଜ ପାଇଁ ଇହଲୋକରେ ବା ପରଲୋକରେ କୌଣସି ଆକାଙ୍‌କ୍ଷା ରହିବ ନାହିଁ ।

ସୁଖଦୁଃଖ, ଲାଭକ୍ଷତି—ଏ ସମସ୍ତର ବାସନା ତ୍ୟାଗ କରି ଦିନରାତି ଈଶ୍ୱରୋପାସନା କର—ଗୋଟିଏ ମୁହୂର୍ତ୍ତ ମଧ୍ୟ ଯେପରି ବୃଥା ନଷ୍ଟ ନ ହୁଏ ।

ଅନ୍ୟସବୁ ଚିନ୍ତା ତ୍ୟାଗ କରି ଦିନରାତି ସର୍ବାନ୍ତଃକରଣରେ ଈଶ୍ୱରଙ୍କର ଉପାସନା କର । ଏହିପରି ଦିନରାତି ଉପାସିତ ହେଲେ ସେ ନିଜର ସ୍ୱରୂପ ପ୍ରକାଶ କରନ୍ତି; ଉପାସକମାନେ ଯେପରି ତାଙ୍କୁ ଅନୁଭବ କରିବେ ସେଥିପାଇଁ ସେମାନଙ୍କୁ ଶକ୍ତି ଦିଅନ୍ତି ।

**ଗୁରୁବାର, ପହିଲା ଅଗଷ୍ଟ**

ସେ ହିଁ ପ୍ରକୃତ ଗୁରୁ, ଆମେ ଯାହାଙ୍କର ଆଧ୍ୟାତ୍ମିକତାର ଉତ୍ତରାଧିକାରୀ । ସେ ହିଁ ସେହି ପ୍ରଣାଳୀ, ଯାହାଙ୍କ ମଧ୍ୟଦେଇ ଆଧ୍ୟାତ୍ମିକପ୍ରବାହ ଆମ ଭିତରେ ପ୍ରବାହିତ ହୁଏ । ସେ ହିଁ ସମଗ୍ର ଆଧ୍ୟାତ୍ମିକ-ଜଗତ୍ ସହିତ ଆମର ସଂଯୋଗ-ସୂତ୍ରସ୍ୱରୂପ । ବ୍ୟକ୍ତିବିଶେଷ ଉପରେ ଅତିରିକ୍ତ ବିଶ୍ୱାସରୁ ଦୁର୍ବଳତା ଓ ଅନ୍ତଃସାରଶୂନ୍ୟ ବହିଃପୂଜା ଆସିପାରେ; କିନ୍ତୁ ଗୁରୁଙ୍କ ପ୍ରତି ପ୍ରବଳ ଅନୁରାଗରେ ଅତି ଦ୍ରୁତ ଉନ୍ନତି ସମ୍ଭବପର ହୁଏ, ସେ ଆମ ଭିତରର ଗୁରୁଙ୍କ ସହିତ ଆମର ସଂଯୋଗବିଧାନ କରନ୍ତି । ଯଦି ତୁମ ଗୁରୁଙ୍କ ଭିତରେ ଯଥାର୍ଥ ସତ୍ୟ ଥାଏ, ତେବେ ତାଙ୍କୁ ଆରାଧନା କର, ଏହି ଗୁରୁଭକ୍ତି ହିଁ ତୁମକୁ ଅତିଶୀଘ୍ର ଚରମ ଅବସ୍ଥାକୁ ନେଇଯିବ ।

ଶ୍ରୀରାମକୃଷ୍ଣ ଶିଶୁପରି ପବିତ୍ରସ୍ୱଭାବ ଥିଲେ । ସେ ଜୀବନରେ କେବେହେଲେ ଟଙ୍କା ପଇସା ଛୁଇଁ ନାହାନ୍ତି ଓ ତାଙ୍କ ଭିତରେ କାମ ପୁରାପୁରି ନଷ୍ଟ ହୋଇଯାଇଥିଲା । ବଡ ବଡ଼ ଧର୍ମାଚାର୍ଯ୍ୟମାନଙ୍କ ନିକଟକୁ ଜଡ଼ ବିଜ୍ଞାନ ଶିଖିବାକୁ ଯାଅ ନାହିଁ, ସେମାନଙ୍କର ସମଗ୍ର ଶକ୍ତି ଆଧ୍ୟାତ୍ମିକ ବିଷୟରେ ପ୍ରଯୁକ୍ତ ହୋଇଛି । ଶ୍ରୀରାମକୃଷ୍ଣ ପରମହଂସଙ୍କ ଭିତରର ମନୁଷ୍ୟଭାବଟି ମରି ଯାଇଥିଲା, କେବଳ ଈଶ୍ୱରତ୍ୱ ଅବଶିଷ୍ଟ ଥିଲା । ବାସ୍ତବିକ ସେ ପାପ ଦେଖିବାକୁ ପାଉ ନ ଥିଲେ—ଯେଉଁ ଆଖିରେ ବହିର୍ଜଗତରେ ପାପ-ଦର୍ଶନ ହୁଏ, ତାହା ଅପେକ୍ଷା ତାଙ୍କର ଦୃଷ୍ଟି ପବିତ୍ରତର ଥିଲା । ଏହିପରି ଅଳ୍ପ କେତେଜଣ ପରମହଂସଙ୍କର ପବିତ୍ରତା ହିଁ ସମଗ୍ର ଜଗତକୁ ଧାରଣ କରି ରଖିଛି । ଯଦି ଏମାନେ ସମସ୍ତେ ଲୁପ୍ତ ହୋଇ

ଯିବେ, ସମସ୍ତେ ଯଦି ଜଗତକୁ ତ୍ୟାଗ କରିଯିବେ, ତେବେ ଜଗତ୍ ଖଣ୍ଡ ଖଣ୍ଡ ହୋଇ ଧ୍ୱଂସ ପାଇଯିବ । ସେମାନେ କେବଳ ନିଜେ ମହାନ୍ ପବିତ୍ର ଜୀବନଯାପନ କରି ଲୋକଙ୍କର କଲ୍ୟାଣ ବିଧାନ କରନ୍ତି; କିନ୍ତୁ ସେମାନେ ଯେ ଅନ୍ୟର ମଙ୍ଗଳ କରୁଛନ୍ତି, ତାହା ସେମାନେ ଆଦୌ ଜାଣିପାରନ୍ତି ନାହିଁ; ସେମାନେ ନିଜେ ଆଦର୍ଶ ଜୀବନଯାପନ କରି ସନ୍ତୁଷ୍ଟ ଥାଆନ୍ତି ।

****

ଆମ ଭିତରେ ଯେଉଁ ଜ୍ଞାନ-ଜ୍ୟୋତିଃ ନିହିତ ରହିଛି, ଶାସ୍ତ୍ର ତାହାର ଆଭାସ ଦେଇଥାଏ ଓ ତାହାକୁ ଅଭିବ୍ୟକ୍ତ କରିବାର ଉପାୟ କହିଦିଏ; କିନ୍ତୁ ଆମେ ଯେତେବେଳେ ନିଜେ ସେହି ଜ୍ଞାନ ଲାଭ କରୁ, ସେତେବେଳେ ହିଁ ଆମେ ଯଥାଯଥଭାବରେ ଶାସ୍ତ୍ର ବୁଝିପାରୁ । ଯେତେବେଳେ ତୁମ ଭିତରେ ସେହି ଅନ୍ତର୍ଜ୍ୟୋତିଃ ପ୍ରକାଶିତ ହୁଏ, ସେତେବେଳେ ଆଉ ଶାସ୍ତ୍ରର କଅଣ ପ୍ରୟୋଜନ ? —ସେତେବେଳେ କେବଳ ଅନ୍ତରକୁ ଦୃଷ୍ଟିପାତ କର । ସମସ୍ତ ଶାସ୍ତ୍ରରେ ଯାହା ଅଛି, ତୁମର ନିଜ ଭିତରେ ହିଁ ତାହା ଅଛି, ବରଂ ତାହା ଅପେକ୍ଷା ହଜାର ଗୁଣ ବେଶୀ ଅଛି । ନିଜ ଉପରୁ କେବେହେଲେ ବିଶ୍ୱାସ ହରାଅ ନାହିଁ, ଏହି ଜଗତରେ ତୁମେ ସବୁ କରିପାର । କେବେହେଲେ ନିଜକୁ ଦୁର୍ବଳ ମନେକର ନାହିଁ । ସବୁଶକ୍ତି ତୁମ ଭିତରେ ରହିଛି ।

ପ୍ରକୃତ ଧର୍ମ ଯଦି ଶାସ୍ତ୍ର ଉପରେ ବା କୌଣସି ମହାପୁରୁଷଙ୍କର ଅସ୍ତିତ୍ୱ ଉପରେ ନିର୍ଭର କରେ, ତେବେ ଚୁଲିକି ଯାଉ ସବୁଧର୍ମ, ନଷ୍ଟ ହୋଇ ଯାଉ ସବୁ ଶାସ୍ତ୍ର । ଧର୍ମ ଆମ ନିଜ ଭିତରେ ରହିଛି । କୌଣସି ଶାସ୍ତ୍ର ବା କୌଣସି ଗୁରୁ ତାଙ୍କୁ ଲାଭ କରିବା ପାଇଁ ଆମକୁ ସାହାଯ୍ୟ ଭିନ୍ନ ଆଉ କିଛି କରିପାରନ୍ତି ନାହିଁ । ଏପରିକି ଏମାନଙ୍କ ବିନା ସାହାଯ୍ୟରେ ମଧ୍ୟ ଆମେ ନିଜ ଭିତରେ ସବୁ ସତ୍ୟ ଲାଭ କରିପାରୁ । ତଥାପି ଶାସ୍ତ୍ର ଓ ଆଚାର୍ଯ୍ୟମାନଙ୍କ ପ୍ରତି କୃତଜ୍ଞ ହୁଅ, କିନ୍ତୁ ଏମାନେ ଯେପରି ତୁମକୁ ବନ୍ଧ ନ କରନ୍ତି; ତୁମର ଗୁରୁଙ୍କୁ ଈଶ୍ୱର ବୋଲି ଉପାସନା କର, କିନ୍ତୁ ଅନ୍ଧଭାବରେ ତାଙ୍କୁ ଅନୁସରଣ କର ନାହିଁ । ତାଙ୍କୁ ଯେତେଦୂର ସମ୍ଭବ ଭଲ ପାଅ, କିନ୍ତୁ ସ୍ୱାଧୀନଭାବରେ ଚିନ୍ତା କର । କୌଣସି ପ୍ରକାର ଅନ୍ଧବିଶ୍ୱାସ ତୁମକୁ ମୁକ୍ତି ଦେଇପାରିବ ନାହିଁ । ତୁମେ ନିଜେ ହିଁ ନିଜର ମୁକ୍ତି ସାଧନ କର । ଈଶ୍ୱରଙ୍କ ସମ୍ପର୍କରେ କେବଳ ଏହିମାତ୍ର ଧାରଣା ରଖ ଯେ, ସେ ଆମର ନିତ୍ୟ ସହାୟ ।

ସ୍ୱାଧୀନତାର ଭାବ ଓ ଉଚ୍ଚତମ ପ୍ରେମ – ଉଭୟ ହିଁ ଏକ ସଙ୍ଗରେ ରହିବା ଉଚିତ, ତା'ହେଲେ ଏମାନଙ୍କ ମଧ୍ୟରେ କୌଣସିଟି ଆମ ବନ୍ଧନର କାରଣ ହୋଇପାରିବ ନାହିଁ । ଆମେ ଭଗବାନଙ୍କୁ କିଛି ଦେଇପାରିବା ନାହିଁ, ସେ ଆମକୁ ସବୁ ଦେଇଥାଆନ୍ତି । ସେ ସମସ୍ତ ଗୁରୁଙ୍କର ଗୁରୁ । ସେ ଆମ ଆତ୍ମାର ଆତ୍ମା, ଆମର ଯଥାର୍ଥ ସ୍ୱରୂପ । ଯେତେବେଳେ ସେ ଆମ ଆତ୍ମାର ଅନ୍ତରାତ୍ମା, ସେତେବେଳେ ଆମେ ଯେ ତାଙ୍କୁ ଭଲ ପାଇବା, ଏଥିରେ ଆଶ୍ଚର୍ଯ୍ୟ ହେବାର କଅଣ ଅଛି ? ଅନ୍ୟ କୌଣସି ବସ୍ତୁକୁ ଆମେ କଅଣ ଭଲ ପାଇପାରୁ ? ଆମର 'ଦଗ୍‌ଧେନ୍ଧନମିବାନଳମ୍'—ସ୍ଥିର ଅଗ୍ନିଶିଖା ହେବା ଉଚିତ । ଯେତେବେଳେ ତୁମେ କେବଳ ବ୍ରହ୍ମକୁ ଦେଖିବ, ସେତେବେଳେ ଆଉ କାହାର ବା ଉପକାର କରିପାରିବ ?

ତୁମେ ତ ଆଉ ଭଗବାନଙ୍କର ଉପକାର କରିପାରିବ ନାହିଁ ! ସେତେବେଳେ ସବୁ ଫଳସ୍ପୃହା ଚାଲିଯାଏ, ସର୍ବତ୍ର ସମବୁଦ୍ଧି ଭାବ ଆସେ । ସେତେବେଳେ ଯଦି କାହାରି କଲ୍ୟାଣ କର, ତା'ହେଲେ ନିଜର ହିଁ କଲ୍ୟାଣ କରିବ । ଏହା ଅନୁଭବ କର ଯେ, ଦାନଗ୍ରହୀତା ତୁମଠାରୁ ଶ୍ରେଷ୍ଠ । ତୁମେ ଯେ ତାହାର ସେବା କରୁଛ ତାହାର କାରଣ—ତୁମେ ତାହାଠାରୁ ଶ୍ରେଷ୍ଠ; ଏହା ନୁହେଁ ଯେ, ତୁମେ ବଡ଼ ଓ ସେ ଶ୍ରେଷ୍ଠ । ଗୋଲାପ ଯେପରି ନିଜ ସ୍ୱଭାବରୁ ହିଁ ସୁଗନ୍ଧ ବିତରଣ କରେ ଓ ସୁଗନ୍ଧ ଦେଉଛି ବୋଲି ସେ ନିଜେ ଜାଣିପାରେ ନାହିଁ, ତୁମେ ମଧ୍ୟ ସେହିଭାବରେ ଦାନ କର ।

ସେହି ଶ୍ରେଷ୍ଠ ହିନ୍ଦୁସଂସ୍କାରକ ରାଜା ରାମମୋହନ ରାୟ ଏହିପରି ନିଃସ୍ୱାର୍ଥ କର୍ମର ଅଦ୍ଭୁତ ଦୃଷ୍ଟାନ୍ତସ୍ୱରୂପ । ସେ ଭାରତର ସାହାଯ୍ୟ ପାଇଁ ନିଜ ଜୀବନକୁ ଉତ୍ସର୍ଗ କରିଥିଲେ । ସେ ସତୀଦାହପ୍ରଥା ବନ୍ଦ କରିଥିଲେ । ସାଧାରଣତଃ ଲୋକଙ୍କର ବିଶ୍ୱାସ, ଏହି ସଂସ୍କାରକାର୍ଯ୍ୟ ସମ୍ପୂର୍ଣ୍ଣରୂପେ ଇଂରେଜମାନଙ୍କଦ୍ୱାରା ସାଧିତ ହୋଇଥିଲା; କିନ୍ତୁ ପ୍ରକୃତରେ ତାହା ନୁହେ । ରାଜା ରାମମୋହନ ରାୟ ହିଁ ଏହି ପ୍ରଥା ବିରୋଧରେ ଆନ୍ଦୋଳନ ଆରମ୍ଭ କରିଥିଲେ ଓ ଏହା ରହିତ କରିବା ଲାଗି ସରକାରଙ୍କ ସହାୟତା ଲାଭରେ କୃତକାର୍ଯ୍ୟ ହୋଇଥିଲେ । ସେ ଆନ୍ଦୋଳନ ଆରମ୍ଭ କରିବା ପୂର୍ବରୁ ଇଂରେଜମାନେ କିଛି କରି ନ ଥିଲେ । ସେ ସେ 'ବ୍ରାହ୍ମ-ସମାଜ' ନାମରେ ବିଖ୍ୟାତ ଧର୍ମସମାଜ ପ୍ରତିଷ୍ଠା କରିଥିଲେ ଓ ଏକ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପାଇଁ ତିନିଲକ୍ଷ ଟଙ୍କା ଚାନ୍ଦା ଦେଇଥିଲେ । ତା'ପରେ ସେ ଅପସରି ଗଲେ ଓ କହିଲେ, 'ତୁମେମାନେ ମୋତେ ଛାଡ଼ି ନିଜେ ଆଗେଇ ଯାଅ ।' ସେ ଆଦୌ ନାମଯଶ ଚାହୁଁ ନ ଥିଲେ, ନିଜ ପାଇଁ କୌଣସି ପ୍ରକାର ଫଳର ଆକାଙ୍କ୍ଷା କରୁ ନ ଥିଲେ ।

**ଗୁରୁବାର, ଅପରାହ୍ନ**

ଜଗତ୍-ପ୍ରପଞ୍ଚ ଅନନ୍ତଭାବରେ ଅଭିବ୍ୟକ୍ତ ହୋଇ କ୍ରମାଗତ ଚାଲିଛି—ଠିକ୍ ନାଗର-ଦୋଳାପରି—ଆତ୍ମା ଯେପରି ଏହି ନାଗରଦୋଳା ବା ଚକ୍ରଦୋଳାରେ ଚଢ଼ି ଘୂରୁଛି । ଏହି କ୍ରମ ଚିରନ୍ତନ । ଜଣେ ଜଣେ ଲୋକ ଏହି ନାଗରଦୋଳାରୁ ଓହ୍ଲାଇ ପଡ଼ୁଛନ୍ତି ସତ, କିନ୍ତୁ ନାଗରଦୋଳା ବୁଲିବାରେ ବିରାମ ନାହିଁ; ସେହି ଏକପ୍ରକାର ଘଟଣା ହିଁ ପୁନଃ ପୁନଃ ଚାଲିଛି ଏବଂ ଏହି କାରଣରୁ ହିଁ ଲୋକମାନଙ୍କର ଭୂତ ଭବିଷ୍ୟତ ସବୁ କୁହାଯାଇପାରେ; କାରଣ ପ୍ରକୃତପକ୍ଷରେ ସବୁକିଛି ତ ବର୍ତ୍ତମାନ । ଯେତେବେଳେ ଆତ୍ମା ଗୋଟିଏ ଶୃଙ୍ଖଳ ଭିତରେ ଆସି ପଡ଼େ, ସେତେବେଳେ ତାହାକୁ ସେହି ଶୃଙ୍ଖଳର ଯାହାକିଛି ଅଭିଜ୍ଞତା, ତାହା ଭିତର ଦେଇ ଯିବାକୁ ପଡ଼ିବ । ଏହିପରି ଏକ ଶୃଙ୍ଖଳ ବା ଶ୍ରେଣୀରୁ ଆତ୍ମା ଆଉ ଏକ ଶୃଙ୍ଖଳ ବା ଶ୍ରେଣୀକୁ ଚାଲିଯାଏ, ଏବଂ ଅନ୍ୟ କୌଣସି ଶ୍ରେଣୀକୁ ଆସିଲେ ନିଜର ବ୍ରହ୍ମସ୍ୱରୂପ ଅନୁଭବ କରି ଦେଇଥିରୁ ଏକାବେଳକେ ବାହାରିଯାଏ । ଏହିପରି ଶ୍ରେଣୀ ବା ଶୃଙ୍ଖଳ-ବିଶେଷର ଏକ ପ୍ରଧାନ ଘଟଣାକୁ ଅବଲମ୍ବନ କରି ସମୁଦାୟ ଶୃଙ୍ଖଳାକୁ ହିଁ ଟାଣି ଅଣାଯାଇପାରେ ଓ ତା' ଭିତରେ ସମସ୍ତ ଘଟଣାକୁ ଯଥାଯଥ ଅନୁଧାନ କରାଯାଇପାରେ । ଏହି ଶକ୍ତି ସହଜରେ ଲାଭ କରାଯାଇପାରେ; କିନ୍ତୁ ଏଥିରେ ବାସ୍ତବିକ କୌଣସି ଲାଭ ନାହିଁ ।

ଏହି ଶକ୍ତିଲାଭ ପାଇଁ ଯେଉଁ ଚେଷ୍ଟା କରାଯାଏ, ତଦ୍ୱାରା ଆମର ସମସ୍ତ ପରିମାଣ ଆଧ୍ୟାତ୍ମିକ ଶକ୍ତି ବ୍ୟୟିତ ହୋଇଯାଏ । ସୁତରାଂ ସେହିସବୁ ବିଷୟରେ ଚେଷ୍ଟା କର ନାହିଁ, ଭଗବାନଙ୍କର ଉପାସନା କର ।

ଶୁକ୍ରବାର, ୨ ଅଗଷ୍ଟ

ଭଗବତ୍-ଉପଲବ୍ଧି କରିବାକୁ ଗଲେ ପ୍ରଥମେ ନିଷ୍ଠା ଆବଶ୍ୟକ ।

'ସବସେ ରସିଏ ସବ୍‌ସେ ବସିଏ ସବ୍‌କା ଲିଜିଏ ନାମ୍ ।
ହାଁ'ଜୀ ହାଁ'ଜୀ କର୍‌ତେ ରହିଏ ବୈଠିୟେ ଆପନା ଠାମ୍ ॥'

—'ସମସ୍ତଙ୍କ ସହିତ ଆନନ୍ଦ କର, ସମସ୍ତଙ୍କ ସହିତ ବସ, ସମସ୍ତଙ୍କ ନାମ ନିଅ, ଅନ୍ୟର କଥାରେ ହଁ ହଁ କରୁଥାଅ; କିନ୍ତୁ ନିଜର ଭାବ କଦାପି ଛାଡ଼ ନାହିଁ ।' ଏହା ଅପେକ୍ଷା ଉଚ୍ଚତର ଅବସ୍ଥା—ଅପରର ଭାବରେ ନିଜକୁ ଯଥାର୍ଥ ଭାବିତ କରିବା । ଯଦି ମୁଁ ହିଁ ସବୁ ହୋଇଥାଏଁ, ତେବେ ମୋର ଭାଇ ସହିତ ଯଥାର୍ଥଭାବରେ ଏବଂ କାର୍ଯ୍ୟତଃ ସହାନୁଭୂତି କରିପାରିବି ନାହିଁ କାହିଁକି ? ଯେପର୍ଯ୍ୟନ୍ତ ମୁଁ ଦୁର୍ବଳ, ସେପର୍ଯ୍ୟନ୍ତ ମୋତେ ନିଷ୍ଠାର ସହିତ ଏକ ରାସ୍ତା ଧରି ରହିବାକୁ ହେବ; କିନ୍ତୁ ଯେତେବେଳେ ମୁଁ ସବଳ ହେବି, ସେତେବେଳେ ମୁଁ ଅନ୍ୟ ସମସ୍ତଙ୍କ ଭଳି ଅନୁଭବ କରିପାରିବି, ଅନ୍ୟ ସମସ୍ତଙ୍କ ସହିତ ସମ୍ପୂର୍ଣ୍ଣ ସହାନୁଭୂତି କରିପାରିବି ।

ପ୍ରାଚୀନ କାଳର ଲୋକଙ୍କର ଧାରଣା ଥିଲା—'ଅନ୍ୟ ସବୁ ଭାବ ନଷ୍ଟ କରି ଗୋଟିଏ ଭାବକୁ ପ୍ରବଳ କର ।' ଆଧୁନିକ ଭାବ ହେଉଛି—'ସମସ୍ତ ବିଷୟରେ ସାମଞ୍ଜସ୍ୟ ରଖି ଉନ୍ନତି କର' । ଏକ ତୃତୀୟ ପନ୍ଥା ହେଉଛି—'ମନର ବିକାଶ କରିବା ଓ ତାହାକୁ ସଂଯତ କରିବା, ତା'ପରେ ଯେଉଁଠି ଇଚ୍ଛା ତାହାକୁ ପ୍ରୟୋଗ କରିବା—ସେଥିରେ ଅତିଶୀଘ୍ର ଫଳ ହେବ । ଏହା ହେଉଛି ଯଥାର୍ଥ ଆତ୍ମା-ଉନ୍ନତିର ଉପାୟ । ଏକାଗ୍ରତା ଶିକ୍ଷା କର ଓ ଯେଉଁ ଦିଗରେ ଇଚ୍ଛା ତାହାକୁ ପ୍ରୟୋଗ କର । ଏଭଳି କଲେ ତୁମକୁ କିଛି ହରାଇବାକୁ ପଡ଼ିବ ନାହିଁ । ଯେ ସବୁଟିକ ପାଏ, ସେ ଅଂଶଟି ମଧ୍ୟ ପାଏ । ଦ୍ୱୈତବାଦ ଅଦ୍ୱୈତବାଦର ଅନ୍ତର୍ଭୁକ୍ତ ।

'ମୁଁ ପ୍ରଥମେ ତାଙ୍କୁ ଦେଖିଲି, ସେ ମଧ୍ୟ ମୋତେ ଦେଖିଲେ; ମୁଁ ତାଙ୍କ ପ୍ରତି କଟାକ୍ଷ କଲି, ସେ ମଧ୍ୟ ମୋ ପ୍ରତି କଟାକ୍ଷ କଲେ'—ଏହିପରି ଚାଲିବାକୁ ଲାଗିଲା । ଶେଷରେ ଦୁଇଟି ଆତ୍ମା ଏପରି ସମ୍ପୂର୍ଣ୍ଣଭାବରେ ମିଳିତ ହୋଇଗଲେ ଯେ, ସେମାନେ ପ୍ରକୃତରେ ଏକ ହୋଇଗଲେ ।'*

ଦୁଇପ୍ରକାର ସମାଧି ଅଛି: ଗୋଟିଏ ହେଉଛି ସବିକଳ୍ପ—ଏଥିରେ ନିଜର ଓ

* ତୁଳନୀୟ : ପହିଲହି ରାଗ ନୟନଭଙ୍ଗ ଭେଲ ।
ଅନୁଦିନ ବାଢ଼ଲ ଅବଧି ନା ଗେଲ ।...
ଦୁହୁଁ ମନ ମନୋଭବ ପେଶଲ ଜାନି ।
—ଶ୍ରୀଚୈତନ୍ୟଚରିତାମୃତ, ମଧ୍ୟଲୀଳା

ବାହାର ବସ୍ତୁରୁ ଧ୍ୟାନ କରାଯାଏ । ଆଉ ଏକ ପ୍ରକାର ହେଉଛି— ନିର୍ବିକଳ୍ପ ଧ୍ୟାନରେ ଧ୍ୟାତା ଓ ଧ୍ୟେୟ ଅଭେଦ ହୋଇଯାଆନ୍ତି ।

ପ୍ରତ୍ୟେକ ବିଶେଷ ବିଶେଷ ଭାବ ସହିତ ତୁମକୁ ସହାନୁଭୂତିସମ୍ପନ୍ନ ହେବାକୁ ପଡ଼ିବ; ତା'ପରେ ଏକାବେଳକେ ଉଚ୍ଚତମ ଅଦ୍ୱୈତ ଭାବକୁ ଡେଇଁ ପଡ଼ିବାକୁ ହେବ । ନିଜେ ସମ୍ପୂର୍ଣ୍ଣ ମୁକ୍ତ ଅବସ୍ଥା ଲାଭ କରି ତା'ପରେ ଇଚ୍ଛା କଲେ ନିଜକୁ ପୁଣି ସୀମାବଦ୍ଧ କରିପାର । ପ୍ରତ୍ୟେକ କାମରେ ନିଜର ସବୁ ଶକ୍ତି ପ୍ରୟୋଗ କର । କିନ୍ତୁ ସମସ୍ତ ପାଇଁ ଅଦ୍ୱୈତଭାବ ଭୁଲି ଦ୍ୱୈତବାଦୀ ହେବାର ଶକ୍ତିଲାଭ କରିବାକୁ ହେବ; ପୁଣି ଯେତେବେଳେ ଇଚ୍ଛା ସେତେବେଳେ ଯେପରି ଏହି ଅଦ୍ୱୈତଭାବକୁ ଆଶ୍ରୟ କରାଯାଇପାରେ । ***

କାର୍ଯ୍ୟ-କାରଣ ସବୁ ମାୟା ଓ ଆମେ ଯେତେ ବଡ଼ ହେବା, ସେତେ ବୁଝିପାରିବା ଯେ, ଛୋଟ ପିଲାଙ୍କର ପରୀ-ଗପ ଆମକୁ ଯେପରି ଲାଗେ, ସେହିଭଳି ଆମେ ଯାହା କିଛି ଦେଖୁଛୁ, ସବୁ କିଛି ଅସମ୍ବନ୍ଧ । ପ୍ରକୃତ ପକ୍ଷରେ କାର୍ଯ୍ୟ-କାରଣ ବୋଲି କିଛି ନାହିଁ ଓ ଆମେ ସମୟକ୍ରମେ ତାହା ଜାଣିପାରିବା । ସୁତରାଂ ଯଦି କେତେବେଳେ କୌଣସି ରୂପକ-ଗଳ୍ପ ଶୁଣିବ, ସେତେବେଳେ ତୁମର ବୁଦ୍ଧିବୃତ୍ତିକୁ ଟିକିଏ ତଳକୁ ନେଇ ଆସ, ମନେ ମନେ ଏହି ଗଳ୍ପର ପୂର୍ବାପର ସଙ୍ଗତି ବିଷୟରେ ପ୍ରଶ୍ନ ଉଠାଅ ନାହିଁ । ହୃଦୟରେ ରୂପକ ବର୍ଣ୍ଣନା ଓ ସୁନ୍ଦର କବିତ୍ୱ ପ୍ରତି ଅନୁରାଗ ବିକଶିତ କର, ତା'ପରେ ସମସ୍ତ ପୌରାଣିକ ବର୍ଣ୍ଣନାଗୁଡ଼ିକୁ କବିତ୍ୱ ହିସାବରେ ଉପଭୋଗ କର । ପୁରାଣଚର୍ଚ୍ଚା ସମୟରେ ଇତିହାସ ଓ ଯୁକ୍ତି-ବିଚାରର ଦୃଷ୍ଟି ନେଇ ଆସ ନାହିଁ । ଏହିସବୁ ପୌରାଣିକ ଭାବଗୁଡ଼ିକ ତୁମ ମନ ଭିତରଦେଇ ପ୍ରବାହ-ଆକାରରେ ଚାଲିଯାଉ । ତୁମ ଆଖି ଆଗରେ ତାହାକୁ ମଶାଲ ପରି ଘୂରାଅ—ମଶାଲଟିକୁ କିଏ ଧରିଛୁ, ଏ ପ୍ରଶ୍ନ କର ନାହିଁ, ତା'ହେଲେ ଯାଇ ତାହା ଚକ୍ରାକାର ଧାରଣ କରିବ; ଏଥିରେ ଯେଉଁ ସତ୍ୟର କଣା ଅନ୍ତର୍ନିହିତ ରହିଛି, ତାହା ତୁମ ମନରେ ରହିଯିବ ।

ସମସ୍ତ ପୁରାଣ-ଲେଖକମାନେ ଯାହା ଯାହା ଦେଖିଥିଲେ ବା ଶୁଣିଥିଲେ, ସେଗୁଡ଼ିକୁ ରୂପକଭାବରେ ଲେଖିଯାଇଛନ୍ତି । ସେମାନେ କେତେଗୁଡ଼ିଏ ପ୍ରବାହାକାର-ଚିତ୍ର ଆଙ୍କି ଯାଇଛନ୍ତି । ସେଗୁଡ଼ିକ ଭିତରୁ କେବଳ ତାହାର ପ୍ରତିପାଦ୍ୟ ବିଷୟଟିକୁ ବାହାର କରିବାକୁ ଚେଷ୍ଟା କରି ଛବିଗୁଡ଼ିକୁ ନଷ୍ଟ କରି ପକାଅ ନାହିଁ । ସେଗୁଡ଼ିକୁ ଯଥାଯଥ ଗ୍ରହଣ କର, ସେଗୁଡ଼ିକ ତୁମ ଉପରେ କାର୍ଯ୍ୟ କରନ୍ତୁ । ଏଗୁଡ଼ିକର ଫଳାଫଳ ଦେଖି ବିଚାର କର— ଏଗୁଡ଼ିକ ମଧ୍ୟରେ ଯେଉଁ ଟିକିକ ଭଲ ଅଛି, ସେତିକ ନିଅ । ***

ତୁମ ନିଜର ଇଚ୍ଛାଶକ୍ତି ହିଁ ତୁମ ପ୍ରାର୍ଥନାର ଉତ୍ତର ଦେଇଥାଏ—ତେବେ ବିଭିନ୍ନ ବ୍ୟକ୍ତିର ମନର ଧର୍ମସଂସ୍କାର ବିଭିନ୍ନ ଧାରଣା ଅନୁସାରେ ତାହା ବିଭିନ୍ନ ଆକାରରେ ପ୍ରକାଶ ପାଏ । ଆମେ ତାହାକୁ ବୁଦ୍ଧ, ଯୀଶୁ, ଜେହୋଭା, ଆଲ୍ଲା ବା ଅଗ୍ନି —ଯେଉଁଭଳି ଇଚ୍ଛା ନାମ ଦେଇପାରୁ; କିନ୍ତୁ ପ୍ରକୃତରେ କହିବାକୁ ଗଲେ ଏହା ଆମର 'ମୁଁ' ବା ଆତ୍ମା । ***

ଆମ ଧାରଣା କ୍ରମେ ଉନ୍ନତ ହେଉଥାଏ, କିନ୍ତୁ ଏହି ଧାରଣା ଯେଉଁସବୁ ରୂପକ ଆକାରରେ ଆମ ନିକଟରେ ପ୍ରକାଶିତ ହୁଏ, ତାହାର କୌଣସି ଐତିହାସିକ ମୂଲ୍ୟ ନାହିଁ । ଆମର ଅଲୌକିକ ଦର୍ଶନସମୂହ ଅପେକ୍ଷା ମୁଣାଙ୍କର ଅଲୌକିକ ଦର୍ଶନରେ ଭୁଲର ସମ୍ଭାବନା ଅଧିକ, କାରଣ ଆମେ ଅଧିକ ଜ୍ଞାନସମ୍ପନ୍ନ ଏବଂ ଆମର ମିଥ୍ୟାଭ୍ରମଦ୍ୱାରା ପ୍ରତାରିତ ହେବାର ସମ୍ଭାବନା ଅନେକ କମ୍ ।

ଯେତେଦିନଯାଏ ଆମର ହୃଦୟ-ଶାସ୍ତ୍ର ନ ଖୋଲୁଛି, ସେତେଦିନଯାଏ ଶାସ୍ତ୍ରପାଠ ବୃଥା । ଯେତେବେଳେ ଏହି ଶାସ୍ତ୍ରଗୁଡ଼ିକ ଆମର ହୃଦୟ-ଶାସ୍ତ୍ର ସହିତ ଯେତିକି ମିଳିଯାଏ, ସେତିକି ତାହାର ସାର୍ଥକତା । ବଳବାନ୍ ବ୍ୟକ୍ତି 'ବଳ' କଅଣ ତାହା ବୁଝିପାରେ; ହାତୀ ସିଂହକୁ ବୁଝିପାରେ, ମୂଷା କେବେହେଲେ ସିଂହକୁ ବୁଝିପାରେ ନାହିଁ । ଆମେ ଯେପର୍ଯ୍ୟନ୍ତ ଯୀଶୁଙ୍କ ସମାନ ନ ହୋଇଛୁ, ସେପର୍ଯ୍ୟନ୍ତ ଆମେ ଯୀଶୁଙ୍କୁ କିପରି ବୁଝିବୁ ? ଦୁଇଖଣ୍ଡି ପାଉଁରୁଟିରେ ପାଞ୍ଚ ହଜାର ଲୋକଙ୍କୁ ଖୁଆଇବା କିମ୍ବା ପାଞ୍ଚ ଖଣ୍ଡ ପାଉଁରୁଟିରେ ଦୁଇଜଣ ଲୋକଙ୍କୁ ଖୁଆଇବା—ଏହି ଦୁଇଟି ମାୟାରାଜ୍ୟର କଥା । ଏହା ମଧ୍ୟରେ କୌଣସିଟି ସତ୍ୟ ନୁହେଁ; ସୁତରାଂ ଏହି ଦୁଇଟିରୁ କୌଣସିଟି ଅପରଟିଦ୍ୱାରା ବାଧିତ ହୁଏ ନାହିଁ । ମହତ୍ତ୍ୱ ହିଁ କେବଳ ମହତ୍ତ୍ୱର ଆଦର କରିପାରେ, ଈଶ୍ୱର ହିଁ ଈଶ୍ୱରଙ୍କୁ ଉପଲବ୍ଧି କରିପାରନ୍ତି । ସ୍ୱପ୍ନ ହିଁ ସ୍ୱପ୍ନଦ୍ରଷ୍ଟା—ତା'ଛଡ଼ା ଆଉ କିଛି ନୁହେଁ, ତାହାର ଅନ୍ୟ କୌଣସି ଭିତ୍ତି ନାହିଁ । ଏହି ସ୍ୱପ୍ନ ଓ ସ୍ୱପ୍ନଦ୍ରଷ୍ଟା ପୃଥକ୍ ବସ୍ତୁ ନୁହନ୍ତି । ସମଗ୍ର ସଙ୍ଗୀତ ମଧ୍ୟରେ 'ସୋଽହଂ, ସୋଽହଂ'—ଏହି ଗୋଟିଏ ସ୍ୱର ବାଜୁଛି, ଅନ୍ୟାନ୍ୟ ସ୍ୱରଗୁଡ଼ିକ ତା'ର ହିଁ ଓଲଟ-ପାଲଟ ମାତ୍ର; ସୁତରାଂ ସେଥିରେ ମୂଳ ସ୍ୱରର—ମୂଳତତ୍ତ୍ୱର କିଛି ଯାଏ ଆସେ ନାହିଁ । ଆମେ ହିଁ ଜୀବନ୍ତ ଶାସ୍ତ୍ର; ଆମେ ଯେଉଁସବୁ କଥା କହୁଛୁ, ସେଗୁଡ଼ିକ ହିଁ ଶାସ୍ତ୍ରରୂପେ ପରିଚିତ । ସବୁ ହିଁ ଜୀବନ୍ତ ଈଶ୍ୱର, ଜୀବନ୍ତ ଖ୍ରୀଷ୍ଟ—ଏହି ଭାବରେ ସବୁ ଦର୍ଶନ କର । ମନୁଷ୍ୟକୁ ଅଧ୍ୟୟନ କର, ମନୁଷ୍ୟ ହିଁ ଜୀବନ୍ତ କାବ୍ୟ । ଜଗତରେ ଏପର୍ଯ୍ୟନ୍ତ ଯେତେ ବାଇବେଲ, ଖ୍ରୀଷ୍ଟ ବା ବୁଦ୍ଧ ହୋଇଛନ୍ତି, ସମସ୍ତେ ଆମର ଜ୍ୟୋତିରେ ଜ୍ୟୋତିଷ୍ମାନ୍ । ଏହି ଜ୍ୟୋତିକୁ ଛାଡ଼ିଦେଲେ ସେଗୁଡ଼ିକ ଆମ ପକ୍ଷରେ ଆଉ ଜୀବନ୍ତ ହୋଇ ରହିବେ ନାହିଁ, ମୃତ ହୋଇଯିବେ । ତୁମେ ନିଜ ଆତ୍ମା ଉପରେ ଛିଡ଼ା ହୁଅ ।

ମୃତ ଦେହ ସହିତ ଯେଉଁଭଳି ବ୍ୟବହାର କର ନା କାହିଁକି, ସେଥିରେ ସେ କ୍ଷୁବ୍ଧ ହୁଏ ନାହିଁ । ଆମର ଦେହକୁ ଏହିଭଳି ମୃତବତ୍ କରି ପକାଇବାକୁ ହେବ, ଏବଂ ଦେହ ସହିତ ଆମର ଯେଉଁ ଅଭିନ୍ନ ଭାବ ରହିଛି, ତାକୁ ଦୂର କରିବାକୁ ହେବ ।

**ଶନିବାର, ୩ ଅଗଷ୍ଟ**

ଯେଉଁ ସମସ୍ତ ବ୍ୟକ୍ତି ଏହି ଜନ୍ମରେ ହିଁ ମୁକ୍ତିଲାଭ କରିବାକୁ ଚାହାଁନ୍ତି, ଗୋଟିଏ ଜନ୍ମରେ ହିଁ ସେମାନଙ୍କୁ ହଜାର ବର୍ଷର ଜୀବନଯାପନ କରିବାକୁ ହୁଏ । ସେମାନେ ଯେଉଁ ଯୁଗରେ ଜନ୍ମିଛନ୍ତି, ସେହି ଯୁଗର ଭାବ ଅପେକ୍ଷା ସେମାନଙ୍କୁ ଅନେକ ଆଗେଇ ଯିବାକୁ

ହୁଏ; କିନ୍ତୁ ସାଧାରଣ ଲୋକ କୌଣସି ପ୍ରକାରେ ଗୁରୁଣ୍ଡି ଗୁରୁଣ୍ଡି ଅଗ୍ରସର ହୋଇପାରେ। ଖ୍ରୀଷ୍ଟ ଓ ବୁଦ୍ଧଗଣଙ୍କର ଏହିପରି ଭାବରେ ହିଁ ଉତ୍ପତ୍ତି ହୋଇଛି।

ଜଣେ ହିନ୍ଦୁ ରାଣୀ* ଥିଲେ—ତାଙ୍କ ପିଲାମାନେ ଏହି ଜନ୍ମରେ ହିଁ ମୁକ୍ତିଲାଭ କରନ୍ତୁ ବୋଲି ତାଙ୍କର ଏତେ ଆଗ୍ରହ ଥିଲା ଯେ, ସେ ନିଜେ ସେମାନଙ୍କର ଲାଳନପାଳନର ସମ୍ପୂର୍ଣ୍ଣ ଭାର ନେଇଥିଲେ । ଅତି ଶୈଶବାବସ୍ଥାରେ ସେମାନଙ୍କୁ ସେ ଦୋଳିରେ ଝୁଲାଇ ଝୁଲାଇ ଶୁଆଇବା ସମୟରେ ସବୁବେଳେ ସେମାନଙ୍କୁ ଗୋଟିଏ ଗୀତ ଶୁଣାଉଥିଲେ—ତତ୍ତ୍ୱମସି—ତତ୍ତ୍ୱମସି ତୁମେ ସେହି ଆତ୍ମା, ତୁମେ ସେହି ବ୍ରହ୍ମ। ସେମାନଙ୍କ ଭିତରୁ ତିନିଜଣ ସନ୍ନ୍ୟାସୀ ହୋଇଗଲେ; କିନ୍ତୁ ଚତୁର୍ଥ ପୁତ୍ରକୁ ରାଜା କରିବା ପାଇଁ ଅନ୍ୟତ୍ର ନେଇ ମଣିଷ କରିବାର ବ୍ୟବସ୍ଥା ହେଲା। ମା' ପାଖରୁ ବିଦାୟ ନେଲାବେଳେ ରାଣୀ ତାଙ୍କୁ ଖଣ୍ଡେ କାଗଜ ଦେଇ କହିଲେ, 'ବଡ଼ ହେଲେ ଏଥିରେ କଅଣ ଲେଖା ଅଛି ପଢ଼ିବୁ'। ସେ କାଗଜଟିରେ ଲେଖା ଥିଲା—''ବ୍ରହ୍ମ ସତ୍ୟ ଓ ଆଉସବୁ ମିଥ୍ୟା । ଆତ୍ମା କେବେ ହେଲେ ମରେ ନାହିଁ ଓ ମାରେ ନାହିଁ । ନିଃସଙ୍ଗ ହୁଅ ଅଥବା ସତ୍-ସଙ୍ଗରେ ବାସ କର।'' ଯେତେବେଳେ ରାଜପୁତ୍ର ବଡ଼ ହୋଇ ତାହା ପଢ଼ିଲେ ସେ ସଙ୍ଗେ ସଙ୍ଗେ ସଂସାର ତ୍ୟାଗ କରି ସନ୍ନ୍ୟାସୀ ହୋଇଗଲେ।

ତ୍ୟାଗ କର, ସଂସାର ତ୍ୟାଗ କର । ଆମେ ବର୍ତ୍ତମାନ ଦଳେ କୁକୁର ପରି ରନ୍ଧାଘର ଭିତରେ ପଶିଯାଇଛୁ, ଖଣ୍ଡେ ମାଂସ ଖାଉଛୁ ଓ ଭୟରେ ଏଣିକି ତେଣିକି ଚାହିଁ ଦେଖୁଛୁ, ପଛରେ କିଏ ଆସି ହୁଏତ ଆମକୁ ତଡ଼ିଦେବ। ସେଭଳି ନ ହୋଇ ରାଜା ପରି ହୁଅ—ଜାଣି ରଖ ସମସ୍ତ ଜଗତ୍ ତୁମର। ଯେପର୍ଯ୍ୟନ୍ତ ତୁମେ ସଂସାର ତ୍ୟାଗ ନ କରିଛ, ଯେପର୍ଯ୍ୟନ୍ତ ସଂସାରରେ ତୁମେ ବନ୍ଦୀ, ସେପର୍ଯ୍ୟନ୍ତ ଏହି ଭାବ ତୁମ ଭିତରେ କେବେହେଲେ ଆସି ନ ପାରେ । ଯଦି ବାହାରେ ତ୍ୟାଗ କରି ନ ପାର, ମନେ ମନେ ସବୁ ତ୍ୟାଗ କର। ଅନ୍ତରରୁ ସବୁ ତ୍ୟାଗ କର। ବୈରାଗ୍ୟସମ୍ପନ୍ନ ହୁଅ। ଏହା ହିଁ ଯଥାର୍ଥ ଆତ୍ମତ୍ୟାଗ—ଏହା ନ ହେଲେ ଧର୍ମ ଲାଭ ଅସମ୍ଭବ। କୌଣସି ପ୍ରକାର ବାସନା ପୋଷଣ କର ନାହିଁ; କାରଣ ଯାହା ବାସନା କରିବ, ତାହା ହିଁ ପାଇବ ଓ ତାହା ହିଁ ତୁମର ଭୟଙ୍କର ବନ୍ଧନର କାରଣ ହେବ । ଗୋଟିଏ ଗଳ୍ପରେ ଯେପରି ଅଛି—ଜଣେ ଲୋକ ତିନୋଟି ବରଲାଭ କରିଥିଲା ଓ ତାହାର ସର୍ବାଙ୍ଗରେ ନାକ** ବାହାରି ପଡ଼ିଲା, କାମନା କଲେ ଠିକ୍ ସେହିଭଳି ହୁଏ । ଯେପର୍ଯ୍ୟନ୍ତ ଆମେ ଆତ୍ମରତ ଓ ଆତ୍ମତୃପ୍ତ ନ ହୋଇଛୁ, ସେପର୍ଯ୍ୟନ୍ତ ମୁକ୍ତିଲାଭ କରିପାରିବୁ ନାହିଁ । 'ଆତ୍ମା ହିଁ ଆତ୍ମାର ମୁକ୍ତିଦାତା, ଆଉ କେହି ନୁହେଁ।'

---

* ମଦାଳସା—ମାର୍କଣ୍ଡେୟ ପୁରାଣ, ୨୫।୨୬ ଅଧ୍ୟାୟ

** ଗପଟି ହେଉଛି : ଜଣେ ଗରିବ ଲୋକ ଜଣେ ଦେବତାଙ୍କଠାରୁ ବର ପାଇଥିଲା। ଦେବତା ସନ୍ତୁଷ୍ଟ ହୋଇ କହିଥିଲେ, 'ତୁମେ ଏହି ପଶାକାଠି ନିଅ । ଏହି ପଶାକାଠି ଧରି ଯେକୌଣସି କାମନା କରି ତିନିଥର ପକାଇବ, ସେହି ତିନୋଟି କାମନା ତୁମର ପୂର୍ଣ୍ଣ

ଏହା ଅନୁଭବ କରିବାକୁ ଶିକ୍ଷା କର ଯେ, ତୁମେ ଅନ୍ୟ ସମସ୍ତଙ୍କ ଦେହରେ ମଧ୍ୟ ବିଦ୍ୟମାନ—ଏହା ହିଁ ଜାଣିବାକୁ ଚେଷ୍ଟା କର ଯେ, ଆମେ ସମସ୍ତେ ଏକ । ଆଉ ସବୁ ବାଜେ ଜିନିଷ ଛାଡ଼ିଦିଅ । ତୁମେ ଭଲ ବା ମନ୍ଦ ଯାହା କିଛି କାମ କରିଛ, ସେଗୁଡ଼ିକ ବିଷୟରେ ଆଦୌ ଚିନ୍ତା କର ନାହିଁ—ସେଗୁଡ଼ିକୁ ଥୁ ଥୁ କରି ଫିଙ୍ଗି ଦିଅ । ଯାହା କରିଛ, କରିଛ । କୁସଂସ୍କାରକୁ ଦୂର କରିଦିଅ । ସମ୍ମୁଖରେ ମୃତ୍ୟୁକୁ ଦେଖି ମଧ୍ୟ ଦୁର୍ବଳତା ଆଶ୍ରୟ କର ନାହିଁ ।

ଅନୁତାପ କର ନାହିଁ—ଆଗରୁ ଯେଉଁ ସବୁ କାମ କରିଛ, ସେସବୁ ନେଇ ମୁଣ୍ଡ ଘୂରାଅ ନାହିଁ; ଏପରି କି, ଯେଉଁସବୁ ଭଲ କାମ କରିଛ, ତାହା ମଧ୍ୟ ସ୍ମୃତିପଥରୁ ଦୂର କରିଦିଅ । ଆଜାଦ୍ (ମୁକ୍ତ) ହୁଅ । ଦୁର୍ବଳ, କାପୁରୁଷ ଓ ଅଜ୍ଞ ବ୍ୟକ୍ତିଗଣ କେବେହେଲେ ଆତ୍ମାକୁ ଲାଭ କରିପାରନ୍ତି ନାହିଁ । ତୁମେ କୌଣସି କର୍ମର ଫଳକୁ ନଷ୍ଟ କରିପାରିବ ନାହିଁ—ଫଳ ଆସିବ ହିଁ ଆସିବ; ସୁତରାଂ ସାହସୀ ହୋଇ ତାହାର ସମ୍ମୁଖୀନ ହୁଅ; କିନ୍ତୁ ସାବଧାନ, ପୁଣି ଯେପରି ସେହି କାମ ନ କର । ସମସ୍ତ କର୍ମର ଭାର ଭଗବାନଙ୍କ ଉପରେ ନ୍ୟସ୍ତ କର, ଭଲ ମନ୍ଦ ସବୁ କିଛି ଦେଇଦିଅ । ନିଜେ ଭଲଟା ରଖି କେବଳ ମନ୍ଦକୁ ତାଙ୍କ ଉପରେ ପକାଅ ନାହିଁ । ଯେ ନିଜକୁ ନିଜେ ସାହାଯ୍ୟ କରେ, ଭଗବାନ ତାକୁ ହିଁ

---

ହେବ ।' ସେ ଅତିଶୟ ଉଲ୍ଲସିତ ହୋଇ ସ୍ତ୍ରୀ ସହିତ ପରାମର୍ଶ କରିବାକୁ ଲାଗିଲା—କ'ଣ ବର ମାଗିବା ଉଚିତ । ସ୍ତ୍ରୀ କହିଲା 'ଧନରତ୍ନ ମାଗ'; କିନ୍ତୁ ସ୍ୱାମୀ କହିଲା, 'ଦେଖ ଆମ ଦୁଇ ଜଣକ ନାକ ଚେପା, ତାହା ଦେଖି ଲୋକେ ଆମକୁ ଥଟ୍ଟା କରୁଛନ୍ତି, ଅତଏବ ପ୍ରଥମ ଥର ପଶା ପକାଇ ସୁନ୍ଦର ନାକ ପ୍ରାର୍ଥନା କରିଯାଉ ।' ସ୍ତ୍ରୀର ମତ କିନ୍ତୁ ତାହା ନୁହେଁ । ଶେଷରେ ଦୁଇଜଣଙ୍କ ମଧ୍ୟରେ ଯୁକ୍ତିତର୍କ ହେଲା । ଶେଷରେ ସ୍ୱାମୀ ରାଗିଯାଇ ପଶା ଗଡ଼ାଇ ଦେଇ କହିଲା—'ଆମର କେବଳ ସୁନ୍ଦର ନାକ ହେଉ ଆଉ କିଛି ନାହିଁ ।' ଆଶ୍ଚର୍ଯ୍ୟ କଥା, ଯେପରି ପଶା ପଡ଼ିଯାଇଛି, ସେମିତି ସଙ୍ଗେ ସଙ୍ଗେ ସେମାନଙ୍କ ସାରା ଦେହରେ ନାକ ଭର୍ତ୍ତି ହୋଇଗଲା । ସେତେବେଳେ ସେ ଦେଖିଲା ଏ କି ବିପଦ ଘଟିଲା ! ତା'ପରେ ଦ୍ୱିତୀୟ ଥର ପଶା ପକାଇ କହିଲା, 'ନାକ ଚାଲିଯାଉ', ସଙ୍ଗେ ସଙ୍ଗେ ସବୁ ନାକ ଚାଲିଗଲା—ତା' ସହିତ ସେମାନଙ୍କ ନିଜ ନାକ ବି ଚାଲିଗଲା । ଏଥର ବାକି ରହିଲା ତୃତୀୟ ବରଟି । ସେତେବେଳେ ସେମାନେ ଭାବିଲେ, ଯଦି ଏଥର ପଶା ପକାଇ ଭଲ ନାକ ପାଇବା, ଲୋକେ ଅବଶ୍ୟ ଆମ ଚେପା ନାକ ବଦଳରେ ଭଲ ନାକ ହେବାର କାରଣ ପଚାରିବେ—ସେମାନଙ୍କୁ ସବୁ କଥା କହିବାକୁ ହେବ । ସେତେବେଳେ ସେମାନେ ଆମକୁ ମୂଢ଼ ବୋଲି କହି ଆହୁରି ଥଟ୍ଟା କରିବେ, କହିବେ ଯେ, ଏମାନେ ଏଭଳି ତିନୋଟି ବର ପାଇ ମଧ୍ୟ ନିଜ ଅବସ୍ଥାର ଉନ୍ନତି କରିପାରିଲେ ନାହିଁ । କାର୍ଯ୍ୟତଃ ତୃତୀୟ ଥର ପଶାକାଠି ପକାଇ ସେମାନଙ୍କ ସେହି ପୂର୍ବର ଚେପା ନାକ ଫେରାଇ ଆଣିଲେ । ଏଥିରୁ ବୁଝାଯାଉଛି—କିଛି ବାସନା କର ନାହିଁ । ଯାହା ଚାହିଁବ ତାହା ପାଇବ, ମାତ୍ର ତା' ସାଙ୍ଗକୁ ଦାରୁଣ ବନ୍ଧନରେ ଆବଦ୍ଧ ହେବ ।

ସାହାଯ୍ୟ କରନ୍ତୁ । ***

ବାସନା-ମଦିରା ପାନ କରି ସାରା ଜଗତ୍ ମତ୍ତ ହୋଇଛି । 'ଯେପରି ଦିନ ଓ ରାତି କେବେହେଲେ ଏକ ସଙ୍ଗେ ରହିପାରନ୍ତି ନାହିଁ, ସେହିପରି ବାସନା ଓ ଭଗବାନ ଦୁହେଁ ଏକ ସଙ୍ଗେ ରହିପାରିବେ ନାହିଁ ।' ସୁତରାଂ ବାସନା ତ୍ୟାଗ କର ।

'ଯହାଁ ରାମ ତହାଁ କାମ ନହାଁ, ଯହାଁ କାମ ତହାଁ ନହାଁ ରାମ ।
ଦୁହୁଁ ଏକ ସାଥ ମିଲତ ନହିଁ, ରବି ରଜନୀ ଏକଠାମ ।' ***

'ଖାଦ୍ୟ, ଖାଦ୍ୟ' ବୋଲି ପାଟି କରିବା ଓ ଖାଇବା, 'ପାଣି, ପାଣି' ବୋଲି ଚିତ୍କାର କରିବା ଓ ପାଣି ପିଇବା—ଏହି ଦୁଇଟି ଭିତରେ ଆକାଶ ପାତାଳ ପ୍ରଭେଦ; ସୁତରାଂ କେବଳ 'ଭଗବାନ, ଭଗବାନ' ବୋଲି ପାଟି କଲେ କେବେହେଲେ ଈଶ୍ୱରଙ୍କ ପ୍ରତ୍ୟକ୍ଷ ଉପଲବ୍ଧିର ଆଶା କରାଯାଇପାରେ ନାହିଁ । ଆମକୁ ଈଶ୍ୱର-ଲାଭ କରିବାର ଚେଷ୍ଟା ଓ ସାଧନା କରିବାକୁ ହେବ । ତରଙ୍ଗ ସମୁଦ୍ର ସହ ମିଶି ଏକ ହୋଇଗଲେ ଯାଇ ଅସୀମତ୍ୱ ଲାଭ କରାଯାଇପାରେ; କିନ୍ତୁ ତରଙ୍ଗ ଅବସ୍ଥାରେ ରହି କେବେହେଲେ ଏହା ସମ୍ଭବ ନୁହେଁ । ତା'ପରେ ସମୁଦ୍ରସ୍ୱରୂପ ହୋଇଯାଇ ପୁଣି ତରଙ୍ଗାକାର ଧାରଣ କରିପାର ଓ ଯେତେ ବଡ଼ ଇଚ୍ଛା ସେତେ ବଡ଼ ହୋଇପାର । ନିଜକୁ ତରଙ୍ଗ ବୋଲି ମନେକର ନାହିଁ; ଜାଣ ଯେ ତୁମେ ମୁକ୍ତ ।

ପ୍ରକୃତ ଦର୍ଶନଶାସ୍ତ୍ର ହେଉଛି, କେତେକ ପ୍ରତ୍ୟକ୍ଷାନୁଭୂତିକୁ ପ୍ରଣାଳୀବଦ୍ଧ କରିବା । ଯେଉଁଠାରେ ବୁଦ୍ଧି-ବୃତ୍ତିର ଶେଷ, ସେହିଠାରେ ହିଁ ଧର୍ମର ଆରମ୍ଭ । ସମାଧି ବା ଈଶ୍ୱର-ଭାବାବେଶ ଯୁକ୍ତିବୃତ୍ତିର ଅପେକ୍ଷା ଯଥେଷ୍ଟ ବଡ଼; କିନ୍ତୁ ଏହି ଅବସ୍ଥାରେ ଉପଲବ୍ଧ ସତ୍ୟଗୁଡ଼ିକ କେବେହେଲେ ଯୁକ୍ତିବୃତ୍ତିର ବିରୋଧୀ ହେବ ନାହିଁ । ଯୁକ୍ତି-ବୃତ୍ତି ବଡ଼ ଅସ୍ତ୍ର ପରି, ତା' ସାହାଯ୍ୟରେ ଶ୍ରମସାଧ୍ୟ କାର୍ଯ୍ୟଗୁଡ଼ିକ କରାଯାଇପାରେ ଓ ସମାଧି ବା ଈଶ୍ୱର-ଭାବାବେଶ (inspiration) ଉଜ୍ଜ୍ୱଳ ଆଲୋକ ପରି ସବୁ ସତ୍ୟ ଦେଖାଇଦିଏ; କିନ୍ତୁ ଆମ ଭିତରେ ଗୋଟିଏ କିଛି କରିବା ଇଚ୍ଛା ବା ପ୍ରେରଣା ଆସିବାକୁ ହିଁ ଈଶ୍ୱରଭାବାବେଶ (inspiration) କୁହାଯାଇପାରିବ ନାହିଁ । ***

ମାୟା ଭିତରେ ଉନ୍ନତି କରିବା ବା ଅଗ୍ରସର ହେବାକୁ ଏକ ବୃତ୍ତ ବୋଲି ଧରି ନିଆଯାଇପାରେ—ଏଥିରେ ଏହା ହୁଏ ଯେ, ଯେଉଁଠାରୁ ତୁମେ ଯାତ୍ରା କରିଥିଲ, ଠିକ୍ ସେହିଠାରେ ଆସି ପହଞ୍ଚିବ । ତେବେ ପ୍ରଭେଦ ଏହି ଯେ, ଯାତ୍ରା କରିବା ସମୟରେ ତୁମେ ଅଜ୍ଞାନ ଥିଲ, ଏବଂ ସେଠାକୁ ଯେତେବେଳେ ଫେରି ଆସିବ, ସେତେବେଳେ ତୁମେ ପୂର୍ଣ୍ଣଜ୍ଞାନ ଲାଭ କରିଥିବ । ଈଶ୍ୱରୋପାସନା, ସାଧୁ ମହାପୁରୁଷଙ୍କର ପୂଜା, ଏକାଗ୍ରତା, ଧ୍ୟାନ, ନିଷ୍କାମ କର୍ମ—ଏହିସବୁ ମାୟାଜାଲ ଛିନ୍ନ କରି ବାହାରି ଆସିବାର ଉପାୟ; ତେବେ ପ୍ରଥମେ ଆମର ତୀବ୍ର ମୁମୁକ୍ଷୁତ୍ୱ ରହିବା ଉଚିତ । ଯେଉଁ ଜ୍ୟୋତିଃ ଦପ୍ କରି ପ୍ରକାଶିତ ହୋଇ ଆମର ହୃଦୟାନ୍ଧକାରକୁ ଦୂର କରିଦେବ, ତାହା ଆମ ଭିତରେ ହିଁ ରହିଛି—ଏହା ହେଉଛି ସେହି ଜ୍ଞାନ, ଯାହା ଆମର ସ୍ୱଭାବ ବା ସ୍ୱରୂପ । (ଏହି ଜ୍ଞାନକୁ ଆମର

'ଜନ୍ମଗତ ସ୍ୱତ୍ୱ' ବୋଲି କୁହାଯାଇପାରେ ନାହିଁ, କାରଣ ପ୍ରକୃତ ପକ୍ଷରେ ଆମର ଜନ୍ମ ନାହିଁ । କେବଳ ଯେଉଁ ମେଘରାଶି ସେହି ଜ୍ଞାନ-ସୂର୍ଯ୍ୟଙ୍କୁ ଘୋଡ଼ାଇ ରଖିଛୁ, ସେଗୁଡ଼ିକୁ ଦୂର କରିଦେବାକୁ ପଡ଼ିବ ।

ଇହଲୋକରେ ବା ସ୍ୱର୍ଗରେ ସବୁପ୍ରକାର ଭୋଗ କରିବାର ବାସନା ତ୍ୟାଗ କର (ଇହାମୁତ୍ର-ଫଳଭୋଗବିରାଗ) । ଇନ୍ଦ୍ରିୟ ଓ ମନକୁ ସଂଯତ କର (ଦମ ଓ ଶମ) । ସବୁପ୍ରକାର ଦୁଃଖ ସହ୍ୟ କର; ତୁମର କୌଣସି ପ୍ରକାର ଦୁଃଖ ଆସିଛି ବୋଲି ମନ ଯେପରି ଜାଣି ନ ପାରେ (ତିତିକ୍ଷା) । ମୁକ୍ତିଛଡ଼ା ଆଉ ସବୁ ଚିନ୍ତା ଦୂର କରିଦିଅ, ଗୁରୁ ଓ ତାଙ୍କ ଉପଦେଶରେ ବିଶ୍ୱାସ ରଖ । ତୁମେ ଯେ ନିଶ୍ଚୟ ମୁକ୍ତ ହୋଇପାରିବ, ଏହା ମଧ୍ୟ ବିଶ୍ୱାସ କର (ଶ୍ରଦ୍ଧା) । ଯାହା ହେଉନା କାହିଁକି, ସବୁବେଳେ କହ 'ସୋଽହମ୍, ସୋଽହମ୍' । ଖାଇବା, ବୁଲିବା, କଷ୍ଟରେ ପଡ଼ିବା, ସବୁ ସମୟରେ 'ସୋଽହମ୍, ସୋଽହମ୍' କହ; ସର୍ବଦା ମନକୁ କହ ଯେ—ଏହି ଯେଉଁ ଜଗତ୍-ପ୍ରପଞ୍ଚ ଦେଖୁଛୁ, କୌଣସି କାଳରେ ଏହାର ଅସ୍ତିତ୍ୱ ନାହିଁ, କେବଳ ମାତ୍ର ମୁଁ ଅଛି (ସମାଧାନ) । ଦେଖିବ—ଦିନେ ଦପ୍ କରି ଜ୍ଞାନର ପ୍ରକାଶ ହୋଇ ମନେହେବ—ଜଗତ୍ ଶୂନ୍ୟ ମାତ୍ର, କେବଳ ବ୍ରହ୍ମ ହିଁ ଅଛନ୍ତି । ମୁକ୍ତ ହେବା ପାଇଁ ପ୍ରବଳ ଇଚ୍ଛାସମ୍ପନ୍ନ ହୁଅ (ମୁମୁକ୍ଷୁତ୍ୱ) ।*

ଆତ୍ମୀୟ ଓ ବନ୍ଧୁବାନ୍ଧବ ସବୁ ପୁରୁଣା ଅନ୍ଧକୂପ ପରି; ଆମେ ସେହି ଅନ୍ଧକୂପରେ ପଡ଼ି କର୍ତ୍ତବ୍ୟ, ବନ୍ଧନ ପ୍ରଭୃତି ନାନା ସ୍ୱପ୍ନ ଦେଖିଥାଉଁ—ସେହି ସ୍ୱପ୍ନର ଆଉ ଅନ୍ତ ନାହିଁ । କାହାକୁ ସାହାଯ୍ୟ କରିବାକୁ ଯାଇ ଆଉ ଭ୍ରମ ସୃଷ୍ଟି କର ନାହିଁ । ଏହା ଯେପରି ବଟଗଛ ସଦୃଶ, କ୍ରମାଗତ ଓହଳ ଝୁଲାଇ ବଢି ଚାଲେ । ତୁମେ ଯଦି ଦ୍ୱୈତବାଦୀ ହୁଅ, ତା'ହେଲେ ଈଶ୍ୱରଙ୍କୁ ସାହାଯ୍ୟ କରିବାକୁ ଯିବା ତୁମର ମୂର୍ଖତା । ଯଦି ଅଦ୍ୱୈତବାଦୀ ହୁଅ, ତା'ହେଲେ ତୁମେ ସ୍ୱୟଂ ହିଁ ବ୍ରହ୍ମସ୍ୱରୂପ—ତୁମର ପୁଣି କର୍ତ୍ତବ୍ୟ କଅଣ ? ତୁମର ସ୍ୱାମୀ, ପିଲାପିଲି, ବନ୍ଧୁବାନ୍ଧବ—କାହାରି ପ୍ରତି କିଛି କର୍ତ୍ତବ୍ୟ ନାହିଁ । ଯାହା ହେଉଛି ହୋଇଯାଉ, ଚୁପ୍‌ଚାପ୍ ପଡ଼ିରହ ।

'ରାମପ୍ରସାଦ କହେ, ଭବ-ସାଗରେ ବସିଅଛୁ ଭସାଇ ଭେଳା;
ଆସିଲେ ଜୁଆର ଉଜାଣି ଯିବ, ଭସାଣି ଯିବ ଭଟାର ବେଳା ।'

ଶରୀର ମଲେ ମରୁ—ମୋର ଯେ ଗୋଟିଏ ଦେହ ଅଛି, ଏହା ତ ଏକ ପୁରୁଣା ଉପକଥା ବ୍ୟତୀତ ଆଉ କିଛି ନୁହେଁ । ଚୁପ୍‌ଚାପ୍ ଥାଅ ଓ 'ମୁଁ ବ୍ରହ୍ମ' ବୋଲି ଜାଣ ।

କେବଳ ବର୍ତ୍ତମାନ କାଳ ହିଁ ବିଦ୍ୟମାନ—ଆମେ ଚିନ୍ତାରେ ମଧ୍ୟ ଅତୀତ ଓ ଭବିଷ୍ୟତର ଧାରଣା କରିପାରୁ ନାହିଁ, କାରଣ ଚିନ୍ତା କରିବାକୁ ଗଲେ ହିଁ ତାହାକୁ 'ବର୍ତ୍ତମାନ'ରେ ପରିଣତ କରିବାକୁ ହେବ । ସବୁ ଛାଡ଼ିଦିଅ, ସୁଅରେ ଯିବ ଭସିଯାଉ । ଏହି ସମଗ୍ର ଜଗତ୍ ଏକ ଭ୍ରମମାତ୍ର, ଏହା ଯେପରି ତୁମକୁ ଆଉ ପ୍ରତାରିତ କରି ନ ପାରେ ।

* ସାଧନଚତୁଷ୍ଟୟର ସଂକ୍ଷିପ୍ତ ଇଙ୍ଗିତ ।

ଏହି ଜଗତ୍ ପ୍ରକୃତରେ ଯାହା ନୁହେଁ, ତୁମେ ତାହା ବୋଲି ଜାଣିଛ, ଅବସ୍ତୁରେ ବସ୍ତୁଜ୍ଞାନ କରିଛ; ବର୍ତ୍ତମାନ ଏହା ବାସ୍ତବରେ ଯାହା, ତାହା ବୋଲି ଜାଣ । ଯଦି ଦେହଟା କୌଣସିଆଡ଼େ ଭାସିଯାଏ, ଯିବାକୁ ଦିଅ; ଦେହ ଯୁଆଡ଼େ ଯିବ ଯାଉନା କାହିଁକି, କିଛି ଗ୍ରାହ୍ୟ କର ନାହିଁ । କର୍ତ୍ତବ୍ୟର ନିଦାରୁଣ ଧାରଣା ଭୀଷଣ କାଳକୂଟ-ସ୍ୱରୂପ, ଏହା ଜଗତକୁ ନଷ୍ଟ କରିପକାଉଛି ।

ସ୍ୱର୍ଗକୁ ଗଲେ ଗୋଟିଏ ବୀଣା ପାଇବ ଓ ତାହା ବଜାଇ ଯଥା ସମୟରେ ବିଶ୍ରାମସୁଖ ଅନୁଭବ କରିବ—ଏଥିପାଇଁ ଅପେକ୍ଷା କର ନାହିଁ । ଏହିଠାରେ ହିଁ ଗୋଟିଏ ବୀଣା ନେଇ ଆରମ୍ଭ କରିଦେଉ ନାହଁ କାହିଁକି ? ସ୍ୱର୍ଗକୁ ଯିବା ପାଇଁ ଅପେକ୍ଷା କାହିଁକି ? ଇହଲୋକକୁ ହିଁ ସ୍ୱର୍ଗରେ ପରିଣତ କର । ସ୍ୱର୍ଗରେ ବିବାହ କରିବା ବା ବିବାହ ଦେବା ପ୍ରଥା ନାହିଁ—ତାହା ଯଦି ହୁଏ, ବର୍ତ୍ତମାନ ହିଁ ତାହା ଆରମ୍ଭ କରିଦେଉ ନାହଁ କାହିଁକି ? ଏହିଠାରେ ହିଁ ବିବାହପ୍ରଥା ଉଠାଇଦେଉ ନାହଁ କାହିଁକି ? ସନ୍ନ୍ୟାସୀର ଗୈରିକ ବସନ ମୁକ୍ତ ପୁରୁଷର ଚିହ୍ନ । ସଂସାରିତ୍ୱରୂପକ ଭିକ୍ଷୁକର ବେଶ ଫୋପାଡ଼ି ଦିଅ । ମୁକ୍ତିର ପତାକା —ଗୈରିକ ବସ୍ତ୍ର ଧାରଣ କର ।

**ରବିବାର, ୪ ଅଗଷ୍ଟ**

'ଅଜ୍ଞ ବ୍ୟକ୍ତିମାନେ ଯାହାଙ୍କୁ ନ ଜାଣି ଉପାସନା କରୁଛନ୍ତି, ମୁଁ ତୁମ ନିକଟରେ ତାଙ୍କର କଥା ହିଁ ପ୍ରଚାର କରୁଛି ।'

ଏହି ଏକ ଅଦ୍ୱିତୀୟ ବ୍ରହ୍ମ ହିଁ ସମସ୍ତ ଜ୍ଞାତ ବସ୍ତୁ ଅପେକ୍ଷା ଆମର ଅଧିକ ଜ୍ଞାତ । ସେ ହିଁ ସେହି ଏକ ବସ୍ତୁ, ଯାହାକୁ ଆମେ ସର୍ବତ୍ର ଦେଖୁଛୁ । ସମସ୍ତେ ସେମାନଙ୍କର ନିଜ ଆତ୍ମାକୁ ଜାଣନ୍ତି; ସମସ୍ତେ, ଏପରିକି ପଶୁମାନେ ମଧ୍ୟ ଜାଣନ୍ତି ଯେ, ମୁଁ ଅଛି । ଆମେ ଯାହା କିଛି ଜାଣୁ, ସବୁ ଆତ୍ମାର ହିଁ ବହିଃ-କ୍ଷେପ, ବିସ୍ତାରସ୍ୱରୂପ । ଛୋଟ ଛୋଟ ପିଲାଙ୍କୁ ଏହି ତତ୍ତ୍ୱ ଶିକ୍ଷା ଦିଅ, ସେମାନେ ମଧ୍ୟ ଏହି ତତ୍ତ୍ୱ ଧାରଣା କରିପାରିବେ । ଅଜ୍ଞାତସାରରେ ହେଲେ ମଧ୍ୟ ପ୍ରତ୍ୟେକ ଧର୍ମ ଏହି ଆତ୍ମାକୁ ହିଁ ଉପାସନା କରି ଆସିଛି, କାରଣ ଆତ୍ମା ବ୍ୟତୀତ ଆଉ କିଛି ନାହିଁ ।

ଆମେ ଏହି ଜୀବନକୁ ଏଠାରେ ଯେପରି ଭାବରେ ଜାଣୁ, ତା'ପ୍ରତି ଏପରି ଅଶୋଭନୀୟ ଆସକ୍ତି ସବୁ ଅନିଷ୍ଟର ମୂଳ । ସେଥିରୁ ହିଁ ଯେତେସବୁ ପ୍ରତାରଣା ଓ କ୍ଳେଶ ହୋଇଥାଏ । ଏହାରି ପାଇଁ ଲୋକେ ଟଙ୍କାକୁ ଦେବତାଙ୍କର ଆସନ ଦିଅନ୍ତି ଓ ସେଥିରୁ ସବୁ ପାପ ଓ ଭୟର ଉତ୍ପତ୍ତି ହୋଇଥାଏ । କୌଣସି ଜଡ଼ବସ୍ତୁକୁ ମୂଲ୍ୟବାନ୍ ବୋଲି ମନେ-କର ନାହିଁ ଓ ସେଥିରେ ଆସକ୍ତ ହୁଅ ନାହିଁ । ତୁମେ ଯଦି କୌଣସି କିଛିରେ ଏପରି କି ଜୀବନପ୍ରତି ମଧ୍ୟ ଆସକ୍ତ ନ ହୁଅ, ତା'ହେଲେ ଆଉ କୌଣସି ଭୟ ରହିବ ନାହିଁ । 'ମୃତ୍ୟୋଃ ସ ମୃତ୍ୟୁମାପ୍ନୋତି ଯ ଇହ ନାନେବ ପଶ୍ୟତି ।'*—ଯେ ଏହି ଜଗତ୍‌କୁ ନାନା ଭାବରେ ଦେଖେ, ସେ ମୃତ୍ୟୁ ପରେ ମୃତ୍ୟୁ ପ୍ରାପ୍ତ ହୁଏ, ବାରମ୍ବାର ମୃତ୍ୟୁର କବଳରେ

* କଠୋପନିଷଦ୍, ୨।୧।୧୦

ପଡ଼େ । ଆମେ ଯେତେବେଳେ ସବୁ କିଛି ଏକ ଦେଖୁ, ସେତେବେଳେ ସେତେବେଳେ ଆମର ଶରୀରର ମୃତ୍ୟୁ ରହେ ନାହିଁ, ମନର ମୃତ୍ୟୁ ମଧ୍ୟ ରହେ ନାହିଁ । ଜଗତ୍‌ର ସବୁ ଦେହ ହିଁ ମୋର, ସୁତରାଂ ମୋର ଦେହ ନିତ୍ୟ; କାରଣ ଗଛଲତା, ଜୀବଜନ୍ତୁ, ଚନ୍ଦ୍ରସୂର୍ଯ୍ୟ, ଏପରିକି ସମଗ୍ର ବ୍ରହ୍ମାଣ୍ଡ ହିଁ ମୋର ଦେହ—ତେବେ ଏହି ଦେହ ନଷ୍ଟ ହେବ କିପରି ? ପ୍ରତ୍ୟେକ ମନ, ପ୍ରତ୍ୟେକ ଚିନ୍ତା ଯେ ମୋର—ତେବେ ମୃତ୍ୟୁ କିପରି ଆସିବ ? ଆତ୍ମା କେବେହେଲେ ଜନ୍ମେ ନାହିଁ କି ମରେ ନାହିଁ—ଆମେ ଯେତେବେଳେ ଏହା ପ୍ରତ୍ୟକ୍ଷ ଉପଲବ୍‌ଧି କରୁଁ, ସେତେବେଳେ ସବୁ ସନ୍ଦେହ ଉଭେଇ ଯାଏ; 'ମୁଁ ଅଛି', 'ମୁଁ ଅନୁଭବ କରୁଛି', 'ମୁଁ ଭଲ ପାଉଛି'—'ଅସ୍ତି, ଭାତି, ପ୍ରିୟ'—ଏଗୁଡ଼ିକ ଉପରେ କେବେହେଲେ ସନ୍ଦେହ କରାଯାଇପାରେ ନାହିଁ । ମୋର କ୍ଷୁଧା ବୋଲି କିଛି ଥାଇ ନ ପାରେ, କାରଣ ଜଗତରେ ଯେ କେହି ଯାହା କିଛି ଖାଉଛି, ତାହା ମୁଁ ଖାଉଛି । ଆମର ଯଦି ମେଞ୍ଚାଏ ବାଳ ଉପୁଡ଼ିଯାଏ, ଆମେ ଭାବୁ ନାହିଁ ଯେ, ଆମେ ମରିଗଲୁ । ସେହିପରି ଯଦି ଗୋଟିଏ ଦେହର ମୃତ୍ୟୁ ହୁଏ, ତାହା ତ ମୁଠାଏ ବାଳ ଉପୁଡ଼ିଗଲା ଭଳି । ***

ସେହି ଜ୍ଞାନାତୀତ ବସ୍ତୁ ହିଁ ଈଶ୍ୱର—ସେ ବାକ୍ୟର ଅତୀତ, ଚିନ୍ତାର ଅତୀତ, ଜ୍ଞାନର ଅତୀତ ।·· ତିନୋଟି ଅବସ୍ଥା ଅଛି—ପଶୁତ୍ୱ (ତମଃ), ମନୁଷ୍ୟତ୍ୱ (ରଜଃ) ଓ ଦେବତ୍ୱ (ସତ୍ତ୍ୱ) । ଯେଉଁମାନେ ସର୍ବୋଚ୍ଚ ଅବସ୍ଥା ଲାଭ କରନ୍ତି, ସେମାନେ ଅସ୍ତିମାତ୍ର ବା ସତ୍‌ସ୍ୱରୂପମାତ୍ର ହୋଇ ରହନ୍ତି । ସେମାନଙ୍କ ପକ୍ଷରେ କର୍ତ୍ତବ୍ୟ ଏକାବେଳକେ ଶେଷ ହୋଇଯାଏ, ସେମାନେ ମନୁଷ୍ୟଙ୍କୁ ଭଲ ପାଆନ୍ତି ଓ ଚୁମ୍ବକ ପରି ଅନ୍ୟଙ୍କୁ ସେମାନଙ୍କ ଆଡ଼କୁ ଆକର୍ଷଣ କରନ୍ତି । ଏହାର ନାମ ମୁକ୍ତି । ସେତେବେଳେ ଆଉ ଚେଷ୍ଟା କରି କୌଣସି ସତ୍‌କାର୍ଯ୍ୟ କରାଯାଏ ନାହିଁ, ସେତେବେଳେ ତୁମେ ଯେଉଁ କାମ କରିବ, ତାହା ସତ୍‌କାର୍ଯ୍ୟ ହୋଇଯିବ । ବ୍ରହ୍ମବିତ୍ ସମସ୍ତ ଦେବତାଙ୍କଠାରୁ ବଡ଼ । ଯୀଶୁଖ୍ରୀଷ୍ଟ ଯେତେବେଳେ ମୋହକୁ ଜୟ କରି କହିଥିଲେ 'ସଇତାନ, ମୋ ଆଗରୁ ଦୂର ହୁଅ', ସେତେବେଳେ ଦେବତାମାନେ ତାଙ୍କୁ ପୂଜା କରିବାକୁ ଆସିଥିଲେ । ବ୍ରହ୍ମବିତ୍‌ଙ୍କୁ କେହି କିଛି ସାହାଯ୍ୟ କରିପାରେ ନାହିଁ, ସମଗ୍ର ଜଗତ୍-ପ୍ରପଞ୍ଚ ତାଙ୍କ ସମ୍ମୁଖରେ ପ୍ରଣତ ହୋଇଥାଏ, ତାଙ୍କର ସମସ୍ତ ବାସନା ପୂର୍ଣ୍ଣ ହୁଏ, ତାଙ୍କର ଆତ୍ମା ଅପରକୁ ପବିତ୍ର କରିଦିଏ । ଅତଏବ ଯଦି ଈଶ୍ୱରଲାଭ କାମନା କର, ତେବେ ବ୍ରହ୍ମବିଦ୍‌ଙ୍କର ପୂଜା କର । ଯେତେବେଳେ ଆମେ ଦେବାନୁଗ୍ରହସ୍ୱରୂପ --ମନୁଷ୍ୟତ୍ୱ, ମୁମୁକ୍ଷୁତ୍ୱ ଓ ମହାପୁରୁଷ-ସଂଶ୍ରୟ ଲାଭ କରୁ, ସେତେବେଳେ ବୁଝିବାକୁ ହେବ—ମୁକ୍ତି ଆମର କରତଳଗତ । ***

ଚିରକାଳ ପାଇଁ ଦେହର ମୃତ୍ୟୁର ନାମ ହିଁ ନିର୍ବାଣ । ଏହା ନିର୍ବାଣ-ତତ୍ତ୍ୱର 'ନା'ର ଦିଗ । ଏହା କେବଳ କହେ—ମୁଁ ଏହା ନୁହେଁ, ତାହା ନୁହେଁ । ବେଦାନ୍ତ ଆଉ ଟିକିଏ ଅଗ୍ରସର ହୋଇ 'ହଁ'ର ଦିଗଟି ପ୍ରକାଶ କରନ୍ତି—ତାହାର ନାମ 'ମୁକ୍ତି' । 'ମୁଁ ଅନନ୍ତ-ସତ୍ତା, ଅନନ୍ତ-ଜ୍ଞାନ, ଅନନ୍ତ-ଆନନ୍ଦ--ମୁଁ ହିଁ ସେ'—ଏହା ହିଁ ବେଦାନ୍ତ—ନିର୍ଦ୍ଦିଷ୍ଟ ଓ ଦୃଢ଼ଭାବରେ ନିର୍ମିତ ସ୍ତମ୍ଭର ଶୀର୍ଷ-ପ୍ରସ୍ତର ।

ବୌଦ୍ଧଧର୍ମର ମହାଯାନ ସମ୍ପ୍ରଦାୟର ଅଧିକ ଭାଗ ଲୋକ ମୁକ୍ତିରେ ବିଶ୍ୱାସୀ— ସେମାନେ ଯଥାର୍ଥ ହିଁ ବୈଦାନ୍ତିକ । କେବଳ ସିଂହଳବାସୀମାନେ ହିଁ ନିର୍ବାଣକୁ 'ବିନାଶ' ଅର୍ଥରେ ଗ୍ରହଣ କରନ୍ତି ।

କୌଣସି ପ୍ରକାର ବିଶ୍ୱାସ ବା ଅବିଶ୍ୱାସ 'ମୁଁ'କୁ ନାଶ କରିପାରେ ନାହିଁ । ଯାହାର ଅସ୍ତିତ୍ୱ ବିଶ୍ୱାସ ଉପରେ ନିର୍ଭର କରେ ଓ ଯାହା ଅବିଶ୍ୱାସରେ ଉଡ଼ିଯାଏ, ତାହା ଭ୍ରମ ମାତ୍ର । ଆତ୍ମାକୁ କିଛି ସ୍ପର୍ଶ କରିପାରେ ନାହିଁ । 'ମୁଁ ମୋର ଆତ୍ମାକୁ ନମସ୍କାର କରେଁ ।' 'ସ୍ୱସ୍ମୈଂଜ୍ୟୋତିଃ ମୁଁ ନିଜକୁ ହିଁ ନମସ୍କାର କରେ, ମୁଁ ବ୍ରହ୍ମ ।' ଏହି ଦେହଟା ଯେପରି ଗୋଟିଏ ଅନ୍ଧକାର ଘର; ମୁଁ ଯେତେବେଳେ ସେହି ଘରେ ପ୍ରବେଶ କରେ, ସେତେବେଳେ ତାହା ଆଲୋକିତ ହୋଇ ଉଠେ, ସେତେବେଳେ ହିଁ ତାହା ଜୀବନ୍ତ ହୁଏ । ଆତ୍ମାର ଏହି ସ୍ୱପ୍ରକାଶ ଜ୍ୟୋତିକୁ କିଛି ହେଲେ ସ୍ପର୍ଶ କରିପାରେ ନାହିଁ, ଏହାକୁ କୌଣସି ମତେ ନଷ୍ଟ କରାଯାଇପାରେ ନାହିଁ । ଏହାକୁ ଆବୃତ କରାଯାଇପାରେ, କିନ୍ତୁ କେବେ ହେଲେ ନଷ୍ଟ କରାଯାଇପାରେ ନାହିଁ ।

***

ବର୍ତ୍ତମାନ ଯୁଗରେ ଭଗବାନଙ୍କୁ ଅନନ୍ତଶକ୍ତିସ୍ୱରୂପିଣୀ ଜନନୀରୂପରେ ଉପାସନା କରିବା କର୍ତ୍ତବ୍ୟ । ଏହାଦ୍ୱାରା ପବିତ୍ରତାର ଉଦୟ ହେବ ଓ ଏହି ମାତୃପୂଜାରେ ଆମେରିକାରେ ମହାଶକ୍ତିର ବିକାଶ ହେବ । ଏଠାରେ (ଆମେରିକାରେ) କୌଣସି ମନ୍ଦିର (ପୌରୋହିତ୍ୟଶକ୍ତି) କାହାକୁ ଦବାଇ ରଖି ନାହିଁ ଓ ଅପେକ୍ଷାକୃତ ଗରିବ ଦେଶଗୁଡ଼ିକ ପରି ଏଠାରେ କେହି କଷ୍ଟ ଭୋଗ କରେ ନାହିଁ । ସ୍ତ୍ରୀଲୋକମାନେ ଶତ ଶତ ଯୁଗ ଧରି ଦୁଃଖକଷ୍ଟ ସହ୍ୟ କରିଛନ୍ତି, ତାହା ଫଳରେ ସେମାନଙ୍କ ଭିତରେ ଅସୀମ ଧୈର୍ଯ୍ୟ ଓ ଅଧ୍ୟବସାୟର ବିକାଶ ହୋଇଛି । ସେମାନେ କୌଣସି ଭାବ ସହଜରେ ଛାଡ଼ିବାକୁ ଚାହାଁନ୍ତି ନାହିଁ । ଏହି କାରଣରୁ ସେମାନେ ସବୁ ଦେଶରେ ଏପରିକି କୁସଂସ୍କାରପୂର୍ଣ୍ଣ ଧର୍ମସମୂହର ଏବଂ ପୁରୋହିତମାନଙ୍କର ପୃଷ୍ଠପୋଷକସ୍ୱରୂପ ହୋଇଥାଆନ୍ତି ଓ ଏହା ହିଁ ପରେ ସେମାନଙ୍କର ସ୍ୱାଧୀନତାର କାରଣ ହେବ । ଆମକୁ ବୈଦାନ୍ତିକ ହୋଇ ବେଦାନ୍ତର ଏହି ମହାନ୍ ଭାବକୁ ଜୀବନରେ ପରିଣତ କରିବାକୁ ହେବ । ଜନସାଧାରଣଙ୍କୁ ମଧ୍ୟ ଏହି ଭାବ ଦେବାକୁ ହେବ—ଏହା କେବଳ ସ୍ୱାଧୀନ ଆମେରିକାରେ ହିଁ କାର୍ଯ୍ୟରେ ପରିଣତ କରାଯାଇ ପାରେ । ଭାରତରେ ବୁଦ୍ଧ, ଶଙ୍କର ଓ ଅନ୍ୟାନ୍ୟ ମହାମନୀଷୀଗଣ ଏହିସବୁ ଭାବ ପ୍ରଚାର କରିଥିଲେ; କିନ୍ତୁ ଜନସାଧାରଣ ସେଗୁଡ଼ିକୁ ଧରି ରଖିପାରି ନାହାନ୍ତି । ଏହି ନୂଆ ଯୁଗରେ ଜନସାଧାରଣ ବେଦାନ୍ତର ଆଦର୍ଶାନୁଯାୟୀ ଜୀବନଯାପନ କରିବେ ଓ ସ୍ତ୍ରୀ-ଲୋକଙ୍କଦ୍ୱାରା ହିଁ ଏହା କାର୍ଯ୍ୟରେ ପରିଣତ ହେବ । "ଯତନେ ହୃଦୟେ ରେଖ ଆଦରିଣୀ ଶ୍ୟାମା ମା'ଙ୍କୁ···।"

ଯେତେ ପ୍ରାଣୀ ଜୀବନଧାରଣ କରୁଛନ୍ତି, ତୁମେ ସେସମସ୍ତଙ୍କର ଊର୍ଦ୍ଧ୍ୱରେ । ତୁମେ ମୋ ଜୀବନର ସୁଧାକର-ସ୍ୱରୂପ, ମୋ ଆତ୍ମାର ଆତ୍ମା ।

**ରବିବାର, ଅପରାହ୍ଣ**

ଦେହ ଯେପରି ମନ ହାତରେ ଏକ ଯନ୍ତ୍ରବିଶେଷ, ମନ ମଧ୍ୟ ସେହିପରି ଆତ୍ମା

ହାତରେ ଏକ ଯନ୍ତ୍ରସ୍ୱରୂପ । ଜଡ଼ ହେଉଛି ବାହାରର ଗତି, ମନ ହେଉଛି ଭିତରର ଗତି । କାଳରେ ହିଁ ସମସ୍ତ ପରିଣାମର ଆରମ୍ଭ ଓ ସମାପ୍ତି । ଆତ୍ମା ଯଦି ଅପରିଣାମୀ ହୁଅନ୍ତି, ସେ ନିଶ୍ଚିତ ପୂର୍ଣ୍ଣସ୍ୱରୂପ; ଯଦି ପୂର୍ଣ୍ଣସ୍ୱରୂପ ହୁଅନ୍ତି, ତା'ହେଲେ ସେ ଅନନ୍ତସ୍ୱରୂପ; ଓ ଅନନ୍ତ-ସ୍ୱରୂପ ହେଲେ ଅବଶ୍ୟ ହିଁ ସେ ଅଦ୍ୱିତୀୟ; କାରଣ ଦୁଇଟି ଅନନ୍ତ ରହି ନ ପାରେ; ସୁତରାଂ ଆତ୍ମା ଏକମାତ୍ର ହିଁ ହୋଇପାରନ୍ତି । ଯଦିଓ ଆତ୍ମାଙ୍କୁ ବହୁ ବୋଲି ମନେହୁଏ, କିନ୍ତୁ ପ୍ରକୃତରେ ସେ ଏକ । ଯଦି କୌଣସି ବ୍ୟକ୍ତି ସୂର୍ଯ୍ୟଙ୍କ ଅଭିମୁଖରେ ଗଲେ, ପ୍ରତି ପଦକ୍ଷେପରେ ସେ ଗୋଟିଏ ଗୋଟିଏ ବିଭିନ୍ନ ସୂର୍ଯ୍ୟ ଦେଖିବ ସତ, କିନ୍ତୁ ପ୍ରକୃତରେ ସବୁଗୁଡ଼ିକ ତ ସେହି ଗୋଟିଏ ସୂର୍ଯ୍ୟ ।

ଅସ୍ତି-ଭାବ ହିଁ ସବୁ ପ୍ରକାର ଏକତ୍ୱର ଭିତ୍ତିସ୍ୱରୂପ ଓ ଏହି ଭିତ୍ତିକୁ ଯାଇପାରିଲେ ପୂର୍ଣ୍ଣତା ଲାଭ ହୁଏ । ସବୁ ରଙ୍ଗକୁ ଯଦି ଏକ ରଙ୍ଗରେ ପରିଣତ କରିବା ସମ୍ଭବ ହୁଅନ୍ତା, ତା'ହେଲେ ଚିତ୍ରବିଦ୍ୟା ଲୋପ ପାଇଯାଆନ୍ତା । ସମ୍ପୂର୍ଣ୍ଣ ଏକତ୍ୱ ହେଉଛି ବିଶ୍ରାମ ବା ଲୟ-ସ୍ୱରୂପ; ସମସ୍ତ ପ୍ରକାଶ ଏକ ଈଶ୍ୱରଙ୍କଠାରୁ ପ୍ରସୂତ ବୋଲି ଆମେ କହୁଥାଉଁ । ଟାଓବାଦୀ କନ୍‌ଫୁସିଅସ (Confucius) ମତାବଲମ୍ବୀ, ବୌଦ୍ଧ, ହିନ୍ଦୁ, ଇହୁଦୀ, ମୁସଲମାନ, ଖ୍ରୀଷ୍ଟାନ ଓ ଜରଥୁଷ୍ଟ୍ର-ଶିଷ୍ୟଗଣ (Zoroastrians) ସମସ୍ତେ ପ୍ରାୟ ଏକ ପ୍ରକାର ଭାଷାରେ 'ତୁମେ ଅନ୍ୟ ନିକଟରୁ ଯେଭଳି ବ୍ୟବହାର ଆଶା କର, ଅନ୍ୟ ପ୍ରତି ଠିକ୍ ସେହିଭଳି ବ୍ୟବହାର କର'—ଏହି ଅପୂର୍ବ ନୀତି ପ୍ରଚାର କରିଛନ୍ତି; କିନ୍ତୁ ହିନ୍ଦୁମାନେ ହିଁ କେବଳ ଏହି ତତ୍ତ୍ୱର ବ୍ୟାଖ୍ୟା ଦେଇଛନ୍ତି, କାରଣ ସେମାନେ ଏହାର କାରଣ ଦେଖିବାକୁ ପାଇଥିଲେ । ମନୁଷ୍ୟକୁ ଅନ୍ୟ ସମସ୍ତଙ୍କୁ ଭଲ ପାଇବାକୁ ହେବ; କାରଣ ସେହି ଅନ୍ୟ ସମସ୍ତେ ଯେ ତା' ନିଜ ଛଡ଼ା ଆଉ କେହି ନୁହେଁ; ସେହି ଏକ ବସ୍ତୁ ହିଁ ବିଦ୍ୟମାନ ।

ଜଗତରେ ଯେତେ ବଡ଼ ବଡ଼ ଧର୍ମାଚାର୍ଯ୍ୟ ହୋଇଛନ୍ତି, ସେମାନଙ୍କ ମଧ୍ୟରେ କେବଳ ଲାଓସେ, ବୁଦ୍ଧ ଓ ଯୀଶୁ ହିଁ ଉକ୍ତ ନୀତିର ମଧ୍ୟ ଊର୍ଦ୍ଧ୍ୱକୁ ଯାଇ ଶିକ୍ଷା ଦେଇ ଯାଇଛନ୍ତି—'ତୁମ ଶତ୍ରୁଙ୍କର ମଧ୍ୟ ଉପକାର କର; ଯେଉଁମାନେ ତୁମକୁ ଘୃଣା କରନ୍ତି, ସେମାନଙ୍କୁ ମଧ୍ୟ ଭଲ ପାଅ ।'

ତତ୍ତ୍ୱସମୂହ ପୂର୍ବରୁ ରହିଛି; ଆମେ ସେଗୁଡ଼ିକୁ ସୃଷ୍ଟି କରୁ ନାହିଁ, କେବଳ ଆବିଷ୍କାର କରୁ ମାତ୍ର । ଧର୍ମ କେବଳ ପ୍ରତ୍ୟକ୍ଷାନୁଭୂତି । ବିଭିନ୍ନ ମତାମତ—ପ୍ରଣାଳୀ ମାତ୍ର, ସେଗୁଡ଼ିକ ଧର୍ମ ନୁହେଁ । ଜଗତର ସବୁ ଧର୍ମ, ସବୁ ବିଭିନ୍ନ ଜାତିର ବିଭିନ୍ନ ପ୍ରୟୋଜନ ଅନୁଯାୟୀ ଏକ ଧର୍ମର ହିଁ ବିଭିନ୍ନ ପ୍ରୟୋଗ ମାତ୍ର । ମତବାଦ କେବଳ ବିରୋଧ ସୃଷ୍ଟି କରେ; ଦେଖୁ ନାହଁ, ଈଶ୍ୱରଙ୍କ ନାମରେ ଶାନ୍ତି ହେବା ପରିବର୍ତ୍ତେ ନାନା ପ୍ରକାର ରକ୍ତପାତ ଘଟୁଛି; ପୃଥିବୀର ସମସ୍ତ ରକ୍ତପାତର ଅଧେ ଈଶ୍ୱରଙ୍କ ନାମରେ ହିଁ ହେଉଛି । ଏକାବେଳକେ ମୂଳକୁ ଯାଅ; ସ୍ୱୟଂ ଈଶ୍ୱରଙ୍କୁ ପ୍ରଶ୍ନ କର—ତାଙ୍କର ସ୍ୱରୂପ କଅଣ ? ସେ ଯଦି କୌଣସି ଉତ୍ତର ନ ଦିଅନ୍ତି, ବୁଝିବାକୁ ହେବ, ସେ ନାହାନ୍ତି; କିନ୍ତୁ ଜଗତର ସମସ୍ତ ଧର୍ମ କହନ୍ତି ସେ ସେ ଉତ୍ତର ଦେଇଥାଆନ୍ତି ।

ତୁମର ନିଜର ଯେପରି କିଛି କହିବାର ଥାଏ, ତା' ନ ହେଲେ ଅନ୍ୟମାନେ କିଅଣ କହୁଛନ୍ତି, ସେ ସମ୍ପର୍କରେ କୌଣସି ପ୍ରକାର ଧାରଣା କରିବ କିପରି ? ପୁରାତନ କୁସଂସ୍କାରକୁ ନେଇ ପଡ଼ିରହ ନାହିଁ, ସର୍ବଦା ନୂତନ ସତ୍ୟସମୂହ ପାଇଁ ପ୍ରସ୍ତୁତ ହୁଅ । 'ଯେଉଁମାନେ ସେମାନଙ୍କ ପୂର୍ବପୁରୁଷ ଖୋଳିଥିବା କୂଅର ଲୁଣିଆ ପାଣି ପିଇବେ ପଛକେ, ଅନ୍ୟ କୂଅରୁ ବିଶୁଦ୍ଧ ପାଣି ପିଇବେ ନାହିଁ, ସେମାନେ ମୂର୍ଖ ।' ଆମେ ଯେପର୍ଯ୍ୟନ୍ତ ନିଜେ ଈଶ୍ୱରଙ୍କୁ ପ୍ରତ୍ୟକ୍ଷ ନ କରିଛୁ, ସେପର୍ଯ୍ୟନ୍ତ ତାଙ୍କ ସମ୍ପର୍କରେ କିଛି ଜାଣିପାରିବା ନାହିଁ । ପ୍ରତ୍ୟେକ ବ୍ୟକ୍ତି ସ୍ୱଭାବତଃ ପୂର୍ଣ୍ଣସ୍ୱରୂପ । ଅବତାରଗଣ ସେମାନଙ୍କର ଏହି ପୂର୍ଣ୍ଣସ୍ୱରୂପକୁ ପ୍ରକାଶ କରିଛନ୍ତି, ଆମ ଭିତରେ ଏପର୍ଯ୍ୟନ୍ତ ଏହା ଅବ୍ୟକ୍ତ ଭାବରେ ରହିଛି । ଆମେ ଯଦି ତାଙ୍କୁ ଦେଖିବାକୁ ନ ପାଇବା, ତାହା ହେଲେ କିପରି ବୁଝିବା ଯେ ମୂଶା ଈଶ୍ୱରଙ୍କୁ ଦର୍ଶନ କରିଥିଲେ ? ଯଦି ଈଶ୍ୱର କେବେ ମୂଶାଙ୍କ ନିକଟକୁ ଆସିଥାଆନ୍ତି, ତା'ହେଲେ ଆମ ନିକଟକୁ ମଧ୍ୟ ଆସିବେ । ମୁଁ ଏକାବେଳକେ ସିଧାସଳଖ ତାଙ୍କ ନିକଟକୁ ଯିବି, ସେ ଯେପରି ମୋ ସଙ୍ଗରେ କଥା କହନ୍ତି । ବିଶ୍ୱାସକୁ ଭିତ୍ତିରୂପେ ମୁଁ ଗ୍ରହଣ କରିପାରିବି ନାହିଁ —ତାହା ନାସ୍ତିକତା ଓ ଘୋର ଈଶ୍ୱରନିନ୍ଦାମାତ୍ର । ଈଶ୍ୱର ଯଦି ଦୁଇହଜାର ବର୍ଷ ଆଗେ ଆରବର ମରୁଭୂମିରେ କୌଣସି ବ୍ୟକ୍ତି ସହିତ କଥା କହିଥାଆନ୍ତି, ସେ ଆଜି ମୋ ସଙ୍ଗେ ମଧ୍ୟ କଥା କହିପାରନ୍ତି । ତା' ନ ହେଲେ କିପରି ଜାଣିବି, ସେ ମରିଯାଇ ନାହାନ୍ତି ? ଯେ କୌଣସି ପ୍ରକାରେ ହେଉ, ଈଶ୍ୱରଙ୍କ ନିକଟକୁ ଆସ—କିନ୍ତୁ ଆସିବା ଦରକାର । ତେବେ ଆସିବା ସମୟରେ ଯେପରି କାହାରିକୁ ଠେଲି ପକାଇ ନ ଦିଅ ।

ଜ୍ଞାନୀ ବ୍ୟକ୍ତିମାନେ ଅଜ୍ଞାନ ବ୍ୟକ୍ତିମାନଙ୍କ ପ୍ରତି କରୁଣା କରିବେ । ଯେ ଜ୍ଞାନୀ, ସେ ଗୋଟିଏ ପିମ୍ପୁଡ଼ି ପାଇଁ ମଧ୍ୟ ଦେହ ତ୍ୟାଗ କରିବାକୁ ରାଜି ଥାଆନ୍ତି, କାରଣ ସେ ଜାଣନ୍ତି ଯେ, ଦେହଟି କିଛି ନୁହେଁ ।

## ସୋମବାର, ୫ ଅଗଷ୍ଟ

ପ୍ରଶ୍ନ ହେଉଛି : ସର୍ବୋଚ୍ଚ ଅବସ୍ଥା ଲାଭ କରିବାକୁ ହେଲେ ସମସ୍ତ ନିମ୍ନତର ସୋପାନଦେଇ କିଅଣ ଯିବାକୁ ହେବ, ନା ଏକାବେଳକେ ତାଆଁମାରି ସେହି ଅବସ୍ଥାରେ ପହଞ୍ଚି ହେବ ? ଆଧୁନିକ ଆମେରିକାନ୍ ବାଳକ ଆଜି ଯେଉଁ ବିଷୟ ପଚିଶ ବର୍ଷରେ ଶିକ୍ଷା କରିପାରେ, ତାହାର ପୂର୍ବପୁରୁଷଙ୍କୁ ସେହି ବିଷୟ ଶିଖିବାକୁ ଏକଶହ ବର୍ଷ ଲାଗୁଥିଲା । ଆଧୁନିକ ହିନ୍ଦୁ ବର୍ତ୍ତମାନ କୋଡ଼ିଏ ବର୍ଷରେ ସେହି ଅବସ୍ଥାରେ ପହଞ୍ଚିବ, ଯେଉଁ ଅବସ୍ଥାରେ ପହଞ୍ଚିବାକୁ ତାହାର ପୂର୍ବପୁରୁଷଙ୍କୁ ଆଠହଜାର ବର୍ଷ ଲାଗିଥିଲା । ଦେହ ଦୃଷ୍ଟିରୁ ବିଚାର କଲେ ଦେଖାଯାଏ ଯେ, ଗର୍ଭରେ ଭ୍ରୂଣ ସେହି ପ୍ରାଥମିକ ଜୀବାଣୁର (amoeba) ଅବସ୍ଥାରୁ ଆରମ୍ଭ କରି ନାନା ଅବସ୍ଥା ଅତିକ୍ରମ କରି ଶେଷରେ ମନୁଷ୍ୟରୂପ ଧାରଣ କରେ । ଏହା ହେଲା ଆଧୁନିକ ବିଜ୍ଞାନର ଶିକ୍ଷା । ବେଦାନ୍ତ ଆହୁରି ଅଗ୍ରସର ହୋଇ କହେ, ଆମେ କେବଳ ସମଗ୍ର ମାନବଜାତିର ଅତୀତ ଜୀବନଯାପନ କଲେ ଯଥେଷ୍ଟ ହେବ ନାହିଁ, ସମଗ୍ର ମାନବଜାତିର ଭବିଷ୍ୟତ୍ ଜୀବନ ମଧ୍ୟ ଯାପନ କରିବାକୁ ହେବ । ଯେ ପ୍ରଥମଟି କରନ୍ତି, ସେ

ଶିକ୍ଷିତ ବ୍ୟକ୍ତି, ଯେ ଦ୍ୱିପ୍ରାସୃଷ୍ଟି କରିପାରନ୍ତି, ସେ 'ଜୀବନ୍ମୁକ୍ତ' ।

କାଳ କେବଳ ଆମ ଚିନ୍ତାର ପରିମାପକ ମାତ୍ର ଓ ଚିନ୍ତାର ଗତି ଅଚିନ୍ତନୀୟ ଭାବରେ ଦ୍ରୁତ । ଆମେ କେତେ ଶୀଘ୍ର ଭବିଷ୍ୟତ୍ ଜୀବନଯାପନ କରିପାରୁ, ତାହାର କୌଣସି ସୀମା ନିର୍ଦ୍ଦେଶ କରାଯାଇପାରେ ନାହିଁ । ସୁତରାଂ ମାନବଜାତିର ସମଗ୍ର ଭବିଷ୍ୟତ ଜୀବନ ନିଜ ଜୀବନରେ ଅନୁଭବ କରିବାକୁ କେତେଦିନ ଲାଗିବ, ତାହା ନିର୍ଦ୍ଦିଷ୍ଟ ଭାବରେ କୁହାଯାଇପାରିବ ନାହିଁ । କାହାରି କାହାରି ପକ୍ଷରେ ଏକ ମୁହୂର୍ତ୍ତରେ ସେହି ଅବସ୍ଥା ଲାଭ କରିବା ସମ୍ଭବ, କାହାରି ବା ପଚାଶ ଜନ୍ମ ଲାଗିଯାଇପାରେ । ଏହା ଇଚ୍ଛାର ତୀବ୍ରତା ଉପରେ ନିର୍ଭର କରୁଛି । ସୁତରାଂ ଶିଷ୍ୟର ପ୍ରୟୋଜନାନୁଯାୟୀ ଉପଦେଶ ମଧ୍ୟ ବିଭିନ୍ନ ପ୍ରକାର ହେବା ଉଚିତ । ଜ୍ୱଳନ୍ତ ଅଗ୍ନି ସମସ୍ତଙ୍କ ପାଇଁ ରହିଛି—ତାହା ପାଣି, ଏପରିକି ବରଫଖଣ୍ଡକୁ ମଧ୍ୟ ନିଃଶେଷ କରିଦିଏ । ବନ୍ଧୁକରୁ ଗୁଡ଼ାଏ ଗୁଳି ଏକସଙ୍ଗେ ଫୁଟାଇଲେ ଅନ୍ତତଃ ଗୋଟିଏ ଗୁଳି ନିଶ୍ଚୟ ବାଜିବ । ସେହିପରି ଲୋକକୁ ଏକାଥରକେ ଗୁଡ଼ାଏ ସତ୍ୟ ଦିଆଗଲେ, ସେ ସେଥିମଧ୍ୟରୁ ତାହା ପକ୍ଷରେ ଯେତିକି ଉପଯୋଗୀ, ସେତିକି ନେଇଯିବ । ଅତୀତର ବହୁ ଜନ୍ମ ଫଳରେ ଯାହାର ଯେପରି ସଂସ୍କାର ଗଠିତ ହୋଇଛି, ତାହାକୁ ତଦନୁଯାୟୀ ଉପଦେଶ ଦିଅ । ଜ୍ଞାନ, ଯୋଗ, ଭକ୍ତି ଓ କର୍ମ—ଏହା ମଧ୍ୟରେ ଯେ କୌଣସି ଭାବକୁ ମୂଳଭିତ୍ତି କର; କିନ୍ତୁ ତା' ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ଭାବଗୁଡ଼ିକୁ ମଧ୍ୟ ଶିକ୍ଷା ଦିଅ । ଜ୍ଞାନ ସହିତ ଭକ୍ତି ଦେଇ ସାମଞ୍ଜସ୍ୟ କରିବାକୁ ହେବ, ଯୋଗପ୍ରବଣ ପ୍ରକୃତିକୁ ଯୁକ୍ତିବିଚାରଦ୍ୱାରା ସାମଞ୍ଜସ୍ୟ କରିବାକୁ ପଡ଼ିବ ଏବଂ କର୍ମ—ତତ୍ତ୍ୱକୁ କାମରେ ପରିଣତ କରିବାର ସାଧନା—ଯେପରି ସମସ୍ତ ମାର୍ଗର ଅଙ୍ଗସ୍ୱରୂପ ହୁଏ । ଯେ ଯେଉଁଠି ଅଛି, ତାହାକୁ ସେଠାରୁ ପେଲି ଆଗେଇ ଦିଅ; ଧର୍ମଶିକ୍ଷା ଯେପରି ଧ୍ୱଂସମୂଳକ ନ ହୋଇ ସର୍ବଦା ଗଠନମୂଳକ ହୁଏ ।

ମନୁଷ୍ୟର ପ୍ରତ୍ୟେକ ପ୍ରବୃତ୍ତି ହିଁ ତାହାର ଅତୀତର କର୍ମସମଷ୍ଟିର ପରିଚାୟକ । ଏହା ଯେପରି ସେହି ରେଖା ବା ବ୍ୟାସାର୍ଦ୍ଧ, ଯାହାକୁ ଧରି ମନୁଷ୍ୟକୁ ଚାଲିବାକୁ ହେବ । ପୁଣି ସମସ୍ତ ବ୍ୟାସାର୍ଦ୍ଧକୁ ଅବଲମ୍ବନ କରି ହିଁ କେନ୍ଦ୍ରକୁ ଯାଇ ହୁଏ । ଅନ୍ୟର ପ୍ରବୃତ୍ତିକୁ ବଦଳାଇ ଦେବାର ନାମ ସୁଦ୍ଧା ଧର ନାହିଁ, ତଦ୍ୱାରା ଗୁରୁ ଓ ଶିଷ୍ୟ ଉଭୟଙ୍କର କ୍ଷତି ଘଟିଥାଏ । ତୁମେ ଯେତେବେଳେ 'ଜ୍ଞାନ' ଶିକ୍ଷା ଦେଉଛ, ସେତେବେଳେ ତୁମକୁ ଜ୍ଞାନୀ ହେବାକୁ ପଡ଼ିବ ଓ ଶିଷ୍ୟ ଯେଉଁ ଅବସ୍ଥାରେ ରହିଛି, ତୁମକୁ ମନେ ମନେ ଠିକ୍ ସେହି ଅବସ୍ଥାରେ ଅବସ୍ଥିତ ହେବାକୁ ପଡ଼ିବ । ଅନ୍ୟାନ୍ୟ ଯୋଗରେ ମଧ୍ୟ ଏହିଭଳି । ପ୍ରତ୍ୟେକ ବୃତ୍ତିର ଏଭଳି ଭାବରେ ବିକାଶ ସାଧନ କରିବାକୁ ହେବ ଯେ, ତାହା ଛଡ଼ା ଯେପରି ଆମର ଆଉ କୌଣସି ବୃତ୍ତି ନାହିଁ—ଏହା ହେଉଛି ତଥାକଥିତ ସାମଞ୍ଜସ୍ୟପୂର୍ଣ୍ଣ ଉନ୍ନତି-ସାଧନର ଯଥାର୍ଥ ରହସ୍ୟ, ଅର୍ଥାତ୍ ଗମ୍ଭୀରତାର ସହ ଉଦାରତା ଅର୍ଜନ କର; କିନ୍ତୁ ଗମ୍ଭୀରତାକୁ ହରାଇ ଉଦାରତା ଲୁହଁ ନାହିଁ । ଆମେ ଅନନ୍ତସ୍ୱରୂପ, ଆମ ମଧ୍ୟରେ କୌଣସି କିଛିର 'ଇତି' କରାଯାଇ ନ ପାରେ । ସୁତରାଂ ଆମେ ସବୁଠାରୁ ନିଷ୍ଠାବାନ୍ ମୁସଲମାନପରି

ଗମ୍ଭୀର, ଅଥଚ ସବୁଠାରୁ ଘୋର ନାସ୍ତିକ ପରି ଉଦାରଭାବାପନ୍ନ ହୋଇପାରୁ ।

ଏହାକୁ କାର୍ଯ୍ୟରେ ପରିଣତ କରିବାର ଉପାୟ ହେଉଛି—ମନକୁ କୌଣସି ବିଷୟ ବିଶେଷରେ ପ୍ରୟୋଗ କରିବା ନୁହେଁ, ବରଂ ବଦ୍ଧ ମନର ବିକାଶ କରିବା ଓ ତାହାକୁ ସଂଯତ କରିବା । ତା'ହେଲେ ଯାଇ ତୁମେ ତାହାକୁ ଯେଉଁ ଦିଗରେ ଇଚ୍ଛା ପରିଚାଳିତ କରିପାରିବ । ଏହିପରି ଭାବରେ ତୁମେ ଗମ୍ଭୀରତା ଓ ଉଦାରତା ଉଭୟ ଲାଭ କରିପାରିବ । ଏପରି ଭାବରେ ଜ୍ଞାନର ଉପଲବ୍ଧି କର ଯେ, ଯେପରି ଜ୍ଞାନ ଛଡ଼ା ଆଉ କିଛି ନାହିଁ । ତା'ପରେ ଭକ୍ତିଯୋଗ, ରାଜଯୋଗ, କର୍ମଯୋଗ ପଥରେ ମଧ୍ୟ ଏହି ଭାବରେ ସାଧନା କର । ତରଙ୍ଗ ଛାଡ଼ି ସମୁଦ୍ର ଆଡ଼କୁ ଯାଅ, ତେବେ ତୁମେ ଇଚ୍ଛାନୁଯାୟୀ ବିଭିନ୍ନ ପ୍ରକାର ତରଙ୍ଗ ଉତ୍ପାଦନ କରିପାରିବ । ତୁମର ନିଜ ମନ-ରୂପକ ହ୍ରଦକୁ ସଂଯତ କର, ତା' ନ ହେଲେ ତୁମେ ଅନ୍ୟର ମନ-ରୂପକ ହ୍ରଦର ତତ୍ତ୍ୱ କଦାପି ଜାଣିପାରିବ ନାହିଁ ।

ଯେ ଶିଷ୍ୟର ପ୍ରବଣତା ଅନୁଯାୟୀ ନିଜର ସମସ୍ତ ଶକ୍ତି ପ୍ରୟୋଗ କରିପାରନ୍ତି, ସେ ହିଁ ପ୍ରକୃତ ଆଚାର୍ଯ୍ୟ । ପ୍ରକୃତ ସହାନୁଭୂତି ବ୍ୟତୀତ ଆମେ କେବେହେଲେ ଯଥାର୍ଥ ଶିକ୍ଷା ଦେଇପାରିବା ନାହିଁ । ମନୁଷ୍ୟ ଯେ ଏକ ଦାୟିତ୍ୱପୂର୍ଣ୍ଣ ପ୍ରାଣୀ—ଏ ଧାରଣା ଛାଡ଼ିଦିଅ; କେବଳ ପୂର୍ଣ୍ଣତାପ୍ରାପ୍ତ ବ୍ୟକ୍ତିର ହିଁ ଦାୟିତ୍ୱଜ୍ଞାନ ଅଛି । ଅଜ୍ଞାନ ବ୍ୟକ୍ତିମାନେ ମୋହ-ମଦିରା ପାନ କରି ମାତାଲ ହୋଇଛନ୍ତି, ସେମାନେ ସହଜ ଅବସ୍ଥାରେ ନାହାନ୍ତି । ତୁମେମାନେ ଜ୍ଞାନଲାଭ କରିଛ—ସେମାନଙ୍କ ପ୍ରତି ତୁମେ ଅନନ୍ତ ଧୈର୍ଯ୍ୟସଂପନ୍ନ ହେବା ଉଚିତ । ସେମାନଙ୍କ ପ୍ରତି ସ୍ନେହ ଛଡ଼ା ଅନ୍ୟ କୌଣସି ଭାବ ରଖ ନାହିଁ; ସେମାନେ ଯେଉଁ ରୋଗରେ ଆକ୍ରାନ୍ତ ହୋଇ ଜଗତକୁ ଭ୍ରାନ୍ତ ଦୃଷ୍ଟିରେ ଦେଖୁଛନ୍ତି, ଆଗେ ସେହି ରୋଗ ନିର୍ଣ୍ଣୟ କର; ତା'ପରେ ଯଦ୍ଦ୍ୱାରା ସେମାନେ ସେହି ରୋଗରୁ ରକ୍ଷା ପାଇବେ ଓ ଠିକ୍ ଠିକ୍ ଭାବରେ ଦେଖିପାରିବେ, ସେ ଦିଗରେ ସାହାଯ୍ୟ କର । ସବୁବେଳେ ମନେରଖ ଯେ, ମୁକ୍ତ ବା ସ୍ୱାଧୀନ ପୁରୁଷର କେବଳ ସ୍ୱାଧୀନ ଇଚ୍ଛା ଥାଏ—ବାକି ସମସ୍ତେ ବନ୍ଧନ ମଧ୍ୟରେ ରହିଛନ୍ତି —ସୁତରାଂ ସେମାନେ ଯାହା କରୁଛନ୍ତି, ସେଥିପାଇଁ ସେମାନେ ଦାୟୀ ନୁହଁନ୍ତି । ଇଚ୍ଛା ଯେତେବେଳେ ଇଚ୍ଛାରୂପରେ ପ୍ରକାଶିତ, ସେତେବେଳେ ତାହା ବଦ୍ଧ । ଜଳ ଯେତେବେଳେ ହିମାଳୟର ଚୂଡ଼ାରେ ତରଳୁଥାଏ, ସେତେବେଳେ ତାହା ସ୍ୱାଧୀନ ବା ଉନ୍ମୁକ୍ତ, କିନ୍ତୁ ନଦୀ ଆକାର ଧାରଣ କଲେ ହିଁ ତୀରଦ୍ୱାରା ବଦ୍ଧ ହୁଏ, ତଥାପି ତା'ର ପ୍ରାଥମିକ ବେଗ ହିଁ ତାକୁ ଶେଷରେ ସମୁଦ୍ରକୁ ନେଇଥାଏ; ସେଠାରେ ଏହି ଜଳ ପୁଣି ସେହି ପୂର୍ବର ସ୍ୱାଧୀନତା ଫେରିପାଏ । ପ୍ରଥମଟିକୁ ଅର୍ଥାତ୍ ନଦୀରୂପେ ଆବଦ୍ଧ ହେବାକୁ ହିଁ ବାଇବେଲରେ 'ମଣିଷର ପତନ' (Fall of man) ଓ ଦ୍ୱିତୀୟଟିକୁ ପୁନରୁତ୍ଥାନ (Resurrection) ବୋଲି କୁହାଯାଇଛି । ଗୋଟିଏ ପରମାଣୁ ମଧ୍ୟ, ଯେତେବେଳ ଯାଏ ତାହା ମୁକ୍ତାବସ୍ଥା ଲାଭ ନ କରିଛି, ସ୍ଥିର ହୋଇ ରହିପାରେ ନାହିଁ ।

କେତେଗୁଡ଼ିଏ କଳ୍ପନା ଅନ୍ୟ କଳ୍ପନାଗୁଡ଼ିକର ବନ୍ଧନ ଭାଙ୍ଗିବାରେ ସାହାଯ୍ୟ କରିଥାଏ । ସମସ୍ତ ଜଗତଟା ହିଁ କଳ୍ପନା; କିନ୍ତୁ ଏକ ପ୍ରକାର କଳ୍ପନାସମଷ୍ଟି ଅପର ସବୁ

କଳ୍ପନାସମଷ୍ଟିକୁ ନଷ୍ଟ କରିଦିଏ । ଯେଉଁସବୁ କଳ୍ପନା କହେ ଯେ—ଜଗତରେ ପାପ, ଦୁଃଖ, ମୃତ୍ୟୁ ରହିଛି, ସେସବୁ କଳ୍ପନା ବଡ଼ ଭୟଙ୍କର; କିନ୍ତୁ ଅନ୍ୟ ପ୍ରକାରର କଳ୍ପନା, ଯେଉଁଥିରେ କୁହାଯାଏ—'ମୁଁ ପବିତ୍ର-ସ୍ୱରୂପ, ଈଶ୍ୱର ଅଛନ୍ତି, ଜଗତରେ ଦୁଃଖ ନାହିଁ'—ସେହିଗୁଡ଼ିକ ହିଁ ଶୁଭ କଳ୍ପନା, ଆଉ ସେଥିରେ ହିଁ ଅନ୍ୟାନ୍ୟ କଳ୍ପନାର ବନ୍ଧନ କଟିଯାଏ । ସଗୁଣ ଈଶ୍ୱର ହିଁ ମାନବର ସେହି ସର୍ବୋଚ୍ଚ କଳ୍ପନା, ଯଦ୍ୱାରା ଆମର ବନ୍ଧନ-ଶୃଙ୍ଖଳ ଭାଙ୍ଗିଯାଇପାରେ ।

'ଓଁ ତତ୍ ସତ୍' ଅର୍ଥାତ୍ ଏକମାତ୍ର ସେହି ନିର୍ଗୁଣ ବ୍ରହ୍ମ ହିଁ ମାୟାର ଅତୀତ; କିନ୍ତୁ ସଗୁଣ ଈଶ୍ୱର ମଧ୍ୟ ନିତ୍ୟ । ଯେତେଦିନ ନାଏଗ୍ରା-ପ୍ରପାତ ରହିଛି, ସେତେଦିନ ସେଥିରେ ପ୍ରତିଫଳିତ ଇନ୍ଦ୍ରଧନୁ ମଧ୍ୟ ରହିଛି; କିନ୍ତୁ ପ୍ରପାତର ଜଳରାଶି କ୍ରମାଗତ ପ୍ରବାହିତ ହୋଇଯାଉଛି । ଏହି ଜଳପ୍ରପାତ ଜଗତ-ପ୍ରପଞ୍ଚ ସ୍ୱରୂପ ଓ ଇନ୍ଦ୍ରଧନୁ ସଗୁଣ ଈଶ୍ୱରସ୍ୱରୂପ; ଏହି ଦୁଇଟି ହିଁ ନିତ୍ୟ ସନାତନ । ଜଗତ ଥିବାଯାଏ ଜଗଦୀଶ୍ୱର ଅବଶ୍ୟ ଅଛନ୍ତି । ଈଶ୍ୱର ଜଗତ୍ ସୃଷ୍ଟି କରିଛନ୍ତି, ପୁଣି ଜଗତ୍ ଈଶ୍ୱରଙ୍କୁ ସୃଷ୍ଟି କରୁଛି—ଉଭୟେ ନିତ୍ୟ । ମାୟା ସତ୍ୟ ନୁହେଁ, ଅସତ୍ୟ ମଧ୍ୟ ନୁହେଁ । ନାଏଗ୍ରା-ପ୍ରପାତ ଓ ଇନ୍ଦ୍ରଧନୁ ଉଭୟେ ଅନନ୍ତକାଳ ପାଇଁ ପରିବର୍ତ୍ତନଶୀଳ—ଏମାନେ ମାୟା ମଧ୍ୟଦେଇ ଦୃଷ୍ଟ ବ୍ରହ୍ମ । ପାରସିକ ଓ ଖ୍ରୀଷ୍ଟାନ୍‌ମାନେ ମାୟାକୁ ଦୁଇଭାଗରେ ବିଭକ୍ତ କରି ଭଲ ଅଧିକୁ 'ଈଶ୍ୱର' ଓ ମନ୍ଦ ଅଧିକୁ ସଇତାନ ନାମ ଦେଇଛନ୍ତି । ବେଦାନ୍ତ ମାୟାକୁ ସମଷ୍ଟି ବା ସମ୍ପୂର୍ଣ୍ଣଭାବରେ ଗ୍ରହଣ କରେ ଓ ତାହାର ପଛରେ ବ୍ରହ୍ମରୂପ ଏକ ଅଖଣ୍ଡ ବସ୍ତୁର ସତ୍ତା ସ୍ୱୀକାର କରେ । ***

ମହମ୍ମଦ ଦେଖିଲେ, ଖ୍ରୀଷ୍ଟଧର୍ମ ସେମିଟିକ୍ ଭାବରୁ ଦୂରକୁ ଚାଲିଯାଉଛି ଓ ଏହି ସେମିଟିକ୍ ଭାବ ମଧ୍ୟରୁ ଖ୍ରୀଷ୍ଟଧର୍ମ କିଭଳି ହେବା ଉଚିତ—ତାହାର ଯେ ଏକମାତ୍ର ଈଶ୍ୱର ଉପରେ ବିଶ୍ୱାସ କରିବା ଉଚିତ—ଏହା ହିଁ ତାଙ୍କ ଉପଦେଶର ବିଷୟ । 'ମୁଁ ଓ ମୋର ପିତା ଏକ'—ଏହି ଅଦ୍ୱୈତବାଦ ଉପଦେଶ ଉପରେ ସେ ଅତ୍ୟନ୍ତ ବିରକ୍ତ ଥିଲେ, ଏହି ଉପଦେଶରେ ସେ ଭୀତ ହେଉଥିଲେ । ପ୍ରକୃତପକ୍ଷରେ ମନୁଷ୍ୟଠାରୁ ନିତ୍ୟ ପୃଥକ୍ ଜେହୋଭା-ସମ୍ବନ୍ଧୀୟ ଦ୍ୱୈତ ଧାରଣାଠାରୁ ତ୍ରିତ୍ୱବାଦର (Trinitarian) ମତ ଅନେକ ଉନ୍ନତ । ଯେଉଁସବୁ ଭାବ-ଶୃଙ୍ଖଳା କ୍ରମଶଃ ଈଶ୍ୱର ଓ ମାନବର ଏକତ୍ୱ-ଜ୍ଞାନ ଆଣିଦିଏ, ଅବତାରବାଦ ତାହାର ପ୍ରଥମ ପଦ-ସ୍ୱରୂପ । ଲୋକେ ପ୍ରଥମେ ବୁଝନ୍ତି, ଈଶ୍ୱର ଜଣେ ମନୁଷ୍ୟଦେହରେ ଆବିର୍ଭୂତ ହୋଇଥିଲେ, ତା'ପରେ ଦେଖନ୍ତି ଯେ, ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ମନୁଷ୍ୟଦେହରେ ସେ ଆବିର୍ଭୂତ ହୋଇଛନ୍ତି; ଶେଷରେ ଦେଖିପାରନ୍ତି ଯେ, ସେ ସବୁ ମନୁଷ୍ୟ ଭିତରେ ରହିଛନ୍ତି । ଅଦ୍ୱୈତବାଦ ସର୍ବୋଚ୍ଚ ସୋପାନ. ଏକେଶ୍ୱର-ବାଦ ତା' ଅପେକ୍ଷା ତଳସ୍ତରର ସୋପାନ । ବିଚାରଯୁକ୍ତିଠାରୁ କଳ୍ପନା ତୁମକୁ ଶୀଘ୍ର ଓ ସହଜରେ ସେହି ସର୍ବୋଚ୍ଚ ଅବସ୍ଥାକୁ ନେଇଯିବ ।

ଅନ୍ତତଃ କେତେଜଣ ଲୋକ କେବଳ ଈଶ୍ୱରଲାଭ ପାଇଁ ଚେଷ୍ଟା କରନ୍ତୁ ଓ ସମଗ୍ର ଜଗତ ପାଇଁ ଧର୍ମକୁ ରକ୍ଷା କରନ୍ତୁ । 'ମୁଁ ଜନକ-ରାଜାଙ୍କ ପରି ନିର୍ଲିପ୍ତ' ବୋଲି ଅଭିନୟ

କର ନାହିଁ । ତୁମେ ଜନକ ସତ, କିନ୍ତୁ ମୋହ ବା ଅଜ୍ଞାନର ଜନକମାତ୍ର* କିଷ୍ଟପଟ ହୋଇ କହ, 'ମୁଁ ଆଦର୍ଶ କ'ଣ ବୁଝିପାରୁଛି ସତ, କିନ୍ତୁ ଏପର୍ଯ୍ୟନ୍ତ ତା' ପାଖକୁ ଆଗେଇ-ପାରୁ ନାହିଁ ।' ବାସ୍ତବିକ ତ୍ୟାଗ ନ କରି ତ୍ୟାଗର ଅଭିନୟ କର ନାହିଁ । ଯଦି ପ୍ରକୃତରେ ତ୍ୟାଗ କର, ତେବେ ଦୃଢ଼ଭାବରେ ଏହି ତ୍ୟାଗକୁ ଧରିଥାଅ । ଯୁଦ୍ଧରେ ଶହେ ଲୋକଙ୍କର ପତନ ହେଉ ପଛେ, ତୁମେ ଧ୍ୱଜାକୁ ଧରି ଆଗେଇ ଯାଅ, ଯେ ପଡ଼ୁନା କାହିଁକି, ତାହା ସତ୍ତ୍ୱେ ଈଶ୍ୱର ସତ୍ୟ । ଯୁଦ୍ଧରେ ଯାହାର ପତନ ହେବ, ସେ ଯେପରି ଅନ୍ୟହାତରେ ଧ୍ୱଜା ଅର୍ପଣ କରି ଦେଇଯାଏ ଏବଂ ଏହି ଦ୍ୱିତୀୟ ଜଣକ ପତାକାଟିକୁ ଯେପରି ବହନ କରି ଚାଲେ । ଧ୍ୱଜା ଯେପରି ଭୂମିସାତ୍ ନ ହୁଏ । ***

ବାଇବେଲରେ ଅଛି—ପ୍ରଥମେ ଭଗବାନଙ୍କ ରାଜ୍ୟ ଅନ୍ୱେଷଣ କର, ଆଉ ଯାହା କିଛି ତାହା ତୁମକୁ ଦେଇ ଦିଆହେବ । କିନ୍ତୁ ମୁଁ କହେ—ଆମେ ଯେତେବେଳେ ଧୋଇ ପୋଛିହୋଇ ପରିଷ୍କୃତ ହେଲୁ, ସେତେବେଳେ ଆଉ ଅଶୁଚିତା ଆମ ଭିତରେ ପୂରେଇ ଦେବା କଅଣ ଦରକାର ? ତେଣୁ ମୁଁ କହେ, ପ୍ରଥମେ ସ୍ୱର୍ଗରାଜ୍ୟ ଅନ୍ୱେଷଣ କର, ଆଉ ବାକି ଯାହା ସବୁ ଚାଲିଯାଉ । ତୁମ ମଧ୍ୟରେ ନୂତନ କିଛି ଆସୁ—ଏହା କାମନା କର ନାହିଁ, ବରଂ ସବୁକିଛି ତ୍ୟାଗ କରିପାରିଲେ ଖୁସୀ ହୁଅ । ତ୍ୟାଗ କର, ଆଉ ଜାଣ ଯେ, ତୁମେ ନିଜେ ଦେଖି ନ ପାରିଲେ ମଧ୍ୟ ତୁମେ ନିଶ୍ଚୟ ସାଫଲ୍ୟ ଲାଭ କରିବ । ଯୀଶୁ ବାର-ଜଣ କେଉଟ ଶିଷ୍ୟ ରଖିଯାଇଥିଲେ; ଏହି ଅଳ୍ପ କେତେଜଣ ଧୀବର ଲୋକ ପ୍ରବଳ ରୋମ୍-ସାମ୍ରାଜ୍ୟକୁ ଉଡ଼ାଇ ଦେଇଥିଲେ ।

ଈଶ୍ୱରଙ୍କ ବେଦୀରେ ପୃଥିବୀ ମଧ୍ୟରେ ଯାହା କିଛି ପବିତ୍ରତମ ଓ ଯାହା କିଛି ସର୍ବୋତ୍କୃଷ୍ଟ, ତାହାକୁ ବଳି ରୂପରେ ଅର୍ପଣ କର । ଯିଏ ତ୍ୟାଗର ଚେଷ୍ଟା କେବେହେଲେ କରନ୍ତି ନାହିଁ, ତାଙ୍କ ଅପେକ୍ଷା ଯିଏ ଚେଷ୍ଟା କରନ୍ତି, ସେ ବେଶ୍ ଭଲ । ଜଣେ ତ୍ୟାଗୀଙ୍କୁ ଦେଖିଲେ ହୃଦୟ ପବିତ୍ର ହୁଏ । ଈଶ୍ୱରଙ୍କୁ ଲାଭ କରିବ—କେବଳ ତାଙ୍କୁ ହିଁ ଦରକାର, ଏହା କହି ଦୃଢ଼ଭାବରେ ଠିଆ ହୁଅ, ଦୁନିଆ ଉଡ଼ିଯାଉ; ଈଶ୍ୱର ଓ ସଂସାର —ଏହି ଦୁହିଁଙ୍କ ମଧ୍ୟରେ କୌଣସି ଆପୋଷ କରିବାକୁ ଚେଷ୍ଟା କର ନାହିଁ । ସଂସାର ତ୍ୟାଗ କର ତା'ହେଲେ ତୁମେ ଦେହବନ୍ଧନରୁ ମୁକ୍ତ ହୋଇପାରିବ । ଆଉ ଏହିପରି ଦେହ-ଆସକ୍ତି ଚାଲିଯିବା ପରେ ଦେହ ତ୍ୟାଗ କଲେ ତୁମେ 'ଆଜାଦ୍' ବା ମୁକ୍ତ ହେବ । ମୁକ୍ତ ହୁଅ, କେବଳ ଦେହର ମୃତ୍ୟୁ ଆମକୁ କେବେହେଲେ ମୁକ୍ତ କରିପାରିବ ନାହିଁ । ବଞ୍ଚି ଥାଉଁ ଥାଉଁ ଆମର ନିଜ ଚେଷ୍ଟାଦ୍ୱାରା ମୁକ୍ତିଲାଭ କରିବାକୁ ହେବ । ତେବେ ଯେତେବେଳେ ଦେହପାତ ହେବ, ସେତେବେଳେ ସେହି ମୁକ୍ତ ପୁରୁଷଙ୍କର ଆଉ ପୁନର୍ଜନ୍ମ ହେବ ନାହିଁ ।

ସତ୍ୟକୁ ସତ୍ୟଦ୍ୱାରା ହିଁ ବିଚାର କରିବାକୁ ହେବ, ଅନ୍ୟ କିଛିଦ୍ୱାରା ନୁହେଁ । ଲୋକଙ୍କ ହିତ କରିବା ସତ୍ୟର କଷଟି ପଥର ନୁହେଁ । ସୂର୍ଯ୍ୟକୁ ଦେଖିବା ପାଇଁ ମଶାଲର

* 'ଜନକ' ଶବ୍ଦର ଅର୍ଥ ଜନ୍ମଦାତା । ମିଥିଳା ରାଜାଙ୍କ ନାମ ମଧ୍ୟ 'ଜନକ' । ସେ ଜନଗଣଙ୍କ ପାଇଁ ରାଜ୍ୟ ପାଳନ କରୁଥିଲେ ଏବଂ ମନେ ମନେ ସବୁ କିଛି ତ୍ୟାଗ କରିଥିଲେ ।

ଦରକାର ହୁଏ ନାହିଁ । ଯଦି ସତ୍ୟ ସମଗ୍ର ଜଗତକୁ ଧ୍ୱଂସ କରେ, ତଥାପି ତାହା ସତ୍ୟ —ଏହି ସତ୍ୟକୁ ଧରି ରହ ।

ଧର୍ମର ବାହ୍ୟ ଅନୁଷ୍ଠାନଗୁଡ଼ିକୁ ଆଚରଣ କରିବା ସହଜ—ଏଗୁଡ଼ିକ ସାଧାରଣଙ୍କୁ ଆକୃଷ୍ଟ କରେ, କିନ୍ତୁ ପ୍ରକୃତ ପକ୍ଷରେ ବାହ୍ୟ ଅନୁଷ୍ଠାନରେ କିଛି ନାହିଁ ।

—ମାଙ୍କଡ଼ସା ଯେପରି ନିଜ ଭିତରୁ ଜାଲ ବିସ୍ତାର କରେ ଏବଂ ପୁଣି ତାକୁ ନିଜ ଭିତରେ ଗୁଡ଼େଇ ନିଏ, ସେହିପରି ଈଶ୍ୱର ହିଁ ଏହି ଜଗତ୍-ପ୍ରପଞ୍ଚ ବିସ୍ତାର କରନ୍ତି ଓ ପୁଣି ନିଜ ଭିତରକୁ ଟାଣି ନିଅନ୍ତି ।'*

***

**ମଙ୍ଗଳବାର, ୭ ଅଗଷ୍ଟ**

'ମୁଁ' ନ ରହିଲେ ବାହାରେ 'ତମେ' ରହିପାରିବ ନାହିଁ । ଏଥିରୁ କେତେକ ଦାର୍ଶନିକ ଏହି ସିଦ୍ଧାନ୍ତ କଲେ ଯେ, ମୋ ଛଡ଼ା ବାହ୍ୟ ଜଗତର ସ୍ୱତନ୍ତ୍ର ଅସ୍ତିତ୍ୱ ନାହିଁ । 'ତୁମେ' କେବଳ 'ମୋ' ଭିତରେ ହିଁ ରହିଛ । ଅନ୍ୟମାନେ ଏହାର ଠିକ୍ ବିପରୀତ ଯୁକ୍ତି କରି ପ୍ରମାଣ କରିବାକୁ ଚେଷ୍ଟାକରିଛନ୍ତି ଯେ, 'ତୁମେ' ନ ଥିଲେ 'ମୋର' ଅସ୍ତିତ୍ୱ ପ୍ରମାଣିତ ହୋଇପାରିବ ନାହିଁ । ସେମାନଙ୍କ ପକ୍ଷରେ ଯୁକ୍ତିର ବଳ ମଧ୍ୟ ସମାନ । ଏହି ଦୁଇଟିଯାକ ମତ ଆଂଶିକ ସତ୍ୟ—କେତେକ ପରିମାଣରେ ସତ୍ୟ, କେତେକ ପରିମାଣରେ ମିଥ୍ୟା । ଦେହ ଯେପରି ଜଡ଼ ଓ ପ୍ରକୃତିର ଉପାଦାନରେ ଗଠିତ, ଚିନ୍ତା ମଧ୍ୟ ସେହିପରି । ଜଡ଼ ଓ ମନ ଉଭୟେ ଏକ ତୃତୀୟ ପଦାର୍ଥରେ ଅବସ୍ଥିତ—ଏକ ଅଖଣ୍ଡ ବସ୍ତୁ ନିଜକୁ ଦୁଇଭାଗ କରି ପକାଇଛି । ଏହି ଏକ ଅଖଣ୍ଡ ବସ୍ତୁର ନାମ ଆତ୍ମା ।

ସେହି ମୂଳ ସତ୍ତା ଯେପରି 'କ', ତାହା ହିଁ ମନ ଓ ଜଡ଼ ଉଭୟ ରୂପରେ ନିଜକୁ ପ୍ରକାଶ କରୁଛି । ଏହି ପରିଦୃଶ୍ୟମାନ ଜଗତରେ ଏହାର ଗତି କେତେଗୁଡ଼ିଏ ନିର୍ଦ୍ଦିଷ୍ଟ ପ୍ରଣାଳୀ ଅବଲମ୍ବନ କରି ହୋଇଥାଏ, ସେହିଗୁଡ଼ିକୁ ହିଁ ଆମେ 'ନିୟମ' ବୋଲି କହୁଁ । ଏକ ଅଖଣ୍ଡ ସତ୍ତା-ଭାବରେ ଏହା ମୁକ୍ତସ୍ୱଭାବ, ବହୁ ଭାବରେ ଏହା ନିୟମର ଅଧୀନ । ତଥାପି ଏହି ବନ୍ଧନସତ୍ତ୍ୱେ ଆମ ଭିତରେ ଏକ ମୁକ୍ତିର ଧାରଣା ସର୍ବଦା ବିଦ୍ୟମାନ ରହିଛି । ଏହାର ନାମ 'ନିବୃତ୍ତି' ଅର୍ଥାତ୍ 'ଆସକ୍ତି ତ୍ୟାଗ କରିବା' । ବାସନାବଶତଃ ଯେଉଁସବୁ ଜଡ଼ତ୍ୱ-ବିଧାୟିନୀ ଶକ୍ତି ଆମକୁ ସାଂସାରିକ କାର୍ଯ୍ୟରେ ବିଶେଷଭାବରେ ପ୍ରବୃତ୍ତ କରେ, ତାହାର ନାମ 'ପ୍ରବୃତ୍ତି' ।

ଯାହା ଆମକୁ ଜଡ଼ର ବନ୍ଧନରୁ ମୁକ୍ତ କରେ, ସେହି କାର୍ଯ୍ୟକୁ ହିଁ ନୀତିସଙ୍ଗତ ବା ସତ୍କର୍ମ କୁହାଯାଏ; ତାହାର ବିପରୀତ ହେଉଛି ଅସତ୍ କର୍ମ । ଏହି ଜଗତ୍-ପ୍ରପଞ୍ଚ ଅନନ୍ତ ମନେହୁଏ, କାରଣ ଏହା ମଧ୍ୟରେ ସବୁ ଜିନିଷ ଚକ୍ରଗତିରେ ଚାଲିଛି; ଯେଉଁଠାରୁ ଆସିଛି, ସେଠାକୁ ଫେରି ଯାଉଛି । ବୃତ୍ତର ରେଖାଟି ବର୍ଦ୍ଧିତ ହୋଇ ପୁଣି ନିଜ ସହିତ ମିଶିଯାଏ, ସୁତରାଂ ଏଠାରେ—ଏହି ସଂସାରରେ—କୌଣସିଠାରେ ବିଶ୍ରାମ ବା ଶାନ୍ତି ନାହିଁ । ଏହି ସଂସାରରୂପକ ବୃତ୍ତ ଭିତରୁ ଆମମାନଙ୍କୁ ବାହାରିବାକୁ ହିଁ ହେବ । ମୁକ୍ତି ହିଁ ଆମର ଏକମାତ୍ର

* ମୁଣ୍ଡକୋପନିଷଦ୍, ୧ । ୧ । ୭

***

ଲକ୍ଷ୍ୟ—ଏକମାତ୍ର ଗତି ।

ମନ୍ଦର ଆକାର ବଦଳେ, କିନ୍ତୁ ତାହାର ଗୁଣଗତ କୌଣସି ପରିବର୍ତ୍ତନ ହୁଏ ନାହିଁ । ପ୍ରାଚୀନ କାଳରେ 'ଜୋର୍ ଯା'ର ମୁଲକ ତା'ର' ଥିଲା । ଏବେ ଚାଲାକି ସେହି ସ୍ଥାନ ଅଧିକାର କରିଛି । ଦୁଃଖକଷ୍ଟ ଆମେରିକାରେ ଯେତେ ତୀବ୍ର, ଭାରତରେ ସେତେ ନୁହେଁ; କାରଣ ଏଠାରେ (ଆମେରିକାରେ) ଗରିବ ଲୋକେ ନିଜର ଦୁରବସ୍ଥା ସହିତ ଅନ୍ୟମାନଙ୍କର ଅବସ୍ଥାର ଖୁବ୍ ବେଶୀ ପାର୍ଥକ୍ୟ ଦେଖିବାକୁ ପାଆନ୍ତି ।

ଭଲ ମନ୍ଦ—ଏହି ଦୁଇଟି ଅଚ୍ଛେଦ୍ୟ ଭାବରେ ଜଡ଼ିତ । ଗୋଟିକୁ ନେଇଗଲେ ଅପରଟିକୁ ନେବାକୁ ହିଁ ହେବ । ଏହି ଜଗତର ଶକ୍ତିସମଷ୍ଟି ଯେପରି ଗୋଟିଏ ହ୍ରଦପରି—ସେଥିରେ ତରଙ୍ଗର ଉତ୍ଥାନ ଯେପରି ଅଛି, ଠିକ୍ ତଦନୁଯାୟୀ ପତନ ମଧ୍ୟ ଅଛି । ସମଷ୍ଟି ସମ୍ପୂର୍ଣ୍ଣ ଏକ—ସୁତରାଂ ଜଣକୁ ସୁଖୀ କରିବା ଅର୍ଥ ଆଉ ଜଣକୁ ଅସୁଖୀ କରିବା । ବାହାରର ସୁଖ ଜଡ଼ସୁଖ ମାତ୍ର ଓ ତାହାର ପରିମାଣ ନିର୍ଦ୍ଦିଷ୍ଟ । ସୁତରାଂ ଏକ କଣା ସୁଖ ମଧ୍ୟ ପାଇବାକୁ ହେଲେ ଅନ୍ୟ ନିକଟରୁ ତାହା କାଢ଼ି ନ ନେଲେ ମିଳିପାରିବ ନାହିଁ । କେବଳ ଯାହା ଜଡ଼ଜଗତର ଅତୀତ ସୁଖ, ତାହା କାହାରି କିଛି କ୍ଷତି ନ କରି ଲାଭ କରାଯାଇପାରେ —ଜଡ଼ସୁଖ କେବଳ ଜଡ଼ଦୁଃଖର ରୂପାନ୍ତର ମାତ୍ର ।

ଯେଉଁମାନେ ସେହି ତରଙ୍ଗର ଉତ୍ଥାନାଂଶରେ ଜନ୍ମିଛନ୍ତି ଓ ସେହିଠାରେ ରହିଛନ୍ତି, ସେମାନେ ତାହାର ପତନାଂଶ ଦେଖିପାରନ୍ତି ନାହିଁ ଓ ସେଠାରେ କ'ଣ ଅଛି ତାହା ଜାଣିପାରନ୍ତି ନାହିଁ । କଦାପି ମନେକର ନାହିଁ ଯେ, ତୁମେ ଜଗତକୁ ଭଲ ଓ ସୁଖୀ କରିପାରିବ । ଘଣାରେ ଯୋଚା ଯାଇଥିବା ବଳଦ ତା' ଆଗରେ ବନ୍ଧାଥିବା ନଡ଼ା-ବିଡ଼ାକୁ ପାଇବା ଲାଗି ଚେଷ୍ଟା କରେ ସତ; କିନ୍ତୁ କେବେହେଲେ ତା' ପାଖରେ ପହଞ୍ଚିପାରେ ନାହିଁ, କେବଳ ଘଣା ବୁଲାଉଥାଏ ମାତ୍ର । ଆମେ ମଧ୍ୟ ଏହିପରି ସବୁବେଳେ ସୁଖରୂପକ ମୃଗତୃଷ୍ଣା ପଛରେ ଧାଉଁଛୁ—ତାହା କିନ୍ତୁ ସବୁବେଳେ ଘୁଞ୍ଚିଘୁଞ୍ଚି ଯାଉଛି ଓ ଆମେ ପ୍ରକୃତିର ଘଣା ବୁଲାଉଛୁ । ଏହିପରି ଘଣା ବୁଲାଇ ବୁଲାଇ ଆମର ମୃତ୍ୟୁ ହେଲା, ତା'ପରେ ପୁଣି ଘଣା ବୁଲାଇବା ଆରମ୍ଭ ହେବ । ଆମେ ଯଦି ଅଶୁଭକୁ ଦୂର କରିପାରନ୍ତେ, ତା'ହେଲେ ଆମେ କେବେହେଲେ କୌଣସି ଉଚ୍ଚତର ବସ୍ତୁର ଆଭାସ ପର୍ଯ୍ୟନ୍ତ ପାଆନ୍ତେ ନାହିଁ; ଆମେ ସନ୍ତୁଷ୍ଟ ହୋଇ ରହନ୍ତେ ଓ ମୁକ୍ତ ହେବା ଲାଗି କଦାପି ଚେଷ୍ଟା କରନ୍ତେ ନାହିଁ । ମନୁଷ୍ୟ ଯେତେବେଳେ ଦେଖିବାକୁ ପାଏ ଯେ, ଜଡ଼ଜଗତରେ ସୁଖର ଅନ୍ୱେଷଣ ସମ୍ପୂର୍ଣ୍ଣ ବୃଥା, ସେତେବେଳେ ହିଁ ଧର୍ମର ଆରମ୍ଭ । ମନୁଷ୍ୟର ଯେତେ ପ୍ରକାର ଜ୍ଞାନ ଅଛି, ସେସବୁ ଧର୍ମର ଅଙ୍ଗମାତ୍ର ।

ମନୁଷ୍ୟଦେହରେ ଭଲମନ୍ଦର ଏପରି ଭାରସାମ୍ୟ ରହିଛି ଯେ, ଯଦ୍ୱାରା ମନୁଷ୍ୟର ଏହି ଉଭୟଙ୍କରୁ ମୁକ୍ତିଲାଭ କରିବାର ଇଚ୍ଛାର ସମ୍ଭାବନା ରହିଛି ।

ଯେ ମୁକ୍ତ, ସେ କୌଣସି କାଳରେ ବଦ୍ଧ ହୁଏ ନାହିଁ । ମୁକ୍ତ କିପରି ବଦ୍ଧ ହେଲା, ଏହି ପ୍ରଶ୍ନ ହିଁ ଅଯୌକ୍ତିକ । ଯେଉଁଠାରେ କୌଣସି ବନ୍ଧନ ନାହିଁ, ସେଠାରେ କାର୍ଯ୍ୟ-କାରଣ-

-ଭାବ ମଧ୍ୟ ନାହିଁ । 'ମୁଁ ସ୍ୱପ୍ନରେ ଗୋଟିଏ ବାଲୁଆ ହୋଇଥିଲି ଓ ଗୋଟିଏ କୁକୁର ମୋତେ ଗୋଡ଼ାଉଥିଲା ।' ବର୍ତ୍ତମାନ ମୁଁ କପରି ପ୍ରଶ୍ନ କରିବ ଯେ, କୁକୁର ମୋତେ କାହିଁକି ଗୋଡ଼ାଉଥିଲା ? ବାଲୁଆ ସ୍ୱପ୍ନର ଏକ ଅଂଶ, କୁକୁର ମଧ୍ୟ ଏହା ସହିତ ଆପଣା ଛାଏଁ ଆସି ପଡ଼ିଥିଲା; ଉଭୟେ ହିଁ ସ୍ୱପ୍ନ, ତାହାରେ ଏମାନଙ୍କର ସ୍ୱତନ୍ତ୍ର ଅସ୍ତିତ୍ୱ ନାହିଁ । ବିଜ୍ଞାନ ଓ ଧର୍ମ ଉଭୟେ ଆମର ଏହି ବନ୍ଧନ ଅତିକ୍ରମ କରିବାର ସହାୟସ୍ୱରୂପ । ତେବେ ଧର୍ମ ବିଜ୍ଞାନ ଅପେକ୍ଷା ପ୍ରାଚୀନ ଓ ଆମର ଏହି କୁସଂସ୍କାର ରହିଛି ଯେ, ଧର୍ମ ବିଜ୍ଞାନ ଅପେକ୍ଷା ପବିତ୍ର । ଗୋଟିଏ ହିସାବରେ ପବିତ୍ର ସତ, କାରଣ ଧର୍ମ ନୀତି ବା ଚରିତ୍ରକୁ (morality) ତାହାର ଗୋଟିଏ ଅତ୍ୟାବଶ୍ୟକ ଅଙ୍ଗ ବୋଲି ମନେ କରେ; କିନ୍ତୁ ବିଜ୍ଞାନ ତାହା କରେ ନାହିଁ ।

'ପବିତ୍ରାତ୍ମାଗଣ ଧନ୍ୟ, କାରଣ ସେମାନେ ଈଶ୍ୱରଙ୍କୁ ଦର୍ଶନ କରିବେ ।' ଯଦି ସବୁ ଶାସ୍ତ୍ର ଏବଂ ସବୁ ଅବତାର ଲୋପ ପାଇଯାଆନ୍ତି, ତଥାପି ଏହି ଏକମାତ୍ର ବାକ୍ୟ ହିଁ ସମଗ୍ର ମାନବଜାତିକୁ ବଞ୍ଚାଇ ରଖିବ । ଅନ୍ତରର ଏହି ପବିତ୍ରତାରୁ ହିଁ ଈଶ୍ୱର-ଦର୍ଶନ ହେବ । ସମଗ୍ର ବିଶ୍ୱସଙ୍ଗୀତରେ ଏହି ପବିତ୍ରତା ହିଁ ଧ୍ୱନିତ ହେଉଛି । ପବିତ୍ରତାରେ କୌଣସି ବନ୍ଧନ ନାହିଁ । ପବିତ୍ରତାଦ୍ୱାରା ଅଜ୍ଞାନର ଆବରଣ ଦୂର କରିଦିଅ, ତାହାହେଲେ ଯାଇ ଆମର ଯଥାର୍ଥ ସ୍ୱରୂପର ପ୍ରକାଶ ହେବ, ଏବଂ ଆମେ ଜାଣିପାରିବା ଯେ, ଆମେ କୌଣସି ସମୟରେ ବଦ୍ଧ ହୋଇ ନାହୁଁ । ନାନାତ୍ୱ ଦର୍ଶନ ହିଁ ଜଗତ୍ ମଧ୍ୟରେ ସବୁଠାରୁ ବଡ଼ ପାପ—ସମସ୍ତଙ୍କୁ ଆତ୍ମରୂପରେ ଦର୍ଶନ କର ଓ ସମସ୍ତଙ୍କୁ ସ୍ନେହ କର । ସବୁ ଭେଦଭାବ ଏକାବେଳକେ ଦୂର କରିଦିଅ ।

***

ପିଶାଚ-ପ୍ରକୃତିର ଲୋକ ମଧ୍ୟ କ୍ଷତ ବା ପୋଡ଼ା ଘା ପରି ମୋର ଶରୀରର ହିଁ ଗୋଟିଏ ଅଂଶ । ତାହାର ଯତ୍ନ ନେଇ ଭଲ କରିବାକୁ ହେବ । ଦୁଷ୍ଟ ଲୋକକୁ ମଧ୍ୟ କ୍ରମାଗତ ସାହାଯ୍ୟ କରୁଥାଅ, ଯେପର୍ଯ୍ୟନ୍ତ ସେ ସମ୍ପୂର୍ଣ୍ଣ ଆରୋଗ୍ୟ, ସୁସ୍ଥ ଓ ସୁଖୀ ନ ହୋଇଛି ।

ଆମେ ଯେତେଦିନ ଆପେକ୍ଷିକ ବା ଦ୍ୱୈତଭୂମିରେ ରହିଛୁ, ସେତେଦିନ ଆମର ବିଶ୍ୱାସ କରିବାର ଅଧିକାର ଅଛି ଯେ, ଏହି ଆପେକ୍ଷିକ ଜଗତର ବସ୍ତୁଦ୍ୱାରା ଆମର ଅନିଷ୍ଟ ହୋଇପାରେ, ପୁଣି ଠିକ୍ ସେହିପରି ସାହାଯ୍ୟ ମଧ୍ୟ ହୋଇପାରେ । ଏହି ସାହାଯ୍ୟ ଭାବର ସୂକ୍ଷ୍ମତମ ଭାବକୁ ଆମେ 'ଈଶ୍ୱର' ବୋଲି କହୁ । ଈଶ୍ୱର କହିଲେ ଆମର ଏହି ଧାରଣା ଆସେ ଯେ, ଆମେ ଯେତେ ପ୍ରକାର ସାହାଯ୍ୟ ପାଇପାରୁ, ସେ ତାହାର ସମଷ୍ଟି-ସ୍ୱରୂପ ।

ଆମ ପ୍ରତି ଯାହା କିଛି କରୁଣାସମ୍ପନ୍ନ, ଯାହା କିଛି କଲ୍ୟାଣକର, ଯାହା କିଛି ଆମର ସହାୟକ, ଈଶ୍ୱର ସେହି ସବୁର ସାର-ସମଷ୍ଟି-ସ୍ୱରୂପ । ଈଶ୍ୱରଙ୍କ ସମ୍ବନ୍ଧରେ ଆମର ଏହି ଏକମାତ୍ର ଧାରଣା ରହିବା ଉଚିତ । ଆମେ ଯେତେବେଳେ ନିଜକୁ ଆତ୍ମା-ରୂପେ ଭାବୁଁ, ସେତେବେଳେ ଆମର କୌଣସି ଦେହ ନାହିଁ; ସୁତରାଂ 'ମୁଁ ବ୍ରହ୍ମ, ବିଷ ମଧ୍ୟ ମୋର କୌଣସି କ୍ଷତି କରିପାରିବ ନାହିଁ'—ଏହି କଥାଟି ଗୋଟିଏ ସ୍ୱବିରୋଧୀ ବାକ୍ୟ । ଯେପର୍ଯ୍ୟନ୍ତ ଆମର ଦେହ ରହିଛି ଓ ସେହି ଦେହକୁ ଆମେ ଦେଖୁଛୁ, ସେପର୍ଯ୍ୟନ୍ତ

ଆମର ଈଶ୍ୱରୋପଲବ୍ଧି ହୋଇ ନାହିଁ । ଯେତେବେଳେ ନଦୀ ଲୋପ ପାଇଲା, ସେତେବେଳେ ତା' ଭିତରେ ଥିବା କ୍ଷୁଦ୍ର ଆବର୍ତ୍ତ କଅଣ ଆଉ ରହିପାରେ ? ସାହାଯ୍ୟ ପାଇଁ କାନ୍ଦିଲେ ହିଁ ସାହାଯ୍ୟ ପାଇବ ଓ ଶେଷରେ ଦେଖିବ, ସାହାଯ୍ୟ ପାଇଁ କାନ୍ଦ ଚାଲିଯାଇଛି ଏବଂ ତା' ସଙ୍ଗେ ସଙ୍ଗେ ସାହାଯ୍ୟଦାତା ମଧ୍ୟ ଚାଲିଯାଇଛନ୍ତି—ଖେଳ ଶେଷ ହୋଇଯାଇଛି, ବାକି ରହିଛନ୍ତି କେବଳ ଆତ୍ମା ।

ଥରେ ଏହା ହୋଇଗଲେ ଫେର ଆସି ଇଚ୍ଛାନୁସାରେ ଖେଳିପାର । ସେତେବେଳେ ଆଉ ଏହି ଦେହଦ୍ୱାରା କୌଣସି ଅନ୍ୟାୟ କାମ ହୋଇପାରିବ ନାହିଁ; କାରଣ ଯେତେଦିନଯାଏ ଆମ ଭିତରର କୁପ୍ରବୃତ୍ତିଗୁଡ଼ିକ ପୋଡ଼ି ନ ଯାଇଛି, ସେପର୍ଯ୍ୟନ୍ତ ମୁକ୍ତିଲାଭ ହେବ ନାହିଁ । ଯେତେବେଳେ ଏହି ଅବସ୍ଥା ଲାଭ ହୁଏ, ସେତେବେଳେ ଆମର ସବୁ ମଇଳା ପୋଡ଼ିଯାଏ ଓ ଅବଶିଷ୍ଟ ରହେ—ନିର୍ଧୂମ ଶିଖା, ତାପ ନାହିଁ, ଆଲୁଅ ଅଛି—'ଜ୍ୟୋତିରିବ ଅଧୂମକଃ' ଓ 'ଦଗ୍ଧେନ୍ଧନମିବାନଳମ୍ ।'*

ସେତେବେଳେ ପ୍ରାରବ୍ଧ ଏହି ଦେହକୁ ଚଳାଇ ନେଇଯାଏ; କିନ୍ତୁ ତା'ଦ୍ୱାରା କେବଳ ଭଲ କାମ ହିଁ ହୋଇପାରେ । କାରଣ ମୁକ୍ତିଲାଭ ହେବା ପୂର୍ବରୁ ସବୁ ମନ୍ଦ ଚାଲିଯାଇଥାଏ । ଚୋର କ୍ରୁଶରେ ବଦ୍ଧ ହୋଇ ମରିବା ସମୟରେ ତାହାର ପୂର୍ବ କର୍ମର ଫଳଲାଭ କଲା ।** ସେ ପୂର୍ବଜନ୍ମରେ ଜଣେ ଯୋଗୀ ଥିଲା, ତା'ପରେ ସେ ଯୋଗଭ୍ରଷ୍ଟ ହେବାରୁ ପୁଣି ଜନ୍ମଲାଭ କଲା; ତାହାର ପତନ ହୋଇଥିବାରୁ ତାକୁ ଏ ଜନ୍ମରେ ଚୋର ହେବାକୁ ପଡ଼ିଥିଲା; କିନ୍ତୁ ଅତୀତରେ ସେ ଯେଉଁ ଶୁଭକାମ କରିଥିଲା, ତାହାର ଫଳ ଫଳିଲା । ଯେତେବେଳେ ତାହାର ମୁକ୍ତିଲାଭର ସମୟ ହେଲା, ସେତେବେଳେ ଯିଶୁଖ୍ରୀଷ୍ଟଙ୍କୁ ସେ ସାକ୍ଷାତ୍ କଲା ଓ ତାଙ୍କର କଥାପଦକରେ ସେ ମୁକ୍ତ ହୋଇଗଲା ।

ବୁଦ୍ଧ ତାଙ୍କର ପ୍ରବଳତମ ଶତ୍ରୁଙ୍କୁ ମୁକ୍ତି ଦେଇଥିଲେ, କାରଣ ସେହି ଲୋକ ତାଙ୍କୁ ଏତେ ଦ୍ୱେଷ କରୁଥିଲା ଯେ, ସେହି ଦ୍ୱେଷବଶରେ ସେ ସର୍ବଦା ତାଙ୍କର ଚିନ୍ତା କରୁଥିଲା । କ୍ରମାଗତ ବୁଦ୍ଧଙ୍କ ଚିନ୍ତାରେ ତାହାର ଚିତ୍ତଶୁଦ୍ଧିଲାଭ ହୋଇଥିଲା ଓ ସେ ମୁକ୍ତିଲାଭ କରିବାର ଉପଯୁକ୍ତ ହୋଇଥିଲା । ଅତଏବ ସର୍ବଦା ଈଶ୍ୱରଙ୍କର ଚିନ୍ତା କର, ସେହି ଚିନ୍ତାରେ ତୁମେ ପବିତ୍ର ହୋଇଯିବ । ****

[ତା'ପରେ ଦିନ ସ୍ୱାମୀଜୀ ନ୍ୟୁୟର୍କ ଚାଲିଗଲେ ।]

---

* କଠୋପନିଷଦ୍, ୨।୧।୧୩; ଶ୍ୱେତାଶ୍ୱ. ଉପନିଷଦ୍, ୬।୧୯

** ଯୀଶୁଖ୍ରୀଷ୍ଟଙ୍କୁ କ୍ରୁଶରେ ବଦ୍ଧ କରିବା ସମୟରେ ଆଉ ଜଣେ ଚୋରକୁ ମଧ୍ୟ ବଦ୍ଧ କରା ହୋଇଥିଲା; ସେ ଯୀଶୁଖ୍ରୀଷ୍ଟଙ୍କୁ ବିଶ୍ୱାସ କରି ତାଙ୍କର କୃପାରେ ମୁକ୍ତ ହୋଇଗଲା—ବାଇବେଲରେ ଏହା ଉଲ୍ଲିଖିତ ଅଛି । ସେହି ବ୍ୟକ୍ତି ତାହାର ପୂର୍ବ କର୍ମଫଳରୁ ହିଁ ଯୀଶୁଖ୍ରୀଷ୍ଟଙ୍କ କୃପା ଲାଭ କରିଥିଲା ।

# ନାରଦ-ଭକ୍ତିସୂତ୍ର

## ପ୍ରଥମ ପରିଚ୍ଛେଦ

୧ । ଈଶ୍ୱରଙ୍କ ପ୍ରତି ଐକାନ୍ତିକ ପ୍ରେମର ନାମ ହେଉଛି ଭକ୍ତି ।

୨ । ଏହା ପ୍ରେମାମୃତ ।

୩ । ଏହା ଲାଭକଲେ ମନୁଷ୍ୟ ପୂର୍ଣ୍ଣ ହୁଏ, ଅମର ହୁଏ, ଚିରତୃପ୍ତିର ଅଧିକାରୀ ହୁଏ ।

୪ । ଏହା ଲାଭକଲେ ମନୁଷ୍ୟ ଆଉ କିଛି ଚାହେଁ ନାହିଁ; ସେ ଦ୍ୱେଷ ଓ ଅଭିମାନଶୂନ୍ୟ ହୋଇଯାଏ ।

୫ । ଏହା ଜାଣିଲେ ମନୁଷ୍ୟ ଆଧ୍ୟାତ୍ମିକତାରେ ପୂର୍ଣ୍ଣ ହୁଏ, ଶାନ୍ତ ହୁଏ ଏବଂ ଏକମାତ୍ର ଭଗବଦ୍-ସ୍ୱରୂପରେ ହିଁ ଆନନ୍ଦ ପାଇଥାଏ ।

୬ । କୌଣସି ବାସନା-ପୂରଣ ନିମିତ୍ତ ଏହାକୁ ବ୍ୟବହାର କରାଯାଇପାରେ ନାହିଁ, କାରଣ ଏହା ସର୍ବବିଧ ବାସନାର ନିବୃତ୍ତି-ସ୍ୱରୂପ ।

୭ । 'ସନ୍ନ୍ୟାସ' କାହାକୁ କୁହାଯାଏ ? ଲୌକିକ ବା ଶାସ୍ତ୍ରୀୟ—ଏହି ଉଭୟବିଧ ଉପାସନାର ତ୍ୟାଗ ହେଉଛି ସନ୍ନ୍ୟାସ ।

୮ । ଯାହାର ସମସ୍ତ ସତ୍ତା ଈଶ୍ୱରଙ୍କଠାରେ ନିବଦ୍ଧ, ସେ ହିଁ ଭକ୍ତିପଥର ସନ୍ନ୍ୟାସୀ । ଯାହାକିଛି ଏହି ଭଗବଦ୍‌ଭକ୍ତିର ବିରୋଧୀ ବୋଲି ମନେହୁଏ, ତାହାକୁ ଭକ୍ତ ତ୍ୟାଗ କରେ ।

୯ । ଅନ୍ୟସବୁ ଆଶ୍ରୟ ତ୍ୟାଗ କରି ସେ ଏକମାତ୍ର ଭଗବାନଙ୍କର ଶରଣାଗତ ହୋଇଥାଏ ।

୧୦ । ଜୀବନ-ସାଧନାରେ ସୁଦୃଢ଼ ବା ସୁସିଦ୍ଧ ନ ହେବା ପର୍ଯ୍ୟନ୍ତ ଶାସ୍ତ୍ରବିଧି ମାନି ଚଳିବାକୁ ହେବ ହିଁ ହେବ ।

୧୧ । ତା' ନ ହେଲେ 'ମୁକ୍ତି' ନାମରେ ଅସଦାଚରଣର ବିପଦ ବା ଆଶଙ୍କା ରହିଛି ।

୧୨ । ଭକ୍ତିରେ ଦୃଢ଼-ପ୍ରତିଷ୍ଠିତ ରହିଲେ, ଦେହକୁ ରକ୍ଷା କରିବା ଲାଗି ଯାହା ଯେତିକି ପ୍ରୟୋଜନ, ତା'ଠାରୁ ଅତିରିକ୍ତ ସମସ୍ତ ଲୌକିକ ଆଚରଣ ପରିତ୍ୟକ୍ତ ହୁଏ ।

୧୩ । ଭକ୍ତିର ଅନେକ ସଂଜ୍ଞା ରହିଛି । କିନ୍ତୁ ନାରଦଙ୍କ ମତରେ ଭକ୍ତିର ଚିହ୍ନଗୁଡ଼ିକ ହେଉଛି ଏହି ପ୍ରକାର—ଯେତେବେଳେ ସକଳ ଚିନ୍ତା, ସକଳ ବାକ୍ୟ, ସକଳ କର୍ମ ଭଗବାନଙ୍କଠାରେ ସମର୍ପିତ ହୁଏ—ଭଗବାନଙ୍କୁ ଅଳ୍ପକ୍ଷଣ ଲାଗି ବିସ୍ମୃତ ହେଲେ, ଯେତେବେଳେ ଅତି ଗଭୀର ଦୁଃଖର ଉଦୟ ହୁଏ; ସେତେବେଳେ ବୁଝିବାକୁ ହେବ ଯେ, ଭଗବଦ୍-ପ୍ରୀତିର ସଞ୍ଚାର ଆରମ୍ଭ ହୋଇଯାଇଛି ।

୧୪ । ଏହିଭଳି ପ୍ରେମ ଥିଲା ଗୋପାଙ୍ଗନାମାନଙ୍କର ।

୧୫ । କାରଣ ଭଗବାନଙ୍କୁ ପ୍ରେମାସ୍ପଦ ରୂପେ ଉପାସନା କଲେ ମଧ୍ୟ ତାଙ୍କର

ଭଗବତ୍ସ୍ୱ-ରୂପ ସେମାନେ କେବେ ବ ବସ୍ତୁ ତ ହୁଅନ୍ତ ନାହିଁ ।

୧୬ । ଯଦ ଏଭଳ ହୋଇ ନ ଥାନ୍ତା, ତେବେ ସେମାନେ ଅପଖାତ୍ୱରୂପ ପାପରେ ଭାଗୀ ହୋଇଥାନ୍ତେ ।

୧୭ । ଏହା ହିଁ ଭକ୍ତିର ସର୍ବୋଚ୍ଚ ରୂପ । କାରଣ ମଣିଷର ସମସ୍ତ ପ୍ରକାର ପ୍ରେମର ପ୍ରତଦାନରେ କଛ ପାଇବାର ଆକାଙ୍କ୍ଷା ଥାଏ—କନ୍ତୁ ଏହ ସ୍ୱର୍ଗୀୟ ପ୍ରୀତରେ ତାହା ନାହିଁ ।

## ଦ୍ୱିତୀୟ ପରିଚ୍ଛେଦ

୧ । କର୍ମ, ଜ୍ଞାନ ଓ ଯୋଗ (ରାଜଯୋଗ) ଅପେକ୍ଷା ଭକ୍ତି ମହତ୍ତର । କାରଣ ଭକ୍ତି ହିଁ ଭକ୍ତିର ଫଳ, ଉପାୟ ଓ ଉଦ୍ଦେଶ୍ୟ ।

୨ । ଖାଦ୍ୟ ସମ୍ବନ୍ଧୀୟ ଜ୍ଞାନଲାଭ କର ବା କେବଳ ଖାଦ୍ୟବସ୍ତୁ ଦର୍ଶନ ମାତ୍ର କର ମନୁଷ୍ୟର ଯେପର କ୍ଷୁଧାର ନବୃତ୍ତି ହୁଏ ନାହିଁ—ସେହପର ଯେତେବେଳ ଯାଏ ଭଗବାନଙ୍କ ପ୍ରତ ପ୍ରେମର ଉଦୟ ନ ହୋଇଛ, ସେତେବେଳ ପର୍ଯ୍ୟନ୍ତ ଭଗବାନଙ୍କ ସମ୍ବନ୍ଧୀୟ ଜ୍ଞାନ ଲାଭ ଏପରକ ଭଗବାନଙ୍କୁ ଦର୍ଶନ କରଥିଲେ ମଧ୍ୟ ମନୁଷ୍ୟ ପରତୃପ୍ତ ହୋଇପାରେ ନାହିଁ । ସେଇଥିପାଇଁ ଭକ୍ତି ହିଁ ଶ୍ରେଷ୍ଠ ।

## ତୃତୀୟ ପରିଚ୍ଛେଦ

୧ । ଯାହା ହେଉ, ସିଦ୍ଧ ଭକ୍ତମାନେ ଭକ୍ତି ସମ୍ବନ୍ଧରେ ଏହକଥା କହଛନ୍ତ—

୨ । ଯେ ଭକ୍ତିଲାଭ କରବାକୁ ଚାହାଁନ୍ତ, ତାଙ୍କୁ ଇନ୍ଦ୍ରିୟ-ସୁଖଭୋଗ, ଏପରକ ମନୁଷ୍ୟର ସଙ୍ଗ ପର୍ଯ୍ୟନ୍ତ ନଶ୍ଚୟ ତ୍ୟାଗ କରବାକୁ ପଡ଼ବ ।

୩ । ଦନରାତ ସେ ଏକମାତ୍ର ଭକ୍ତି ବଷୟ ଛଡ଼ା, ଆଉ ଅନ୍ୟ କଛ ହିଁ ଚନ୍ତା କରବେ ନାହିଁ ।

୪ । ଯେଉଁଠାରେ ଭଗବାନଙ୍କ କୀର୍ତ୍ତନ ଓ ଆଲୋଚନା ହୁଏ, ସେଠାରେ ଭଗବତ୍-ପ୍ରେମୀ ଉପସ୍ଥିତ ରହବା ଉଚତ ।

୫ । ପ୍ରଧାନତଃ ମୁକ୍ତ ମହାପୁରୁଷଙ୍କ କୃପାରେ ହିଁ ଭକ୍ତିଲାଭ ହୁଏ ।

୬ । ମହାପୁରୁଷଙ୍କ ସଙ୍ଗଲାଭ ଦୁର୍ଲ୍ଲଭ ଏବଂ ଆତ୍ମାର ମୁକ୍ତି-ବଧାନରେ ତାହା ଅମୋଘ ।

୭ । ଭଗବାନଙ୍କ କୃପାରୁ ହିଁ ଏହଭଳ ଗୁରୁଲାଭ ହୁଏ ।

୮ । ଭଗବାନ ଓ ଭଗବାନଙ୍କ ଅନ୍ତରଙ୍ଗ ଭକ୍ତଙ୍କ ମଧ୍ୟରେ କୌଣସି ଭେଦ ନାହିଁ ।

୯ । ଅତଏବ ଏତାଦୃଶ ମହାପୁରୁଷଙ୍କର କୃପା-ଲାଭ ପାଇଁ ଆସ୍ପୃହା କରବା ଉଚତ ।

୧୦ । ଅସତ୍‌ସଙ୍ଗ ସର୍ବଦା ବର୍ଜନୀୟ ।

୧୧ । କାରଣ ଏହା କାମକ୍ରୋଧଭାବ ବଢ଼ାଇଦିଏ—ମାୟାରେ ଆବଦ୍ଧ କରିଦିଏ—ଉଦ୍ଦେଶ୍ୟକୁ ଭୁଲାଇଦିଏ—ଇଚ୍ଛାଶକ୍ତିର ଦୃଢ଼ତା (ଅଧ୍ୟବସାୟ) ନାଶ କରେ ଏବଂ ସବୁକିଛି ଧ୍ୱଂସ କରିଦିଏ ।

୧୨ । ଏହି ବିପତ୍ତିଗୁଡ଼ିକ ପ୍ରଥମେ କ୍ଷୁଦ୍ର ତରଙ୍ଗ ଆକାରରେ ଆସିପାରେ—କିନ୍ତୁ ଅସତ୍‌ସଙ୍ଗ ଏଗୁଡ଼ିକୁ ସମୁଦ୍ରାକାରରେ ପରିଣତ କରେ ।

୧୩ । ଯେ ସବୁ ପ୍ରକାର ଆସକ୍ତି ତ୍ୟାଗ କରିଛନ୍ତି—ଯେ ମହାପୁରୁଷଙ୍କର ସେବାରେ ନିଜକୁ ନିୟୋଜିତ ରଖିଛନ୍ତି, ସଂସାରର ସର୍ବବିଧ ବନ୍ଧନ ଛିନ୍ନ କରି ଯେ ଏକାକୀ ବାସ କରନ୍ତି, ଯେ ଗୁଣାତୀତ ଭଗବାନଙ୍କ ଉପରେ ସଂପୂର୍ଣ୍ଣଭାବେ ନିର୍ଭରଶୀଳ, ସେ ହିଁ 'ମାୟା'-ସମୁଦ୍ରକୁ ପାରି ହୋଇପାରନ୍ତି ।

୧୪ । ଯେ କର୍ମଫଳ ତ୍ୟାଗ କରିଛନ୍ତି, ଯେ ସର୍ବ କର୍ମ, ସୁଖ-ଦୁଃଖରୂପକ ଦ୍ୱନ୍ଦ୍ୱ, ଏପରିକି ଶାସ୍ତ୍ରଜ୍ଞାନ ବି ପରିତ୍ୟାଗ କରିଛନ୍ତି—ସେ ହିଁ କେବଳ ନିରବଚ୍ଛିନ୍ନ ଭଗବଦ୍-ପ୍ରେମର ଅଧିକାରୀ ହୁଅନ୍ତି ।

୧୫ । ଭଗବାନଙ୍କ ପ୍ରେମୀ ଭକ୍ତ ହିଁ ଭବନଦୀ ପାରି ହୁଅନ୍ତି ଏବଂ ଅନ୍ୟଙ୍କୁ ମଧ୍ୟ ପାରି ହେବାରେ ସାହାଯ୍ୟ କରିପାରନ୍ତି ।

## ଚତୁର୍ଥ ପରିଚ୍ଛେଦ

୧ । ପ୍ରେମର ସ୍ୱରୂପ ବର୍ଣ୍ଣନାର ଅତୀତ—ଅନିର୍ବଚନୀୟ ।

୨ । ଯେପରି ମୂକ ବ୍ୟକ୍ତି ଯାହା ଆସ୍ୱାଦନ କରେ, ତାହା କଥାରେ ପ୍ରକାଶ କରିପାରେ ନାହିଁ—କିନ୍ତୁ ହାବଭଙ୍ଗୀ, ସଙ୍କେତାଦିଦ୍ୱାରା ପ୍ରକାଶ କରିବାକୁ ଚେଷ୍ଟା କରିଥାଏ, ସେହିପରି ପ୍ରେମୀ ବ୍ୟକ୍ତି ତା'ର ଅନ୍ତର୍ଗତ ପ୍ରେମାନୁଭୂତିକୁ ଭାଷାରେ ପ୍ରକାଶ କରିପାରେ ନାହିଁ—କିନ୍ତୁ ତା'ର ଆଚରଣରେ ତାହା ପ୍ରକାଶିତ ହୋଇପଡ଼େ ।

୩ । କୌଣସି କୌଣସି ବ୍ୟକ୍ତିର ଜୀବନରେ ଏହି ପ୍ରେମଭାବର ଉଦୟ ହୁଏ, ପ୍ରକାଶ ହୁଏ ଓ ତାହା ବିକାଶଲାଭ କରେ ।

୪ । ଏହି ପ୍ରେମ ହେଲା ସୂକ୍ଷ୍ମତମ ଏପରି ଏକ ଅନୁଭୂତି ବା ଉପଲବ୍ଧି, ଯାହା ସର୍ବଗୁଣାତୀତ, ସମସ୍ତ ବାସନାର ଅତୀତ, ଚିରବର୍ଦ୍ଧମାନ ଚିର-ବିଚ୍ଛେଦହୀନ ଅବସ୍ଥାରେ ରହିଥାଏ ।

୫ । ଯେତେବେଳେ ମଣିଷ ଏହି ପ୍ରେମ-ଭକ୍ତି ଲାଭ କରେ, ସେତେବେଳେ ସେ ସବୁଠାରେ ଏହି ପ୍ରେମର ରୂପକୁ ପ୍ରତ୍ୟକ୍ଷ କରେ—ପ୍ରେମର କଥା ହିଁ ଶ୍ରବଣ କରେ—ଏହାକୁ ହିଁ କୀର୍ତ୍ତନ କରେ ଏବଂ ଚିନ୍ତା କରେ ।

୬ । ଗୁଣ ଏବଂ ଅବସ୍ଥାନୁସାରେ ଏହି ପ୍ରେମ ବିଭିନ୍ନଭାବେ ନିଜକୁ ବିକଶିତ କରିଥାଏ ।

୭ । ଆମ ମାନୁଷୀ ପ୍ରକୃତିର ଯେଉଁ ତିନୋଟି ଗୁଣ ରହିଛି—ସେଗୁଡ଼ିକ ହେଲା—ତମଃ—(ମୂଢ଼ତା, ଆଳସ୍ୟ, ଅଜ୍ଞାନତା ଓ ଅଧୁନ୍ଦରତା), ରଜଃ—(ଚଞ୍ଚଳତା, କର୍ମପ୍ରବଣତା, ଉଗ୍ରତା), ସତ୍ତ୍ୱ—(ଶାନ୍ତି, ପବିତ୍ରତା) । ଆମ ମନର ବିଭିନ୍ନ ଅବସ୍ଥା ମଧ୍ୟ ରହିଥାଏ, ଯଥା—ଆର୍ତ୍ତି ଅବସ୍ଥା—ବିଭିନ୍ନ ପ୍ରକାର ଆପଦବିପଦରେ ବ୍ୟସ୍ତ ହୋଇପଡ଼ିବା । ଅର୍ଥାର୍ଥୀ ଅବସ୍ଥା—କୌଣସି ବିଷୟ ଲାଗି ଅଭିଳାଷ କରିବା । ଜିଜ୍ଞାସୁ ଅବସ୍ଥା—ସତ୍ୟ କ'ଣ, ତାହା ଜାଣିବା ଲାଗି ବ୍ୟାକୁଳତା । ଜ୍ଞାନୀ ଅବସ୍ଥା—ସବୁ କଥାକୁ ଜାଣିପାରୁଥିବା, ବୁଝିପାରୁଥିବା ଅବସ୍ଥା ।

୮ । ଏଗୁଡ଼ିକ ଭିତରେ ତମଃ ଅପେକ୍ଷା ରଜଃ ଏବଂ ରଜଃ ଅପେକ୍ଷା ସତ୍ତ୍ୱ ଶ୍ରେଷ୍ଠତର ଗୁଣ । ସେହିପରି, ଆର୍ତ୍ତି ଅବସ୍ଥାଠାରୁ ଅର୍ଥାର୍ଥୀ ଅବସ୍ଥା ଓ ଅର୍ଥାର୍ଥୀ ଅବସ୍ଥାଠାରୁ ଜିଜ୍ଞାସୁ ଅବସ୍ଥା ଏବଂ ଜିଜ୍ଞାସୁ ଅବସ୍ଥାଠାରୁ ଜ୍ଞାନୀ ଅବସ୍ଥା ଶ୍ରେଷ୍ଠତର ଅବସ୍ଥା ।

୯ । ଏକମାତ୍ର ବିଶୁଦ୍ଧ ପ୍ରେମ-ଭକ୍ତି ହିଁ ଉପାସନାର ସହଜତମ ମାର୍ଗ ବା ଉପାୟ ବା ସାଧନ ।

୧୦ । ଏହା ସ୍ୱତଃପ୍ରମାଣ—ପ୍ରମାଣ ନିମିତ୍ତ ଅନ୍ୟ କୌଣସି ବସ୍ତୁର ଅପେକ୍ଷା ରଖେ ନାହିଁ ।

୧୧ । ଶାନ୍ତି ଓ ପରମାନନ୍ଦ ହିଁ ଏହାର ପ୍ରକୃତି ।

୧୨ । ଏହି ପ୍ରେମ-ଭକ୍ତି କେବେ କାହାର କୌଣସି ପ୍ରକାର ଅନିଷ୍ଟ କରିବାକୁ ଚାହେଁ ନାହିଁ । ଏପରିକି ପ୍ରଚଳିତ ଉପାସନା-ପଦ୍ଧତିର ମଧ୍ୟ ନୁହେଁ ।

୧୩ । ପ୍ରେମୀ ଭକ୍ତ କେବେହେଲେ ବି ସାଂସାରିକ ସୁଖ-ଭୋଗ ସମ୍ବନ୍ଧୀୟ କଥା, ଈଶ୍ୱରଙ୍କ ଅସ୍ତିତ୍ୱବିରୋଧୀ କଥା ଅଥବା ନିଜର ଶତ୍ରୁ-ବିଷୟକ କଥା ପ୍ରସଙ୍ଗରେ କାନ ଦିଅନ୍ତି ନାହିଁ । ତାହା ଦୈବାତ୍ ତାଙ୍କର ଏ କାନରେ ପଡ଼ିଗଲେ ତତ୍‌କ୍ଷଣାତ୍ ସେ କାନବାଟେ ବାହାରିଯାଏ । ଚିତ୍ତରେ କ୍ଷଣମାତ୍ର ରହେ ନାହିଁ ।

୧୪ । ଯାହାର ଚିତ୍ତରେ ପ୍ରେମ-ଭକ୍ତିର ଉଦୟ ହୋଇଛି—ତା'ର ହୃଦୟରୁ ଦମ୍ଭ ଅହଙ୍କାରାଦି ସୂର୍ଯ୍ୟକିରଣରେ ତୁଷାର ତରଳିଯିବା ପରି ତରଳିଯାଇ ବହିଯାଏ ।

୧୫ । କାମ-କ୍ରୋଧ-ଲୋଭ-ମୋହାଦି ରିପୁମାନଙ୍କୁ ସର୍ବଦା ବଶୀଭୂତ କରିବାକୁ ହେବ । ଯଦି ତାହା ସତ୍ତ୍ୱେ କିଛି ଅବଶିଷ୍ଟ ରହେ, ତେବେ ସେଗୁଡ଼ିକୁ ଈଶ୍ୱରଙ୍କ ପଦତଳେ ସମର୍ପଣ କରିବାକୁ ହେବ । ସବୁ ପ୍ରକାର କର୍ମ ତାଙ୍କର ପଦତଳେ ପୁଷ୍ପାଞ୍ଜଳି ଭଳି ସମର୍ପଣ କରିବାକୁ ହେବ ।

୧୬ । ପ୍ରେମ, ପ୍ରେମିକ ଓ ପ୍ରେମାସ୍ପଦଙ୍କୁ ଏକ ବୋଲି ଭାବି, ନିଜକୁ ଭଗବାନଙ୍କର ଚିରଭୃତ୍ୟ ବା ଚିରବଧୂ ବୋଲି ଭାବି ଭଗବାନଙ୍କ ସେବା କରିବାକୁ ହୁଏ । ତାଙ୍କୁ ଏହି ଭାବରେ ହିଁ ପ୍ରେମନିବେଦନ କରିବାକୁ ହୁଏ ।

## ପଞ୍ଚମ ପରିଚ୍ଛେଦ

୧ । ଯେଉଁ ପ୍ରେମ ଭଗବାନଙ୍କଠାରେ ଏକାଗ୍ର, ତାହା ହିଁ ଶ୍ରେଷ୍ଠ ।

୨ । ଭଗବାନଙ୍କ ପ୍ରସଙ୍ଗ ପଡ଼ିଲେ ଭଗବଦ୍‌-ପ୍ରେମୀମାନଙ୍କ ହୃଦୟରେ ମହାଭାବର ଆଲୋଡ଼ନ ହୋଇ ସେମାନଙ୍କର କଣ୍ଠ ଗଦ୍‌ଗଦ ହୋଇଯାଏ—ସେମାନେ କାନ୍ଦିଉଠନ୍ତି । ସେହିମାନଙ୍କ ଯୋଗୁଁ ତୀର୍ଥସ୍ଥଳୀଗୁଡ଼ିକ ପବିତ୍ର ହୋଇଥାଏ । ସେମାନେ ଯେଉଁ କର୍ମ କରନ୍ତି, ତାହା ଶୁଭ ହୁଏ । ସେମାନଙ୍କ ଗୁଣରେ ସଦ୍‌ଗ୍ରନ୍ଥମାନେ ହିଁ ଅଧିକତର ସଦ୍‌ଭାବାପନ୍ନ ହୋଇଉଠେ । କାରଣ, ସେମାନେ ଭଗବାନଙ୍କ ସହିତ ସର୍ବଦା ଏକାତ୍ମ ଅବସ୍ଥାରେ ଥାଆନ୍ତି ।

୩ । ଯେବେ କେହିଜଣେ ଭଗବାନଙ୍କୁ ଏତେଦୂର ଭଲ ପାଆନ୍ତି, ସେଥିରେ ତାଙ୍କର ପୂର୍ବପୁରୁଷଗଣ ଆନନ୍ଦିତ ହୁଅନ୍ତି—ଦେବଦେବୀମାନେ ନୃତ୍ୟ କରନ୍ତି ଏବଂ ପୃଥିବୀ ଜଣେ ଗୁରୁଲାଭ କରି ଧନ୍ୟ ହୁଏ ।

୪ । ଏହିଭଳି ପ୍ରେମିକ ନିକଟରେ ବର୍ଣ, ଲିଙ୍ଗ, ଜ୍ଞାନ, ଆକାର, ଜନ୍ମ ଓ ସମ୍ପ୍ରଦାୟର କୌଣସି ଭେଦଭାବ ରହେ ନାହିଁ ।

୫ । କାରଣ ସେ ମନେକରେ ଯେ, ସବୁ କିଛି ଭଗବାନଙ୍କର ।

୬ । ପ୍ରେମୀ ଭକ୍ତ ନିଜେ କୁତର୍କରେ ମାତେ ନାହିଁ ।

୭ । କାରଣ କୁତର୍କର ଶେଷ ନାହିଁ । ସେଥିରେ କୌଣସି ସନ୍ତୋଷ-ଜନକ ଫଳ ମିଳେ ନାହିଁ ।

୮ । ଏଭଳି ଗ୍ରନ୍ଥ ପାଠ କରିବା ଉଚିତ ଏବଂ ଏଭଳି କର୍ମ କରିବା ଉଚିତ, ଯେଉଁଥିରେ କି ପ୍ରେମଭକ୍ତିର ଭାବ ବୃଦ୍ଧି ପାଇବ ।

୯ । ସୁଖ-ଦୁଃଖ, ଲାଭ-ଲୋକସାନର ସକଳ ବାସନା ତ୍ୟାଗ କରି ଦିନରାତି ଭଗବାନଙ୍କର ହିଁ ପୂଜା କରିବାକୁ ହୁଏ । ଗୋଟିଏ ମୁହୂର୍ତ୍ତି ବି ନଷ୍ଟ କରିବା ଉଚିତ ନୁହେଁ ।

୧୦ । ଅହିଂସା, ସତ୍ୟନିଷ୍ଠା, ପବିତ୍ରତା, ଦୟା ଓ ଦେବଭାବ ସର୍ବଦା ମନ ଭିତରେ ପୋଷଣ କରିବାକୁ ହୁଏ ।

୧୧ । ଅନ୍ୟ ସବୁ ପ୍ରକାର ଚିନ୍ତା ତ୍ୟାଗ କରି ସମସ୍ତ ମନୋଯୋଗ ସହକାରେ ଦିନରାତି ଭଗବାନଙ୍କୁ ପୂଜା କରିବା ଉଚିତ । ଏହିଭାବରେ ଦିନରାତି ଉପାସନା କଲେ ଭକ୍ତ ନିକଟରେ ଭଗବାନ ପ୍ରକଟିତ ହୁଅନ୍ତି ଏବଂ ଭକ୍ତଙ୍କୁ ଉପଲବ୍ଧିର ସାମର୍ଥ୍ୟ ଦାନ କରନ୍ତି ।

୧୨ । ଅତୀତ, ବର୍ତ୍ତମାନ ଓ ଭବିଷ୍ୟତରେ ପ୍ରେମ ଅପେକ୍ଷା ଆଉ କିଛି ମହତ୍ତର ନାହିଁ । ଜଗତର ସବୁ ବାଙ୍ଗବିଦ୍ରୂପର ଭୟ ପରିହାର କରି, ପ୍ରାଚୀନ ମହାପୁରୁଷମାନଙ୍କ ପନ୍ଥା ଅନୁସରଣପୂର୍ବକ ଆମେ ଏହି ପ୍ରେମ-ଭକ୍ତିର ତତ୍ତ୍ୱ ପ୍ରଚାର କରିବାକୁ ସାହସୀ ହୋଇଅଛୁ ।

## ଭକ୍ତିଯୋଗ ପ୍ରସଙ୍ଗ

ଦ୍ୱୈତବାଦୀ କହେ—ସର୍ବଦା ଦଣ୍ଡହସ୍ତରେ ଶାସନ କରିବାକୁ ଉଦ୍ୟତ ଏପରି ଜଣେ ଈଶ୍ୱରଙ୍କ ସମ୍ବନ୍ଧରେ ନ ଭାବିଲେ, ତୁମେ ନୀତିମାନ୍ ହୋଇପାରିବ ନାହିଁ । ବିଷୟଟି ହେଲା ଏହିଭଳି—ଧର, ଗୋଟିଏ ଘୋଡ଼ା ଆମକୁ ନୀତି ସମ୍ବନ୍ଧୀୟ ବକ୍ତୃତାଟିଏ ଶୁଣାଇବ ଏବଂ ସେହି ଘୋଡ଼ାଟି ହେଲା ପୁଣି ଗୋଟିଏ ଦରଭଙ୍ଗା ଝଟ୍କା ଗାଡ଼ିର ହତଭାଗ୍ୟ ଘୋଡ଼ା । ସେ ବିନା ଚାବୁକ୍‌ରେ ଗୋଟାଏ କଦମ୍ ବି ଆଗକୁ ଚାଲେ ନାହିଁ । ଚାବୁକ୍ ଖାଇବା ତା'ର ସ୍ୱଭାବରେ ପଡ଼ି ଯାଇଛି । ଏହି ଘୋଡ଼ାଟିର ବକ୍ତୃତାର ବିଷୟବସ୍ତୁ ହେଲା 'ମଣିଷ' । ତା' ମତରେ ମଣିଷ ମାନେ ହିଁ ନୀତିହୀନ । କାହିଁକି ? କାରଣ, ମଣିଷଙ୍କୁ ନିୟମିତ ଭାବରେ ଚାବୁକ୍ ମରାଯାଏ ନାହିଁ। କିନ୍ତୁ ଅସଲ କଥାଟି ହେଲା—ଘୋଡ଼ାଟିକୁ ଜଣା ନାହିଁ ଯେ, ଚାବୁକ୍‌ର ଭୟ ମଣିଷକୁ ଆହୁରି ନୀତିହୀନ କରିପକାଏ ।

ତୁମେମାନେ ସମସ୍ତେ କୁହ ଯେ, ଈଶ୍ୱର ନାମରେ ଜଣେ ସତ୍ତା ଅଛନ୍ତି ଏବଂ ସେ ସର୍ବବ୍ୟାପୀ । ଚକ୍ଷୁ ବନ୍ଦ କରି ଚିନ୍ତା କର—ଈଶ୍ୱର କିଭଳି ହୋଇଥିବେ ? ତୁମେ କ'ଣ ଦେଖିବ ? ଯେତେବେଳେ ତୁମେ ମନ ଭିତରେ ଈଶ୍ୱରଙ୍କ ସର୍ବବ୍ୟାପୀତ୍ୱଭାବଟି ଆଣିବାର ଚେଷ୍ଟା କରିବ, ସେତେବେଳେ ଦେଖିବ—ସମୁଦ୍ର, ନୀଳ ଆକାଶ, ବିସ୍ତୃତ ବିଶାଳ ଉନ୍ମୁକ୍ତ ପ୍ରାନ୍ତର କିମ୍ବା ତାଦୃଶ କୌଣସି ବସ୍ତୁ—ଯାହା ତୁମେ ପୂର୍ବରୁ ଦେଖିଛ—ଏବଂ ତାହା ହିଁ ତୁମ ମନରେ ଚିନ୍ତା ରୂପରେ ଦେଖା ଦେଇଛି । ଯଦି ଏହା ହିଁ ହୁଏ, ସର୍ବବ୍ୟାପୀ ଭଗବାନଙ୍କ ସମ୍ବନ୍ଧରେ ତୁମର କୌଣସି ଧାରଣା ନାହିଁ । ସର୍ବବ୍ୟାପୀତ୍ୱ ତୁମ ନିକଟରେ ଗୋଟିଏ ଅର୍ଥହୀନ ଶବ୍ଦ । ଈଶ୍ୱରଙ୍କର ଅନ୍ୟାନ୍ୟ ବିଶେଷଣ କ୍ଷେତ୍ରରେ ମଧ୍ୟ ଠିକ୍ ସେଇଆ । ଈଶ୍ୱରଙ୍କ ସର୍ବଶକ୍ତିମତ୍ତା ବା ସର୍ବଜ୍ଞତ୍ୱ ସମ୍ବନ୍ଧରେ ଆମର କି ଧାରଣା ଅଛି ? କିଛି ନାହିଁ । ଉପଲବ୍ଧି ହିଁ ଧର୍ମ । ଯେତେବେଳଯାଏ ତୁମେ ଈଶ୍ୱର-ଭାବଟିକୁ ନିଜ ଜୀବନରେ ଉପଲବ୍ଧି ନ କରିଛ, ସେତେବେଳଯାଏ ମୁଁ ତୁମକୁ ଯଥାର୍ଥ ଈଶ୍ୱର-ଉପାସକ କହିବ ନାହିଁ । ଯଥାର୍ଥ ଉପଲବ୍ଧି ପୂର୍ବରୁ ଏହା କେବଳ କଥାର କଥା ଛଡ଼ା ଆଉ କିଛି ନୁହେଁ । ମସ୍ତିଷ୍କରେ ରାଶି ରାଶି ଧର୍ମ, ନୀତି ବା ଦର୍ଶନର ପୁସ୍ତକ ସଞ୍ଚିତ ରଖିଲେ କିଛି ଯାଏ ଆସେ ନାହିଁ । ତୁମେ କ'ଣ, କେତେଦୂର ଉପଲବ୍ଧି କରିଛ, ସେସବୁକୁ ନିଜ ଜୀବନରେ କେତେ ପରିଣତ କରିଛ, ତାହା ହିଁ ବିଚାର୍ଯ୍ୟ ।

ମାୟାର ଆବରଣ ଭିତର ଦେଇ ଦେଖିଲେ ନିର୍ଗୁଣ ବ୍ରହ୍ମ ହିଁ ସଗୁଣ ଈଶ୍ୱର ରୂପେ ଦେଖାଯାନ୍ତି । ବ୍ରହ୍ମଙ୍କୁ ଯେତେବେଳେ ପଞ୍ଚଇନ୍ଦ୍ରିୟଦ୍ୱାରା ପ୍ରତ୍ୟକ୍ଷ କରାଯାଏ, ସେତେବେଳେ ତାଙ୍କୁ ଏକମାତ୍ର ସଗୁଣ ଭଗବାନ ରୂପରେ ଦର୍ଶନ କରାଯାଏ । ଅସଲ କଥା ହେଲା—ପରମାତ୍ମାଙ୍କୁ କେବେ ବି ବିଷୟୀଭୂତ କରାଯାଇପାରେ ନାହିଁ । ଜ୍ଞାତା ନିଜକୁ କିପରି ଜାଣିବେ ? ତେବେ ସେ ହୁଏତ ନିଜର ଛାୟାକୁ ପ୍ରକ୍ଷେପ କରିପାରନ୍ତି ଏବଂ ଯଦି କହିବାକୁ ଚାହିଁ—ତେବେ ଏହି ପ୍ରକ୍ରିୟାକୁ ହିଁ 'ବିଷୟୀଭୂତ କରିବା' କହିପାରି । ସୁତରାଂ, ସେହି ଛାୟାର

ସର୍ବୋଚ୍ଚ ରୂପକୁ, ନିଜକୁ ବିଷୟୀଭୂତ କରିବାର ପ୍ରଚେଷ୍ଟାକୁ ଆମେ ସଗୁଣ ଈଶ୍ୱର ବୋଲି କହି ପାରିବା । ଆତ୍ମା ହେଉଛନ୍ତି ଶାଶ୍ୱତ ଜ୍ଞାତା । ସେହି ଆତ୍ମାକୁ ଜ୍ଞେୟ ରୂପରେ ରୂପାନ୍ତରିତ କରିବା ପାଇଁ ଆମେ ନିରନ୍ତର ଚେଷ୍ଟା କରୁଥାଉଁ ଏବଂ ଆମର ଏହି ପ୍ରଚେଷ୍ଟା ଭିତରୁ ଦୃଶ୍ୟ ଜଗତର ଓ ଯାହାକୁ ଆମେ 'ଜଡ଼' ବୋଲି କହୁ ତାହାର ଓ ଅନ୍ୟ ସବୁ କିଛିର ଉଦ୍‌ଭବ ହୋଇଅଛି । କିନ୍ତୁ ଏସବୁ ଅତ୍ୟନ୍ତ ଦୁର୍ବଳ ପ୍ରଚେଷ୍ଟା ଏବଂ ଆମ ନିକଟରେ ଆତ୍ମାର ଜ୍ଞେୟ ରୂପରେ ଯେଉଁ ସର୍ବୋଚ୍ଚ ପ୍ରକାଶ ସମ୍ଭବ, ତାହା ହିଁ ସଗୁଣ ଈଶ୍ୱର । ଏହି ଜ୍ଞେୟ ବସ୍ତୁ ହିଁ ଆମର ସ୍ୱରୂପ-ଉଦ୍‌ଘାଟନ-ପ୍ରଚେଷ୍ଟାର ଫଳ । ସାଂଖ୍ୟମତରେ ପ୍ରକୃତି ଏହିସବୁ ଅଭିଜ୍ଞତା ପୁରୁଷ ବା ଜୀବାତ୍ମାକୁ ଦେଉଅଛି—ଫଳରେ ଜୀବ ତାହାର ପ୍ରକୃତ ସ୍ୱରୂପ ଜାଣିପାରିବ । ଅଦ୍ୱୈତ ବେଦାନ୍ତ ମତରେ ଜୀବ ନିଜକୁ ଜାଣିବା ପାଇଁ ଚେଷ୍ଟା କରୁଛି । ଦୀର୍ଘ ସଂଗ୍ରାମ ପରେ ସେ ଦେଖିବାକୁ ପାଏ ଯେ, ଜ୍ଞାତା ସର୍ବଦା ଜ୍ଞାତା ଭାବରେ ହିଁ ରହିଥାଏ—ସେତେବେଳେ ଅନାସକ୍ତି ଆସେ ଏବଂ ଜୀବ ମୁକ୍ତ ହୋଇଯାଏ ।

ଯେତେବେଳେ କୌଣସି ସାଧକ ସେହି ପୂର୍ଣ୍ଣ ଅବସ୍ଥାରେ ଉପନୀତ ହୁଅନ୍ତି, ସେତେବେଳେ ସେ ସଗୁଣ ଈଶ୍ୱରଙ୍କର ସାରୂପ୍ୟ ଲାଭ କରନ୍ତି । ଯୀଶୁଖ୍ରୀଷ୍ଟ କହିଲେ ଭଳି, "ମୁଁ ଓ ମୋର ପିତା ଏକ ।" ସେ ଜାଣନ୍ତି ଯେ, ସେ ପରମବ୍ରହ୍ମଙ୍କଠାରୁ ଅଭିନ୍ନ । ସଗୁଣ ଈଶ୍ୱରଙ୍କ ସଦ୍‌ଗୁଣ ସେ ନିଜକୁ ପ୍ରକ୍ଷେପ କରନ୍ତି । ସେ ଖେଳା କରନ୍ତି—ଯେପରି ଅତି ପରାକ୍ରାନ୍ତ ଦିଗ୍‌ବିଜୟୀ ବୀର ସମ୍ରାଟ ମଧ୍ୟ ମଝେ ମଝେ କଣ୍ଢେଇ ନେଇ ଖେଳା କରିବାର ଦେଖାଯାଏ ।

ସ୍ଥିତିର ବନ୍ଧନକୁ ଭାଙ୍ଗିପକାଇବା ଲାଗି କେତେଗୁଡ଼ିଏ କଳ୍ପନା ଅନ୍ୟ କଳ୍ପନା-ଗୁଡ଼ିକର ବନ୍ଧନକୁ ଛିନ୍ନ କରିବାରେ ସାହାଯ୍ୟ କରେ । ସମଗ୍ର ଜଗତ ହିଁ ଗୋଟାଏ କଳ୍ପନା । ଗୋଟିଏ ଶ୍ରେଣୀର କଳ୍ପନା ଆଉ ଏକ ଶ୍ରେଣୀସ୍ଥ କଳ୍ପନାର ଉପଶମ ଘଟାଇଥାଏ । ଏହି ଜଗତରେ ପାପ, ଦୁଃଖ ଓ ମୃତ୍ୟୁ ରହିଛି—ଏହି ଜାତୀୟ କଳ୍ପନା ସବୁ ମାରାତ୍ମକ । କିନ୍ତୁ ଆଉ ଗୋଟିଏ ପ୍ରକାର କଳ୍ପନା ରହିଛି—ତାହା ହେଲା—'ତୁମେ ପବିତ୍ର, ଭଗବାନ ଅଛନ୍ତି, ଦୁଃଖ ନାହିଁ ।' ଏହି କଳ୍ପନା ଭଲ ଏବଂ କଲ୍ୟାଣକର, ବନ୍ଧନମୋଚନର ସହାୟକ । ସଗୁଣବ୍ରହ୍ମ ବା ଈଶ୍ୱର ହିଁ ସର୍ବୋଚ୍ଚ କଳ୍ପନା, ଯାହା ଶୃଙ୍ଖଳର ସବୁ ଗ୍ରନ୍ଥି ଛିଣ୍ଡାଇ ଦେଇ ପାରେ ।

'ଭଗବାନ ! ତୁମେ ଏହାକୁ ରକ୍ଷା କର—ମୋତେ ଏକଥା ଦିଅ—ଭଗବାନ ! ତୁମ ପାଦତଳେ ବାରମ୍ବାର ମୁଣ୍ଡ ବାଡ଼େଇ ନିବେଦନ କରୁଛି—ମୋର ଦୈନନ୍ଦିନ ଜୀବନର ସବୁ ଅଭାବ ଅସୁବିଧା ଦୂର କରିଦିଅ—ହେ ଭଗବାନ ! ମୋର ମୁଣ୍ଡବ୍ୟଥା ଶୀଘ୍ର ଆରୋଗ୍ୟ କରିଦିଅ ।'—ଏଭଳି ପ୍ରାର୍ଥନା ଭକ୍ତି ନୁହେଁ । ଏସବୁ ହେଲା ଧର୍ମର ନିମ୍ନତମ ସୋପାନ, କର୍ମର ନିମ୍ନତମ ରୂପ । ଯଦି କୌଣସି ମଣିଷ ଦେହକୁ ତୃପ୍ତ କରିବା ଲାଗି, ଦେହର କ୍ଷୁଧା ମେଣ୍ଟାଇବା ଲାଗି ସମସ୍ତ ମାନସିକ ଶକ୍ତି ନିୟୋଗ କରେ, ତା'ହେଲେ ତା' ସହିତ ପଶୁର କି ପ୍ରଭେଦ ଅଛି ? ଭକ୍ତି ଉଚ୍ଚତର ବସ୍ତୁ । ସ୍ୱର୍ଗକାମନାଠାରୁ ମଧ୍ୟ ଉଚ୍ଚତର । ସ୍ୱର୍ଗ କହିଲେ ବୁଝାଯାଏ ଏପରି ଏକ ସ୍ଥାନ, ଯେଉଁଠି ସବୁଠାରୁ ବେଶୀ ସୁଖ ଭୋଗିବାର ସୁଯୋଗ ମିଳିଥାଏ ।

ସ୍ୱର୍ଗକୁ କପର ଭଗବାନ ବୋଲି କୁହାଯିବ ?

ଏକମାତ୍ର ମୂଢ଼ ବ୍ୟକ୍ତିମାନେ ହିଁ ଇନ୍ଦ୍ରିୟ-ଭୋଗ ପଛରେ ଧାଇଁଥାଆନ୍ତି । ଇନ୍ଦ୍ରିୟ-କେନ୍ଦ୍ରିକ ଜୀବନ ଯାପନ କରିବା ସହଜ । ଖାଇ ପିଇ ମଉଜରେ ବା ଆରାମରେ ଜୀବନ କଟାଇବା ଏକ ପୁରାତନ ଅଭ୍ୟାସ ପଥ । ଏ ପଥରେ ଭ୍ରମଣ କରିବା କଠିନ ନୁହେଁ । କିନ୍ତୁ ଆଧୁନିକ ଦାର୍ଶନିକମାନେ କହିବାକୁ ଚାହାଁନ୍ତି—'ଏହି ଅନାୟାସ-ସାଧ ଭାବଗୁଡ଼ିକୁ ଗ୍ରହଣ କର ଏବଂ ସେହିଗୁଡ଼ିକ ଉପରେ ଧର୍ମର ଛାପ ମାରିଦିଅ ।' ଏହି ଧରଣର ମତବାଦ ବିପଜ୍ଜନକ । ଇନ୍ଦ୍ରିୟ-ଭୋଗରେ ମୃତ୍ୟୁ । ଆଧ୍ୟାତ୍ମିକ ସ୍ତରରେ ଯେଉଁ ଜୀବନ, ତାହା ହିଁ ଯଥାର୍ଥ ଜୀବନ । ଅନ୍ୟ ଭୋଗଭୂମିର ଜୀବନ ମୃତ୍ୟୁର ହିଁ ନାମାନ୍ତର । ଆମର ଏହି ଜାଗତିକ ଜୀବନକୁ ଗୋଟିଏ ଶବ୍ଦରେ ବର୍ଣ୍ଣନା କରାଯାଇପାରେ । ଏହା 'ଅଭ୍ୟାସର ବ୍ୟାୟାମାଗାର' । ଯଥାର୍ଥ ଜୀବନ ଉପଭୋଗ କରିବାକୁ ହେଲେ ଆମକୁ ଏହାର ଊର୍ଦ୍ଧ୍ୱ ସ୍ତରକୁ ଉଠିବାକୁ ପଡ଼ିବ ।

ଯେତେବେଳ ପର୍ଯ୍ୟନ୍ତ ତୁମେ ହିନ୍ଦୁମାନେ ଛୁଆଁ ଅଛୁଆଁ ବ୍ୟାପାରଟିକୁ ଧର୍ମ ବୋଲି ବୁଝିଛ ଏବଂ ରାନ୍ଧଣା ହାଣ୍ଡିକୁ ଇଷ୍ଟ ବୋଲି ଭାବିଛ, ସେତେବେଳ ଯାଏ ତୁମେମାନେ ଆଧ୍ୟାତ୍ମିକ ଉନ୍ନତ ଲାଭ କରିପାରିବ ନାହିଁ । ଧର୍ମାଧର୍ମ ଭିତରେ ଯେଉଁ ଦ୍ୱନ୍ଦ୍ୱ, ତାହା ଅର୍ଥହୀନ, କେବଳ କଥାର ସଂଘର୍ଷ ମାତ୍ର । ପ୍ରତ୍ୟେକେ ଭାବନ୍ତି—'ଏହା ମୋର ମୌଳିକ ଚିନ୍ତା' ଏବଂ ସେ ଚାହାଁନ୍ତି ସବୁ କିଛି ତାଙ୍କର ମତାନୁସାରେ ଚାଲୁ । ଏହି ଭାବରେ ହିଁ ଧର୍ମ-ବିରୋଧର ସୂତ୍ରପାତ ହୋଇଛି ।

ଅନ୍ୟକୁ ସମାଲୋଚନା କଲାବେଳେ ଆମେମାନେ ନିର୍ବୋଧଙ୍କ ପରି ନିଜ ଚରିତ୍ରର ଗୋଟିଏ ମାତ୍ର ବିଶେଷ ଉଜ୍ଜ୍ୱଳ ଗୁଣକୁ ସମଗ୍ର ଜୀବନ ବୋଲି ଧରିନେଇ ଏବଂ ଏହା ସହିତ ଅନ୍ୟର ଚରିତ୍ରରେ ରହିଥିବା ଅନୁଜ୍ଜ୍ୱଳ ଗୁଣଟିକୁ ତୁଳନା କରୁ । ବ୍ୟକ୍ତିଗତ ଚରିତ୍ର ବିଚାର କଲାବେଳେ ଆମେ ଏହି ଭାବରେ ଭୁଲ କରି ବସୁ ।

ଜୋର୍ ଜବରଦସ୍ତି ଓ ସାଂପ୍ରଦାୟିକତାଦ୍ୱାରା ଗୋଟିଏ ଧର୍ମର ଅତି ଦ୍ରୁତ ପ୍ରସାର ହୁଏ, ସନ୍ଦେହ ନାହିଁ । କିନ୍ତୁ ଧର୍ମର ଦୃଢ଼ଭିତ୍ତି ସ୍ଥାପନ କରିବାକୁ ହେଲେ—ସେହି ଧର୍ମ-ସଂପ୍ରଦାୟ ଭିତରେ ପ୍ରତ୍ୟେକଙ୍କୁ ନିଜ ମତରେ ଚାଲିବାର ସ୍ୱାଧୀନତା ଦେବାକୁ ହେବ । ଧର୍ମ-ସାଧନାରେ ସ୍ୱାଧୀନତା ରହିଲେ ଜଣେ କ୍ରମଶଃ ଧାର୍ମିକତାର ଉଚ୍ଚତର ସୋପାନ ଆଡ଼କୁ ଅଗ୍ରସର ହୋଇପାରେ । ଅବଶ୍ୟ ଏହି ପ୍ରକ୍ରିୟାର ଗତି ବେଶ୍ ମନ୍ଥର । ସର୍ବପ୍ରଥମେ ଦେଶକୁ (ଭାରତବର୍ଷକୁ) ଆଧ୍ୟାତ୍ମିକଭାବରେ ପ୍ଲାବିତ କର । ତା'ପରେ ଅନ୍ୟାନ୍ୟ ଭାବଗୁଡ଼ିକ ଆସିବ । ଧର୍ମ ଓ ଅଧ୍ୟାତ୍ମଜ୍ଞାନ-ଦାନ ଶ୍ରେଷ୍ଠ ଦାନ । କାରଣ ଏହା ଅସଂଖ୍ୟ ଜନ୍ମ-ପ୍ରାପ୍ତି-ରୂପକ ବନ୍ଧନରୁ ମଣିଷକୁ ମୁକ୍ତ କରେ । ଏହାପରେ ଯାଇ ପାର୍ଥିବ ଜ୍ଞାନ-ଦାନ । ଏହା ସାହାଯ୍ୟରେ ଆଧ୍ୟାତ୍ମିକ ଜ୍ଞାନ ଦିଗରେ ମଣିଷର ଆଖି ଖୋଲିଯାଏ । ତୃତୀୟ ଦାନ ଜୀବନ-ଦାନ ଏବଂ ଚତୁର୍ଥ ଅନ୍ନ-ଦାନ ।

ସାଧନା କରୁକରୁ ଯଦି ଶରୀରର ପତନ ହୁଏ—ତେବେ ତାହା ହେଉ । ସେଥିରେ କ'ଣ ଯାଏ ଆସେ ? ନିରନ୍ତର ସତ୍ସଙ୍ଗ କରୁକରୁ ଯେତେବେଳେ ଉପଯୁକ୍ତ ସମୟ ଆସିବ,

ସେତେବେଳେ ଈଶ୍ୱରାନୁଭୂତି ଘଟିବ । ଗୋଟିଏ ସମୟ ଆସିବ, ଯେତେବେଳେ ମଣିଷ ବୁଝିପାରିବ ଯେ, ମାନବସେବା ପାଇଁ ଠିକ୍ ଭାବରେ ଚିଲମ୍‌ରେ ତମାଖୁ ସଜାଇବା କାର୍ଯ୍ୟଟି ଲକ୍ଷଲକ୍ଷ ଧ୍ୟାନଜପ ଅପେକ୍ଷା ବଡ଼ କାର୍ଯ୍ୟ । ଯେ ଏହାକୁ ଠିକ୍ ଭାବରେ କରିପାରେ, ସେ ଠିକ୍ ଭାବରେ ଧ୍ୟାନ ମଧ୍ୟ କରିପାରେ ।

ଦେବତାମାନେ ଉଚ୍ଚ ପର୍ଯ୍ୟାୟକୁ ଉନ୍ନୀତ ପରଲୋକଗତ ଜୀବାତ୍ମା ବ୍ୟତୀତ ଆଉ କିଛି ନୁହଁନ୍ତି । ସେମାନଙ୍କ ନିକଟରୁ ଆମେ ସାହାଯ୍ୟ ପାଇପାରୁ ।

ତାଙ୍କୁ ହିଁ ଆଚାର୍ଯ୍ୟ ଆଖ୍ୟା ଦିଆଯାଏ—ଯାହାଙ୍କ ଭିତର ଦେଇ ଐଶୀଶକ୍ତି କ୍ରିୟାଶୀଳ ହୋଇଥାଏ । ଯେଉଁ ଶରୀର ମଧ୍ୟରେ ଆଚାର୍ଯ୍ୟତ୍ୱ ଲାଭ ହୁଏ, ତାହା ଅପର ସାଧାରଣ ଲୋକର ଶରୀରଠାରୁ ଭିନ୍ନ । ସେ ଶରୀରକୁ ଠିକ୍ ଭାବରେ ରଖିବା ପାଇଁ ଏକ ବିଶେଷ ଯୋଗ ବା ବିଜ୍ଞାନ ଅଛି । ଆଚାର୍ଯ୍ୟଙ୍କ ଶରୀରର ଅଙ୍ଗପ୍ରତ୍ୟଙ୍ଗ ଅତ୍ୟନ୍ତ କୋମଳ ଓ ମନ ଅତି ସମ୍ବେଦନଶୀଳ; ଫଳରେ ସେ ସୁଖ ଓ ଦୁଃଖ ତୀବ୍ର ଭାବରେ ଅନୁଭବ କରିବାରେ ସମର୍ଥ ହୁଅନ୍ତି । ବସ୍ତୁତଃ ସେ ଅସାଧାରଣ ।

ଜୀବନର ପ୍ରତ୍ୟେକ କ୍ଷେତ୍ରରେ ଦେଖାଯାଏ ଯେ, ହୃଦୟବାନ୍ ମନୁଷ୍ୟ ହିଁ ଜୟଲାଭ କରିଥାନ୍ତି ଏବଂ ବ୍ୟକ୍ତିତ୍ୱ ହିଁ ସମସ୍ତ ସାଫଲ୍ୟର ଗୋପନ ରହସ୍ୟ ।

ନଦୀୟାର ଅବତାର ଭଗବାନ ଶ୍ରୀକୃଷ୍ଣଚୈତନ୍ୟଙ୍କଠାରେ ମହାଭାବର ଯେପରି ବିକାଶ ହୋଇଥିଲା, ସେପରି ଆଉ କେଉଁଠାରେ ହୋଇନାହିଁ ।

ଶ୍ରୀରାମକୃଷ୍ଣ ଏକ ଶକ୍ତି । କେବେ ବି ମନେକର ନାହିଁ ଯେ, ଏଇଟା ବା ସେଇଟା ଥିଲା ତାଙ୍କର ମତ । କିନ୍ତୁ ସେ ଏକ ଶକ୍ତି; ସେହି ଶକ୍ତି ବର୍ତ୍ତମାନ ବି ତାଙ୍କର ଶିଷ୍ୟମାନଙ୍କ ଭିତରେ ମୂର୍ତ୍ତି ହୋଇ ରହିଛି ଏବଂ ଜଗତରେ କାର୍ଯ୍ୟ କରୁଛି । ଭାବ ଦିଗରୁ ଦେଖିଲେ, ସେ ଏବେ ବି ବଢ଼ି ଚାଲିଛନ୍ତି । ଶ୍ରୀରାମକୃଷ୍ଣ ଏକ ଶରୀରରେ ହିଁ ଜୀବନ୍ମୁକ୍ତ ଓ ଆଚାର୍ଯ୍ୟ ଥିଲେ ।

## ଭକ୍ତିଯୋଗର ଉପଦେଶ

ରାଜଯୋଗ ଏବଂ ଶାରୀରିକ କ୍ରିୟା ସମ୍ବନ୍ଧରେ ଆମେମାନେ ଆଲୋଚନା କରିଅଛୁ । ବର୍ତ୍ତମାନ ଭକ୍ତିଯୋଗ ସମ୍ବନ୍ଧରେ ଆଲୋଚନା କରିବା । କିନ୍ତୁ ମନେରଖିବାକୁ ହେବ, କୌଣସି ଗୋଟିଏ ଯୋଗ ଅପରିହାର୍ଯ୍ୟ ନୁହେଁ । ମୁଁ ତୁମମାନଙ୍କ ନିକଟରେ ଅନେକଗୁଡ଼ିଏ ପଦ୍ଧତି ଏବଂ ଆଦର୍ଶ ଉପସ୍ଥାପିତ କରିବାକୁ ଚାହେଁ । ତୁମେମାନେ ତୁମମାନଙ୍କ ପ୍ରକୃତିର ଉପଯୋଗୀ ହେଲାପରି ଗୋଟିଏ ପନ୍ଥା ସେଥି ଭିତରୁ ବାଛିନେଇପାର । ଗୋଟିଏ ଉପଯୋଗୀ ନ ହେଲେ, ଆଉ ଗୋଟିଏ ହୁଏତ ହୋଇପାରେ ।

ଆମେମାନେ ଆମ ଚରିତ୍ରର ଆଧ୍ୟାତ୍ମିକ, ମାନସିକ ଏବଂ ବ୍ୟାବହାରିକ—ଏହି ତିନୋଟି ଦିଗକୁ ସମଭାବରେ ଉନ୍ନତ କରି ଗୋଟିଏ ସାମଞ୍ଜସ୍ୟପୂର୍ଣ୍ଣ ବ୍ୟକ୍ତିତ୍ୱରେ ପରିଣତ

କରିବାକୁ ଯିବୁ । ବିଭିନ୍ନ ଜାତି ଓ ବ୍ୟକ୍ତି ମଧ୍ୟରେ କୌଣସି ଗୋଟିଏ ଭାବର ବିକାଶ ଦେଖିବାକୁ ମିଳେ । ସେମାନେ ତଦତିରିକ୍ତ କୌଣସି ଭାବ ବୁଝିପାରନ୍ତି ନାହିଁ । ଗୋଟିଏ ଭାବରେ ସେମାନେ ଏତେଦୂର ଅଭ୍ୟସ୍ତ ହୋଇ ପଡ଼ନ୍ତି ଯେ, ଅନ୍ୟ କୌଣସିଟି ପ୍ରତି ସେମାନଙ୍କର ଦୃଷ୍ଟି ଆଉ ଯାଏ ନାହିଁ । ବସ୍ତୁତଃ ସର୍ବତୋମୁଖୀ ହେବା ହିଁ ଆମମାନଙ୍କର ପ୍ରକୃତ ଆଦର୍ଶ । ଜାଗତିକ ଦୁଃଖର କାରଣ ହେଲା—ଆମେମାନେ ଏତେଦୂର ଏକଦେଶଦର୍ଶୀ ଯେ, ପରସ୍ପର ପ୍ରତି ସହାନୁଭୂତି ପ୍ରଦର୍ଶନ କରିପାରୁ ନାହିଁ । ମନେକର, କୌଣସି ବ୍ୟକ୍ତି ଭୂଗର୍ଭସ୍ଥ ଗୋଟିଏ ଖଣି ଭିତରୁ ସୂର୍ଯ୍ୟଙ୍କୁ ନିରୀକ୍ଷଣ କଲା, ସେ ସୂର୍ଯ୍ୟଙ୍କୁ ଗୋଟିଏ ଭାବରେ ଦେଖିବ । ଅପର ବ୍ୟକ୍ତି ଭୂପୃଷ୍ଠରେ ଥାଇ ଦେଖିଲା, ଆଉ ଜଣେ କୁହୁଡ଼ି ଭିତର ଦେଇ ଏବଂ ଆଉଜଣେ ପର୍ବତ ଉପରେ ଥାଇ ସୂର୍ଯ୍ୟଙ୍କୁ ଦେଖିଲା । ପ୍ରତ୍ୟେକଙ୍କ ନିକଟରେ ସୂର୍ଯ୍ୟଙ୍କର ବିଭିନ୍ନ ରୂପ ପ୍ରତିଭାତ ହେବ । ନାନା ରୂପରେ ପ୍ରତୀୟମାନ ହେଲେ ବି ପ୍ରକୃତ ପକ୍ଷରେ ସୂର୍ଯ୍ୟ ଏକ । ଦୃଷ୍ଟି ବିଭିନ୍ନ ହେଲେ ବି ବସ୍ତୁ କିନ୍ତୁ ସେହି ଗୋଟିଏ ଏବଂ ତାହା ହେଲା ସୂର୍ଯ୍ୟ ।

ପ୍ରତ୍ୟେକ ମଣିଷର ସ୍ୱଭାବ ଅନୁଯାୟୀ ତାହାର ଏକ ବିଶେଷ ପ୍ରବଣତା ଥାଏ । ସେ ଏହି ପ୍ରବଣତା ଅନୁଯାୟୀ କୌଣସି ଆଦର୍ଶ ଏବଂ ସେଥିରେ ଉପନୀତ ହେବାର କୌଣସି ଏକ ପଥ ଗ୍ରହଣ କରେ । ଲକ୍ଷ୍ୟ କିନ୍ତୁ ସର୍ବଦା ସମସ୍ତଙ୍କ ପାଇଁ ଏକ । ରୋମାନ୍ କ୍ୟାଥୋଲିକ୍‌ମାନେ ଗମ୍ଭୀର ଓ ଆଧ୍ୟାତ୍ମିକ, କିନ୍ତୁ ସେମାନେ ଉଦାର ହୋଇପାରନ୍ତି ନାହିଁ । ଇଉନିଟାରିଆନ୍‌ମାନେ ଉଦାର, କିନ୍ତୁ ସେମାନଙ୍କର ଆଧ୍ୟାତ୍ମିକତା ନାହିଁ । ସେମାନେ ଧର୍ମ ଉପରେ ସମ୍ପୂର୍ଣ୍ଣ ଗୁରୁତ୍ୱ ଦିଅନ୍ତି ନାହିଁ । ଆମେ କିନ୍ତୁ ଗଭୀରତା ସହିତ ଉଦାରତା ଚାହୁଁ । ଆମେମାନେ ଆକାଶ ସଦୃଶ ଉଦାର ଏବଂ ସମୁଦ୍ର ଭଳି ଗଭୀର ହେବୁ । ଆମ ମଧ୍ୟରେ ରହିବ ଅତୀନ୍ଦ୍ରିୟ ଐକାନ୍ତିକ-ଉତ୍ସାହ, ଅତୀନ୍ଦ୍ରିୟବାଦୀର ବିଶ୍ୱାସର ଗଭୀରତା ଏବଂ ଅଜ୍ଞେୟବାଦୀର ଉଦାରତା ।

ଦାମ୍ଭିକ ବ୍ୟକ୍ତିଙ୍କ ନିକଟରେ 'ପରଧର୍ମ-ସହିଷ୍ଣୁତା' ଶବ୍ଦଟି ଏକ ଅପ୍ରୀତିକର ମନୋଭାବ ସହିତ ଯୁକ୍ତ ହୋଇ ରହିଛି । ସେ ନିଜକୁ ଉଚ୍ଚାସନରେ ବସାଇ ସ୍ୱଜାତୀୟମାନଙ୍କୁ କରୁଣାର ଦୃଷ୍ଟିରେ ଦେଖନ୍ତି । ଏହା ମନର ଏକ ଭୟାବହ ଅବସ୍ଥା । ଆମେ ସମସ୍ତେ ଗୋଟିଏ ପଥରେ, ଗୋଟିଏ ମାତ୍ର ଲକ୍ଷ୍ୟ ଦିଗରେ ଅଗ୍ରସର ହେଉଅଛୁ । କେବଳ ଭିନ୍ନ ଭିନ୍ନ ମାନସିକ ପ୍ରବୃତ୍ତି ଅନୁଯାୟୀ ବିଭିନ୍ନ ପନ୍ଥା ଅବଲମ୍ବନ କରୁଅଛୁ । ଆମ ଭିତରେ ବହୁଭାବର ସମାବେଶ ରହିବ । ଚରିତ୍ରରେ ଆମେମାନେ ନିଶ୍ଚୟ ବିକାଶଶୀଳ ହେବୁ । ଆମେ କେବଳ ଅନ୍ୟର ମତକୁ ସହ୍ୟ କଲେ ଚଳିବ ନାହିଁ । ଏହା ଅପେକ୍ଷା ଆମକୁ କଠିନତର କାର୍ଯ୍ୟ କରିବାକୁ ହେବ । ଆମକୁ ସମବେଦନା ପ୍ରକାଶ କରିବାକୁ ହେବ । ଅନ୍ୟର ଅବଲମ୍ବିତ ପଥରେ ପ୍ରବେଶ କରି ତାହାର ଆକାଙ୍‌କ୍ଷା ଓ ଈଶ୍ୱରାନ୍ୱେଷଣ-ପ୍ରଚେଷ୍ଟାର ସହିତ ସହମତ ହେବାକୁ ହେବ । ପ୍ରତ୍ୟେକ ଧର୍ମର ଦୁଇଟି ଭାବ ଅଛି—ଇତିବାଚକ ଓ ନେତିବାଚକ । ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ, ଯେତେବେଳେ ଆପଣମାନେ ଖ୍ରୀଷ୍ଟଧର୍ମର ଅବତାରବାଦ, ତ୍ରିତ୍ୱବାଦ, ଯୀଶୁଙ୍କ ମାଧ୍ୟମରେ ମୁକ୍ତିଲାଭ ଇତ୍ୟାଦିର କଥା କହନ୍ତି, ସେତେବେଳେ ମୁଁ ଆପଣମାନଙ୍କ ସହିତ ଏକମତ । ମୁଁ କହିବି—ଅତି ଉତ୍ତମ, ମୁଁ ମଧ୍ୟ

ଏହାକୁ ସତ୍ୟ ବୋଲି ଜାଣେ । କିନ୍ତୁ ଯେତେବେଳେ ଆପଣମାନେ କହିବେ—'ଅଉ କୌଣସି ପ୍ରକୃତ ଧର୍ମ ନାହିଁ, ଈଶ୍ୱରଙ୍କର ଆଉ କୌଣସି ପ୍ରକାଶ ନାହିଁ'—ସେତେବେଳେ ମୁଁ କହିବି—'ରହନ୍ତୁ ! ମୁଁ ଆପଣମାନଙ୍କ ସହିତ ଏକମତ ନୁହେଁ ।' ପ୍ରତ୍ୟେକ ଧର୍ମରେ ପ୍ରଚାର କରିବା ପାଇଁ ମନୁଷ୍ୟକୁ ଶିକ୍ଷା ଦେବା ପାଇଁ ଖୁବ୍ ଉଚ୍ଚକୋଟୀର ବାଣୀସବୁ ରହିଛି । କିନ୍ତୁ ଯେତେବେଳେ ଧର୍ମ ପ୍ରତିବାଦ କରିବାକୁ ଆରମ୍ଭ କରେ, ଅନ୍ୟକୁ ଉତ୍ତେଜିତ କରିବାକୁ ଚେଷ୍ଟା କରେ, ସେତେବେଳେ ଏହା ନେତିବାଚକ ଓ ଭୟାବହ ମନୋଭାବ ଅବଲମ୍ବନ କରେ ଏବଂ କେଉଁଠାରୁ ଆରମ୍ଭ କରିବ ଓ କେଉଁଠାରେ ଶେଷ କରିବ—ଜାଣିପାରେ ନାହିଁ ।

ଶକ୍ତି ମାତ୍ରେ ହିଁ ଆବର୍ତ୍ତିତ ହୁଏ । ଯେଉଁ ଶକ୍ତିକୁ ଆମେ 'ମଣିଷ' କହୁ—ତାହା ଅନନ୍ତ ଈଶ୍ୱରଙ୍କଠାରୁ ଯାତ୍ରା ଆରମ୍ଭ କରେ ଏବଂ ପୁନର୍ବାର ସେହିଠାକୁ ହିଁ ଫେରିଆସେ । ଈଶ୍ୱରଙ୍କ ପାଖକୁ ପ୍ରତ୍ୟାବର୍ତ୍ତନ କରିବା ପାଇଁ ଦୁଇଟି ପନ୍ଥା ଭିତରୁ ଗୋଟିକୁ ଗ୍ରହଣ କରିବାକୁ ହେବ —ପ୍ରକୃତି ସହିତ ମନ୍ଥର ଗତିରେ ଘୁରି ଚାଲିବା ଅଥବା ଅନ୍ତର୍ନିହିତ ଶକ୍ତି ସାହାଯ୍ୟରେ ଗତି-ପଥରେ ଅଟକି ଯିବା; ଏହି ଅନ୍ତଃଶକ୍ତି ଅପ୍ରତିହତ ରହିଲେ ଆମକୁ ଚକ୍ର-ପଥରେ ଈଶ୍ୱରଙ୍କ ସମୀପକୁ ଫେରାଇ ନେଇଯିବ—ଏବଂ ସତେକି ସବୁ ଦୂରତ୍ୱକୁ ଅତିକ୍ରମ କରି ପ୍ରବଳବେଗରେ ଈଶ୍ୱରଙ୍କ ଦର୍ଶନ କରାଇଦେବ । ଯୋଗୀମାନେ ଏହି ପଥରେ ଯାଇଥାନ୍ତି ।

ମୁଁ କହୁଛି—ପ୍ରତ୍ୟେକ ବ୍ୟକ୍ତି ତାହାର ପ୍ରକୃତି ଅନୁଯାୟୀ ଆଦର୍ଶ ନିରୂପଣ କରିବ । ଏହି ଆଦର୍ଶକୁ ତାର 'ଇଷ୍ଟ' କୁହାଯାଇପାରେ । ଏହାକୁ ପବିତ୍ର ଓ ଗୋପନୀୟ କରି ରଖିବାକୁ ହୋଇଥାଏ ଏବଂ ଈଶ୍ୱରଙ୍କର ଉପାସନା ଏହି ଇଷ୍ଟ-ଭାବରେ ହୋଇଥାଏ । ଏହି ବିଶିଷ୍ଟ ପନ୍ଥା ନିରୂପଣର ଉପାୟ କ'ଣ ? ଏହା ଅତ୍ୟନ୍ତ ଦୁରୂହ, କିନ୍ତୁ ଉପାସନାରେ ଅଧ୍ୟବସାୟୀ ହେଲେ ଏହା ଆପଣାଛାଏଁ ପ୍ରକାଶ ପାଇଯିବ । ମଣିଷ ନିକଟରେ ଭଗବାନଙ୍କର ତିନୋଟି ବିଶେଷ ଦାନ ଅଛି—ମନୁଷ୍ୟତ୍ୱ, ମୁମୁକ୍ଷୁତ୍ୱ, ମହାପୁରୁଷ-ସଂଶ୍ରୟ ।

ସଗୁଣ ଈଶ୍ୱର ବ୍ୟତିରେକେ ଆମର ଭକ୍ତିଭାବ ଆସିପାରେ ନାହିଁ । ପ୍ରେମିକ ଓ ପ୍ରେମାସ୍ପଦ, ଦୁଇଟିଯାକ ହିଁ ପ୍ରୟୋଜନ । ଈଶ୍ୱରଙ୍କୁ ଅନନ୍ତଗୁଣସମ୍ପନ୍ନ ମଣିଷ କୁହାଯାଇପାରେ । ସେ ଏଭଳି ହେବାକୁ ବାଧ୍ୟ । କାରଣ ଆମେ ଯେତେବେଳେ ପର୍ଯ୍ୟନ୍ତ ମନୁଷ୍ୟଦେହଧାରୀ ହୋଇ ରହିଛୁ—ଆମ ଈଶ୍ୱର ମଧ୍ୟ ସେହିପରି ମନୁଷ୍ୟରୂପୀ ହେବେ । ସଗୁଣ ଈଶ୍ୱରଙ୍କୁ ଚିନ୍ତା ନ କରି ଆମେ ରହିପାରିବୁ ନାହିଁ । ଭାବି ଦେଖନ୍ତୁ—ଜଗତର କୌଣସି ବସ୍ତୁକୁ ହିଁ ଆମେ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ବସ୍ତୁ ରୂପେ ଚିନ୍ତା କରିପାରୁ ନାହିଁ । ସବୁ କ୍ଷେତ୍ରରେ ଆମେ ବସ୍ତୁ ସହିତ ଆମ ମନକୁ ସଂଯୁକ୍ତ କରିଥାଉଁ । ଗୋଟିଏ ଚଉକିର ଦୃଷ୍ଟାନ୍ତ ନିଅନ୍ତୁ । ବସ୍ତୁତଃ 'ଚଉକି'ଟିକୁ ଆମେ କେମିତି ବୁଝୁ ? ଚଉକି ଓ ମନ ଉପରେ ଚଉକି ବସ୍ତୁଟିର ପ୍ରତିଚ୍ଛବିର ସଂଯୋଗ । ପ୍ରତ୍ୟେକ ବସ୍ତୁକୁ ପ୍ରଥମେ ମନଦ୍ୱାରା ରଞ୍ଜିତ କରିବାକୁ ହେବ । ତେବେ ଯାଇ ଏହା ଯଥାର୍ଥ ରୂପରେ ପ୍ରତିଭାତ ହେବ । ଉଦାହରଣ ସ୍ୱରୂପ—ସାଦା, ଚାରିକୋଣିଆ, ଉଜ୍ଜ୍ୱଳ ଶକ୍ତ ବାକ୍ସଟିକୁ କେହି ତିନୋଟି ଇନ୍ଦ୍ରିୟ ସାହାଯ୍ୟରେ ଦେଖିଲା, କେହିବା ଚାରୋଟି ଇନ୍ଦ୍ରିୟ ସାହାଯ୍ୟରେ ଦେଖିଲା—ଆଉ ଜଣେ ହୁଏତ ପାଞ୍ଚଟି ଇନ୍ଦ୍ରିୟ

ସାହାଯ୍ୟରେ ଦେଖିଲ । ଶେଷୋକ୍ତ ବ୍ୟକ୍ତି ହିଁ ବସ୍ତୁର ପୁଙ୍ଖାନୁପୁଙ୍ଖ ରୂପ ଦେଖିବାକୁ ପାଇବ । ପ୍ରତ୍ୟେକେ କ୍ରମେ କ୍ରମେ ଗୋଟିଏ ଅଧିକ ଗୁଣ-ସମନ୍ୱିତ ଦେଖିବାକୁ ପାଇଲେ । ଏହି ଭାବରେ ଯଦି କେହି ବ୍ୟକ୍ତି ଛଅଟି ଇନ୍ଦ୍ରିୟ ସାହାଯ୍ୟରେ ସେହି ଗୋଟିଏ ବାକ୍ସକୁ ଦେଖେ, ସେ ନିଶ୍ଚୟ ଏଥିରେ ଅତିରିକ୍ତ ଆଉ ଗୋଟିଏ ଗୁଣ ଦେଖିବାକୁ ପାଇବ ।

ମୁଁ ପ୍ରେମ ଓ ଜ୍ଞାନ ଦେଖିବାକୁ ପାଉଛି ବୋଲି ମୋର ଧାରଣା ହେଲା—ଜଗତକାରଣ ସେହି ପ୍ରେମ ଓ ଜ୍ଞାନ ପ୍ରକାଶ କରୁଛନ୍ତି । ଯାହା ମୋ ଭିତରେ ପ୍ରେମ ସୃଷ୍ଟିକଲା, ତାହା କିଭଳି ପ୍ରେମଶୂନ୍ୟ ହୋଇପାରେ ? ଜଗତ୍-କାରଣଙ୍କୁ ଆମେ ମନୁଷ୍ୟଗୁଣବର୍ଜିତ ରୂପେ ଚିନ୍ତା କରିପାରିବା ନାହିଁ । ସାଧନାର ପ୍ରଥମ ସୋପାନ ହିସାବରେ ଈଶ୍ୱରଙ୍କୁ ପୃଥକ୍ ଭାବେ ଦେଖିବାର ଆବଶ୍ୟକତା ରହିଛି । ଈଶ୍ୱରଙ୍କୁ ତିନୋଟି ଭାବରେ ଚିନ୍ତା କରାଯାଏ—ନିମ୍ନତମ ଭାବ—ଯେତେବେଳେ ଆମେ ଈଶ୍ୱରଙ୍କୁ ଆମମାନଙ୍କ ଭଳି ଦେହଧାରୀ ରୂପରେ ଦେଖିବାକୁ ପାଉ । ପ୍ରେମକ ଶିଳ୍ପକଳା ଦେଖନ୍ତୁ । ଉଚ୍ଚତର ଭାବ—ଯେତେବେଳେ ଈଶ୍ୱରଙ୍କ ମଧ୍ୟରେ ମଣିଷର ଗୁଣାବଳୀ ଆରୋପ କରୁ ଏବଂ ଏହି ଭାବରେ ହିଁ ଚାଲିଥାଉ । ସର୍ବଶେଷ ଉଚ୍ଚତମ ଭାବ ହେଲା—ତାଙ୍କୁ ଈଶ୍ୱର ରୂପରେ ହିଁ ଦେଖିବା ।

କିନ୍ତୁ ମନେ ରଖିବାକୁ ହେବ—ଏହି ତିନପ୍ରକାର ସୋପାନ ଉପରେ ଠିଆ ହୋଇ ମଧ୍ୟ ଆମେ ଈଶ୍ୱର ଏବଂ କେବଳ ଈଶ୍ୱରଙ୍କୁ ହିଁ ଦେଖିଥାଉଁ । ସେଠାରେ କୌଣସି ମିଥ୍ୟା କଳ୍ପନା ବା ଭ୍ରାନ୍ତି ନାହିଁ । ଯେପରି ସୂର୍ଯ୍ୟ ବିଭିନ୍ନ ଦୂରତ୍ୱରେ ଥାଇ ଦୃଷ୍ଟ ହେଲେ ବି, ତାହା ସୂର୍ଯ୍ୟ ହିଁ—ଚନ୍ଦ୍ର ବା ଅନ୍ୟ କୌଣସି ପଦାର୍ଥ ନୁହନ୍ତି ।

ଆମେ ଈଶ୍ୱରଙ୍କୁ ଆମମାନଙ୍କ ଅନୁରୂପ ନ ଦେଖି ରହିପାରୁ ନାହିଁ—ତାଙ୍କୁ ଆମ ଅପେକ୍ଷା ଅନନ୍ତଗୁଣସମ୍ପନ୍ନ ଦେଖିଲେ ବି, ଆମମାନଙ୍କ ଭଳି ମନେ କରିଥାଉଁ । ଆମେ ନିରପେକ୍ଷ ଅନନ୍ତ ଈଶ୍ୱରଙ୍କ ଚିନ୍ତା କରିବାକୁ ଚେଷ୍ଟା କଲେ ବି ତାଙ୍କୁ ଭଲ ପାଇବା ସକାଶେ ଆପେକ୍ଷିକ ଭୂମିକୁ ଓହ୍ଲାଇଆସୁ ।

ପ୍ରତ୍ୟେକ ଧର୍ମରେ ହିଁ ଭଗବାନଙ୍କ ପ୍ରତି ଭକ୍ତି ଦୁଇ ଭାଗରେ ବିଭକ୍ତ । ଏକ ପ୍ରକାରର ଭକ୍ତି—ମୂର୍ତ୍ତି ଆଦିର ଅନୁଷ୍ଠାନ ଓ ଶବ୍ଦ ମାଧ୍ୟମରେ; ଅନ୍ୟ ପ୍ରକାରର ଭକ୍ତି ପ୍ରେମ ଭିତର ଦେଇ ପ୍ରକାଶ ପାଇଥାଏ । ଏହି ଜଗତରେ ଆମେ ନାନା ନିୟମରେ ଆବଦ୍ଧ ଏବଂ ଏହି ନିୟମ ଭଙ୍ଗ କରି ଆମେ ମୁକ୍ତ ହେବା ଲାଗି ସର୍ବଦା ଚେଷ୍ଟା କରି ଚାଲିଛୁ । ପ୍ରକୃତିକୁ ଅମାନ୍ୟ କରି ପଦଦଳିତ କରିବାକୁ ସର୍ବଦା ଚେଷ୍ଟା କରି ଚାଲିଛୁ । ଉଦାହରଣ ସ୍ୱରୂପ—ପ୍ରକୃତି ଆମକୁ ବାସସ୍ଥାନ ଦେଇ ନାହିଁ, ଆମେ କିନ୍ତୁ ତାହା ଆମ ପାଇଁ ନିର୍ମାଣ କରିଥାଉଁ । ପ୍ରକୃତି ଆମକୁ ଅନାବୃତ ଭାବରେ ସୃଷ୍ଟି କରିଛି । ଆମେ କିନ୍ତୁ ବସ୍ତ୍ର-ପୋଷାକଦ୍ୱାରା ନିଜକୁ ଆବୃତ କରିଥାଉଁ । ମନୁଷ୍ୟର ଲକ୍ଷ୍ୟ ହେଲା—ମୁକ୍ତ ହେବା । ଯେଉଁ ପରିମାଣରେ ଆମେ ପ୍ରକୃତିର ନିୟମ ଲଙ୍ଘନ କରିବାକୁ ଅସମର୍ଥ, ସେହି ପରିମାଣରେ ଆମକୁ କଷ୍ଟ ଭୋଗ କରିବାକୁ ହେବ । ନିୟମର ବାହାରକୁ ଯିବା ପାଇଁ ହିଁ ଆମେ ପ୍ରଥମେ ନିୟମକୁ ମାନି ଚାଲିଥାଉଁ । କିନ୍ତୁ ନିୟମକୁ ମାନି ନ ଚାଲିବା ହିଁ ହେଲା ସମଗ୍ର ଜୀବନର ସଂଗ୍ରାମ । ଏହି କାରଣରୁ ହିଁ ମୁଁ

'ଖ୍ରୀଷ୍ଟିଆନ୍ ସାଇଣ୍ଟିଷ୍ଟ'ମାନଙ୍କ ପ୍ରତି ସହାନୁଭୂତି ପ୍ରକାଶ କରିଥାଏ । ସେମାନେ ମଣିଷର ସ୍ୱାଧୀନତା ଓ ଆତ୍ମାର ଦେବତ୍ୱ ସମ୍ବନ୍ଧରେ ଶିକ୍ଷା ଦେଇଥାନ୍ତି । ଆତ୍ମା ସର୍ବପ୍ରକାର ପାରିପାର୍ଶ୍ୱିକତାର ଊର୍ଦ୍ଧ୍ୱରେ । "ଏହି ଜଗତ ମୋର ପିତାଙ୍କର ରାଜ୍ୟ; ମୁଁ ହିଁ ଏହାର ଉତ୍ତରାଧିକାରୀ"—ଏହି ଭାବଟିକୁ ମନୁଷ୍ୟ ଗ୍ରହଣ କରିବା ଉଚିତ । 'ମୋର ନିଜ ଆତ୍ମା ସମସ୍ତଙ୍କୁ ଜୟ କରିପାରେ ।'

ମୁକ୍ତି ଲାଭ କରିବା ପୂର୍ବରୁ ଆମକୁ ନିୟମ ଭିତର ଦେଇ ଅଗ୍ରସର ହେବାକୁ ହେବ । ବାହାରର ସାହାଯ୍ୟ, ପ୍ରଣାଳୀ, ଆଚାର-ଅନୁଷ୍ଠାନ, ମତ-ପଥ ପ୍ରଭୃତିର ନିର୍ଦ୍ଦିଷ୍ଟ ସ୍ଥାନ ରହିଛି । ଯେତେଦିନ ଯାଏ ଆମେ ସାଧନାରେ ଦୃଢ଼ପ୍ରତିଷ୍ଠ ନ ହୋଇଛୁ, ସେତେଦିନ ପର୍ଯ୍ୟନ୍ତ ଏଗୁଡ଼ିକ ଆମକୁ ସାହାଯ୍ୟ କରିବ ଏବଂ ଶକ୍ତି ଦେବ । ପରେ କିନ୍ତୁ ଆଉ ଏଗୁଡ଼ିକର ପ୍ରୟୋଜନ ରହେ ନାହିଁ । ଏହି ନୀତିନିୟମଗୁଡ଼ିକ ହେଲା ଆମର ଧାତ୍ରୀସ୍ଥାନୀୟ । ଅତଏବ ସାଧନାର ଶୈଶବ କାଳରେ ଅର୍ଥାତ୍ ପ୍ରାରମ୍ଭକାଳରେ ଏଗୁଡ଼ିକ ନିଶ୍ଚୟ ଅପରିହାର୍ଯ୍ୟ । ସଦ୍‌ଗ୍ରନ୍ଥଗୁଡ଼ିକ ମଧ୍ୟ ଧାତ୍ରୀର କାର୍ଯ୍ୟ କରନ୍ତି । କିନ୍ତୁ ଆମକୁ ଚେଷ୍ଟା କରି ସେହି ଅବସ୍ଥାରେ ଉପନୀତ ହେବାକୁ ହେବ, ଯେଉଁଠି ମଣିଷ ଉପଲବ୍ଧି କରିବ ଯେ, ସେ ତା'ର ଶରୀରର ପ୍ରଭୁ । ଚିରମୂଳ ବା ଔଷଧାଦିର ପ୍ରୟୋଜନ, ପ୍ରଭାବ ଆମ ପାଇଁ ସେତିକିବେଳଯାଏ ରହେ, ଯେତେବେଳ ପର୍ଯ୍ୟନ୍ତ ଆମେ ଏଗୁଡ଼ିକର ସାହାଯ୍ୟ ସ୍ୱୀକାର କରୁ । ଶରୀର ସୁସ୍ଥ ସବଳ ହୋଇ ଆସିଲେ ବାହାରର ନିୟମପଦ୍ଧତିର ଆଉ କିଛି ଆବଶ୍ୟକତା ରହେ ନାହିଁ ।

## ଭକ୍ତିପଥରେ ଶବ୍ଦର କାର୍ଯ୍ୟକାରିତା

ଦେହ ହେଲା ମନର ସ୍ଥୂଳରୂପ ମାତ୍ର । ମନ କେତେଗୁଡ଼ିଏ ସୂକ୍ଷ୍ମସ୍ତର ଏବଂ ଦେହ କେତେଗୁଡ଼ିଏ ସ୍ଥୂଳସ୍ତର ଦ୍ୱାରା ଗଠିତ । ମନ ଉପରେ ପୂର୍ଣ୍ଣ ଆଧିପତ୍ୟ ଲାଭ କରିବାକୁ ସମର୍ଥ ହେଲେ, ମନୁଷ୍ୟ ତା'ର ଦେହକୁ ମଧ୍ୟ ବଶୀଭୂତ କରିପାରେ । ପ୍ରତ୍ୟେକ ମନର ଯେପରି ବିଶେଷ ଦେହ ରହିଛି, ସେହିପରି ପ୍ରତ୍ୟେକ ଶବ୍ଦର ମଧ୍ୟ ଏକ ବିଶେଷ ଚିନ୍ତା ବା ଭାବ ରହିଛି । କ୍ରୁଦ୍ଧ ହେଲେ ଆମେ ସଂଯୁକ୍ତ ବ୍ୟଞ୍ଜନବର୍ଣ୍ଣ ବ୍ୟବହାର କରୁ—'ଆହମ୍ମକ' 'ମୂର୍ଖ', 'ପାଷଣ୍ଡ', 'ବର୍ବର' ଇତ୍ୟାଦି । ପୁଣି ଦୁଃଖିତ ହେଲେ କୋମଳ ହ୍ରସ୍ୱ ସ୍ୱରବର୍ଣ୍ଣ ଉଚ୍ଚାରଣ କରୁ, 'ଆହା !' 'ହାୟ ହାୟ !' ଇତ୍ୟାଦି । ଏଗୁଡ଼ିକ ଅବଶ୍ୟ କ୍ଷଣିକ ମନୋଭାବ ମାତ୍ର ! କିନ୍ତୁ ପ୍ରେମ, ଶାନ୍ତି ଧୈର୍ଯ୍ୟ, ଆନନ୍ଦ, ପବିତ୍ରତା ପ୍ରଭୃତି ସବୁ ଧର୍ମରେ କେତେକ ଚିରନ୍ତନ ମନୋଭାବ ରହିଛି । ଏହିସବୁ ଭାବ ପ୍ରକାଶ କରିବା ପାଇଁ ବିଶିଷ୍ଟ ଶବ୍ଦ ରାଶି ଅଛି । ମନୁଷ୍ୟର ଉଚ୍ଚତମ ଭାବରାଶିର ଏକମାତ୍ର ପ୍ରତୀକ ହେଲା ଶବ୍ଦ । ଶବ୍ଦ ଆମର ଚିନ୍ତାରୁ ହିଁ ଜାତ । ପୁଣି ଏହିସବୁ ଶବ୍ଦ ଭିତରୁ ହିଁ ଚିନ୍ତାରାଶି ବା ଭାବରାଶି ଜାତ ହୋଇଥାଆନ୍ତି । ଏହିଠାରେ ହିଁ ଶବ୍ଦର ସାହାଯ୍ୟ ପ୍ରୟୋଜନ । ଏହିଭଳି ଶବ୍ଦଗୁଡ଼ିକରୁ ପ୍ରତ୍ୟେକଟି ଶବ୍ଦ

ଯେମିତି ଗୋଟିଏ ଗୋଟିଏ ପ୍ରତୀକ । ଏହି ସବୁ ରହସ୍ୟପୂର୍ଣ୍ଣ ପବିତ୍ର ଶବ୍ଦରାଶି ଆମକୁ ଜଣାଅଛି ଏବଂ ସେଗୁଡ଼ିକୁ ଆମେ ବୁଝି ମଧ୍ୟ ପାରୁ । କିନ୍ତୁ କେବଳ ଗ୍ରନ୍ଥାଦିରୁ ପଢ଼ିଲେ ଏଗୁଡ଼ିକ ଆମ ଉପରେ କୌଣସି ପ୍ରଭାବ ପକାଇ ପାରନ୍ତି ନାହିଁ । ଶବ୍ଦଗୁଡ଼ିକ ଭାବପୂର୍ଣ୍ଣ ହେଲେ ଏବଂ ସାଧନା କରି ଯେ ସ୍ୱୟଂ ଭଗବାନଙ୍କର ସ୍ପର୍ଶ ଲାଭ କରିଛନ୍ତି ଏବଂ ବର୍ତ୍ତମାନ ମଧ୍ୟ ଭାଗବତ ଜୀବନଯାପନ କରନ୍ତି, ତଦ୍ରୂପ ବ୍ୟକ୍ତିଙ୍କ ସ୍ପର୍ଶ ପାଇଲେ ଯାଇ ଏଗୁଡ଼ିକ ଫଳପ୍ରଦ ହୁଅନ୍ତି । ଏକମାତ୍ର ସେହି ଏହି ଭାବପ୍ରବାହକୁ ଗତିଦାନ କରିବାରେ ସମର୍ଥ । ଯୀଶୁଖ୍ରୀଷ୍ଟଙ୍କଦ୍ୱାରା ଚାଳିତ ପ୍ରବାହ-ପଥରେ ହିଁ ଶକ୍ତିସଞ୍ଚାରର କାର୍ଯ୍ୟ ଚାଲିଆସିଛି । ଯାହାଙ୍କ ଭିତରେ ଏହି ଶକ୍ତି-ସଞ୍ଚାରର କ୍ଷମତା ରହିଛି, ସେ ହିଁ ଗୁରୁ । ଉତ୍ତମ ଆଚାର୍ଯ୍ୟମାନଙ୍କର ଏହି ଶବ୍ଦପ୍ରୟୋଗର ପ୍ରୟୋଜନ ହୁଏ ନାହିଁ, ଯେପରି ଯୀଶୁଖ୍ରୀଷ୍ଟଙ୍କର । ସାଧାରଣ ଆଚାର୍ଯ୍ୟମାନେ ବି ଶବ୍ଦ ମାଧ୍ୟମରେ ଏହି ଶକ୍ତିସଞ୍ଚାର କରିଥାନ୍ତି ।

ଅନ୍ୟର ଦୋଷ ଦେଖିବ ନାହିଁ । ଦୋଷ ଦେଖି କାହାକୁ ବି ବିଚାର କରାଯାଏ ନାହିଁ । ଏ ଯେପରି ଭୂଇଁ ଉପରେ ପଡ଼ିଥିବା ପଚା ଅପକ୍ୱ ଅପରିଣତ ଆପେଲ୍ ଫଳଗୁଡ଼ିକୁ ଦେଖି ଗଛଟିର ବିଚାର କରିବା । ଏହିଭାବରେ ମଣିଷର ତ୍ରୁଟିବିଚ୍ୟୁତିଦ୍ୱାରା ତା' ଚରିତ୍ରର ବିଚାର କରାଯାଇପାରେ ନାହିଁ । ସ୍ମରଣ ରଖିବାକୁ ହେବ ଯେ, ଦୁଷ୍ଟ ଲୋକମାନେ ପୃଥିବୀରେ ସର୍ବତ୍ର ଏକାଭଳି । ଚୋର ଏବଂ ହତ୍ୟାକାରୀମାନେ ଏସିଆ, ଆମେରିକା ଏବଂ ଇଉରୋପରେ ସମାନ ଭାବରେ ଦେଖାଯାନ୍ତି । ସେମାନେ ନିଜକୁ ନେଇ ଗୋଟିଏ ସ୍ୱତନ୍ତ୍ର ଜାତି ସୃଷ୍ଟି କରିଛନ୍ତି । ସନ୍ତ, ପବିତ୍ର ଓ ସବଳ ବ୍ୟକ୍ତିମାନଙ୍କ ମଧ୍ୟରେ ହିଁ ବୈଚିତ୍ର୍ୟ ଲକ୍ଷିତ ହୁଏ । ଅନ୍ୟ ଭିତରେ ଅସାଧୁତା ଦେଖିବାକୁ ଚେଷ୍ଟା କର ନାହିଁ । ଅଜ୍ଞତା ଓ ଦୁର୍ବଳତା ହିଁ ହେଲା ଅସାଧୁତା । ମନୁଷ୍ୟକୁ ଦୁର୍ବଳ କହି ଲାଭ କଅଣ ? ସମାଲୋଚନା ଓ ଧ୍ୱଂସମୂଳକ ଆଲୋଚନା ନିଷ୍ଫଳ । ମନୁଷ୍ୟକୁ ଉଚ୍ଚତର କିଛି ଦେବାକୁ ହେବ । ତାକୁ ତା'ର ମହତ୍ ସ୍ୱଭାବ ଓ ଜନ୍ମଗତ ଅଧିକାର ସମ୍ବନ୍ଧରେ ଅବହିତ କର । ଆଉ ଅଧିକ ଲୋକ କାହିଁକି ଭଗବାନଙ୍କ ପ୍ରତି ଆକୃଷ୍ଟ ହୁଅନ୍ତି ନାହିଁ ? କାରଣ ଖୁବ୍ କମ୍ ଲୋକ ହିଁ ପଞ୍ଚେନ୍ଦ୍ରିୟାତିରିକ୍ତ କୌଣସି ଆନନ୍ଦର ଖବର ରଖିଥାନ୍ତି । ଅଧିକାଂଶ ବ୍ୟକ୍ତି ହିଁ ଅନ୍ତର୍ଜଗତର ଭାବଗୁଡ଼ିକୁ ଚକ୍ଷୁଦ୍ୱାରା ଦେଖିପାରନ୍ତି ନାହିଁ, କର୍ଣ୍ଣଦ୍ୱାରା ଶୁଣିପାରନ୍ତି ନାହିଁ ।

ବର୍ତ୍ତମାନ ଆମେମାନେ 'ପ୍ରେମ ପଥରେ ଉପାସନା' ସମ୍ବନ୍ଧରେ ଆଲୋଚନା କରିବା । କୁହାଯାଇଛି ଯେ, 'ଗୀର୍ଜାରେ ଅର୍ଥାତ୍ କୌଣସି ସମ୍ପ୍ରଦାୟରେ ଜନ୍ମ ନେବା ଭଲ, କିନ୍ତୁ ସେଠାରେ ମରିବା ଭଲ ନୁହେଁ ।' ଗୋଟିଏ ଚାରାଗଛକୁ ନିରାପଦରେ ବଢ଼ାଇବାକୁ ହେଲେ, ତା' ଚାରିପଟେ କିଛିଦିନ ଲାଗି ବାଡ଼ ଘେରାଇ ରଖିବାକୁ ହୁଏ । କିନ୍ତୁ ଯଥା ସମୟରେ ଯଦି ବାଡ଼ଟିକୁ ଉଠାଇ ଦିଆ ନ ଯାଏ, ତେବେ ଗଛଟି ସ୍ୱଚ୍ଛନ୍ଦ ଭାବେ ସବଳ ହୋଇ ବଢ଼ିପାରେ ନାହିଁ । ବାହ୍ୟପୂଜା ଯେ ଗୋଟିଏ ପ୍ରୟୋଜନୀୟ ସୋପାନ, ତାହା ଆମେମାନେ ଦେଖିଛୁ । କିନ୍ତୁ ଧୀରେ ଧୀରେ କ୍ରମୋନ୍ନତିର ସହିତ ସେହି ସୋପାନଗୁଡ଼ିକୁ ଅତିକ୍ରମ କରି ଉଚ୍ଚତର ଅବସ୍ଥାରେ ଆରୋହଣ କର । ଈଶ୍ୱରଙ୍କ ପ୍ରତି ପରିପୂର୍ଣ୍ଣ ପ୍ରେମ ହେଲେ,

ସେ ଯେ ସର୍ବବ୍ୟାପୀ ସର୍ବଶକ୍ତିମାନ୍, ଇତ୍ୟାଦି ବଡ଼ ବଡ଼ ବିଶେଷଣର କଥା ଆଉ ଶୁଣ ଭାବନା ଭିତରେ ରହିବ ନାହିଁ । ଆମେ ଈଶ୍ୱରଙ୍କଠାରୁ କିଛି ଚାହୁଁନାହିଁ ବୋଲି ତାଙ୍କର ଗୁଣାବଳୀ ଲକ୍ଷ୍ୟ କରିବାର ପ୍ରୟୋଜନ ବୋଧ କରୁ ନାହିଁ । ଭଗବାନଙ୍କ ପ୍ରତି ପ୍ରେମ ହିଁ ଆମର ଏକମାତ୍ର କାମ୍ୟ । କିନ୍ତୁ ସେତେବେଳ ପର୍ଯ୍ୟନ୍ତ ବି ସଗୁଣ ଈଶ୍ୱରଙ୍କ ଭାବ ଆମକୁ ଅନୁସରଣ କରିଥାଏ । ଆମେ ମନୁଷ୍ୟଭାବର ଊର୍ଦ୍ଧ୍ୱକୁ ଉଠିପାରୁ ନାହିଁ । ଲମ୍ଫ ଦେଇ ଦେହ-ଭାବର ବାହାରକୁ ଯାଇପାରୁ ନାହିଁ । ସୁତରାଂ ଆମେ ଯେଉଁ ଭାବରେ ପରସ୍ପରକୁ ଭଲପାଉ, ଈଶ୍ୱରଙ୍କୁ ମଧ୍ୟ ସେହି ଭାବରେ ଭଲପାଉ ।

ମାନୁଷୀ-ପ୍ରେମର ପାଞ୍ଚଟି ସ୍ତର ରହିଛି—

୧ । ଅତି ସାଧାରଣ ଏବଂ ନିମ୍ନତମ ହେଲା—'ଶାନ୍ତ ପ୍ରେମ' । ସେତେବେଳେ ଆମେ ଆଶ୍ରୟ, ଆହାର ଓ ସର୍ବବିଧ ପ୍ରୟୋଜନ ପାଇଁ ପିତାଙ୍କ ଉପରେ ନିର୍ଭର କରିଥାଉଁ ।

୨ । ଦାସ୍ୟ ପ୍ରେମ—ଏହି ପ୍ରେମ ଆମକୁ ସେବାର ପ୍ରେରଣା ଦିଏ । ଭୃତ୍ୟ ଯେପରି ପ୍ରଭୁର ସେବା କରେ—ମଣିଷ ସେହି ଭାବରେ ଈଶ୍ୱରଙ୍କର ସେବା କରିବାକୁ ଆକାଙ୍କ୍ଷା କରେ । ଏହି ସେବାଭାବ ଅନ୍ୟାନ୍ୟ ଭାବ ଉପରେ ପ୍ରାଧାନ୍ୟ ବିସ୍ତାର କରେ । ସେତେବେଳେ ପ୍ରଭୁ ସତ୍ କି ଅସତ୍, ଦୟାଳୁ କି ନିର୍ଦ୍ଦୟ—ସେ ସମ୍ବନ୍ଧରେ ଆମେ ଉଦାସୀନ ହୋଇଯାଉ ।

୩ । ସଖ୍ୟପ୍ରେମ—ବନ୍ଧୁ ପ୍ରତି ବନ୍ଧୁର ପ୍ରେମକୁ ସଖ୍ୟପ୍ରେମ କୁହାଯାଏ । ଏହା ହେଲା ସମାନ ସମାନ ଲୋକଙ୍କ ଭିତରେ ପ୍ରେମ—ସଙ୍ଗୀ ସଙ୍ଗୀ ଭିତରେ ପ୍ରେମ—ଖେଳସାଥୀ ସହିତ ଖେଳସାଥିର ପ୍ରେମ—ମଣିଷ ସେତେବେଳେ ଭଗବାନଙ୍କୁ ନିଜର ସହଚର ବୋଲି ଅନୁଭବ କରିଥାଏ ।

୪ । ବାତ୍ସଲ୍ୟପ୍ରେମ—ଭଗବାନଙ୍କୁ ସନ୍ତାନ ଭାବରେ ଦେଖିବା । ଭାରତବର୍ଷରେ ଏହି ବାତ୍ସଲ୍ୟଭାବଟିକୁ ପୂର୍ବୋକ୍ତ ଶାନ୍ତ ଓ ସଖ୍ୟ ପ୍ରେମ ଅପେକ୍ଷା ଉଚ୍ଚତର ବୋଲି ଗଣ୍ୟ କରାଯାଇଥାଏ । କାରଣ, ଏଥିରେ ସାମାନ୍ୟତମ ଭୟଭାବ ନ ଥାଏ ।

୫ । ମଧୁର-ପ୍ରେମ—ସ୍ୱାମୀ ଓ ସ୍ତ୍ରୀ ମଧ୍ୟରେ ଯେଉଁ ପ୍ରେମ । ଏଥିରେ ପ୍ରେମ ପାଇଁ ହିଁ ପ୍ରେମ କରାଯାଇଥାଏ । ଭଗବାନ ହିଁ ଶ୍ରେଷ୍ଠ ପ୍ରେମାସ୍ପଦ ।

ଏହି ମଧୁରଭାବଟି ସୁନ୍ଦର ରୂପେ ବ୍ୟକ୍ତ ହୋଇଛି ଆମର ବୈଷ୍ଣବ କାବ୍ୟ ଓ ଗୀତି-କବିତାମାନଙ୍କରେ । ଚାରିଚକ୍ଷୁର ମିଳନ ହେବାମାତ୍ରେ ଦୁଇଟି ଆତ୍ମା ଭିତରେ ପରିବର୍ତ୍ତନ ଘଟିବାକୁ ଲାଗିଲା; ଦୁଇ ଆତ୍ମା ଭିତରେ ମିଳନ ପାଇଁ ପ୍ରେମ ହିଁ ଏକମାତ୍ର ସେତୁ ହୋଇ ଉଠିଲା ।

ଯେତେବେଳେ କୌଣସି ବ୍ୟକ୍ତି ଏହି ମଧୁର-ପ୍ରେମର ପରିପୂର୍ଣ୍ଣ ଅଧିକାରୀ ହୁଏ, ସେତେବେଳେ ତା'ର ସମସ୍ତ କାମନାବାସନା ଚାଲିଯାଏ । ପୂଜାପଦ୍ଧତି, ଆଚାର-ଅନୁଷ୍ଠାନ, ଗୀର୍ଜା, ମନ୍ଦିର—କୌଣସିଟିର ସେ ଆଉ ଅପେକ୍ଷା ରଖେ ନାହିଁ । ତା'ର ସମସ୍ତ କର୍ମର ଲକ୍ଷ୍ୟ—ଏପରିକି ମୁକ୍ତିର ବାସନା ପର୍ଯ୍ୟନ୍ତ ତ୍ୟାଗ—ଜନ୍ମ, ମୃତ୍ୟୁ ଏବଂ ଅନ୍ୟାନ୍ୟ ବନ୍ଧନଠାରୁ ଆରମ୍ଭ କରି ମୁକ୍ତିର ଭାବକୁ ବି ତ୍ୟାଗ କରିବାକୁ ହୋଇଥାଏ । ସେହି ଉଚ୍ଚତମ ପ୍ରେମରେ

ସ୍ତ୍ରୀ-ପୁରୁଷ ଭେଦ ନାହିଁ । କାରଣ ଶ୍ରେଷ୍ଠ ପ୍ରେମରେ ପରିପୂର୍ଣ୍ଣ ଏକତ୍ୱବୋଧ ଘଟିଥାଏ । ସ୍ତ୍ରୀ-ପୁରୁଷ-ଜ୍ଞାନରେ ଶାରୀରିକ ଭେଦବୁଦ୍ଧି ଥାଏ । ସୁତରାଂ ମିଳନ ଏକମାତ୍ର ଆତ୍ମାରେ ହିଁ ସମ୍ଭବ । ଆମର ଦେହବୁଦ୍ଧି ଯେତେ କ୍ଷୀଣ ହେବ, ପ୍ରେମାନୁଭୂତି ସେତିକି ପୂର୍ଣ୍ଣ ହେଉଥିବ । ଅବଶେଷରେ ଯାବତୀୟ ଦେହଜ୍ଞାନ ଦୂରୀଭୂତ ହୋଇ ଦୁଇଟି ଆତ୍ମା ଏକ ହୋଇଯିବ । ତଦନନ୍ତର ଆମେ ପ୍ରେମକୁ ହିଁ ଭଲପାଉ । ରୂପକୁ ଅତିକ୍ରମ କଲେ ଯାଇ ପ୍ରେମ ଅରୂପକୁ ଦର୍ଶନ କରେ । ପ୍ରବାଦ ଅଛି—ପ୍ରେମିକ ଇଥିଓପ୍‌ଙ୍କ ଲଲାଟରେ ହେଲେନ୍‌ଙ୍କର ସୌନ୍ଦର୍ଯ୍ୟ ଦେଖିଥାଏ ।*

ଇଥିଓପ୍ ଗୋଟିଏ ଇଙ୍ଗିତ ବା ପ୍ରତୀକ ମାତ୍ର । ଏହି ପ୍ରତୀକ ଉପରେ ହିଁ ମନୁଷ୍ୟ ନିଜର ପ୍ରେମ ଅର୍ପଣ କରେ । ଭକ୍ତ ଯେତେବେଳେ ଉତ୍ତେଜକ ବା ଉଦ୍ଦୀପକ ପଦାର୍ଥଗୁଡ଼ିକୁ ପରିତ୍ୟାଗ କରେ, ସେତେବେଳେ ଦେଖାଯାଏ ଯେ, ମଧ୍ୟରେ ଯେଉଁ ବସ୍ତୁ ରହିଛି, ଏହା ଉତ୍ତେଜକ ପଦାର୍ଥଗୁଡ଼ିକୁ ସୁନ୍ଦର ମୁକ୍ତାରେ ପରିଣତ କରିଛି । ମନୁଷ୍ୟ ମଧ୍ୟ ସେହିପରି ପ୍ରେମର ବିସ୍ତାର କରିଥାଏ । ପ୍ରେମ ହିଁ ମନୁଷ୍ୟର ସର୍ବୋଚ୍ଚ ଆଦର୍ଶ ଏବଂ ଏହି ଆଦର୍ଶ ହିଁ ତଦନନ୍ତର ସ୍ୱାର୍ଥଶୂନ୍ୟ; ସୁତରାଂ ମନୁଷ୍ୟ ଏହି ପ୍ରେମକୁ ହିଁ ଭଲ ପାଏ । ଭଗବାନ ପ୍ରେମ-ସ୍ୱରୂପ । ଆମେ ଭଗବାନଙ୍କୁ ଭଲପାଉ, ମାନେ ପ୍ରେମକୁ ହିଁ ଭଲ ପାଉ । ପ୍ରେମକୁ ଆମେ ପ୍ରତ୍ୟକ୍ଷ କରୁ ମାତ୍ର । ପ୍ରେମକୁ ବ୍ୟକ୍ତ କରିଯାଏ ନାହିଁ । ମୂକବ୍ୟକ୍ତି ଲବଣୀ ଆସ୍ୱାଦନ କଲେ ବି ଲବଣୀର ଗୁଣାଗୁଣ ବ୍ୟକ୍ତ କରିପାରେ ନାହିଁ; ଲବଣୀ କେବଳ ଲବଣୀ ହୋଇ ଥାଏ; ଏବଂ ଯେଉଁମାନେ ଲବଣୀ ଆସ୍ୱାଦନ କରି ନାହାନ୍ତି, ସେମାନଙ୍କ ନିକଟରେ ଏହାର ଗୁଣାବଳୀ ପ୍ରକାଶ କରିଯାଇପାରେ ନାହିଁ । ପ୍ରେମ ପାଇଁ ହିଁ ପ୍ରେମ—ଯେଉଁମାନେ ପ୍ରେମ ଅନୁଭବ କରି ନାହାନ୍ତି, ସେମାନଙ୍କ ନିକଟରେ ଏହା ପ୍ରକାଶ କରିଯାଏ ନାହିଁ ।

ପ୍ରେମକୁ ଗୋଟିଏ ତ୍ରିଭୁଜ ସହିତ ତୁଳନା କରିଯାଏ । ଏହାର ପ୍ରଥମ କୋଣଟି ହେଲା—ପ୍ରେମ କେତେବେଳେ କିଛି ଚାହେଁ ନାହିଁ—କୌଣସି କିଛି ପ୍ରାର୍ଥନା କରେ ନାହିଁ । ଦ୍ୱିତୀୟ କୋଣଟି ହେଲା—ପ୍ରେମ ମଧ୍ୟରେ ଭୟର ସ୍ଥାନ ନାହିଁ । ତୃତୀୟ ଏବଂ ଚରମ କୋଣଟି ହେଲା—ପ୍ରେମ ପାଇଁ ହିଁ ପ୍ରେମ । ପ୍ରେମର ପ୍ରଭାବରେ ହିଁ ଆମମାନଙ୍କର ଇନ୍ଦ୍ରିୟଗୁଡ଼ିକ ସୂକ୍ଷ୍ମତର ଏବଂ ଉନ୍ନତତର ହୁଏ । ଜାଗତିକ ସମ୍ପର୍କରେ ଚରମ ପ୍ରେମ ଦୁର୍ଲଭ, କାରଣ ମାନବୀୟ ପ୍ରେମ ପ୍ରାୟ ସର୍ବଦା ହିଁ ପାରସ୍ପରିକ ଏବଂ ସାପେକ୍ଷ । କିନ୍ତୁ ଈଶ୍ୱର-ପ୍ରେମ ଏକ ଅବିଚ୍ଛିନ୍ନ ତୈଳଧାରା ପରି । ଏହାକୁ କୌଣସି କିଛି ବ୍ୟାହତ ବା ରୁଦ୍ଧ କରିପାରେ

* The lunatic, the lover and the poet
Are of imagination all compact;
The lover all as frantic
Sees Helen's beauty on an Ethiop's brow.
—Shakeshpeare's 'A Mid-Summer Night's Dream, Act—V, Sc. I

ନାହିଁ । ମଣିଷ ଯେତେବେଳେ ଈଶ୍ୱରଙ୍କୁ ତା'ର ଶ୍ରେଷ୍ଠ ଆଦର୍ଶ ରୂପେ ଭଲପାଏ—ଭିକ୍ଷୁକ ଭଳି ନୁହେଁ, ଅଥବା କୌଣସି ଆକାଙ୍‌କ୍ଷା ପୂରଣ ପାଇଁ ନୁହେଁ—ସେତେବେଳେ ସେହି ପ୍ରେମ ଚରମ କ୍ରମବିକାଶର ସ୍ତରରେ ଉପନୀତ ହୋଇ ଜଗତରେ ଏକ ମହାଶକ୍ତି ରୂପରେ ପରିଣତ ହୁଏ । ଏହିସବୁ ଅବସ୍ଥାରେ ପହଞ୍ଚିବାକୁ ଦୀର୍ଘ ସମୟ ଲାଗେ । ଆମର ସ୍ୱଭାବଗତ ଭାବର ସାହାଯ୍ୟରେ ହିଁ ଆମକୁ ପ୍ରଥମେ ଅଗ୍ରସର ହେବାକୁ ହେବ । କେହି ସେବା-ଭାବ ନେଇ ଜନ୍ମିଛି, କିଏ ବା ମାତୃପ୍ରେମ ନେଇ ଜନ୍ମିଛି । ଯେଉଁ ଭାବରେ ହେଉ, ଈଶ୍ୱରଙ୍କ ସହିତ ସମ୍ପର୍କ-ସ୍ଥାପନରେ ଆମର ନିଜନିଜ ପ୍ରକୃତିର ସୁଯୋଗ ନେବାକୁ ହେବ ।

## ଜଗତର କଲ୍ୟାଣସାଧନ

ମୋତେ ବେଳେ ବେଳେ ପ୍ରଶ୍ନ କରାଯାଏ—ତୁମମାନଙ୍କର ଧର୍ମ ସମାଜର କେଉଁ କାର୍ଯ୍ୟରେ ଲାଗେ ? ସମାଜକୁ ସତ୍ୟ-ପରୀକ୍ଷାର କଷଟିପଥର କରାଯାଇଛି । କିନ୍ତୁ ଏହା ଅତ୍ୟନ୍ତ ଅଯୌକ୍ତିକ । ସମାଜ ଆମମାନଙ୍କ କ୍ରମୋନ୍ନତିର ଗୋଟିଏ ସୋପାନ ମାତ୍ର-ଏହାକୁ କିନ୍ତୁ ଅତିକ୍ରମ କରିଯିବାକୁ ହେବ । ତା' ନ ହେଲେ ବୈଜ୍ଞାନିକ ଆବିଷ୍କାରର ଗୁଣାଗୁଣ ଏବଂ ପ୍ରୟୋଜନୀୟତାକୁ ବି ଶିଶୁର ପ୍ରୟୋଜନର ମାପକାଠିରେ ବିଚାର କରିବାକୁ ହୁଏ । ଏହା ଅତ୍ୟନ୍ତ ଆସୁରିକ । ସାମାଜିକ ଅବସ୍ଥା ବର୍ତ୍ତମାନ ଯାହା ଅଛି—ଯଦି ସର୍ବଦା ସେହିପରି ଥାଉ ବୋଲି କେହି ଚାହୁଁଥାଏ, ତେବେ ତାକୁ ପଚାର—କ'ଣ ଶିଶୁଟିଏ ଯେମିତି ବର୍ତ୍ତମାନ ଶିଶୁ ଅଛି, ସେହିପରି ସବୁବେଳେ ଶିଶୁ ଥାଉ ବୋଲି ତୁମେ ଚାହୁଁଛ ? ଶିଶୁ କେବେ ପୂର୍ଣ୍ଣମାନବ ନୁହେଁ । ବ୍ୟବହାର ଦିଗରୁ ବା ଅର୍ଥ ଦିଗରୁ ଶବ୍ଦଗୁଡ଼ିକ ପରସ୍ପର-ବିରୁଦ୍ଧ; ସୁତରାଂ ଏକ ନିର୍ଦ୍ଦୋଷ ସମାଜ ମଧ୍ୟ ଅସମ୍ଭବ । ମଣିଷକୁ ଶୈଶବ ଅବସ୍ଥା ଭିତର ଦେଇ ହିଁ ବଡ଼ ହେବାକୁ ହୋଇଥାଏ । କୌଣସି ଏକ ବିଶେଷ ଅବସ୍ଥାରେ ସମାଜ ଭଲ ହୋଇପାରେ । କିନ୍ତୁ ତାହା ହିଁ ଆମର ଚରମ ଲକ୍ଷ୍ୟ ହୋଇ ନ ପାରେ । କାରଣ, ସମାଜ ଅବିରତ ପରିବର୍ତ୍ତନଶୀଳ ପ୍ରବାହ ମାତ୍ର । ଦମ୍ଭ ଓ ଅହମିକାପୂର୍ଣ୍ଣ ବର୍ତ୍ତମାନ ବଣିକ-ସଭ୍ୟତାର ଧ୍ୱଂସ ଅନିବାର୍ଯ୍ୟ । ଏସବୁ 'ଲର୍ଡ଼ ମେୟରଙ୍କ ପ୍ରଦର୍ଶନୀ' ସଦୃଶ ।

ଜଗତ୍ ବ୍ୟକ୍ତି ମଧ୍ୟରେ ଚିନ୍ତାଶକ୍ତିର ବିକାଶ ପ୍ରତ୍ୟକ୍ଷ କରିବାକୁ ଚାହେଁ । ଆମର ଗୁରୁଦେବ କହୁଥିଲେ—"ତୁମେ ତୁମ ନିଜର ହୃଦୟ-ପଦ୍ମ ପ୍ରସ୍ଫୁଟିତ କରୁ ନାହଁ କାହିଁକି ? ଭ୍ରମରମାନେ ଆପଣା ଛୁଏଁ ଆସିଯିବେ ।" ବର୍ତ୍ତମାନ ଜଗତରେ ଭଗବଦ୍ଭାବରେ ତନ୍ମୟ ଲୋକଙ୍କର ଖୁବ୍ ପ୍ରୟୋଜନ ପଡ଼ୁଛି । ପ୍ରଥମେ ନିଜ ଉପରେ ବିଶ୍ୱାସବାନ ହୁଅ । ତାହା ହେଲେ ହିଁ ଭଗବାନଙ୍କଠାରେ ବିଶ୍ୱାସ ଆସିବ । ଜଗତରେ ଇତିହାସ ହେଲା—ପବିତ୍ର, ଗମ୍ଭୀର, ଚରିତ୍ରବାନ୍ ଏବଂ ଶ୍ରଦ୍ଧାସମ୍ପନ୍ନ କେତୋଟି ମଣିଷର ଇତିହାସ ।

ଆମର ପ୍ରୟୋଜନ ତିନୋଟି କଥା—ଅନୁଭବ କରିବା ପାଇଁ ହୃଦୟ, ଚିନ୍ତା ଓ

ବିଚାର କରିବା ପାଇଁ ମସ୍ତିଷ୍କ ଏବଂ କାର୍ଯ୍ୟ କରିବା ପାଇଁ ହାତ । ପ୍ରଥମେ ନିର୍ଜନରେ ରହି ନିଜକୁ ଉପଯୁକ୍ତ ଯନ୍ତ୍ରରେ ପରିଣତ କରିବାକୁ ହେବ । ନିଜକୁ ଗୋଟିଏ ତଡ଼ିତ୍-ଉତ୍ପାଦକ ଯନ୍ତ୍ର କରିବାକୁ ପଡ଼ିବ । ପ୍ରଥମେ ଜଗତରେ ସବୁ ମଣିଷଙ୍କ ପାଇଁ ଅନୁଭବ କର । ଯେତେବେଳେ ସମସ୍ତେ କାର୍ଯ୍ୟ ପାଇଁ ଉନ୍ମୁଖ, ସେତେବେଳେ ହୃଦୟବାନ୍ ବ୍ୟକ୍ତି କେଉଁଠି ? ସେହି ହୃଦୟବତ୍ତା କେଉଁଠି, ଯାହା ଦେଇ ଇଗ୍‌ନେସିଅସ୍ ଲୟୋଲାଙ୍କୁ ସୃଷ୍ଟି କରିଥିଲେ ? ତୁମର ବିନୟ ଓ ପ୍ରେମକୁ ପରୀକ୍ଷା କରି ଦେଖ । ଯାହାର ହୃଦୟରେ ଈର୍ଷା ରହିଛି, ସେ ବିନୟୀ ବା ପ୍ରେମିକ ହୋଇପାରିବ ନାହିଁ । ଈର୍ଷା ଗୋଟିଏ ଭୀଷଣ ଏବଂ ଭୟଙ୍କର ପାପ । ଏହା ମଣିଷ ଭିତରେ ରହସ୍ୟଜନକ ଭାବେ ପ୍ରବେଶ କରେ । ନିଜକୁ ପ୍ରଶ୍ନ କର—ଈର୍ଷା ଏବଂ ହିଂସାରେ ତୁମର କିଛି ପ୍ରତିକ୍ରିୟା ହୁଏକି ? ହିଂସା ଓ ଈର୍ଷା ପାଇଁ ଜଗତରେ ବାରମ୍ବାର ବହୁ ଆରବ୍ଧ ସତ୍‌କାର୍ଯ୍ୟ ବିନଷ୍ଟ ହୋଇଛି । ଯଦି ତୁମେ ପବିତ୍ର ହୁଅ, ଯଦି ତୁମେ ବଳବାନ୍ ହୁଅ, ତା' ହେଲେ ତୁମେ ଏକା ହିଁ ସମଗ୍ର ଜଗତର ସମକକ୍ଷ ହୋଇପାରିବ ।

ସତ୍‌କର୍ମ-ସାଧନର ଦ୍ୱିତୀୟ ଅଙ୍ଗ—ଧାରଣା ପାଇଁ ମସ୍ତିଷ୍କ; କିନ୍ତୁ ଏହା ଶୁଷ୍କ ସାହାରା ମରୁ ତୁଲ୍ୟ; କାରଣ ବୁଦ୍ଧି ଏକାଏକା କିଛି କରିପାରେ ନାହିଁ, ଯଦି ଏହା ପଛରେ ହୃଦୟବତ୍ତା ନ ଥାଏ । ପ୍ରେମକୁ ଅବଲମ୍ବନ କର । ପ୍ରେମ କେବେବେଳେ ବି ବ୍ୟର୍ଥ ହୁଏ ନାହିଁ । ପ୍ରେମ ଥିଲେ ମସ୍ତିଷ୍କ ଧାରଣା କରିପାରିବ, ହସ୍ତ ସତ୍‌କର୍ମ କରିପାରିବ । ଋଷିମାନେ ଧ୍ୟାନ ଧାରଣା କରି ଈଶ୍ୱର ଦର୍ଶନ କରିଛନ୍ତି । "ଯେଉଁମାନଙ୍କର ହୃଦୟ ପବିତ୍ର, ସେମାନେ ଈଶ୍ୱର ଦର୍ଶନ କରିବେ ।" ସବୁ ମହାପୁରୁଷ ଈଶ୍ୱରଙ୍କ ଦର୍ଶନ କରିଛନ୍ତି ବୋଲି ଦାବି କରନ୍ତି । ହଜାର ହଜାର ବର୍ଷ ପୂର୍ବେ ଈଶ୍ୱରଙ୍କର ପ୍ରତ୍ୟକ୍ଷ ଦର୍ଶନ ହୋଇଛି ଏବଂ ଅଦ୍ୱିତୀୟ ଏକତ୍ୱ ସ୍ୱୀକୃତ ହୋଇଅଛି । ଏବଂ ଆମେ ବର୍ତ୍ତମାନ ସେହି ଗୌରବୋଜ୍ଜ୍ୱଳ ଚିତ୍ରର ପରିକଳ୍ପନାଟିକୁ ପରିପୂର୍ଣ୍ଣ ମାତ୍ର କରିପାରୁ ।

## ବାହ୍ୟପୂଜା

[ ଏପ୍ରିଲ ୧୦ ତାରିଖ ୧୯୦୦ ଆମେରିକାର ସାନଫ୍ରାନ୍‌ସିସ୍କୋ ସହରରେ ପ୍ରଦତ୍ତ ବକ୍ତୃତା ]

ଆପଣମାନଙ୍କ ମଧ୍ୟରେ ଯେଉଁମାନେ ବାଇବେଲ ପଢ଼ିଛନ୍ତି, ସେମାନେ ଜାଣନ୍ତି, ଇହୁଦି ଜାତିର ସମଗ୍ର ଇତିହାସ ଏବଂ ଚିନ୍ତାଧାରାର ମୂଳରେ ରହିଛନ୍ତି ଦୁଇଶ୍ରେଣୀର ଶିକ୍ଷକ : ପୁରୋହିତ ଓ ଧର୍ମଗୁରୁ । ପୁରୋହିତମାନେ ରକ୍ଷଣଶୀଳତାର ଏବଂ ଧର୍ମଗୁରୁମାନେ ପ୍ରଗତି-ଶୀଳତାର ପ୍ରତୀକ । ମୋଟ କଥା, ଏହି ସମାଜରେ କ୍ରମେକ୍ରମେ ଧର୍ମୀୟ ଆନୁଷ୍ଠାନିକତା ପ୍ରବେଶ କଲା । ବାହ୍ୟ ଆଚାର ସବୁକଥାକୁ ଅଧିକାର କରିବସିଲା । ପ୍ରତ୍ୟେକ ଦେଶ ଓ ପ୍ରତ୍ୟେକ ଧର୍ମ କ୍ଷେତ୍ରରେ ମଧ୍ୟ ଏହି କଥାଟି ଘଟିଲା । ତା'ପରେ କେତେକଣ ସତ୍ୟଦ୍ରଷ୍ଟା ମହାପୁରୁଷ ନୂତନ ଦୃଷ୍ଟିଭଙ୍ଗୀ ନେଇ ଆବିର୍ଭୂତ ହେଲେ । ସେମାନେ ନୂତନ ଭାବ ଓ ନୂତନ ଆଦର୍ଶ ପ୍ରଚାର

କଲେ ଏବଂ ସମାଜକୁ ଗତିଶୀଳ କରିଦେଲେ । ପୁଣି କେତେ ବର୍ଷ ଯାଉ ନ ଯାଉଣୁ ଶିଷ୍ୟମାନେ ନିଜ ନିଜ ଗୁରୁଙ୍କ ପ୍ରଚଳିତ ଭାବସମୂହପ୍ରତି ଏତେ ବେଶୀ ଅନୁରକ୍ତ ହୋଇ-ପଡ଼ିଲେ ଯେ, ଏଗୁଡ଼ିକ ବ୍ୟତୀତ ସେମାନେ ଅନ୍ୟ କିଛି ଆଉ ଦେଖିପାରିଲେ ନାହିଁ । ବର୍ତ୍ତମାନ ଯୁଗର ସର୍ବାପେକ୍ଷା ପ୍ରଗତିଶୀଳ ଏବଂ ଉଦାର ମତାବଲମ୍ବୀ ପ୍ରଚାରକମାନେ ମଧ୍ୟ ଆଉ କେତେ ବର୍ଷ ପରେ ସର୍ବାପେକ୍ଷା ମତାନ୍ଧ ପୁରୋହିତ ହୋଇ ବାହାରିବେ—ଏହା ଅସମ୍ଭବ ନୁହେଁ । ପୁଣି ପ୍ରଗତିବାଦୀ ମଣିଷମାନେ ମଧ୍ୟ କାହା କାହା ଭିତରେ ସାମାନ୍ୟ ପ୍ରଗତି ଦେଖିଲେ ଏହାର ବିରୁଦ୍ଧାଚରଣ କରିବାକୁ ଆରମ୍ଭ କରିଦେବେ । ସେମାନଙ୍କର ଚିନ୍ତାଧାରା ଅତିକ୍ରମ କରି ସମାଜ ଅଗ୍ରସର ହେଉ—ଏହା ସେମାନେ ଚାହିଁବେ ନାହିଁ । ଯାହା କିଛି ଯେଉଁ ଭାବରେ ଚାଲିଛି, ସେହି ଭାବରେ ଚାଲିଲେ ହିଁ ସେମାନେ ସନ୍ତୁଷ୍ଟ ।

ପ୍ରତ୍ୟେକ ଦେଶରେ ପ୍ରତ୍ୟେକ ଧର୍ମର ପ୍ରାଥମିକ ନୀତିଗୁଡ଼ିକ ଭିତରେ ଯେଉଁ ଶକ୍ତି କାର୍ଯ୍ୟ କରେ, ତାହା ଧର୍ମର ବାହ୍ୟରୂପରେ ପ୍ରକାଶିତ ହୁଏ ।···ନୀତି ବା ଛନ୍ଦ, କେତେଗୁଡ଼ିଏ ନିୟମ—ବିଶେଷ ଢଙ୍ଗରେ ଅଙ୍ଗ-ସଞ୍ଚାଳନ, ଠିଆ ହେବା ବା ବସିବା—ଏସବୁଗୁଡ଼ିକ ଉପାସନାର ପର୍ଯ୍ୟାୟଭୁକ୍ତ । ଅଧିକ ସଂଖ୍ୟକ ଲୋକ ଯେପରି ଧାରଣା କରିପାରିବେ, ସେଥିପାଇଁ ପୂଜା ସ୍ଥୂଳରୂପ ପରିଗ୍ରହ କରେ । ପ୍ରତ୍ୟେକ ଦେଶର ଅଧିକାଂଶ ଲୋକ ହିଁ ଗୋଟିଏ ଭାବକୁ କେବେ ବି ଭାବରୂପରେ ପୂଜା କରନ୍ତି ନାହିଁ । ଏହା ବର୍ତ୍ତମାନ ପର୍ଯ୍ୟନ୍ତ ବି ସମ୍ଭବ ହୋଇ ନାହିଁ । ଭବିଷ୍ୟତରେ ଯେ କେବେ ହେବ, ତାହା ମଧ୍ୟ ମନେ ହେଉ ନାହିଁ । ମୁଁ ପଚାରୁଛି—"ଆଚ୍ଛା, ଏହି ସହରରେ କେତେ ଲୋକ ଭଲ ଈଶ୍ୱରଙ୍କୁ ଗୋଟିଏ ଭାବ-ରୂପରେ ପୂଜା କରିବା ଲାଗି ପ୍ରସ୍ତୁତ ?" ଅତି ସାମାନ୍ୟ ହେବ ସେମାନଙ୍କ ସଂଖ୍ୟା ।

ମନୁଷ୍ୟ ଇନ୍ଦ୍ରିୟଗ୍ରାହ୍ୟ ଜଗତରେ ବାସ କରେ, ତେଣୁ ଏଭଳି କରିବା ସମ୍ଭବ ନୁହେଁ । ମଣିଷକୁ ଆହୁରି ପୂର୍ବରୁ ଧର୍ମଭାବ ଦେବାକୁ ହେବ । ସାଧାରଣ ମଣିଷକୁ ତୁମେ ସ୍ଥୂଳଭାବେ କିଛି କରିବାକୁ କୁହ—ତାକୁ କୋଡ଼ିଏ ଥର ଲେଖାଏଁ ବସ୍ ଉଠ୍ ହେବାକୁ କୁହ, ସେ ଏହା ବୁଝିବ; ତାକୁ ଗୋଟିଏ ନାସାରନ୍ଧ୍ରରେ ନିଃଶ୍ୱାସ ଛାଡ଼ିବାକୁ ଓ ଅପର ନାସାରନ୍ଧ୍ରରେ ଶ୍ୱାସ ଗ୍ରହଣ କରିବାକୁ କୁହ—ସେ ବୁଝିବ । ସମ୍ପୂର୍ଣ୍ଣ ଭାବଗତ ଆଦର୍ଶକୁ ମଣିଷ ମୋଟେ ଗ୍ରହଣ କରିପାରେ ନାହିଁ । ଏହା ସେମାନଙ୍କର ଦୋଷ ନୁହେଁ । ଈଶ୍ୱରଙ୍କୁ ଭାବ-ରୂପରେ ପୂଜା କରିବାର ଶକ୍ତି ଯଦି ତୁମର ଥାଏ, ତେବେ ଉତ୍ତମ । କିନ୍ତୁ ଏପରି ଏକ ସମୟ ଥିଲା, ଯେତେବେଳେ ତୁମେ ଏହା ପାରି ନ ଥାନ୍ତ ।··· ଲୋକମାନେ ଯଦି ସ୍ଥୂଳବୁଦ୍ଧିସମ୍ପନ୍ନ ହୁଅନ୍ତି, ତା'ହେଲେ ଧର୍ମ ସମ୍ବନ୍ଧୀୟ ସେମାନଙ୍କର ଧାରଣାଗୁଡ଼ିକ ଅପରିଣତ ଏବଂ ଧର୍ମର ବହିରଙ୍ଗ ଆଚାର ଇତ୍ୟାଦି ସ୍ଥୂଳ ଓ ଅମାର୍ଜିତ ହୋଇପଡେ । ଲୋକମାନେ ଯଦି ମାର୍ଜିତ ଓ ଶିକ୍ଷିତ ହୁଅନ୍ତି, ସେମାନଙ୍କର ବାହ୍ୟ ଅନୁଷ୍ଠାନଗୁଡ଼ିକ ଆହୁରି ସୁନ୍ଦର ହୋଇଉଠେ । ବାହ୍ୟ ଅନୁଷ୍ଠାନଗୁଡ଼ିକ ରହିବ, ସେଗୁଡ଼ିକ କେବଳ କାଳର ପ୍ରୟୋଜନରେ ପରିବର୍ତ୍ତିତ ହେବା ଉଚିତ ।

ଆଶ୍ଚର୍ଯ୍ୟ କଥା ଯେ, ମୁସଲମାନ ଧର୍ମ ଯେପରି ଭାବେ ବାହ୍ୟପୂଜାର ବିରୁଦ୍ଧାଚରଣ କରି

ଆସିଛି, ପୃଥିବୀରେ ଅନ୍ୟ କୌଣସି ଧର୍ମ କେବେ ବି ସେପରି କରି ନାହିଁ ।... ଚିତ୍ର, ସ୍ଥାପତ୍ୟ ବା ସଙ୍ଗୀତ—ମୁସଲମାନଙ୍କ ଧର୍ମାଚରଣରେ ରହିପାରିବ ନାହିଁ । କାରଣ ଏଗୁଡ଼ିକ ବାହ୍ୟ ପୂଜାର ସହାୟକ । ଜନସାଧାରଣଙ୍କ ସଙ୍ଗରେ ପୁରୋହିତଙ୍କର କେବେ ବି ଯୋଗାଯୋଗ ହେବ ନାହିଁ, ହେଲେ ହିଁ ପାର୍ଥକ୍ୟର ସୃଷ୍ଟି ହେବ । ଏହି ଭାବରେ କୌଣସି ପାର୍ଥକ୍ୟ ନାହିଁ । କିନ୍ତୁ ତଥାପି, ପୟଗମ୍ବରଙ୍କ ଦେହତ୍ୟାଗ ପରେ ଦୁଇ ଶତାବ୍ଦୀ ଯାଉ ନ ଯାଉଣୁ ସାଧୁ-ମହାତ୍ମାଙ୍କର ପୂଜା ପ୍ରବର୍ତ୍ତିତ ହୋଇଗଲା । ଏଠି ସାଧୁଙ୍କର ପାଦର ଅଙ୍ଗୁଳି, ...ସେଠି ତାଙ୍କର ଗାତ୍ରଚର୍ମ !...ଏହିଭାବରେ ଚାଲିଲା । ବାହ୍ୟପୂଜା ଆଧ୍ୟାତ୍ମିକ ଉନ୍ନତି-ପଥରେ ଅନ୍ୟତମ ସୋପାନ ଏବଂ ଆମକୁ ଏହାର ଭିତର ଦେଇ ଯିବାକୁ ହେବ ।

ସୁତରାଂ ବାହ୍ୟପୂଜା ବିରୋଧରେ ଜେହାଦ୍ (ଧର୍ମଯୁଦ୍ଧ) ଘୋଷଣା ନ କରି ଏହାର ଯେତେକାଂଶ ଭଲ, ତାହା ଗ୍ରହଣ କରିବା ଉଚିତ ଏବଂ ଅନ୍ତର୍ନିହିତ ଭାବଗୁଡ଼ିକୁ ବିବେଚନା କରି ଦେଖିବା କର୍ତ୍ତବ୍ୟ । ଅବଶ୍ୟ ହିଁବାପେକ୍ଷା ନିମ୍ନସ୍ତରର ପୂଜା କହିଲେ ଗଛ ପଥର ଇତ୍ୟାଦିର ପୂଜାକୁ ବୁଝାଏ । ପ୍ରତ୍ୟେକ ମାର୍ଜିତ ଓ ଅଶିକ୍ଷିତ ବ୍ୟକ୍ତି ହିଁ ଯେକୌଣସି ପଦ୍ଧତି ଗ୍ରହଣ କରି ଏଥିରେ ନିଜର ସ୍ୱଭାବ ଯୋଗ କରିଦେବ, ସେଥିରୁ ହିଁ ସେ ସହାୟତା ପାଇବ । ସେ ଖଣ୍ଡିଏ ଅସ୍ଥି ବା ପଥର ପୂଜା କରିପାରେ । ବାହ୍ୟପୂଜାର ଏହିସବୁ ଅପରିଣତ ଅବସ୍ଥାରେ ମଣିଷ କିନ୍ତୁ କେବେ ବି ପଥରକୁ ପଥର ହିସାବରେ ବା ଗଛକୁ ଗଛ ହିସାବରେ ପୂଜା କରି ନାହିଁ । ସାଧାରଣ ବୁଦ୍ଧିଦ୍ୱାରା ତୁମେମାନେ ଅନ୍ତତଃ ଏତିକି ବୁଝ । ପଣ୍ଡିତମାନେ ଅନେକ ସମୟରେ କହନ୍ତି—ମଣିଷ ଗଛପଥରର ପୂଜା କରିଛି—ଏସବୁ ହିଁ ଅର୍ଥହୀନ । ମାନବଜାତି ଯେଉଁସବୁ ନିମ୍ନସ୍ତରର ପୂଜାନୁଷ୍ଠାନ ମଧ୍ୟଦେଇ ଅଗ୍ରସର ହୋଇ ଆସିଛି, ବୃକ୍ଷପୂଜା ତା' ମଧ୍ୟରୁ ଅନ୍ୟତମ । ପ୍ରକୃତରେ ଦେଖିଲେ ମଣିଷ କେବେହେଲେ ବି ଭାବ ଛଡ଼ା ଆଉ କିଛିର ପୂଜା କରି ନାହିଁ । ମନୁଷ୍ୟ ଭାବ-ସ୍ୱରୂପ ଏବଂ ଭାବ ବ୍ୟତୀତ ଅନ୍ୟ କିଛି ହିଁ ଅନୁଭବ କରିପାରେ ନାହିଁ । ଦେହଭାବରେ ପୁଷ୍ଟି ମନୁଷ୍ୟ-ମନ ସୂକ୍ଷ୍ମଭାବକୁ ଜଡ଼ ବସ୍ତୁରୂପେ ଉପାସନା କରିବା ଭଳି ଏତେ ବଡ଼ ଭୁଲ କେବେ ବି କରିପାରେ ନାହିଁ । ଏହି କ୍ଷେତ୍ରରେ ମନୁଷ୍ୟ ପଥର ବା ଗଛକୁ ଭାବରୂପରେ ହିଁ ଚିନ୍ତା କରିଛି । ସେ କଳ୍ପନା କରିଛି ଯେ, ସେହି ପରମ ଈଶ୍ୱର କିଛି ଅନ୍ତତଃ ଏହି ପଥର ବା ଗଛରେ ରହିଛି ଏବଂ ଏହା ଭିତରେ ଆତ୍ମା ରହିଛନ୍ତି । ବୃକ୍ଷ-ପୂଜା ଓ ସର୍ପପୂଜା ସର୍ବଦା ଅଙ୍ଗାଙ୍ଗୀଭାବେ ଜଡ଼ିତ । ଜ୍ଞାନ-ବୃକ୍ଷ କଥା ତ ତୁମେମାନେ ଜାଣ । ବୃକ୍ଷ ନିଶ୍ଚୟ ରହିବ ଓ ସର୍ପ ସହିତ ଏହି ବୃକ୍ଷ କୌଣସି ନା କୌଣସି ପ୍ରକାରେ ଜଡ଼ିତ ରହିବ । ଏଗୁଡ଼ିକ ପ୍ରାଚୀନତମ ପୂଜାପଦ୍ଧତି । ସେଠାରେ ମଧ୍ୟ ଦେଖିବ, କୌଣସି ବିଶେଷ ପ୍ରସ୍ତର ବା ବିଶେଷ ବୃକ୍ଷ ହିଁ ପୂଜିତ ହୋଇଛି । ପୃଥିବୀର ଯାବତୀୟ ବୃକ୍ଷ ଏବଂ ଯାବତୀୟ ପ୍ରସ୍ତରକୁ ପୂଜା କରାଯାଇ ନାହିଁ ।

ବାହ୍ୟପୂଜାର ଉନ୍ନତତର ସୋପାନରେ ଈଶ୍ୱରଙ୍କର ବା ପୂର୍ବପୁରୁଷମାନଙ୍କର ପ୍ରତି-ମୂର୍ତ୍ତିକୁ ପୂଜା କରାଯାଏ । ଲୋକମାନେ ମୃତ ବ୍ୟକ୍ତିମାନଙ୍କର ପ୍ରତିକୃତି ଏବଂ ଈଶ୍ୱରଙ୍କର କାଳ୍ପନିକ ପ୍ରତିମା ନିର୍ମାଣ କରନ୍ତି । ପରେ ସେମାନେ ଏଗୁଡ଼ିକୁ ପୂଜା କରନ୍ତି ।

ଆହୁରି ଉନ୍ନତତର ପୂଜା—ମୃତ ସାଧୁସନ୍ଥ, ସଜ୍ଜନ ବା ସନ୍ତ-ସାଧ୍ୱୀମାନଙ୍କର ପୂଜା । ଲୋକମାନେ ତାଙ୍କର ଦେହାବଶେଷ ପୂଜା କରନ୍ତି । ସେମାନେ ଏହି ଦେହାବଶେଷ ମଧ୍ୟରେ ସାଧୁମହାପୁରୁଷଗଣଙ୍କର ଉପସ୍ଥିତି ଅନୁଭବ କରନ୍ତି ଏବଂ ମନେକରନ୍ତି ଯେ, ସେମାନେ ତାଙ୍କୁ ସାହାଯ୍ୟ କରିବେ । ସେମାନେ ବିଶ୍ୱାସ କରନ୍ତି ଯେ, ଏହି ସାଧୁ ମହାପୁରୁଷମାନଙ୍କ ଅସ୍ଥି ସ୍ପର୍ଶ କଲେ ସେମାନଙ୍କର ରୋଗ ଭଲ ହୋଇଯିବ । ଦେହାସ୍ଥି ଯେ ତାଙ୍କୁ ନିରାମୟ କରିଦେବ ତାହା ନୁହେଁ, ଦେହାସ୍ଥି ମଧ୍ୟରେ ଯେ ଅଛନ୍ତି, ସେ ହିଁ ତାଙ୍କର ରୋଗ ଆରୋଗ୍ୟ କରିବେ ।

ଏସବୁ ହେଲା ନିମ୍ନାଙ୍ଗ ପୂଜା । ତଥାପି ଏଗୁଡ଼ିକ ପୂଜା । ଆମକୁ ଏଗୁଡ଼ିକ ଅତିକ୍ରମ କରିବାକୁ ହେବ । ବୁଦ୍ଧିବୃତ୍ତିର ଦିଗ ଦେଇ ଦେଖିଲେ, କେବଳ ଏହିଗୁଡ଼ିକୁ ଯଥେଷ୍ଟ ବୋଲି କହି ହେବ ନାହିଁ—କିନ୍ତୁ ହୃଦୟ ଦେଇ ଦେଖିଲେ ଆମେ ଏଗୁଡ଼ିକୁ ଛାଡ଼ିପାରିବା ନାହିଁ । ଯଦି ତୁମେ କୌଣସି ବ୍ୟକ୍ତି ପାଖରୁ ସାଧୁ ମହାପୁରୁଷମାନଙ୍କର ପ୍ରତିମୂର୍ତ୍ତିଗୁଡ଼ିକୁ ଛଡ଼ାଇ ନେବ ଏବଂ ତାକୁ କୌଣସି ମନ୍ଦିରକୁ ଯିବା ପାଇଁ ଛାଡ଼ିବ ନାହିଁ—ତା'ହେଲେ ସେ ମନେ ମନେ ଏଗୁଡ଼ିକୁ ନିଶ୍ଚୟ ଝୁରିହେବ । ସେ ଏହା ନ କରି ରହିପାରିବ ନାହିଁ । ଜଣେ ଅଶୀବର୍ଷର ବୃଦ୍ଧ ମତେ କହିଥିଲେ ଯେ, ଭଗବାନଙ୍କ ବିଷୟ ଭାବିବାକୁ ଗଲେ ମେଘଉପରେ ଉପବିଷ୍ଟ ଦୀର୍ଘଶ୍ମଶ୍ରୁବିଶିଷ୍ଟ ଜଣେ ବୃଦ୍ଧ ଛଡ଼ା ଅନ୍ୟ କାହା କଥା ତାଙ୍କର ମନରେ ଉଦିତ ହୁଏ ନାହିଁ । ଏହାଦ୍ୱାରା କ'ଣ ପ୍ରତୀତ ହୁଏ ? ତାଙ୍କର ଶିକ୍ଷା ସମ୍ପୂର୍ଣ୍ଣ ହୋଇ ନାହିଁ । କୌଣସି ଆଧ୍ୟାତ୍ମିକ ଶିକ୍ଷା ବି ସେ ପାଇ ନାହାନ୍ତି ଏବଂ ମାନବିକ ଭାବ ଛଡ଼ା ଅନ୍ୟ କିଛି ଚିନ୍ତା କରିବାକୁ ସେ ଅକ୍ଷମ ।

ବାହ୍ୟ-ଉପାସନାର ଆଉ ଗୋଟିଏ ଉନ୍ନତତର ସୋପାନ ରହିଛି—ପ୍ରତୀକ-ଉପାସନା ଭଳି ବାହ୍ୟବସ୍ତୁ ମଧ୍ୟ ସେଠାରେ ରହିଛି; କିନ୍ତୁ ତାହା ବୃକ୍ଷ, ପ୍ରସ୍ତର ବା ସାଧୁମହାତ୍ମା-ମାନଙ୍କର ସ୍ମୃତିଚିହ୍ନ ନୁହେଁ । ଏଗୁଡ଼ିକ ପ୍ରତୀକ । ପୃଥିବୀରେ ସବୁପ୍ରକାର ପ୍ରତୀକ ରହିଛି । ଧରି—ଆମରି ଏହି ଜ୍ୟାମିତିକ ବୃତ୍ତ । ଏହି ବୃତ୍ତ ହେଲା ଅନନ୍ତର ଏକ ମହତ୍ତ୍ୱ ପ୍ରତୀକ । ...ଏହାପରେ ସମଚତୁର୍ଭୁଜ; ସୁପରିଚିତ କ୍ରୁଶର ପ୍ରତୀକ ଏବଂ ଇଂରେଜୀ ଏସ୍ (S) ଓ ଜେଡ୍ (Z) ପରସ୍ପରକୁ ମୁହାଁମୁହିଁ କାଟିଛନ୍ତି । ଏମିତି ଦୁଇଟି ଅକ୍ଷର ମଧ୍ୟ ରହିଛି ।

କେହିକେହି ମନେକରନ୍ତି—ଏହି ପ୍ରତୀକଗୁଡ଼ିକର କୌଣସି ସାର୍ଥକତା ନାହିଁ । ଆଉ ପୁଣି କେତେକଙ୍କର ଦରକାର ଅର୍ଥହୀନ କିଛି ଯାଦୁମନ୍ତ୍ର । ଯଦି ତୁମେ ଏମାନଙ୍କୁ ସହଜ ସରଳ ସତ୍ୟକଥା କୁହ, ତେବେ ଏମାନେ ଗ୍ରହଣ କରିବେ ନାହିଁ । ...ମଣିଷର ସ୍ୱଭାବ ହେଲା ଏଇଆ । ସେମାନେ ତୁମକୁ ଯେତେ କମ୍ ବୁଝିବେ, ସେତେ ହିଁ ତୁମକୁ ଭଲ ଓ ବଡ଼ ମନେକରିବେ । ପ୍ରତ୍ୟେକ ଦେଶରେ, ସବୁ ଯୁଗରେ ଏହି ଧରଣର ଉପାସକମାନେ କେତେକ ଜ୍ୟାମିତିକ ଚିହ୍ନ ଏବଂ ପ୍ରତୀକାଦିଦ୍ୱାରା ବିଭ୍ରାନ୍ତ ହୁଅନ୍ତି । ଏକଦା ଜ୍ୟାମିତି ଥିଲା ସବୁ ବିଜ୍ଞାନ ମଧ୍ୟରେ ଶ୍ରେଷ୍ଠ । ଅଧିକାଂଶ ଲୋକ ହିଁ ଏହି ବିଷୟରେ ଅନଭିଜ୍ଞ ଥିଲେ । ସେମାନଙ୍କର ବିଶ୍ୱାସ ଥିଲା—ଜ୍ୟାମିତିବିଦ୍ ଗୋଟିଏ ସମଚତୁର୍ଭୁଜ ଅଙ୍କନ କରି ଏହାର ଚାରିକୋଣରେ ଅର୍ଥହୀନ

ଯାଦୁମନ୍ତ୍ର ବିଶେଷ ବୋଲିଲେ ହିଁ ସମଗ୍ର ପୃଥିବୀ ଘୂରିବାକୁ ଆରମ୍ଭ କରିବ, ସ୍ୱର୍ଗର ଦ୍ୱାର ଉନ୍ମୁକ୍ତ ହୋଇଯିବ—ଏବଂ ଭଗବାନ ଅବତରଣ କରି ତାଆଁ ମାରିବେ ଏବଂ ମଣିଷର କ୍ରୀତଦାସ ହୋଇଯିବେ । ଦଳଦଳ ହୋଇ ଏହିଭଳି ଉନ୍ମାଦ ବାତୁଗ୍ରସ୍ତ ଏସବୁ ବିଷୟ ଏକାଗ୍ର ମନରେ ପଢ଼ୁଥାନ୍ତି । ଏଗୁଡ଼ିକ ହେଲା ମାନସିକ ରୋଗ । ଏଗୁଡ଼ିକ ଲାଗି ଚିକିତ୍ସକ ପ୍ରୟୋଜନ । ଦାର୍ଶନିକମାନଙ୍କ ପାଇଁ ଏସବୁ ନୁହେଁ ।

ମୁଁ କୌତୁକ କରୁଛି—କିନ୍ତୁ ଏଥିପାଇଁ ମୁଁ ଖୁବ୍ ଦୁଃଖିତ । ଏହି ସମସ୍ୟାଟି କିନ୍ତୁ ଭାରତବର୍ଷରେ ଅତି ଗୁରୁତର ଅବସ୍ଥାରେ ଆସି ପହଞ୍ଚିଛି । ଏହିଗୁଡ଼ିକ ହିଁ ଜାତିର ଧ୍ୱଂସ, ଅବନତି ଏବଂ ଅବୈଧ ବଳ-ପ୍ରୟୋଗର ଲକ୍ଷଣ । ତେଜ, ବୀର୍ଯ୍ୟ, ଜୀବନୀଶକ୍ତି, ଆଶା, ସ୍ୱାସ୍ଥ୍ୟ ଏବଂ ଯାହା କିଛି ମଙ୍ଗଳକର, ତା'ର ଲକ୍ଷଣ ହିଁ ହେଲା ଶକ୍ତି । ଯେତେଦିନ ଯାଏ ଶରୀର ରହିଥିବ, ସେତେଦିନ ଯାଏ ଦେହ ମନ ଏବଂ ବାହୁରେ ବଳ ଥିବା ଆବଶ୍ୟକ । ଏହିସବୁ ଯାଦୁମନ୍ତ୍ରବିଶେଷଦ୍ୱାରା ଅଧ୍ୟାତ୍ମ ଶକ୍ତି ଅର୍ଜନର ଚେଷ୍ଟା କିନ୍ତୁ ଖୁବ୍ ଭୟଙ୍କର । ଏଥିରେ ଜୀବନ-ନାଶର ଆଶଙ୍କା ବି ରହିଛି ।

ମୁଁ ଅବଶ୍ୟ 'ପ୍ରତୀକ ଉପାସନା' ବିଷୟ କହିଲା ବେଳେ ଏଗୁଡ଼ିକୁ ଲକ୍ଷ୍ୟ କରି କହି ନାହିଁ । ପ୍ରକୃତ ପ୍ରତୀକ-ଉପାସନାରେ ନିଶ୍ଚୟ କିଛି ସତ୍ୟ ନିହିତ ରହିଛି । କିଛି ସତ୍ୟ ବ୍ୟତୀତ କୌଣସି ମିଥ୍ୟା ଆଦୌ ତିଷ୍ଠିପାରିବ ନାହିଁ । କୌଣସି ବସ୍ତୁର ଯଦି ବାସ୍ତବ ସତ୍ତା ନ ଥାଏ, ତେବେ ତା'ର ଅନୁକରଣ ମଧ୍ୟ ହୋଇପାରିବ ନାହିଁ ।

ବିଭିନ୍ନ ଧର୍ମରେ ପ୍ରତୀକ-ପୂଜା ରହିଛି । ଏପରି ସବୁ ପ୍ରତୀକ ରହିଛି—ଯେଉଁଗୁଡ଼ିକ ସୁନ୍ଦର, ଶକ୍ତିପ୍ରଦ, ବଳିଷ୍ଠ ଓ ଛନ୍ଦୋମୟ । ଭାବି ଦେଖ, ଲକ୍ଷଲକ୍ଷ ଲୋକଙ୍କ ଉପରେ 'କ୍ରୁଶ' ପ୍ରତୀକଟିର କି ଆଶ୍ଚର୍ଯ୍ୟକର ପ୍ରଭାବ ! ଅର୍ଦ୍ଧଚନ୍ଦ୍ର ରୂପ ପ୍ରତୀକଟିର କଥା ଏବେ ଧର । ଏହି ପ୍ରତୀକଟିର ଯେ କି ଆକର୍ଷଣୀ ଶକ୍ତି, ସେ କଥା ଚିନ୍ତା କରି ଦେଖ । ପୃଥିବୀରେ ସର୍ବତ୍ର ହିଁ ସୁନ୍ଦର ଓ ଚମତ୍କାର ପ୍ରତୀକମାନ ରହିଛି । ଏହି ପ୍ରତୀକଗୁଡ଼ିକ ଭାବ ପ୍ରକାଶ କରନ୍ତି—ଏବଂ କେତେକ ଆମ ମନରେ ବିଶେଷ ମାନସିକ ଅବସ୍ଥାର ସୃଷ୍ଟି କରନ୍ତି । ସଚରାଚର ପ୍ରତୀକଗୁଡ଼ିକ ବିଶ୍ୱାସ ଓ ପ୍ରେମର ପ୍ରଚଣ୍ଡ ଶକ୍ତି ସ୍ଫୁରଣ କରିଥାନ୍ତି ।

ପ୍ରୋଟେଷ୍ଟାଣ୍ଟମାନଙ୍କ ସହିତ କାଥୋଲିକ୍‌ମାନଙ୍କର ତୁଳନା କରି ଦେଖ । ବିଗତ ଚାରିଶହ ବର୍ଷ ମଧ୍ୟରେ ଏହି ଦୁଇଟି ସମ୍ପ୍ରଦାୟ ମଧ୍ୟରୁ କେଉଁ ସମ୍ପ୍ରଦାୟରେ ଭଲ ଅଧିକ-ସଂଖ୍ୟକ ସାଧକ ଆଉ ଶହୀଦ ଜନ୍ମଗ୍ରହଣ କରିଛନ୍ତି ? କାଥୋଲିକମାନଙ୍କର ଧର୍ମାନୁଷ୍ଠାନର ଅଙ୍ଗୀଭୂତ ଆଲୋକ, ଧୂପଧୂଆଁ, ମହମବତୀ ଏବଂ ଯାଜକମାନଙ୍କର ପୋଷାକ ପ୍ରଭୃତିର ଗୋଟାଏ ନିଜସ୍ୱ ପ୍ରଭାବ ରହିଛି । ପ୍ରୋଟେଷ୍ଟାଣ୍ଟ ଧର୍ମ ଅତି ଶୁଷ୍କ ଏବଂ ଗଦ୍ୟମୟ । ପ୍ରୋଟେଷ୍ଟାଣ୍ଟମାନେ ଅନେକ ବିଷୟରେ ଜୟଯୁକ୍ତ ହୋଇଛନ୍ତି, କେତୋଟି ବିଷୟରେ ମଧ୍ୟ କାଥୋଲିକମାନଙ୍କ ଅପେକ୍ଷା ଅଧିକ ପରିମାଣରେ ସ୍ୱାଧୀନତା ଦେଇଛନ୍ତି, ସୁତରାଂ ସେମାନଙ୍କ ଧାରଣାଗୁଡ଼ିକ ସ୍ପଷ୍ଟତର ଏବଂ ଅଧିକତର ବ୍ୟକ୍ତି-ସ୍ୱାତନ୍ତ୍ର୍ୟ-ଭିତ୍ତିକ । ଏହି ପର୍ଯ୍ୟନ୍ତ ଠିକ୍ ରହିଲେ ବି ସେମାନେ ଅନେକ କିଛି ହରାଇଛନ୍ତି ମଧ୍ୟ । ...ଗୀର୍ଜା ଭିତରର୍ ଚିହ୍ନଗୁଡ଼ିକର କଥା

ଏବେ ଧରିଯାଉ । ଏଗୁଡ଼ିକ ହେଲା କବିତ୍ୱ-ଶକ୍ତିକୁ ଛାପ ଦେବାର ଗୋଟିଏ ପ୍ରଚେଷ୍ଟା; କବିତାର ଯଦି ପ୍ରୟୋଜନ ଥାଏ, ତା'ହେଲେ ଆମେ କାହିଁକି ସେଗୁଡ଼ିକୁ ଗ୍ରହଣ କରିବା ନାହିଁ ? ଅନ୍ତରାତ୍ମା ଯାହା ଚାହୁଁଛି, ତାହା ଆମେ ଅନ୍ତରାତ୍ମାକୁ ନ ଦେବା କାହିଁକି ? ଆମ-ମାନଙ୍କୁ ସଙ୍ଗୀତ ମଧ୍ୟ ଗ୍ରହଣ କରିବାକୁ ହେବ । ପ୍ରେସ୍‌ବିଟେରିଆନ୍‌ମାନେ ପୁଣି ସଙ୍ଗୀତର ମଧ୍ୟ ବିରୋଧୀ । ଖ୍ରୀଷ୍ଟିଆନ ମାନଙ୍କ ଭିତରେ ସତେକି ଏମାନେ ମୁସଲମାନ । ସମସ୍ତ କବିତା ଧ୍ୱଂସ ହେଉ ! ସମସ୍ତ ଅନୁଷ୍ଠାନ ବିଲୁପ୍ତ ହେଉ ! ତା'ପରେ ସେମାନେ ଯେଉଁ ସଙ୍ଗୀତ ସୃଷ୍ଟି କରନ୍ତି, ତାହା ଇନ୍ଦ୍ରିୟ ଉପରେ ପ୍ରଭାବ ବିସ୍ତାର କରେ । ମୁଁ ଦେଖିଛି, କିପରି ସେମାନେ ବକ୍ତୃତା-ମଞ୍ଚ ଉପରେ ଆଲୋକ ପାଇଁ ସମବେତ ଭାବେ ଚେଷ୍ଟା କରନ୍ତି ।

ବହିର୍ଜଗତରେ ରୂପାୟିତ କବିତାରେ ଓ ଧର୍ମରେ ଅନ୍ତଃକରଣ ପୂର୍ତ୍ତି ହେଉ । କାହିଁକି ନ ହେବ ? ତୁମେ ବାହ୍ୟ-ଉପାସନାର ବିରୁଦ୍ଧାଚରଣ କରିପାରିବ ନାହିଁ । ବାରମ୍ବାର ଏହା ସମାଜରେ ଜୟଲାଭ କରିବ । ···କାଥୋଲିକ୍‌ମାନେ ଯାହା କରନ୍ତି, ତାହା ଯଦି ତୁମର ରୁଚି-ସମ୍ମତ ନ ହୁଏ, ତେବେ ଏହା ଅପେକ୍ଷା ଭଲ ଯଦି କିଛି ପାରୁଛ କର । କିନ୍ତୁ ଆମେ ଆଉ ଅଧିକା ଭଲ କିଛି କରିପାରିବୁ ନାହିଁ । ଅଥଚ ଯେଉଁ କବିତ୍ୱ ପୂର୍ବରୁ ବିଦ୍ୟମାନ, ତାହା ମଧ୍ୟ ଗ୍ରହଣ କରିବୁ ନାହିଁ—ଏହା ଗୋଟିଏ ଭୟଙ୍କର ଅବସ୍ଥା । ଜୀବନରେ କବିତାର ବହୁତ ପ୍ରୟୋଜନ ରହିଛି । ତୁମେ ପୃଥିବୀରେ ଜଣେ ଶ୍ରେଷ୍ଠ ଦାର୍ଶନିକ ହୋଇପାର; କିନ୍ତୁ ଦର୍ଶନଶାସ୍ତ୍ର ଜଗତର ଶ୍ରେଷ୍ଠ କାବ୍ୟ । ଏହା ଶୁଷ୍କ ଅସ୍ଥି ନୁହେଁ, ଏହା ସମସ୍ତ ବସ୍ତୁର ସାର । ଯାହା ନିତ୍ୟ ସତ୍ତା, ତାହା ଦ୍ୱୈତଭାବାପନ୍ନ ଯେକୌଣସି ବସ୍ତୁ ଅପେକ୍ଷା ଅଧିକତର କବିତ୍ୱପୂର୍ଣ୍ଣ ।

ପାଣ୍ଡିତ୍ୟର ସ୍ଥାନ ନାହିଁ । ଅଧିକାଂଶଙ୍କ କ୍ଷେତ୍ରରେ ପାଣ୍ଡିତ୍ୟ ସାଧନାପଥରେ ବାଧା ହୋଇ ଠିଆ ହୁଏ । ଜଣେ ପୃଥିବୀର ସମସ୍ତ ଗ୍ରନ୍ଥାଗାରର ଯାବତୀୟ ପୁସ୍ତକ ପଢ଼ି ମଧ୍ୟ ଆଦୌ ଧାର୍ମିକ ନ ହୋଇପାରେ; ଆଉ ଜଣେ ହୁଏତ ନିରକ୍ଷର ହୋଇ ମଧ୍ୟ ପ୍ରତ୍ୟକ୍ଷଭାବେ ଧର୍ମକୁ ଅନୁଭବ କରିବାରେ ସମର୍ଥ ହୋଇଥାଏ । ମନର ପ୍ରତ୍ୟକ୍ଷ ଅନୁଭୂତିରେ ହିଁ ସମଗ୍ର ଧର୍ମ ନିହିତ । ମୁଁ ଯେତେବେଳେ 'ମନୁଷ୍ୟତ୍ୱ ଲାଭର ବା ମଣିଷ ଗଢ଼ିବାର ଧର୍ମ'—ଏହି ଶବ୍ଦ କେତୋଟି ବ୍ୟବହାର କରେ, ସେତେବେଳେ ମୁଁ ଏଗୁଡିକଦ୍ୱାରା କୌଣସି ପୁସ୍ତକ, ଅନୁଶାସନ ବା ମତବାଦର କଥା ବୁଝେ ନାହିଁ । ଯେଉଁ ବ୍ୟକ୍ତି ସେହି ଅନନ୍ତ ସତ୍ତାର ଏତେ ସାମାନ୍ୟ ବି ତାହାର ଅନ୍ତରରେ ଅନୁଭବ କରିଛି ବା ଧାରଣା କରିଛି, ମୁଁ ତାହାର କଥା ହିଁ କହୁଛି ।

ମୁଁ ସାରାଜୀବନ ଯାହାଙ୍କ ପାଦତଳେ ବସି ଶିକ୍ଷାଲାଭ କରିଛି, ଯାହାଙ୍କର କେତୋଟି ମାତ୍ର ଭାବ ଶିକ୍ଷା ଦେବାକୁ ଚେଷ୍ଟା କରିଛି, ସେ ତ କୌଣସି ପ୍ରକାରେ ନିଜର ନାମଟିକୁ ଦସ୍ତଖତ କରିବା ପର୍ଯ୍ୟନ୍ତ ବିଦ୍ୟା ଶିଖିଥିଲେ । ମୁଁ ସମଗ୍ର ପୃଥିବୀ ପରିଭ୍ରମଣ କରିଛି, କିନ୍ତୁ ସାରାଜୀବନରେ ମୁଁ ତାଙ୍କ ସଦୃଶ ଆଉ ଜଣେ ମାତ୍ର ଦେଖିଲି ନାହିଁ । ତାଙ୍କ ସମ୍ବନ୍ଧରେ ଭାବିଲେ ନିଜକୁ ନିର୍ବୋଧ ବୋଲି ମନେହୁଏ । କାରଣ ମୁଁ ବହି ପଢ଼ିବାକୁ ଚାହେଁ—କିନ୍ତୁ ସେ କେଉଁଦିନ ବହି ଖଣ୍ଡିଏ ପଢ଼ି ନାହାନ୍ତି । ଅନ୍ୟର ଉଚ୍ଛିଷ୍ଟ ସେ କେବେ ବି ଗ୍ରହଣ

କରିବାକୁ ଚାହିଁ ନାହାନ୍ତି—ଅର୍ଥାତ୍ ଅନ୍ୟର ଚିନ୍ତାଧାରାକୁ ସେ କୌଣସି ଦିନ ନକଲ କରିବାକୁ ଚେଷ୍ଟା କରି ନାହାନ୍ତି । ଏହି କାରଣରୁ ସେ ନିଜେ ହିଁ ନିଜର ବିଧି ଥିଲେ । ଜୀବନଟା ଯାକ ଜ୍ୟାକ୍ (Jack) କ'ଣ କହିଲା, ଜନ୍ (John) କ'ଣ କହିଲା, ମୁଁ ସେଇ କଥା ହିଁ କହି ଆସିଛି—ନିଜେ କିଛି କହିଲି ନାହିଁ । ଜନ୍ ପଚିଶିବର୍ଷ ପୂର୍ବେ ଏବଂ ଜ୍ୟାକ୍ ପାଞ୍ଚବର୍ଷ ପୂର୍ବେ ଯାହା ସବୁ କହିଛନ୍ତି, ତାହା ଜାଣି ଭଲା ତୁମର କି ଲାଭ ହୋଇଛି ? ତୁମର ନିଜର କଣ କହିବାକୁ ଅଛି ସେ କଥା କହ ।

ମନେ ରଖିଥାଅ ଯେ, ପାଣ୍ଡିତ୍ୟର କୌଣସି ମୂଲ୍ୟ ନାହିଁ । ପାଣ୍ଡିତ୍ୟ ସମ୍ବନ୍ଧରେ ତୁମ ସମସ୍ତଙ୍କର ଧାରଣା ଭୁଲ । ମନକୁ ବଳିଷ୍ଠ ଓ ସୁନିୟନ୍ତ୍ରିତ କରିବା ଭିତରେ ହିଁ ଜ୍ଞାନର ଏକମାତ୍ର ମୂଲ୍ୟ ନିହିତ । ମୁଁ ଅବାକ୍ ହେଉଛି ଏଇଆ ଭାବି ଯେ, ଅନନ୍ତକାଳ ଧରି ଏହିସବୁ ଗିଳିବାଦ୍ୱାରା ଆମମାନଙ୍କର ବଦ୍‌ହଜମ କିପରି ହେଉ ନାହିଁ ? ଆମମାନଙ୍କର ଏହିଠାରେ ବନ୍ଦକରି ଯାବତୀୟ ପୁସ୍ତକ ପୋଡ଼ିଦେବା ଉଚିତ ଏବଂ ନିଜନିଜର ଅନ୍ତର ଭିତରେ ଚିନ୍ତା କରିବା ଉଚିତ । ତୁମେମାନେ ଅନେକ କଥା ଅନେକ ବିଷୟରେ କହିଥାଅ ଏବଂ ତୁମମାନଙ୍କର 'ବ୍ୟକ୍ତି-ସ୍ୱାତନ୍ତ୍ର୍ୟ'କୁ ହରାଇବାର ଆଶଙ୍କାରେ ଚଞ୍ଚଳ ହୋଇଉଠ । ଏହି ଅନ୍ତହୀନ ଗଳାଧଃକରଣଦ୍ୱାରା ପ୍ରତି ମୁହୂର୍ତ୍ତରେ ହିଁ ତୁମେ ବ୍ୟକ୍ତିତ୍ୱ ହରାଉଛ । ମୁଁ ଯାହା ଶିକ୍ଷା ଦେଉଛି, ତାହା ଯଦି ତୁମମାନଙ୍କ ମଧ୍ୟରେ କେହି କେବଳ ବିଶ୍ୱାସ କରିଯାଉଥାଏ, ତା'ହେଲେ ମୁଁ ଦୁଃଖିତ ହେବି । ତୁମମାନଙ୍କ ମଧ୍ୟରେ ଯଦି ସ୍ୱାଧୀନ ଚିନ୍ତାଶକ୍ତି ଉଦ୍ଦୀପିତ କରିପାରେ, ତା'ହେଲେ ଯାଇ ମୁଁ ବିଶେଷ ଆନନ୍ଦିତ ହେବି । ମୋର ଉଦ୍ଦେଶ୍ୟ, ନରନାରୀଙ୍କୁ କହିବା, ମେଘମାଳାକୁ ନୁହେଁ । 'ନରନାରୀ' କହିଲେ ମୁଁ 'ମଣିଷ'କୁ ବୁଝେ । ତୁମେମାନେ ଏମିତି କ୍ଷୁଦ୍ର ମଣିଷ ନୁହଁ ଯେ, ବାଟରୁ ଏଣ୍ଡୁଡେଣ୍ଡୁ ମଇଳା ମାଟି ପଥର ଗୋଟାଇ ଆଣି ପିତୁଳା ତିଆରି କରିବ ।

ଏହି ଜଗତ ହେଉଛି ଗୋଟିଏ ଶିକ୍ଷାର ସ୍ଥାନ । ମଣିଷ ଏହି ବିଶ୍ୱବିଦ୍ୟାଳୟରେ ପ୍ରବେଶ କରିଛି । ମିଷ୍ଟର ବ୍ଲାଙ୍କ୍ ଯାହା ସବୁ କହିଛନ୍ତି, ତାହା ସେ ସବୁ ଜାଣେ । କିନ୍ତୁ ମିଷ୍ଟର ବ୍ଲାଙ୍କ୍ କିଛି କହି ନାହାନ୍ତି । ନିଜ ଖୁସିରେ କାର୍ଯ୍ୟ କରିବାର କ୍ଷମତା ଥିଲେ ମୁଁ ଅଧ୍ୟାପକଙ୍କୁ କହିଥାନ୍ତି—"ବାହାରକୁ ଯାଆନ୍ତୁ । ଆପଣଙ୍କର କିଛି ପ୍ରୟୋଜନ ନାହିଁ ।" ଏହି ବ୍ୟକ୍ତିସ୍ୱାତନ୍ତ୍ର୍ୟବୋଧକୁ ଯେକୌଣସି ଉପାୟରେ ମନେରଖ । ତୁମର ଚିନ୍ତା ଯଦି ଭୁଲ ହୁଏ, ତୁମେ ସତ୍ୟ ଲାଭ କଲ କି ନ କଲ, ସେଥିରେ କିଛି ଯାଏ ଆସେ ନାହିଁ । ମୂଳ କଥାଟି ହେଲା—ମନକୁ ନିୟନ୍ତ୍ରିତ କରିବା । ଯେଉଁ ସତ୍ୟ ତୁମେ ଅପର ନିକଟରୁ ନେଇ ଗିଳିବ, ତାହା ତୁମର ନିଜସ୍ୱ ହେବ ନାହିଁ । ମୋ ମୁହଁରୁ ସତ୍ୟ ଶୁଣି ତାହା ତୁମେ ଶିକ୍ଷା ଦେଇପାରିବ ନାହିଁ ଏବଂ ମୋ ମୁହଁରୁ ପୁଣି ମଧ୍ୟ କୌଣସି ସତ୍ୟ ତୁମେ ଶିଖିପାରିବ ନାହିଁ । କେହି କାହାକୁ ମଧ୍ୟ ଶିଖାଇ ପାରେ ନାହିଁ । ସତ୍ୟକୁ ନିଜେ ନିଜେ ଅନୁଭବ କରି ନିଜର ପ୍ରକୃତି ଅନୁଯାୟୀ ତାକୁ କାର୍ଯ୍ୟରେ ପରିଣତ କରିବାକୁ ହେବ । ନିଜ ଗୋଡ଼ରେ ଠିଆ ହୋଇ, ନିଜେ ଚିନ୍ତା କରି, ନିଜେ ଆତ୍ମାକୁ ଉପଲବ୍ଧି କରି, ସମସ୍ତଙ୍କୁ ଶକ୍ତିମାନ ହେବାକୁ

ହେବ । କାରାଗାରରେ ଆବଦ୍ଧ ସୈନିକମାନଙ୍କ ଭଳି ଏକ ସଙ୍ଗରେ ଉଠିବା, ଏକ ସଙ୍ଗରେ ବସିବା, ଏକା ପ୍ରକାର ଖାଦ୍ୟ ଖାଇବା, ଏକା ସାଙ୍ଗରେ ମୁଣ୍ଡ ହଲାଇ ଅନ୍ୟର ପ୍ରସ୍ତୁତ ମତବାଦ ଗଳାଧଃକରଣ କରିବା ଇତ୍ୟାଦିରେ କୌଣସି ଫଳ ନାହିଁ । ବୈଚିତ୍ର୍ୟ ହିଁ ଜୀବନର ଲକ୍ଷଣ । ସମତା (ବିନା ଚିନ୍ତାରେ ଏକାଭଳି ଚିନ୍ତା କରିବା) ହେଉଛି ମୃତ୍ୟୁର ଲକ୍ଷଣ ।

ଥରେ ଗୋଟିଏ ଭାରତୀୟ ସହରରେ ଅବସ୍ଥାନ କରୁଥିଲାବେଳେ, ଜଣେ ବୃଦ୍ଧ ମୋ ନିକଟକୁ ଆସି କହିଲା—"ସ୍ୱାମୀଜୀ ! ମୋର ପଥ ନିର୍ଦ୍ଦେଶ କରିଦିଅନ୍ତୁ ।" ମୁଁ ଦେଖିଲି ଯେ ଲୋକଟି ମୋ ଆଗରେ ଥିବା ଟେବୁଲଟି ପରି ସଂପୂର୍ଣ୍ଣ ଜଡ଼ ହୋଇଯାଇଛି । ମାନସିକ ଓ ଆଧ୍ୟାତ୍ମିକଦିଗରୁ ତା'ର ପ୍ରାୟ ମୃତ୍ୟୁ ହୋଇଯାଇଥିଲା । ମୁଁ କହିଲି—"ତୁମକୁ ଯାହା ନିର୍ଦ୍ଦେଶ ଦେବି, ତାହା ପାଳନ କରିବ କି ? ତୁମେ ଚୋରିକରିପାରିବ ? ମଦ ଖାଇ-ପାରିବ ? ମାଂସ ଖାଇପାରିବ ?" ଲୋକଟି ଚିତ୍କାର କରି କହିଲା—"ଏସବୁ ଆପଣ ମୋତେ କି ଶିକ୍ଷା ଦେଉଛନ୍ତି ?" ମୁଁ ତାକୁ କହିଲି—"ଏହି କବାଟଟି ଭଲା କେବେ ଚୋରି କରିଛି ? ଏ କବାଟଟି କେବେ ମଦ ଖାଇଛି ?" ଲୋକଟି ଉତ୍ତର ଦେଲା—"ନା ମହାଶୟ !" ସେଇଥିପାଇଁ କହୁଛି—ମଣିଷ ହିଁ ଚୋରି କରେ, ମଦ ଖାଏ ଏବଂ ସେହି ମଣିଷ ହିଁ ଈଶ୍ୱରତ୍ୱ ଲାଭ କରେ ।

"ବନ୍ଧୁ ! ମୁଁ ଜାଣେ, ତୁମେ ଗୋଟାଏ କବାଟ ବା ଚଉକି ନୁହଁ । କିଛି ଗୋଟାଏ କର । କ'ଣ କିଛି ଗୋଟାଏ କର ।" ମୁଁ ଅନୁଭବ କରିଥିଲି—ଯଦି ସେ ଲୋକଟି ଚୋରି କରିଥାନ୍ତା, ତେବେ ତା'ର ଆତ୍ମା ମୁକ୍ତିପଥରେ ଅଗ୍ରସର ହୋଇଥାନ୍ତା । ତୁମ ଭିତରେ ଯେ ଗୋଟିଏ ବ୍ୟକ୍ତିତ୍ୱ ରହିଛି ତାହା ମୁଁ କିପରି ବୁଝିବି ? ତୁମେମାନେ ତ ଏକ ସଙ୍ଗରେ ଉଠ, ଏକ ସଙ୍ଗରେ ବସ ଏବଂ ଗୋଟିଏ କଥା ହିଁ କୁହ । ଜାଣିଥାଅ—ଏହା ମୃତ୍ୟୁର ପଥ । ତୁମ୍ଭମାନଙ୍କ ଆତ୍ମା ପାଇଁ କିଛି କର । ଯଦି ଇଚ୍ଛା ହୁଏ, ତେବେ ଅନ୍ୟାୟ ମଧ୍ୟ କର । କିଛି ଗୋଟାଏ କିନ୍ତୁ କର । ମୋତେ ବର୍ତ୍ତମାନ ତୁମେ ବୁଝି ନ ପାରିଲେ ବି କ୍ରମେ ନିଶ୍ଚୟ ବୁଝି ପାରିବ । ଆତ୍ମା ଯେତେ କି ବାର୍ଦ୍ଧକ୍ୟଗ୍ରସ୍ତ ହୋଇପଡ଼ିଛି, ସେତେକି ଆତ୍ମା ଉପରେ କଳଙ୍କି ଲାଗି ଯାଇଛି ! ଆତ୍ମା ଉପରୁ ଏହି କଳଙ୍କିକୁ ଘସିମାଜି ଛଡ଼ାଇବାକୁ ପଡ଼ିବ । ତା'ହେଲେ ଯାଇ ଆମେ ଅଗ୍ରସର ହୋଇପାରିବା । ଜଗତରେ ଏତେ ଅନ୍ୟାୟ କାହିଁକି, ସେ କଥା ତୁମେ ବର୍ତ୍ତମାନ ବୁଝିପାରିଛ । ଏହି କଳଙ୍କି ଲାଗିବାରୁ ନିଜକୁ ମୁକ୍ତ କରିବା ନିମିତ୍ତ ହିଁ ଘରକୁ ଫେରିଯାଇ ଏ ବିଷୟରେ ଚିନ୍ତା କର ।

ଆମେମାନେ ଜାଗତିକ ବସ୍ତୁ ଲାଗି ପ୍ରାର୍ଥନା କରିଥାଉଁ । କୌଣସି ଉଦ୍ଦେଶ୍ୟ-ସାଧନ ନିମିତ୍ତ ଆମେମାନେ ବ୍ୟବସାୟୀ-ବୁଦ୍ଧିରେ ଭଗବାନଙ୍କ ପୂଜା କରିଥାଉଁ । ଖାଇବା ଓ ପିନ୍ଧିବା ପାଇଁ ଆମେମାନେ ପ୍ରାର୍ଥନା କରୁ । ପୂଜା ଉତ୍ତମ । କିନ୍ତୁ ଆଦୌ କିଛି ନ କରିବାଠାରୁ କିଛି କରିବା ଭଲ । 'ନାହିଁ ମାମୁଁଠାରୁ କଣାମାମୁଁ ଭଲ ।' ଜଣେ ଖୁବ୍ ଧନବନ୍ତ ଯୁବକ ରୋଗାକ୍ରାନ୍ତ ହେଲା । ଆରୋଗ୍ୟ ଲାଭ କରିବାକୁ ସେ ଗରିବମାନଙ୍କୁ ଦାନ ଦେବା ଆରମ୍ଭ କଲା । ଏଭଳି ଦାନଦେବା ଭଲ କାର୍ଯ୍ୟ—କିନ୍ତୁ ଏହା ଧର୍ମ ନୁହଁ, ଆଧ୍ୟାତ୍ମିକତା ନୁହଁ—ଏହା

ଜାଗତିକ ବ୍ୟାପାର । କେଉଁଟା ଜାଗତିକ, ଅଉ କେଉଁଟା ଜାଗତିକ ନୁହେଁ ? ଯେତେବେଳେ ଉଦ୍ଦେଶ୍ୟଟି ଥାଏ ଇହଜୀବନ ଏବଂ ଭଗବାନଙ୍କୁ ସେହି ଉଦ୍ଦେଶ୍ୟ-ଲାଭର ଉପାୟ ରୂପେ ବ୍ୟବହାର କରାଯାଏ, ସେତେବେଳେ ତାହା ଜାଗତିକ । ପୁଣି ଯେଉଁଠି ଈଶ୍ୱର ଲାଭ ହିଁ ଉଦ୍ଦେଶ୍ୟ ଏବଂ ଜାଗତିକ ଜୀବନକୁ ସେହି ଲକ୍ଷ୍ୟରେ ପହଞ୍ଚିବାର ଉପାୟ ରୂପେ ବ୍ୟବହାର କରାଯାଏ, ସେହିଠାରେ ହିଁ ଆଧ୍ୟାତ୍ମିକ ଜୀବନର ଆରମ୍ଭ ହୋଇଥାଏ । ସୁତରାଂ ଯେଉଁ ବ୍ୟକ୍ତି ଏହି ଜାଗତିକ ଜୀବନରେ ପ୍ରାଚୁର୍ଯ୍ୟ କାମନା କରେ, ତାହା ନିକଟରେ ଏହି ଜୀବନର ସ୍ଥାୟିତ୍ୱ ତା'ର ଈପ୍ସିତ ସ୍ୱର୍ଗ ବୋଲି ବିବେଚିତ ହୁଏ । ସେ ପରଲୋକଗତ ବ୍ୟକ୍ତିମାନଙ୍କୁ ଦେଖିବାକୁ ଚାହେଁ ଏବଂ ସେମାନଙ୍କ ସହିତ ପୁନର୍ବାର ସୁଖରେ ଦିନ କଟାଇବାକୁ ଚାହେଁ ।

ଯେଉଁସବୁ ମହିଳା ପ୍ରେତାତ୍ମାମାନଙ୍କୁ ପାଖକୁ ଡାକିବାକୁ ଚେଷ୍ଟା କରନ୍ତି, ସେମାନଙ୍କ ମଧ୍ୟରେ ଜଣେ ଥିଲେ ମିଡିଅମ ବା ମାଧ୍ୟମ । ଦୀର୍ଘାକାର ଶରୀର, ତଥାପି ସେ ଥିଲେ ମାଧ୍ୟମ । ବେଶ୍ ! ଏହି ମହିଳା ମୋତେ ଖୁବ୍ ପସନ୍ଦ କରୁଥିଲେ ଏବଂ ତାଙ୍କ ପାଖକୁ ଯିବା ଲାଗି ଆମନ୍ତ୍ରଣ କରିଥିଲେ । ପ୍ରେତାତ୍ମାମାନେ ସମସ୍ତେ ମୋ ପ୍ରତି ବେଶ୍ ବିନମ୍ର ଥିଲେ । ମୋର ଅଦ୍ଭୁତ ଅଭିଜ୍ଞତା ହୋଇଥିଲା । ବୁଝିପାରୁଛ ତ—ଏହା ଥିଲା ପ୍ରେତଶକ୍ତି-ବାଦୀଙ୍କର ଏକ ମଧ୍ୟରାତ୍ରିର ବୈଠକ । ମାଧ୍ୟମଟି କହିଲା—"ମୁଁ ଏଠି ଜଣେ ପ୍ରେତକୁ ଠିଆ ହେବାର ଦେଖୁଛି । ପ୍ରେତ ମୋତେ କହୁଛି ଯେ, ଏହି ବେଞ୍ଚ୍ ଉପରେ ଜଣେ ହିନ୍ଦୁ ଭଦ୍ରଲୋକ ବସିଅଛନ୍ତି ।" ମୁଁ ହେଇଠୁ ଠିଆ ହୋଇପଡ଼ି କହିଲି—"ତୁମର ଏ ସତ୍ୟଟିକୁ ଉଦ୍‌ଘାଟନ କରିବା ପାଇଁ କୌଣସି ପ୍ରେତାତ୍ମାର ସାକ୍ଷ୍ୟ ପ୍ରୟୋଜନ ନାହିଁ ।"

ସେଠାରେ ଜଣେ ସୁଶିକ୍ଷିତ, ବୁଦ୍ଧିମାନ ଏବଂ ବିବାହିତ ଯୁବକ ଉପସ୍ଥିତ ଥିଲେ । ସେ ତାଙ୍କର ମାଆଙ୍କୁ (ମାଆଙ୍କର ପ୍ରେତାତ୍ମାକୁ) ଦେଖିବାକୁ ଆସିଥିଲେ । ମାଧ୍ୟମ କହିଲା—"ଅମୁକର ମାଆ ଏଠାକୁ ଆସିଛନ୍ତି ।" ଯୁବକଟି ତାଙ୍କ ମାଆଙ୍କ ସମ୍ବନ୍ଧରେ ମୋତେ ଆଗରୁ କହିଥିଲେ ଯେ, ତାଙ୍କ ମାଆ ମୃତ୍ୟୁବେଳକୁ ଖୁବ୍ କ୍ଷୀଣଦେହ ହୋଇପଡ଼ିଥିଲେ । କିନ୍ତୁ ପର୍ଦ୍ଦାର ଅନ୍ତରାଳରୁ ଯେଉଁ ମାଆ ବହିର୍ଗତ ହେଲେ, ତୁମେ ଯଦି ତାଙ୍କୁ ଦେଖିଥାନ୍ତ ! ଯୁବକଟି କ'ଣ କହିବେ, ସେ କଥା ଦେଖିବାକୁ ଇଚ୍ଛା କଲି । ମୁଁ କ'ଣ ଦେଖିଲି ଜାଣ ? ଯୁବକଟି ଛୁଟିଯାଇ ସେହି ପ୍ରେତାତ୍ମାକୁ ଆଲିଙ୍ଗନ କରି ଆବେଗବିହ୍ୱଳ କଣ୍ଠରେ କହିଲା—"ମା' ଗୋ ! ତୁମେ ପ୍ରେତଲୋକକୁ ଯାଇ ଅପରୂପ ହୋଇଉଠିଛ ।" ମୁଁ କହିଲି—"ମୁଁ ଏଠାରେ ଉପସ୍ଥିତ ଥିବାରୁ ଧନ୍ୟ ମନେକରୁଛି ।" ଏହିସବୁ ଘଟଣା ମନୁଷ୍ୟର ପ୍ରକୃତି ସମ୍ବନ୍ଧରେ ମୋର ଅନ୍ତର୍ଦୃଷ୍ଟି ଖୋଲିଦେଇଛି ।

ବାହ୍ୟ-ଉପାସନା ପ୍ରସଙ୍ଗରେ ଆହୁରି କିଛି କହୁଛି—ଇହଜୀବନ ଏବଂ ଜାଗତିକ ସୁଖକୁ ଲକ୍ଷ୍ୟରେ ରଖି ଈଶ୍ୱରଙ୍କର ଉପାସନା କରିବା ଅତି ନିମ୍ନସ୍ତରର ପୂଜା । ଅଧିକାଂଶ ଲୋକ ହିଁ ଦେହର ଏହି ମାଂସପିଣ୍ଡ ଏବଂ ଇନ୍ଦ୍ରିୟର ସୁଖ ଅପେକ୍ଷା ଉଚ୍ଚତର କୌଣସି ଚିନ୍ତା କରିପାରନ୍ତି ନାହିଁ । ଏହି ବିଚ୍ଚାରୀମାନେ ଏହି ଜୀବନରେ ହିଁ ଯେଉଁ ସୁଖର ସନ୍ଧାନ କରନ୍ତି, ସେ ସୁଖ ପାଶବସୁଖ । ସେମାନେ ପ୍ରାଣୀଖାଦକ । ସେମାନେ ସେମାନଙ୍କର ସନ୍ତାନସନ୍ତତି-

ମାନଙ୍କୁ ଭଲପାନ୍ତି । ଏତିକି କ'ଣ ମଣିଷର ସବୁ ଗୌରବ ? ଆମେମାନେ ପୁଣି ସର୍ବଶକ୍ତିମାନ୍ ଈଶ୍ବରଙ୍କୁ ପୂଜା କରୁ । କେଉଁଥିପାଇଁ ? କେବଳ ଏହିସବୁ ଜାଗତିକ ବସ୍ତୁ ପାଇବା ନିମିତ୍ତ ଏବଂ ସର୍ବଦା ଏହିଗୁଡ଼ିକୁ ରକ୍ଷା କରିବା ନିମିତ୍ତ । ଏହାର ଅର୍ଥ ଏହି ଯେ, ଆମେ ଏ ଯାବତ୍ ମଧ୍ୟ ପଶୁପକ୍ଷୀଙ୍କ ଜୀବନର ଊର୍ଦ୍ଧ୍ବକୁ ଉଠିପାରି ନାହୁଁ । ପଶୁପକ୍ଷୀଙ୍କ ଅପେକ୍ଷା ଆମେମାନେ ଆଦୌ ଉନ୍ନତତର ନୋହୁଁ । ଆମମାନଙ୍କୁ ଉନ୍ନତତର ଆଉ କିଛି ଜଣା ନାହିଁ । ଆମମାନଙ୍କୁ ସେଥିଲାଗି ଧିକ୍ ! ଆମେ ଆହୁରି ଉଚ୍ଚତର ଶିକ୍ଷା ପାଇବା ଉଚିତ । ପଶୁପକ୍ଷୀ ଓ ଆମମାନଙ୍କ ଭିତରେ ଏତିକି ପାର୍ଥକ୍ୟ ଯେ, ଆମଭଳି ସେମାନଙ୍କର ଈଶ୍ବର ବୋଲି କିଛି ନାହିଁ ।... ଅନ୍ୟାନ୍ୟ ପ୍ରାଣୀଙ୍କ ଭଳି ଆମର ବି ପାଞ୍ଚଟି ଇନ୍ଦ୍ରିୟ ଅଛି । କିନ୍ତୁ ସେମାନଙ୍କ ଇନ୍ଦ୍ରିୟଗୁଡ଼ିକ ଆହୁରି ତୀକ୍ଷ୍ଣ ! ଗୋଟିଏ କୁକୁର ଯେତିକି ତୃପ୍ତିର ସହିତ ଖଣ୍ଡିଏ ହାଡ଼ ଚୋବାଉଥାଏ, ଆମେ ଗୁଣ୍ଡାଏ ଅନ୍ନ ମଧ୍ୟ ସେତିକି ତୃପ୍ତିର ସହିତ ଖାଇପାରୁ ନାହିଁ । ଆମ ଅପେକ୍ଷା ସେମାନଙ୍କ ଜୀବନରେ ଆନନ୍ଦ ବେଶୀ । ସୁତରାଂ ଆମେ ପଶୁପକ୍ଷୀଙ୍କ ଠାରୁ ଗୋଟିଏ ଦିଗରୁ ନିଶ୍ଚୟ ନିକୃଷ୍ଟ ।

ତୁମେ କାହିଁକି ଏପରି କିଛି ହେବାକୁ ଚାହିଁବ, ଯେଉଁଥିରେ କି ପ୍ରକୃତିର କୌଣସି ଶକ୍ତି ତୁମ ଉପରେ ଅଧିକତର କାର୍ଯ୍ୟକାରୀ ହେବ ? ଏହା ଗୋଟିଏ ବିଶେଷ ଗୁରୁତ୍ବପୂର୍ଣ୍ଣ ଚିନ୍ତନୀୟ ବିଷୟ । କ'ଣ ତୁମମାନଙ୍କର କାମ୍ୟ ?—ଏହି ଜୀବନ, ଇନ୍ଦ୍ରିୟ ସୁଖ, ଏହି ଶରୀର, ଅଥବା ଅନନ୍ତଗୁଣରେ ମହତ୍ତ୍ବ ଏବଂ ଉଚ୍ଚତର କୌଣସି ବସ୍ତୁ ? କିମ୍ବା ଅନନ୍ତଗୁଣ ମହତ୍ ଏପରି ଗୋଟିଏ ଅବସ୍ଥା, ଯାହାର କୌଣସି ଚ୍ୟୁତି ନାହିଁ, ଯେଉଁଠି କିଛି ପରିବର୍ତ୍ତନ ନାହିଁ ?

ଅତଏବ ଏହାଦ୍ୱାରା କ'ଣ ପ୍ରମାଣିତ ହେଉଛି ? ତୁମେମାନେ କହୁଥାଅ—“ହେ ପ୍ରଭୁ ! ଅନ୍ନ ଦିଅ, ଅର୍ଥ ଦିଅ, ମୋର ରୋଗ ନିରାମୟ କର, ଏହା କର, ତାହା କର ।” ଯେତେବେଳେ ହିଁ ତୁମେମାନେ ଏହିଭଳି ପ୍ରାର୍ଥନା କର, ସେତେବେଳେ ତୁମେ ନିଜକୁ “ମୁଁ ଜଡ଼ବସ୍ତୁ ଓ ଜଡ଼ଜଗତ ହିଁ ମୋର ଲକ୍ଷ୍ୟ” ବୋଲି ଭାବ ସମ୍ମୋହିତ କରି ରଖିଥାଅ । ପ୍ରତ୍ୟେକ ଥର ହିଁ ଯେତେବେଳେ ତୁମେମାନେ ଜାଗତିକ ଅଭିଳାଷ ପୂରଣ ପାଇଁ ଉଦ୍ୟୋଗୀ ହୋଇଥାଅ, ସେତେଥର ତୁମେମାନେ କହୁଥାଅ—“ଆମେମାନେ ଜଡ଼ଦେହ ମାତ୍ର, ଆମେ ଆତ୍ମା ନୋହୁଁ ।”

ଈଶ୍ବରଙ୍କୁ ଧନ୍ୟବାଦ ଯେ, ଏଗୁଡ଼ିକ ସବୁ ସ୍ୱପ୍ନ ମାତ୍ର ! ଈଶ୍ବରଙ୍କୁ ଧନ୍ୟବାଦ ଯେ, ଏଗୁଡ଼ିକ ସବୁ ଅଦୃଶ୍ୟ ହୋଇଯିବେ । ଈଶ୍ବରଙ୍କୁ ଧନ୍ୟବାଦ ଯେ, ସୃଷ୍ଟିରେ ମୃତ୍ୟୁ—ସେହି ମହାନ୍ ମୃତ୍ୟୁ ରହିଛି, ଯାହା ସମସ୍ତ ଭ୍ରାନ୍ତି, ସମସ୍ତ ସ୍ୱପ୍ନ ଏବଂ ଏହି ଦେହବାଦିତା ଓ ଏହି ମର୍ମବେଦନାର ଅବସାନ ଘଟାଇଦିଏ । କୌଣସି ସ୍ୱପ୍ନ ଚିରସ୍ଥାୟୀ ହୋଇପାରେ ନାହିଁ— ଶୀଘ୍ର ହେଉ ବା ବିଳମ୍ବରେ ହେଉ, ଏହା ନିଶ୍ଚୟ ଦିନେ ଶେଷ ହେବ । ସ୍ୱପ୍ନକୁ ଚିରସ୍ଥାୟୀ କରିପାରେ—ଏଭଳି କେହି ନାହିଁ । ମୁଁ ଈଶ୍ବରଙ୍କୁ ଧନ୍ୟବାଦ ଦେଉଛି ଯେ, ସେ ଏହିରୂପ ବ୍ୟବସ୍ଥା କରିଛନ୍ତି । ତଥାପି ମଧ୍ୟ ମୁଁ କହିବି—ଏହି ପ୍ରକାର ଉପାସନାର ସାର୍ଥକତା ରହିଛି । ଏହି ଭାବରେ ଚାଲ । ଆଦୌ ପ୍ରାର୍ଥନା କରିବା ନ କରିବା ଅପେକ୍ଷା, କୌଣସି କିଛି ଲାଗି

ପ୍ରାର୍ଥନା କରିବା ଭଲ । ଏହି ସୋପାନଗୁଡ଼ିକୁ ଅତିକ୍ରମ କରି ଯିବାକୁ ହେବ । ଏଗୁଡ଼ିକ ପ୍ରାଥମିକ ଶିକ୍ଷା । ମନ କ୍ରମଶଃ ଇନ୍ଦ୍ରିୟ, ଦେହ ଏବଂ ଏହି ଜାଗତିକ ଭୋଗସୁଖର ଊର୍ଦ୍ଧ୍ୱରେ କୌଣସି ବିଷୟ ଚିନ୍ତା କରିବାକୁ ଆରମ୍ଭ କରେ ।

ମଣିଷ କିପରି ଏହା କରେ ? ପ୍ରଥମେ ମଣିଷ ଚିନ୍ତାଶୀଳ ହୁଏ । ତୁମେ ଯେତେବେଳେ କିଛି ଗୋଟାଏ ସମସ୍ୟା ଚିନ୍ତା କରୁଥାଅ, ସେତେବେଳେ ଚିନ୍ତାର ଏକ ଅପୂର୍ବ ଆନନ୍ଦ ଅନୁଭବ କରୁଥାଅ । ସେତେବେଳେ ଆଉ ଇନ୍ଦ୍ରିୟର ଭୋଗସୁଖ ବୋଲି କିଛି ନ ଥାଏ ।... ଏହି ଆନନ୍ଦ ହିଁ ମନୁଷ୍ୟକୁ ମନୁଷ୍ୟତ୍ୱ ଆଡ଼କୁ ନେଇଯାଏ । ଗୋଟିଏ ମହତ୍ ଭାବର ବିଷୟ ଚିନ୍ତା କର । ... ଚିନ୍ତା ଯେତେ ଗାଢ଼ ବା ଘନ ହେବ ଏବଂ ମନ ଯେତେ ସଂଯତ ହେବ, ତୁମର ମନରେ ଆଉ ଦେହର ବିଷୟ ଉଦିତ ହେବ ନାହିଁ । ତୁମ ଇନ୍ଦ୍ରିୟଗୁଡ଼ିକର କାର୍ଯ୍ୟ ବନ୍ଦ ହୋଇଯିବ । ସେତେବେଳେ ତୁମେ ସମସ୍ତପ୍ରକାର ଦେହଜ୍ଞାନର ଊର୍ଦ୍ଧ୍ୱକୁ ଚାଲିଯିବ । ସେତେବେଳେ ଯାହା କିଛି ଇନ୍ଦ୍ରିୟ ମାଧ୍ୟମରେ ପ୍ରକାଶିତ ହୋଇଥିଲା, ସବୁଗୁଡ଼ିକ ଏହି ଗୋଟିଏ ଭାବରେ କେନ୍ଦ୍ରୀଭୂତ ହୋଇଯିବ । ଠିକ୍ ସେହି ମୁହୂର୍ତ୍ତରେ ତୁମେ ପଶୁ ଅପେକ୍ଷା ଉନ୍ନତ । ସେହି ସମୟରେ ତୁମେ ଦେହାତୀତ ଏପରି ଏକ ଅନୁଭୂତି ଲାଭ କରିବ, ଏପରି ଏକ ପ୍ରତ୍ୟକ୍ଷ ଉପଲବ୍ଧି ତୁମେ ଲାଭ କରିବ, ଯାହାକୁ କେହି ତୁମ ନିକଟରୁ କାଢ଼ି ନେଇପାରିବ ନାହିଁ । ...ମନର ଲକ୍ଷ୍ୟ ସେହିଠାରେ—ଇନ୍ଦ୍ରିୟଗ୍ରାହ୍ୟ ଜଗତରେ ନୁହେଁ ।

ଏହି ଭାବରେ ଏହି ଇନ୍ଦ୍ରିୟଗ୍ରାହ୍ୟ ଜଗତରୁ ଆରମ୍ଭ କରି ତୁମେ ଅନ୍ୟ ଅନୁଭୂତିର ରାଜ୍ୟରେ ଆସ୍ତେ ଆସ୍ତେ ପ୍ରବେଶାଧିକାର ଲାଭ କରିବ । ସେତେବେଳେ ତୁମ ନିକଟରେ ଏହି ଜଗତ ବୋଲି ଆଉ କିଛି ରହିବ ନାହିଁ । ଯେତେବେଳେ ତୁମେ ସେହି ଆତ୍ମାର ସାମାନ୍ୟ ଆଭାସ ପାଇବ, ସେତେବେଳେ ତୁମର ଇନ୍ଦ୍ରିୟବୋଧ, ତୁମର ଭୋଗାକାଙ୍‌କ୍ଷା, ତୁମର ଦେହାସକ୍ତି ଚାଲିଯିବ । ଗୋଟିଗୋଟି ହୋଇ ସେହି ଭାବରାଜ୍ୟର ଆଭାସ ତୁମ ନିକଟରେ ଉଦ୍‌ଘାଟିତ ହୋଇଉଠିବ । ତୁମର ଯୋଗ ସଂପୂର୍ଣ୍ଣ ହେବ ଏବଂ ତୁମ ନିକଟରେ ଆତ୍ମା ଆତ୍ମାରୂପରେ ହିଁ ପ୍ରତିଭାତ ହେବେ । ସେତେବେଳେ ହିଁ ତୁମେ ଈଶ୍ୱରଙ୍କୁ ଆତ୍ମାରୂପରେ ଉପାସନା କରିବାକୁ ଆରମ୍ଭ କରିବ । ସେତେବେଳେ ହିଁ ତୁମେ ବୁଝିପାରିବ ଯେ, ଉପାସନା କୌଣସି ସ୍ୱାର୍ଥସାଧନ ପାଇଁ ନୁହେଁ । ଅନ୍ତରର ଅନ୍ତରରେ ଏହି ପୂଜା ଥିଲା ପ୍ରେମ, ଭଲପାଇବା—ଯାହା ଅସୀମ ହୋଇ ମଧ୍ୟ ସସୀମ; ଈଶ୍ୱରଙ୍କ ପାଦପଦ୍ମରେ ଏହା ଅନ୍ତରର ଚିରନ୍ତନ ଆତ୍ମନିବେଦନ—ସର୍ବସ୍ୱ-ଅର୍ପଣ । ସେହି ଅବସ୍ଥାରେ କେବଳ 'ତୁମେ'—'ମୁଁ' ଆଉ ନୁହେଁ । 'ମୁଁ' ସେତେବେଳେ ମୃତ—ସେଠାରେ କେବଳ 'ତୁମେ' ହିଁ ଅଛ, 'ମୁଁ' ଆଉ ନାହିଁ । ସେ ଅବସ୍ଥାରେ ମୁଁ ଧନ, ସୌନ୍ଦର୍ଯ୍ୟ, ଏପରିକି ପାଣ୍ଡିତ୍ୟ ବି କାମନା କରେ ନାହିଁ । ମୁଁ ମୁକ୍ତି ଚାହେଁ ନାହିଁ । ହେ ପ୍ରିୟତମ ! ଯଦି ତୁମର ଅଭିପ୍ରେତ ହୁଏ, ତେବେ କୋଡ଼ିଏ ହଜାର ଥର ମୁଁ ନର୍କକୁ ଯିବା ଲାଗି ପ୍ରସ୍ତୁତ ଅଛି । ମୁଁ କେବଳ ଗୋଟିଏ କଥା କାମନା କରୁଛି—ହେ ଈଶ୍ୱର ! ତୁମେ ମୋର ପ୍ରେମାସ୍ପଦ ହୁଅ ।

# ଉପାସକ ଓ ଉପାସ୍ୟ

[ ୧୯୦୦ ଖ୍ରୀଷ୍ଟାବ୍ଦ ଏପ୍ରିଲ ମାସ ନଅ ତାରିଖରେ ଆମେରିକାର ସାନ୍‌ଫ୍ରାନ୍‌ସିସ୍କୋ ସହରରେ ପ୍ରଦତ୍ତ ସ୍ୱାମୀଜୀଙ୍କ ପ୍ରବଚନ । ସାଙ୍କେତିକ ଲିପିକାର ଓ ଅନୁଲେଖିକା ଆଇଡ଼ା ଆନ୍‌ସେଲ ଯେଉଁଠାରେ ସ୍ୱାମୀଜୀଙ୍କ ବକ୍ତୃତାର କୌଣସି କଥା ବୁଝିପାରି ନାହାନ୍ତି, ସେଠାରେ ଏହିପରି ବିନ୍ଦୁବିନ୍ଦୁ ଚିହ୍ନ (···) ଦେଇଛନ୍ତି । ( ) ଏହିଭଳି ବନ୍ଧନୀର ମଧ୍ୟବର୍ତ୍ତୀ ଅଂଶତକ ଅନୁଲେଖିକାଙ୍କ ଦ୍ୱାରା ସ୍ୱାମୀଜୀଙ୍କ ବାକ୍ୟର ପରିପୂରକ ହିସାବରେ ରଖାଯାଇଛି । ]

ମାନବ-ପ୍ରକୃତିର ଯେଉଁ ଦିଗଟି ଅଧିକତର ବିଶ୍ଳେଷଣାତ୍ମକ, ଆମେମାନେ ତା'ର ଆଲୋଚନା କରିଥିଲୁ ।* ବର୍ତ୍ତମାନ ଆମେ ମଣିଷ-ପ୍ରକୃତିର ଆବେଗ-ପ୍ରଧାନ ଦିଗଟି ଦେଖିବା ।··· ପୂର୍ବଟି ମଣିଷକୁ ଏକ ସୀମାହୀନ ସତ୍ତାରୂପେ ଗ୍ରହଣ କରେ—ଗ୍ରହଣ କରେ ଏକ ନୈର୍ବ୍ୟକ୍ତିକ ତତ୍ତ୍ୱ ହିସାବରେ । ଅନ୍ୟଟିରେ ମଣିଷ ଗୋଟିଏ ସୀମାବଦ୍ଧ ଜୀବ ।··· ଆଖିରୁ ନିର୍ଗତ କେତେବୁନ୍ଦା ଲୁହ ବା କେତୋଟି ଦୀର୍ଘଶ୍ୱାସ ଲାଗି ପ୍ରଥମଟିର ଅପେକ୍ଷା କରିବାର ସମୟ ନାହିଁ । ଦ୍ୱିତୀୟଟି କିନ୍ତୁ ଏହି ଅଶ୍ରୁବିନ୍ଦୁକୁ ପୋଛି ନ ଦେଇ, ଏହି ବେଦନାର କ୍ଷତକୁ ଆରୋଗ୍ୟ ନ କରି ଅଗ୍ରସର ହୋଇପାରେ ନାହିଁ । ପ୍ରଥମଟି ବୃହତ୍—ଏତେ ବୃହତ୍ ଆଉ ଚମତ୍କାର ଯେ, ସମୟେ ସମୟେ ଏହି ବିସ୍ତୃତି ଆମମାନଙ୍କୁ ସ୍ତମ୍ଭିତ କରିଦିଏ । ଅପରଟି କିନ୍ତୁ ଅତି ସାଧାରଣ । ତା'ହେଲେ ବି ଖୁବ୍ ସୁନ୍ଦର ଏବଂ ଆମର ହୃଦୟଗ୍ରାହୀ । ପ୍ରଥମଟି ଆମକୁ ଏତେ ଉଚ୍ଚକୁ ନେଇଯାଏ ଯେ, ଆମର ଫୁସ୍‌ଫୁସ୍ ସତେକି ଫାଟିଯିବାର ଉପକ୍ରମ କରେ । ସେହି ବାୟୁମଣ୍ଡଳରେ ଆମେ ନିଃଶ୍ୱାସ ନେଇପାରୁ ନାହିଁ । ଅପରଟି, ଯେଉଁଠାରେ ଆମେ ରହିଛୁ, ଆମକୁ ସେହି ସ୍ଥାନରେ ହିଁ ରଖିଦିଏ ଏବଂ ଜୀବନର ନାନା ବିଷୟକୁ (ସୀମାଯୁକ୍ତ ଭାବେ) ଦେଖିବାର ଚେଷ୍ଟା କରେ । ପ୍ରଥମଟି ବୁଦ୍ଧିର ଦେଦୀପ୍ୟମାନ ସ୍ୱୀକୃତି ନ ଦେଖିଲା ପର୍ଯ୍ୟନ୍ତ କୌଣସି କିଛିକୁ ଗ୍ରହଣ କରେ ନାହିଁ । ଦ୍ୱିତୀୟଟି ତନ୍ତୁ ବିଶ୍ୱାସ ଉପରେ ଠିଆ ହୋଇଥାଏ । ଯାହା ସେ ଦେଖିପାରେ ନାହିଁ—ତାକୁ ସେ ମାନିନିଏ । ଦୁଇଟିଯାକର ପ୍ରୟୋଜନ ରହିଛି । ପକ୍ଷୀଟିଏ କେବେ ଗୋଟିଏ ଡେଣାରେ ଉଡ଼ିପାରେ ନାହିଁ ।

ଆମେ ଏପରି ମନୁଷ୍ୟ ଦେଖିବାକୁ ଚାହୁଁ—ଯେ କି ସାମଞ୍ଜସ୍ୟପୂର୍ଣ୍ଣ ଭାବରେ ଗଢ଼ି ଉଠିଛି ।··· ଉଦାରହୃଦୟ, ଉନ୍ନତମନା, କର୍ମନିପୁଣ ମଣିଷଟିଏ ଦେଖିବା ଆମର ଇଚ୍ଛା । ଏହିଭଳି ବ୍ୟକ୍ତିର ପ୍ରୟୋଜନ ରହିଛି, ଯାହାର ଅନ୍ତଃକରଣ ଜଗତର ଦୁଃଖକଷ୍ଟକୁ ତୀବ୍ର ଭାବରେ ଅନୁଭବ କରେ ।··· ଏବଂ ଆମେ ଏମିତି ମଣିଷ ଚାହୁଁ, ଯେ କି କେବଳ ଅନୁଭବ କରିପାରନ୍ତି ତାହା ନୁହେଁ, ବସ୍ତୁନିଚୟର ଅର୍ଥ ମଧ୍ୟ ଧରିପାରନ୍ତି; ପ୍ରକୃତି ଓ ବୁଦ୍ଧିର

* ଏଠାରେ ସ୍ୱାମୀଜୀ ପୂର୍ବେ ପ୍ରଦତ୍ତ 'ଏକାଗ୍ରତା' ଏବଂ 'ଧର୍ମର ରୂପାୟନ' ପ୍ରଭୃତି କେତୋଟି ବକ୍ତୃତାର କଥା ଉଲ୍ଲେଖ କରିଛନ୍ତି ।

ମର୍ମସ୍ଥଳରେ ଗଭୀର ଭାବେ ବୁଡ଼ିପାରନ୍ତି । ଆମେ ଏପରି ମଣିଷ ଚାହୁଁଛୁ, ଯେ କି କେବଳ ଅନୁଭବ କରି ବା ଜ୍ଞାନ ଅର୍ଜନ କରି ସେତିକିରେ କ୍ଷାନ୍ତ ହୁଏ ନାହିଁ, ତା'ର ସେହି ଅନୁଭବ ଓ ଜ୍ଞାନକୁ ବାସ୍ତବ କାର୍ଯ୍ୟରେ ରୂପାୟିତ କରିବାକୁ ଇଚ୍ଛୁକ ହୁଏ । ମସ୍ତିଷ୍କ, ହୃଦୟ ଓ ହାତ—ଏହି ତିନୋଟିର ଏହି ପ୍ରକାର ସମନ୍ୱୟ ଆମର କାମ୍ୟ । ଜଗତରେ ଅନେକ ଲୋକଶିକ୍ଷକ ଅଛନ୍ତି—କିନ୍ତୁ ତୁମେ ଦେଖିବ, ସେମାନଙ୍କ ଭିତରୁ ଅଧିକାଂଶ ହିଁ ଏକଦେଶ-ଦର୍ଶୀ । କାହାର ଦୃଷ୍ଟି ବୁଦ୍ଧିବୃତ୍ତିର ପ୍ରଖର ମଧ୍ୟାହ୍ନ-ସୂର୍ଯ୍ୟ ଉପରେ—ଆଉ କିଛି ତା'ର ଦୃଷ୍ଟିରେ ପଡ଼େ ନାହିଁ । ଆଉ ପୁଣି କିଏ ପ୍ରେମର ସୁମଧୁର ଗୀତ ଶୁଣିବାରେ ମୁଗ୍ଧ ହୋଇ ରହେ ଏବଂ ତା'ଛଡ଼ା ଆଉ କେଉଁ ଆଡ଼କୁ କାନ ଦିଏ ନାହିଁ । ଆଉ କେତେକ ଅଛନ୍ତି, ସେମାନେ ଦିନ ରାତି କେବଳ କାମକାର୍ଯ୍ୟରେ ହିଁ ମାତିଥାନ୍ତି, ଅନୁଭୂତି ବା ଚିନ୍ତା ପାଇଁ ସେମାନଙ୍କର ସମୟ ନାହିଁ । ଏପରି ଜଣେ ମହାପୁରୁଷ କାହିଁକି ଚାହୁଁ ନାହୁଁ—ଯେ କି ଯେପରି କର୍ମୀ, ସେହିପରି ଜ୍ଞାନୀ ଏବଂ ସେହି ଅନୁରୂପ ଜଣେ ଅନୁଭବୀ ପ୍ରେମିକ ? ଏହା କ'ଣ ଅସମ୍ଭବ ? ନିଶ୍ଚୟ ନୁହେଁ । ଭବିଷ୍ୟତର ମଣିଷ ହେବ ଏହି ପ୍ରକୃତିର । ବର୍ତ୍ତମାନକାଳରେ ଅବଶ୍ୟ ଅଳ୍ପ କେତେଜଣ ତଦ୍ରୂପ ମହାପୁରୁଷ ଅଛନ୍ତି । ଏମାନଙ୍କର ସଂଖ୍ୟା ମଧ୍ୟ ବଢ଼ି ଚାଲିବ ଏବଂ କ୍ରମଶଃ ପୃଥିବୀ ଏହି ଧରଣର ମଣିଷରେ ପୂର୍ଣ୍ଣ ହୋଇଯିବ ।

ମୁଁ ତୁମମାନଙ୍କୁ ଆଜି ପର୍ଯ୍ୟନ୍ତ ମେଧା ଓ ବିଚାର ସମ୍ବନ୍ଧରେ କହି ଆସିଛି । ସମଗ୍ର ବେଦାନ୍ତ ଆମେ ଶୁଣିଲୁ : ମାୟାର ଯବନିକା ତୁଟିଯାଏ—ଘନମେଘ ଅପସରି ଯାଇ ସୂର୍ଯ୍ୟାଲୋକ ଆମ ଉପରେ ଉଜ୍ଜ୍ୱଳ ହୋଇ ପଡ଼େ । ଏ ଯେପରି ହିମାଳୟର ଉତ୍ତୁଙ୍ଗଦେଶ ଅଧିରୋହଣର ଚେଷ୍ଟା । ମେଘରାଜ୍ୟର ଆରପାରିରେ ଯେଉଁ ଅଦୃଶ୍ୟ ଶୃଙ୍ଗଗୁଡ଼ିକ ରହିଛି, ସେଠାରେ ହିଁ ପହଞ୍ଚିବାକୁ ପଡ଼ିବ । ବର୍ତ୍ତମାନ ଆମେ ଅନ୍ୟ ଦିଗଟି ପର୍ଯ୍ୟବେକ୍ଷଣ କରିବାକୁ ଚାହୁଁ—ଅତି ସୁରମ୍ୟ ଉପତ୍ୟକାଗୁଡ଼ିକ—ପ୍ରକୃତିର ନୟନାଭିରାମ ସୌନ୍ଦର୍ଯ୍ୟ ! ଆମେ ଆଲୋଚନା କରିବା 'ପ୍ରେମ' କ'ଣ . କ'ଣ ସେହି 'ପ୍ରେମ'—ଯାହା ସଂସାରର ଏତେ ଜ୍ୱାଳାଯନ୍ତ୍ରଣା ସତ୍ତ୍ୱେ ଆମମାନଙ୍କୁ ଧରିରଖେ—ସେହି ପ୍ରେମ—ଯାହା ପାଇଁ ଆମେ ଦୁଃଖର ଶିକୁଳି ଗଢ଼ିଥାଉଁ । କଣ ସେହି ପ୍ରେମ, ଯାହା ପାଇଁ ମନୁଷ୍ୟ ଅନନ୍ତକାଳ ସ୍ୱେଚ୍ଛାରେ ବରଣ କରି ନେଇଛି ଆତ୍ମବଳିଦାନ ଏବଂ ସନ୍ତୁଷ୍ଟଚିତ୍ତରେ ସହ୍ୟ କରି ଚାଲିଛି ଏହାର କଷ୍ଟ ଯନ୍ତ୍ରଣା ? ସେହି ଅନନ୍ତ ଅନୁରାଗ, ଯାହା ପାଇଁ ମନୁଷ୍ୟ ନିଜ ହାତରେ ବନ୍ଧନର ବେଡ଼ି ଲଗାଇ ଦିଏ, ଦୁର୍ଗତି ଭୋଗ କରେ—ତାହା ହିଁ ବର୍ତ୍ତମାନ ଆମର ଅନୁସନ୍ଧାନର ବିଷୟ । ଅପରଟିକୁ ଯେ ଆମେ ଭୁଲିଯିବୁ, ତାହା ନୁହେଁ । ହିମାଳୟର ହିମପ୍ରବାହ କାଶ୍ମୀରର ଧାନ୍ୟକ୍ଷେତ ସହିତ ମିଳି ବସୁ । ବଜ୍ରର ଗୁରୁଗର୍ଜନ ସହିତ ମିଶିଯାଉ ପକ୍ଷୀର କାକଳି ।

ଯାହା କିଛି ଅତି ପରିପାଟୀଯୁକ୍ତ ଓ ମନୋହର, ସେହିସବୁକୁ ନେଇ ଆମର ବର୍ତ୍ତମାନ ଆଲୋଚନା । ପୂଜା-ପ୍ରବୃତ୍ତି ତ ସର୍ବଜନ ହିଁ ରହିଛି—ପ୍ରତ୍ୟେକ ଜୀବ ଭିତରେ ! ପ୍ରତ୍ୟେକେ ହିଁ ଭଗବାନଙ୍କୁ ଆରାଧନା କରନ୍ତି । ଯେଉଁ ନାମ ତାଙ୍କୁ ଦିଅ ନା କାହିଁକି, ସେହି ପରମପ୍ରଭୁ ହିଁ ସମସ୍ତଙ୍କର ପୂଜା ଗ୍ରହଣ କରୁଛନ୍ତି । ଏହି ପୃଥିବୀର ପଙ୍କ ଭିତରୁ

ଯେମିତ ସୁନ୍ଦର ପଦ୍ମଫୁଲର, ଯେମିତ ଜୀବନର ଆରମ୍ଭ, ଉପାସନାର ଆରମ୍ଭ ମଧ୍ୟ ସେହିପରି ।... ପ୍ରଥମେ ହୁଏତ କିଛି ଭୟର ଭାବ ଥାଏ, ପାର୍ଥିବ ଲାଭ ପାଇଁ ଆକାଙ୍କ୍ଷା ଥାଏ । ତାହା ଉପାସ୍ତିର ପୂଜା । ଏଗୁଡ଼ିକ ପୂଜାବୃତ୍ତିର ପ୍ରାରମ୍ଭିକ ସୋପାନ । ଈଶ୍ୱରଙ୍କୁ ଭଲପାଇବାରେ ଏବଂ ମଣିଷ ଭିତରେ ଭଗବାନଙ୍କ ଉପାସନା କରିବାରେ ଏହାର ଅବସାନ ହୁଏ ।

ଭଗବାନ ଅଛନ୍ତି କି ? ଏପରି ଜଣେ କିଏ ଅଛନ୍ତି କି, ଯାହାଙ୍କୁ ଭଲପାଇ ହୁଏ, ଏବଂ ଯେ ଆମର ଭଲପାଇବାକୁ ଗ୍ରହଣ କରିବା ପାଇଁ ସମର୍ଥ ? ପଥରକୁ ଭଲପାଇ ବେଶୀ କିଛି ଲାଭ ନାହିଁ । ଆମେ ତାକୁ ହିଁ ଭଲପାଉ, ଯେ ଆମର ଭଲପାଇବାକୁ ବୁଝି ପାରେ, ଯାହା ଆମର ଅନୁରାଗକୁ ଆକର୍ଷଣ କରିପାରେ । ଉପାସନା-କାଳରେ ବି ସେହି କଥା । ଆମର ଏହି ପୃଥିବୀରେ କେହି କେଣ୍ଡିଏ ପଥରକୁ ପଥର ଭାବି ପୂଜା କରିଥାଏ—ଏମିତ କଥା କହିବ ନାହିଁ । ସେ ଜାଣିତରେ ବା ଅଜାଣତରେ ଯେଉଁ ପଥରଟି ଭିତରେ ସେହି ସର୍ବବ୍ୟାପୀ ସତ୍ତାଙ୍କୁ ପୂଜା କରିଥାଏ ।

ଆମ ଭିତରେ ସେହି ବିଶ୍ୱପୁରୁଷ ରହିଛନ୍ତି—ଆମେ ତା'ର ସନ୍ଧାନ ପାଉ । କିନ୍ତୁ ସେ ଯଦି ଆମଠାରୁ ପୃଥକ୍ ନ ହୁଅନ୍ତି, ତେବେ ଆମେ କିଭଳି ତାଙ୍କର ଉପାସନା କରିବୁ ? ମୁଁ ତ କେବଳ 'ତୁମକୁ' ହିଁ ପୂଜା କରିପାରେ—'ମୋତେ' ନୁହଁ । କେବଳ 'ତୁମ' ନିକଟରେ ପ୍ରାର୍ଥନା କରିପାରେ, 'ମୋ' ପାଖରେ ନୁହଁ । 'ତୁମେ' ବୋଲି କିଏ ଅଛ କି ?

ଏକ ହିଁ ବହୁ ହୁଅନ୍ତି । ଆମେ ଯେତେବେଳେ 'ଏକ'କୁ ଦେଖୁ, ସେତେବେଳେ ମାୟାର ଆବରଣ ଦେଇ ପ୍ରତିବିମ୍ବିତ ଯାହା କିଛି ସଙ୍କୀର୍ଣ୍ଣ ସେସବୁ ଅଦୃଶ୍ୟ ହୋଇଯାନ୍ତି । କିନ୍ତୁ ବହୁତ୍ୱ ଯେ ଅର୍ଥହୀନ ନୁହେଁ, ଏହା ବି ସମ୍ପୂର୍ଣ୍ଣ ଠିକ୍ । 'ବହୁ'କୁ ଅବଲମ୍ବନ କରି ହିଁ ଆମେ 'ଏକ'ରେ ପହଞ୍ଚିପାରୁ ।...

ବ୍ୟକ୍ତି-ଈଶ୍ୱର (ଅବତାର-ବିଭୂତି ବା ଆଦିପୁରୁଷ) ବୋଲି କେହି ଅଛନ୍ତି କି—ଯେ କି ଈଶ୍ୱର ଚିନ୍ତା କରନ୍ତି, ବୁଝି ପାରନ୍ତି ? ଆମମାନଙ୍କୁ ଚାଳିତ କରନ୍ତି ? —ଅଛନ୍ତି ? ନିର୍ବିଶେଷ ଈଶ୍ୱରଙ୍କର ଏହିସବୁ ଗୁଣର କୌଣସିଟି ହିଁ ରହିପାରେ ନାହିଁ । ତୁମେମାନେ ପ୍ରତ୍ୟେକେ ହିଁ ଜଣେ ଜଣେ 'ବ୍ୟକ୍ତି' । ତୁମେ ଚିନ୍ତାକର, ପ୍ରେମକର, ଘୃଣାକର, ତୁମେ କ୍ରୁଦ୍ଧ ବା ଦୁଃଖିତ ହୁଅ ଇତ୍ୟାଦି···କିନ୍ତୁ ତା'ହେଲେ ବି ତୁମେ ହେଉଛ ନୈର୍ବ୍ୟକ୍ତିକ, ସୀମାହୀନ । ଏକାଧାରରେ ତୁମେ ସଗୁଣ ଓ ନିର୍ଗୁଣ । ବ୍ୟକ୍ତି ଓ ବ୍ୟକ୍ତିହୀନ—ଏହିପରି ଦୁଇଟି ଦିଗ ତୁମର ରହିଛି । ତୁମର ଏହି ନୈର୍ବ୍ୟକ୍ତିକ ସତ୍ତା କ୍ରୋଧ ପ୍ରକାଶ କରିପାରେ ନା —କିମ୍ବା ଦୁଃଖିତ ବା କ୍ଲିଷ୍ଟ ହୋଇପାରେ ନା, ଏପରିକି ଦୁଃଖକଷ୍ଟର ଚିନ୍ତା ମଧ୍ୟ କରିପାରେ ନା । ନୈର୍ବ୍ୟକ୍ତିକ ସତ୍ତା ଚିନ୍ତା ମଧ୍ୟ କରିପାରେ ନା—ଜାଣି ବି ପାରେ ନା । ଏହା ସ୍ୱୟଂ ଜ୍ଞାନ-ସ୍ୱରୂପ । ପକ୍ଷାନ୍ତରେ ବ୍ୟକ୍ତିସତ୍ତାର ଜ୍ଞାନ ଅଛି—ଚିନ୍ତା ଓ ମୃତ୍ୟୁ ମଧ୍ୟ ରହିଛି । ଯେ ସର୍ବଗତ ପରମ, ତା'ର ସ୍ୱଭାବତଃ ହିଁ ଦୁଇଟି ଦିଗ ରହିବାକୁ ବାଧ୍ୟ । ଗୋଟିଏ

ହେଲ—ବସ୍ତୁସମୂହର ଅନନ୍ତ ସତ୍ତାର ନିର୍ଣ୍ଣାୟକ—ଅପରଟି ତାହାର ବ୍ୟକ୍ତଭାବ—ଆମ ସମସ୍ତଙ୍କର ଆତ୍ମାର ଆତ୍ମା । ସେ ସକଳ ପ୍ରଭୁଙ୍କର ପ୍ରଭୁ । ସେ ହିଁ ଏହି ବିଶ୍ୱବ୍ରହ୍ମାଣ୍ଡ ସୃଷ୍ଟି କରିଛନ୍ତି—ତାଙ୍କର ନିର୍ଦ୍ଦେଶରେ ହିଁ ଏହା ବିଦ୍ୟମାନ ରହିଅଛି ।···

ସେହି ଅନନ୍ତ—ଚିରଶୁଦ୍ଧ, ଚିରମୁକ୍ତ... ସେ କିନ୍ତୁ ବିଚାରକ ନୁହନ୍ତି । ଭଗବାନ କେବେ ଜଣେ ବିଚାରପତି ହୋଇ ନ ପାରନ୍ତି । ସେ ସିଂହାସନ ଉପରେ ବସି ଭଲ ଓ ମନ୍ଦର ବିଚାର କରନ୍ତି ନାହିଁ ।··· ସେ ଶାସକ ନୁହନ୍ତି, ସେନାପତି ନୁହନ୍ତି, କିମ୍ବା ଅଧିନାୟକ ମଧ୍ୟ ନୁହନ୍ତି । ସେ ଅସୀମ କରୁଣାମୟ, ଅନନ୍ତ ପ୍ରେମମୟ, ସେ ହେଉଛନ୍ତି ସଗୁଣ ଈଶ୍ୱର ।

ଆଉ ଗୋଟିଏ ଦିଗରୁ ମଧ୍ୟ ଦେଖ । ତୁମ ଦେହର ପ୍ରତି ଜୀବକୋଷରେ ଗୋଟିଏ ଆତ୍ମା ରହିଛି, ଯାହା କି ଜୀବକୋଷଟି ସମ୍ବନ୍ଧରେ ସଚେତନ । ଏହା ଗୋଟିଏ ପୃଥକ୍ ବସ୍ତୁ । ଏହାର ନିଜସ୍ୱ ଗୋଟିଏ ଇଚ୍ଛା ଅଛି, କର୍ମକ୍ଷେତ୍ର ବି ଅଛି । ସମସ୍ତ ଜୀବକୋଷ ମିଶି ସମଗ୍ର ବ୍ୟକ୍ତିଟି ଗଠିତ । ଅନୁରୂପ ଭାବରେ ବିଶ୍ୱଜଗତର ସେ ସଗୁଣ ଈଶ୍ୱର ସେ ହେଉଛନ୍ତି ଏହି ସବୁ ବହୁବ୍ୟକ୍ତିର ସମଷ୍ଟି ।

ଆଉ ଗୋଟିଏ ଦିଗରୁ ମଧ୍ୟ ବିଚାର କରାଯାଇପାରେ । ତୁମେ—(ଅର୍ଥାତ୍ ମୁଁ ଯେପରି ତୁମକୁ ଦେଖେ)—ହେଲେ ତୁମର ପରମ ସତ୍ତାର ଯେଉଁତକ ମୋର ଦୃଷ୍ଟିରେ ସୀମାବଦ୍ଧ ହୋଇ ଅନୁଭୂତ ସେତକ । ମୁଁ ମୋର ଆଖି ଏବଂ ଇନ୍ଦ୍ରିୟମାନଙ୍କ ମାଧ୍ୟମରେ ତୁମକୁ ଦେଖିବି ବୋଲି ତୁମକୁ ମୁଁ ଖଣ୍ଡିତ କରି ପକାଇଛି । ତୁମର ଯେତିକ ମୋ ଆଖିରେ ଦେଖିବା ସମ୍ଭବ, ସେତିକ ମାତ୍ର ମୁଁ ଦେଖେ । ମୋର ମନ ତୁମର ଯେତିକ ଧାରଣା କରିପାରେ, ସେତିକ ମାତ୍ର ମୁଁ ତୁମକୁ ଧାରଣା କରିପାରେ—ତା'ଠାରୁ ଅଧିକ ନୁହେଁ । ଏହି ଭାବରେ ହିଁ ମୁଁ ସର୍ବଗତ ନୈର୍ବ୍ୟକ୍ତିକକୁ ଅନୁଶୀଳନ କରିବାକୁ ଯାଇ ତାଙ୍କୁ ସଗୁଣରୂପେ ଦେଖେ; ଯେତେବେଳ ଯାଏ ମୋର ଦେହ ଅଛି, ମନ ଅଛି, ସେତେବେଳଯାଏ ମୁଁ ସର୍ବଦା ଏହି ତ୍ରି-ସତ୍ତାକୁ ହିଁ ଦେଖେ – ଈଶ୍ୱର, ପ୍ରକୃତି ଏବଂ ଆତ୍ମା । ଏହି ତିନ ସତ୍ୟ ସର୍ବଦା ହିଁ ଗୋଟିଏ ଅବିଭାଜ୍ୟ ସତ୍ତାରେ ରହିବାକୁ ବାଧ୍ୟ··· ପ୍ରକୃତି ରହିଛି —ମାନବାତ୍ମାସମୂହ ରହିଛନ୍ତି; ଆଉ ମଧ୍ୟ ରହିଛନ୍ତି 'ସେ'—ଯାହାଙ୍କଠାରେ ପ୍ରକୃତି ଏବଂ ମାନବାତ୍ମାସମୂହ ଅବସ୍ଥିତ ।

ବିଶ୍ୱାତ୍ମା ଶରୀର ଧାରଣ କରିଛନ୍ତି । ମୋର ଆତ୍ମା ହେଲା ଈଶ୍ୱରଙ୍କର ଗୋଟିଏ ଅଂଶ । ଈଶ୍ୱର ଆମର ଚକ୍ଷୁର ଚକ୍ଷୁ—ପ୍ରାଣର ପ୍ରାଣ—ମନର ମନ—ଆତ୍ମାର ଆତ୍ମା । ଏହା ହିଁ ସଗୁଣ ଈଶ୍ୱରଙ୍କ ସମ୍ବନ୍ଧରେ ଆମର ଧାରଣା-ଯୋଗ୍ୟ ଉଚ୍ଚତମ ଆଦର୍ଶ ।

ତୁମେ ଯଦି ଦ୍ୱୈତବାଦୀ ନ ହୋଇ ଏକତ୍ୱବାଦୀ ହୁଅ, ତାହା ହେଲେ ବି ତୁମର ବ୍ୟକ୍ତ-ଈଶ୍ୱର ଥାଇ ପାରନ୍ତି ।··· ଏକ ଅଦ୍ୱିତୀୟ ରହିଛନ୍ତି । ସେହି 'ଏକ' ନିଜକୁ ଭଲ ପାଇବାକୁ ଚାହିଁଲେ । ସେହି କାରଣରୁ 'ଏକ'ରୁ ସେ ସୃଷ୍ଟି କଲେ 'ବହୁ'··· ବୃହତ୍ 'ମୁଁ'କୁ—ସତ୍ୟ 'ମୁଁ'କୁ କ୍ଷୁଦ୍ର 'ମୁଁ' ପୂଜା କରୁଛନ୍ତି । ଅତଏବ ସବୁ ମତରେ

'ବ୍ୟକ୍ତି-ଈଶ୍ୱର' ଗୃହୀତ ହୋଇପାରେ ।

କେହିକେହି ଏପରି ଅବସ୍ଥା ମଧ୍ୟରେ ଜନ୍ମଗ୍ରହଣ କରନ୍ତି ଯେ, ସେମାନେ ଅନ୍ୟ-ମାନଙ୍କ ଅପେକ୍ଷା ସୁଖୀ ହୁଅନ୍ତି । ନ୍ୟାୟପରାୟଣ କାହାର ରାଜତ୍ୱରେ ଏପରି କାହିଁକି ହେବ ? ପୃଥିବୀରେ 'ମୃତ୍ୟୁ' କାହିଁକି ରହିଛି ? ଏସବୁ କଠିନ ପ୍ରଶ୍ନ ଆମମାନଙ୍କ ମନରେ ଉଠିଥାଏ । ଏହି ସମସ୍ୟାଗୁଡ଼ିକର କେବେ ବି ସମାଧାନ ହୋଇନାହିଁ । କୌଣସି ଦ୍ୱୈତଭୂମିରୁ ଏଗୁଡ଼ିକର ମୀମାଂସା ହୋଇପାରେନା । ବସ୍ତୁସମୂହ ଯଥାର୍ଥରେ ଯେ ଯେମିତି ଭାବରେ ଅଛି, ଠିକ୍ ସେହି ଭାବରେ ହିଁ ଏଗୁଡ଼ିକୁ ଦେଖିବା ପାଇଁ ଆମକୁ ଦାର୍ଶନିକ ତତ୍ତ୍ୱର କ୍ଷେତ୍ରକୁ ଫେରିଯିବାକୁ ହେବ । ଆମେମାନେ ଆମ ନିଜ ନିଜର କର୍ମଫଳରୁ ହିଁ ବହୁ କଷ୍ଟ ଭୋଗୁଅଛୁ । ଏଥିପାଇଁ ଈଶ୍ୱର ଦାୟୀ ନୁହନ୍ତି । ଆମେ ଯାହା କରୁ, ତାହା ଆମର ହିଁ ଦୋଷ, ଅନ୍ୟ କାହାର ନୁହେଁ । ଈଶ୍ୱରଙ୍କୁ କାହିଁକି ଦୋଷାରୋପ କରିବା ?···

ଏ ପୃଥିବୀରେ ଅମଙ୍ଗଳ କାହିଁକି ରହିଛି ? ତୁମେ ଗୋଟିଏ ମାତ୍ର ଉପାୟରେ ଏହି ସମସ୍ୟାର ମୀମାଂସା କରିପାର । ସେଇଟି ହେଲା—ପ୍ରଥମେ ବୁଝିବାକୁ ହେବ ଯେ, ଈଶ୍ୱର ହିଁ ଭଲ ଓ ମନ୍ଦ ଏହି ଦୁଇଟିର କାରଣ । ସଗୁଣ ଈଶ୍ୱରବାଦର ଗୋଟିଏ ପ୍ରକାଣ୍ଡ ସମସ୍ୟା ହେଲା—ଯଦି କୁହ ଯେ, ଭଗବାନ କେବଳ ସତ୍, ସେ ଅସତ୍ ନୁହନ୍ତି— ତା'ହେଲେ ତୁମେ ନିଜେ ହିଁ ତୁମ ନିଜର ଯୁକ୍ତି-ଜାଲରେ ଅଟକି ରହିବ । କିପରି ଜାଣିଲ ଯେ, ମାତ୍ର ଜଣେ ବୋଲି ଭଗବାନ ଅଛନ୍ତି ? କୁହାଯାଏ ଯେ, ସେ ଏହି ବିଶ୍ୱଜଗତର ପିତା—ପୁଣି କୁହାଯାଏ ଯେ, ସେ ମଙ୍ଗଳମୟ । କିନ୍ତୁ ପୃଥିବୀରେ ଅମଙ୍ଗଳ ବି ତ ରହିଛି । ତା' ହେଲେ ସେ ଅମଙ୍ଗଳସ୍ୱରୂପ ବି ନ ହେବେ କାହିଁକି ? ·· ଏହି ହେଲା ସମସ୍ୟା ।

ଭଲ ବୋଲି କିଛି ନାହିଁ—ମନ୍ଦ ବି ନାହିଁ । ଅଛନ୍ତି କେବଳ ଭଗବାନ···ଭଲ କ'ଣ ? ତାହା ତୁମେ କିପରି ଜାଣ ? ତୁମେ ଏହା ନିଜେ ଅନୁଭବ କର । ମନ୍ଦ କଅଣ ? ଏହି ମନ୍ଦର ଜ୍ଞାନ ମଧ୍ୟ ତୁମର କିପରି ହୁଏ ? ଯଦି ମନ୍ଦ ଆସେ, ତୁମେ ଏହା ଅନୁଭବ କର । ·· ଆମର ଅନୁଭବଦ୍ୱାରା ଆମେ ଭଲ ଓ ମନ୍ଦକୁ ଜାଣିଥାଉ । ଏପରି କେହି ନାହିଁ, ଯେ କେବଳ ଭଲକୁ ଅନୁଭବ କରେ—ତାହାର ଅନୁଭୂତି କେବଳ ହିଁ ସୁଖକର । ଏପରି କେହି ମଧ୍ୟ ନାହିଁ, ଯେ କେବଳ ଅପ୍ରୀତିକର ଭାବଗୁଡ଼ିକୁ ହିଁ ଅନୁଭବ କରିଥାଏ ।···

ଅଭାବ ଓ ଉଦ୍‌ବେଗ ହିଁ ସକଳ ଦୁଃଖର କାରଣ, ସୁଖର ମଧ୍ୟ ସେହି କାରଣ । ଅଭାବ କଣ ବଢ଼ୁଛି ନା କମୁଛି ? ଜୀବନ କଣ ସହଜ ନା ଜଟିଳ ହେଉଛି ? ନିଶ୍ଚୟ ଜଟିଳ । ଅଭାବସମୂହ କ୍ରମାଗତ ବଢ଼ି ଚାଲିଛି । ଯେଉଁମାନେ ତୁମର ପ୍ରପିତାମହ ଥିଲେ, ସେମାନଙ୍କର ତୁମପରି ଏତେ ପୋଷାକ ବା ଅର୍ଥର ଦରକାର ନ ଥିଲା । ସେମାନଙ୍କର ବୈଦ୍ୟୁତିକ ଗାଡ଼ି ନ ଥିଲା, ସେମାନେ ରେଲରାସ୍ତା ବି ଦେଖି ନ ଥିଲେ ଏବଂ ଏଇଥିଲାଗି ହିଁ ସେମାନଙ୍କୁ କମ୍ ପରିଶ୍ରମ କରିବାକୁ ପଡ଼ୁଥିଲା । ଯେତେବେଳେ ଏହିସବୁ ଜିନିଷର ପ୍ରୟୋଜନ ପଡ଼ିଲା— ସଙ୍ଗେ ସଙ୍ଗେ ଅଭାବ ମଧ୍ୟ ଘୋଟି ଆସିଲା—ପରିଶ୍ରମ ମଧ୍ୟ ବଢ଼ିଗଲା । ଆକାଙ୍‌କ୍ଷା ଯେତିକି ବଢ଼ିଲା—ପ୍ରତିଯୋଗିତା ମଧ୍ୟ ସେତିକି ବଢ଼ିଗଲା ।

ଅର୍ଥସଂଗ୍ରହ ଖୁବ୍ ଶ୍ରମସାଧ୍ୟ । ପୁଣି ଅର୍ଥକୁ ରକ୍ଷା କରିବା ଆହୁରି କଠିନ କାର୍ଯ୍ୟ । କିନ୍ତୁ ଧନସଞ୍ଚୟ କରିବା ଲାଗି ତୁମମାନଙ୍କୁ ସାରା ପୃଥିବୀ ସହିତ ଯୁଦ୍ଧ କରିବାକୁ ହେବ— ଏବଂ ଏହାକୁ ରକ୍ଷା କରିବା ଲାଗି ସମଗ୍ରଜୀବନ ବ୍ୟାପୀ ସଂଗ୍ରାମ ଚାଲୁରହିବ । ଅତଏବ, ଗରିବ ଅପେକ୍ଷା ଧନୀର ଦୁଶ୍ଚିନ୍ତା ବେଶୀ···ଏତିକି ତ ବ୍ୟାପାର !—

ଜଗତରେ ସବୁବେଳେ ହିଁ ଭଲ ଓ ମନ୍ଦ ରହିଛି । କେବେକେବେ ମନ୍ଦ ଭିତର ଦେଇ ଭଲ ଆସେ ସତ, କିନ୍ତୁ ଅନେକ ସମୟରେ ଭଲ ମଧ୍ୟ ମନ୍ଦ ହୋଇ ଠିଆ ହୁଏ । ଆମର ଇନ୍ଦ୍ରିୟଗୁଡ଼ିକ କୌଣସି ନା କୌଣସି ସମୟରେ ଅମଙ୍ଗଳ ସୃଷ୍ଟି କରେ । କୌଣସି ବ୍ୟକ୍ତି ମଦ୍ୟପାନ ଆରମ୍ଭ କରୁ । ପ୍ରଥମେ କିନ୍ତୁ ଖରାପ ହୁଏ ନାହିଁ । କିନ୍ତୁ ସେ ଯଦି କ୍ରମାଗତ ମଦ୍ୟପାନ କରିଚାଲେ, ତେବେ ତା'ର ଅନିଷ୍ଟ ହେବ ।··· କେହି ଜଣେ ଧନୀ ପିତାମାତାଙ୍କ ଘରେ ଜନ୍ମ ନେଲା; ବେଶ୍ ଭଲ । କିନ୍ତୁ ସେ ବୁଦ୍ଧିହୀନ ହେଲା—ଦେହରେ ବେଳେ ବା ସେ ତା'ର ଶରୀର କି ମସ୍ତିଷ୍କ ଖଟାଇଲା ନାହିଁ । ଏହା ହିଁ ଶୁଭରୁ ଅଶୁଭର ଉତ୍ପତ୍ତି । ପୁଣି, ଜୀବନ ପ୍ରତି ଆମର ଯେଉଁ ନିବିଡ଼ ଅନୁରାଗ, ସେ କଥା ବି ଚିନ୍ତା କର । ଆମେ କେତେ ତିଆ ତେଇଁ ଦଉଡ଼ାଧାପଡ଼ ନ କରୁ ! ଜୀବନଟା ତ କେତୋଟି ମାତ୍ର ମୁହୂର୍ତ୍ତକୁ ନେଇ ! କେତେ କଠୋର ପରିଶ୍ରମ କରୁ । ସମ୍ପୂର୍ଣ୍ଣ ଅସମର୍ଥ ଶିଶୁ ହୋଇ ଆମେ ଜନ୍ମିଛୁ । ସବୁ କଥା ବୁଝିବୁଝି ଆମର ବହୁ ସମୟ କଟିଯାଏ । ଅବଶେଷରେ ଷାଠିଏ ବା ସତୁରି ବର୍ଷ ବୟସରେ ଆମର ଆଖି ଖୋଲିବାକୁ ଆରମ୍ଭ କରେ—ଏବଂ ଠିକ୍ ସେତିକିବେଳେ ହିଁ ଆଦେଶ ଆସେ—"ବାହାରିଯାଅ !" (ମାନେ, ପୃଥିବୀରୁ ବିଦାୟ ନିଅ !) ଏଇ ତ ଅବସ୍ଥା !

ଆମେ ଦେଖୁଛୁ—ଭଲ ଓ ମନ୍ଦ ହେଲା ଆପେକ୍ଷିକ ଶବ୍ଦ । ଯାହା ମୋ ପକ୍ଷରେ ଭଲ, ତାହା ତୁମ ପକ୍ଷରେ ମନ୍ଦ । ମୋର ରାତିଭୋଜନରେ ଯାହା ସୁସ୍ୱାଦୁ ଖାଦ୍ୟ, ତୁମେ ଯଦି ତାହା ଖାଇବ, ତେବେ କାନ୍ଦିବାକୁ ଆରମ୍ଭ କରିବ ଏବଂ ମୃ ହସିବି ।·· ଆମେ ଦୁଇଜଣ ହୁଏତ ନାଚୁଛୁ, କିନ୍ତୁ ମୁଁ ଆନନ୍ଦର ଭାବ ନେଇ ନାଚୁଛି—ଏବଂ ତୁମେ ନାଚୁଛ ଯାତନାର ଭାବ ନେଇ ।··· ଗୋଟିଏ ବସ୍ତୁ ମଧ୍ୟ ଆମ ଜୀବନର କୌଣସି ସମୟରେ ଶୁଭ, ପୁଣି ଅନ୍ୟ ଏକ ସମୟରେ ଅଶୁଭ । ଏପରି ହେଲେ, ତୁମେ କେମିତି ଭଲ କହିବ ଯେ, ଭଲ ଓ ମନ୍ଦ ସବୁ ପୂର୍ବରୁ ପ୍ରସ୍ତୁତ ହୋଇ ଥାଏ ଏବଂ ଏଇଟି ସବୁ ପ୍ରକାରେ ଭଲ ଓ ସେଇଟି ସବୁ ପ୍ରକାରେ ଖରାପ ?

ବର୍ତ୍ତମାନ ପ୍ରଶ୍ନ ହେଲା—ଭଗବାନ ଯଦି ଚିରଦିନ ସତ୍ ହିଁ ହୁଅନ୍ତି, ତେବେ ଏହିସବୁ ଅଶୁଭ ପାଇଁ ଦାୟୀ କିଏ ? ଖ୍ରୀଷ୍ଟାନ୍ ଓ ମୁସଲମାନମାନେ କହନ୍ତି—ସଇତାନ ବୋଲି ମଧ୍ୟ ଆଉଜଣେ ଭଦ୍ରଲୋକ ଅଛନ୍ତି । କିନ୍ତୁ କେମିତି ଏକଥା ହେବ ? ଏ ସଂସାରରେ ଦୁଇଜଣ ଭଦ୍ରଲୋକ କାମ କରୁଛନ୍ତି ? ଜଣେ ରହିବା ଉଚିତ । ଯେଉଁ ନିଆଁରେ ଶିଶୁଟିଏ ପୋଡ଼ିଯାଏ, ସେଇ ନିଆଁରେ ଖାଦ୍ୟପଦାର୍ଥ ମଧ୍ୟ ସିଝାଯାଏ । କେମିତି କହିବ ଯେ ନିଆଁ ଭଲ କିବା ମନ୍ଦ ? କେମିତି କହିବ ଯେ, ଏହା ଦୁଇଲୋକଙ୍କର ସୃଷ୍ଟି ? ତା'ହେଲେ ଏହିସବୁ ତଥାକଥିତ ଅଶୁଭଗୁଡ଼ିକୁ କିଏ ସୃଷ୍ଟି କଲା ? ଏହାର ଅନ୍ୟ କୌଣସି

ସମାଧାନ ନାହିଁ । ସେ ଏଠାକୁ ମୃତ୍ୟୁ ଓ ଜୀବନ ଉଭୟ ପଠାଇଛନ୍ତି, ମଡ଼କ ଓ ମହାମାରୀ ପଠାଇଛନ୍ତି ଏବଂ ସବୁକିଛି ମଧ୍ୟ ପଠାଇଛନ୍ତି । ଈଶ୍ୱର ଯଦି ଏହିପରି ହୁଅନ୍ତି, ତା'ହେଲେ ସେହି ଶୁଭ, ସେହି ମଧ୍ୟ ଅଶୁଭ—ସେହି ସୁନ୍ଦର, ସେହି ମଧ୍ୟ ଭୀଷଣ—ସେ ହିଁ ଜୀବନ ଏବଂ ସେ ହିଁ ମୃତ୍ୟୁ ।

ଏହିପ୍ରକାର ଈଶ୍ୱରଙ୍କୁ କି ଭଳି ଉପାସନା କରାଯିବ ? ଆମେ କ୍ରମଶଃ ବୁଝିପାରିବା—ମଣିଷ କିଭଳି 'ଭୀଷଣ'ର ପୂଜା କରିବାକୁ ଶିଖିପାରିବ । ସେତିକି ଜାଣିପାରିଲେ ମଣିଷ ଶାନ୍ତି ପାଇବ । ମନର ଶାନ୍ତି ଯଦି ନଷ୍ଟ ହୋଇଥାଏ, ଦୁଶ୍ଚିନ୍ତାର ହାତରୁ ଯଦି ନିଷ୍କୃତି ପାଉ ନ ଥାଅ—ତା'ହେଲେ ସର୍ବପ୍ରଥମ କର୍ତ୍ତବ୍ୟ—ବୁଲିପଡ଼ି ରହିବା ଓ ଭୀଷଣର ସମ୍ମୁଖୀନ ହେବା । ଭୀଷଣର ମୁଖା ଛଡ଼ାଇ ପକାଅ—ଦେଖିବାକୁ ପାଇବ, ସେହି ଏକ ହିଁ ଈଶ୍ୱର ରହିଛନ୍ତି । ସେ ହିଁ ସଗୁଣ ଈଶ୍ୱର—ଯାହା କିଛି ଭଲ (ପ୍ରତୀୟମାନ) ଏବଂ ଯାହାକିଛି ମନ୍ଦ (ଆପାତ ପ୍ରତୀତିରେ) । ଆଉ ଅନ୍ୟ କେହି ନାହିଁ । ଯଦି (ଆମ ଉପରେ) ଦୁଇଜଣ ପ୍ରଭୁ ଥାନ୍ତି, ତା'ହେଲେ ପ୍ରକୃତି ଏକ ମୁହୂର୍ତ୍ତ ବି ତିଷ୍ଠି ପାରିବ ନାହିଁ । ପ୍ରକୃତିରେ ଅପର ଆଉ କେହି ନାହିଁ । ସବୁ ହିଁ ଏକତାନ । ଈଶ୍ୱରଙ୍କ ଲୀଳା ଗୋଟିଏ ଦିଗରେ—ଏବଂ ସଇତାନ ଆଉ ଗୋଟିଏ ଦିଗରେ—ଏଭଳି ହେଲେ ସମଗ୍ର ସୃଷ୍ଟି ଭିତରେ ଏକ ଚରମ ବିଶୃଙ୍ଖଳା ଉପସ୍ଥିତ ହୁଅନ୍ତା । ନିୟମ ଭାଙ୍ଗିବାର ସାଧ କାହାର ଅଛି ? ଏହି ଗ୍ଲାସ୍‌ଟି ଯଦି ମୁଁ ଭାଙ୍ଗି ପକାଏ, ଏହା ପଡ଼ିଯିବ । ଗୋଟିଏ ପରମାଣୁକୁ ଯଦି କେହି ସ୍ଥାନଚ୍ୟୁତ କରିବାକୁ ସମର୍ଥ ହୁଏ, ଅନ୍ୟ ପ୍ରତ୍ୟେକଟି ପରମାଣୁର ସ୍ଥିତିବୈଷମ୍ୟ ଘଟିବ··· କେବେହେଲେ ନିୟମ ଲଙ୍ଘନ କରାଯାଏ ନାହିଁ । ପ୍ରତ୍ୟେକଟି ପରମାଣୁ ନିଜ ସ୍ଥାନରେ ରହିଛି । ପ୍ରତ୍ୟେକଟିକୁ ଓଜନ କରି, ମାପକରି ବସା ଯାଇଛି ଏବଂ ପ୍ରତ୍ୟେକେ ନିଜନିଜର ଉଦ୍ଦେଶ୍ୟ ପୂର୍ତ୍ତି କରୁଛନ୍ତି । ଈଶ୍ୱରଙ୍କ ବିଧାନରେ ପବନ ବହୁଛି, ସୂର୍ଯ୍ୟ କିରଣ ଦେଉଛି । ତାଙ୍କ ଶାସନରେ ଜଗତ-ସମୂହ ଯଥାଯଥ ସନ୍ନିବିଷ୍ଟ ରହିଛନ୍ତି । ତାଙ୍କରି ଆଦେଶରେ ହିଁ ମୃତ୍ୟୁ ପୃଥିବୀରେ ଶିକାର ସନ୍ଧାନରେ ରତ । ଥରେ ଭାବି ଦେଖ ତ, ଦୁଇ ବା ତିନିଜଣ ଈଶ୍ୱର ଏ ଜଗତରେ ପରସ୍ପର ଭିତରେ ମଲ୍ଲଯୁଦ୍ଧର ପ୍ରତିଦ୍ୱନ୍ଦ୍ୱିତାରେ ଓହ୍ଲାଇଛନ୍ତି ! ଏହା ହୋଇ ନ ପାରେ ।

ଆମେ ବର୍ତ୍ତମାନ ଦେଖିବାକୁ ପାଇଲୁ—ଆମମାନଙ୍କ ଜଗତ୍‌ସ୍ରଷ୍ଟା ସଗୁଣ ଈଶ୍ୱର ଥାଇପାରନ୍ତି ଏବଂ ସେ ଦୟାମୟ ଆଉ ମଧ୍ୟ ନିଷ୍ଠୁର ।··· ସେ ମଙ୍ଗଳ, ସେ ମଧ୍ୟ ଅମଙ୍ଗଳ । ତାଙ୍କର ସ୍ମିତ ହାସ୍ୟ ମୁଁ ଦେଖିପାରେ—ପୁଣି ଭ୍ରୂକୁଟି ମଧ୍ୟ ଦେଖିପାରେ । ଆଉ ତାଙ୍କର ବିଧାନ ଅତିକ୍ରମ କରିବାର କ୍ଷମତା କାହାର ବି ନାହିଁ । ସେ ହେଉଛନ୍ତି ଏହି ବିଶ୍ୱ-ବ୍ରହ୍ମାଣ୍ଡର ସ୍ରଷ୍ଟା ।

ସୃଷ୍ଟିର ଅର୍ଥ କଣ ? ଶୂନ୍ୟ ଭିତରୁ କଣ କିଛିର ଆବିର୍ଭାବ ହୋଇପାରେ ? ଛଅ-ହଜାର ବର୍ଷ ପୂର୍ବେ ଈଶ୍ୱର ସ୍ୱପ୍ନରୁ ଉଠି ଜଗତକୁ ସୃଷ୍ଟି କଲେ—ଏବଂ ତା' ପୂର୍ବରୁ କିଛି ନ ଥିଲା—ଏ କି କଥା ? ଈଶ୍ୱର ପୁଣି ସେତେବେଳେ କଅଣ କରୁଥିଲେ ? ସେ କଅଣ

ଆଗ୍ରମରେ ଶୋଇଥିଲେ ? ଭଗବାନ ହେଲେ ଜଗତ-କାରଣ । ଏବଂ 'କାର୍ଯ୍ୟ' ଦେଖି ଆମେ 'କାରଣକୁ' ଜାଣିପାରୁ ! 'କାର୍ଯ୍ୟ' ଯଦି ନ ଥାଏ, ତା'ହେଲେ 'କାରଣ' କାରଣ ହିଁ ନୁହେଁ । 'କାରଣ' ସର୍ବଦା 'କାର୍ଯ୍ୟ' ଭିତର ଦେଇ ପରିଜ୍ଞାତ ହୋଇଥାଏ । ସୃଷ୍ଟି ଅନନ୍ତ··· କାଳ ବା ଦେଶର ମାଧ୍ୟମରେ ସୃଷ୍ଟିର ଆଦି ଚିନ୍ତା କରାଯାଏ ନାହିଁ ।

କାହିଁକି ସେ ଏହି ସୃଷ୍ଟି କଲେ ? କାରଣ ତାଙ୍କୁ ଏହା କରିବାକୁ ଭଲ ଲାଗିଲା— କାରଣ ସେ ମୁକ୍ତ ।··· ତୁମେ ଆମେ ନିୟମର ଅଧୀନ, କାହିଁକି ନା ଆମେ କେବଳ କତିପୟ ନିର୍ଦ୍ଦିଷ୍ଟ ପଥରେ ହିଁ କାର୍ଯ୍ୟ କରିପାରୁ, ଅନ୍ୟ ପଥରେ ନୁହେଁ । 'ତାଙ୍କର ହାତ ନାହିଁ—କିନ୍ତୁ ସେ ସବୁ କରିପାରନ୍ତି । ତାଙ୍କର ପାଦ ନାହିଁ; କିନ୍ତୁ ସେ ଦ୍ରୁତଗତିରେ ଚାଲି ପାରନ୍ତି ।' ଦେହ ନାହିଁ—କିନ୍ତୁ ସେ ସର୍ବବ୍ୟାପୀ । ('ଅପାଣିପାଦୋ ଜବନୋ ଗ୍ରହୀତା···' ଶ୍ୱେତାଶ୍ୱେତର ଉପନିଷଦ୍, ୩।୧୯)

"ଚକ୍ଷୁ ଯାହାଙ୍କୁ ଦେଖିପାରେ ନାହିଁ, କିନ୍ତୁ ଚକ୍ଷୁ ଯାହାଦ୍ୱାରା ଦେଖେ, ତାଙ୍କୁ ହିଁ ବ୍ରହ୍ମ ବୋଲି ଜାଣିବ ।" (ଯଚ୍ଚକ୍ଷୁଷା ନ ପଶ୍ୟତି, ଯେନ ଚକ୍ଷୂଂଷି ପଶ୍ୟତି । ତଦେବ ବ୍ରହ୍ମ ତ୍ୱଂ ବିଦ୍ଧି ନେଦଂ ଯଦିଦମୁପାସତେ ॥ କେନୋପନିଷଦ୍) ତୁମେ ଆଉ କାହାର ଉପାସନା କରିପାର ନାହିଁ । ସର୍ବଶକ୍ତିମାନ୍ ଈଶ୍ୱର ହିଁ ଏହି ବିଶ୍ୱବ୍ରହ୍ମାଣ୍ଡକୁ ଧରି ରଖିଛନ୍ତି । ଯାହାକୁ 'ନିୟମ' ବୋଲି କୁହାଯାଏ, ଏହା ତା'ର ଇଚ୍ଛାର ଅଭିବ୍ୟକ୍ତି । ନିୟମସମୂହ ଦ୍ୱାରା ସେ ଜଗତକୁ ପରିଚାଳନା କରୁଛନ୍ତି ।

ଏପର୍ଯ୍ୟନ୍ତ (ଆମେ ଆଲୋଚନା କରିଛୁ) ଈଶ୍ୱର ଓ ପ୍ରକୃତି—ଶାଶ୍ୱତ ଈଶ୍ୱର, ଚିରନ୍ତନ ପ୍ରକୃତି । କୌଣସି ଆତ୍ମାର କେବେ ବି ସୃଷ୍ଟି ହୋଇ ନାହିଁ । ଆତ୍ମାର ବିନାଶ ମଧ୍ୟ ନାହିଁ । କେହି ତା'ର ମୃତ୍ୟୁର କଳ୍ପନା କରିପାରେ ନାହିଁ । ଆତ୍ମା ଅସୀମ, ନିତ୍ୟ ବର୍ତ୍ତମାନ, ଏହା ମରିବ କିପରି ? ଏହା କେବଳ ଶରୀର ପରିବର୍ତ୍ତନ କରେ । ଯେପରି କୌଣସି ବ୍ୟକ୍ତି ତାହାର ପୁରାତନ ଜୀର୍ଣ୍ଣ ପରିଚ୍ଛଦ ପରିତ୍ୟାଗ କରି ନୂତନ ଅବ୍ୟବହୃତ ପରିଚ୍ଛଦ ପରିଧାନ କରେ, ଠିକ୍ ସେହି ରୂପେ ଶୀର୍ଣ୍ଣ ଶରୀର ପରିତ୍ୟାଗ କରି ଏକ ନୂତନ ଶରୀର ଗ୍ରହଣ କରାଯାଏ । (ବାସାଂସି ଜୀର୍ଣ୍ଣାନି···। ଗୀତା, ୨।୨୨)

ଆତ୍ମାର ସ୍ୱରୂପ କଣ ? ଆତ୍ମା ସର୍ବଶକ୍ତିଧର ଏବଂ ସର୍ବବ୍ୟାପୀ । ଚୈତନ୍ୟର ଦୈର୍ଘ୍ୟ ନାହିଁ, ପ୍ରସ୍ଥ କିମ୍ବା ଘନତ୍ୱ ମଧ୍ୟ ନାହିଁ ।··· ଏହା ଏଠାରେ ବା ସେଠାରେ ଏପରି କହି ହେବ ନାହିଁ । ଏହି ଶରୀରଟି ନଷ୍ଟ ହେଲେ ଆତ୍ମା ଆଉ ଏକ ଦେହର ମାଧ୍ୟମରେ କାର୍ଯ୍ୟ କରେ । ଆତ୍ମା ଯେପରି ଗୋଟିଏ ବୃତ୍ତ, ଯାହାର ପରିଧି କେଉଁଠି ନାହିଁ; କିନ୍ତୁ ତା'ର କେନ୍ଦ୍ର ହେଲା ଦେହରେ । ଈଶ୍ୱର ଏପରି ଏକ ବୃତ୍ତ, ଯାହାର ପରିଧି କେଉଁଠାରେ ନାହିଁ ସତ୍ୟ, କିନ୍ତୁ କେନ୍ଦ୍ର ସର୍ବତ୍ର । ଆତ୍ମା ସ୍ୱଭାବତଃ ଆନନ୍ଦମୟ, ଶୁଦ୍ଧ, ପୂର୍ଣ୍ଣ; ଏହାର ପ୍ରକୃତି ଯଦି ଅଶୁଚି ହୁଅନ୍ତା, ଏହା କେବେବି ଶୁଦ୍ଧ ହୋଇପାରନ୍ତା ନାହିଁ ।···ଆତ୍ମାର ସ୍ୱରୂପ ହିଁ ହେଲା ନିଷ୍କଳୁଷ···ଏହି କାରଣରୁ ହିଁ ତ ମଣିଷ ପକ୍ଷରେ ପବିତ୍ର ହେବା ସମ୍ଭବ । ଆତ୍ମା ସ୍ୱଭାବତଃ ଆନନ୍ଦଘନ, ସେହି କାରଣରୁ ତ ଏହା ଆନନ୍ଦ ଲାଭ କରିପାରେ । ଆତ୍ମା ଶାନ୍ତି-

ସ୍ୱରୂପ—ଏହି କାରଣରୁ ହିଁ ଏହା ପକ୍ଷରେ ଶାନ୍ତ ଅନୁଭବ କରିବା ସମ୍ଭବପର ।

ଆମମାନଙ୍କ ମଧ୍ୟରୁ ଯେଉଁମାନେ ନିଜକୁ ଏହି ଦେହବୁଦ୍ଧିର ସ୍ତରରେ ଦେଖିଥାଉଁ, ସେମାନଙ୍କୁ ଈର୍ଷା କଳହ ଓ କଷ୍ଟ ଭିତର ଦେଇ ଜୀବନ ନିର୍ବାହ କରିବାକୁ କଠୋର ପରିଶ୍ରମ କରିବାକୁ ହୁଏ—ଏବଂ ତା'ପରେ ଆସେ ମୃତ୍ୟୁ । ଏଥିରୁ ବୁଝିବାକୁ ହୁଏ ଯେ, ଆମେମାନେ ଯାହା ହେବା ଉଚିତ, ଆମେ ତାହା ନୋହୁଁ । ଆମେମାନେ ସ୍ୱାଧୀନ ନୋହୁଁ, ସମ୍ପୂର୍ଣ୍ଣ ଶୁଦ୍ଧ ନୋହୁଁ, ଇତ୍ୟାଦି । ଆତ୍ମା ଯେପରିକି ଅବନତ ହୋଇଛନ୍ତି । ଅତଏବ ଆତ୍ମାର ପ୍ରୟୋଜନ ନିସ୍ତାର ।···

କେଉଁ ଭାବରେ ଏହା କରାଯାଏ ? ଏହା ନିଜେ ନିଜେ ସିଦ୍ଧ କରିପାରିବ କି ?—ନା । କୌଣସି ବ୍ୟକ୍ତିର ମୁଖ ଯଦି ଧୂଳିଧୂସରିତ ହୋଇଥାଏ, ଏହାକୁ କ'ଣ ଧୂଳିଦ୍ୱାରା ପରିଷ୍କାର କରାଯାଏ ?—ମାଟିରେ ଗୋଟିଏ ବୀଜ ପୋତିଲି—ଏଥିରୁ ଗଛ ହେଲା—ଗଛରୁ ପୁଣି ବୀଜ ହେଲା, ସେ ବୀଜରୁ ପୁଣି ଅନ୍ୟ ଗଛ ହେଲା—ଏମିତି ଚାଲିଥିବ । ମୁରଗୀ-ଠାରୁ ଡିମ୍ବ, ପୁଣି ଡିମ୍ବରୁ ମୁରଗୀ । ଯଦି କିଛି ଭଲ କାର୍ଯ୍ୟ କର, ଏହାର ଫଳ ତୁମକୁ ପାଇବାକୁ ହେବ । ପୁନରାୟ ଜନ୍ମଗ୍ରହଣ ଓ ଦୁଃଖଭୋଗ—ଏହି ଅନ୍ତହୀନ ଶୃଙ୍ଖଳାରେ ଯଦି ଥରେ ପଡ଼ିଯାଅ, ଆଉ ଅଟକିପାରିବ ନାହିଁ । କେବଳ ଘୂରି ଚାଲିବ—ଉପରେ ଏବଂ ତଳେ ଊର୍ଦ୍ଧ୍ୱଲୋକ ଆଉ ଅଧୋଲୋକ ଦିଗରେ ଏବଂ ଏହିସବୁ ଦେହସମୂହ···। ନିଷ୍କୃତିର ବାଟ ନାହିଁ ।

ତେବେ, ଏହିସବୁଥିରୁ ପରିତ୍ରାଣର ଉପାୟ କ'ଣ ? ଏବଂ ଏଠାରେ କ'ଣ ତୁମର ଆବଶ୍ୟକତା ? ଗୋଟିଏ ଭାବ ହେଲା—ଦୁଃଖରୁ ଅବ୍ୟାହତି । ଆମେ ପ୍ରତ୍ୟେକେ ଦୁଃଖରୁ ନିସ୍ତାର ପାଇବା ଲାଗି ଦିବାରାତ୍ର ଚେଷ୍ଟା କରୁଛୁ ।··· କର୍ମଦ୍ୱାରା ଏହା ହେବାର ନୁହେଁ । କର୍ମ କେବଳ କର୍ମସମୂହକୁ ବଢ଼ାଇ ଚାଲେ । ଯଦି ଏପରି କେହି ଥାଏ, ଯେ କି ନିଜେ ମୁକ୍ତ ଏବଂ ଆମକୁ ସାହାଯ୍ୟ କରିବାକୁ ପ୍ରସ୍ତୁତ, ତେବେ ଏହା ସମ୍ଭବପର । ପ୍ରାଚୀନ ଋଷିଙ୍କ ଘୋଷଣା—"ହେ ମର୍ତ୍ତ୍ୟଲୋକବାସୀ ଓ ଊର୍ଦ୍ଧ୍ୱଲୋକନିବାସୀ ଅମୃତର ସନ୍ତାନ-ଗଣ ! ତୁମେମାନେ ସମସ୍ତେ ଶୁଣ ! ମୁଁ ରହସ୍ୟ ଆବିଷ୍କାର କରିଛି । ସକଳ ଅନ୍ଧକାରର ପରପାରରେ ଯେ, ମୁଁ ତାହାଙ୍କୁ ଜାଣିଅଛି । ଏହି ସଂସାର-ମହାସମୁଦ୍ର ଆମେ ପାରହେବୁ କେବଳ ତାଙ୍କରି କୃପାରେ ।" (ଶ୍ୱେତାଶ୍ୱେତର ଉପନିଷଦ୍, ୨।୫)

ଭାରତବର୍ଷରେ ଜୀବନର ଧାରଣା ହେଲା ଏହିପରି—ସ୍ୱର୍ଗ ରହିଛି, ନର୍କ ରହିଛି, ମର୍ତ୍ତ୍ୟଲୋକ ରହିଛି । କିନ୍ତୁ ଏଗୁଡ଼ିକ ଚିରନ୍ତନ ନୁହନ୍ତି । ଯଦି ମୋର ନର୍କକୁ ଗତି ହୁଏ, ତେବେ ଏହା ଚିରଦିନ ପାଇଁ ନୁହେଁ । ଯେଉଁଠି ମୁଁ ଥାଏ ନା କାହିଁକି, ଏକା ଭଳି ଯନ୍ତ୍ରଣା ଭୋଗିବାକୁ ହେବ । ସମସ୍ୟାଟି ହେଲା—ଏହିସବୁ ଯନ୍ତ୍ରଣା କିପରି ଅତିକ୍ରମ କରିବାକୁ ହେବ ? ଯଦି ମୁଁ ସ୍ୱର୍ଗକୁ ଯାଏ, ତେବେ ହୁଏତ କିଛି ଦିନ ପାଇଁ ବିଶ୍ରାମ ମିଳିବ । କିନ୍ତୁ ହୁଏତ କିଛି ଅପକର୍ମ କରି ବସିଲି, ତେବେ ସେଥିପାଇଁ ତ ମୋତେ ଶାସ୍ତି ପାଇବାକୁ ହେବ—ସ୍ୱର୍ଗବାସ ଚିରସ୍ଥାୟୀ ହୋଇପାରେ ନାହିଁ ।··· ଭାରତୀୟ ଆଦର୍ଶ

ସ୍ୱର୍ଗକୁ ଯିବା ନୁହେଁ । ଏହି ପୃଥିବୀରେ ମୁକ୍ତି ଲାଭ କରିବାକୁ ହେବ । ସ୍ୱର୍ଗକୁ ତୁଚ୍ଛ କର ଏବଂ ନର୍କକୁ ମଧ୍ୟ ଯାଅ ନାହିଁ । ଲକ୍ଷ୍ୟ କଅଣ ?—ମୁକ୍ତି । ତୁମ ସମସ୍ତଙ୍କୁ ମୁକ୍ତ ହେବାକୁ ହେବ । ଆତ୍ମାର ମହିମା ଆବୃତ ହୋଇ ରହିଛି । ଏହାକୁ ପୁନର୍ବାର ଅନାବୃତ କରିବାକୁ ହେବ । ଆତ୍ମା ତ ରହିଛନ୍ତି—ସର୍ବତ୍ର ହିଁ ରହିଛନ୍ତି । କେଉଁଆଡ଼େ ଯିବ ?··· କେଉଁଠାକୁ ମଧ୍ୟ ଯାଇପାରିବ ? ଯଦି ଏପରି କୌଣସି ସ୍ଥାନ ଥାଏ, ଯେଉଁଠାରେ ଆତ୍ମା ନାହିଁ, ତେବେ ତ ସେଠାକୁ ଯିବା ଉଚିତ ! ସେ ସର୍ବଦା ବିଦ୍ୟମାନ—ଏଇଟି ଯଦି ହୃଦୟଙ୍ଗମ କର, ତା'ହେଲେ ଚିରକାଳ ପାଇଁ ପରିପୂର୍ଣ୍ଣ ସୁଖ ଆସିବ । ଆଉ ଜନ୍ମ-ମୃତ୍ୟୁ ନାହିଁ··· ଆଉ ରୋଗ ନାହିଁ, ଦେହ ନାହିଁ । ଏହି ଦେହଟି ତ କଠିନତମ ବ୍ୟାଧି ।···

ଆତ୍ମା ସେହି ଆତ୍ମା ରୂପରେ ହିଁ ରହିବେ । ଚୈତନ୍ୟ ସେହି ଚୈତନ୍ୟ ରୂପରେ ହିଁ ଜୀବିତ ରହିବେ । ଏହା କେଉଁ ଭାବରେ ସମ୍ପାଦନ କରାଯିବ ? ଯେ ସ୍ୱଭାବତଃ ହିଁ ନିତ୍ୟ ବିଦ୍ୟମାନ, ଶୁଦ୍ଧ ଓ ପୂର୍ଣ୍ଣ, ଆତ୍ମା ମଧ୍ୟରେ ହିଁ ସେହି ପରମେଶ୍ୱରଙ୍କୁ ଆରାଧନା କଲେ ତାଙ୍କୁ ଉପଲବ୍ଧି କରିହେବ । ଏ ଜଗତରେ ଦୁଇଜଣ ସର୍ବଶକ୍ତିମାନ ରହି ନ ପାରନ୍ତି । କଳ୍ପନା କର ଯେ ଦୁଇ ବା ତିନିଜଣ ଈଶ୍ୱର ଅଛନ୍ତି । ଜଣେ ସଂସାର ସୃଷ୍ଟି କରିବେ ଓ ଆଉ ଜଣେ କହିବେ—"ମୁଁ ସଂସାର ଧ୍ୱଂସ କରିବି ।" କିନ୍ତୁ ଏହା ଏପରିଭାବେ କେବେ ଘଟି ନ ପାରେ । ଭଗବାନ ଜଣେ ହେବା ଉଚିତ । ଆତ୍ମା ଯେତେବେଳେ ପୂର୍ଣ୍ଣତା ଲାଭ କରନ୍ତି, ସେତେବେଳେ ସେ ପ୍ରାୟ ସର୍ବଶକ୍ତିମାନ ଓ ସର୍ବଜ୍ଞ ହୋଇଯାନ୍ତି । ସେ ହିଁ ଉପାସକ । ଉପାସ୍ୟ କିଏ ? —ସେହି ପରମେଶ୍ୱର ସ୍ୱୟଂ, ଯେ ସର୍ବବ୍ୟାପୀ ଓ ସର୍ବଜ୍ଞ ଏବଂ ସର୍ବୋପରି ସେ ହେଲେ ପ୍ରେମ-ସ୍ୱରୂପ । ଆତ୍ମା କେଉଁ ଭାବରେ ଏହି ପୂର୍ଣ୍ଣତା ଲାଭ କରିବେ ?—ଉପାସନାଦ୍ୱାରା ।

## ଦିବ୍ୟ ପ୍ରେମ

[ଆମେରିକା ଯୁକ୍ତରାଷ୍ଟ୍ରର ସାନ୍‌ଫ୍ରାନ୍‌ସିସ୍କୋ ଅଞ୍ଚଳରେ ୧୯୦୦ ମସିହା ଏପ୍ରିଲ୍ ଦଶ ତାରିଖରେ ପ୍ରଦତ୍ତ ଅଭିଭାଷଣ ]

ପ୍ରେମକୁ ଗୋଟିଏ ତ୍ରିକୋଣର ପ୍ରତୀକଦ୍ୱାରା ପ୍ରକାଶ କରାଯାଇପାରେ । ପ୍ରଥମ କୋଣଟି ହେଲା—ପ୍ରେମ କୌଣସି ପ୍ରଶ୍ନ କରେ ନାହିଁ । ଏହା ଭିକ୍ଷୁକ ନୁହେଁ ।··· ଭିକାରୀର ଭଲପାଇବା କେବେ ପ୍ରେମ ହୋଇ ନ ପାରେ । ପ୍ରେମର ପ୍ରଥମ ଲକ୍ଷଣ ହେଲା—ଏହା କିଛି ହିଁ ଚାହେଁ ନାହିଁ, ବରଂ ସବୁ ଦେଇଦିଏ । ଏହା ହିଁ ହେଲା ପ୍ରକୃତ ଆଧ୍ୟାତ୍ମିକ ଉପାସନା, ପ୍ରେମ ମାଧ୍ୟମରେ ହିଁ ଉପାସନା । ଈଶ୍ୱର କରୁଣାମୟ କି ନୁହନ୍ତି—ଏହି ପ୍ରଶ୍ନ ଆଉ ଉଠେ ନାହିଁ । ସେ ଈଶ୍ୱର, ସେ ଆମର ପ୍ରେମାସ୍ପଦ । ଈଶ୍ୱର ସର୍ବଶକ୍ତିମାନ ଏବଂ ଅସୀମକ୍ଷମତାସମ୍ପନ୍ନ କି ନୁହନ୍ତି—ସେ ସାନ୍ତ କିମ୍ବା ଅନନ୍ତ—ଏସବୁ ଆଉ ଜିଜ୍ଞାସ୍ୟ ନୁହଁ ।

ଯଦି ସେ ମଙ୍ଗଳ ବିତରଣ କରନ୍ତି, ତେବେ ଭଲ୍—ଯଦି ଅମଙ୍ଗଳ କରନ୍ତି, ତା'ହେଲେ ମଧ୍ୟ କଅଣ ଯାଏ ଆସେ ! କେବଳ ଏହି ଗୋଟିଏ—ଅନନ୍ତ ପ୍ରେମ ବ୍ୟତୀତ ତାଙ୍କର ଅନ୍ୟ ସବୁ ଗୁଣ ଆମ ପାଖରେ ତିରୋହିତ ହୋଇଯାଏ ।

ଭାରତବର୍ଷରେ ଥିଲେ ଜଣେ ପ୍ରାଚୀନ ସମ୍ରାଟ । ଥରେ ଶିକାର ଉଦ୍ଦେଶ୍ୟରେ ଅରଣ୍ୟରେ ବୁଲୁବୁଲୁ ଜଣେ ବଡ଼ ଯୋଗୀପୁରୁଷଙ୍କର ସାକ୍ଷାତ୍ ପାଇଲେ । ସାଧୁଙ୍କୁ ଦର୍ଶନ କରି ସେ ଏତେ ସନ୍ତୁଷ୍ଟ ହେଲେ ଯେ, ତାଙ୍କୁ ଅନୁରୋଧ କଲେ, "ହେ ମହାତ୍ମା, ଆପଣଙ୍କୁ କିଛି ରାଜକୀୟ ଉପହାର ଦେବାକୁ ମୋର ଅଭିଳାଷ ଜାତ ହେଉଛି । ଆପଣ ଦୟା କରି ରାଜଧାନୀକୁ ଆସି ମୋତେ କୃତାର୍ଥ କରନ୍ତୁ ।" ପ୍ରଥମେ ସାଧୁ ରାଜି ହେଲେ ନାହିଁ, କିନ୍ତୁ ବାରଂବାର ସମ୍ରାଟଙ୍କର ସାନୁନୟ ଅନୁରୋଧରେ ଅବଶେଷରେ ସମ୍ମତି ପ୍ରକାଶ କଲେ । ଅଳ୍ପଦିନ ଭିତରେ ସାଧୁ ଯାଇ ରାଜପ୍ରାସାଦରେ ପହଞ୍ଚିଲେ । ଦ୍ୱାରୀମାନେ ଭିତରକୁ ଯାଇ ସମ୍ରାଟଙ୍କୁ ସାଧୁଙ୍କ ଆସିବା କଥା ଜଣାନ୍ତେ—ସମ୍ରାଟ କହିଲେ—ସାଧୁଙ୍କୁ ଜଣାଇ ଦିଅ ଯେ, ସେ ଅଳ୍ପ କେତୋଟି ମୁହୂର୍ତ୍ତମାତ୍ର ଅପେକ୍ଷା କରନ୍ତୁ । ମୁଁ ଈଶ୍ୱରଙ୍କୁ ପ୍ରାର୍ଥନା ଶେଷ କରି ତାଙ୍କୁ ଦେଖା କରିବି । ସମ୍ରାଟ ଈଶ୍ୱରଙ୍କୁ ଏହିପରି ପ୍ରାର୍ଥନା କଲେ, "ହେ ସର୍ବଶକ୍ତିମାନ୍ ପ୍ରଭୁ ! ଅନୁଗ୍ରହ କରି ମୋତେ ଆହୁରି ଧନ ପ୍ରଦାନ କର —ମୋତେ ଆହୁରି ସ୍ୱାସ୍ଥ୍ୟ ପ୍ରଦାନ କର—ମୋର ସନ୍ତାନସନ୍ତତି ଆହୁରି ବୃଦ୍ଧି ପାଆନ୍ତୁ ।" ସମ୍ରାଟ ଏତେ ଉଚ୍ଚସ୍ୱରରେ ପ୍ରାର୍ଥନା କରୁଥିଲେ ଯେ, ତାଙ୍କର ସମସ୍ତ କଥା ସାଧୁଙ୍କ କାନରେ ପଡ଼ିଲା । ହଠାତ୍ ସାଧୁ ଉଠି ଠିଆ ହେଲେ ଏବଂ ରାଜପ୍ରାସାଦ ବାହାରକୁ ଚାଲିବାକୁ ଆରମ୍ଭ କଲେ । ରାଜା ତାଙ୍କ ପାଖକୁ ଦଉଡ଼ି ଯାଇ କହିଲେ, "ମହାତ୍ମା ! ଆପଣ ମୋଠାରୁ ଉପହାର ନ ନେଇ ଫେରିଯାଉଛନ୍ତି କିପରି ?" ଯୋଗୀବର ସ୍ମିତହାସ୍ୟ କରି କହିଲେ—"ମୁଁ ଭିକ୍ଷୁକ ନିକଟରୁ ଭିକ୍ଷା କରେ ନାହିଁ । ଆପଣ ପ୍ରାର୍ଥନା କଲାବେଳେ ଯାହା କହୁଥିଲେ, ତାହା ମୁଁ ଶୁଣିଛି । ଆପଣ ଆକୁଳ କଣ୍ଠରେ ଈଶ୍ୱରଙ୍କୁ ଅଧିକ ଭୂସମ୍ପତ୍ତି, ଟଙ୍କାକଉଡ଼ି ଏବଂ ଆହୁରି କେତେ କଅଣ ମାଗୁଥିଲେ । ଆପଣଙ୍କର ତ ଏତେ ଅଭାବ, ଆପଣ ଆଉ ମତେ କଅଣ ଦେଇପାରିବେ ! ଆଗ ଆପଣ ନିଜର ଅଭାବଗୁଡ଼ିକ ମେଣ୍ଟାଇ ସାରନ୍ତୁ ।

ପ୍ରେମ କେବେ ବି ଯାଚଞ୍ଚା କରେ ନାହିଁ । ଏହା ସବୁବେଳେ ଦେଇ ଚାଲିଥାଏ । ...ଯେତେବେଳେ ଜଣେ ଯୁବକ ତା'ର ପ୍ରିୟତମାକୁ ଦେଖିବାକୁ ଯାଏ,...ସେତେବେଳେ ସେମାନଙ୍କ ଭିତରେ କାରବାର ସମ୍ବନ୍ଧ ନ ଥାଏ—ସେମାନଙ୍କ ସମ୍ବନ୍ଧ ହେଉଛି କେବଳ ପ୍ରେମର ସମ୍ବନ୍ଧ ଏବଂ ପ୍ରେମ କେବେ ଭିକ୍ଷୁକ ନୁହେଁ । ଏହିରୂପେ ଆମେ ବୁଝିବାକୁ ପାଉ ଯେ, ପ୍ରକୃତ ଆଧ୍ୟାତ୍ମିକ ଉପାସନାର ଅର୍ଥ ଭିକ୍ଷା ନୁହେଁ । ଯେତେବେଳେ ଆମ ଭିତରୁ 'ଏଇଟା ଦିଅ—ସେଇଟା ଦିଅ' ପ୍ରଭୃତି ଯାଚଞ୍ଚା ଶେଷ ହୋଇଯିବ, ସେତିକିବେଳେ ହିଁ ଆମର ଧର୍ମଜୀବନ ଆରମ୍ଭ ହୋଇଯିବ ।

ଦ୍ୱିତୀୟଟି (ତ୍ରିକୋଣ-ସ୍ୱରୂପ ପ୍ରେମର ଦ୍ୱିତୀୟ କୋଣ) ହେଲା—ପ୍ରେମରେ ଭୟ ନାହିଁ । ତୁମେ ମୋତେ ଖଣ୍ଡଖଣ୍ଡ କରି କାଟି ଦେଇପାର, ତଥାପି ମୁଁ ତୁମକୁ ଭଲ

ପାଇବ । ମନେକର, ତୁମମାନଙ୍କ ମଧ୍ୟରେ ଜଣେ ମାଆ—ଶରୀର ଖୁବ୍ ଦୁର୍ବଳ—ତୁମ ଦୃଷ୍ଟିରେ ହଠାତ୍ ପଡ଼ିଗଲା ଯେ ରାସ୍ତାରେ ଗୋଟିଏ ବାଘ ତୁମର ଶିଶୁଟିକୁ ନେଇ ଯାଉଛି । କୁହତ, ତୁମେ ସେତେବେଳେ କେଉଁଠି ଥିବ ? ଜାଣେ, ତୁମେ ଏଇ ବ୍ୟାଘ୍ରଟିର ସମ୍ମୁଖୀନ ହେବ ହିଁ ହେବ । ଅନ୍ୟ ସମୟରେ ରାସ୍ତାରେ ଗୋଟିଏ କୁକୁର ଦେଖିଲେ ତୁମେ ଡରି ପଳାଉଥିଲ, କିନ୍ତୁ ବର୍ତ୍ତମାନ ତୁମେ ବାଘ ମୁହଁରୁ ତୁମର ପ୍ରାଣର ଧନ ପିଲାଟିକୁ ଛଡ଼ାଇ ଆଣିବା ପାଇଁ ବାଘ ଉପରକୁ କୁଦି ପଡ଼ୁଛ । ପ୍ରେମ ପ୍ରକୃତରେ ଭୟ ମାନେ ନାହିଁ । ଏହା ସବୁପ୍ରକାର ମନ୍ଦକୁ ଜୟ କରେ । ଈଶ୍ୱରଙ୍କୁ ଭୟ କରିବା ଭିତରୁ ଧର୍ମଭାବର ସୂତ୍ରପାତ ହୋଇପାରେ, ମାତ୍ର ଏହାର ପର୍ଯ୍ୟବସାନ ହୁଏ ପ୍ରେମରେ । ସେତେବେଳେ ସମସ୍ତ ଭୟ ଆଶଙ୍କାର ସତେକି ମୃତ୍ୟୁ ହୋଇଯାଇଛି ।

ତୃତୀୟଟି (ତ୍ରିକୋଣାତ୍ମକ ପ୍ରେମର ତୃତୀୟ କୋଣ) ହେଲା—ପ୍ରେମ ନିଜେ ହିଁ ନିଜର ଲକ୍ଷ୍ୟ । ଏହା କେବେ ବି ଆଉ କୌଣସି ଲକ୍ଷ୍ୟ ବା ଉଦ୍ଦେଶ୍ୟର ଉପାୟ ହୋଇ-ପାରେ ନାହିଁ । ଯେ କହେ, "ମୁଁ ତୁମକୁ ଏହିସବୁ କାରଣରୁ ବା ଏହିସବୁ ପାଇବାକୁ ଭଲପାଏ"—ସେ ପ୍ରକୃତରେ ଭଲ ପାଏ ନାହିଁ—ପ୍ରେମ କରେ ନାହିଁ । ପ୍ରେମ କେବେ ବି କୌଣସି ପ୍ରକାର ଉଦ୍ଦେଶ୍ୟ-ସାଧନର ଉପାୟ ନୁହେଁ । ପ୍ରେମ ନିଜେ ହିଁ ନିଜର ପୂର୍ଣ୍ଣତମ ସିଦ୍ଧି । ପ୍ରେମର ସୀମା ଓ ଆଦର୍ଶ କ'ଣ ? ଈଶ୍ୱରଙ୍କଠାରେ ପରମ ଅନୁରାଗ—ଏହା ହିଁ ସବୁ କିଛି । କାହିଁକି ଭଲ ମଣିଷ ଈଶ୍ୱରଙ୍କୁ ଭଲ ପାଇବ ? ଏହି 'କାହିଁକି'ର କିଛି ଉତ୍ତର ନାହିଁ । କାରଣ ଭଲପାଇବା ତ କୌଣସି ଅଭୀଷ୍ଟ-ସିଦ୍ଧିର ଉଦ୍ଦେଶ୍ୟରେ ହୁଏନା ! ପ୍ରକୃତ ପ୍ରେମ ଆସିଲେ ଏହା ହିଁ ମୁକ୍ତି, ଏହା ହିଁ ପୂର୍ଣ୍ଣତା, ଏହା ହିଁ ସ୍ୱର୍ଗ । ଆଉ କ'ଣ ଦରକାର ? ଆଉ ବା ପ୍ରାପ୍ତବ୍ୟ କ'ଣ ଥାଇପାରେ ? ପ୍ରେମ ଅପେକ୍ଷା ଆଉ କ'ଣ ଅଧିକ ମହତ୍ତର କିଛି ତୁମେ ପାଇପାର ?

ଆମେ ସମସ୍ତେ ପ୍ରେମ ଅର୍ଥରେ ଯାହା ବୁଝୁ, ମୁଁ ସେହି କଥା କହୁ ନାହିଁ । ଏମିତି ଟିକିଏ ଭାବପ୍ରବଣ ପ୍ରେମ ଦେଖିବାକୁ ବେଶ୍ ସୁନ୍ଦର । ପୁରୁଷ ନାରୀକୁ ଭଲ ପାଇଲା ଏବଂ ନାରୀ ପୁରୁଷ ଲାଗି ପ୍ରାଣ ଦେବାକୁ ପ୍ରସ୍ତୁତ । କିନ୍ତୁ ଏମିତି ବି ଦେଖାଯାଏ ଯେ, ପାଞ୍ଚମିନିଟ୍ ଭିତରେ ଜନ୍ (John) ଜେନ୍ (Jane)କୁ ପଦାଘାତ କଲା ଏବଂ ଜେନ୍ ମଧ୍ୟ ଜନ୍ ମୁଣ୍ଡରେ ରୁଟି ବେଲଣାବାଡ଼ିରେ କଷିକରି ପାହାରେ ନ ବସାଇ ଛାଡ଼ିଲା ନାହିଁ । ଏହା ବୈଷୟିକ ଭାବ, ପ୍ରେମ ନୁହେଁ ନିଶ୍ଚୟ । ଯଦି ଜନ୍ ସତକୁସତ ଜେନ୍‌କୁ ଭଲ ପାଇଥାନ୍ତା, ତେବେ ସେହି ମୁହୂର୍ତ୍ତରେ ହିଁ ସେ ପୂର୍ଣ୍ଣ ହୋଇ ଯାଇଥାନ୍ତା । ତାହାର ପ୍ରକୃତ ସ୍ୱରୂପ ହିଁ ପ୍ରେମ । ତାହା ସ୍ୱୟଂ-ସମ୍ପୂର୍ଣ୍ଣ । ଜନ୍ କେବଳ ମାତ୍ର ଜେନ୍‌କୁ ଭଲପାଇ, ମାନେ ପ୍ରେମ କରି, ଯୋଗର ସମୁଦାୟ ଶକ୍ତି ପାଇପାରେ । ଯଦିଓ ସେ ହୁଏତ ଧର୍ମର, ମନସ୍ତତ୍ତ୍ୱର, ବା ଈଶ୍ୱର-ସମ୍ବନ୍ଧୀୟ ମତବାଦଗୁଡ଼ିକର ଗୋଟିଏ ମାତ୍ର ଅକ୍ଷର ବି ଜାଣିଥାଇ ନ ପାରେ । ମୋର ବିଶ୍ୱାସ ଯେ, ଯଦି କୌଣସି ପୁରୁଷ ଓ ନାରୀ ପରସ୍ପରକୁ ଯଥାର୍ଥ ଭଲ ପାଇପାରନ୍ତି, ତା'ହେଲେ ଯୋଗୀଗଣ ଯେଉଁ ସମସ୍ତ ବିଭୂତି ଲାଭ କରିଥାନ୍ତି

ବୋଲି ଦାବି କରନ୍ତି, ଏହି ଦମ୍ପତି ମଧ୍ୟ ସେହିସବୁ ଶକ୍ତି ଅର୍ଜନ କରିବାକୁ ସମର୍ଥ ହେବେ। ଯେହେତୁ ପ୍ରେମ ଯେ ସ୍ୱୟଂ ଈଶ୍ୱର। ସେହି ପ୍ରେମ-ସ୍ୱରୂପ ଭଗବାନ ସର୍ବତ୍ର ବିରାଜମାନ ଏବଂ ସେଇଥିପାଇଁ ତୁମମାନଙ୍କ ମଧ୍ୟରେ ଏହି ପ୍ରେମ ବିଦ୍ୟମାନ ରହିଛି—ତୁମେ ସେ କଥା ଜାଣ ବା ନ ଜାଣ।

ଦିନେ ସନ୍ଧ୍ୟା ବେଳେ ମୁଁ ଦେଖିଲି ଯେ, ଜଣେ ଯୁବକ ଜଣେ ତରୁଣୀ ଲାଗି ଅପେକ୍ଷା କରି ବସିଛି।... ମନେ ମନେ ଭାବିଲି, ଯୁବକକୁ ପରୀକ୍ଷା କରିବା ଲାଗି ଏହା ଗୋଟିଏ ଉପଯୁକ୍ତ ଅବସର। ସେ ତା'ର ପ୍ରେମର ଗଭୀରତା ମଧ୍ୟ ଦେଇ ଅତୀନ୍ଦ୍ରିୟ ଦର୍ଶନ ଓ ଦୂରଶ୍ରବଣର କ୍ଷମତା ଲାଭ କରିଥାଏ। ଷାଠିଏ କି ସତୁରି ଥର ଯୁବକଟି କେବେ ବି ଭୁଲ କରିନାହିଁ, ଏବଂ ତରୁଣୀଟି ଥିଲା ଦୁଇଶ ମାଇଲ ଦୂରରେ। ସେ କହେ, 'ଏହି ଭାବରେ ତରୁଣୀଟି ବେଶବିନ୍ୟାସ କରୁଛି'—କିମ୍ବା 'ହେଇଟି ସେ ରାସ୍ତାରେ ଚାଲି ଚାଲି ଯାଉଛି।' ମୁଁ ଏଇଟା ନିଜ ଆଖିରେ ଦେଖିଛି।

ଏଇଟା ହିଁ ହେଲା ପ୍ରଶ୍ନ। ତୁମର ସ୍ୱାମୀ କ'ଣ ଈଶ୍ୱର ନୁହନ୍ତି ? ତୁମର ସନ୍ତାନ କ'ଣ ଈଶ୍ୱର ନୁହନ୍ତି ? ତୁମେ ଯଦି ତୁମର ପତ୍ନୀଙ୍କୁ ଯଥାର୍ଥରେ ଭଲ ପାଇପାର, ତେବେ ଜଗତରେ ଯେତେ ଧର୍ମ ଅଛି, ସେସବୁ ଭାବ ହିଁ ତୁମ ହୃଦୟରେ ଫୁଟି ଉଠିବ। ତୁମ ନିଜ ଭିତରେ ହିଁ ତୁମେ ଧର୍ମ ଓ ଯୋଗର ସମସ୍ତ ରହସ୍ୟ ଲାଭ କରିପାରିବ। କିନ୍ତୁ ଭଲପାଇ ପାରିବ କି ତୁମେ ? ପ୍ରଶ୍ନ ତ ସେଇଠି। ତୁମେ କୁହ, "ମେରି ! ମୁଁ ତୁମକୁ ଭଲପାଏ... ଆହା ! ମୁଁ ତୁମ ପାଇଁ ଜୀବନ ମଧ୍ୟ ଦେଇପାରେ।" କିନ୍ତୁ ଯଦି ତୁମ ଆଖିରେ ପଡ଼ିଗଲା ଯେ, ମେରି ଆଉ ଜଣେ ବ୍ୟକ୍ତିକୁ ଚୁମ୍ବନ ଦେଉଛି, ତେବେ ସେହି ମୁହୂର୍ତ୍ତରେ ତୁମେ ତା'ର ଗଳା କାଟି ଦେବାକୁ ମଧ୍ୟ ପ୍ରସ୍ତୁତ ହୋଇଯିବ। ପୁଣି ଅନ୍ୟ ପକ୍ଷରେ ମେରି ଯଦି କେବେ ଦେଖେ ଯେ, ଜନ୍ ଆଉ ଗୋଟିଏ ଝିଅ ସହିତ ଖୁସିଗପ କରୁଛି, ତେବେ ତା' ଆଖିକୁ ରାତିସାରା ନିଦ ଆସିବ ନାହିଁ ଏବଂ ସେ ଜନ୍‌ର ଜୀବନକୁ ନର୍କ ଭଳି ଦୁର୍ବିସହ କରିଦେବ। ଏହା କେବେ ବି 'ପ୍ରେମ' ପଦବାଚ୍ୟ ହୋଇପାରେ ନାହିଁ। ଏହା ଖୁବ୍ ବେଶୀ ହେଲେ ଏକ 'ଯୌନକ୍ରୟ-ବିକ୍ରୟ ବ୍ୟାପାର।' ଏହାକୁ ପ୍ରେମ ଆଖ୍ୟା ଦେବା ଅତୀବ ନିନ୍ଦନୀୟ। ସଂସାରର ଲୋକମାନେ ଦିବାରାତ୍ର ଈଶ୍ୱର ଓ ଧର୍ମ ବିଷୟରେ ଗପୁଥାନ୍ତି। ସେହିଭଳି ପ୍ରେମ ବିଷୟରେ ବି ଗପୁଥାନ୍ତି। ପ୍ରତ୍ୟେକ ବିଷୟକୁ ଶେଷ ପର୍ଯ୍ୟନ୍ତ ଭଣ୍ଡାମିରେ ପରିଣତ କରି ଛାଡ଼ିଦିଅ—ଏହା ହିଁ ତ ତୁମେ ସମସ୍ତେ କରି ଚାଲିଛ ! ସମସ୍ତେ 'ପ୍ରେମ ପ୍ରେମ' ବୋଲି ହୁରି ଛାଡ଼ୁଛି; ତେବେ ସମ୍ବାଦପତ୍ର ସ୍ତମ୍ଭରେ—ଆମେ ପଢ଼ୁଛୁ ପ୍ରତିଦିନ ବିବାହ-ବିଚ୍ଛେଦର କାହାଣୀ। ଯେତେବେଳେ ତୁମେ ଜନ୍‌କୁ ଭଲ ପାଅ, ସେତେବେଳେ କ'ଣ ତାଆରି ପାଇଁ ତାକୁ ଭଲ ପାଅ, ନା ତୁମ ପାଇଁ ତାକୁ ଭଲ ପାଅ ? ଯଦି ତୁମେ ତୁମରି ପାଇଁ ତାକୁ ଭଲ ପାଉଥାଅ, ତା'ହେଲେ ତୁମେ ଜନ୍ ପାଖରୁ କିଛି ଆଶାକର। ଯଦି ତା' ପାଇଁ ତାକୁ ଭଲ ପାଉଥାଅ, ତେବେ ଜନ୍ ପାଖରୁ ତୁମେ କିଛିମାତ୍ର ପ୍ରତ୍ୟାଶା କର ନାହିଁ। ସେ ତା'ର ଇଚ୍ଛାନୁଯାୟୀ ଯାହା ଖୁସି କରିପାରେ ଏବଂ ତୁମେ ତାକୁ ଦେହି ଏକା

ସ୍ୱବରେ ହିଁ ଭଲ ପାଇବ ।

ଏହି ତିନୋଟି ବିନ୍ଦୁ ଓ ତିନୋଟି କୋଣରେ ତିଆରି ହୋଇଛି ପ୍ରେମର ତ୍ରିଭୁଜ । ଏହି ପ୍ରେମ ବ୍ୟତୀତ ତୁମର ଦର୍ଶନଶାସ୍ତ୍ର ଶୁଖିଲା ହାଡ଼ ଭଳି—ମନସ୍ତତ୍ତ୍ୱ ଏକ ପ୍ରକାର ମତବାଦ-ବିଶେଷ ଏବଂ କର୍ମ କର୍ତ୍ତବ୍ୟ ହେଲା କେବଳ ପଣ୍ଡ ଶ୍ରମ । ପ୍ରେମ ରହିଲେ ଦର୍ଶନ ହୋଇଉଠେ କବିତା—ମନୋବିଜ୍ଞାନ ହୋଇଉଠେ ମରମୀ ଅନୁଭୂତି—ଏବଂ କର୍ମ ହୋଇଉଠେ ସୃଷ୍ଟି ଭିତରେ ମଧୁରତମ ସେବା । କେବଳମାତ୍ର ଗ୍ରନ୍ଥ ଅଧ୍ୟୟନ କଲେ ଲୋକ ଶୁଷ୍କ ହୋଇଯାଏ । ବିଦ୍ୱାନ୍ କିଏ ? ଯେ ଅନ୍ତତଃ ଏକବିନ୍ଦୁ ପ୍ରେମ ବି ଅନୁଭବ କରିପାରେ, ଈଶ୍ୱର ହିଁ ପ୍ରେମ ଓ ପ୍ରେମ ହିଁ ଈଶ୍ୱର । ଆଉ ଈଶ୍ୱର ତ ରହିଛନ୍ତି ସବୁ ସ୍ଥାନରେ । ଭଗବାନ ପ୍ରେମ-ସ୍ୱରୂପ ଏବଂ ସର୍ବତ୍ର ବିରାଜମାନ—ଏହି କଥାଟି ଯେ ଅନୁଭବ କରେ, ସେ ବୁଝି ପାରେନା ଯେ ସେ ନିଜର ମୁଣ୍ଡ ଉପରେ ବା ନିଜ ପାଦ ଉପରେ ଭର ଦେଇ ଠିଆ ହୋଇଛି । ଯେପରି ବୋତଲେ ମଦ ଖାଇଥିବା ଲୋକଟି ଜାଣିପାରେନା ଯେ ସେ କେଉଁଠାରେ ଠିଆ ହୋଇଛି ।··· ଯଦି ଆମେ ଅନ୍ତତଃ ଦଶ ମିନିଟ ଭଗବାନଙ୍କ ପାଇଁ କାନ୍ଦୁ, ତେବେ ପରବର୍ତ୍ତୀ ଦୁଇମାସ ଆମେ କେଉଁଠାରେ ଅଛୁ, ସେ ଜ୍ଞାନ ଆମର ରହିବ ନାହିଁ । ଆହାର ସମୟରେ ବି ଆମେ କ'ଣ ଖାଉଛୁ ତା'ପ୍ରତି ଖିଆଲ ରହିବ ନାହିଁ । ଈଶ୍ୱରଙ୍କୁ ଭଲପାଇବ ଏବଂ ସର୍ବଦା ନିଜର ବେଶ୍ ବ୍ୟବସାୟ-ବୁଦ୍ଧିରେ ମଜ୍ଜିରହିବ— ଏଭଳି ଦୁଇଟା କଥା କିପରି ଏକସଙ୍ଗରେ ଚାଲିପାରିବ ? ପ୍ରେମର ସେହି ସର୍ବଜୟୀ ସର୍ବବ୍ୟାପୀ ଶକ୍ତି କିଭଳି ଆସିପାରେ ?· ·

ମନୁଷ୍ୟ ବିଚାରଶୀଳ ନୁହେଁ । ସେମାନେ ସମସ୍ତେ ପାଗଳ । ଶିଶୁମାନେ ଖେଳରେ ପାଗଳ, ତରୁଣତରୁଣୀମାନେ ପରସ୍ପରକୁ ନେଇ ପାଗଳ, ବୃଦ୍ଧବୃଦ୍ଧାମାନେ ସେମାନଙ୍କର ଅତୀତର ସ୍ମୃତି-ରୋମନ୍ଥନରେ ପାଗଳ । ('ବାଲସ୍ତାବତ୍ କ୍ରୀଡ଼ାସକ୍ତଃ···'ମୋହମୁଦ୍‌ଗରଃ ଶଙ୍କରାଚାର୍ଯ୍ୟ) କେହିବା ଅର୍ଥ ଉପାର୍ଜନ ପଛରେ ପାଗଳ ହୋଇ ଛୁଟିଛି । ସେହିପରି କେହି କେହି ଈଶ୍ୱରଙ୍କ ପାଇଁ ପାଗଳ ନ ହେବେ କିପରି ? ଜନ୍ ତା'ର ପ୍ରେମିକା ଜେନ୍ ଲାଗି ଯେପରି ପାଗଳ ହୋଇ ଛୁଟିଛି, ଈଶ୍ୱରଙ୍କ ପାଇଁ ସେମିତି ଉନ୍ମାଦ ହୁଅ ନାହିଁ ? ଏପରି ଲୋକ କେଉଁଠି ? ଅନେକେ କହନ୍ତି, "ମୁଁ କଅଣ ଏଇଟି ଛାଡ଼ିବି ? ଅମୁକଟା ତ୍ୟାଗ କରିବି ?" ଜଣେ ପଚାରିଲା—"ମୁଁ କଅଣ ବିବାହ କରିବି ନାହିଁ ?"—ନା ! କେଉଁ କଥା ଛାଡ଼ିବା ଦରକାର ନାହିଁ । ବିଷୟ ହିଁ ତୁମକୁ ଛାଡ଼ିଯିବ; ଅପେକ୍ଷା କର, ତୁମେ ସବୁ କିଛି ହିଁ ଭୁଲିଯିବ ।

ସମ୍ପୂର୍ଣ୍ଣରୂପେ ଭଗବତ୍-ପ୍ରେମରେ ପରିଣତ ହେବା—ଏହିଠାରେ ହିଁ ପ୍ରକୃତ ଉପାସନା । ରୋମାନ୍ କାଥୋଲିକ୍ ସମ୍ପ୍ରଦାୟରେ ସମୟେ ସମୟେ ଏହାର କିଛି ଆଭାସ ମିଳେ । ସେହି ସବୁ ଅତ୍ୟାଶ୍ଚର୍ଯ୍ୟ ସନ୍ନ୍ୟାସୀ ଓ ସନ୍ନ୍ୟାସିନୀମାନେ ଅଲୌକିକ ଭଗବତ୍-ପ୍ରେମରେ କିଭଳି ଆତ୍ମହରା ହୋଇ ଜୀବନଯାକ ବୁଲୁଥାନ୍ତି !! ଏହିଭଳି ପ୍ରେମ ହିଁ ଲାଭ କରିବାକୁ ହେବ । ଐଶ୍ୱରିକ ପ୍ରେମ ଏହିପ୍ରକାର ହେବା ହିଁ ଉଚିତ—କିଛିମାତ୍ର ଆଶା ନ କରି

କିଛି ମାତ୍ର ଅନ୍ୱେଷଣ ନ'କର ।

ପ୍ରଶ୍ନ ଥିଲା — କେଉଁ ଭାବରେ ଉପାସନା କରିବାକୁ ହେବ ? ତୁମର ସମସ୍ତ ବିଷୟ-ସମ୍ପଦ, ତୁମର ସକଳ ପରିଜନ, ସନ୍ତାନସନ୍ତତି ସମସ୍ତଙ୍କ ଅପେକ୍ଷା ଈଶ୍ୱରଙ୍କୁ ହିଁ ପ୍ରିୟତର ଭାବି ଉପାସନା କର । ତାଙ୍କୁ ଉପାସନା କର, ଯେପରିକି ତୁମେ ସ୍ୱୟଂ ପ୍ରେମକୁ ହିଁ ପ୍ରେମ କରୁଛ । ଏପରି ଜଣେ ଅଛନ୍ତି, ଯାହାଙ୍କ ନାମ 'ଅନନ୍ତ ପ୍ରେମ' — ଏହା ହିଁ ଈଶ୍ୱରଙ୍କର ଏକମାତ୍ର ସଂଜ୍ଞା । ଯଦି ଏହି ··ବିଶ୍ୱବ୍ରହ୍ମାଣ୍ଡ ଧ୍ୱଂସ ପାଇଯାଏ, କିଛି ମାତ୍ର ଭାବ ନାହିଁ । ଯେତେବେଳଯାଏ ଅନନ୍ତପ୍ରେମସ୍ୱରୂପ ସେ ରହିଛନ୍ତି, ସେତେବେଳଯାଏ ଆମର ଆଉ ଭାବନା କାହିଁ ପାଇଁ ? ଉପାସନାର ଅର୍ଥ କଅଣ, ତୁମେମାନେ ଦେଖିଲ ତ ? ଅନ୍ୟ ସବୁ ଚିନ୍ତା ଅବଶ୍ୟ ଚାଲିଯିବ । ଈଶ୍ୱରଙ୍କ ବ୍ୟତୀତ ସମସ୍ତ ହିଁ ତିରୋହିତ ହୋଇଯିବ । ସନ୍ତାନ ପ୍ରତି ପିତା ବା ମାତାର ଯେଉଁ ସ୍ନେହ, ସ୍ୱାମୀ ପ୍ରତି ସ୍ତ୍ରୀର ଯେଉଁ ପ୍ରେମ, ପତ୍ନୀ ପ୍ରତି ସ୍ୱାମୀର ଯେଉଁ ପ୍ରେମ, ବନ୍ଧୁ ପ୍ରତି ବନ୍ଧୁର ଯେଉଁ ଆକର୍ଷଣ—ଏହିସବୁ ପ୍ରେମକୁ ଏକତ୍ର ଘନୀଭୂତ କରି ଈଶ୍ୱରଙ୍କୁ ଦେବାକୁ ହୁଏ । ଯଦି କୌଣସି ନାରୀ କୌଣସି ଏକ ପୁରୁଷକୁ ଭଲପାଏ, ତେବେ ସେ ଅନ୍ୟ କେଉଁ ପୁରୁଷକୁ ଭଲପାଇପାରେ ନାହିଁ । ଯଦି କୌଣସି ପୁରୁଷ କୌଣସି ନାରୀକୁ ଭଲ ପାଏ, ତେବେ ତା'ପକ୍ଷରେ ଅନ୍ୟ କୌଣସି ନାରୀକୁ ପ୍ରେମ କରିବା ସମ୍ଭବ ନୁହେଁ । ଏହା ହିଁ ହେଲା ପ୍ରେମର ମର୍ମ ।

ମୋର ଗୁରୁଦେବ କହୁଥିଲେ — 'ମନେକର, ଏହି ଘର ଭିତରେ ଥଳିଏ ମୋହର ରହିଛି । ଆଉ ପାଖଘରେ ଗୋଟିଏ ଚୋର ରହିଛି । ସେ ଏଘରେ ମୋହର ଥିବା କଥା ଜାଣେ; ଚୋରଟି ଭଲା କେବେ ଆରଘରେ ଶୋଇପାରିବ ? ନିଶ୍ଚୟ ନୁହେଁ; ସବୁବେଳେ ସେ ପାଗଳ ହୋଇ ଭାବି ଲାଗିବ, କେଉଁ ଉପାୟରେ ମୋହରଗୁଡ଼ିକୁ ଆତ୍ମସାତ୍ କରିବ ?' ··· ଏହିପରି କୌଣସି ଲୋକ ଯଦି ଭଗବାନଙ୍କୁ ଭଲ ପାଏ, ତେବେ ସେ ଭଲା ଆଉ କାହାକୁ ବା ଆଉ କିଛିକୁ କେମିତି ଭଲ ପାଇବ ? ଈଶ୍ୱରଙ୍କ ବିପୁଳ ପ୍ରେମ ସମ୍ମୁଖରେ ଅନ୍ୟ କିଛି ଆଉ କେମିତି ଠିଆହୋଇପାରିବ ? ଏହାଙ୍କ ନିକଟରେ ସବୁ କିଛି ହିଁ ଅନ୍ତର୍ହିତ ହୋଇ-ଯିବ । ସେହି ପ୍ରେମକୁ ଲାଭ କରିବା ନିମିତ୍ତ, ତାକୁ ବାସ୍ତବ କରି ପାଇବା ନିମିତ୍ତ, ତାକୁ ଅନୁଭବ କରି ସେଥିରେ ଅବସ୍ଥାନ କରିବା ନିମିତ୍ତ ପାଗଲ ଭଳି ଦୌଡ଼ାଦୌଡ଼ି ନ କଲେ ମନ ଥୟଧରି ରହିପାରେ କି ?

ଆମେ ଈଶ୍ୱରଙ୍କୁ ଏହିଭାବରେ ଭଲ ପାଇବା—'ପ୍ରିୟତମ ! ମୁଁ ଧନ ଚାହେଁ ନାହିଁ, ବନ୍ଧୁବାନ୍ଧବ ବା ସୌନ୍ଦର୍ଯ୍ୟ ଚାହେଁ ନାହିଁ—ବିଷୟସମ୍ପତ୍ତି, ବିଦ୍ୟା, ଏପରିକି ମୁକ୍ତି ମଧ୍ୟ ଚାହେଁନା । ଯଦି ଏହାହିଁ ତୁମର ଇଚ୍ଛା ହୁଏ, ତେବେ ମୋତେ ସହସ୍ର ମୃତ୍ୟୁ-ମୁଖକୁ ଠେଲି ଦିଅ । ମୋର କେବଳ ଏହି ପ୍ରାର୍ଥନା ଯେ, ମୁଁ ଯେପରି ତୁମକୁ ଭଲପାଇପାରେ—ଆଉ ଯେପରି କେବଳ ଭଲପାଇବା ପାଇଁ ଭଲ ପାଇପାରେ ।'

'ବିଷୟାସକ୍ତ ବ୍ୟକ୍ତିମାନଙ୍କର ବିଷୟ ପ୍ରତି ଯେପରି ଆକର୍ଷଣ, ସେହିଭଳି ତୀବ୍ର ପ୍ରେମ ଯେପରି ମୋର ହୃଦୟରେ ଆସେ ! କିନ୍ତୁ କେବଳ ସେହି ଚିରସୁନ୍ଦରଙ୍କ ପାଇଁ !

ଈଶ୍ୱରଙ୍କୁ ବନ୍ଦନା ! ପ୍ରେମମୟ ଈଶ୍ୱରଙ୍କୁ ବନ୍ଦନା !!' ଈଶ୍ୱର ଏହା ବ୍ୟତୀତ ଅନ୍ୟ କିଛି ନୁହନ୍ତି, ଅନେକ ଯୋଗୀ ଯେଉଁସବୁ ଅଦ୍‌ଭୁତ କ୍ଷମତା ଦେଖାଇପାରନ୍ତି, ସେ ସେଗୁଡ଼ିକ ଗ୍ରାହ୍ୟ କରୁନଥିଲେ । କ୍ଷୁଦ୍ର ଯାଦୁକରମାନେ କ୍ଷୁଦ୍ର କ୍ଷୁଦ୍ର ଯାଦୁ-କୌଶଳ ଦେଖାଇଥାନ୍ତି । ଈଶ୍ୱର କିନ୍ତୁ ସର୍ବଶ୍ରେଷ୍ଠ ଯାଦୁକର । ସେ ଅସଂଖ୍ୟ ପ୍ରକାର ଯାଦୁ-କୌଶଳ ଦେଖାଇ ପାରନ୍ତି, କିଏ ଜାଣେ କେତେ ବ୍ରହ୍ମାଣ୍ଡ ଅଛି ? କିଏ ବା ଭ୍ରୂକ୍ଷେପ କରେ ?

ଆଉ ଗୋଟିଏ ଉପାୟ ଅଛି । ସବୁ କିଛି ଜୟ କରିବାକୁ, ସବୁକିଛି ଦମନ କରିବାକୁ ହେବ—ଶରୀର ଏବଂ ମନ ଉପରେ ଆଧିପତ୍ୟ ବିସ୍ତାର କରିବାକୁ ହେବ ।··· କିନ୍ତୁ ଭକ୍ତ କହନ୍ତି, 'ସବୁକିଛି ଜୟ କରିବାର ସାର୍ଥକତା କ'ଣ ? ମୋର କାମ ତ ଈଶ୍ୱରଙ୍କୁ ନେଇ ।'

ଜଣେ ଥିଲେ ଯୋଗୀ—ଖୁବ୍ ଭକ୍ତ । ଗଳ-କ୍ଷତ ରୋଗରେ ସେ ଯେତେବେଳେ ମୁମୂର୍ଷୁ, ସେତେବେଳେ ଆଉ ଜଣେ ଯୋଗୀ-ଦାର୍ଶନିକ ତାଙ୍କୁ ଦେଖିବାକୁ ଆସିଲେ । ଶେଷୋକ୍ତ ଯୋଗୀ କହିଲେ, 'ଦେଖନ୍ତୁ ! ଆପଣ ଆପଣଙ୍କ କ୍ଷତ ଉପରେ ମନକୁ ଏକାଗ୍ର କରି ଏହି ରୋଗକୁ ଦୂର କରିଦେଉ ନାହାନ୍ତି କାହିଁକି ?' ତୁଇଥର ଏଭଳି କହିସାରି ଯେତେବେଳେ ତୃତୀୟଥର ପୁଣି ସେହି କଥା କହିଲେ, ସେତେବେଳେ ସେହି ପରମଯୋଗୀ ଉତ୍ତର ଦେଲେ, 'ଆହେ ! ଯେଉଁ ମନକୁ ମୋର ମୁଁ ଭଗବାନଙ୍କ ନିକଟରେ ନିବେଦନ କରିସାରିଛି, ତାକୁ ପୁଣି ମୁଁ ତାଙ୍କ ପାଖରୁ ଟାଣିଆଣି ଏହି ହାଡ଼ମାଂସର ପଞ୍ଜୁରି ଭିତରେ ଭର୍ତ୍ତି କରିବି ? ଏହା କ'ଣ କେବେ ସମ୍ଭବ ?' ଯୀଶୁଖ୍ରୀଷ୍ଟ ମଧ୍ୟ ତାଙ୍କୁ ସାହାଯ୍ୟ କରିବାକୁ ଦେବସେନାଦଳକୁ ଡାକିବାକୁ ମନା କରି ଦେଇଥିଲେ । 'ଏହି କ୍ଷୁଦ୍ର ଶରୀର କ'ଣ ଏତେ ମୂଲ୍ୟବାନ ଯେ, ଏହାକୁ ଆଉ ଦୁଇତିନିଦିନ ଅଧିକା ବଞ୍ଚାଇ ରଖିବାକୁ ମୁଁ କୋଡ଼ିଏ ହଜାର ଦେବସେନାଙ୍କୁ ଡାକ ପଠାଇବି ?'

ଜାଗତିକ ଦିଗରୁ ଦେଖିଲେ ଏହି ଶରୀର ହିଁ ଆମର ସର୍ବସ୍ୱ । ଏହା ହିଁ ମୋର ଜଗତ, ମୋର ଭଗବାନ । ମୁଁ ଶରୀର । ମୋ ଦେହକୁ କେହି ଚୁମ୍ବିଲେ ମୋତେ ଲାଗେ ମୋତେହିଁ କଷ୍ଟହେଉଛି, ଯଦି ମୁଣ୍ଡ ବଥାଏ, ତେବେ ଗୋଟିଏ ମୁହୂର୍ତ୍ତରେ ବି ମୁଁ ଭଗବାନଙ୍କୁ ଭୁଲିଯାଏ । ମୁଁ ମୋ ଦେହ ସହିତ ଏପରି ଭାବେ ଜଡ଼ିତ ! ଈଶ୍ୱର ଏବଂ ସବୁ କିଛିକୁ ହିଁ ମୋର ଏହି ଦେହ ନିମିତ୍ତ ହିଁ ଓହ୍ଲାଇ ଆଣିବାକୁ ହେବ । କାରଣ ଏହି ଦେହ ହିଁ ମୋର ସର୍ବୋଚ୍ଚ ଲକ୍ଷ୍ୟ । ଏହି ଦୃଷ୍ଟିକୋଣରୁ ଦେଖିଲେ ଯୀଶୁଖ୍ରୀଷ୍ଟ ଦେବସେନାମାନଙ୍କୁ ନ ଡାକି ମୂର୍ଖ ଭଳି କାର୍ଯ୍ୟ କରିଛନ୍ତି । ସେମାନଙ୍କୁ ସ୍ୱର୍ଗରୁ ଡକାଇ କ୍ରୁଶରୁ ମୁକ୍ତିଲାଭ କରିବା ତାଙ୍କର ଅବଶ୍ୟକର୍ତ୍ତବ୍ୟ ଥିଲ । କିନ୍ତୁ ଯେ ପ୍ରେମିକ, ତାହା ନିକଟରେ ଏହି ଦେହ କିଛି ନୁହେଁ । ତା'ଦିଗରୁ ଦେଖିଲେ—କିଏ ଏହି ଅକିଞ୍ଚିତକର ଦେହବସ୍ତୁଟି ପାଇଁ ଏତେ ମୁଣ୍ଡ ଘୁରାଇବ ଭଲ ? ଏହି ଶରୀର ରହିବ କି ଯିବ, ଏ ବୃଥା ଚିନ୍ତାରେ କି ଲାଭ ? ରୋମାନ୍ ସୈନ୍ୟ-ମାନଙ୍କ ଭାଗ୍ୟ-ନିର୍ଣ୍ଣୟ ପାଇଁ ବ୍ୟବହୃତ ବସ୍ତ୍ରଖଣ୍ଡ ଅପେକ୍ଷା ଏହାର ଦାମ୍ ଏମିତି କଅଣ ବେଶୀ ?

ଜାଗତିକ ଦୃଷ୍ଟି ଓ ପ୍ରେମିକର ଦୃଷ୍ଟି ଭିତରେ ଆକାଶପାତାଳ ପ୍ରଭେଦ । (ସମସ୍ତଙ୍କୁ) ଭଲପାଇଯାଅ । ଯଦି କିଏ କ୍ରୁଦ୍ଧ ହୁଏ, ତୁମକୁ ଯେ ସେଥିପାଇଁ କ୍ରୁଦ୍ଧ ହେବାକୁ ହେବ, ତା'ର କିଛି କାରଣ ନାହିଁ । ଯଦି କିଏ ନିଜକୁ ହୀନ ସ୍ତରକୁ ନେଇ ଯାଏ, ତୁମକୁ ଯେ ସେହି ହୀନ ସ୍ତରକୁ ଓହ୍ଲାଇ ଯିବାକୁ ପଡ଼ିବ, ତା'ର କ'ଣ ମାନେ ଅଛି ?··· 'ଅନ୍ୟ-ଲୋକ ବୋକାମି କରିଛି ବୋଲି ମୁଁ ମଧ୍ୟ ରାଗ କରିବି ? ଅଶୁଭକୁ ପ୍ରତିରୋଧ କର ନାହିଁ ।' ଈଶ୍ୱର-ପ୍ରେମିକଗଣ ଏହିଭଳି କଥା ହିଁ କହିଥାନ୍ତି । ଜଗତ ଯାହା କରୁ, ଯେଉଁଭାବେ ବି ଏହା ଚାଲୁ ନା କାହିଁକି, ସେମାନଙ୍କ ଉପରେ ଏହା କୌଣସି ପ୍ରଭାବ ବିସ୍ତାର କରି ପାରେ ନାହିଁ ।

ଜଣେ ଯୋଗୀ ଅଲୌକିକ ଶକ୍ତି ଅର୍ଜନ କରିଥିଲେ । ସେ କହୁଥିଲେ—"ଦେଖ ମୋର କି ଶକ୍ତି ! ଆକାଶ ଆଡ଼କୁ ଚାହିଁ ଦେଖ । ଏହା ନିର୍ମଳ ଅଛି । ମୁଁ ଏହାକୁ କ୍ଷଣକ ମଧ୍ୟରେ ମେଘଦ୍ୱାରା ଢାଙ୍କି ଦେଇପାରେ ।" ବୃଷ୍ଟି ଆରମ୍ଭ ହୋଇଗଲା । ତତ୍କ୍ଷଣାତ୍ କେହି ଜଣେ କହିଲା—"ପ୍ରଭୁ ! ଆପଣଙ୍କ ଶକ୍ତି କି ଅଦ୍ଭୁତ ! କିନ୍ତୁ ମୋତେ ଏପରି କିଛି ଶକ୍ତି ବା ଶିକ୍ଷା ଦିଅନ୍ତୁ, ଯାହା ପାଇଲେ ମୁଁ ଆଉ କିଛି ଯେପରି ଚାହିଁବି ନାହିଁ ।"

ଶକ୍ତିର ଊର୍ଦ୍ଧ୍ୱକୁ ମଧ୍ୟ ଯିବାକୁ ହେବ । କିଛି ମୁଁ ଚାହେଁ ନାହିଁ—ଶକ୍ତିଲାଭର ବାସନା ହିଁ ନୁହେଁ । ଏହାର ତାତ୍ପର୍ଯ୍ୟ କେବଳ ବୁଦ୍ଧିଦେଇ ବୁଝାପଡ଼େ ନାହିଁ । ହଜାର ବହି ପଢ଼ି ତୁମେ ଜାଣିବାକୁ ସମର୍ଥ ହୋଇପାରିବ ନାହିଁ ।··· ଯେତେବେଳେ ମୁଁ ଏହା ବୁଝିବାକୁ ଆରମ୍ଭ କରେ, ସେତେବେଳେ ସମସ୍ତ ଜଗତର ରହସ୍ୟ ଯେମିତି ମୋ ଆଗରେ ଖୋଲିଖୋଲି ଯାଏ !··· ଗୋଟିଏ ଛୋଟ ଝିଅ ତାହାର କଣ୍ଢେଇ ନେଇ ଖେଳୁଛି··· ସବୁବେଳେ ସେ ନୂଆ ନୂଆ ସ୍ୱାମୀ ପାଉଛି—କିନ୍ତୁ ଯେତେବେଳେ ତା'ର ପ୍ରକୃତ ସ୍ୱାମୀ ଆସି ପହଞ୍ଚିଯାଏ, ସେତେବେଳେ ସେ ତା'ର କଣ୍ଢେଇ-ସ୍ୱାମୀଗୁଡ଼ିକୁ ଚିରକାଳ ଲାଗି ଫିଙ୍ଗି ଦିଏ ।

ଜଗତର ସବୁ କିଛି ସମ୍ବନ୍ଧରେ ସେହି ଗୋଟିଏ କଥା । ଯେତେବେଳେ ପ୍ରେମ-ସୂର୍ଯ୍ୟ ଉଦିତ ହୁଏ, ସେତେବେଳେ ଏହିସବୁ ଖେଳଘରର ଶକ୍ତି-ସୂର୍ଯ୍ୟ, ଏହିସବୁ କାମନା-ବାସନା ଅନ୍ତର୍ହିତ ହୋଇଯାଏ । ଶକ୍ତିକ୍ଷମତାଦି ପାଇଲେ ଆମେ କ'ଣ କରିବା ? ଯେତିକି ଶକ୍ତି ତୁମର ଅଛି, ତା' ହାତରୁ ଯଦି ଅବ୍ୟାହତି ପାଅ ତ ଈଶ୍ୱରଙ୍କୁ ଧନ୍ୟବାଦ ଦିଅ । ଭଲପାଇବାକୁ ଆରମ୍ଭ କର । କ୍ଷମତାର ମୋହ ନିଶ୍ଚୟ କାଟିବାକୁ ହେବ । ମୋର ଆଉ ଭଗବାନଙ୍କ ଭିତରେ କେବଳ ପ୍ରେମ ବ୍ୟତୀତ ଆଉ କିଛି ଯେମିତି ଠିଆ ହୋଇ ନ ଯାଏ । ଭଗବାନ ପ୍ରେମ-ସ୍ୱରୂପ । ସେ ଆଉ ଅନ୍ୟ କିଛି ନୁହନ୍ତି । ଆଦିରେ ପ୍ରେମ, ମଧ୍ୟରେ ପ୍ରେମ ଓ ଶେଷରେ ମଧ୍ୟ ସେହି ପ୍ରେମ ।

ଜଣେ ରାଣୀଙ୍କ ସମ୍ବନ୍ଧରେ ଗୋଟିଏ ଗଳ୍ପ ପ୍ରଚଳିତ ଅଛି । ସେ ରାସ୍ତା ରାସ୍ତା ବୁଲି ଭଗବତ୍-ପ୍ରେମ ପ୍ରଚାର କରୁଥାନ୍ତି । ଏଥିରେ ତାଙ୍କର ସ୍ୱାମୀ କ୍ରୁଦ୍ଧ ହୋଇ ତାଙ୍କ ଉପରେ ସବୁବେଳେ ଅତ୍ୟାଚାର କରିବାକୁ ଆରମ୍ଭ କଲେ । ଖୁବ୍ ନିର୍ଯ୍ୟାତନା ଦେଲେ । ରାଣୀ

ତାଙ୍କର ଭଗବତ୍-ପ୍ରେମ ବର୍ଣ୍ଣନା କରି ସଙ୍ଗୀତ ଗାଉଥାନ୍ତି । ତାଙ୍କର ସେହି ଗୀତଗୁଡ଼ିକ ସବ୍ବନ୍ଧ ସମ୍ବନ୍ଧରେ ବୋଲୁଥାନ୍ତି । —"ମୋର ଆଖିର ଜଳରେ ମୁଁ ପ୍ରେମର ଅକ୍ଷୟଲତା ବଢ଼ାଇଛି ।" ଏହା ହିଁ ଚରମ, ମହାନ୍ ଲକ୍ଷ୍ୟ । ଏହା ବ୍ୟତୀତ ଆଉ କ'ଣ ଅଛି ? ଲୋକେ ଏକଥା ସେକଥା ନାନା କଥା ଚାହାଁନ୍ତି । ସେମାନେ ସମସ୍ତେ ପାଇବାକୁ ଓ ସଞ୍ଚୟ କରିବାକୁ ଚାହାଁନ୍ତି । ଏଇଥିଲାଗି ଖୁବ୍ କମ୍ ଲୋକ ଏହା ଲାଭ କରିପାରନ୍ତି । ସେମାନଙ୍କୁ ଜାଗ୍ରତ କର ଓ ଏହି କଥା କୁହ । ତା'ହେଲେ ଯାଇ ସେମାନେ ଏ ବିଷୟରେ ଆଉ କିଛି ସଙ୍କେତ ପାଇବେ ।

ପ୍ରେମ ସ୍ୱୟଂ ଶାଶ୍ୱତ, ଅନ୍ତହୀନ, ତ୍ୟାଗସ୍ୱରୂପ । ତୁମକୁ ସବୁ କିଛି ଛାଡ଼ିବାକୁ ହେବ । କିଛି ମାତ୍ର ତୁମର ଅଧିକାରରେ ରହିବା ଚଳିବ ନାହିଁ । ପ୍ରେମ ଲାଭ କଲେ, ତୁମର ଆଉ କିଛିର ହିଁ ପ୍ରୟୋଜନ ରହିବ ନାହିଁ ।··· "ଚିରକାଳ ଲାଗି କେବଳ ତୁମେ ହିଁ ମୋର ପ୍ରେମର ଧନ ହୋଇ ରହିଥାଅ, ପ୍ରିୟତମ !" ପ୍ରେମ କେବଳ ଏତକ ହିଁ ଚାହେଁ—"ମୋର ପ୍ରେମାସ୍ପଦଙ୍କ ଅଧରୋଷ୍ଠର ଗୋଟିଏ ମାତ୍ର ଚୁମ୍ବନ ! ଆହା ! ଯେ ତୁମ ଚୁମ୍ବନର ସୌଭାଗ୍ୟ ଲାଭ କରିଛି, ତା'ର ସମସ୍ତ ଦୁଃଖ ଅନ୍ତର୍ହିତ ହୋଇ ଯାଇଛି । ଗୋଟିଏ ମାତ୍ର ଚୁମ୍ବନରେ ମଣିଷ ଏଭେ ସୁଖୀ ହୋଇଯାଏ ଯେ, ଅନ୍ୟ କାହାରି ଉପରୁ ଆକର୍ଷଣ ତା'ର ମନରୁ ସମ୍ପୂର୍ଣ୍ଣ ବିଲୁପ୍ତ ହୋଇଯାଏ । ସେ କେବଳ ତୁମରି ହିଁ ସ୍ତୁତିରେ ମଗ୍ନ ରହିଥାଏ ଏବଂ କେବଳ ତୁମକୁ ହିଁ ଦେଖେ ।" (ତୁଳନୀୟ, ଶ୍ରୀମଦ୍‌ଭାଗବତ-ଗୋପୀଗୀତା) ଆମର ମାନବୀୟ ପ୍ରେମରେ ମଧ୍ୟ ଦିବ୍ୟପ୍ରେମର ସତ୍ତା ଲୁଚି ରହିଥାଏ । ଗଭୀର ପ୍ରେମର ପ୍ରଥମ ମୁହୂର୍ତ୍ତରେ ସମସ୍ତ ଜଗତ ଯେପରି ଗୋଟିଏ ସ୍ୱରରେ ତୁମ ହୃଦୟ-ବୀଣାରେ ଝଙ୍କୃତ ହୋଇଉଠେ ! ବଣର ପ୍ରତ୍ୟେକଟି ପକ୍ଷୀ ଯେପରି ତୁମରି ପ୍ରେମର ହିଁ ସଙ୍ଗୀତ ଗାଇ ଚାଲିଛି ! ପ୍ରତିଟି ଫୁଲ ଯେପରି ତୁମରି ଲାଗି ହିଁ ଫୁଟି ରହିଛି ! ଚିରନ୍ତନ ଅସୀମ ପ୍ରେମ ଭିତରୁ ହିଁ ଏହି ମାନବୀୟ ପ୍ରେମ ଉଦ୍‌ଭୂତ ।

ଈଶ୍ୱର-ପ୍ରେମିକ କାହାକୁ କାହିଁକି ଭୟ କରିବ ? ଦସ୍ୟୁ-ତସ୍କରର, ଦୁଃଖ-ଦୁର୍ବିପାକର, ଏପରିକି ନିଜ ଜୀବନର ଭୟ ମଧ୍ୟ ତା'ର ନାହିଁ ।··· ପ୍ରେମିକ ଅନନ୍ତ ନର୍କକୁ ଯିବା ଲାଗି ମଧ୍ୟ ପ୍ରସ୍ତୁତ । କିନ୍ତୁ ସେତେବେଳେ କଅଣ ଏହା ଆଉ ନର୍କ ହୋଇ ରହିଥିବ ? ସ୍ୱର୍ଗ, ନର୍କ—ଏହିସବୁ ଧାରଣା ତ୍ୟାଗ କରି ଆମମାନଙ୍କୁ ଉଚ୍ଚତର ପ୍ରେମ ଆସ୍ୱାଦନ କରିବାକୁ ହେବ ।··· ଶତଶତ ଲୋକ ପ୍ରେମର ଅନୁସନ୍ଧାନରେ ତତ୍ପର, କିନ୍ତୁ ଏହା ଆସିଲେ ଭଗବାନଙ୍କ ଛଡ଼ା ଆଉ ସବୁ କିଛି ହିଁ ଅଦୃଶ୍ୟ ହୋଇଯାଏ ।

ଅବଶେଷରେ ପ୍ରେମ, ପ୍ରେମାସ୍ପଦ ଏବଂ ପ୍ରେମିକ, ତିନିହେଁଯାକ ଏକ ହୋଇ-ଯାନ୍ତି । ଏହା ହିଁ ଲକ୍ଷ୍ୟ ।··· ଆତ୍ମା ଓ ମଣିଷ ଭିତରେ ଏବଂ ଆତ୍ମା ଓ ଈଶ୍ୱରଙ୍କ ଭିତରେ ପାର୍ଥକ୍ୟ କାହିଁକି ରହିଛି ? ·· କେବଳ ଏହି ପ୍ରେମ ଉପଭୋଗ କରିବା ନିମନ୍ତେ । ଈଶ୍ୱର ନିଜକୁ ଭଲପାଇବାକୁ ଚାହିଁଲେ—ସେଥିପାଇଁ ସେ ନିଜକୁ ନାନା ଭାଗରେ ବିଭକ୍ତ କଲେ ।··· ପ୍ରେମିକ କହେ—"ସୃଷ୍ଟିର ସମସ୍ତ ତାତ୍ପର୍ଯ୍ୟ ହିଁ ଏହା ।" ଆମେ ସମସ୍ତେ ଏକ । —"ମୁଁ

ଓ ମୋର ପିତା ଏକ ।" ବର୍ତ୍ତମାନ ଈଶ୍ୱରଙ୍କୁ ଭଲପାଇବା ପାଇଁ ମୁଁ ପୃଥକ୍ ହୋଇଛି । .. କେଉଁଟି ଭଲ—ଚିନି ହେବା ନା ଚିନି ଖାଇବା ? ନିଜେ ଯଦି ଚିନି ହୋଇଯିବ, ସେଥିରେ ଆଉ ଆନନ୍ଦ କ'ଣ ରହିଲା ? ଚିନି ଖାଇବା—ଏହା ହିଁ ହେଲା ପ୍ରେମର ଅନନ୍ତ ଉପଭୋଗ ।

ପ୍ରେମର ସମଗ୍ର ଆଦର୍ଶ ହେଲା—ଈଶ୍ୱରଙ୍କୁ ଆମର ପିତା, ମାତା, ସଖା, ସନ୍ତାନ ଭାବେ ଭାବିବାର ପ୍ରଣାଳୀ—ଭକ୍ତିକୁ ଦୃଢ଼ କରିବାପାଇଁ ଏବଂ ଗଭୀରତର ଭାବରେ ତାଙ୍କର ସାନ୍ନିଧ୍ୟ ଲାଭ କରିବା ନିମିତ୍ତ । ସ୍ତ୍ରୀ-ପୁରୁଷଙ୍କ ଭିତରେ ହିଁ ପ୍ରେମର ତୀବ୍ର ଅଭିବ୍ୟକ୍ତି । ଈଶ୍ୱରଙ୍କୁ ଏହି ଭାବରେ ହିଁ ଭଲ ପାଇବାକୁ ହେବ । ନାରୀ ତା'ର ପିତାଙ୍କୁ ଭଲପାଏ—ମାତା, ସନ୍ତାନ ଏବଂ ବନ୍ଧୁଙ୍କୁ ମଧ୍ୟ ଭଲପାଏ । କିନ୍ତୁ ପିତା, ମାତା, ସନ୍ତାନ ବା ବନ୍ଧୁ ନିକଟରେ ସେ ନିଜକୁ ସମ୍ପୂର୍ଣ୍ଣ ଭାବେ ପ୍ରକାଶ କରିପାରେ ନାହିଁ । କେବଳ ଜଣକ ନିକଟରେ ତା'ର ଗୋପନୀୟ କିଛି ରହେ ନାହିଁ । ପୁରୁଷ ପକ୍ଷରେ ମଧ୍ୟ ସେହିଭଳି । ପତିପତ୍ନୀର ସମ୍ପର୍କ ସର୍ବାଙ୍ଗୀନ । ଏହି ସମ୍ପର୍କରେ ଅନ୍ୟ ସବୁପ୍ରକାର ପ୍ରେମ ଏକୀଭୂତ ହୋଇଯାଏ । ପତ୍ନୀ ତା'ର ସ୍ୱାମୀ ଭିତରେ ପିତା, ମାତା, ସନ୍ତାନ ସମସ୍ତଙ୍କୁ ପାଏ । ସ୍ୱାମୀ ପତ୍ନୀ ଭିତରେ ମାତା କନ୍ୟା ପ୍ରଭୃତିର ସବୁକିଛି ଲାଭ କରିଥାଏ । ସ୍ତ୍ରୀ-ପୁରୁଷର ଏହି ସର୍ବଗ୍ରାସୀ ପରିପୂର୍ଣ୍ଣ ପ୍ରେମକୁ ଈଶ୍ୱରଙ୍କ ଅଭିମୁଖରେ ପରିଚାଳିତ କରିବାକୁ ହେବ । ସମ୍ପୂର୍ଣ୍ଣ ନିର୍ଭୟ ହୋଇ ଲଜ୍ଜାବିରହିତା ହୋଇ, ରକ୍ତସମ୍ବନ୍ଧକୁ ଖାତିର ନ କରି ନାରୀ ଯେଉଁ ପ୍ରେମକୁ ତା'ର ପ୍ରିୟତମଙ୍କ ନିକଟରେ ନିବେଦନ କରେ—ସେହି ପ୍ରେମକୁ ହିଁ ଈଶ୍ୱରଙ୍କ ଆଡ଼କୁ ବୁହାଇ ଦେବାକୁ ହେବ । କୌଣସି ଅହଙ୍କାର ନାହିଁ । ତା'ର ନିଜ ପାଖରେ ଯେମିତି ଗୋପନ କରିବାର କିଛି ନାହିଁ—ସେହିପରି ତା'ର ପ୍ରେମାସ୍ପଦଙ୍କ ନିକଟରେ ମଧ୍ୟ ଗୋପନ ବୋଲି କିଛି ନାହିଁ । ଏହିଭଳି ପ୍ରେମ ଈଶ୍ୱରଙ୍କ ପ୍ରତି ଆସିବା ଉଚିତ । ଏହି ବିଷୟଗୁଡ଼ିକ ଧାରଣା କରିବା ଅତ୍ୟନ୍ତ କଠିନ । ତୁମେମାନେ ଧୀରେ ଧୀରେ ଏହି କଥାସବୁ ବୁଝିପାରିବ । ସେତେବେଳେ ସମସ୍ତ ଯୌନଭାବ ମଧ୍ୟ ଦୂରକୁ ଚାଲିଯିବ । 'ତତଲ ବାଲିରେ ପାଣିଟୋପା ପରି' ଏହି ଜୀବନ ଓ ଏହାର ସମସ୍ତ ସମ୍ପର୍କ ।

ଭଗବାନ ହେଉଛନ୍ତି ସ୍ରଷ୍ଟା ଇତ୍ୟାଦି, ଏପରି ଭାବିବା ଓ କହିବା ହେଲା ବାଳକ-ମାନଙ୍କର ଉପଯୁକ୍ତ ଚିନ୍ତା ଓ କଥା । ସେ ହେଉଛନ୍ତି ମୋର ପ୍ରିୟ, ପ୍ରିୟତମ, ମୋର ଜୀବ-ଜୀବନ — ଏହା ହିଁ ହେଉ ଆମର ଅନ୍ତରର ବାଣୀ ।...

'ପ୍ରିୟତମ ! ମୋର ଗୋଟିଏ ମାତ୍ର ଆଶା ଅଛି । ଲୋକେ କହନ୍ତି—ତୁମେ ଜଗତର ପ୍ରଭୁ ! ("ତୁହୁଁ ଜଗତନାଥ, ଜଗତେ କହାୟସି, ନହିଁ ମୁହିଁ ଜଗତ କ ବାର !"-ବିଦ୍ୟାପତି) ପ୍ରିୟ ! ତୁମେ ହିଁ ମୋର ଭଲ ମନ୍ଦ ସବୁ କିଛି । ତୁମେ ହିଁ ମୋର ଛୋଟ ବଡ଼, ଅଳ୍ପ ବହୁତ ସବୁ କିଛି । ମୁଁ ମଧ୍ୟ ତୁମର ଜଗତର ଅଂଶ ଏବଂ ତୁମେ ହିଁ ମୋର ପ୍ରିୟ । ମୋର ଶରୀର, ମନ, ଆତ୍ମା ସବୁ କିଛି ତୁମର ପୂଜାବେଦୀ ଉପରେ ଉତ୍ସର୍ଗୀକୃତ । ହେ ପ୍ରିୟ ! ମୋର ଏହି ଉପହାରଗୁଡ଼ିକୁ ପ୍ରତ୍ୟାଖ୍ୟାନ କର ନାହିଁ ।

# ପ୍ରେମର ଧର୍ମ

[୧୮୯୫ ଖ୍ରୀଷ୍ଟାବ୍ଦ ନଭେମ୍ବର ୧୬ ତାରିଖ ଦିନ ଲଣ୍ଡନରେ ପ୍ରଦତ୍ତ ଭାଷଣର ଅନୁଲିପି]

ଅନୁଭୂତିର ଗଭୀର ସ୍ତରରେ ଉପନୀତ ହେବା ପାଇଁ ପ୍ରତୀକ-ଉପାସନା ଏବଂ ଅନୁଷ୍ଠାନାଦି ଭିତର ଦେଇ ଯିବାର ପ୍ରୟୋଜନ ନିଶ୍ଚିତ ଅଛି । ସେଥିଯୋଗୁଁ ଭାରତ-ବର୍ଷରେ ଆମେମାନେ କହିଥାଉଁ ଯେ, 'କୌଣସି ଧର୍ମମତର ଗଣ୍ଡି ଭିତରେ ଜନ୍ମ ନେବା ଭଲ, କିନ୍ତୁ ସେହି ମତବାଦକୁ ନେଇ ମରିବା ଭଲ ନୁହେଁ ।' ଗୁଛ ଗଛଟିକୁ ରକ୍ଷା କରିବା ଲାଗି ତା'ର ଚାରିକଡ଼େ ବାଡ଼ ବାନ୍ଧିବା ଉଚିତ; କିନ୍ତୁ ସେହି ଗୁଛଗଛଟି ଯେତେବେଳେ ବୃକ୍ଷରେ ପରିଣତ ହୁଏ, ସେତେବେଳେ ସେହି ବାଡ଼ ପୁଣି ବାଧା ହୋଇ ଠିଆ ହୁଏ । ସୁତରାଂ ପ୍ରାଚୀନ ପଦ୍ଧତିଗୁଡ଼ିକୁ ସମାଲୋଚନା ଓ ନିନ୍ଦା କରିବାର କୌଣସି ପ୍ରୟୋଜନୀୟତା ନାହିଁ । ଆମେ ଭୁଲିଯାଉ ଯେ, ଧର୍ମଭାବର କ୍ରମବିକାଶ ଅବଶ୍ୟମ୍ଭାବୀ ।

ଆମେ ପ୍ରଥମେ ସଗୁଣ ଈଶ୍ବରଙ୍କର ଚିନ୍ତା କରୁ ଏବଂ ତାଙ୍କୁ ସ୍ରଷ୍ଟା, ସର୍ବଶକ୍ତିମାନ୍, ସର୍ବଜ୍ଞ ଇତ୍ୟାଦି କହି ବିଶେଷିତ କରିଥାଉଁ । କିନ୍ତୁ ପ୍ରେମର ସଞ୍ଚାର ହେଲେ ଈଶ୍ବର କେବଳ 'ପ୍ରେମ-ସ୍ବରୂପ' ହୋଇଯାନ୍ତି । ଈଶ୍ବର କିଏ ଓ କ'ଣ, ସେକଥା ନେଇ ପ୍ରେମିକଭକ୍ତ ମୁଣ୍ଡ ଘୂରାଏ ନାହିଁ । କାରଣ, ସେ ତାଙ୍କ ନିକଟରୁ କିଛି ମାଗି ଚାହେଁ ନାହିଁ । ଜଣେ ଭାରତୀୟ ସାଧକ କହିଛନ୍ତି—'ମୁଁ ତ ଭିକ୍ଷୁକ ନୁହେଁ ।' ଆଉ ମଧ୍ୟ ସେ ଭୟ ବି କରେ ନାହିଁ । ଭଗବାନଙ୍କୁ ନିଶ୍ଚିତ ଭଲ ଭଲପାଏ ।

ଭକ୍ତି-ଭାବାଶ୍ରିତ କେତୋଟି ସାଧନ-ପ୍ରଣାଳୀର ଉଲ୍ଲେଖ କରାଯାଉ । (୧) ଶାନ୍ତ: ସହଜ ଶାନ୍ତିପୂର୍ଣ୍ଣ ଅନୁରାଗ—ପିତୃତ୍ବ ଓ ସାହାଯ୍ୟର ଭାବ ମିଶ୍ରିତ । (୨) ଦାସ୍ୟ: ସେବା-ଭାବର ଆଦର୍ଶ— ଈଶ୍ବର, ପ୍ରଭୁ ବା ଅଧ୍ୟକ୍ଷ ବା ସମ୍ରାଟରୂପେ ଦଣ୍ଡ ଓ ପୁରସ୍କାର ଦେବାରେ ରତ । (୩) ବାତ୍ସଲ୍ୟ : ଈଶ୍ବରଙ୍କଠାରେ ସନ୍ତାନଭାବ । ଭାରତରେ ମାଆ କେବେ ବି ଶାସ୍ତି ଦିଏ ନାହିଁ । ଏସବୁ ଅବସ୍ଥାର ପ୍ରତ୍ୟେକଟିରେ ଉପାସକ ଈଶ୍ବରଙ୍କର ଗୋଟିଏ ଗୋଟିଏ ଆଦର୍ଶ ଗ୍ରହଣ କରି ତଦନୁଯାୟୀ ସାଧନା କରନ୍ତି । (୪) ଭଗବାନ ହୁଅନ୍ତି ସଖା । ସଖ୍ୟଭାବରେ କୌଣସି ଭୟ ନାହିଁ । ଏଥିରେ ସମତା ଓ ଅନ୍ତରଙ୍ଗତାର ଭାବ ମଧ୍ୟ ରହିଛି । ଅନେକ ହିନ୍ଦୁସାଧକ ଈଶ୍ବରଙ୍କୁ ସଖା ଓ ଖେଳସାଥୀ ଜ୍ଞାନରେ ଉପାସନା କରନ୍ତି । ତା'ପରେ (୫) ମଧୁରଭାବ: ମଧୁରତମ ପ୍ରେମ ହେଲା ପତିପତ୍ନୀଙ୍କ ପ୍ରେମ । ସେଣ୍ଟ୍ ଟେରେସା ଏବଂ ଭାବାବିଷ୍ଟ ସାଧକଗଣ ଏହି ଭାବ-ସାଧନାର ଦୃଷ୍ଟାନ୍ତ । ପାରସିକ-ମାନଙ୍କ ମଧ୍ୟରେ କାନ୍ତାଭାବରେ ଏବଂ ହିନ୍ଦୁମାନଙ୍କ ମଧ୍ୟରେ ଈଶ୍ବରଙ୍କୁ ପତିରୂପେ ଭଜନା କରିବାର ରୀତି ଅଛି । ମହାସ୍ବୀ ରାଣୀ ମୀରାବାଈଙ୍କ କଥା ମୋର ମନେ ପଡ଼େ । ସେ ଭଗବାନଙ୍କୁ ନିଜର ପତି ବୋଲି ପ୍ରଚାର କରୁଥିଲେ । ଅନେକଙ୍କ ମତ ଏତେ ଚରମକୁ ଯାଇଛି ଯେ, ସେମାନଙ୍କ ନିକଟରେ ଈଶ୍ବରଙ୍କୁ 'ସର୍ବଶକ୍ତିମାନ୍' ବା 'ପିତା' ବୋଲି କହିବା ଯେପରି ଏକ ଅଧର୍ମ କଥା । ଏହି ଭାବର ଉପାସନାର ଭାଷା ପ୍ରଣୟ-ମୂଳକ ।

ଏପରିକି କେହି କେହି ଅବୈଧ-ପ୍ରଣୟର ଭାଷାରେ ବି ନିଜର ମନକଥା ପ୍ରକାଶ କରିଥାନ୍ତି । କୃଷ୍ଣ ଓ ବ୍ରଜଗୋପିକାମାନଙ୍କ କାହାଣୀ ଏହି ପର୍ଯ୍ୟାୟଭୁକ୍ତ । ତୁମମାନଙ୍କର ହୁଏତ ଧାରଣା ଯେ, ଏହି ଭାବର ଉପାସନାରେ ସାଧକର ଅତ୍ୟନ୍ତ ଅଧୋଗତି ହୁଏ । ତାହା ହୋଇପାରେ । ତଥାପି ଅନେକ ବଡ଼ ବଡ଼ ସାଧକଙ୍କର ଏହି ମାର୍ଗରେ ଯାଇ ଉନ୍ନତି ମଧ୍ୟ ହୋଇଛି । ଏପରି କୌଣସି ମାନବୀୟ ବିଧାନ ନାହିଁ, ଯାହାର ଅପବ୍ୟବହାର ହୋଇନାହିଁ । ଭିକ୍ଷୁକ ଅଛି ବୋଲି କ'ଣ ତୁମେ ରନ୍ଧଣା ବନ୍ଦ କରିବ ? ଚୋରର ଭୟରେ କ'ଣ ତୁମେ ନିଃସ୍ୱ ହୋଇ ଜୀବନ କାଟିବ ? 'ହେ ପ୍ରିୟତମ ! ତୁମ ଅଧରର ଗୋଟିଏ ମାତ୍ର ଚୁମ୍ବନର ଆସ୍ୱାଦନ ମୋତେ ପାଗଳ କରି ଦେଇଛି ।' (ଶ୍ରୀମଦ୍‌ଭାଗବତ)

ଏହି ଭାବରେ ଆରାଧନା ଫଳରେ କେହି ବେଶୀଦିନ କୌଣସି ସମ୍ପ୍ରଦାୟଭୁକ୍ତ ହୋଇ ରହିପାରେ ନାହିଁ। ଆଚାର-ଅନୁଷ୍ଠାନାଦି ମାନି ଚାଲିପାରେ ନା । ଭାରତରେ ଧର୍ମ ମୁକ୍ତିରେ ହିଁ ପର୍ଯ୍ୟବସିତ ହୁଏ । କିନ୍ତୁ ଶେଷରେ ଏହି ମୁକ୍ତିକୁ ମଧ୍ୟ ତ୍ୟାଗ କରିବାକୁ ହୁଏ । ସେତେବେଳେ କେବଳ ପ୍ରେମ ଲାଗି ହିଁ ପ୍ରେମ ।

ସର୍ବଶେଷରେ ଆସେ ନିର୍ବିଶେଷ ପ୍ରେମ—ଆତ୍ମା । ଗୋଟିଏ ପାର୍ସି-କବିତାରେ ବର୍ଣ୍ଣିତ ଅଛି—ଜଣେ ପ୍ରଣୟୀ ତା'ର ପ୍ରଣୟିନୀର ଘର-କବାଟରେ ଆଘାତ କଲା । ପ୍ରେମିକା ପଚାରିଲା—'ତୁମେ କିଏ ?' ପ୍ରେମିକ ଉତ୍ତର ଦେଲା, 'ତୁମର ହିଁ ପ୍ରିୟତମ ଅମୁକ ।' ପ୍ରେମିକା କେବଳ କହିଲା, 'ମୁଁ ତ ଏମିତି କାହାକୁ ଜାଣେନି । ତୁମେ ଚାଲି ଯାଅ ।' ଏହି ଭାବରେ ଚତୁର୍ଥଥର ଯେତେବେଳେ ପ୍ରଶ୍ନ କଲା, ସେତେବେଳେ ପ୍ରେମିକ କହିଲା— 'ପ୍ରିୟତମେ ! ମୁଁ ତ ତୁମେ । ଦରଜା ଖୋଲ ।' ସେତେବେଳେ ବନ୍ଦ ଦରଜାଟି ଖୋଲିଗଲା ।

ପ୍ରେମିକାର ଭାଷାରେ ଅନୁରାଗ ବର୍ଣ୍ଣନା କରି ଜଣେ ମହାନ୍ ସାଧକ କହିଛନ୍ତି— 'ଚାରିଚକ୍ଷୁର ମିଳନ ହେଲା । ଦୁଇଟି ଆତ୍ମାରେ ଯେପରି କିଛି ଗୋଟିଏ ପରିବର୍ତ୍ତନ ଘଟି-ଗଲା ! ଏବେ ଆଉ ମୁଁ କହିପାରୁନି ଯେ, ସେ ପୁରୁଷ, ଆଉ ମୁଁ ରମଣୀ । ଅଥବା ସେ ରମଣୀ ଆଉ ମୁଁ ପୁରୁଷ । କେବଳ ଏତିକି ମାତ୍ର ମୋର ସ୍ମରଣ ହେଉଛି ଯେ, ଆମେ ଦୁହେଁ ଦୁଇଟି ଆତ୍ମା ଥିଲୁ—କିନ୍ତୁ ଏବେ ଅନୁରାଗର ଆବିର୍ଭାବରେ ଏକ ହୋଇଯାଇଛୁ ।' (ରାୟ ରାମାନନ୍ଦ ସମ୍ବାଦ—ଶ୍ରୀଚୈତନ୍ୟ-ଚରିତାମୃତ)

ସର୍ବୋଚ୍ଚ ପ୍ରେମରେ କେବଳ ଆତ୍ମାର ହିଁ ମିଳନ । ଆଉ ସବୁ ଯେତେ ପ୍ରକାର ପ୍ରେମ ରହିଛି, ସବୁଗୁଡ଼ିକ ଖୁବ୍ ଶୀଘ୍ର ମ୍ଳାନ ହୋଇଯାଏ । କେବଳ ଆତ୍ମିକ ପ୍ରେମ ହିଁ ସ୍ଥାୟୀ ହୋଇଥାଏ ଏବଂ କ୍ରମଶଃ ବଢ଼ିଚାଲେ ।

ପ୍ରେମ ଦେଖେ ଆଦର୍ଶଟିକୁ । ଏହା ହେଲା ତ୍ରିଭୁଜର ତୃତୀୟ କୋଣ । ଈଶ୍ୱର କାରଣ, ସ୍ରଷ୍ଟା ଓ ପିତା । ପ୍ରେମ ହେଲା ଚରମ ପରିଣତି । କୁଜା ସନ୍ତାନ ପାଇଁ ମା' ଆକ୍ଷେପ କରିଥାଏ, କିନ୍ତୁ ଦିନ କେତୋଟି ଲାଳନପାଳନ କଲାପରେ ତା'ପ୍ରତି ସ୍ନେହ ବଢ଼ିଯାଏ ଏବଂ ତାକୁ ସବୁଠାରୁ ସୁନ୍ଦର ବୋଲି ମନେକରେ । କୃଷ୍ଣାଙ୍ଗ ଇଥିଓପ୍‌ର

ଲଲାଟରେ ପ୍ରେମିକ ସୁନ୍ଦରୀ ହେଲେନ୍‌ଙ୍କର ରୂପକୁ ପ୍ରତ୍ୟକ୍ଷ କରେ । ଏସବୁ କଥା ଆମେ ସାଧାରଣତଃ ଉପଲବ୍ଧି କରିପାରୁ ନାହିଁ । ଇଥିଓପ୍‌ର ଲଲାଟ ଉପଲକ୍ଷ୍ୟ ମାତ୍ର; ପ୍ରେମିକ ତ ହେଲେନ୍‌ଙ୍କୁ ହିଁ ଦେଖେ । ଉପଲକ୍ଷ୍ୟର ଉପରେ ତା'ର ଆଦର୍ଶଟିକୁ ପ୍ରକ୍ଷେପ କରିଥାଏ ଏବଂ ଆଦର୍ଶ ତାକୁ ଆବୃତ କରେ । ଶୁକ୍ତି ଯେପରି ବାଲିକଣାକୁ ମୁକ୍ତାରେ ରୂପାନ୍ତରିତ କରିଥାଏ । ଈଶ୍ୱର ହେଉଛନ୍ତି ଆଦର୍ଶ, ଯାହା ଭିତର ଦେଇ ମନୁଷ୍ୟ ସବୁକିଛି ଦେଖି-ପାରେ ।

ସୁତରାଂ ଆମେ ପ୍ରେମକୁ ହିଁ ଭଲପାଉ । ଏହି ପ୍ରେମକୁ ମୁହଁରେ ପ୍ରକାଶ କରାଯାଏ ନାହିଁ । କୌଣସି ବାକ୍ୟ ତାହା ଉଚ୍ଚାରଣ କରିପାରେ ନାହିଁ । ଏ ବିଷୟରେ ଆମେମାନେ ନିର୍ବାକ୍ ।

ପ୍ରେମରେ ଇନ୍ଦ୍ରିୟଗୁଡ଼ିକ ଅତିଶୟ ଉନ୍ନତ ହୁଅନ୍ତି । ଆମର ସ୍ମରଣ ରଖିବା ଉଚିତ ଯେ, ମାନବୀୟ ପ୍ରେମ ଗୁଣମିଶ୍ରିତ । ଅନ୍ୟର ମନୋଭାବ ଉପରେ ତାହା ମଧ୍ୟ ନିର୍ଭରଶୀଳ । ପ୍ରେମର ଏହି ପାରସ୍ପରିକ ନିର୍ଭରତାକୁ ବ୍ୟକ୍ତ କରିବାର ଶବ୍ଦ ଭାରତୀୟ ଭାଷା ଗୁଡ଼ିକରେ ରହିଛି । ସର୍ବାପେକ୍ଷା ନିମ୍ନସ୍ତରର ପ୍ରେମ ହେଉଛି ସ୍ୱାର୍ଥଯୁକ୍ତ । ସେଥିରେ କେବଳ ପ୍ରେମ ପାଇବାର ସୁଖ ହିଁ ରହିଛି । ଆମେ ଭାରତବର୍ଷରେ କହୁ—'ଜଣେ ଗାଲ ଦେଖେଇ ଦେଇଛି, ଆଉ ଜଣେ ଚୁମ୍ବନ ଦେଉଛି ।' ପାରସ୍ପରିକ ପ୍ରେମ ଏହାର ଊର୍ଦ୍ଧ୍ୱରେ । କିନ୍ତୁ ଏହା ମଧ୍ୟ ରହେ ନାହିଁ । ଯଥାର୍ଥ ପ୍ରେମ ରହିଥାଏ ସର୍ବସ୍ୱ-ତ୍ୟାଗରେ । ଏ ଅବସ୍ଥାରେ ଆମେ ଅନ୍ୟକୁ ଦେଖାଇବା ପାଇଁ ଅଥବା ଆମର ଆବେଗକୁ ପ୍ରକାଶ କରିବା ଭଳି କିଛି କରିବାକୁ ଚାହୁଁ ନାହିଁ । ଦେବାଟା ହିଁ ଯଥେଷ୍ଟ; ଏହି ଜଗତରେ ମଣିଷକୁ ଭଲ ପାଇବା ପ୍ରାୟ ଅସମ୍ଭବ; କିନ୍ତୁ ଈଶ୍ୱରଙ୍କୁ ଭଲପାଇବା ନିଶ୍ଚୟ ସମ୍ଭବ ।

ବାଳକମାନେ ରାସ୍ତାରେ ଝଗଡ଼ା କରି କରି ଯଦି ଭଗବାନଙ୍କ ନାମରେ ଶପଥ କରନ୍ତି, ଭାରତବର୍ଷରେ ସେଥିରେ କୌଣସି ଈଶ୍ୱରନିନ୍ଦା ହୁଏ ନାହିଁ । ଆମେ କହୁ—ନିଆଁରେ ହାତ ଦିଅ—ତୁମେ ଅନୁଭବ କର ବା ନ କର, ତୁମର ହାତ ନିଶ୍ଚୟ ପୋଡ଼ି-ଯିବ । ସେହିପରି ଈଶ୍ୱରଙ୍କ ନାମ ଉଚ୍ଚାରଣ କଲେ କଲ୍ୟାଣ ଛଡ଼ା ଆଉ କିଛି ହେବ ନାହିଁ ।

ଈଶ୍ୱରନିନ୍ଦା ଭାବଟି ଆସିଛି ଇହୁଦୀମାନଙ୍କ ପାଖରୁ । ଇହୁଦୀମାନେ ପାରସୀକ-ମାନଙ୍କର ଆନୁଗତ୍ୟ ଦେଖି ମୁଗ୍ଧ ହୋଇଥିଲେ । ସେମାନଙ୍କର ମତ ହେଲା—ଈଶ୍ୱର ବିଚାରକର୍ତ୍ତା ଓ ଶାସ୍ତା । ଏ ଭାବଟି ମନ୍ଦ ନୁହେଁ; କିନ୍ତୁ ତା'ହେଲେ ବି ନିମ୍ନସ୍ତରର ଓ ସ୍ଥୂଳ । ତ୍ରିଭୁଜର ତିନୋଟି କୋଣ: ପ୍ରେମ କିଛି ଚାହେଁ ନାହିଁ; ପ୍ରେମରେ କିଛି ଭୟ ନାହିଁ; ପ୍ରେମ ସର୍ବଦା ଉଚ୍ଚତର ଆଦର୍ଶ ପାଇଁ ।

'ସେହି ପ୍ରେମମୟ ଭଗବାନ ଯଦି ବିଶ୍ୱଭୁବନରେ ପୂରିରହି ନ ଥାନ୍ତେ, ତେବେ କିଏ ବା ଗୋଟିଏ ମୁହୂର୍ତ୍ତ ବଞ୍ଚିପାରନ୍ତା ? କିଏ ବା ଗୋଟିଏ ମୁହୂର୍ତ୍ତ ଭଲ ପାଇ ପାରନ୍ତା ?

ଆମେ ଦେଖିବା ଯେ, ଆମେ କେବଳ କର୍ମ କରିବାକୁ ଏଠାରେ ଜନ୍ମ ନେଇଛୁ । ଫଳାଫଳ ଈଶ୍ୱରଙ୍କ ହାତରେ ସମର୍ପଣ କରିବାକୁ ହେବ । ଭଗବାନ ଖୁସି ହେବେ, ଏଥିପାଇଁ ଆମକୁ କାମ କରିବାକୁ ହେବ । ବିଫଳ ହେଲେ ବି ଦୁଃଖ କରିବାର କିଛି ନାହିଁ । ଭଗବାନଙ୍କର ପ୍ରୀତି ଲାଗି ତ ଯେତେ କିଛି କର୍ମ ।

ନାରୀ ଭିତରେ ମାତୃ-ଭାବଟି ଖୁବ୍ ପରିପୁଷ୍ଟ । ଈଶ୍ୱରଙ୍କୁ ସେମାନେ ସନ୍ତାନ-ଭାବେ ଉପାସନା କରନ୍ତି । ଯାହା କିଛି କରନ୍ତି ତାଙ୍କ ପାଇଁ—ଆଉ ନିଜ ପାଇଁ କିଛି ଚାହାଁନ୍ତି ନାହିଁ ।

କାଥୋଲିକ୍ ମତବାଦ ଏହିସବୁ ଗଭୀର ତତ୍ତ୍ୱର ଅନେକ କିଛି ଶିକ୍ଷା ଦିଅନ୍ତି । ଏହା ଟିକିଏ ସଙ୍କୀର୍ଣ୍ଣ ହେଲେ ମଧ୍ୟ ଅତିଶୟ ଧର୍ମନିଷ୍ଠ । ଆଧୁନିକ ସମାଜରେ ପ୍ରୋଟେଷ୍ଟାଣ୍ଟ ମତ ଉଦାର ହେଲେ ବି ଅଗଭୀର । ସତ୍ୟ କେତେଦୂର ମଙ୍ଗଳ କରିଛି, ତା'ଦ୍ୱାରା ସତ୍ୟର ମୂଲ୍ୟ ନିର୍ଦ୍ଧାରଣ କରିବା ଠିକ୍ ନୁହେଁ । ଗୋଟିଏ ଶିଶୁକୁ କୌଣସି ବୈଜ୍ଞାନିକ ଆବିଷ୍କାରର ମୂଲ୍ୟ ସମ୍ପର୍କରେ ଜିଜ୍ଞାସା କରିବା ଯେପରି ଅସଙ୍ଗତ, ଏହା ତଦ୍ରୂପ ଏକ ଅସଙ୍ଗତ ବ୍ୟାପାର ।

ସମାଜକୁ ପ୍ରଗତିଶୀଳ ହେବାକୁ ପଡ଼ିବ । ନିୟମକୁ ଅତିକ୍ରମକରି ନିୟମର ଊର୍ଦ୍ଧ୍ୱକୁ ଯିବାକୁ ହେବ । ପ୍ରକୃତିକୁ ଜୟ କରିବାର ପ୍ରୟୋଜନରେ ହିଁ ଆମେ ତାକୁ ସ୍ୱୀକାର କରୁ । ତ୍ୟାଗର ଅର୍ଥ ହେଉଛି : ଈଶ୍ୱର ଓ ଧନ-ଦେବତାଙ୍କର ଉପାସନା ଏକସଙ୍ଗରେ କେହି କରିପାରେ ନାହିଁ ।

ତୁମମାନଙ୍କର ବିଚାରବୁଦ୍ଧି ଓ ପ୍ରେମକୁ ଗଭୀର କର । ତୁମମାନଙ୍କ ହୃଦୟ-ପଦ୍ମକୁ ପ୍ରସ୍ଫୁଟିତ କର । ମହୁମାଛି ଗୁଏଁ ଗୁଏଁ ଆସି ଜୁଟିବେ । ପ୍ରଥମେ ନିଜ ଉପରେ ବିଶ୍ୱାସ ରଖ– ତା'ପରେ ଯାଇ ଈଶ୍ୱର-ବିଶ୍ୱାସ ଆସିବ । ମୁଷ୍ଟିମେୟ ଶକ୍ତିଶାଳୀ କେତେ-ଜଣ ମଣିଷ ହିଁ ସାରା ପୃଥିବୀକୁ ହୁଲ୍‌ସ୍ଥୁଲ୍ କରି ଓଲଟାଇ ଦେଇପାରନ୍ତି । ଦରକାର ଅନ୍ୟକୁ ଅନୁଭବ କରିବାର ସହାନୁଭୂତିଶୀଳ ହୃଦୟ, ଉଦ୍ଭାବନକାରୀ ମସ୍ତିଷ୍କ ଏବଂ କର୍ମ କରିବାର ଉପଯୋଗୀ ଦୈହିକ ଶକ୍ତି । ବୁଦ୍ଧ ମନୁଷ୍ୟେତର ପ୍ରାଣୀମାନଙ୍କ ପାଇଁ ମଧ୍ୟ ଆତ୍ମୋତ୍ସର୍ଗ କରିଥିଲେ । ନିଜକୁ କର୍ମ କରିବାର ଯୋଗ୍ୟ ଯନ୍ତ୍ର କରି ଗଢ଼ । କିନ୍ତୁ ଈଶ୍ୱର ହିଁ କର୍ମ କରନ୍ତି, ତୁମେ ନୁହଁ । ଜଣକ ଭିତରେହିଁ ସମଗ୍ର ବିଶ୍ୱ ରହିଛି । ଜଡ଼ବସ୍ତୁର ଗୋଟିଏ କଣା ଭିତରେ ଜଗତର ସମସ୍ତ ଶକ୍ତି ନିହିତ ରହିଛି । ହୃଦୟ ଓ ମସ୍ତିଷ୍କ ଭିତରେ ଯଦି ବିରୋଧ ହେବାର ଦେଖ, ତେବେ ହୃଦୟକୁ ହିଁ ଅନୁସରଣ କର ।

ପୂର୍ବକାଳରେ ବିଧାନ ଥିଲା ପ୍ରତିଯୋଗିତା; କିନ୍ତୁ ଆଜିର ବିଧାନ ହେଲା ସହଯୋଗିତା । ଆସନ୍ତାକାଲି ଆଉ କୌଣସି ବିଧି-ବିଧାନ ରହିବ ନାହିଁ । ଋଷିଗଣ ତୁମମାନଙ୍କୁ ସାଧୁବାଦ ଦିଅନ୍ତୁ, ଅଥବା ଜଗତ ତୁମମାନଙ୍କୁ ଧିକ୍‌କାର କରୁ; ଭାଗ୍ୟଲକ୍ଷ୍ମୀ ତୁମମାନଙ୍କ ପ୍ରତି ପ୍ରସନ୍ନା ହୁଅନ୍ତୁ, ଅଥବା ଦାରିଦ୍ର୍ୟ ଓ ବିସ୍ତହୀନତା ତୁମମାନଙ୍କୁ ଭ୍ରୂକୁଟୀ କରୁ; ଏପରି ଆସିବ ହୁଏତ ତୁମକୁ ବଣର ଲଟାପତ୍ର ଖାଇ ବଞ୍ଚିବାକୁ ପଡ଼ିପାରେ, କିମ୍ବା

ତା'ପର ଦିନ ପତ୍ରୂଶ ପ୍ରକାର ବ୍ୟଞ୍ଜନଯୁକ୍ତ ଭୋଜନରେ କିଏ ତୁମକୁ ଆପ୍ୟାୟିତ କରିପାରେ; ତୁମେ କେଉଁ କଥାକୁ ଭ୍ରୂକ୍ଷେପ ନ କରି ବାମଡାହାଣ କୁଆଡ଼କୁ ନ ଚାହିଁ ଆଗେଇ ଚାଲ । (ନିନ୍ଦନ୍ତୁ ନୀତିନିପୁଣା ଯଦି ବା ସ୍ତୁବନ୍ତୁ··· ।—ଭର୍ତ୍ତୃହରି)

[ଏହାପରେ ସ୍ୱାମୀଜୀ ପ୍ରଶ୍ନୋତ୍ତର ବେଳେ ପଓହାରି ବାବାଙ୍କ କଥା ଉଲ୍ଲେଖ କରିଥିଲେ । କିପରି ସେହି ଅନାସକ୍ତ ପ୍ରେମୀ ଯୋଗୀ ନିଜର ବାସନକୁସନ ଧରି ଚୋରର ପଛରେ ଛୁଟିଥିଲେ ଏବଂ ତା' ପାଦତଳେ ଲେଟିପଡ଼ି କହିଥିଲେ, 'ପ୍ରଭୁ ! ମୁଁ ଜାଣିପାରି ନ ଥିଲି ଯେ, ତୁମେ ଆସିଥିଲ ! ଦୟାକରି ଏହି ବାସନଗୁଡ଼ିକୁ ଗ୍ରହଣ କର । ଏଗୁଡ଼ିକ ତୁମର । ମୁଁ ତୁମର ସନ୍ତାନ । ମୋତେ କ୍ଷମାକର ।

ସ୍ୱାମୀଜୀ ଆଉ ମଧ୍ୟ କହିଥିଲେ **ଯେ**, କିପରି ଏକ ବିଷଧର ସର୍ପ ସେହି ଯୋଗୀଙ୍କୁ ଦଂଶନ କଲା ଏବଂ ସନ୍ଧ୍ୟାବେଳକୁ ସେ ଯେତେବେଳେ ବିଷ-ଦୋଷରୁ ମୁକ୍ତ ହୋଇ ସୁସ୍ଥ ହେଲେ, ସେତେବେଳେ ସମବେତ ଭକ୍ତବୃନ୍ଦଙ୍କୁ ସେ କହିଲେ, 'ଆଜି ମୋର ପ୍ରିୟତମଙ୍କ ନିକଟରୁ ଦୂତ ଆସିଥିଲା !']

## ବିଲ୍ୱମଙ୍ଗଳ

[ ଯୁକ୍ତରାଷ୍ଟ୍ରରେ ଅବସ୍ଥାନ କାଳରେ ସ୍ୱାମୀ ବିବେକାନନ୍ଦଙ୍କ ଦ୍ୱାରା ମିସ୍. ଏସ୍. ଇ. ଓୟାଲ୍‌ଡୋଙ୍କର କାଗଜପତ୍ର ମଧ୍ୟରୁ ପ୍ରାପ୍ତ । ]

'ଭକ୍ତମାଳ' ନାମକ ଖଣ୍ଡିଏ ଭାରତୀୟ ଗ୍ରନ୍ଥରୁ ଏହି କାହାଣୀଟି ଗୃହୀତ । ଗୋଟିଏ ଗ୍ରାମରେ ଜଣେ ବ୍ରାହ୍ମଣ ଯୁବକ ବାସ କରୁଥିଲେ । ଆଉ ଗୋଟିଏ ଗ୍ରାମରେ ଏକ ଦୁଷ୍ଟଚରିତ୍ରା ନାରୀ ପ୍ରତି ସେ ପ୍ରଣୟାସକ୍ତ ହେଲେ । ଗ୍ରାମ ଦୁଇଟି ଭିତରେ ଥିଲା ବଡ଼ ନଦୀଟିଏ । ପ୍ରତିଦିନ ନୌକାରେ ନଦୀଟି ପାର ହୋଇ ଯୁବକ ତା' ନିକଟକୁ ଯାଉଥିଲେ । ଦିନେ ପିତୃଶ୍ରାଦ୍ଧ ଉପଲକ୍ଷେ ଯୁବକ ନିଜ ଘରେ ଦିନବେଳେ ଅଟକି ରହିଲେ । ଖୁବ୍ ବ୍ୟାକୁଳ ହୋଇପଡ଼ିଥିଲେ ମଧ୍ୟ ସେ ତାଙ୍କର ପ୍ରଣୟିନୀ ପାଖକୁ ଯାଇପାରିଲେ ନାହିଁ । ହିନ୍ଦୁସମାଜର ଏହି ଅବଶ୍ୟକରଣୀୟ ଅନୁଷ୍ଠାନଟି ତାଙ୍କୁ ସମ୍ପନ୍ନ କରିବାକୁ ହୋଇଥିଲା । ଯେତେ ଛଟପଟ ଲାଗିଲେ ବି ଯୁବକଙ୍କୁ ପିତୃଶ୍ରାଦ୍ଧ ପାଇଁ ସାରାଦିନ ଘରେ ଅଟକି ରହିବାକୁ ପଡ଼ିଥିଲା । ଶ୍ରାଦ୍ଧ ସରିଲା—ରାତି ହେଲା ।

ସେତେବେଳେ ଭୀଷଣ ଗର୍ଜନ ସହ ଝଡ଼ ମାଡ଼ିଆସିଲା । ମୂଷଳଧାରାରେ ବର୍ଷା ମଧ୍ୟ ଆରମ୍ଭ ହୋଇଗଲା । ବନ୍ୟାକୁଳିତା ନଦୀରେ ତରଙ୍ଗଗୁଡ଼ିକ ବିକ୍ଷୁବ୍ଧ ହୋଇ ଉଠିଲେ । ଘାଟ ଛାଡ଼ି ନାଉରିଆମାନେ ଯେ ଯାହା ଘରକୁ ପଳାଇଗଲେ । ତଥାପି ପ୍ରଣୟ-ବ୍ୟାକୁଳ ଯୁବକ ସେହି ଝଡ଼-ଅନ୍ଧାର ରାତିରେ ନଦୀକୂଳରେ ଯାଇ ପହଞ୍ଚିଲେ । ସ୍ତ୍ରୀଲୋକଟିର ପ୍ରେମରେ ପାଗଳ ହୋଇ ପଡ଼ିଥିବାରୁ ତାଙ୍କର ଡର ଭୟ କିଛି ନ ଥିଲା । ନଦୀର ପ୍ରବଳ ସ୍ରୋତରେ

ଖଣ୍ଡିଏ କାଠଗଡ଼ ଭାସି ଯାଉଥିଲା; ସେହିଟିକୁ ଧରି ସେ ନଦୀରେ ପହଁରି ପହଁରି ଆରକୂଳରେ ଯାଇ ଲାଗିଲେ । କୂଳରେ ପହଞ୍ଚି ସେ ସେହି କାଠଗଡ଼ଟିକୁ ଉଠାଇ ଉପରେ ଆଣି ରଖିଲେ । ତା'ପରେ ଦ୍ରୁତ ପଦକ୍ଷେପରେ ଯାଇ ପ୍ରଣୟିନୀର ଗୃହଦ୍ୱାରରେ ଉପସ୍ଥିତ ହେଲେ । ଗୃହଦ୍ୱାର ବନ୍ଦ । ଯୁବକ ଦ୍ୱାରଦେଶରେ କରାଘାତ କଲେ ମଧ୍ୟ ଝଡ଼ର ପ୍ରଚଣ୍ଡ ଶବ୍ଦରେ କେହି ତାହା ଶୁଣିପାରିଲେ ନାହିଁ । ସୁତରାଂ ସେ ଗୃହ-ପ୍ରାଚୀରର ଚତୁର୍ଦ୍ଦିଗରେ ଘୂରି ଘୂରି ଅବଶେଷରେ ଯାହା ଦେଖିଲେ, ତାକୁ ମନେକଲେ ପ୍ରାଚୀରରୁ ଲମ୍ବିଥିବା ଖଣ୍ଡିଏ ମୋଟା ଦଉଡ଼ି ବୋଲି ।

'ଆହା ! ମୋର ପ୍ରାଣପ୍ରିୟା ମୁଁ ପ୍ରାଚୀର ଚଢ଼ି ପାରିହେବା ଲାଗି ଖଣ୍ଡିଏ ଦଉଡ଼ି ମଧ୍ୟ ଏଠି ଓହଳାଇ ଦେଇଛି ।' ମନେମନେ ଏହା ଭାବି ଯୁବକଟି ସେଇଟିକୁ ଯାକୋଡ଼ି ଧରିଲେ ଏବଂ ସେହି ରଜ୍ଜୁଟିକୁ ଧରି ପାଚେରି ଉପରକୁ ଉଠିଗଲେ ଏବଂ ତଳକୁ ଡେଇଁ ପଡ଼ିବା ବେଳେ ପାଦ ଖସିଯାଇ କଣ୍ଟୁଡ଼ ହୋଇ ପଡ଼ିଲେ । ଏପରି ଗୋଟିଏ ଶବ୍ଦ ଶୁଣି ଗୃହବାସୀଗଣ ଜାଗି ଉଠିଲେ । ଯୁବକର ପ୍ରଣୟିନୀ ସେଠାକୁ ଆସି ଦେଖିଲା ଯେ, ଯୁବକ ମୂର୍ଚ୍ଛିତ ହୋଇ ପଡ଼ିଛନ୍ତି । ସେ ତାଙ୍କୁ ଚେତା କରାଇଲା । ଯୁବକଙ୍କର ଦେହରୁ ବାହାରୁଥିଲା ଏକ ଉତ୍କଟ ଗନ୍ଧ । ପ୍ରଣୟିନୀଟି ପଚାରିଲା, 'ଏ କ'ଣ ? ତୁମ ଦେହରୁ ଏପରି ଦୁର୍ଗନ୍ଧ କାହିଁକି ବାହାରୁଛି ? କେମିତି ଏ ପାଚେରି ଡେଇଁ ଘରେ ପଶିଲ ?' ଯୁବକ ଉତ୍ତର ଦେଲେ 'କାହିଁକି, ମୋ ପ୍ରେମିକା କ'ଣ ମୋ ଲାଗି ପାଚେରି ଦେହରେ ଦଉଡ଼ିଟିଏ ଝୁଲେଇ ରଖି ନ ଥିଲ କି ?' ସ୍ତ୍ରୀ-ଲୋକଟି ହସି ହସି କହିଲା, 'ପ୍ରେମିକା ପୁଣି ତୁମର କିଏ ? ଅର୍ଥ ଉପାର୍ଜନ କରିବା ଆମମାନଙ୍କର ଉଦ୍ଦେଶ୍ୟ । ତୁମେ କ'ଣ ଭାବୁଛ ଯେ, ତୁମ ପାଇଁ ମୁଁ ପାଚେରି ଦେହରେ ଦଉଡ଼ିଟିଏ ଝୁଲେଇ ରଖିଥିଲି ? ଆଚ୍ଛା—ଏତେ ବଡ଼ ବଢ଼ିଲା ନଈଟାକୁ ଏ ଝଡ଼ବର୍ଷାରେ ଭଲ ପାରିହେଲ କେମିତି ?' ଯୁବକ କହିଲେ, 'ଗୋଟିଏ ବଡ଼ କାଠଗଣ୍ଡି ସାହାଯ୍ୟରେ ।' ସ୍ତ୍ରୀ ଲୋକଟି କହିଲା, 'ଚାଲ ତ, ସେଇଟା ଦେଖି ଆସିବା !'

ଅସଲ କଥାଟି କ'ଣ ଜାଣ ? ଯେଉଁଟିକୁ ଯୁବକ ଦଉଡ଼ି ବୋଲି କହୁଥିଲେ, ତାହା ଥିଲା ଗୋଟିଏ ମସ୍ତବଡ଼ ଗୋଖର ସାପ । ସାମାନ୍ୟ ଦଂଶନରେ ମୃତ୍ୟୁ ଅନିବାର୍ଯ୍ୟ । ସାପଟିର ମୁଣ୍ଡଟି ଥିଲା ପ୍ରାଚୀରରେ ଥିବା ଗୋଟିଏ ଗାତ ଭିତରେ । ଯୁବକ ତାର ଲାଞ୍ଜ ଧରି ପାଚେରି ଉଲ୍ଲଙ୍ଘନ କରିଥିଲେ । ପ୍ରେମରେ ପାଗଳ ହୋଇ ସେ ଏହି ବିଷମ କାର୍ଯ୍ୟ କରିଥିଲେ । ସାପମାନଙ୍କର ପ୍ରକୃତି ହେଲା, ଯଦି ସେମାନଙ୍କର ମୁଣ୍ଡ ଗାତ ଭିତରେ ଥାଏ ଏବଂ ଲାଞ୍ଜପଟଟି ବାହାରକୁ ଥାଏ, ତେବେ ତାଙ୍କ ଲାଞ୍ଜ ଧରି ତୁମେ ଯେତେ ଜୋର୍‌ରେ ଟାଣିଲେ ବି ସେମାନେ କେବେ ଗାତରୁ ମୁହଁ ବାହାର କରିବେ ନାହିଁ । ଶରୀର ପଛେ ଛିଣ୍ଡିଯିବ—ସେମାନେ କେବେହେଲେ ଗାତରୁ ବାହାରିପଡ଼ିବେ ନାହିଁ ।

ସ୍ତ୍ରୀ-ଲୋକଟି ପଚାରିଲା, 'ସେହି କାଠଖଣ୍ଡଟି କେଉଁଠାରୁ ପାଇଲ ?' ଉତ୍ତର ମିଳିଲା, 'କାହିଁକି, ନଦୀସ୍ରୋତରେ ଭାସି ଯାଉଥିଲା ।' କିନ୍ତୁ ପ୍ରକୃତରେ ସେଇଟି ଥିଲା ଏକ ଗଳିତ ଶବ । ପ୍ରେମପାଗଳ ଯୁବକ ତାକୁ କାଠଗଡ଼ ଭାବି ତାହାକୁ ଧରି ନଈ ପାରିହୋଇ

ଆସିଥିଲେ । ବର୍ତ୍ତମାନ ବୁଝାଗଲା, ତାଙ୍କ ଦେହରୁ ଏହି ପଦ୍ମ ଦୁର୍ଗନ୍ଧ କାହିଁକି ବାହାରୁଥିଲା । ସ୍ତ୍ରୀ-ଲୋକଟି ଯୁବକ ଆଡ଼କୁ ଚାହିଁ କହିଲା, 'ପ୍ରେମରେ ମୋର କେବେ ବିଶ୍ୱାସ ନ ଥିଲା; ଆମେ କେବେ ବି ପ୍ରେମରେ ବିଶ୍ୱାସ କରୁନାହିଁ । କିନ୍ତୁ ଏହା ଯଦି ପ୍ରେମ ନ ହୁଏ, ତେବେ ଭଗବାନ ରକ୍ଷା କରନ୍ତୁ ! ପ୍ରେମ କ'ଣ ତାହା ଆମେ ଜାଣୁନା; କିନ୍ତୁ ବନ୍ଧୁ ! ମୋ ଭଳି ଜଣେ ସାମାନ୍ୟା ନାରୀକୁ ତୁମେ ହୃଦୟ ଦାନ କଲ କାହିଁକି? କାହିଁକି ତୁମେ ତୁମର ହୃଦୟଟିକୁ ଭଗବାନଙ୍କୁ ଉତ୍ସର୍ଗ କଲ ନାହିଁ ? ଏପରି କରିଥିଲେ ତୁମେ ସିଦ୍ଧିଲାଭ କରିଥାନ୍ତ !' ଏହି କଥାରେ ଯୁବକଙ୍କ ମୁଣ୍ଡରେ ଯେପରି ବଜ୍ରପାତ ହେଲା । ମୁହୂର୍ତ୍ତକ ଭିତରେ ତାଙ୍କର ଅନ୍ତର୍ଦୃଷ୍ଟି ଖୋଲିଗଲା । 'ଭଗବାନ କ'ଣ ସତରେ ଅଛନ୍ତି ?' 'ହଁ ହଁ, ବନ୍ଧୁ ! ଭଗବାନ ନିଶ୍ଚୟ ଅଛନ୍ତି ।'

ଯୁବକ ସେହି ସ୍ଥାନ ତ୍ୟାଗ କରି ଚାଲିଗଲେ ଏବଂ ଯାଉ ଯାଉ ଗୋଟିଏ ଗଭୀର ଅରଣ୍ୟ ଭିତରେ ପହଞ୍ଚିଲେ । ସେଠାରେ ଅଶ୍ରୁପୂର୍ଣ୍ଣ ନୟନରେ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କଲେ, 'ପ୍ରଭୁ ! ମୁଁ ତୁମକୁ ଚାହେଁ । ମୋର ଏହି ପ୍ରେମପ୍ରବାହ କ୍ଷୁଦ୍ର ମଣିଷ-ହୃଦୟରେ ଧରୁ ନାହିଁ । ମୁଁ ସେହି ପ୍ରେମର ସମୁଦ୍ରକୁ ଭଲ ପାଇବାକୁ ଚାହେଁ । ସେହିଠାରେ ହିଁ ମୋର ଏହି ପ୍ରେମର ପ୍ରବଳ ପ୍ରବାହିଣୀ ଯାଇ ମିଶିପାରିବ । ମୋ ପ୍ରେମର ଏହି ବେଗବତୀ ନଦୀ ତ ଆଉ କ୍ଷୁଦ୍ର ଜଳାଶୟ ଭିତରେ ପ୍ରବେଶ କରିପାରିବ ନାହିଁ; ସେ ଚାହେଁ ଅନନ୍ତ ସାଗର । ପ୍ରଭୁ ! ତୁମେ ଯେଉଁଠି ଥାଅ ପଛକେ ମୋ ପାଖକୁ ଆସ ।'

ଏହିଭଳିରେ ଅରଣ୍ୟରେ ବହୁବର୍ଷ ଅତିବାହିତ କରି ତାଙ୍କର ମନେହେଲା ଯେ, ସେ ସିଦ୍ଧିଲାଭ କରିଛନ୍ତି । ସନ୍ନ୍ୟାସ ଗ୍ରହଣ କରି ସେ ସହରକୁ ଫେରିଲେ । ଦିନେ ନଦୀ-ଘାଟରେ ବସିଛନ୍ତି, ଏହି ସମୟରେ ସେହି ସହରର ଜଣେ ବଣିକର ସୁନ୍ଦରୀ ଯୁବତୀ ପତ୍ନୀ ତା'ର ପରିଚାରିକା ସହ ସେହି ବାଟେ ଯାଉଥିବାର ତାଙ୍କ ଆଖିରେ ପଡ଼ିଲା । ବର୍ତ୍ତମାନ ତାଙ୍କର ବୃଦ୍ଧାବସ୍ଥା ଉପସ୍ଥିତ ହୋଇଥିଲେ ମଧ୍ୟ ସେହି ସୁନ୍ଦରୀ ଯୁବତୀ ରମଣୀକୁ ଦେଖିଲା ମାତ୍ରେ, ତାଙ୍କ ମନ ଭିତରେ ସେହି ପୁରାତନ ପ୍ରବୃତ୍ତି ପୁନର୍ବାର ଜାଗି ଉଠିଲା । ସୁନ୍ଦରୀଟିର ରମଣୀୟ ମୁଖମଣ୍ଡଳ ତାଙ୍କର ଚକ୍ଷୁକୁ ପୁଣି ପୂର୍ବପରି ଆକର୍ଷଣ କଲା । ଯୋଗୀ ନିର୍ନିମେଷ ନୟନରେ ତା' ଆଡ଼କୁ ଚାହିଁ ଠିଆ ହୋଇ ରହିଲେ ଏବଂ ପରେ ପରେ ଯୁବତୀଟିର ପଛେ ପଛେ ତା' ଘର ପର୍ଯ୍ୟନ୍ତ ଅନୁସରଣ କରି ଗଲେ । ମୁହୂର୍ତ୍ତକ ମଧ୍ୟରେ ଯୁବତୀଟିର ସ୍ୱାମୀ ଆସି ପହଞ୍ଚିଲା । ଗୈରିକବସନଧାରୀ ସେହି ସନ୍ନ୍ୟାସୀଙ୍କୁ ଦେଖି ବଣିକଟି ଅନୁନୟ କଲା, 'ମହାରାଜ ! ଭିତରକୁ, ଆସନ୍ତୁ । ମୁଁ ଆପଣଙ୍କ ପାଇଁ କ'ଣ କରିପାରେ ଆଦେଶ କରନ୍ତୁ ।' ଯୋଗୀ ଉତ୍ତର ଦେଲେ, 'ମୁଁ ଆପଣଙ୍କ ନିକଟରେ ଏକ ମହାର୍ଘ ବସ୍ତୁ ଲାଗି ପ୍ରାର୍ଥୀ ।' ବଣିକଟି ଉତ୍ତର ଦେଲା, 'ମହାତ୍ମନ ! ଆପଣ ଯେକୌଣସି ବସ୍ତୁ ମୋ'ଠାରୁ ଚାହିଁପାରନ୍ତି । ମୁଁ ଗୃହସ୍ଥ, ଯେ ଯାହା ଚାହେଁ, ମୁଁ ତାହା ତାକୁ ଦେବା ଲାଗି ସଦା ପ୍ରସ୍ତୁତ ।' ସନ୍ନ୍ୟାସୀ କହିଲେ, 'ମୁଁ ଆପଣଙ୍କ ପତ୍ନୀ ସହିତ ଦେଖା କରିବାକୁ ଚାହେଁ ।' ଗୃହସ୍ଥ କହିଲା, 'ହଁ ମହାରାଜ ! ଏ କିବା ଗୁରୁକଥା ! ମୁଁ ତ ପରିବାର, ମୋର ସ୍ତ୍ରୀ ମଧ୍ୟ

ପବିତ୍ର । ପ୍ରଭୁ ସମସ୍ତଙ୍କର ରକ୍ଷକ । ମହାରାଜ ! ସ୍ୱାଗତମ୍ ! ଭିତରକୁ ଆସିବା ହେଉ ।' ସନ୍ନ୍ୟାସୀ ଗୃହ ଭିତରକୁ ପ୍ରବେଶ କଲାମାତେ ବଣିକ ତା'ର ସ୍ତ୍ରୀ ଉଦ୍ଦେଶ୍ୟରେ କହିଲା, 'ଏହି ମହାତ୍ମା ତୁମ ସହିତ ଦେଖା କରିବାକୁ ଆସିଛନ୍ତି ।' ସ୍ତ୍ରୀ ହାତଯୋଡ଼ି କହିଲା, 'ମହାରାଜ ! ମୁଁ ଆପଣଙ୍କ ଲାଗି କ'ଣ କରିପାରେ ଆଦେଶ କରିବା ହୁଅନ୍ତୁ ।' ସନ୍ନ୍ୟାସୀ ତା' ଉପରେ ପୂର୍ଣ୍ଣ ଦୃଷ୍ଟି ନିବେଶପୂର୍ବକ କହିଲେ, 'ମା ! ତୋର କେଶରେ ଲାଗିଥିବା କଣ୍ଟା ଦୁଇଟି ମୋତେ ଦେଇପାରିବୁ ?' ସଙ୍ଗେ ସଙ୍ଗେ ଯୁବତୀଟି ତା'ର ମୁଣ୍ଡରୁ କଣ୍ଟା ଦୁଇଟି ଟାଣି ଆଣି ସନ୍ନ୍ୟାସୀଙ୍କ ହାତକୁ ବଢ଼ାଇ ଦେଲା । ସନ୍ନ୍ୟାସୀ ସେହି କଣ୍ଟା ଦୁଇଟି ସଙ୍ଗେ ସଙ୍ଗେ ଆପଣାର ଆଖିଦୁଇଟି ଭିତରେ ବିଦ୍ଧ କରି କହିଉଠିଲେ, 'ଦୂର ହୁଅ ଦୁର୍ବୃତ୍ତ ନୟନଯୁଗଳ ! ବର୍ତ୍ତମାନଠାରୁ ତୁମେ ଦୁହେଁ ଆଉ ସମ୍ଭୋଗ କରିପାରିବ ନାହିଁ । ଯଦି ଦେଖିବାକୁ ଚାହଁ, ତେବେ ଅନ୍ତଶ୍ଚକ୍ଷୁ ଦେଇ ଦେଖ—ସେହି ବ୍ରଜର ଗୋପାଳ ବାଳକକୁ । ବର୍ତ୍ତମାନଠାରୁ ଏହି ଅନ୍ତଶ୍ଚକ୍ଷୁ ହିଁ ତୋର ସମ୍ବଳ ଓ ସର୍ବସ୍ୱ ।'

ଏହି ଭାବରେ ସନ୍ନ୍ୟାସୀ ପୁନର୍ବାର ଅରଣ୍ୟକୁ ଫେରିଗଲେ ଏବଂ ପୁନଶ୍ଚ ପୂର୍ବପରି ଦିନପରେ ଦିନ ଭଗବାନଙ୍କ ପାଇଁ କାନ୍ଦିବାକୁ ଲାଗିଲେ । ତାଙ୍କ ମଧ୍ୟରେ ପ୍ରେମର ଯେଉଁ ଉଦ୍ଦାମ ପ୍ରବାହ ବହୁଥିଲା, ତାହା ହିଁ ସତ୍ୟଲାଭ ଲାଗି ସଂଗ୍ରାମ କରିବାକୁ ଲାଗିଲା । ପରିଶେଷରେ ସେ ସିଦ୍ଧିଲାଭ କଲେ । ତାଙ୍କର ହୃଦୟରୂପୀ ପ୍ରେମ-ପ୍ରବାହିଣୀର ଗତି ଠିକ୍ ପଥରେ ପରିଚାଳିତ ହୋଇ ତାଙ୍କୁ ଭଗବାନ ଶ୍ରୀକୃଷ୍ଣଙ୍କ ନିକଟରେ ପହଞ୍ଚାଇଦେଲା ।

କାହାଣୀଟିରେ ଏହି ଭାବରେ ବର୍ଣ୍ଣିତ ଅଛି ଯେ, ଭଗବାନ ତାଙ୍କୁ ଶ୍ରୀକୃଷ୍ଣଙ୍କ ରୂପରେ ହିଁ ଦର୍ଶନ ଦେଇଥିଲେ । ପରେ ତାଙ୍କର ଥରକ ପାଇଁ ମାତ୍ର ଅନୁତାପ ଆସିଥିଲା ଯେ, ସେ ବାହ୍ୟ ଚକ୍ଷୁଦ୍ୱୟ ହରାଇ କେବଳ ଅନ୍ତର୍ଦୃଷ୍ଟି ହିଁ ଲାଭ କରିଥିଲେ । ସେ ପ୍ରେମ ବିଷୟକ କେତୋଟି ମନୋରମ କବିତା ଲେଖିଯାଇଛନ୍ତି । ସବୁ ସଂସ୍କୃତ ଗ୍ରନ୍ଥରେ କବି ଓ ଲେଖକମାନେ ପ୍ରଥମେ ଗୁରୁବନ୍ଦନା କରିଥାନ୍ତି । ସେହି କ୍ରମରେ ଭକ୍ତକବି ବିଲ୍ୱମଙ୍ଗଳ ତାଙ୍କର ସେହି ଆଦ୍ୟା ପ୍ରଣୟିନୀଙ୍କୁ ହିଁ ଗୁରୁରୂପେ ସବୁ କବିତାରେ ଆଦ୍ୟବନ୍ଦନା କରିଅଛନ୍ତି ।

# ବାଳଗୋପାଳର କାହାଣୀ

ଶୀତ ଋତୁର ଏକ ଅପରାହ୍ଣ । ଗୋପାଳ ନାମକ ଗୋଟିଏ ବ୍ରାହ୍ମଣବାଳକ ପାଠଶାଳାକୁ ଯିବାଲାଗି ପ୍ରସ୍ତୁତ ହେଉହେଉ ତା'ର ମା'କୁ ଡାକି କହିଲା, "ମା ! ପାଠଶାଳାକୁ ଯିବା ବାଟରେ ଗୋଟାଏ ବଣ ପଡ଼ୁଛି, ତା' ଭିତର ଦେଇ ଗଲାବେଳେ ମୋତେ ଖୁବ୍ ଡର ମାଡ଼ୁଛି । ଅନ୍ୟସବୁ ସାଙ୍ଗ ପିଲାମାନଙ୍କ ସହିତ ହୁଏତ ଚାକର ବା ଆଉ କେହି ଯାଉଛନ୍ତି । ସେମାନେ ପାଠଶାଳାରେ ସେମାନଙ୍କୁ ଛାଡ଼ି ଦେଇ ଯାଆନ୍ତି; ପୁଣି ପାଠଶାଳାରୁ ନେବାକୁ ମଧ୍ୟ ଆସନ୍ତି । ମୋତେ ନେବା ଆଣିବା କରିବାକୁ ତୁ ସେମିତି ମୋ ସାଙ୍ଗରେ କାହିଁକି କାହାକୁ ପଠାଉନାହୁଁ ?"

ଗୋଟିଏ ଗ୍ରାମ୍ୟ ପାଠଶାଳାର ଛାତ୍ର ଏଇ ଗୋପାଳ । ସକାଳେ ଅଉ ଉପରଓଳି ତା'ର ପାଠଶାଳା ବସେ । ଉପରଓଳି ଛୁଟି ପରେ ଶୀତଦିନେ ଘରକୁ ଫେରୁ ଫେରୁ ବାଟରେ ସନ୍ଧ୍ୟା ହୋଇଯାଏ । ଏଣେ ପାଠଶାଳାକୁ ଯିବା ବାଟଟି ବଣଭିତର ଦେଇ କିଛି ଅଂଶ ଯାଇଛି । ତେଣୁ ସେହି ବାଟ ଦେଇ ଗଲାବେଳେ ସତକୁ ସତ ଗୋପାଳକୁ ଡର ମାଡ଼େ ।

ଗୋପାଳର ମାଆ ବିଧବା । ଥିଲାବେଳେ ତା'ର ବାପା ମରି ଯାଇଥିଲେ । ନିଷ୍ଠାବାନ୍ ବ୍ରାହ୍ମଣ ପରି ଅଧ୍ୟୟନ-ଅଧ୍ୟାପନା, ଯଜନ ଯାଜନ ଇତ୍ୟାଦିରେ ଗୋପାଳର ବାପାଙ୍କ ଦିନ କଟୁଥିଲା । ସଂସାରର ସୁଖସମୃଦ୍ଧି ଦିଗରେ ତାଙ୍କର ଦୃଷ୍ଟି ନ ଥିଲା । ତାଙ୍କର ମୃତ୍ୟୁ ପରେ ବିଧବା ମା ଯେପରି ବିଷୟ-ଆଶୟଠାରୁ ବହୁତ ଦୂରକୁ ଘୁଞ୍ଚିଗଲା । ଆଗରୁ ସ୍ୱାମୀ ବଞ୍ଚିଥିଲାବେଳେ କଅଣ ବା ଆଉ ବେଶୀ ଥିଲା ! ତେଣୁ ବିଧବାଟି ଭଗବାନଙ୍କ ଉପରେ ସମ୍ପୂର୍ଣ୍ଣ ଭରସା ରଖି, ନିଷ୍ଠାର ସହିତ ଧ୍ୟାନ-ଉପାସନା ଯମ-ନିୟମ ପ୍ରଭୃତି ପାଳନ କରି ଚରମମୁକ୍ତିଦାତା ମୃତ୍ୟୁର ଅପେକ୍ଷାରେ ଧୈର୍ଯ୍ୟ ସହକାରେ ବଞ୍ଚି ରହିଥିଲା । ଅନ୍ତରରେ ଏହି ଆଶା ପୋଷଣ କରିଥିଲା ଯେ, ମୃତ୍ୟୁର ପରପାରରେ, ଅନ୍ତହୀନ ଜୀବନ-ପଥରେ ଯେ ତା'ର ଭଲମନ୍ଦର ସାକ୍ଷୀ, ସୁଖଦୁଃଖର ଅଂଶଭାଗୀ, ସେହି ସ୍ୱାମୀଙ୍କ ସହିତ ତା'ର ପୁନର୍ବାର ମିଳନ ହେବ ।...

ନିଜର ଗୋଟିଏ କୁଡ଼ିଆଘରେ ସେ ରହୁଥିଲା, ତା'ର ସ୍ୱାମୀ ବଞ୍ଚିଥିଲାବେଳେ ବ୍ରାହ୍ମଣ ପଣ୍ଡିତ ବୋଲି କେହି ଜଣେ ଦାତା ତାଙ୍କୁ ଖଣ୍ଡିଏ ଧାନଜମି ଦାନ କରିଥିଲେ । ସେହି ଜମିରେ ଯେଉଁ ଧାନ ଉତ୍ପନ୍ନ ହେଉଥିଲା, ସେଥିକରେ ବିଧବାଟିର ଗୁଜୁରାଣ ମେଣ୍ଟି ଯାଉଥିଲା । ଏହାଛଡ଼ା ବିଧବାଟିର କୁଡ଼ିଆକୁ ଲାଗି ଆଉ କିଛି ଜମି ମଧ୍ୟ ଥିଲା । ସେଥିରେ ଥିଲା କେତୋଟି ଆମ୍ବ ଓ ଲିଚୁ ଗଛ । ଗ୍ରାମବାସୀଙ୍କ ସାହାଯ୍ୟରେ ସେଗୁଡ଼ିକରୁ ପ୍ରଚୁର ଫଳମୂଳ ମିଳୁଥିଲା । ଏହା ବ୍ୟତୀତ ବିଧବାଟି ଯେତେବେଳେ କିଛି ସମୟ ପାଉଥିଲା, ଚରଖାରେ ସୂତା କାଟି ସେଥିରୁ ମଧ୍ୟ କିଛି ରୋଜଗାର କରୁଥିଲା ।...

ପ୍ରଭାତର ପହିଲି ସୂର୍ଯ୍ୟକିରଣ ତାଳଗଛ ଅଗରେ ପ୍ରତିଫଳିତ ହେବାର ବହୁପୂର୍ବରୁ ସେ ନିଦରୁ ଉଠିପଡ଼ିଥାଏ । ସେତେବେଳ ପର୍ଯ୍ୟନ୍ତ ପ୍ରଭାତକାଳୀନ ପକ୍ଷୀମାନଙ୍କର କଳରବ

ଶୁଣା ଯାଇ ନ ଥାଏ । ଖଣ୍ଡିଏ ମାତ୍ର ମୋଟା ହେଁସ ଓ କମ୍ବଳଟିଏ ଥିଲା ତା'ର ବିଛଣା । ସେହି ଦୀନ ଶଯ୍ୟାଟି ଉପରେ ବସି ଅତି ପ୍ରତ୍ୟୁଷରୁ ସେ ଭଗବାନଙ୍କ ନାମଭଜନ ଆରମ୍ଭ କରୁଥିଲା । ପୁଣ୍ୟଶ୍ଳୋକା ନାରୀମାନଙ୍କର ପୂତ ଚରିତକଥା କୀର୍ତ୍ତନ କରୁଥିଲା । ଋଷିମାନଙ୍କୁ ପ୍ରଣାମ ଜଣାଉଥିଲା ଏବଂ ମନୁଷ୍ୟର ପରମାଶ୍ରୟ ନାରାୟଣଙ୍କ ନାମ, କରୁଣାମୟ ଶିବଙ୍କର ନାମ, ଏବଂ ଜଗତ୍ତାରିଣୀ ତାରାଦେବୀଙ୍କ ନାମ ଜପ କରୁଥିଲା । ସର୍ବୋପରି ଅନ୍ତରର ସର୍ବ-ଆକୂତି ସେ ତା'ର ପ୍ରାଣାଦପି ପ୍ରିୟତର ଦେବତା ଶ୍ରୀକୃଷ୍ଣଙ୍କ ନିକଟରେ ହିଁ ନିବେଦନ କରୁଥିଲା । ଶ୍ରୀକୃଷ୍ଣଙ୍କର ସେହି ବାଲଗୋପାଳମୂର୍ତ୍ତି ଥିଲା ତା'ର ଖୁବ୍ ପ୍ରିୟ । ମଣିଷକୁ ଶିକ୍ଷା ଓ ମୁକ୍ତି ଦେବା ଲାଗି କରୁଣାରେ ବିଗଳିତ ହୋଇ ଭଗବାନ ଏହି ରୂପ ଧାରଣ କରି ପୃଥିବୀରେ ଆବିର୍ଭୂତ ହୋଇଥିଲେ । ପ୍ରାର୍ଥନା ଫଳରେ ତା'ର ଅନ୍ତରରେ ଏକ ବିଚିତ୍ର ଆନନ୍ଦାନୁଭୂତିର ଉଦ୍ରେକ ହେଉଥିଲା । ମନେ ହେଉଥିଲା, ସେ ସତେକି ନିଜ ସ୍ୱାମୀ ସହିତ ଏକତ୍ର ହୋଇ ଭଗବାନ ଶ୍ରୀକୃଷ୍ଣଙ୍କ ସଙ୍ଗେ ମିଳିତ ହେବାର ବାଞ୍ଛିତ ପଥରେ ଆଉ ଗୋଟିଏ ଦିନ ଆଗେଇ ଯାଉଥିଲା ।

କୁଟୀରର ଅନତିଦୂରରେ ବହି ଯାଉଥିଲା ନଦୀଟିଏ । ଖୁବ୍ ସକାଳ ପ୍ରହରରୁ ସେ ସେଥିରେ ସ୍ନାନ ସାରି ଆସୁଥିଲା । ସ୍ନାନ କାଳରେ ସେ ପ୍ରାର୍ଥନା କରୁଥିଲା—"ହେ ଦେବତା ! ନଦୀର ନିର୍ମଳ ଜଳରେ ସ୍ନାନ କରି ଦେହଟି ଯେପରି ମୋର ପବିତ୍ର ହେଲା, ସ୍ନିଗ୍ଧ ହେଲା—ତୁମର କରୁଣାରେ ଯେପରି ମୋର ଅନ୍ତରଟି ମଧ୍ୟ ସେହିପରି ପବିତ୍ର ଓ ସ୍ନିଗ୍ଧ ହୋଇଯାଏ !"

ତା'ପରେ ସେ ପରିଷ୍କୃତ ଓ ଶୁଭ୍ର ଲୁଗାଟିଏ ପିନ୍ଧି ଫୁଲ୍ ତୋଳେ, ଚନ୍ଦନପେଡ଼ୀରେ ଚନ୍ଦନ ଘୋରେ ଏବଂ ତୁଳସୀପତ୍ର ଆହରଣ କରି ପୂଜା ଉଦ୍ଦେଶ୍ୟରେ ଘ୍ରେଟ ଠାକୁରଘରଟି ଭିତରେ ପ୍ରବେଶ କରେ । ସେହି ଘରେ ତା'ର ବାଲ-ଗୋପାଳ-ମୂର୍ତ୍ତିଟି ପ୍ରତିଷ୍ଠିତ ଥିଲେ । କାଠର ସିଂହାସନ ଉପରେ ମଖମଲ କନାର ଗଦିଟିଏ ବିଛା ହୋଇଥାଏ — ତା' ଉପରେ ଟଙ୍ଗା ହୋଇଥାଏ ରେଶମ ଚନ୍ଦ୍ରାତପଟିଏ । ସେହି ଗଦି ଉପରେ ଶ୍ରୀକୃଷ୍ଣଙ୍କ ଧାତୁ-ନିର୍ମିତ ବାଲଗୋପାଳ ମୂର୍ତ୍ତିଟି ପୁଷ୍ପତୁଳସୀପତ୍ରରେ ଆଚ୍ଛାଦିତ ହୋଇ ବସିଥାନ୍ତି ।

ମାଆର ପ୍ରାଣ ଶ୍ରୀଭଗବାନଙ୍କୁ ପୁତ୍ରରୂପରେ କଳ୍ପନା କରି କେବଳ ତୃପ୍ତିଲାଭ କରୁଥିଲା । ତା'ର ସ୍ୱାମୀ ଯେତେବେଳେ ଜୀବିତ ଥିଲେ, ସେତେବେଳେ କେତେଥର ବେଦରେ କଥିତ ସେହି ନିରାକାର, ନିରବୟବ, ନୈର୍ବ୍ୟକ୍ତିକ ଦେବତାଙ୍କର ବର୍ଣ୍ଣନା ତାକୁ ଶୁଣାଉ-ଥିଲେ । ପୂର୍ଣ୍ଣପ୍ରାଣରେ ସେ ସେହିସବୁ ଅନବଦ୍ୟ କାହାଣୀ ଶୁଣୁଥିଲା—ଅକୁଣ୍ଠଚିତ୍ତରେ ସେ-ଗୁଡ଼ିକୁ ଧ୍ରୁବ ସତ୍ୟ ବୋଲି ଗ୍ରହଣ କରୁଥିଲା । କିନ୍ତୁ ହାୟ ! ଶିକ୍ଷାହୀନ ଓ ଶକ୍ତିହୀନ ଗୋଟିଏ ନାରୀପକ୍ଷରେ ସେହି ବିରାଟଙ୍କୁ ଧାରଣା କରିବା ଭଲା କିପରି ସମ୍ଭବ ହେବ ? ତା' ଛଡ଼ା ଶାସ୍ତ୍ରରେ ତ ଏ କଥା ମଧ୍ୟ ଲିପିବଦ୍ଧ ହୋଇଛି ଯେ, ଯେ ଯେଉଁ ଭାବରେ ତାଙ୍କୁ ଭଜନ କରେ, ସେ ସେହି ଭାବରେ ହିଁ ତାଙ୍କୁ ଲାଭ କରିଥାଏ । ମଣିଷ ଯୁଗେ ଯୁଗେ ତାଙ୍କର ପ୍ରଦର୍ଶିତ ପଥକୁ ହିଁ ଅନୁସରଣ କରିଥାଏ ।

"ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂସ୍ତଥୈବ ଭଜାମ୍ୟହମ୍ ।
ମମ ବର୍ତ୍ମାନୁବର୍ତ୍ତନ୍ତେ ମନୁଷ୍ୟାଃ ପାର୍ଥ ସର୍ବଶଃ ॥"

ଏହି ଭାବଟିରେ ତା'ର ଅନ୍ତର ପୂରି ଯାଉଥିଲା, ତା'ର ଅନ୍ୟ ଆଉ କିଛି ପ୍ରାର୍ଥନା ନ ଥିଲା ।

ଏହିପରି ଭାବେ ତା'ର ଦିନ କଟିଯାଉଥିଲା; ତା'ର ଜୀବନ, ହୃଦୟର ସମସ୍ତ ଭକ୍ତି, ବିଶ୍ୱାସ ଓ ପ୍ରେମ ସେ ସମର୍ପଣ କରୁଥିଲା ବାଲଗୋପାଳ ଶ୍ରୀକୃଷ୍ଣଙ୍କୁ ଏବଂ ସେହି ସମର୍ପଣଟି ବିଶେଷ ଭାବରେ ତା'ର ସେହି କ୍ଷୁଦ୍ର ଧାତୁ-ମୂର୍ତ୍ତିଟିକୁ ଘେରି ନିୟତ ଲୁତାତନ୍ତୁ ଭଳି ଅବର୍ତ୍ତିତ ହେଉଥିଲା । ତା'ଛଡ଼ା ଭଗବାନଙ୍କର ଏହି ବାଣୀଟି ମଧ୍ୟ ସେ ଶୁଣିଥିଲା—

"ରକ୍ତମାଂସରେ ନିର୍ମିତ ମଣିଷକୁ ତୁମେ ଯେମିତି ସେବା କର, ମୋତେ ମଧ୍ୟ ସେହିପରି ପ୍ରେମ ଓ ପବିତ୍ରତା ଦେଇ ସେବାକର । ମୁଁ ସେହି ସେବା ଗ୍ରହଣ କରିବି ।

ସୁତରାଂ ସେ ଏହି ସେବା ହିଁ କରୁଥିଲା । ଯେଉଁ ଭାବରେ ଭୃତ୍ୟ ତା'ର ପ୍ରଭୁଙ୍କୁ ସେବା କରେ, ଯେଉଁ ଭାବରେ ଶିଷ୍ୟ ତା'ର ଗୁରୁଙ୍କୁ ସେବା କରେ, ଯେଉଁ ଭାବରେ ମାଆ ତା'ର ନୟନର ନିଧି ଏକମାତ୍ର ପୁତ୍ରର ସେବା କରେ, ବିଧବାଟି ବାଲଗୋପାଳ ଶ୍ରୀକୃଷ୍ଣଙ୍କୁ ସେହି ଭାବରେ ହିଁ ସେବା କରୁଥିଲା । ପ୍ରତିଦିନ ସେ ଧାତୁମୂର୍ତ୍ତିଟିକୁ ଗାଧୋଇ ଦେଉଥିଲା, ସଜାଇ ଦେଉଥିଲା ଏବଂ ଧୂପ ବି ଦେଉଥିଲା । କିନ୍ତୁ ଭୋଗ ବା ନୈବେଦ୍ୟ ? ହାୟ ! ଦରିଦ୍ର ବିଧବାର ସେ ସାମର୍ଥ୍ୟ ବା କାହିଁ ? ବେଳେବେଳେ ଦୁଃଖରେ ତା'ର ଆଖିରେ ଲୁହ ଭରି-ଯାଉଥିଲା, ପୁଣି ସଙ୍ଗେ ସଙ୍ଗେ ମନେପଡ଼ିଯାଉଥିଲା ସ୍ୱାମୀଙ୍କ ତୁଣ୍ଡରୁ ଶୁଣିଥିବା ଭଗବାନଙ୍କର ସେହି ଅଭୟ-ବାଣୀ—'ପତ୍ର, ପୁଷ୍ପ, ଫଳ, ଜଳ—ପରମଭକ୍ତିର ସହିତ ଯେ ମୋତେ ଯାହା କିଛି ଦାନ କରେ, ମୁଁ ତାକୁ ଆନନ୍ଦରେ ଗ୍ରହଣ କରିଥାଏ'—

"ପତ୍ରଂ, ପୁଷ୍ପଂ, ଫଳଂ ତୋୟଂ, ଯୋ ମେ ଭକ୍ତ୍ୟା ପ୍ରଯଚ୍ଛତି
ତଦହଂ ଭକ୍ତ୍ୟୁପହୃତଂ ମଶ୍ନାମି ପ୍ରଯତାତ୍ମନଃ ।"

ସୁତରାଂ ତା'ର ପ୍ରାର୍ଥନା ଥିଲା ଏହି ମନ୍ତ୍ରରେ—'ହେ ଦେବତା, ଏହି ବିପୁଳା ପୃଥିବୀରେ କେତେ ବିଚିତ୍ର ପୁଷ୍ପ ତୁମରି ପ୍ରୀତି ଲାଗି ନିୟତ ଫୁଟିଥାଏ । ତଥାପି ମୋର ତୁଚ୍ଛ ଏହି ବନଫୁଲ କେଇଟି ତୁମେ ଗ୍ରହଣ କର । ତୁମେ ବିଶାଳ ବିଶ୍ୱର ଅନ୍ନଦାତା । ତଥାପି ମୋର ଏହି ସାମାନ୍ୟ ଫଳ କେତୋଟି ଗ୍ରହଣ କର । ମୁଁ ଶକ୍ତିହୀନ, ଶିକ୍ଷାହୀନ । ତୁମେ ହିଁ ମୋର ଦେବତା, ମୋର ପ୍ରାଣର ଗୋପାଳ, ମୋର ପୁତ୍ର ! ତୁମେ କୃପା କରି ମୋର ପୂଜା ଅର୍ଚ୍ଚନା ସାର୍ଥକ କର । ମୋର ପ୍ରେମକୁ କାମନାହୀନ କର ।'—

'ପୂଜାର ଫଳ ବୋଲି ଯଦି କିଛି ଥାଏ, ତେବେ ସେ ଫଳ ମଧ୍ୟ ତୁମେ ଗ୍ରହଣ କର । ମୋତେ ପ୍ରେମ ଦିଅ, କେବଳ ପ୍ରେମ—ଯେଉଁ ପ୍ରେମ ଅନ୍ୟ କୌଣସି ପ୍ରତିଦାନର ପ୍ରତ୍ୟାଶା ରଖେ ନାହିଁ, ପ୍ରେମ ବ୍ୟତୀତ ଆଉ କିଛି ଆକାଙ୍କ୍ଷା କରେ ନାହିଁ ।'

ହୁଏତ କେଉଁଦିନ ଗ୍ରାମର ବୈରାଗୀ ଯୋଗୀଟିଏ ଅକସ୍ମାତ୍ ଘର ପାଖରେ ଠିଆ ହୁଏ ଏବଂ ପ୍ରଭାତୀ ସ୍ୱରରେ ଗୀତଟିଏ ଗାଇଉଠେ—

ଶୁଣରେ ମଣିଷଭାଇ ପ୍ରେମ-କଥା ଯାଏ କହୁ,
(ମୁଁ) ଜ୍ଞାନର ଡାକରେ ଭସ୍ମ କରେ ନାହିଁ, ପ୍ରେମ-ଡାକେ କରେ ଭସ୍ମ ।
(ମୋର) ଆସନ କମ୍ପେ ପ୍ରେମର ଡାକରେ ପ୍ରେମାଶ୍ରୁ ହୁଏ ଉଦୟ ।
ନିତ୍ୟ ମୁକ୍ତ ଯେଉଁ ଭଗବାନ ଅଶରୀରୀ ବ୍ରହ୍ମ ସିଏ
ପ୍ରେମ ଲାଗି ନରରୂପେ ଏ ଧରାରେ ଦେଖୁଛ ମୁଁ ଖେଳେ ସିଏ;
ଜାଣେ, ଲୀଳା କରୁଅଛୁ ସିଏ ।
ବୃନ୍ଦାବନର କୁଞ୍ଜେ କୁଞ୍ଜେ ଜ୍ଞାନ କି ପ୍ରକାଶି ଥିଲା ?
ଗୋପାଳବାଳକ-ଗୋପବାଳିକାଙ୍କୁ ଶାସ୍ତ୍ର କିବା ଜଣାଥିଲା ?
ସେମାନେ କିନ୍ତୁ ପ୍ରେମିକ ଥିଲେ ଯେ ପ୍ରୀତି-ରସେ ହୃଦଭରା,
ସେଥିପାଇଁ ତାଙ୍କ ପୀରତି-ପାଶରେ ମୁଁ ତ ପଡ଼ିଅଛୁ ଧରା ।

ଏହିପରି ଭାବରେ ତା'ର ମାତୃ-ହୃଦୟ ଯେପରି ଭାଗବତ ସତ୍ତା ମଧ୍ୟରେ ହିଁ ନିଜର ପୁଅଟିକୁ ପାଇଯାଇଥିଲା ଏବଂ ଦେବ-ଗୋପାଳର ନାମ ଅନୁସାରେ ପୁଅର ନାମ ମଧ୍ୟ ସେ ରଖିଥିଲା—ଗୋପାଳ । ତାକୁ ହିଁ ଅବଲମ୍ବନ କରି ଏ ଜଗତ୍-ବକ୍ଷରେ ନିଜର ମନଟିକୁ ଠିକ୍ ଭାବରେ ଧରି ରଖିବା ତା' ଲାଗି ସମ୍ଭବ ହୋଇଥିଲା । ନରୁବା ପାର୍ଥିବ ବନ୍ଧନସ୍ଥାନ ତା'ର ମନଟି ମୁହୂର୍ମୁହୁ ସବୁକିଛି ଜାଗତିକ ବସ୍ତୁର ଊର୍ଦ୍ଧ୍ୱକୁ ଧାଇଁଯାଉଥିଲା । ମାଟିର ପୃଥିବୀରେ ତା'ର ଯେଉଁ ପ୍ରାତ୍ୟହିକ ଜୀବନ, ତାହା ଯେପରି ଥିଲା କଳପରି, ନିଷ୍ପ୍ରାଣ ଯନ୍ତ୍ରଭଳି । ବସ୍ତୁତଃ ତା'ର ଚାଲିଚଳନ, ତା'ର ଚିନ୍ତା, ସୁଖ—ଗୋଟିଏ କଥାରେ ତା'ର ସମଗ୍ର ଜୀବନଟି—ସେହି କ୍ଷୁଦ୍ର ବାଳକଟିକୁ ଘେରି ଆବର୍ତ୍ତିତ ହେଉ ନ ଥିଲା କି ? ହଁ, ହେଉଥିଲା ।

ବର୍ଷ ପରେ ବର୍ଷ ଅତିବାହିତ ହୋଇଯାଇଛି—ଆଉ ସେ ତା'ର ମାତୃହୃଦୟର ସକଳ କୋମଳତା ଦେଇ ଏହି ଶିଶୁଟିର ଜୀବନରେ କ୍ରମବିକାଶ ଲକ୍ଷ୍ୟ କରିଚାଲିଛି । ଆଜି ସେ ପାଠଶାଳାକୁ ଗଲାଣି, ବଡ଼ ହେଲାଣି, ସେଥିପାଇଁ ଗୃହ-ଜୀବନର ପ୍ରୟୋଜନୀୟ ଜିନିଷଗୁଡ଼ିକୁ ସଂଗ୍ରହ କରିବା ଲାଗି ମା'କୁ ତା'ର କେତେ ଦୀର୍ଘଦିନ ବ୍ୟାପୀ କଠୋର ପରିଶ୍ରମ କରିବାକୁ ନ ପଡ଼ିଛି ?

ପ୍ରୟୋଜନ ଅବଶ୍ୟ ଏମିତି କିଛି ବେଶୀ ନ ଥିଲା । ଯେଉଁ ଦେଶରେ ମାଟି-ଦୀପଟିରେ କିଛି ତେଲ ପୂରାଇ ଗୋଟିଏ ପୁରୁଣାଲୁଗାରୁ କନା ଖଣ୍ଡିଏ ଛିଣ୍ଡାଇ ବଳି ସଳିତାଟିଏ କରି ତାକୁ ଦୀପ ଭିତରେ ରଖି, ସେଥିରେ ନିଆଁ ଲଗାଇ, ସେହି ଆଲୁଅରେ ପ୍ରଫୁଲ୍ଲଚିତ୍ତରେ ବିଦ୍ୟାଚର୍ଚ୍ଚା କରି ମଣିଷ ଦିନ କାଟେ—ଯେଉଁ ଦେଶରେ ଘାସରେ ତିଆରି ଖଣ୍ଡିଏ ହେଁସ ବା ମସିଣା ଛଡ଼ା ଆଉ କୌଣସି ଆସବାବର ହିଁ ପ୍ରୟୋଜନ ହୁଏ ନାହିଁ, ସେ ଦେଶର ଗୃହ-ଜୀବନରେ କ'ଣ ବା ଆଉ ବେଶୀ ଦରକାର ପଡ଼ନ୍ତା ? ତଥାପି ଯାହା କିଛି ଦୁଇ ଚାରୋଟି ସାମାନ୍ୟ ଜିନିଷର ପ୍ରୟୋଜନ ପଡ଼ିଲା, ସେହିତକ ସଂଗ୍ରହ କରିବା ପାଇଁ ଦରିଦ୍ର ବିଧବାକୁ ବହୁତ ପରିଶ୍ରମ କରିବାକୁ ପଡ଼ିଥିଲା ।

ବହୁଦିନ ଧରି ଚରଖାରେ ସୂତାକାଟି ଗୋପାଳ ପାଇଁ ଖଣ୍ଡିଏ ସାନ ଧୋତି ଓ

ସାନ ସୁନ୍ଦର ସେ ସଂଗ୍ରହ କରିପାରିଥିଲା, ଆଉ ମଧ୍ୟ ଢ଼େଁକିରେ ଢ଼ଆରି ଛୋଟ ଆସନଟିଏ ମଧ୍ୟ ସେ ସଂଗ୍ରହ କଲା ବସି କରି ଲେଖାପଢ଼ା କରିବା ପାଇଁ । କାଳିଭରି ଦୁଆତଟିଏ ଏବଂ ପକ୍ଷୀପର-ନିର୍ମିତ କଲମଟିଏ ମଧ୍ୟ ସେ ତାକୁ ସଂଗ୍ରହ କରି ଦେଇଥିଲା ।

ତା'ପରେ ଯେଉଁ ଶୁଭ ଦିନଟିରେ ଗୋପାଳର ବିଦ୍ୟାରମ୍ଭ ହେଲା—ପ୍ରଥମ କରି ସେ ଅ-ଆ ଲେଖିବାକୁ ଚେଷ୍ଟା କଲା—ସେହି ଦିନଟି ଦୁଃଖିନୀ ବିଧବା ମା' ପାଇଁ ଯେ କି ଆନନ୍ଦର ଦିନ ଥିଲା, ତାହା ମାତୃହୃଦୟ ଭିନ୍ନ ଆଉ କିଏ ପରିମାପ କରିପାରିବ ?

କିନ୍ତୁ ଆଜି ? ଆଜି ତା'ର ମନରେ ଏକ ଗଭୀର ବିଷାଦର ଛାଇ ପଡ଼ିଛି । ଗଭୀର ବଣ୍ଡୁଆ ରାସ୍ତାରେ ଏକୁଟିଆ ଯିବା ଆସିବା କରିବାକୁ ଗୋପାଳକୁ ଡର ଲାଗୁଛି । କିଏ ଆଉ ତାକୁ ସାଙ୍ଗରେ ନେବା ଆଣିବା କରିବ ? ଏହା ପୂର୍ବରୁ ସେ କେଉଁଦିନ ବି ନିଜ ବୈଧବ୍ୟର ନିଃସଙ୍ଗତା ଓ ଦାରିଦ୍ର୍ୟ ଲାଗି ଏପରି ଭାବେ ଭାବି ନାହିଁ, କିମ୍ବା ଏଭଳି ଅନୁଭବ କରି ନାହିଁ । ମୁହୂର୍ତ୍ତିକ ଲାଗି ତାକୁ ଚାରିଆଡ଼ ଅନ୍ଧାର ଦିଶିଲା । କିନ୍ତୁ ଠିକ୍ ପରେ ପରେ ହିଁ ତା'ର ମନେ-ପଡ଼ିଲା, ଭଗବାନଙ୍କର ସେହି ଚିରନ୍ତନ ଆଶ୍ୱାସ-ବାଣୀ—

"ଅନନ୍ୟାଶ୍ଚିନ୍ତୟନ୍ତୋ ମାଂ ଯେ ଜନାଃ ପର୍ଯ୍ୟୁପାସତେ
ତେଷାଂ ନିତ୍ୟାଭିଯୁକ୍ତାନାଂ ଯୋଗକ୍ଷେମଂ ବହାମ୍ୟହମ୍ ।"

ଅର୍ଥାତ୍ ଏକାନ୍ତଭାବରେ ଅନନ୍ୟଚିତ୍ତ ହୋଇ ଯେଉଁ ବ୍ୟକ୍ତି ମୋ ଉପରେ ନିର୍ଭର କରେ, ମୁଁ ତା'ର ସକଳ ଭାର ସ୍ୱୟଂ ବହନ କରିଥାଏ ।

ବିଧବାଟିର ବିଶ୍ୱାସୀ ମନ ଏହି ଆଶ୍ୱାସବାଣୀରେ ହିଁ ଗୋଟିଏ ଆଶ୍ରୟ ଖୋଜି ପାଇଲା ।— ତା' ପରେ ଆଖିରୁ ଲୁହ ପୋଛି ଦେଇ ପୁଅକୁ କହିଲା—'ଭୟ କ'ଣ ବାବୁ ! ଏହି ବଣରେ ମୋର ଆଉ ଗୋଟିଏ ପୁଅ ରହିଛି—ତା' ନାଁ ବି ଗୋପାଳ । ସେ ତୋର ବଡ଼ ଭାଇ । ବଣର ଅନ୍ଧାର ଭିତରେ ଯେତେବେଳେ ତୋତେ ଡର ମାଡ଼ିବ, ସେତେବେଳେ ତୁ ତୋର ବଡ଼ଭାଇକୁ ଡାକିବୁ ।'

ମାଆ ଯେପରି ବିଶ୍ୱାସୀ ଥିଲା—ପୁଅ ମଧ୍ୟ ସେହିଭଳି ବିଶ୍ୱାସୀ ଥିଲା । ସେ ମଧ୍ୟ ମାଆର କଥାକୁ ପୂର୍ଣ୍ଣପ୍ରାଣରେ ବିଶ୍ୱାସ କଲା ।'

ତା'ପରେ ସେଦିନ ଅପରାହ୍ଣରେ ପାଠଶାଳାରୁ ଫେରିବା ପଥରେ ଯେତେବେଳେ ବଣ ପଡ଼ିଲା, ସେତେବେଳେ ପିଲାଟିକୁ ଡର ମାଡ଼ିବାରୁ ସେ ଡାକ ଛାଡ଼ିଲା—'ଗୋପାଳ ଭାଇ, ତୁମେ କ'ଣ ଏଠି ଅଛ ? ମା କହିଛି, ତୁମେ କେଉଁଠି ଏହି ବଣରେ ଥାଅ, ମୋତେ ଡର ମାଡ଼ିଲେ ତୁମକୁ ଡାକିବାକୁ ସେ କହିଛି । ମୋତେ ଭାରି ଡର ମାଡ଼ୁଛି । କେଉଁଠି ଅଛ, ଶୀଘ୍ର ଆସ ।'

ଆଶ୍ଚର୍ଯ୍ୟ କଥା ! ଘୋର ଅରଣ୍ୟ ଭିତରୁ ଉତ୍ତର ଆସିଲା—'ଭୟ ନାହିଁ ଭାଇ, ମୁଁ ତ ଏଠି ରହିଛି । ଭୟ କାହାକୁ ? ନିର୍ଭୟରେ ଘରକୁ ଫେରିଯାଅ ।'

ସେହିଦିନୁ ଏମିତି ଦିନପରେ ଦିନ ଗୋପାଳ ତା'ର ବଣ ଭିତରର ବଡ଼ ଭାଇକୁ ଡାକେ, ଆଉ ସେହିପରି ଗୋଟିଏ ଉତ୍ତର ଶୁଣିବାକୁ ପାଏ । ଘରକୁ ଫେରି ମାଆକୁ ସେହିସବୁ

କଥା ସେ କହେ । ମାଆ ମଧ୍ୟ ବିସ୍ମୟ ଆଉ ପ୍ରେମରେ ମୁଗ୍ଧ ହୋଇ ସେ କାହାଣୀ ଶୁଣେ । ତା'ପରେ ଦିନେ ମାଆ ତାକୁ କହିଲା -'ବାବା ! ଏଥର ଯେବେ ତୋର ଗୋପାଳଭାଇ ସଙ୍ଗେ କଥାବାର୍ତ୍ତା ହେବ, ସେତେବେଳେ ତାକୁ କହିବୁ, ସେ ଯେମିତି ତୋତେ ଦେଖାଦିଏ ।'

ପରଦିନ ଯଥା ସମୟରେ ବନପଥରେ ଯିବା ବେଳେ ଗୋପାଳ ତା'ର ଭାଇକୁ ଡାକ ମାରିଲା ଏବଂ ପୂର୍ବପରି ବଣଭିତରୁ ଉତ୍ତର ମଧ୍ୟ ସେମିତି ମିଳିଲା । କିନ୍ତୁ ଏଥର ମା' କଥା ମାନି ସେ କହିଲା—'ଗୋପାଳଭାଇ ! ତୁମକୁ ତ ମୁଁ କେଉଁଦିନ ଆଖିରେ ଦେଖିନି । ଆଜି ମୋତେ ନିଶ୍ଚୟ ଦେଖାଦିଅ ।'

ସେତେବେଳେ ଉତ୍ତର ଆସିଲା, 'ଭାଇ, ବର୍ତ୍ତମାନ ଖୁବ୍ ବ୍ୟସ୍ତ ଅଛି । ଆଜି ମୁଁ ଯାଇ-ପାରିବି ନାହିଁ ।' କିନ୍ତୁ ଗୋପାଳ ବି ଛାଡ଼ିଲା ପିଲା ନୁହେଁ । ସେ ବାରମ୍ବାର କାତର ଭାବରେ ଅନୁରୋଧ କଲା । ତା'ପରେ ହଠାତ୍ ଗୁଳ୍ମାଚ୍ଛନ୍ନ ବଣ ଭିତରୁ ବାହାରି ଗୋପାଳ ବାହାରି ଆସିଲା । ପିନ୍ଧିଥାଏ ମୟୂରଚନ୍ଦ୍ର କାଛିଏ, ହାତରେ ଧରିଥାଏ ବାଉଁଶର ଖଣ୍ଡିଏ ବଂଶୀ ।

ଦୁଇଟିଯାକ ବାଳକ ଖୁସିରେ ଗଡ଼ାଗଡ଼ି । ତା'ପରେ ସାଙ୍ଗ ହୋଇ ସେମାନେ ଖେଳ ଖେଳିଲେ, ଗଛରେ ଚଢ଼ିଲେ, ଫଳ ପାଡ଼ିଲେ, ଫୁଲ ତୋଳିଲେ; ବଣର ଗୋପାଳ ଆଉ ଦୁଃଖିନୀ ମାଆଟିର ଗୋପାଳ ଯେମିତି ଦୁଇଟି ଭାଇ । ଖେଳୁ ଖେଳୁ ପାଠଶାଳାର ସମୟ ପ୍ରାୟ ଉତ୍ତୀର୍ଣ୍ଣ ହୋଇ ଆସିଲା ଏବଂ ଗୋପାଳ ଏକାନ୍ତ ଅନିଚ୍ଛା ସତ୍ତ୍ୱେ ପାଠଶାଳାକୁ ଚାଲିଗଲା ।

ସେଦିନ ତା'ର ପାଠ ପ୍ରାୟ ଭୁଲ ହୋଇଗଲା । ସାରା ଅନ୍ତର ତା'ର ଉତ୍ସୁକ ହୋଇ ରହିଥାଏ, କେମିତି ଶୀଘ୍ର ବିଦ୍ୟାଳୟ ଛୁଟି ହେବ, ଆଉ ସେ ଯାଇ ବଣ ଭିତରେ ତା'ର ଗୋପାଳଭାଇ ସଙ୍ଗେ ଖେଳିବ ।

ଏହିଭଳି କଟିଗଲା କେତୋଟି ମାସ । ସବୁଦିନେ ମାଆଟି ତା'ର ପୁଅ ମୁହଁରୁ ନାନା ବିଚିତ୍ର କଥା ଶୁଣୁଥାଏ, ଆଉ ଭଗବାନଙ୍କର ଅପାର କରୁଣା କଥା ଚିନ୍ତାକରି ନିଜର ଦାରିଦ୍ର୍ୟ ଆଉ ବୈଧବ୍ୟର ଦୁଃଖ ଇତ୍ୟାଦି ସବୁ କିଛି ପ୍ରାୟ ଭୁଲି ହୋଇଯାଏ । ଦୁଃଖକୁ ତା'ର ମନେ ହେଉଥାଏ ଭଗବାନଙ୍କର ଅନନ୍ତ ଆଶୀର୍ବାଦ ବୋଲି ।

ଏହାପରେ ଦିନେ ପାଠଶାଳାରେ ଗୁରୁମହୋଦୟଙ୍କ ଘରେ ଶ୍ରାଦ୍ଧ-ଅନୁଷ୍ଠାନ ହେଉଥାଏ । ସେ କାଳରେ ଗ୍ରାମ୍ୟ-ପାଠଶାଳାର ପଣ୍ଡିତମାନେ ଏକା ଅନେକଗୁଡ଼ିଏ ପିଲାଙ୍କୁ ଲେଖାପଢ଼ା ଶିଖାଉଥିଲେ । କେଉଁଠାରୁ କିଛି ନିର୍ଦ୍ଧାରିତ ବେତନ ପାଇବାର ବନ୍ଦୋବସ୍ତ ନ ଥିଲା । କିନ୍ତୁ ଗୁରୁ ମହାଶୟଙ୍କର କୌଣସି ବିଶେଷ କ୍ରିୟା ଅନୁଷ୍ଠାନ ହେଲେ ଛାତ୍ରମାନେ ନିଜ ଘରୁ ବସ୍ତୁ ଉପଢୌକନ ଆଣି ଗୁରୁଙ୍କୁ ଦେଉଥିଲେ ଏବଂ ସେଥିରେ ଗୁରୁଙ୍କର ବିଶେଷ ଖର୍ଚ୍ଚର ଗୁଜୁରାଣ ଚଳିଯାଉଥିଲା ।

ତେଣୁ ଏହି ଶ୍ରାଦ୍ଧ ଉପଲକ୍ଷରେ ଗୁରୁମହାଶୟ ସବୁ ଛାତ୍ରଙ୍କୁ ସାଧ୍ୟମତେ କିଛି ଉପଢୌକନ ଆଣିବାକୁ ଅନୁରୋଧ କଲେ ଏବଂ ଛାତ୍ରମାନେ ମଧ୍ୟ ଯେ ଯାହା ପାରିଲେ ଆଣିଦେଲେ । କିଏ ଅର୍ଥ ଦେଲା, କିଏ ବାଣ୍ଟିଆଣିଦେଲା ଆଉ କିଛି ପ୍ରୟୋଜନୀୟ ଦ୍ରବ୍ୟ-ସାମଗ୍ରୀ ।

କିନ୍ତୁ ଦୁଃଖିନୀ ବିଧବାଟିର ପୁତ୍ର ଗୋପାଳ ! ହାୟ, ଉପଢୌକନର ସାମଗ୍ରୀ ଭଲା ସେ କେଉଁଠାରୁ ପାଇବ ? ସେଥିରେ ପୁଣି ଗୋପାଳର ଏହି ଅସହାୟଭାବର ସୁଯୋଗ ନେଇ ସାଙ୍ଗ ଛାତ୍ରମାନେ ତାକୁ ନାନା ପରିହାସ ବି କରିବାକୁ ଲାଗିଲେ । କେହି କେହି ମଧ୍ୟ ଗୋପାଳକୁ ଶୁଣେଇ ଶୁଣେଇ କୁହାକୁହି ହେଲେ—କିଏ କଅଣ ମୂଲ୍ୟବାନ ଉପଢୌକନ ଗୁରୁମହାଶୟଙ୍କୁ ଦେବାକୁ ଯାଉଛି ।

ସେହି ରାତିରେ ମନରେ ଗଭୀର ଦୁଃଖ ଭୋଗି ଗୋପାଳ ତା'ର ମାଆକୁ କହିଲା— 'ମା, ଗୁରୁମହାଶୟଙ୍କ ପାଇଁ ମୋତେ କିଛି ନେବାକୁ ହିଁ ହେବ ।' କିନ୍ତୁ ମାଆର ତ କିଛି ସମ୍ବଳ ନାହିଁ, କ'ଣ ଦେଇପାରିବ ସେ ?

ଅବଶେଷରେ ସେ ସ୍ଥିର କଲା ଯେ, ଏପର୍ଯ୍ୟନ୍ତ ସେ ଯାହା କରିଆସିଛି, ତାହା ହିଁ କରିବ । ଗୋପାଳରୂପୀ ଶ୍ରୀକୃଷ୍ଣଙ୍କର ଶରଣାପନ୍ନ ହେବ । ଯାହା ପ୍ରୟୋଜନ ହେବ, ତାଙ୍କଠାରୁ ମାଗିବାକୁ ହେବ । ଏହା ଭାବି ପୁଅକୁ କହିଲା—'ବାବୁ ! ବଣରେ ତୋର ଯେଉଁ ଗୋପାଳଭାଇ ଅଛି, ତାକୁ ହିଁ ସବୁ କହିବୁ, ତାକୁ ହିଁ ସବୁ ମାଗିବୁ ।'

ପରଦିନ ବଣବାଟରେ ଗୋପାଳଭାଇ ସଙ୍ଗେ ଯଥାସମୟରେ ଗୋପାଳର ଦେଖା ହେଲା । କିଛି ସମୟ ଦୁହେଁ ମିଶି ଖେଳକୌତୁକରେ ମାତିଲେ । ତା'ପରେ ଯେତେବେଳେ ବିଦାୟ ନେବାର ବେଳ ଆସିଲା, ଗୋପାଳ ତା'ର ବଡ଼ଭାଇକୁ ତା'ର ଏହି ଉପସ୍ଥିତ ସମସ୍ୟାଟି ବିଷୟରେ କହିଲା । କହିଲା, 'ଭାଇ ! ଗୁରୁମହାଶୟଙ୍କୁ ମୋତେ ନିଶ୍ଚୟ କିଛି ଉପହାର ଦେବାକୁ ହେବ । ତୁମେ ଏହାର ବ୍ୟବସ୍ଥା କରିଦିଅ ।'

ଗୋପାଳଭାଇ କହିଲା, 'ଗୋପାଳ ! ମୁଁ ତ ବନବାସୀ, ସାମାନ୍ୟ ଗୋପାଳଟିଏ । ବଣରେ ପଡ଼ିଆରେ ଗୋରୁ ଚରାଏ । ମୋର ଟଙ୍କା ପଇସା କୁଆଡ଼ୁ ଆସିବ ? ତେବେ ଏଇ କଳସୀଏ କ୍ଷୀର ଦେଉଛି, ନେଇଯା, ତୋର ଗୁରୁମହାଶୟଙ୍କୁ ଉପହାର ଦେବୁ ।'

ଗୋପାଳ ଏହା ଶୁଣି ମହାଖୁସି । ସହଜେ ତ ଗୁରୁମହାଶୟଙ୍କୁ ଦେବା ପାଇଁ କିଛି ଉପହାର ମିଳିଗଲା—ସେତକ ପୁଣି ଦେଉଛନ୍ତି ଖୋଦ୍ ଗୋପାଳଭାଇ ! ଖୁବ୍ ଦ୍ରୁତଗତିରେ ସେ ପାଠଶାଳାକୁ ଚାଲିଗଲା । ସେତେବେଳକୁ ତା'ର ସାଙ୍ଗ ଛାତ୍ରମାନେ ଧାଡ଼ି ବାନ୍ଧି ଛିଡ଼ା ହୋଇ ଗୋଟି ଗୋଟି କରି ଗୁରୁମହାଶୟଙ୍କ ହାତରେ ତାଙ୍କର ଉପହାର ସାମଗ୍ରୀମାନ ଭେଟି ଦେଉଥାନ୍ତି । ଗୋପାଳ ମଧ୍ୟ କମ୍ପିତ ବକ୍ଷରେ ସମସ୍ତଙ୍କ ପଛରେ ଯାଇ ଛିଡ଼ା ହେଲା । ଭିନ୍ନ ଭିନ୍ନ ଛାତ୍ରଙ୍କ ହାତରେ ଭିନ୍ନ ଭିନ୍ନ ଧରଣର ଭଲ ଭଲ ଉପହାରସବୁ ଥିଲା । ସୁତରାଂ ପିତୃହୀନ ଦରିଦ୍ର ବାଳକର ତୁଚ୍ଛ ଉପହାର ଆଡ଼କୁ କେହି ଚାହିଁଲେ ବି ନାହିଁ ।

ସେହି ତାଚ୍ଛଲ୍ୟରେ ଗୋପାଳ ଯେପରି ଦବିଗଲାଭଳି ବୋଧ କଲା—ଦୁଃଖରେ ତା'ର ଆଖି ଲୁହରେ ଭରିଗଲା । ଅବଶେଷରେ ହଠାତ୍ ଗୁରୁମହାଶୟଙ୍କ ଦୃଷ୍ଟି ପଡ଼ିଲା ତା' ଉପରେ । ସେତେବେଳେ ସେ ତା'ର ହାତରୁ ଦୁଗ୍ଧ-କଳସୀଟି ନେଇ ଅନ୍ୟ ଗୋଟିଏ ବଡ଼ ପାତ୍ରରେ ଢାଳିଦେଲେ । କିନ୍ତୁ ଏ କ'ଣ ? ମୁହୂର୍ତ୍ତକରେ ସେହି ଶୂନ୍ୟପାତ୍ର ପୁନଶ୍ଚ କ୍ଷୀରରେ ପୂର୍ଣ୍ଣ ହୋଇଗଲା । ଆଉଥରେ ସେତକ ନେଇ ଢାଳାଗଲା । ପୁଣି ବି କଳସୀଟି

ପୂର୍ଣ୍ଣ ହୋଇଗଲା । ଏମିତ ଯେତେଥର ଢାଳାଗଲା, ସେତେଥର କଳସୀଟି ମୁହୂର୍ତ୍ତକରେ ଯଥାପୂର୍ବ କ୍ଷୀରପୂର୍ଣ୍ଣ ହୋଇଗଲା ।

ଉପସ୍ଥିତ ସମସ୍ତେ ତ ଏକାବେଳକେ ସ୍ତମ୍ଭିତ । ଗୁରୁମହାଶୟ ସେତେବେଳେ ଦୁଇ ହାତରେ ଗୋପାଳକୁ କୋଳକୁ ଟାଣିନେଲେ । କହିଲେ –'ବାବୁ ! ଏ ପାତ୍ରଟି ତୁ କେଉଁଠାରୁ ପାଇଲୁ ? କିଏ ଦେଲା ?'

ଗୋପାଳ ସେଇଠୁ ପଣ୍ଡିତ ମହାଶୟଙ୍କ ନିକଟରେ ତା'ର ବନବାସୀ ଗୋପାଳଭାଇ କଥା ଆନୁପୂର୍ବିକ ଖୋଲି କହିଦେଲା । କେମିତି ସେ ତାକୁ ପ୍ରତିଦିନ ଡାକେ, ତା'ଠାରୁ ଉତ୍ତର ପାଏ, କେମିତି ପ୍ରତିଦିନ ସେ ଦୁଇଜଣ ଖେଳକୌତୁକ କରନ୍ତି, ଆଉ ଉପରେ ସେହି ଗୋପାଳଭାଇ ତାକୁ ଏହି କ୍ଷୀର-କଳସୀଟି ଦେଇଛି—ସବୁ କଥା କହିଗଲା ।

ସବୁକଥା ଶୁଣି ଗୁରୁ ମହାଶୟ ସେହିକ୍ଷଣି ତା' ସାଙ୍ଗରେ ବଣକୁ ଯାଇ ସେହି ଅଦ୍ଭୁତ ଗୋପାଳଭାଇକୁ ଦେଖିବା ଲାଗି ଚାହିଁଲେ ଏବଂ ଗୋପାଳ ମଧ୍ୟ ମହା ଆନନ୍ଦରେ ତାଙ୍କୁ ନେଇ ଚାଲିଲା । ବଣ ଭିତରକୁ ଯାଇ ଅନ୍ୟଦିନଭଳି ଆଜି ବି ସେ ତା'ର ଗୋପାଳ-ଭାଇକୁ ଡାକିଲା । କିନ୍ତୁ ସେଦିନ ବଣ ଭିତରୁ କୌଣସି ଉତ୍ତର ମିଳିଲା ନାହିଁ । ଗୋପାଳ ବାରମ୍ବାର ଡାକି ଲାଗିଲା, ତେବେ ବି କିଛି ଜବାବ୍ ମିଳିଲା ନାହିଁ । ସେତେବେଳେ ଅତି କରୁଣ ସ୍ୱରରେ ଗୋପାଳ କହିଲା, 'ଗୋପାଳଭାଇ ! ଆଜି ତୁମେ ମୋ ଡାକର ଉତ୍ତର ଦେଉନ କାହିଁକି ? ତୁମେ ଉତ୍ତର ନ ଦେଲେ, ଏମାନେ ଭାବିବେ ଯେ, ମୁଁ ମିଥ୍ୟାକଥା କହୁଛି ।'

ସେତେବେଳେ ଅତି ଦୂର ବନ-ପ୍ରଦେଶରୁ ଗୋଟିଏ ସ୍ୱର ଭାସି ଆସିଲା—ଏକ ଅଶରୀରୀ ଶବ୍ଦ—କିଏ ଯେପରି କହିଲା—'ଭାଇ ! ତୋର ଆଉ ତୋର ମାଆର ଭକ୍ତି-ବିଶ୍ୱାସର ଜୋର୍‌ରେ ମୁଁ ତୋ ପାଖକୁ ଯାଏ । କିନ୍ତୁ ତୋର ଗୁରୁ ମହାଶୟଙ୍କର ବର୍ତ୍ତମାନ ବି ବହୁତ ଡେରି ଅଛି । ତାଙ୍କୁ ସେହି କଥା କହିଦେ ଆଜି ।'

## ଶିଷ୍ୟର ସାଧନା

[ ୧୯୦୦ ଖ୍ରୀଷ୍ଟାବ୍ଦ ମାର୍ଚ୍ଚମାସ ୨୯ ତାରିଖରେ ଫ୍ରାନ୍‌ସିସ୍କୋ ସହରରେ ପ୍ରଦତ୍ତ ଭାଷଣ ]

ମୋର ବକ୍ତବ୍ୟ ବିଷୟ—ଶିଷ୍ୟତ୍ୱ । ଜାଣେ ନାହିଁ, ମୋର ବକ୍ତବ୍ୟ ଆପଣମାନେ କେଉଁ ଭାବରେ ଗ୍ରହଣ କରିବେ । ଆପଣମାନଙ୍କ ପକ୍ଷରେ ଏହି ଭାବ ଗ୍ରହଣ କରିବା କିଛି ମାତ୍ରାରେ କଠିନ ହେବ—ଆମ ଦେଶର ଗୁରୁ-ଶିଷ୍ୟ ଆଦର୍ଶ ଏବଂ ଏ ଦେଶର ଗୁରୁ-ଶିଷ୍ୟ ଆଦର୍ଶ ମଧ୍ୟରେ ଅନେକ ପ୍ରଭେଦ । ଭାରତର ଏକ ପ୍ରାଚୀନ ପ୍ରବାଦବାକ୍ୟ ମୋର ମନେ

ପଡ଼ୁଛି—'ଗୁରୁ ମିଳେ ଲକ୍ଷ୍ ଲକ୍ଷ୍, ଚେଲା ନା ମିଳେ ଏକ୍ ।' ଏହି ପ୍ରବାଦ-ବାକ୍ୟଟି ସତ୍ୟ ବୋଲି ମନେହୁଏ । ଆଧ୍ୟାତ୍ମିକତା-ଲାଭ ପଥରେ ଶିଷ୍ୟର ମନୋଭାବ ହିଁ ଅଧିକ ଗୁରୁତ୍ୱପୂର୍ଣ୍ଣ । ଯଥାର୍ଥ ମନୋଭାବ ରହିଲେ ଜ୍ଞାନଲାଭ ସହଜରେ ସମ୍ଭବ ହୁଏ ।

ସତ୍ୟଲାଭ କରିବାକୁ ହେଲେ ଶିଷ୍ୟର କ କ ଗୁଣ ରହିବା ପ୍ରୟୋଜନ ? ଜ୍ଞାନୀ ମହାପୁରୁଷଗଣ କହନ୍ତି—ଏକ ନିମିଷରେ ହିଁ ସତ୍ୟଲାଭ କରାଯାଏ—ଏହା ତ କେବଳ ଜାଣିବାର କଥା । ସ୍ୱପ୍ନ ଭାଙ୍ଗିଯାଏ—ଭାଙ୍ଗିବାକୁ ଭଲା କେତେ ସମୟ ଲାଗେ ? ଗୋଟିଏ ମୁହୂର୍ତ୍ତରେ ହିଁ ସ୍ୱପ୍ନ ଶେଷ ହୋଇଯାଏ । ଭ୍ରାନ୍ତି ଦୂର ହେବାକୁ କେତେ ସମୟ ଲାଗେ ? ଆଖିର ପଲକ ମାତ୍ର । ଯେତେବେଳେ ସତ୍ୟକୁ ଜାଣିପାରେ, ସେତେବେଳେ କେବଳ ମିଥ୍ୟା-ଜ୍ଞାନ ହିଁ ଉନ୍ମୋଚିତ ହୁଏ, ଆଉ କିଛି ହୁଏ ନାହିଁ । ଦଉଡ଼ିଟାକୁ ସାପ ବୋଲି ଭାବିଥିଲ—ଏବେ ଦେଖୁଛ ସାପ ନୁହେଁ, ଏଇଟା ଦଉଡ଼ିଟାଏ । ସମଗ୍ର ବ୍ୟାପାରଟି ଅଧସେକେଣ୍ଡକର କଥା । 'ତୁମେ ହିଁ ସେହି'—ତୁମେ ହିଁ ସତ୍ୟ-ସ୍ୱରୂପ—ଏହା ଜାଣିବାକୁ କେତେକ୍ଷଣ ଲାଗେ ? ଯଦି ଆମେ ବ୍ରହ୍ମ ଏବଂ ସର୍ବଦା ହିଁ ସେହି ବ୍ରହ୍ମ-ସ୍ୱରୂପ, ତେବେ ଏହା ନ ଜାଣିପାରିବା ହିଁ ସର୍ବାପେକ୍ଷା ଆଶ୍ଚର୍ଯ୍ୟ ! ଏହା ଜାଣିବାଟା ହିଁ ସ୍ୱାଭାବିକ । ଆମେ ବରାବର କ'ଣ ଥିଲୁ, ବର୍ତ୍ତମାନ ବା ଆମର ସ୍ୱରୂପ କ'ଣ, ତାହା ଜାଣିବାକୁ ନିଶ୍ଚୟ ଯୁଗଯୁଗାନ୍ତ ଲାଗିବ ନାହିଁ ।

ତେବେ ଏହି ସ୍ୱତଃସିଦ୍ଧ ସତ୍ୟଟି ଉପଲବ୍ଧି କରିବା କଠିନ ବୋଲି ମନେହୁଏ । ଏହାର ଅତି କ୍ଷୀଣ ଆଭାସ ଲାଭ କରିବାକୁ ମଧ୍ୟ ଯୁଗଯୁଗାନ୍ତ ଲାଗିଯାଏ । ଈଶ୍ୱର ହିଁ ଜୀବନ, ଈଶ୍ୱର ହିଁ ସତ୍ୟ । ଏ ବିଷୟରେ ଆମେ ଗ୍ରନ୍ଥ ଲେଖିଥାଉ । ଆମର ଅନ୍ତରେ ଅନ୍ତରେ ଆମେ ଏହା ହିଁ ଅନୁଭବ କରୁ ଯେ, ଈଶ୍ୱରଙ୍କ ବ୍ୟତୀତ ଆଉ ସବୁ କିଛି ହିଁ ମିଥ୍ୟା । ଆଜି ଏକଥା ଅନୁଭବ କରେ, କାଲି କିନ୍ତୁ ଏଭାବ ଆଉ ରହେ ନାହିଁ; ତେବେ ବି ସାରା ଜୀବନ ଆମେ ଅଧିକାଂଶ ହିଁ ପୂର୍ବେ ଯେପରି ଥିଲୁ, ସେହି ଏକା ଭାବରେ ହିଁ ରହିଯାଉ । ଆମେ ଅସତ୍ୟକୁ ଯାବୋଡ଼ି କରି ଧରୁ ଏବଂ ସତ୍ୟପ୍ରତି ବିମୁଖ ହୋଇ ରହୁ । ଆମେ ସତ୍ୟଲାଭ କରିବାକୁ ଚାହୁଁ ନାହିଁ । ଆମେ ଚାହୁଁ ନାହିଁ ଯେ, କେହି ଆମର ସ୍ୱପ୍ନ ଭାଙ୍ଗି ଦେଉ । ତଥାପି ଦେଖୁଛ ତ, କେହି ଗୁରୁର ଅଭାବ ଅନୁଭବ କରେ ନାହିଁ ? କିଏ ଭଲା ଶିଖିବାକୁ ଚାହେଁ ? କିନ୍ତୁ କେହି ଯଦି ମାୟାର ବନ୍ଧନ ଛିନ୍ନ କରି ସତ୍ୟ ଉପଲବ୍ଧି କରିବାକୁ ଚାହେଁ, କେହି ଯଦି ଗୁରୁଙ୍କ ନିକଟରୁ ସତ୍ୟଲାଭ କରିବାକୁ ଚାହେଁ, ତାକୁ ଆଗେ ଖାଣ୍ଟି ଶିଷ୍ୟ ହେବାକୁ ହିଁ ପଡ଼ିବ ।

କିନ୍ତୁ ଶିଷ୍ୟ ହେବା ଆଦୌ ସହଜ ନୁହେଁ । ସେଥିଲାଗି ଅନେକ ପ୍ରସ୍ତୁତି ଦରକାର । ଅନେକ ନିୟମ ପାଳନ କରିବାକୁ ହୁଏ । ବୈଦାନ୍ତିକମାନେ ଚାରୋଟି ପ୍ରଧାନ ସାଧନର କଥା କହିଛନ୍ତି । ପ୍ରଥମ ସାଧନ ହେଲା—ଯେଉଁ ଶିଷ୍ୟ ସତ୍ୟ ଜାଣିବାକୁ ଚାହେଁ, ତାକୁ ଇହଜୀବନରେ ଓ ପର-ଜୀବନରେ ସମସ୍ତ ଲାଭର ଆକାଙ୍କ୍ଷା ତ୍ୟାଗ କରିବାକୁ ପଡ଼ିବ ।

ଆମେମାନେ ଯାହା ଦେଖୁଛୁ, ତାହା ସତ୍ୟ ନୁହେଁ । ଯେତେକ୍ଷଣ ପର୍ଯ୍ୟନ୍ତ ଆମ ମନ ଭିତରେ କୌଣସି ପ୍ରକାର ବାସନା ରହିଥାଏ, ସେତେବେଳ ଯାଏ ଯାହା ଦେଖୁ, ତାହା କେବେ ବି ସତ୍ୟ ନୁହେଁ । ଈଶ୍ୱର ହିଁ ସତ୍ୟ, ଜଗତ୍ ନୁହେଁ । ଯେତେବେଳ ପର୍ଯ୍ୟନ୍ତ ଆମ

ମନରେ ସଂସାର ପାଇଁ ବିନ୍ଦୁମାତ୍ର ଆସକ୍ତି ଥାଏ, ସେତେବେଳ ପର୍ଯ୍ୟନ୍ତ ସତ୍ୟଲାଭ ଅସମ୍ଭବ ହୁଏ । 'ମୋ ପୃଷ୍ଠଆଡ଼େ ଜଗତ୍ ଧ୍ୱଂସ ପାଇଯାଉ, ମୁଁ ତଥାପି ବି ଭ୍ରୂକ୍ଷେପ କରେ ନାହିଁ' —ପରଲୋକ ସମ୍ବନ୍ଧରେ ବି ଠିକ୍ ଏହି ପ୍ରକାର ମନୋଭାବ ପୋଷଣ କରିବାକୁ ହେବ —ମୁଁ ସ୍ୱର୍ଗକୁ ମଧ୍ୟ ଯିବାକୁ ଚାହେଁ ନାହିଁ ସ୍ୱର୍ଗ କ'ଣ ? ଏହି ଜଗତ୍ର ହିଁ ଅନୁବୃତ୍ତି ମାତ୍ର । ଯଦି ସ୍ୱର୍ଗ ନ ଥାନ୍ତା, ଯଦି ଏହି ଅସାର ପାର୍ଥିବ ଜୀବନର କୌଣସି ଅନୁବୃତ୍ତି ନ ଥାନ୍ତା, ଆମେ ଆହୁରି ଭଲ ହୋଇଥାନ୍ତୁ । ଯେଉଁ କ୍ଷଣିକର ମିଥ୍ୟା ସ୍ୱପ୍ନରେ ଆମେ ମଗ୍ନ, ସେହି ସ୍ୱପ୍ନ ଆହୁରି ଶୀଘ୍ର ଭାଙ୍ଗିଯାଆନ୍ତା । ସ୍ୱର୍ଗକୁ ଯାଇ ଆମେ କେବଳ ଆମର ଦୁଃଖଜନକ ମୋହକୁ ଦୀର୍ଘତର କରି ପକାଇଥାଉଁ ।

ସ୍ୱର୍ଗକୁ ଗଲେ ଲାଭ କ'ଣ ହେବ ? ଦେବତା ସାଜି ଅମୃତ ପାନ କରିବ, ଶେଷକୁ ବାତବ୍ୟାଧିଗ୍ରସ୍ତ ହୋଇ ପଡ଼ିବ । ପୃଥିବୀ ଅପେକ୍ଷା ସେଠାରେ ଦୁଃଖ ଯେମିତି କମ୍, ସତ୍ୟ ମଧ୍ୟ ସେମିତି କମ୍ । ଅତିଶୟ ଦରିଦ୍ର ଅପେକ୍ଷା ଧନୀ ବ୍ୟକ୍ତି ଅନେକ କମ୍ ସତ୍ୟ ବୁଝିପାରେ । ଧନୀଲୋକର ସ୍ୱର୍ଗରାଜ୍ୟରେ ପ୍ରବେଶ କରିବା ଅପେକ୍ଷା, ଗୋଟିଏ ଛୁଞ୍ଚିଛିଦ୍ର ଭିତର ଦେଇ ଓଟଟିଏ ଯାତାୟାତ କରିବା ବରଂ ସହଜ । ନିଜର ଧନ-ଐଶ୍ୱର୍ଯ୍ୟ, କ୍ଷମତା, ସୁଖସୁବିଧା ଓ ବିଳାସବ୍ୟସନ ବ୍ୟତୀତ ଧନୀ ବ୍ୟକ୍ତିର ଅନ୍ୟ କିଛି ଚିନ୍ତା କରିବାର ସମୟ ନାହିଁ । ଧନୀ ବ୍ୟକ୍ତି-ମାନଙ୍କ ମଧ୍ୟରେ ଅତି ଅଳ୍ପ ହିଁ ପ୍ରକୃତ ଧର୍ମପରାୟଣ ହୋଇଥାଆନ୍ତି । କାହିଁକି ? କାରଣ, ସେମାନେ ମନେକରନ୍ତି ଯେ, ଧାର୍ମିକ ହେଲେ ସେମାନଙ୍କ ଜୀବନରେ ଆଉ କୌଣସି ଆମୋଦପ୍ରମୋଦ ରହିବ ନାହିଁ । ଠିକ୍ ସେହିପରି ସ୍ୱର୍ଗରେ ଧର୍ମପରାୟଣ ହେବାର ଆଶା ବହୁତ କମ୍ । ଆରାମ ଆଉ ଭୋଗ ସେଠାରେ ଅତ୍ୟନ୍ତ ବେଶୀ—ସ୍ୱର୍ଗର ଅଧିବାସୀମାନେ ସେମାନଙ୍କର ଆମୋଦପ୍ରମୋଦ ତ୍ୟାଗ କରିବା ଲାଗି ଅନିଚ୍ଛୁକ ।

ଅନେକେ କହନ୍ତି—ସ୍ୱର୍ଗରେ ଆଉ ଅଶ୍ରୁପାତ କରିବାକୁ ହୁଏ ନାହିଁ । ଯେ କେବେ ବି କାନ୍ଦେ ନାହିଁ, ତାକୁ ମୋର ବିଶ୍ୱାସ ନାହିଁ । ଦେହର ଯେଉଁଠାରେ ହୃଦୟ ରହିବା ଉଚିତ, ତା'ର ସେହିଜାଗାରେ ଖଣ୍ଡିଏ ବୃହତ୍ ପ୍ରସ୍ତରଖଣ୍ଡ ରହିଥାଏ । ଏକଥା ତ ସ୍ପଷ୍ଟ ବୁଝାଯାଏ ଯେ, ସ୍ୱର୍ଗବାସୀଙ୍କର ବେଶୀ ସହାନୁଭୂତି ନାହିଁ; ସ୍ୱର୍ଗବାସୀଙ୍କର ସଂଖ୍ୟା ତ ଅନେକ, କିନ୍ତୁ ଆମେ ଏହି ଭୟଙ୍କର ପୃଥିବୀରେ ଦୁଃଖଯନ୍ତ୍ରଣା ଭୋଗ କରୁଛୁ । ଇଚ୍ଛା କଲେ ତ ସେମାନେ ଆମକୁ ସେଠାକୁ ଟାଣି ନେଇଯାଇପାରନ୍ତେ । କିନ୍ତୁ କାହିଁ ? ସେମାନେ ତ ଏପରି କିଛି (ମହତ୍ତ୍ୱ କାର୍ଯ୍ୟ) କରିବାର କେବେ ଦେଖାଯାଏ ନାହିଁ । ସେମାନେ କାନ୍ଦନ୍ତି ନାହିଁ । ସ୍ୱର୍ଗରେ କୌଣସି ଦୁଃଖକଷ୍ଟ ନାହିଁ, ସୁତରାଂ ସେମାନେ କାହାର ଦୁଃଖ ଯନ୍ତ୍ରଣାକୁ ଗ୍ରାହ୍ୟ କରନ୍ତି ନାହିଁ । ସେମାନେ ଅମୃତ ପାନ କରନ୍ତି, ତାଙ୍କ ଆଗରେ ସବୁବେଳେ ନୃତ୍ୟଗୀତ ଚାଲିଥାଏ । ସୁନ୍ଦରୀ ପତ୍ନୀସହ ସେମାନଙ୍କ ଦିନ ନାନାବିଧ ସୁଖରେ କଟିଥାଏ ।

ଏସବୁର ଊର୍ଦ୍ଧ୍ୱକୁ ଉଠି ଶିଷ୍ୟକୁ କହିବାକୁ ହେବ—'ଇହ ଜୀବନରେ ମୋର କୌଣସି କିଛି କାମ୍ୟ ନାହିଁ, ସ୍ୱର୍ଗ ବୋଲି ଯଦି କିଛି ଥାଏ, ସେଠାକୁ ମଧ୍ୟ ମୁଁ ଯିବାକୁ ଚାହେଁ ନାହିଁ । ଶରୀର ସହିତ ତାଦାତ୍ମ୍ୟମୂଳକ କୌଣସି ପ୍ରକାର ଇନ୍ଦ୍ରିୟ ଜୀବନ ମୁଁ ଚାହେଁ ନାହିଁ;

ବର୍ତ୍ତମାନ ମୋର ଧାରଣା ଏହି ବିପୁଳ ମାଂସସ୍ତୂପ ଦେହଟା ହିଁ ମୁଁ । ମୁଁ କିନ୍ତୁ ବିଶ୍ୱାସ କରିବାକୁ ଚାହେଁ ନାହିଁ ଯେ, ମୁଁ ଯଥାର୍ଥରେ ଏହିପରି ।'

ପୃଥିବୀ ଓ ସ୍ୱର୍ଗ ଇନ୍ଦ୍ରିୟଦ୍ୱାରା ସୀମାବଦ୍ଧ । ଇନ୍ଦ୍ରିୟ ନ ଥିଲେ, ଏ ପୃଥିବୀକୁ ତୁମେ ଗ୍ରାହ୍ୟ କରନ୍ତ ନାହିଁ । ସ୍ୱର୍ଗ ମଧ୍ୟ ଗୋଟାଏ ଜଗତ୍ । ପୃଥିବୀରେ, ସ୍ୱର୍ଗରେ, ଅନ୍ତରୀକ୍ଷରେ ଯାହା କିଛି ରହିଛି, ସବୁମିଶି ଗୋଟିଏ ନାମ—ପୃଥିବୀ ବା ସଂସାର ।

ସୁତରାଂ ଶିଷ୍ୟ ଅତୀତ ଓ ବର୍ତ୍ତମାନକୁ ଜାଣି, ଭବିଷ୍ୟତର ବିଷୟକୁ ଚିନ୍ତା କରି, ଉନ୍ନତି କାହାକୁ କୁହାଯାଏ, ସୁଖ କାହାକୁ କୁହାଯାଏ, ଏସବୁକୁ ଜାଣି ବୁଝି ପରିତ୍ୟାଗ କରିବ ଏବଂ ଏକମାତ୍ର ସତ୍ୟର ସନ୍ଧାନ କରିବ । ଏହା ହିଁ ପ୍ରଥମ ସର୍ତ୍ତ ବା ସାଧନା ।

ଦ୍ୱିତୀୟ ସାଧନଟି ହେଲା ଏହି ଯେ, ଶିଷ୍ୟକୁ ନିଜର ଅନ୍ତରିନ୍ଦ୍ରିୟ ଓ ବହିରିନ୍ଦ୍ରିୟ-ସମୂହକୁ ସଂଯତ କରିବା ଲାଗି ସମର୍ଥ ହେବାକୁ ହେବ ଏବଂ ଅନ୍ୟାନ୍ୟ ଅଧ୍ୟାତ୍ମ-ସମ୍ପଦରେ ପ୍ରତିଷ୍ଠିତ ହେବାକୁ ପଡ଼ିବ ।

ଶରୀରର ବିଭିନ୍ନ ଅଂଶରେ ଅବସ୍ଥିତ ଦୃଶ୍ୟମାନ ଯନ୍ତ୍ରଗୁଡ଼ିକ ବହିରିନ୍ଦ୍ରିୟ; ଅନ୍ତରିନ୍ଦ୍ରିୟ-ଗୁଡ଼ିକ ଆମର ହାତପାଆନ୍ତାର ବାହାରେ । ବାହାରେ ଆମର ଚକ୍ଷୁ, କର୍ଣ୍ଣ, ନାସିକା ପ୍ରଭୃତି ରହିଛି; ଭିତରେ ବି ସେହିପରି ଅନୁରୂପ ଅନ୍ତରିନ୍ଦ୍ରିୟମାନେ ରହିଛନ୍ତି । ଆମେ ସର୍ବଦା ଉଭୟପ୍ରକାର ଇନ୍ଦ୍ରିୟଗୁଡ଼ିକର ଆଜ୍ଞାଧୀନ ହୋଇ ରହିଛୁ । ଇନ୍ଦ୍ରିୟସମୂହଙ୍କ ସହିତ ଇନ୍ଦ୍ରିୟ-ଭୋଗ ବିଷୟଗୁଡ଼ିକର ଯୋଗାଯୋଗ ରହିଛି । ଯଦି ଇନ୍ଦ୍ରିୟଭୋଗ୍ୟ ବିଷୟଗୁଡ଼ିକ ପାଖକୁ ଆସନ୍ତି, ତା'ହେଲେ ଇନ୍ଦ୍ରିୟମାନେ ସେଗୁଡ଼ିକୁ ଗ୍ରହଣ କରିବାକୁ ଆମକୁ ବାଧ୍ୟ କରନ୍ତି । ଆମର ନିଜସ୍ୱ ପସନ୍ଦ ବା ସ୍ୱାଧୀନତା ନାହିଁ । ପ୍ରକାଣ୍ଡ ନାସିକାଟିଏ ରହିଛି ଆମର । ସାମାନ୍ୟ ସୁଗନ୍ଧଟିଏ କେଉଁଠୁ ଭାସି ଆସିଲେ ଆମକୁ ତାହାର ଘ୍ରାଣ ଗ୍ରହଣ କରିବାକୁ ହିଁ ହେବ; ଯଦି କେଉଁଠୁ ଦୁର୍ଗନ୍ଧ ଭାସି ଆସିବ, ମୁଁ କହିବ, 'ଏହି ଘ୍ରାଣ ଗ୍ରହଣ କର ନାହିଁ ।' ସେତେବେଳେ ପ୍ରକୃତି କହିବ, 'ଗ୍ରହଣ କର ।' ମୁଁ ଏହି ଘ୍ରାଣ ଗ୍ରହଣ କରିବି । ଥରେ ଭାବି ଦେଖ ତ ! ଆମେ କ'ଣ ହୋଇଛୁ । ଆମେ ନିଜକୁ ହିଁ ବାନ୍ଧି ପକାଇଛୁ । ମୋର ଆଖି ଅଛି—ଭଲ ମନ୍ଦ ଯାହା କିଛି ମୋ ଆଖି ଆଗକୁ ଆସୁପଛେ, ମୋତେ ସେସବୁକୁ ଦେଖିବାକୁ ହିଁ ହେବ । ଶ୍ରବଣ-ଯନ୍ତ୍ରଟିର କଥା ମଧ୍ୟ ଏହିଭଳି । ଯଦି କେହି ବିରକ୍ତିର ସହିତ ମୋ ସଙ୍ଗରେ କଥା କହେ, ମୋତେ ଶୁଣିବାକୁ ହିଁ ହେବ । ମୋର ଶ୍ରବଣେନ୍ଦ୍ରିୟ ମୋତେ ଏହା ଶୁଣିବାକୁ ବାଧ୍ୟ କରେ ଏବଂ ଶୁଣିବା ମାତ୍ରେ ହିଁ ମୋତେ ମନେ ମନେ କେତେ କଷ୍ଟ ଭଲ ଭୋଗ କରିବାକୁ ନ ପଡ଼େ ! ନିନ୍ଦା ବା ପ୍ରଶଂସା ଯାହା ହେଉ ମଣିଷକୁ ଶୁଣିବାକୁ ହିଁ ହେବ । ଏପରି ବଧିର ଲୋକ ମୁଁ ଅନେକ ଦେଖିଛି, ଯେଉଁମାନେ କି ସାଧାରଣତଃ ଶୁଣି ପାରନ୍ତି ନାହିଁ, କିନ୍ତୁ ସେମାନଙ୍କ ସମ୍ବନ୍ଧରେ ଯଦି କେହି କିଛି କଥା କହେ, ତେବେ ସେମାନେ ସବୁ ଶୁଣିପାରନ୍ତି ।

ଏହି ଅନ୍ତର ଓ ବାହ୍ୟ ଇନ୍ଦ୍ରିୟଗୁଡ଼ିକୁ ସାଧକ ବା ଶିଷ୍ୟ ନିଜର ବଶୀଭୂତ କରି ରଖିବା ଉଚିତ । ଯେଉଁ ଅବସ୍ଥାରେ ମନ ଅନାୟାସରେ ଇନ୍ଦ୍ରିୟ ବିରୋଧରେ, ସ୍ୱଭାବର ଆଦେଶ ବିରୋଧରେ ଠିଆ ହୋଇପାରେ, କଠୋର ଅଭ୍ୟାସଦ୍ୱାରା ସାଧକ ଶିଷ୍ୟ ସେହି

ଅବସ୍ଥାକୁ ଉନ୍ନୀତ ହୋଇପାରେ । ସେ ନିଜର ମନକୁ ଆଦେଶ କରିବାକୁ ସମର୍ଥ ହେବ, 'ତୁମେ ମୋର, ମୁଁ ତୁମକୁ ଆଦେଶ କରୁଛି, କିଛି ଦେଖ ନାହିଁ କିମ୍ବା କିଛି ଶୁଣ ନାହିଁ ।' ତତ୍‌କ୍ଷଣାତ୍ ମନ ଆଉ କିଛି ଦେଖିବ ନାହିଁ କିମ୍ବା ଶୁଣିବ ନାହିଁ । କୌଣସି ରୂପ ବା ଶବ୍ଦ ମନ ଉପରେ ପ୍ରତିକ୍ରିୟା ସୃଷ୍ଟି କରିପାରିବ ନାହିଁ । ଯେଉଁ ଅବସ୍ଥାରେ ଇନ୍ଦ୍ରିୟମାନଙ୍କ ଆଧିପତ୍ୟରୁ ମନ ମୁକ୍ତ ହୋଇଛି ଓ ଇନ୍ଦ୍ରିୟଗୁଡ଼ିକରୁ ମନ ବିଚ୍ଛିନ୍ନ ହୋଇଛି, ସେହି ଅବସ୍ଥା ହିଁ ସାଧକକୁ ଆଣିବାକୁ ହେବ । ଶରୀର ଓ ଇନ୍ଦ୍ରିୟଗୁଡ଼ିକ ସହିତ ଏହା ଆଉ ସଂଯୁକ୍ତ ରହି ନ ଥାଏ । ବାହାରର ବସ୍ତୁଗୁଡ଼ିକ ଆଉ ବର୍ତ୍ତମାନ ମନକୁ ଆଦେଶ କରିପାରିବେ ନାହିଁ । ମନ ଏଗୁଡ଼ିକ ସହିତ ଯୁକ୍ତ ହେବାକୁ ଅସ୍ୱୀକାର କରେ । ସମ୍ମୁଖରେ ସୁନ୍ଦର ଗନ୍ଧ ରହିଛି; ଶିଷ୍ୟ ତା'ର ମନକୁ କହିଲା, 'ଏହି ଗନ୍ଧକୁ ଗ୍ରହଣ କର ନାହିଁ ।' ମନ ଆଉ ସେ ଗନ୍ଧ ଆଘ୍ରାଣ କରି ପାରିଲା ନାହିଁ । ଯେତେବେଳେ ଏହି ସ୍ତରରେ ପହଞ୍ଚିପାରିବ, ସେତେବେଳେ ଜାଣିବ ଯେ, ତୁମେ ଠିକ୍ ଶିଷ୍ୟ ହେବାକୁ ଆରମ୍ଭ କରିଛ । ଏଥିପାଇଁ ଯେତେବେଳେ କେହି କହେ, 'ମୁଁ ସତ୍ୟ ଜାଣିଅଛି', ସେତେବେଳେ ମୁଁ କହିବି, 'ଯଦି ସତ୍ୟ ଜାଣିଥାଅ, ତେବେ ନିଶ୍ଚୟ ତୁମର ଆତ୍ମସଂଯମ ଘଟିଅଛି ।' ଇନ୍ଦ୍ରିୟଗୁଡ଼ିକୁ ବଶୀଭୂତ କରି ସଂଯମଶକ୍ତିର ପରିଚୟ ଦିଅ ।

ତା'ପରେ ମନକୁ ଶାନ୍ତ କରିବାକୁ ହେବ । ମନ ଚଞ୍ଚଳ ହୋଇ ଏଣେ ତେଣେ ଧାଏଁ । ଯେଉଁ ମୁହୂର୍ତ୍ତରେ ମୁଁ ଧ୍ୟାନ କରିବାକୁ ବସେ, ସେତେବେଳେ ଜଗତର ଘୃଣ୍ୟତମ ବିଷୟଗୁଡ଼ିକ ମନଭିତରେ ଆସି ପହଞ୍ଚିଯାନ୍ତି । ସମଗ୍ର ବ୍ୟାପାରଟି ଅତ୍ୟନ୍ତ ବିରକ୍ତିକର । ମୁଁ ଯେପରିକି ମନର ଦାସ । ମନ ଯେତେ କ୍ଷଣ ଚଞ୍ଚଳ ଏବଂ ଆୟତ୍ତର ବାହାରେ ରହିଛି, ସେତେବେଳ ପର୍ଯ୍ୟନ୍ତ କୌଣସି ଆଧ୍ୟାତ୍ମିକ ଜ୍ଞାନ ସମ୍ଭବ ନୁହେଁ । ଶିଷ୍ୟକୁ ସେଥିପାଇଁ ପ୍ରଥମରୁ ମନଃସଂଯମ ଶିକ୍ଷା କରିବାକୁ ହେବ । ଅବଶ୍ୟ ମନର କାର୍ଯ୍ୟ ହେଉଛି ଚିନ୍ତା କରିବା; କିନ୍ତୁ ତୁମେ ଯଦି ଚାହଁ, ମନ ଚିନ୍ତା ନ କରୁ, ତା'ହେଲେ ମନ ଯେପରି ଚିନ୍ତା ନ କରେ । ଯେତେବେଳେ ତୁମେ ଆଦେଶ କରିବ, ସେତେବେଳେ ଯେମିତି ମନ ଚିନ୍ତା ବନ୍ଦ କରେ । ଉପଯୁକ୍ତ ଶିଷ୍ୟ ହେବାକୁ ହେଲେ ମନର ଏଭଳି ଅବସ୍ଥା ନିତାନ୍ତ ଆବଶ୍ୟକ ।

ଆଉ ଗୋଟିଏ କଥା ହେଲା, ଶିଷ୍ୟକୁ ପ୍ରଚଣ୍ଡ ସହିଷ୍ଣୁତାଶକ୍ତି ମଧ୍ୟ ଆୟତ୍ତ କରିବାକୁ ହେବ । ଯେତେବେଳେ ତୁମ ଚାରିପଟେ ସବୁ ଭଲ ଚାଲିଛି, ସେତେବେଳେ ଜୀବନ ବେଶ୍ ଆରାମପ୍ରଦ ମନେହୁଏ, ମନ ମଧ୍ୟ ଭଲ ଥାଏ; କିନ୍ତୁ ଅପ୍ରୀତିକର କିଛି ଘଟିଲେ ମନର ସ୍ଥୈର୍ଯ୍ୟ ନଷ୍ଟ ହୋଇଯାଏ । ଏହା ଆଦୌ ଭଲ ନୁହେଁ । ସକଳ ଦୁଃଖକଷ୍ଟ, ବିନା ଅଭିଯୋଗରେ, ସାମାନ୍ୟ ଦୁଃଖୀ ନ ହୋଇ, ସାମାନ୍ୟ ପ୍ରତିରୋଧ, ପ୍ରତିଶୋଧ ବା ପ୍ରତିକାରର ଚେଷ୍ଟା ନ କରି ସହ୍ୟ କରିବାକୁ ହେବ । ଏହା ହିଁ ସହିଷ୍ଣୁତା । ଏହା ତୁମକୁ ଅର୍ଜ୍ଜନ କରିବାକୁ ହେବ ।

ପୃଥିବୀରେ ଭଲ ଓ ମନ୍ଦ ଚିରକାଳ ରହି ଆସିଛି । ମନ୍ଦର ଅସ୍ତିତ୍ୱ ଅନେକେ ଭୁଲି ଯାଆନ୍ତି, ଅନ୍ତତଃ ଭୁଲିବାର ଚେଷ୍ଟା କରନ୍ତି । କିନ୍ତୁ ଯେତେବେଳେ ମନ୍ଦ ଆସି ପହଞ୍ଚିଯାଏ, ସେତେବେଳେ ସେମାନେ ଏହାଦ୍ୱାରା ସହଜରେ ଅଭିଭୂତ ହୋଇପଡ଼ନ୍ତି ଏବଂ ବିରକ୍ତ ବୋଧ

କରନ୍ତି । ଆଉ ମଧ୍ୟ କେହି କେହି କୌଣସି ପ୍ରକାର ମନ୍ଦର ଅସ୍ତିତ୍ୱକୁ ସ୍ୱୀକାର କରନ୍ତି ନାହିଁ । ସେମାନେ ସବୁକିଛିକୁ ଭଲ ବୋଲି କୁହନ୍ତି । ଏହା ମଧ୍ୟ ଗୋଟିଏ ଦୁର୍ବଳତା । ଏହା ମଧ୍ୟ ମନ୍ଦ ଜିନିଷ ପ୍ରତି ଭୟରୁ ସଞ୍ଜାତ । ଯଦି କୌଣସି ଦୁର୍ଗନ୍ଧ ଦ୍ରବ୍ୟ ଥାଏ, ତା' ଉପରେ ଗୋଲାପ ଜଳ ଛିଞ୍ଚି ତାକୁ ସୁଗନ୍ଧ କରିବ କାହିଁକି ? ହଁ, ଜଗତରେ ଭଲମନ୍ଦ ଦୁଇଟା ହିଁ ରହିଛି । ଭଗବାନ ଏହି ଜଗତରେ ମନ୍ଦ ଜିନିଷ ବି ରଖିଛନ୍ତି । କିନ୍ତୁ ତୁମକୁ ତା'ଉପରେ ଚୂନକାମ କରିବାକୁ ହେବ ନାହିଁ । କାହିଁକି ମନ୍ଦ ରହିଛି, ସେ ସମ୍ବନ୍ଧରେ ତୁମର ମୁଣ୍ଡ ଘୁରାଇବାର ପ୍ରୟୋଜନ ନାହିଁ । ଭଗବାନଙ୍କଠାରେ ବିଶ୍ୱାସ ରଖ ଏବଂ ଚୁପ୍ ରହ ।

ମୋର ଗୁରୁଦେବ ଶ୍ରୀରାମକୃଷ୍ଣ ଯେତେବେଳେ ଦାରୁଣ ବ୍ୟାଧିରେ ଅସୁସ୍ଥ ହୋଇ ପଡ଼ିଥିଲେ, ସେତେବେଳେ ଜଣେ ବ୍ରାହ୍ମଣ ରୋଗ-ମୁକ୍ତି ଲାଗି ତାଙ୍କୁ ତାଙ୍କର ପ୍ରବଳ ମନଃଶକ୍ତି ପ୍ରୟୋଗ କରିବାକୁ କହିଥିଲେ । ତାଙ୍କର ମତ ଥିଲା—ଆଚାର୍ଯ୍ୟଦେବ ଯଦି ଦେହର ରୋଗାକ୍ରାନ୍ତ ଅଂଶଟି ଉପରେ ତାଙ୍କର ମନକୁ ଏକାଗ୍ର କରନ୍ତି, ତେବେ ରୋଗ ଭଲ ହୋଇଯିବ । ଶ୍ରୀରାମକୃଷ୍ଣ କହିଲେ, 'କି କଥା କହୁଛ ହେ ! ଯେଉଁ ମନ ଈଶ୍ୱରଙ୍କୁ ଦେଇଛି, ସେହି ମନକୁ ପୁଣି ଏହି ତୁଚ୍ଛ ଶରୀର ଉପରକୁ ଖସାଇ ଆଣିବି କିପରି ?' ଦେହ ଓ ରୋଗ କଥା ସେ ଭାବିବାକୁ ଚାହିଁଲେ ନାହିଁ । ତାଙ୍କର ମନ ସର୍ବଦା ଈଶ୍ୱରଙ୍କୁ ନେଇ ତନ୍ମୟ ଥିଲା । ସେ ମନ ସଂପୂର୍ଣ୍ଣ ରୂପେ ଈଶ୍ୱରଙ୍କଠାରେ ଅର୍ପିତ ହୋଇଥିଲା । ସେ ଏହି ମନକୁ ଅନ୍ୟ କୌଣସି ଉଦ୍ଦେଶ୍ୟରେ ବ୍ୟବହାର କରିବାକୁ ରାଜି ନ ଥିଲେ ।

ସ୍ୱାସ୍ଥ୍ୟ, ସଂପଦ, ଦୀର୍ଘଜୀବନ ପ୍ରଭୃତି ତଥାକଥିତ ଭଲ ଭଲ ଜିନିଷ ପାଇଁ ଏହି ଆକାଙ୍‌କ୍ଷା, ମାୟା ବା ଭ୍ରମ ବ୍ୟତୀତ ଆଉ କିଛି ନୁହେଁ । ଏଗୁଡ଼ିକ ପାଇବା ପାଇଁ ମନୋନିବେଶ କଲେ ଭ୍ରମକୁ ହିଁ ଦୃଢ଼ କରାଯାଏ । ଇହ ଜୀବନରେ ଆମର ଏହିସବୁ ସ୍ୱପ୍ନ ବା ମାୟା ରହିଛି ଏବଂ ପରଲୋକରେ ସ୍ୱର୍ଗକୁ ଯାଇ ଆମେ ଏଗୁଡ଼ିକୁ ବେଶୀ ପରିମାଣରେ ପାଇବାକୁ ଚାହୁଁ । ମାୟା ହିଁ ବଢ଼ିଚାଲେ । ମନ୍ଦର ପ୍ରତିରୋଧ କରନାହିଁ । ତାହାର ସମ୍ମୁଖୀନ ହୁଅ । ତୁମେ ମନ୍ଦ ଓ ଅଶୁଭ ଅପେକ୍ଷା ଅନେକ ବଡ଼ ।

ଜଗତରେ ଏହି ଦୁଃଖ ଅଛି । ଜଣକୁ ତ ତାହା ଭୋଗ କରିବାକୁ ହେବ ହିଁ ହେବ । ତାହାର ହେଲେ ଅନିଷ୍ଟ ନ କରି ତୁମେ କୌଣସି କାର୍ଯ୍ୟ କରିପାରିବ ନାହିଁ । ଆଉ ଯେତେବେଳେ ତୁମେ ପାର୍ଥିବ ଶୁଭ କାମନା କର, ସେତେବେଳେ ତୁମେ କେବଳ ଆଉ ଗୋଟିଏ ଅଶୁଭ ହିଁ ଏଡ଼ାଇଯାଅ । ସେହି ଅଶୁଭ ଆଉ କାହାକୁ ନିଶ୍ଚୟ ଭୋଗ କରିବାକୁ ହେବ । ସମସ୍ତେ ମନ୍ଦଟିକୁ ଅନ୍ୟ ମୁଣ୍ଡରେ ଚପାଇ ଦେବାକୁ ଚାହାଁନ୍ତି । ସାଧକ କିନ୍ତୁ କହିବ, 'ଜଗତର ସମସ୍ତ ଦୁଃଖ ମୋ ପାଖକୁ ଆସୁ । ମୁଁ ଏଗୁଡ଼ିକୁ ସହ୍ୟ କରିବି । ଅନ୍ୟକୁ ମୁକ୍ତ ହେବାକୁ ଦିଅ ।'

କ୍ରୁଶବିଦ୍ଧ ସେହି ମହାମାନବଙ୍କୁ ସ୍ମରଣ କର । ଜୟଲାଭ କରିବା ପାଇଁ ସେ ଅସଂଖ୍ୟ ଦେବଦୂତ ଆଣିପାରିଥାନ୍ତେ; କିନ୍ତୁ ସେ ପ୍ରତିରୋଧ ମଧ୍ୟ କଲେ ନାହିଁ । ଯେଉଁମାନେ ତାଙ୍କୁ କ୍ରୁଶରେ ବିଦ୍ଧ କଲେ, ସେମାନଙ୍କ ପ୍ରତି ସେ କରୁଣା କଲେ । ସେ ସକଳ ଦୁଃଖକଷ୍ଟ ଓ

ଅପମାନ ସହ୍ୟ କଲେ । ସମସ୍ତଙ୍କର ଭାର ସେ ନିଜ ସ୍କନ୍ଧରେ ଗ୍ରହଣ କଲେ । 'ତୁମେ ଯେଉଁ-ମାନେ ଅତିଶୟ ଦୁଃଖଭାରାକ୍ରାନ୍ତ, ସେମାନେ ମୋ ନିକଟକୁ ଆସ । ମୁଁ ତୁମମାନଙ୍କର ଦୁଃଖ ଦୂର କରିବି ଏବଂ ଶାନ୍ତି ଦେବି ।' (ନିଉଟେଷ୍ଟାମେଣ୍ଟ, ମାଥିଉ, ୧୧, ୨୮) ଏହା ହିଁ ଯଥାର୍ଥ ସହନଶୀଳତା । ସେ ଏହି ଜୀବନର କେତେ ଊର୍ଦ୍ଧ୍ୱରେ ଥିଲେ । ଏତେ ଊର୍ଦ୍ଧ୍ୱରେ ଥିଲେ ଯେ, ଆମେ କ୍ରୀତଦାସଗଣ ତାହା ଧାରଣା ବି କରିପାରିବା ନାହିଁ । ଆମ ଗାଲରେ କିଏ ଚଟକଣି ମାରିଲେ, ଆମ ହାତ ସଶବ୍ଦରେ ତା'ର ଗାଲରେ ଆଉ ଗୋଟାଏ ଚଟକଣି ବସାଇଦିଏ । ଆମେ କିପରି ସେହି ମହିମାମୟ ପୁରୁଷଙ୍କର ମହତ୍ତ୍ୱ ଓ ତାଙ୍କର ପ୍ରଶାନ୍ତି ଧାରଣା କରିପାରିବା ? ତାଙ୍କର ମହିମା ଆମେ କ'ଣ ବୁଝିବା ?

କିନ୍ତୁ ଆଦର୍ଶକୁ ଆମେ କେବେ ତଳକୁ ଓହ୍ଲାଇ ଆଣିପାରିବା ନାହିଁ । ମୁଁ ଅନୁଭବ କରେ ଯେ, ମୁଁ ଦେହ; ମୁଁ ଅନ୍ୟାୟର ପ୍ରତିରୋଧ କରେ । ମୋର ମୁଣ୍ଡ ବଥାଇଲେ ତାକୁ ଭଲକରିବା ଲାଗି ମୁଁ ପୃଥିବୀ ସାରା ଘୂରିବୁଲେ, ଦୁଇହଜାର ଶିଶି ଔଷଧ ଖାଏ । କିପରି ଭଲା ମୁଁ ଏହିସବୁ ଅପୂର୍ବ ଚରିତ୍ର ବୁଝିପାରିବି ? ଆଦର୍ଶ ମୁଁ ଦେଖିପାରେ, କିନ୍ତୁ ଆଦର୍ଶର କେତେ ଅଂଶ ? ଏହି ଦେହର କୌଣସି ଚେତନା, କୌଣସି ତୁଚ୍ଛ ଅହଂ-ଭାବ, କୌଣସି ଆନନ୍ଦ-ବେଦନା, ସୁଖଦୁଃଖ ଯେହି ସ୍ତରରେ ପହଞ୍ଚି ପାରେନାହିଁ । ସର୍ବଦା କେବଳ ଚୈତନ୍ୟବିଷୟକ ଚିନ୍ତା କରି ଏବଂ ମନକୁ ଜଡ଼-ବସ୍ତୁର ଊର୍ଦ୍ଧ୍ୱରେ ରଖି ମୁଁ ସେହି ଆଦର୍ଶର ଆଭାସମାତ୍ର ପାଇ-ପାରେ । ଜଡ଼-ବସ୍ତୁର ଚିନ୍ତା, ଏବଂ ଇନ୍ଦ୍ରିୟଜଗତର ଘାତପ୍ରତିଘାତର କୌଣସି ସ୍ଥାନ ସେହି ଆଦର୍ଶରେ ନାହିଁ । ଏସବୁଥିରୁ ମନକୁ ଟାଣିନେଇ ଆତ୍ମାରେ ସମାହିତ କର । ତୁମର ଜୀବନ ଓ ମୃତ୍ୟୁ, ସୁଖ ଓ ଦୁଃଖ, ନାମ ଓ ଯଶ ସବୁ କିଛି ଭୁଲି ଯାଅ ଏବଂ ଅନୁଭବ କର ଯେ, ତୁମେ ଶରୀର ବା ମନ ନୁହଁ, ତୁମେ ଶୁଦ୍ଧ ଆତ୍ମା ମାତ୍ର ।

ମୁଁ ଯେତେବେଳେ 'ମୁଁ' ବୋଲି କହେ, ସେତେବେଳେ ଏହି ଚୈତନ୍ୟ ବା ଆତ୍ମାକୁ ହିଁ ବୁଝେ । ଯେତେବେଳେ ତୁମେ ନିଜର 'ମୁଁ' ସମ୍ବନ୍ଧରେ ଚିନ୍ତା କର, ସେତେ-ବେଳେ ଆଖି ବୁଜିକରି ଦେଖ, କେଉଁ ଛବି ତୁମ ଭିତରେ ଫୁଟି ଉଠୁଛି ! ତୁମ ମନରେ ଦେହ-ଚିତ୍ରଟିଏ ଫୁଟି ଉଠୁଛି କି ? ଅଥବା ମନର ପ୍ରକୃତି ? ଯଦି ତାହା ହିଁ ହୁଏ, ତେବେ ତୁମେ ବର୍ତ୍ତମାନ ବି ସତ୍ୟ 'ମୁଁ'କୁ ଜାଣିପାରି ନାହଁ । ଏପରି ସମୟ ଆସିବ, ଯେତେବେଳେ 'ମୁଁ' କହୁ କହୁ ସମଗ୍ର ଜଗତ, ସେହି ଅନନ୍ତ ସତ୍ତା ଉଦ୍ଭାସିତ ହୋଇ ଉଠିବାର ଦେଖିବାକୁ ପାଇବ । ସେତେବେଳେ ତୁମେ ନିଜର ସତ୍ୟ-ସ୍ୱରୂପକୁ ଦେଖିବାକୁ ପାଇବ ଏବଂ ନିଜର ଅନନ୍ତ ସତ୍ତାକୁ ଉପଲବ୍ଧି କରିବ । ତୁମେ ଚୈତନ୍ୟମୟ, ତୁମେ ଜଡ଼ପଦାର୍ଥ ନୁହଁ— ଏହା ହିଁ ସତ୍ୟ । 'ଭ୍ରମ' ବୋଲି ଗୋଟିଏ ଅନୁଭୂତି ଅଛି । ଗୋଟିଏ ବସ୍ତୁକୁ ଆଉ ଗୋଟିଏ ବସ୍ତୁ ବୋଲି ଭ୍ରମ ହୁଏ, ଜଡ଼କୁ ଚୈତନ୍ୟ ଏବଂ ଚୈତନ୍ୟକୁ ଜଡ଼ ବୋଲି ମନେ ହୁଏ । ଏହା ହିଁ ପ୍ରଚଣ୍ଡ ଭ୍ରମ । ଏହାକୁ ଦୂର କରିବାକୁ ହେବ ।

ଗୁରୁଙ୍କ ପ୍ରତି ଶିଷ୍ୟ ଶ୍ରଦ୍ଧାବାନ ହେବା ଉଚିତ । ଏହା ହିଁ ପରବର୍ତ୍ତୀ ସାଧନା । ପାଶ୍ଚାତ୍ୟ ଗୁରୁ ଶିଷ୍ୟକୁ କେବଳ ବୁଦ୍ଧିଗ୍ରାହ୍ୟ ଶିକ୍ଷା ଦେଇଥାନ୍ତି । ଗୁରୁ ସହିତ ଶିଷ୍ୟର ସମ୍ପର୍କ

ଜୀବନର ଶ୍ରେଷ୍ଠ ସମ୍ପର୍କ । ଗୁରୁ ଆମର ନିକଟତମ ଓ ପ୍ରିୟତମ ଅତ୍ମୀୟ, ତା'ପରେ ମାତା, ତା'ପରେ ପିତା । ଗୁରୁଙ୍କ ପ୍ରତି ହିଁ ଆମର ଶ୍ରଦ୍ଧା ସର୍ବପ୍ରଥମେ ନିବେଦିତ । ଯଦି ପିତା କହନ୍ତି, 'ଏହା କର' ଏବଂ ଗୁରୁ କହନ୍ତି, 'ଏହା କର ନାହିଁ', ତେବେ ମୁଁ ଗୁରୁଙ୍କ କଥା ମାନି ତାହା କରିବି ନାହିଁ । ଗୁରୁ ଆମ ଆତ୍ମାର ମୁକ୍ତିସାଧନ କରନ୍ତି । ପିତାମାତା ଆମ ଶରୀର ଦେଇଛନ୍ତି । କିନ୍ତୁ ଗୁରୁ ଆମକୁ ଆତ୍ମା ମଧ୍ୟରେ ନବଜନ୍ମ ଦାନ କରିଛନ୍ତି ।

ଆମର କେତେକ ଅଦ୍ଭୁତ ବିଶ୍ୱାସ ଅଛି । ଗୋଟିଏ ହେଲା—ଅତି ଅଳ୍ପ କେତୋଟି ଅସାଧାରଣ ଆତ୍ମା ଅଛନ୍ତି, ଯେଉଁମାନେ ନିତ୍ୟମୁକ୍ତ ଏବଂ ଯେଉଁମାନେ ଜଗତର କଲ୍ୟାଣ ନିମିତ୍ତ ମନୁଷ୍ୟ ରୂପେ ଜନ୍ମଗ୍ରହଣ କରନ୍ତି । ସେମାନେ ମୁକ୍ତ ହିଁ ରହିଛନ୍ତି, ନିଜ ମୁକ୍ତି ବିଷୟ ସେମାନେ ଗ୍ରାହ୍ୟ କରନ୍ତି ନାହିଁ, ଅପରକୁ ସାହାଯ୍ୟ କରିବାକୁ ଚାହାଁନ୍ତି । ସେମାନଙ୍କର କିଛି ଶିଖିବାର ପ୍ରୟୋଜନ ନାହିଁ । ଶୈଶବକାଳରୁ ସେମାନେ ସବୁ କଥା ଜାଣନ୍ତି । ଛଅମାସର ଶିଶୁ ହେଲେ ବି ସେମାନେ ପରମସତ୍ୟର ବାଣୀ ପ୍ରକାଶ କରିପାରନ୍ତି ।

ଏହି ମୁକ୍ତାତ୍ମାମାନଙ୍କ ଉପରେ ହିଁ ମନୁଷ୍ୟଜାତିର ଉନ୍ନତି ନିର୍ଭର କରେ । ସେମାନେ ଯେପରି ପ୍ରଥମ ପ୍ରଜ୍ୱଳିତ ଦୀପ ସଦୃଶ, ଏହି ଦୀପଟିରୁ ଅନ୍ୟ ଦୀପଗୁଡ଼ିକ ଜଳିଉଠନ୍ତି । ଏହା ସତ୍ୟ ଯେ, ସମସ୍ତଙ୍କ ଅନ୍ତରରେ ହିଁ ଆଲୋକ ରହିଛି । କିନ୍ତୁ ଅଧିକାଂଶ ବ୍ୟକ୍ତିଙ୍କ ଅନ୍ତରରେ ଏହା ପ୍ରଚ୍ଛନ୍ନ । ମହାପୁରୁଷମାନେ ପ୍ରଥମରୁ ହିଁ ଏହି ଆଲୋକରେ ଭାସ୍ୱର । ଯେଉଁମାନେ ତାଙ୍କ ସଂସ୍ପର୍ଶରେ ଆସନ୍ତି, ସେମାନଙ୍କ ହୃଦୟ-ଦୀପ ମଧ୍ୟ ସତେଜ ଜଳିଉଠେ । ଏହା ଦ୍ୱାରା ପ୍ରଥମ ଦୀପଟିର କୌଣସି କ୍ଷତି ହୁଏ ନାହିଁ । ପ୍ରଥମ ଦୀପଟି ଅନ୍ୟ ଦୀପଗୁଡ଼ିକରେ ଆଲୋକ ସଞ୍ଚାର କରେ । କୋଟି କୋଟି ଦୀପ ପ୍ରଜ୍ୱଳିତ ହୋଇଉଠନ୍ତି । କିନ୍ତୁ ପ୍ରଥମ ଦୀପଟି ପୂର୍ବଭଳି ଅନିର୍ବାଣ ତେଜରେ ଜଳୁଥାଏ । ପ୍ରଥମ ଦୀପଟି ଗୁରୁ । ଯେଉଁ ଦୀପଟି ଏହି ପ୍ରଥମ ଦୀପ-ଶିଖାରୁ ପ୍ରଜ୍ୱଳିତ ହୁଏ, ସେ ଶିଷ୍ୟ । କ୍ରମେ ଏହି ଦ୍ୱିତୀୟ ବ୍ୟକ୍ତି ମଧ୍ୟ ଗୁରୁ ହୁଅନ୍ତି । ଏହି ଭାବରେ ଗୁରୁ-ପରଂପରା ଚାଲିଥାଏ । ଯେଉଁମାନଙ୍କୁ ଆପଣମାନେ ଅବତାରପୁରୁଷ ବୋଲି କହିଥାନ୍ତି, ସେହି ମହାପୁରୁଷମାନେ ବିପୁଳ ଅଧ୍ୟାତ୍ମଶକ୍ତିର ଆଧାର । ସେମାନେ ସାକ୍ଷାତ୍ ଶିଷ୍ୟମାନଙ୍କ ଭିତରେ ଏହି ଶକ୍ତି ସଞ୍ଚାର କରନ୍ତି ଏବଂ ଏହିଭାବେ ଶିଷ୍ୟ-ପରମ୍ପରା ଏକ ବିରାଟ ଅଧ୍ୟାତ୍ମଶକ୍ତିର ପ୍ରବାହ ପ୍ରବର୍ତ୍ତିତ କରେ ।

ଖ୍ରୀଷ୍ଟିଆନ ବିଶପ୍ ହସ୍ତଦ୍ୱାରା କାହାର ମସ୍ତକ ସ୍ପର୍ଶ କରି ନିଜେ ପୂର୍ବଜ ବିଶପଙ୍କ ନିକଟରୁ ଯେଉଁ ଶକ୍ତି ଲାଭ କରିଥିଲେ, ସେହି ଶକ୍ତି ସଞ୍ଚାର କରିଛନ୍ତି ବୋଲି ଦାବି କରନ୍ତି । ବିଶପ କହନ୍ତି—ଯୀଶୁ ତାଙ୍କର ସାକ୍ଷାତ୍ ଶିଷ୍ୟମାନଙ୍କ ମଧ୍ୟରେ ନିଜର ଶକ୍ତି ସଞ୍ଚାର କରିଥିଲେ । ଶିଷ୍ୟମାନେ ପୁଣି ଅନ୍ୟମାନଙ୍କ ମଧ୍ୟରେ ସେହି ଶକ୍ତି ସଞ୍ଚାର କରିଥାନ୍ତି । ଏହି ଭାବେ ହିଁ ପରମ୍ପରାକ୍ରମେ ଖ୍ରୀଷ୍ଟଙ୍କ ଶକ୍ତି ତାଙ୍କ ନିକଟକୁ ଆସିଛି । ଆମେ ବିଶ୍ୱାସ କରୁ—କେବଳ ବିଶପମାନେ ନୁହନ୍ତି, ଆମ ପ୍ରତ୍ୟେକଙ୍କୁ ବି ସେହି ଶକ୍ତି ଲାଭ କରିବାକୁ ହେବ । ଆପଣମାନେ ସମସ୍ତେ ସେହି ପ୍ରଚଣ୍ଡ ଅଧ୍ୟାତ୍ମଶକ୍ତିର ଆଧାର ହୋଇପାରନ୍ତି । କାହିଁକି ହୋଇ ପାରିବେ ନାହିଁ ? ନ ହେବାର କୌଣସି କାରଣ ନାହିଁ ।

କିନ୍ତୁ ପ୍ରଥମେ ତୁମକୁ ଜଣେ ଗୁରୁ, ଯଥାର୍ଥ ଗୁରୁ ଖୋଜି ନେବାକୁ ପଡ଼ିବ । ମନେ ରଖିବାକୁ ହେବ ଯେ, ସେ ସାମାନ୍ୟ ମଣିଷ ମାତ୍ର ନୁହନ୍ତି । ତୁମେ ଜଣେ ଦେହଧାରୀ ଗୁରୁ ଲାଭ କରିପାର, କିନ୍ତୁ ପ୍ରକୃତ ଗୁରୁ ଦେହ ଭିତରେ ନ ଥାନ୍ତି । ଯେମିତି ଆଖିରେ ଦେଖୁଛ, ଗୁରୁ ସେହିଭଳି ଦେହଧାରୀ ମଣିଷ ନୁହନ୍ତି । ଗୁରୁ ତୁମ ନିକଟକୁ ମଣିଷରୂପେ ଆସିପାରନ୍ତି ଏବଂ ତୁମେ ତାଙ୍କ ନିକଟରୁ ଶକ୍ତିଲାଭ ମଧ୍ୟ କରିପାର । କେବେକେବେ ସେ ସ୍ୱପ୍ନରେ ଦେଖା-ଦେଇ ଶକ୍ତି ସଞ୍ଚାର କରିଥାନ୍ତି । ଗୁରୁଙ୍କ ଶକ୍ତି ଆମ ନିକଟକୁ ନାନାଭାବରେ ଆସିପାରେ । କିନ୍ତୁ ଆମମାନଙ୍କ ପାଇଁ, ମର୍ତ୍ତ୍ୟମାନବ ପାଇଁ ଗୁରୁ ଅବଶ୍ୟ ହିଁ ଆସିବେ । ତାଙ୍କର ଆବିର୍ଭାବ-କ୍ଷଣ ପର୍ଯ୍ୟନ୍ତ ଆମମାନଙ୍କର ପ୍ରସ୍ତୁତି ମଧ୍ୟ ଚାଲିଥିବ ।

ଆମେ ବକ୍ତୃତା ଶୁଣୁ, ପୁସ୍ତକ ପଢ଼ୁ, ଈଶ୍ୱର, ଆତ୍ମା, ଧର୍ମ ଓ ମୁକ୍ତି ସମ୍ବନ୍ଧରେ ତର୍କବିତର୍କ କରୁ । ଏଗୁଡ଼ିକ ଆଧ୍ୟାତ୍ମିକତା ନୁହେଁ, କାରଣ ଆଧ୍ୟାତ୍ମିକତା ପୁସ୍ତକରେ, ଦର୍ଶନରେ ବା ମତବାଦରେ ନାହିଁ । ଏହା ବିଦ୍ୟାରେ ବା ବିଚାରରେ ନାହିଁ, ଅନ୍ତରର ପ୍ରକୃତ ବିକାଶରେ ଏହା ନିହିତ । ଶୁଆ ମଧ୍ୟ କିଛି ଶ୍ଲୋକ ମନେରଖି ଗାଇ ଦେଇପାରେ । ଯଦି ଆପଣ ବିଦ୍ୱାନ୍ ହୋଇଥାନ୍ତି, ସେଥିରେ କଅଣ ଆସେ ଯାଏ ? ଗଧମାନେ ସମଗ୍ର ପାଠାଗାରଟିକୁ ପିଠିରେ ବୋହି ନେଇ ଯାଇପାରନ୍ତି । ସୁତରାଂ ଯେତେବେଳେ ଯଥାର୍ଥ ଆଲୋକ ଆସିବ, ସେତେବେଳେ ପୋଥିଗତ ବିଦ୍ୟାର ଆଉ ପ୍ରୟୋଜନ ରହିବ ନାହିଁ । ନିଜ ନାମଟି ପର୍ଯ୍ୟନ୍ତ ଦସ୍ତଖତ କରିପାରୁ ନ ଥିବା ଅକ୍ଷମ ଲୋକଟି ମଧ୍ୟ ଧାର୍ମିକ ହୋଇପାରେ ଏବଂ ପୃଥିବୀର ଯାବତୀୟ ଗ୍ରନ୍ଥାଗାରର ଜ୍ଞାନରାଶି ଯାହାର ମସ୍ତକରେ ପୁଞ୍ଜୀଭୂତ ରହିଛି, ସେ କିନ୍ତୁ ହୋଇ ନପାରେ । ଆଧ୍ୟାତ୍ମିକ ଉନ୍ନତି ପୁସ୍ତକଗତବିଦ୍ୟାର ଅପେକ୍ଷା ରଖେ ନାହିଁ । ପାଣ୍ଡିତ୍ୟ ଉପରେ ଆଧ୍ୟାତ୍ମିକତା ଆଦୌ ନିର୍ଭର କରେ ନାହିଁ । ଗୁରୁଙ୍କ ସ୍ପର୍ଶଶକ୍ତିସଞ୍ଚାରଦ୍ୱାରା ତୁମର ହୃଦୟ ଜାଗ୍ରତ ହେବ । ତା'ପରେ ଯାଇ ଆରମ୍ଭ ହେବ ଆଧ୍ୟାତ୍ମିକ ଉନ୍ନତି । ଏହାହିଁ ଯଥାର୍ଥରେ ଅଗ୍ନିମନ୍ତ୍ରରେ ଦୀକ୍ଷା । ଆଉ ଅଟକି ଯିବାକୁ ହେବ ନାହିଁ, ତୁମେ କ୍ରମେକ୍ରମେ ଅଗ୍ରସର ହୋଇ ଚାଲିବ ।

କେତେବର୍ଷ ତଳେ ମୋର ଜଣେ ଖ୍ରୀଷ୍ଟାନ୍ ଧର୍ମଯାଜକ ବନ୍ଧୁ ମୋତେ ଜିଜ୍ଞାସା କଲେ, 'ତୁମେ କ'ଣ ଖ୍ରୀଷ୍ଟଙ୍କୁ ବିଶ୍ୱାସ କର ?' ମୁଁ ଉତ୍ତର ଦେଲି, 'ହଁ, ବୋଧହୁଏ ଅଧିକ ଶ୍ରଦ୍ଧାର ସହିତ ବିଶ୍ୱାସ କରେ ।' 'ତା'ହେଲେ ଖ୍ରୀଷ୍ଟଧର୍ମରେ କାହିଁକି ତୁମେ ଦୀକ୍ଷିତ ହେଉ ନାହଁ ?' ଧର୍ମଯାଜକ ପଚାରିଲେ । ମୁଁ କହିଲି, 'କିପରି ଦୀକ୍ଷିତ ହେବି ? କିଏ ମୋତେ ଦୀକ୍ଷିତ କରାଇବ ?' ଯଥାର୍ଥ ଦୀକ୍ଷାଦାତା କାହାନ୍ତି ? ଦୀକ୍ଷା କାହାକୁ କୁହାଯାଏ ? ଏହା କ'ଣ କେବଳ କେତେଗୁଡ଼ିଏ ଧରାବନ୍ଧା ମନ୍ତ୍ର ବୋଲି ପାଣି ଛିଞ୍ଚିବା କିମ୍ବା ନା ଜୋର୍ କରି ଧରି ପାଣିରେ ବୁଡ଼ାଇବା ?

ଦୀକ୍ଷା ହେଲା ସାକ୍ଷାତ୍‌ଭାବେ ଆଧ୍ୟାତ୍ମିକ ଜୀବନରେ ପ୍ରବେଶ । ଯଥାର୍ଥ ଦୀକ୍ଷାଲାଭ କଲେ ଜାଣିବେ ଯେ, ଆପଣ ଦେହ ନୁହଁନ୍ତି, ଆପଣ ଆତ୍ମା । ଯଦି ପାରନ୍ତି, ତେବେ ସେହି ଦୀକ୍ଷା ମୋତେ ଦିଅନ୍ତୁ । ଯଦି ତାହା ନ ପାରନ୍ତି, ତେବେ ତ ଆପଣମାନେ ବି ଖ୍ରୀଷ୍ଟାନ୍ ନୁହନ୍ତି ।

ତଥାକଥିତ ଦୀକ୍ଷାଲାଭ ପରେ ବି ଆପଣମାନେ ତ ପୂର୍ବେ ଯେମିତି ଥିଲେ, ସେହିପରି ହିଁ ରହିଛନ୍ତି । ଖ୍ରୀଷ୍ଟଙ୍କ ନାମରେ ଆପଣମାନେ ଦୀକ୍ଷିତ ହୋଇଛନ୍ତି, ଏକଥା କହିବାର ଅର୍ଥ କ'ଣ ? କେବଳ କଥା, ଆଉ କଥା—ଏବଂ ଜଗତକୁ ନିଜନିଜ ମୂର୍ଖତାଦ୍ୱାରା ବିରକ୍ତ କରି ଚାଲିବା ହିଁ ସାର । 'ସ୍ୱୟଂ ଅଜ୍ଞାନ-ଅନ୍ଧକାରରେ ଆଚ୍ଛନ୍ନ ଥାଇ ମଧ୍ୟ ନିଜକୁ ଜ୍ଞାନୀ ଓ ବିଦ୍ୱାନ୍ ମନେକରି ମୂର୍ଖମାନେ ଅନ୍ଧଚାଳିତ ଅନ୍ଧ ସଦୃଶ ଯତ୍ରତତ୍ର ଘୁରିବୁଲୁଛନ୍ତି ।' (କଠୋପନିଷଦ୍ ୧ । ୨ । ୫) । ସୁତରାଂ ଏକଥା କହିବେ ନାହିଁ ଯେ, ଆପଣମାନେ ଖ୍ରୀଷ୍ଟାନ୍ । ଆଉ ମଧ୍ୟ ଏହି ସବୁ ଦୀକ୍ଷା ବା ବ୍ୟାପ୍‌ଟିଜିମ୍ (Baptism) ପ୍ରଭୃତି ତତ୍ତ୍ୱ ନେଇ ବାଗାଡ଼ମ୍ବର କରିବେ ନାହିଁ ।

ଅବଶ୍ୟ ଯଥାର୍ଥ ଦୀକ୍ଷା ମଧ୍ୟ ରହିଛି । ଜଗତକୁ ଆସି ଯୀଶୁ ଯେତେବେଳେ ପ୍ରଥମେ ତାଙ୍କର ବାଣୀ ପ୍ରଚାର କଲେ, ସେତେବେଳେ ଦୀକ୍ଷା ଥିଲା । ଯୁଗେଯୁଗେ ଯେଉଁସବୁ ମୁକ୍ତାତ୍ମା ମହାପୁରୁଷ ଆବିର୍ଭୂତ ହୁଅନ୍ତି, ଅମ ନିକଟରେ ଅଖଣ୍ଡ ସ୍ୱ ଜ୍ଞାନ ପ୍ରକାଶ କରିବାର ଶକ୍ତି ସେମାନଙ୍କର ରହିଛି । ଏହା ହିଁ ଯଥାର୍ଥ ଦୀକ୍ଷା, ଆପଣମାନେ ଦେଖିଛନ୍ତି । ପ୍ରତ୍ୟେକ ଧର୍ମର ବିଧି ଓ ଅନୁଷ୍ଠାନାଦି ପ୍ରଚଳିତ ହେବାର ପୂର୍ବେ ହିଁ ସାର୍ବଜନୀନ ସତ୍ୟର ବୀଜ ବିଦ୍ୟମାନ ରହିଛି । କାଳକ୍ରମେ ଏହି ସତ୍ୟକୁ ଲୋକମାନେ ଭୁଲିଯାନ୍ତି । ବାହ୍ୟ ଅନୁଷ୍ଠାନାଦି ଯେପରି ଏହାର ଶ୍ୱାସରୋଧ କରିପକାଏ । କେବଳ ବାହାରର ପଦ୍ଧତିଗୁଡ଼ିକ ଚାଲୁ ରହିଥାଏ, କିନ୍ତୁ ଭିତରର ଭାବଟି ଚାଲିଯାଏ । କେବଳ ବାହାରର ଆଧାରଟିକୁ ଆମେ ଦେଖିଥାଉଁ । ଦୀକ୍ଷାର ବାହ୍ୟରୂପଟି ରହିଛି ।

କିନ୍ତୁ ଅତି ଅଳ୍ପ ବ୍ୟକ୍ତି ହିଁ ଏହାର ଅନ୍ତର୍ନିହିତ ଶକ୍ତି ଉଦ୍‌ବୁଦ୍ଧ କରିପାରନ୍ତି । ବାହ୍ୟ ଆଚାର କେବଳ ଯଥେଷ୍ଟ ନୁହେଁ । ଆମେ ଯଦି ପ୍ରତ୍ୟକ୍ଷ ସତ୍ୟର ସାକ୍ଷାତ୍ ଜ୍ଞାନଲାଭ କରିବାକୁ ଚାହୁଁ, ତେବେ ଆମମାନଙ୍କୁ ଏହି ବିଷୟରେ ଯଥାର୍ଥଭାବେ ଦୀକ୍ଷିତ ହେବାକୁ ହିଁ ପଡ଼ିବ । ଏହା ହିଁ ତ ଆଦର୍ଶ !

ଗୁରୁ ମୋତେ ନିଶ୍ଚୟ ଶିକ୍ଷାଦାନ କରି ଆଲୋକର ପଥରେ ପରିଚାଳିତ କରିବେ ଏବଂ ଯେଉଁ ଗୁରୁଶିଷ୍ୟ-ପରମ୍ପରାର ସେ ନିଜେ ଜଣେ ଯୋଗସୂତ୍ର, ସେ ମୋତେ ତା'ର ମଧ୍ୟ ଯୋଗସୂତ୍ର କରିନେବେ । ଯେକୌଣସି ଲୋକ ନିଜକୁ ଗୁରୁ ବୋଲି ଦାବି କରିପାରିବ ନାହିଁ । ସେହି କେବଳ ଗୁରୁ ହେବେ, ଯେ ସେହି ପାରମାର୍ଥିକ ସତ୍ୟକୁ ଜାଣିଛନ୍ତି, ପ୍ରତ୍ୟକ୍ଷ କରିଛନ୍ତି, ଯେ ନିଜକୁ ଚୈତନ୍ୟସ୍ୱରୂପ ବୋଲି ଅନୁଭବ କରିଛନ୍ତି । କେବଳ କଥାଗୁଡ଼ାଏ ଗପିଲେ କେହି ଗୁରୁ ହୋଇପାରେ ନାହିଁ । ମୋ ଭଳି ବାକ୍ୟବାଗୀଶ ମୂର୍ଖ ଅନେକ କଥା କହିପାରେ, କିନ୍ତୁ ଗୁରୁ ହୋଇପାରେ ନାହିଁ । ଯଥାର୍ଥ ଗୁରୁ ଶିଷ୍ୟକୁ କହିବେ, 'ଯାଅ, ଆଉ ପାପ କର ନାହିଁ ।' ଏତକ ଶୁଣିଲା ପରେ ସେ ଆଉ ପାପ କରିପାରେ ନାହିଁ । ତା'ର ଆଉ ପାପ କରିବାର ଶକ୍ତି ମଧ୍ୟ ନ ଥାଏ ।

ମୁଁ ଏହି ଜୀବନରେ ଏଭଳି ବ୍ୟକ୍ତି ପ୍ରତ୍ୟକ୍ଷ କରିଛି । ମୁଁ ବାଇବେଲ ପ୍ରଭୃତି ଶାସ୍ତ୍ର ମଧ୍ୟ ପଢ଼ିଅଛି । ଏଗୁଡ଼ିକ ଅପୂର୍ବ । କିନ୍ତୁ ପୁସ୍ତକ ଭିତରେ ସେହି ପ୍ରାଣବନ୍ତ ଶକ୍ତିର ସାକ୍ଷାତ୍ ମିଳିବ ନାହିଁ—ଯେଉଁ ଶକ୍ତି ମୁହୂର୍ତ୍ତକରେ ଜୀବନକୁ ପରିବର୍ତ୍ତନ କରିଦେଇପାରେ । ତାହା

କେବଳ ଜୀବନ୍ମୁକ୍ତ ମହାପୁରୁଷମାନଙ୍କ ମଧ୍ୟରେ ହିଁ ଦେଖିବାକୁ ମିଳେ । ଜ୍ଞାନର ଉଜ୍ଜ୍ୱଳ ବିଗ୍ରହସ୍ୱରୂପ ଏହି ମହାପୁରୁଷମାନେ ମଝିରେ ମଝିରେ ଆମମାନଙ୍କ ଭିତରେ ଆବିର୍ଭୂତ ହୁଅନ୍ତି । ସେହିମାନେ ହିଁ ଗୁରୁ ହେବାର ଉପଯୁକ୍ତ । ତୁମ ଆଉ ମୋ ଭଳି ଲୋକେ କେବଳ ବୃଥା ବଚନବାଗୀଶ, ଗୁରୁ ବା ଆଗ୍ନର୍ଷି ନୋହୁଁ । ଆମେ କେବଳ କଥାର କୋଳାହଳରେ ଜଗତକୁ ବିବ୍ରତ କରୁଅଛୁ, ଚନ୍ତାଜଗତରେ ଅଶୁଭ କମ୍ପନର ସୃଷ୍ଟି କରୁଅଛୁ । ଆଶା, ପ୍ରାର୍ଥନା ଓ ସଂଗ୍ରାମ ଭିତର ଦେଇ ଆମେ ଅଗ୍ରସର ହେଉ । ଦିନେ ଆମେ ସତ୍ୟରେ ଉପନୀତ ହେବୁ । ସେତେବେଳେ ଆଉ ଆମକୁ କଥା କହିବାକୁ ହେବ ନାହିଁ ।

ଗୁରୁଙ୍କ ବୟସ ଷୋଳବର୍ଷ, ସେ ଅଶୀବର୍ଷର ବୃଦ୍ଧଙ୍କୁ ଶିକ୍ଷା ଦେଉଛନ୍ତି । ଗୁରୁ ନୀରବ ହୋଇ ବ୍ୟାଖ୍ୟା କରୁଛନ୍ତି ଏବଂ ଶିଷ୍ୟଙ୍କର ସମସ୍ତ ସଂଶୟ ଛିନ୍ନ ହୋଇଯାଉଛି ।* ଏହା ହିଁ ଗୁରୁଙ୍କର ବର୍ଣ୍ଣନା । ଭାବି ଦେଖନ୍ତୁ, ଏହିଭଳି ଜଣେ ବ୍ୟକ୍ତିଙ୍କୁ ପାଇଲେ ତାଙ୍କ ପ୍ରତି ଆପଣଙ୍କର କି ଭଳି ବିଶ୍ୱାସ ଓ ପ୍ରେମ ହେବ !! କାରଣ, ସେ ସ୍ୱୟଂ ଭଗବାନଙ୍କ ଅପେକ୍ଷା କିଛି କମ୍ ନୁହନ୍ତି । ଏଇଥିପାଇଁ ଖ୍ରୀଷ୍ଟଙ୍କ ଶିଷ୍ୟମାନେ ତାଙ୍କୁ ଈଶ୍ୱରରୂପେ ପୂଜା କରୁଥିଲେ । ଶିଷ୍ୟ ଗୁରୁଙ୍କୁ ସାକ୍ଷାତ୍ ଈଶ୍ୱର ବୋଲି ପୂଜା କରିବେ । ଯେତେଦିନ ଯାଏ ମଣିଷ ଭଗବାନଙ୍କୁ ପ୍ରତ୍ୟକ୍ଷଭାବେ ଉପଲବ୍ଧି ନ କରିପାରିଛି, ସେତେଦିନ ଯାଏ ସେ ଭଗବାନଙ୍କୁ ଯେତିକିମାତ୍ର ଜାଣିପାରିବ, ତାହା କେବଳ ଏହି ମାନବଦେହଧାରୀ ନରଦେବତାରୂପରେ ହିଁ ଜାଣିପାରିବ । ଆଉ ଭଲ ଅନ୍ୟ କେଉଁ ଭାବରେ ସେ ଭଗବାନଙ୍କୁ ଜାଣିପାରିବ ?

ଏଠି ଆମେରିକାରେ ଜଣେ ବ୍ୟକ୍ତି, ଖ୍ରୀଷ୍ଟଙ୍କ ଜନ୍ମର ଊଣେଇଶିଶହ (୧୯୦୦) ବର୍ଷ-ପରେ ଜନ୍ମଗ୍ରହଣ କରିଛି, ଖ୍ରୀଷ୍ଟ ଯେଉଁ ଜାତିରେ ଜନ୍ମିଥିଲେ, ସେ ସେହି ଇହୁଦୀଜାତି ସମ୍ଭୂତ ମଧ୍ୟ ନୁହେଁ, ସେ ଯୀଶୁ ବା ତାଙ୍କର ପରିବାରବର୍ଗଙ୍କୁ ମଧ୍ୟ ଦେଖି ନାହିଁ । ସେ କହେ, 'ଯୀଶୁ ଥିଲେ ଭଗବାନ । ଯଦି ତୁମେ ଏହା ବିଶ୍ୱାସ ନ କର, ତେବେ ନର୍କକୁ ଯିବ ।' ଆମେ ବୁଝିପାରୁ, ଯୀଶୁଙ୍କର ଶିଷ୍ୟମାନେ ଖ୍ରୀଷ୍ଟଙ୍କୁ ଭଗବାନ ବୋଲି କେଉଁ ଭାବରେ ବିଶ୍ୱାସ କରନ୍ତି । ସେ ସେମାନଙ୍କର ଗୁରୁ ଥିଲେ । ସୁତରାଂ ସେମାନେ ଯୀଶୁଙ୍କୁ ଅବଶ୍ୟ ହିଁ ଈଶ୍ୱର ବୋଲି ବିଶ୍ୱାସ କରିଥିଲେ । କିନ୍ତୁ ଊଣେଇଶିଶହ ବର୍ଷ ପୂର୍ବେ ଆବିର୍ଭୂତ ମଣିଷଟିକୁ ନେଇ ଏହି ଆମେରିକାନ୍‌ଟି କଅଣ କରିବ? ଏହି ଯୁବକଟି ମୋତେ କହୁଛି—ଯୀଶୁଙ୍କୁ ମୁଁ ବିଶ୍ୱାସ କରେ ନାହିଁ, ଅତଏବ ମୋତେ ନର୍କକୁ ଯିବାକୁ ହେବ । ଯୀଶୁଙ୍କ ସମ୍ବନ୍ଧରେ ସେ ଜାଣେ କଅଣ ? ସେ ପାଗଳ-ଗାରଦରେ ରହିବାର ଉପଯୁକ୍ତ । ଏଭଳି ବିଶ୍ୱାସ ଚଳିବ ନାହିଁ । ତା'କୁ ତା'ର ଗୁରୁଙ୍କୁ ଖୋଜି ବାହାର କରିବାକୁ ପଡ଼ିବ ।

ଯୀଶୁ ପୁନର୍ବାର ଜନ୍ମଗ୍ରହଣ କରିପାରନ୍ତି, ଆପଣଙ୍କ ନିକଟକୁ ଆସିପାରନ୍ତି ।

---

* ଚିତ୍ରଂ ବଟତରୋର୍ମୂଲେ ବୃଦ୍ଧାଃ ଶିଷ୍ୟାଃ ଗୁରୁର୍ଯୁବା ।
ଗୁରୋସ୍ତୁ ମୌନଂ ବ୍ୟାଖ୍ୟାନଂ ଶିଷ୍ୟାସ୍ତୁ ଛିନ୍ନ ସଂଶୟାଃ ।।

—ଦକ୍ଷିଣାମୂର୍ତ୍ତିସ୍ତୋତ୍ରମ୍, ୧୨

ସେତେବେଳେ ଯଦି ଆପଣ ତାଙ୍କୁ ଭଗବାନ ବୋଲି ପୂଜା କରନ୍ତି, ଭଲ କଥା । ଗୁରୁଙ୍କ ଆବିର୍ଭାବ ପର୍ଯ୍ୟନ୍ତ ଆମେ ନିଶ୍ଚୟ ହିଁ ପ୍ରତୀକ୍ଷା କରିବୁ ଏବଂ ଗୁରୁଙ୍କୁ ଈଶ୍ୱରଙ୍କ ସଦୃଶ ପୂଜା କରିବୁ । ସେ ଈଶ୍ୱର, ଈଶ୍ୱରଙ୍କ ଅପେକ୍ଷା କିଛି କମ୍ ନୁହନ୍ତି । ଗୁରୁଙ୍କୁ ଲକ୍ଷ୍ୟ କଲେ ଦେଖିବାକୁ ପାଇବ ଯେ, କ୍ରମେ ସେ ଲୀନ ହୋଇ ଯାଉଛନ୍ତି । ତା'ପରେ ଆଉ କଅଣ ରହେ ? ଗୁରୁମୂର୍ତ୍ତି ଭଗବାନଙ୍କ ପାଇଁ ଆସନ ଛାଡ଼ି ଦିଅନ୍ତି । ଆମମାନଙ୍କ ନିକଟକୁ ଆସିବା ପାଇଁ ଭଗବାନ ଗୁରୁଙ୍କର ଜ୍ୟୋତିର୍ମୟ ମୂର୍ତ୍ତି ଧରିଥାନ୍ତି । ସ୍ଥିରଭାବେ ନିରୀକ୍ଷଣ କଲେ ଏହି ମୂର୍ତ୍ତିର ଆବରଣ କ୍ରମଶଃ ଖସିଯାଏ, ଭଗବାନ ପ୍ରକାଶିତ ହୁଅନ୍ତି ।

'ମୁଁ ଗୁରୁଙ୍କୁ ପ୍ରଣାମ କରୁଅଛି, ଯେ ବ୍ରହ୍ମାନନ୍ଦର ମୂର୍ତ୍ତିବିଗ୍ରହ, ପରମସୁଖଦ ଓ ପରମଜ୍ଞାନର ପ୍ରତିମୂର୍ତ୍ତି, ଯେ ପବିତ୍ର, ପୂର୍ଣ୍ଣ, ଅଦ୍ୱିତୀୟ, ଅନନ୍ତ, ସୁଖଦୁଃଖର ଅତୀତ, ଅଚିନ୍ତ୍ୟ ଭାବାତୀତ ଓ ତ୍ରିଗୁଣରହିତ ।'

'ବ୍ରହ୍ମାନନ୍ଦଂ ପରମସୁଖଦଂ କେବଳଂ ଜ୍ଞାନମୂର୍ତ୍ତିଂ
ଦ୍ୱନ୍ଦ୍ୱାତୀତଂ ଗଗନସଦୃଶଂ ତତ୍ତ୍ୱମସ୍ୟାଦି ଲକ୍ଷ୍ୟମ୍ ।
ଏକଂ ନିତ୍ୟଂ ବିମଳମଚଳଂ ସର୍ବଧୀସାକ୍ଷିଭୂତମ୍
ଭାବାତୀତଂ ତ୍ରିଗୁଣରହିତଂ ସଦ୍‌ଗୁରୁଂ ତଂ ନମାମି ॥' —ଗୁରୁଗୀତା

ସେ ହିଁ ଯଥାର୍ଥରେ ଗୁରୁ । ଶିଷ୍ୟ ଯଦି ତାଙ୍କୁ ସ୍ୱୟଂ ଭଗବାନ ବୋଲି ମନେ କରିବେ, ତାଙ୍କୁ ବିଶ୍ୱାସ କରିବେ, ଶ୍ରଦ୍ଧା କରିବେ ଏବଂ ସନ୍ଦେହାତୀତଭାବରେ ଅନୁସରଣ କରିବେ, ସେଥିରେ ଆଶ୍ଚର୍ଯ୍ୟ ହେବାର କିଛିନାହିଁ । ଗୁରୁଶିଷ୍ୟଙ୍କ ଭିତରେ ଏହାହିଁ ସମ୍ବନ୍ଧ ।

ମୁକ୍ତିଲାଭ ପାଇଁ ଶିଷ୍ୟଙ୍କୁ ପ୍ରବଳ ଆକାଙ୍‌କ୍ଷା କରିବାକୁ ପଡ଼ିବ । ଏହା ହିଁ ପରବର୍ତ୍ତୀ ସାଧନା । ଇନ୍ଦ୍ରିୟମାନେ ଆମମାନଙ୍କୁ କେବଳ ଦଗ୍‌ଧ କରନ୍ତି, ବାସନା ବୃଦ୍ଧି କରନ୍ତି—ଏହା ଜାଣି ମଧ୍ୟ ପତଙ୍ଗଭଳି ଆମେ ଅଗ୍ନିଶିଖା ଭିତରକୁ ଡେଇଁ ପଡ଼ୁ । 'ଉପଭୋଗ ଦ୍ୱାରା ବାସନା କେବେହେଲେ ତୃପ୍ତି ହୁଏ ନାହିଁ । ଘୃତାହୁତ ଦ୍ୱାରା ଅଗ୍ନି ଯେପରି ବୃଦ୍ଧି ପାଏ, ସେହିପରି ଭୋଗଦ୍ୱାରା ଭୋଗ ହିଁ ବଢ଼ିଚାଲେ ।'* ବାସନାଦ୍ୱାରା ବାସନା ବୃଦ୍ଧିପ୍ରାପ୍ତ ହୁଏ । ଏହା ଜାଣି ମଧ୍ୟ ମନୁଷ୍ୟ ସର୍ବଦା ହିଁ ଏଥିରେ ମାତିଥାଏ । ଜନ୍ମଜନ୍ମ ଧରି ସେମାନେ ଭୋଗ୍ୟବସ୍ତୁର ପଶ୍ଚାତ୍‌ରେ ଧାବିତ ହେଉଛନ୍ତି ଏବଂ ଫଳରେ ଅପରିସୀମ ଦୁଃଖ ଭୋଗ କରୁଅଛନ୍ତି, ତଥାପି ବାସନା ତ୍ୟାଗ କରି ପାରୁନାହାନ୍ତି । ଯେଉଁ ଧର୍ମ ସେମାନଙ୍କୁ ଏହି ଭୀଷଣ ବାସନାର ବନ୍ଧନରୁ ମୁକ୍ତ କରିବ, ତାକୁ ମଧ୍ୟ ସେମାନେ ବାସନାପରିତୃପ୍ତିର ଉପାୟ କରିସାରିଛନ୍ତି । ଶରୀର ଓ ଇନ୍ଦ୍ରିୟର ବନ୍ଧନ ଏବଂ ବାସନାର ଦାସତ୍ୱରୁ ମୁକ୍ତିଲାଭ ନିମିତ୍ତ ସେମାନେ କେବେ କ୍ୱଚିତ୍ ଭଗବାନଙ୍କ ନିକଟରେ ପ୍ରାର୍ଥନା କରିଥାନ୍ତି । ତତ୍‌ପରିବର୍ତ୍ତେ ସେମାନେ ସ୍ୱାସ୍ଥ୍ୟ ଓ ଦୀର୍ଘଜୀବନ

* ନ ଜାତୁ କାମଃ କାମାନାମୁପଭୋଗେନ ଶାମ୍ୟତି
ହବିଷା କୃଷ୍ଣବର୍ତ୍ମେବ ଭୂୟ ଏବାଭିବର୍ଦ୍ଧତେ ।
—ଶ୍ରୀମଦ୍‌ଭାଗବତ, ୯।୧୯।୧୪

ଲାଭ ପାଇଁ ପ୍ରାର୍ଥନା କରନ୍ତୁ, 'ହେ ଈଶ୍ୱର ! ମୋର ମୁଣ୍ଡବ୍ୟଥା ଦୂର କରି ଦିଅ । ମୋତେ କିଛି ଟଙ୍କା ପଇସା ବା ଅନ୍ୟ କିଛି ଦ୍ରବ୍ୟ ପ୍ରଦାନ କର ।'

ଦୃଷ୍ଟିର ପରିଧି ଏତେ ସଂକୀର୍ଣ୍ଣ, ଏତେ ନୀଚ, ଏତେ ପଶୁବତ୍ ହୋଇ ରହିଛି । କେହି ବି ଏହି ଦେହର ଊର୍ଦ୍ଧ୍ୱରେ କିଛି ଚାହୁଁ ନାହାନ୍ତି । ହାୟ, କି ଭୟଙ୍କର ଅବନତି ! କି ଭୟାନକ ଦୁର୍ଦ୍ଦଶା ! ଏହି ମାଂସପିଣ୍ଡ, ପାଞ୍ଚଟି ଇନ୍ଦ୍ରିୟ ଆଉ ଉଦର ! ଶିଶ୍ନ ଓ ଉଦରର ସମାବେଶ ବ୍ୟତୀତ ଜଗତଟା ଆଉ କଣ ? କୋଟି କୋଟି ନରନାରୀଙ୍କ ଆଡ଼କୁ ଚାହିଁ ଦେଖ ! ସେମାନେ ଏଇଥିପାଇଁ ହିଁ ଜୀବନ ଧାରଣ କରିଅଛନ୍ତି । ସେମାନଙ୍କ ପାଖରୁ ଏହି ବସ୍ତୁ ଦୁଇଟି କାଢ଼ି ନିଅ—ସେମାନେ ମନେକରିବେ ଯେ, ଜୀବନ ସେମାନଙ୍କର ଶୂନ୍ୟ, ଅର୍ଥହୀନ ଓ ଅସହନୀୟ ହୋଇ ପଡ଼ିଛି । ଆମେ ସମସ୍ତେ ଏହିଭଳି ଏବଂ ଆମମାନଙ୍କ ମନ ମଧ୍ୟ ଏହିଭଳି । ଏହି ମନ ସର୍ବଦା କ୍ଷୁଧା ଓ କାମଚରିତାର୍ଥ କରିବାର ପଥ ଓ ଉପାୟ ଖୋଜିବୁଲୁଛି । ସର୍ବଦା ହିଁ ଏହିରୂପେ ଚାଲିଅଛି । ଦୁଃଖକଷ୍ଟ ମଧ୍ୟ ସେହିପରି ଅନନ୍ତ । ଦେହର ଏହି ସମସ୍ତ ତୃଷ୍ଣା କେବଳ କ୍ଷଣିକ ତୃପ୍ତି ଏବଂ ଅଶେଷ ଦୁଃଖର କାରଣ ହୋଇଥାଏ । ଏହା ଯେପରି ପୟୋମୁଖବିଷକୁମ୍ଭର ଅବସ୍ଥା (ଅର୍ଥାତ୍ ବିଷମିଶ୍ରିତ ଦୁଧ-ମାଠିଆ ସଦୃଶ) ! କିନ୍ତୁ ତଥାପି ଆମେ ଏଗୁଡ଼ିକ ଲାଗି ଲାଳାୟିତ ହୋଇଥାଉ ।

ତା'ହେଲେ କ'ଣ ଆଉ କରାଯିବ ? ଇନ୍ଦ୍ରିୟ-ଦମନ ଓ ବାସନାତ୍ୟାଗ ହିଁ ଏହି ଦୁଃଖମୋଚନର ଏକମାତ୍ର ଉପାୟ । ଆଧ୍ୟାତ୍ମିକ ଜୀବନ ଲାଭ ନିମିତ୍ତ ବାସନା ତ୍ୟାଗ କରିବାକୁ ହେବ । ଏହା ହିଁ ପ୍ରକୃତ ପରୀକ୍ଷା । ଏହି ନିରର୍ଥକ ଇନ୍ଦ୍ରିୟସର୍ବସ୍ୱ ସଂସାର ବର୍ଜନ କର । ଯଥାର୍ଥ ବାସନା ଗୋଟିଏ ମାତ୍ର ରହିଛି, ସତ୍ୟୋପଲବ୍ଧିର ବାସନା—ଅଧ୍ୟାତ୍ମଜୀବନଲାଭର ବାସନା । ଜଡ଼ବାଦ ବା ଅହଂସର୍ବସ୍ୱତା ଆଉ ନୁହେଁ । ମୋତେ ଆଧ୍ୟାତ୍ମିକ ହେବାକୁ ହିଁ ପଡ଼ିବ । ଦୃଢ଼ ଓ ତୀବ୍ର ଇଚ୍ଛା ଦରକାର । କୌଣସି ବ୍ୟକ୍ତିର ହାତପାଦ ବାନ୍ଧି ତା'ର ଶରୀରରେ ଖଣ୍ଡିଏ ଜଳନ୍ତା ଅଙ୍ଗାର ରଖିଦେଲେ ସେ ଏହାକୁ ଫିଙ୍ଗିଦେବାକୁ ଯଥାଶକ୍ତି ଚେଷ୍ଟା କରେ । ଯଦି ଏହି ଜ୍ୱଳନ୍ତ ସଂସାରକୁ ଦୂରକୁ ଫିଙ୍ଗି ଦେବା ଲାଗି ସେହିପରି ତୀବ୍ର ଇଚ୍ଛା ଓ ଅବିରାମ ଚେଷ୍ଟା ଚାଲୁ ରହେ, ତେବେ ଯାଇ ପରମସତ୍ୟର ଆଭାସ ଲାଭ କରିବା ଲାଗି ସମୟ ପହଞ୍ଚିବ ।

ମୋତେ ଲକ୍ଷ୍ୟ କରନ୍ତୁ । ଦୁଇତିନଟି ଡଲାର ସହ ମୋର ପ୍ରେଟ ପକେଟ୍‌ବହିଟି ହଜିଗଲେ ଘର ଭିତରେ ମୁଁ କୋଡ଼ିଏ ଥର ଖୋଜି ବୁଲିବି । କେତେ ଉଦ୍‌ବେଗ ! କେତେ ଦୁଶ୍ଚିନ୍ତା, କେତେ ଚେଷ୍ଟା ! ଯଦି ଆପଣମାନଙ୍କ ଭିତରୁ କେହି ମୋତେ ବାଧା ଦିଏ, ତେବେ କୋଡ଼ିଏ ବର୍ଷ ପର୍ଯ୍ୟନ୍ତ ଏହା ମୋର ମନେ ରହିବ; ସେହି ଘଟଣାଟିକୁ ମୁଁ କେବେ କ୍ଷମା କରି ପାରିବି ନାହିଁ କି ଭୁଲି ମଧ୍ୟ ଯାଇପାରିବି ନାହିଁ । ଇନ୍ଦ୍ରିୟର ଅତି କ୍ଷୁଦ୍ର ବିଷୟଗୁଡ଼ିକ ପାଇଁ ମୁଁ ଏହିଭଳି ଚେଷ୍ଟା କରିପାରେ । ଭଗବାନଙ୍କ ପାଇଁ କିଏ ଏଭଳି ଚେଷ୍ଟା କରେ ? 'କ୍ରୀଡ଼ାରତ ଶିଶୁ ସବୁ କିଛି ହିଁ ଭୁଲିଯାଏ । ଯୁବକମାନେ ଇନ୍ଦ୍ରିୟ-ସମ୍ଭୋଗ ଲାଗି ଉନ୍ମତ୍ତ । ସେମାନେ ଅନ୍ୟ କିଛି ଲାଗି ଚିନ୍ତା କରନ୍ତି ନାହିଁ । ପ୍ରାଚୀନମାନେ ସେମାନଙ୍କର

ଅତୀତ ଦୁଷ୍କର୍ମର ଚିନ୍ତାରେ ମଗ୍ନ ।'*

ବୃଦ୍ଧମାନେ ଆଉ ଉପଭୋଗ କରିପାରନ୍ତି ନାହିଁ । ସେମାନେ ଅତୀତରେ ଯାହା ଭୋଗ କରିଥିଲେ, ସେହି କଥା ହିଁ ମନେ ମନେ ଗୁଣି ହେଉଥାନ୍ତି । ଅତୀତକୁ ରୋମନ୍ଥନ କରିବାରେ ହିଁ ବୃଦ୍ଧମାନେ ଖୁବ୍ ଦକ୍ଷ ବିଷୟଭୋଗ ପାଇଁ ମଣିଷ ଯେଉଁ ଭାବରେ ତୀବ୍ର ଆକାଂକ୍ଷା କରେ, ଈଶ୍ୱରଙ୍କ ଲାଗି କେହି ସେପରି କରନ୍ତି ନାହିଁ ।

ସମସ୍ତେ କହୁଥାନ୍ତି, ଈଶ୍ୱର ସତ୍ୟ-ସ୍ୱରୂପ, ଏକମାତ୍ର ନିତ୍ୟବସ୍ତୁ. ଆତ୍ମା କେବଳ ରହିଛନ୍ତି, ଜଡ଼ ନାହିଁ । ତଥାପି ସେମାନେ ଭଗବାନଙ୍କ ନିକଟରେ ଯେଉଁ ଯେଉଁ ବିଷୟରେ ପ୍ରାର୍ଥନା କରନ୍ତି, ସେଗୁଡ଼ିକ ପ୍ରାୟ ହିଁ ଆତ୍ମାବିଷୟକ ନୁହେଁ । ସେମାନେ ସର୍ବଦା ହିଁ ଜଡ଼ବସ୍ତୁ ଚାହାନ୍ତି । ସେମାନଙ୍କ ପ୍ରାର୍ଥନାରେ ଜଡ଼ବସ୍ତୁରୁ ଆତ୍ମାକୁ ପୃଥକ୍ କରାହୁଏ ନାହିଁ । ଧର୍ମର କେତେଦୂର ଅବନତି ଘଟିଅଛି !! ସମଗ୍ର ବିଷୟଟି ହିଁ ନକଲ ହୋଇଗଲଣି । ବର୍ଷପରେ ବର୍ଷ ବିତିଗଲେ ବି କୌଣସି ଆଧ୍ୟାତ୍ମିକ ଉପଲବ୍ଧି ହେଉନାହିଁ । ମଣିଷ କେବଳ ଗୋଟିଏ ଜିନିଷ ପାଇଁ ଆକାଙ୍କ୍ଷା କରିବ—ଆତ୍ମା ନିମିତ୍ତ; କାରଣ ଏକମାତ୍ର ଆତ୍ମା ହିଁ ରହିଛନ୍ତି । ଏହା ହିଁ ଆଦର୍ଶ, ଯଦି ଆପଣ ବର୍ତ୍ତମାନ ହିଁ ଏହା ଲାଭ କରିପାରି ନାହାନ୍ତି, ତେବେ କହନ୍ତୁ 'ମୁଁ ଏହା ଲାଭ କରି ପାରୁନାହିଁ ।' କିନ୍ତୁ ଆପଣ ତ ତାହା କରନ୍ତି ନାହିଁ । ଧର୍ମକୁ ଆପଣମାନେ ନିମ୍ନସ୍ତର ପର୍ଯ୍ୟନ୍ତ ଓହ୍ଲାଇ ଆଣି ଅତ୍ମା ନାମରେ ଜଡ଼ ବସ୍ତୁ ଖୋଜି ବୁଲୁଛନ୍ତି । ଆପଣମାନେ ସମସ୍ତେ ନାସ୍ତିକ, ଇନ୍ଦ୍ରିୟ ବ୍ୟତୀତ ଆଉ କୌଣସି କିଛିରେ ବିଶ୍ୱାସ କରନ୍ତି ନାହିଁ । 'ଅମୁକ ବ୍ୟକ୍ତି ଏହିପରି କହିଥିଲା—ଏହା ମଧ୍ୟରେ କିଛି ଥାଇପାରେ, ଆସ, ଚେଷ୍ଟା କରିବା ଆଉ ମଜା ଦେଖିବା । ହୁଏତ କୌଣସି ଉପକାର ହେବ, ହୁଏତ ମୋ ଭଙ୍ଗା ଗୋଡ଼ଟି ଯୋଡ଼ି ହୋଇଯିବ ।'

ରୁଗ୍ଣ ବ୍ୟକ୍ତିମାନେ ବଡ଼ ଦୁଃଖୀ । ସେମାନେ ଈଶ୍ୱରଙ୍କର ପରମ ଉପାସକ । କାରଣ ସେମାନଙ୍କର ଧାରଣା, ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କଲେ, ସେ ସେମାନଙ୍କୁ ରୋଗମୁକ୍ତ କରିଦେବେ । ଯଦି ଏହି ପ୍ରାର୍ଥନା ଆନ୍ତରିକ ହୁଏ ଏବଂ ଯଦି ସେମାନେ ଏହି ପ୍ରାର୍ଥନା ଧର୍ମ ନୁହେଁ ବୋଲି ବୁଝନ୍ତି, ତେବେ ଏଭଳି ପ୍ରାର୍ଥନା ମନ୍ଦ ନୁହେଁ । ଗୀତାରେ ଶ୍ରୀକୃଷ୍ଣ କହିଛନ୍ତି—'ଚାରି ପ୍ରକାର ଲୋକ ମୋତେ ଭଜନା କରନ୍ତି—ଆର୍ତ୍ତ, ଅର୍ଥାର୍ଥୀ, ଜିଜ୍ଞାସୁ ଓ ଜ୍ଞାନୀ (ଗୀତା, ୭-୧୬) । ଆର୍ତ୍ତମଣିଷ ଦୁଃଖମୋଚନ ପାଇଁ ଭଗବାନଙ୍କ ନିକଟରେ ପ୍ରାର୍ଥନା କରେ । ଅସୁସ୍ଥ ହେଲେ ସେମାନେ ଆରୋଗ୍ୟକାମନାରେ ପୂଜା କରନ୍ତି । ସମ୍ପଦ ହରାଇଲେ ସେମାନେ ଫେରି ପାଇବା ଲାଗି ପ୍ରାର୍ଥନା କରନ୍ତି ଏବଂ ଆଉ କେତେକଙ୍କର ମନ କାମନା-ବାସନାରେ ପୂର୍ଣ୍ଣ ବୋଲି ଭଗବାନଙ୍କ ନିକଟରୁ ନାମ, ଯଶ, ସମ୍ପଦ, ପ୍ରତିଷ୍ଠା ଇତ୍ୟାଦି ପ୍ରାର୍ଥନା କରନ୍ତି । ସେମାନଙ୍କର ପ୍ରାର୍ଥନା ଏହିଭଳି—'ହେ ମାତା ମେରି, ମୁଁ ଯାହା ଚାହେଁ, ତାହା

---

* ବାଲସ୍ତାବତ୍ କ୍ରୀଡ଼ାସକ୍ତସ୍ତରୁଣସ୍ତାବତ୍ ତରୁଣୀରକ୍ତଃ ।
ବୃଦ୍ଧସ୍ତାବଚ୍ଚିନ୍ତାମଗ୍ନଃ ପରମେ ବ୍ରହ୍ମଣି କୋଽପି ନ ଲଗ୍ନଃ ॥
—ମୋହମୁଦ୍ଗର, ଶଙ୍କରାଚାର୍ଯ୍ୟ

ପାଇଲେ ତୁମକୁ ପୂଜାର୍ପଣ କରିବ । ତୁମେ ଯଦି ମୋର ପ୍ରାର୍ଥନା ପୂର୍ଣ୍ଣ କର, ତେବେ ମୁଁ ଈଶ୍ୱରଙ୍କ ପୂଜା କରିବ ଓ ତୁମକୁ ସବୁ କିଛିର ଅଂଶ ଦେବ ।' ଯେଉଁମାନେ ଏତେଦୂର ଜଡ଼ବାଦୀ ନୁହଁନ୍ତି, ଅଥଚ ଈଶ୍ୱରବିଶ୍ୱାସୀ ବି ନୁହଁନ୍ତି, ସେଭଳି ଲୋକେ ହିଁ ତାଙ୍କୁ ଜାଣିବାକୁ ଚାହାଁନ୍ତି । ସେମାନେ ତତ୍ତ୍ୱାନ୍ୱେଷୀ । ସେମାନେ ଦର୍ଶନ ଓ ଧର୍ମଶାସ୍ତ୍ର ଅଧ୍ୟୟନ କରନ୍ତି, ବକ୍ତୃତାଦି ଶ୍ରବଣ କରନ୍ତି, ସେମାନେ ଜିଜ୍ଞାସୁ । ଯେଉଁମାନେ ଭଗବାନଙ୍କ ଆରାଧନା କରନ୍ତି ଏବଂ ତାଙ୍କୁ ଜାଣିପାରନ୍ତି, ସେମାନେ ସର୍ବଶେଷ ଶ୍ରେଣୀର ସାଧକ । ଏହି ଚାରିପ୍ରକାର ସାଧକମାନେ ଭଲ, କେହି ମନ୍ଦ ନୁହନ୍ତି । ସେମାନେ ସମସ୍ତେ ହିଁ ଈଶ୍ୱରଙ୍କର ଆରାଧନା କରନ୍ତି ।

କିନ୍ତୁ ଆମେମାନେ ଶିଷ୍ୟ ହେବାର ସାଧନା କରୁଅଛୁ । ଆମର ସମ୍ପୂର୍ଣ୍ଣ ଉଦ୍ଦେଶ୍ୟ ହେବ, ପରମ ସତ୍ୟଙ୍କୁ ଜାଣିବା । ଆମମାନଙ୍କର ଲକ୍ଷ୍ୟ ଉଚ୍ଚତମ । 'ସମ୍ପୂର୍ଣ୍ଣ ଉପଲବ୍ଧି' ପ୍ରଭୃତି ବଡ଼ ବଡ଼ କଥା, ଆମେ କହୁଥାଉଁ, କିନ୍ତୁ କଥା ଅନୁଯାୟୀ କାର୍ଯ୍ୟ କରିବା ଉଚିତ୍ । ଆତ୍ମଭାବରେ ପ୍ରତିଷ୍ଠିତ ହୋଇ ଏବେ ଆସନ୍ତୁ, ଆମେମାନେ ଆତ୍ମାର ଉପାସନା କରିବା । ଆମମାନଙ୍କର ସାଧନାର ଭିତ୍ତି, ସାଧନାର ପଥ ଓ ଚରମଫଳ ସବୁ ଚୈତନ୍ୟମୟ ହେଉ । କୌଣସିଠାରେ ଜଡ଼ଜଗତ୍ ରହିବ ନାହିଁ । ଜଗତ୍ ଚାଲିଯାଉ, ମହାଶୂନ୍ୟରେ ଘୂରୁଥାଉ— କିଏ ତାକୁ ଖାତିର୍‌କରେ ! ଆତ୍ମାରେ ହିଁ ପ୍ରତିଷ୍ଠିତ ହୁଅ । ଏହା ହିଁ ଲକ୍ଷ୍ୟ । ଆମେ ଜାଣୁ, ଏବେ ମଧ୍ୟ ଆମେ ଲକ୍ଷ୍ୟ ସ୍ଥଳରେ ପହଞ୍ଚିପାରି ନାହୁଁ । କିନ୍ତୁ ସେଥିରେ କିଛି ଯାଏଆସେ ନାହିଁ । ହତାଶ ହେବ ନାହିଁ । ହତାଶ ହୋଇ ଆଦର୍ଶକୁ ନୀଚ ସ୍ତରକୁ ଓହ୍ଲାଇ ଆଣିବ ନାହିଁ । ପ୍ରୟୋଜନୀୟ କଥା ହେଲା—ତୁମେ ନିଜକୁ ଯେତେଦୂର ପାର, ପ୍ରାଣହୀନ ଜଡ଼ଦେହ ବୋଲି ମନେକର ନାହିଁ । ଯେତେଦୂର ପାର ନିଜକୁ ଜ୍ୟୋତିର୍ମୟ, ଅମର ଆତ୍ମା ବୋଲି ଚିନ୍ତା କର । ଯେତେ ତୁମେ ନିଜକୁ ଜ୍ୟୋତିର୍ମୟ ଅମର ଆତ୍ମାରୂପେ ଚିନ୍ତା କରିବ, ସେତେ ହିଁ ଦେହ ଓ ଇନ୍ଦ୍ରିୟର ବନ୍ଧନ ଭିତରୁ ନିଜକୁ ମୁକ୍ତ କରିବା ପାଇଁ ବ୍ୟାକୁଳ ହେବ । ଏହା ହିଁ ତୀବ୍ର ମୁମୁକ୍ଷୁତ୍ୱ ।

ଶିଷ୍ୟ ହେବାର ଚତୁର୍ଥ ଏବଂ ସର୍ବଶେଷ ସାଧନ ନିତ୍ୟାନିତ୍ୟ-ବିଚାର । ଈଶ୍ୱର ହିଁ ଏକମାତ୍ର ନିତ୍ୟବସ୍ତୁ । ସଦାସର୍ବଦା ମନ ଈଶ୍ୱରଙ୍କ ପ୍ରତି ଆକୃଷ୍ଟ ରହିବ, ନିବେଦିତ ରହିବ । ଈଶ୍ୱର ହିଁ ଅଛନ୍ତି, ଆଉ କିଛି ନାହିଁ । ଆଉସବୁ କିଛି ଆସେ ଏବଂ ଚାଲିଯାଏ । ଏହି ସଂସାର ପାଇଁ କୌଣସି ପ୍ରକାର ବାସନା ହିଁ ଭ୍ରମ । କାରଣ, ଏ ସଂସାର ଅନିତ୍ୟ । ଯେତେବେଳଯାଏ ଅନ୍ୟ ସବୁ କିଛି ଅନିତ୍ୟ ବୋଲି ବୋଧ ହୁଏ, ସେତେବେଳ ପର୍ଯ୍ୟନ୍ତ ଏକମାତ୍ର ଈଶ୍ୱରଙ୍କ ସମ୍ବନ୍ଧରେ କ୍ରମେ କ୍ରମେ ମନକୁ ସଚେତନ କରି ରଖିବାକୁ ହେବ ।

ଯେ ଶିଷ୍ୟ ହେବାକୁ ଚାହାଁନ୍ତି, ତାଙ୍କୁ ଏହି ସମସ୍ତ ସର୍ତ୍ତ ପୂର୍ଣ୍ଣ କରିବାକୁ ହେବ । ନଚେତ୍ ସେ ପ୍ରକୃତ ଗୁରୁଙ୍କ ସାନ୍ନିଧ୍ୟକୁ ଆସିପାରିବେ ନାହିଁ ଏବଂ ଯଦି ସୌଭାଗ୍ୟବଶତଃ ଗୁରୁଲାଭ ମଧ୍ୟ ହୁଏ, ତଥାପି ଗୁରୁ ଯେଉଁ ଆଧ୍ୟାତ୍ମିକ ଶକ୍ତି ତାଙ୍କ ମଧ୍ୟରେ ସଞ୍ଚାର କରିବେ, ତାହା ଦ୍ୱାରା ଉଦ୍‌ବୁଦ୍ଧ ହୋଇପାରିବେ ନାହିଁ । ଏ ସମସ୍ତ ସାଧନା ମଧ୍ୟରେ କୌଣସି ପ୍ରକାର

ଆପୋଷ ଚଳିବ ନାହିଁ । ଏହି ସର୍ତ୍ତଗୁଡ଼ିକ ପୂର୍ଣ୍ଣ କଲେ ଏବଂ ଏହିଭଳି ପ୍ରସ୍ତୁତ ରହିଲେ ଶିଷ୍ୟଙ୍କର ହୃଦସ୍ଥକମଳ ବିକଶିତ ହୋଇ ଉଠିବ । ସେତେବେଳେ ହିଁ ମନ୍ତ୍ରମାଛିମାନେ ଆସିବେ । ଶିଷ୍ୟ ସେତେବେଳେ ଜାଣିପାରିବେ ଯେ, ଗୁରୁ ତାଙ୍କର ଦେହ ଭିତରେ, ତାଙ୍କ ଅନ୍ତରର ଅନ୍ତଃସ୍ଥଳରେ ହିଁ ବିରାଜିତ ଥିଲେ । ସେତିକିବେଳେ ହିଁ ସେ ବିକଶିତ ହୋଇ ଉଠନ୍ତି, ସେତିକିବେଳେ ହିଁ ସେ ଉପଲବ୍ଧି କରନ୍ତି, ସଂସାର-ସମୁଦ୍ର ପାର ହୋଇ ସେ ଜନ୍ମମୃତ୍ୟୁର ଅତୀତ ହୋଇଯାନ୍ତି । ଏହି ଭୟଙ୍କର ସମୁଦ୍ର ସେ ପାର ହୋଇଛନ୍ତି, କୌଣସି ଲାଭ ବା ପ୍ରଶଂସାର କଥା ଚିନ୍ତା ନ କରି କରୁଣାବଶତଃ ସେ ସେତେବେଳେ ଅପରଙ୍କୁ ବି ସଂସାର-ସାଗରର ଆରପାରିକୁ ଯିବା ଲାଗି ସାହାଯ୍ୟ କରନ୍ତି ।

## ଗୁରୁଙ୍କ ଯୋଗ୍ୟତା ସମ୍ପର୍କରେ ପ୍ରଶ୍ନୋତ୍ତର

ସ୍ୱାମୀଜୀ ଖୁବ୍ ଜୋର୍ ଦେଇ କହିଲେ ଯେ, ବ୍ୟବସାୟୀସୁଲଭ ହିସାବୀ ମନୋଭାବ ଛାଡ଼—ସାମାନ୍ୟ ଗୋଟିଏ ଜିନିଷ ପ୍ରତି ଯେଉଁ ଆସକ୍ତ ରହିଛ, ତାକୁ ଛାଡ଼ିପାରିଲେ ମୁଁ ବୁଝିବି ଯେ, ତୁମେ ମୁକ୍ତିପଥରେ ପାଦଟିଏ ରଖିଲଣି । ମୁଁ ତ କୌଣସି ପତିତା, ପାପୀ ବା ସାଧୁ ଦେଖିବାକୁ ପାଉନାହିଁ । ଯାହାକୁ ପତିତା କହୁଛ, ସେ ବି ତ ମହାମାୟା । ସନ୍ନ୍ୟାସୀମାନେ ଥରେ ବା ଦୁଥର ତାକୁ 'ମା' ବୋଲି ଆହ୍ୱାନ କରନ୍ତି, ତା'ପରେ ପୁନଶ୍ଚ ସେମାନଙ୍କର ଭ୍ରାନ୍ତ ଧାରଣା ଜନ୍ମେ; ସେମାନେ କହନ୍ତି, 'ହେ ଅସତୀ, ପତିତା ନାରୀ; ଦୂର ହୋଇଯାଅ ମୋ ପାଖରୁ ।' ଗୋଟିଏ ମୁହୂର୍ତ୍ତରେ ହିଁ ସବୁ ଅଜ୍ଞାନ ଦୂର ହୋଇଯାଇପାରେ । ଯେଉଁମାନେ କହନ୍ତି ଯେ, ଅଜ୍ଞାନ ଧୀରେ ଧୀରେ ଦୂର ହୁଏ ବୋଲି, ସେମାନେ ମୂର୍ଖ । ବହୁଗୁରୁ ନିଜ ଆଦର୍ଶରୁ ବିଚ୍ୟୁତ ହୋଇଯିବା ପରେ ମଧ୍ୟ ଶିଷ୍ୟମାନେ ସେମାନଙ୍କ ପ୍ରତି ଅନୁଗତ ଥାନ୍ତି । ଏ କଥା ବହୁ ସ୍ଥଳରେ ଦେଖାଯାଇଛି । ରାଜପୁତନାରେ ଦେଖିଛି, ଜଣେ ଭକ୍ତଙ୍କ ଗୁରୁ ଖ୍ରୀଷ୍ଟଧର୍ମରେ ଧର୍ମାନ୍ତରିତ ହେବା ପରେ ମଧ୍ୟ ତାଙ୍କର ପୁରାତନ ଶିଷ୍ୟ ତାଙ୍କୁ ନିୟମିତ ଭାବରେ ପୂର୍ବଭଳି ସାହାଯ୍ୟ ଦେଉଥିଲେ, କେବେ ସାହାଯ୍ୟ ବନ୍ଦ କରିନଥିଲେ । ତୁମେମାନେ ପାଶ୍ଚାତ୍ୟ ଧାରଣା ଛାଡ଼ । କୌଣସି ବିଶେଷ ଗୁରୁଙ୍କ ଉପରେ ତୁମେମାନେ ଯଦି ତୁମର ସମସ୍ତ ବିଶ୍ୱାସ ଓ ଆସ୍ଥା ସ୍ଥାପନ କରିଛ, ତେବେ ସମସ୍ତ ଶକ୍ତି ଦେଇ ତାଙ୍କୁ ହିଁ ଧରିଥାଅ ।

ଏକମାତ୍ର ବାଳକମାନେ ହିଁ କହିଥାନ୍ତି ଯେ, ବେଦାନ୍ତ ଭିତରେ କୌଣସି ନୈତିକତା ନାହିଁ । ସେମାନଙ୍କ କଥା ମଧ୍ୟ ଗୋଟିଏ ଦୃଷ୍ଟିରୁ ଠିକ୍ । କାରଣ, ବେଦାନ୍ତ ନୈତିକତାର ବହୁ ଊର୍ଦ୍ଧ୍ୱରେ । ତୁମେମାନେ ସନ୍ନ୍ୟାସୀ ହୋଇଛ, ଉଚ୍ଚ ଚିନ୍ତା ଓ ଆଲୋଚନା କର ।

ତୁମମାନଙ୍କର ଜୋର୍ କରି ଅନ୍ତତଃ ଗୋଟିଏ ବସ୍ତୁରେ ବ୍ରହ୍ମବୁଦ୍ଧି ଆଣିବାକୁ ହେବ । ଶ୍ରୀରାମକୃଷ୍ଣଙ୍କୁ ଈଶ୍ୱର ବୋଲି ଚିନ୍ତା କରିବା ଅନେକ ସହଜ । କିନ୍ତୁ ସେଥିରେ ଏତିକି ହେଉଛି ବିପଦ ଯେ—ଆମେମାନେ ମନୁଷ୍ୟଠାରେ ଈଶ୍ୱରବୁଦ୍ଧି ଆଣି ପାରୁ ନାହିଁ । ଈଶ୍ୱର ତ ନିରାକାର, ନିତ୍ୟ ଏବଂ ସର୍ବତ୍ର ବିରାଜିତ ।

ତାଙ୍କୁ ସାକାର ବୋଲି ଚିନ୍ତା କରିବା ମହାପାପ, ଏପରି ଚିନ୍ତା କଲେ ଈଶ୍ୱର-ନିନ୍ଦା କରାହୁଏ । କିନ୍ତୁ ସାକାର ଉପାସନାର ମୂଳ କଥା ହେଲା, ଏହି ପ୍ରକାର ଉପାସନା ମାଧ୍ୟମରେ ଉପାସକ ଭଗବଦ୍-ବିଷୟକ ଧାରଣାର ଉତ୍କର୍ଷତା ଲାଭ କରେ ।

## ମନ୍ତ୍ର ଓ ମନ୍ତ୍ର-ଚୈତନ୍ୟ

ମନ୍ତ୍ରବାଦର ସମର୍ଥକମାନଙ୍କ ବିଶ୍ୱାସ ଯେ, କେତେକ ଶବ୍ଦ ଗୁରୁ ବା ଶିଷ୍ୟପରମ୍ପରାରେ ଚାଲି ଆସିଛି । ଏହିସବୁ ଶବ୍ଦର ବାରମ୍ବାର ଉଚ୍ଚାରଣରେ ବା ଜପରେ ଏକପ୍ରକାର ଉପଲବ୍ଧି ହୁଏ । ମନ୍ତ୍ର-ଚୈତନ୍ୟ ଶବ୍ଦର ଦୁଇ ପ୍ରକାର ଅର୍ଥ କରାଯାଏ । ଗୋଟିଏ ମତରେ—ମନ୍ତ୍ରଜପ କରୁକରୁ ଜାପକର (ଜପକାରୀର) ସମ୍ମୁଖରେ ତା'ର ଇଷ୍ଟ-ଦେବତାଙ୍କର ଆବିର୍ଭାବ ହୁଏ । 'ଇଷ୍ଟ' ହେଉଛନ୍ତି ମନ୍ତ୍ରର ବିଷୟ ବା ମନ୍ତ୍ରର ଦେବତା । ଆଉ ଗୋଟିଏ ମତ ହେଲା —ଯେଉଁ ଗୁରୁଙ୍କର ଉପଯୁକ୍ତ ଶକ୍ତି ନାହିଁ, ତାଙ୍କ ନିକଟରୁ ମନ୍ତ୍ରଦୀକ୍ଷା ନେଲେ, ସେହି ମନ୍ତ୍ରରେ ଚେତନା-ସଞ୍ଚାର କରିବାକୁ ହେଲେ ଦୀକ୍ଷିତଙ୍କୁ କେତେଗୁଡ଼ିଏ ଅନୁଷ୍ଠାନ କରିବାକୁ ହୁଏ (ପୁରଶ୍ଚରଣ), ସେତେବେଳେ ଯାଇ ସେହି ମନ୍ତ୍ରଜପର ଫଳ ମିଳେ । ବିଭିନ୍ନ ମନ୍ତ୍ରରେ ଚେତନା ସଞ୍ଚାରିତ ହେଲେ ତା'ର ବିଭିନ୍ନ ଲକ୍ଷଣ ଦେଖାଯାଏ । ଗୋଟିଏ ସାଧାରଣ ଲକ୍ଷଣ ହେଲା—ବହୁ କ୍ଷଣ ଜପ କଲେ ବି ଜପକାରୀ କୌଣସି ପ୍ରକାରର ଅସ୍ୱସ୍ତି ବୋଧ କରେ ନାହିଁ ଏବଂ ଅତିଅଳ୍ପ ସମୟ ମଧ୍ୟରେ ହିଁ ତା'ର ମନଃସଂଯୋଗ ହୁଏ । ଏ ହେଲା ତାନ୍ତ୍ରିକ ମନ୍ତ୍ର କଥା ।

ବୈଦିକ ଯୁଗରୁ ହିଁ ମନ୍ତ୍ର ସମ୍ପର୍କରେ ଏହି ଦୁଇଟି ମତ ଚାଲି ଆସିଛି । ଯାସ୍କ ଓ ଅନ୍ୟମାନଙ୍କର ଅଭିମତ ହେଲା, ବେଦମନ୍ତ୍ରର ଅର୍ଥ ଅଛି । କିନ୍ତୁ ପ୍ରାଚୀନ ମନ୍ତ୍ରଶାସ୍ତ୍ରୀଗଣ କହନ୍ତି, ଏଗୁଡ଼ିକର କୌଣସି ଅର୍ଥ ହିଁ ନାହିଁ । ତେବେ କୌଣସି କୌଣସି ଯଜ୍ଞାନୁଷ୍ଠାନରେ ଏହି ସକଳ ମନ୍ତ୍ର ବାରମ୍ବାର ଉଚ୍ଚାରିତ ହେଲେ, ଏଗୁଡ଼ିକ ଯଜ୍ଞକର୍ତ୍ତାଙ୍କୁ ବୈଷୟିକ ସୁଖ-ସମୃଦ୍ଧି ଅଥବା ଆଧ୍ୟାତ୍ମିକ ଜ୍ଞାନ ପ୍ରଦାନ କରେ । ଉପନିଷଦ୍‌ର ମନ୍ତ୍ର-ଆବୃତ୍ତି ଦ୍ୱାରା ଆଧ୍ୟାତ୍ମିକ ଜ୍ଞାନ ଲାଭ ହୁଏ ।

## ଈଶ୍ୱରଙ୍କ ସମ୍ପର୍କରେ ଧାରଣା

ପ୍ରକୃତିର ନିୟମ-ବନ୍ଧନର ଅତୀତ ସର୍ବପ୍ରକାର ସ୍ୱାଧୀନ ସ୍ୱତନ୍ତ୍ର କାହାରି ବି ସନ୍ଧାନ-ଲାଭ କରିବାକୁ ହିଁ ମଣିଷର ଅନ୍ତର ସବୁବେଳେ ଆକାଙ୍କ୍ଷା କରିଆସିଛି । ବେଦାନ୍ତବାଦୀ-ମାନେ ଏହିଭଳି ନିତ୍ୟ ଶାଶ୍ୱତ ପୁରୁଷ ଈଶ୍ୱରଙ୍କଠାରେ ବିଶ୍ୱାସ କରନ୍ତି । କିନ୍ତୁ ବୌଦ୍ଧ ଓ ସାଂଖ୍ୟବାଦୀମାନେ ବିଶ୍ୱାସ କରନ୍ତି ଜନ୍ୟ ଈଶ୍ୱରଙ୍କଠାରେ—ଅର୍ଥାତ୍ ଯେ ଏକ କାଳରେ ମନୁଷ୍ୟ ଥିଲେ, ତାପରେ ଆଧ୍ୟାତ୍ମିକ ଶକ୍ତି ଅର୍ଜନ କରି ଈଶ୍ୱରରେ ପରିଣତ ହୋଇଛନ୍ତି । ପୁରାଣସମୂହରେ ଅବତାରବାଦ ମାଧ୍ୟମରେ ଏହି ଦୁଇଟି ମତର ସାମଞ୍ଜସ୍ୟ ସାଧିତ ହୋଇଛି । ଏଥିରେ କୁହାଯାଇଛି—'ଜନ୍ୟଈଶ୍ୱର' ତ ନିତ୍ୟ (ଶାଶ୍ୱତ) ଈଶ୍ୱର ବ୍ୟତୀତ ଆଉ କିଛି ନୁହନ୍ତି । ମାୟାଦ୍ୱାରା ସେ କେବଳ ଏହି ପ୍ରକାର ରୂପ ପରିଗ୍ରହ କରିଛନ୍ତି ।

ଏହି 'ନିତ୍ୟ-ଈଶ୍ୱର' ବିରୋଧରେ ସାଂଖ୍ୟବାଦୀମାନେ ଯୁକ୍ତି ଦିଅନ୍ତି— ମୁକ୍ତ ଆତ୍ମା କି ଭାବରେ ଏହି ବିଶ୍ୱବ୍ରହ୍ମାଣ୍ଡ ସୃଷ୍ଟି କରିପାରିବେ ? ମିଥ୍ୟା ଭିତ୍ତି ଉପରେ ସାଂଖ୍ୟବାଦୀମାନଙ୍କର ଏହି ଯୁକ୍ତି ସ୍ଥାପିତ । ମୁକ୍ତ ଆତ୍ମା ତ କାହାର ହିଁ ଅଧୀନ ନୁହନ୍ତି । ତାଙ୍କୁ ତ ତୁମେ ନିର୍ଦ୍ଦେଶ ଦେଇପାରିବ ନାହିଁ ଯେ—ଏହାକର ଅଥବା ତାହା କର ନାହିଁ । ସେ ମୁକ୍ତ, ସେ ଯାହା ଇଚ୍ଛା ତାହା କରିପାରନ୍ତି । ବେଦାନ୍ତ ମତରେ 'ଜନ୍ୟ ଈଶ୍ୱର' ବ୍ରହ୍ମାଣ୍ଡର ସୃଷ୍ଟି ସ୍ଥିତି ବା ଲୟ କରିପାରନ୍ତି ନାହିଁ ।

## ଈଶ୍ୱର : ବ୍ୟକ୍ତ ଓ ଅବ୍ୟକ୍ତ

ଯାହାଙ୍କୁ ତୁମେମାନେ ବ୍ୟକ୍ତିତ୍ୱଭାବାପନ୍ନ ଈଶ୍ୱର ବୋଲି କୁହ, ମୋର ଧାରଣା, ସେ ଏବଂ ନୈର୍ବ୍ୟକ୍ତିକ ସତ୍ତା ଏକ ସମୟରେ ହିଁ ସାକାର ନିରାକାର । ଆମେମାନେ ମଧ୍ୟ ବ୍ୟକ୍ତିତ୍ୱସମ୍ପନ୍ନ ନୈର୍ବ୍ୟକ୍ତିକ ସତ୍ତା । କଥାଟି ନିରପେକ୍ଷ ଭାବେ ବ୍ୟବହାର କଲେ ଆମେମାନେ 'ଅବ୍ୟକ୍ତ' ଏବଂ ଆପେକ୍ଷିକଭାବେ ବ୍ୟବହାର କଲେ ଆମେମାନେ 'ବ୍ୟକ୍ତ' । ତୁମେମାନେ ପ୍ରତ୍ୟେକେ ହିଁ ବିଶ୍ୱ-ସତ୍ତା, ପ୍ରତ୍ୟେକେ ସର୍ବବ୍ୟାପୀ । ଏହା ଶୁଣିଲାମାତ୍ରେ ପ୍ରଥମେ ମୁଣ୍ଡ ଘୂରିଯାଏ । କିନ୍ତୁ ମୁଁ ତୁମମାନଙ୍କ ସାମ୍ନାରେ ଛିଡ଼ା ହୋଇଛି, ଏକଥା ଯେତିକି ସତ୍ୟ, ସେ କଥା ମଧ୍ୟ ସେତିକି ସତ୍ୟ । ଆତ୍ମା କିପରି ସର୍ବବ୍ୟାପୀ ନ ହେବ ? ଆତ୍ମାର ଦୈର୍ଘ୍ୟ ନାହିଁ, ପ୍ରସ୍ଥ ନାହିଁ, ବେଧ ନାହିଁ—ଜଡ଼ର କୌଣସି ଧର୍ମ ହିଁ ଆତ୍ମାଠାରେ ନାହିଁ । ଆମେ ସମସ୍ତେ ଯଦି ଆତ୍ମା, ତେବେ ଦେଶଦ୍ୱାରା (Space) ପରିଚ୍ଛିନ୍ନ ହୋଇପାରିବୁ ନାହିଁ । ଦେଶ ବା ସ୍ଥାନ ଦେଶ ବା ସ୍ଥାନକୁ କେବଳ ସୀମାବଦ୍ଧ କରିପାରେ, ଜଡ଼ ସୀମାବଦ୍ଧ କରିପାରେ ଜଡ଼କୁ । ଆମେ ଯଦି ଶରୀର ଭିତରେ ଆବଦ୍ଧ ଥାନ୍ତୁ, ତା'ହେଲେ ଆମେ ଜଡ଼ବସ୍ତୁ ହିଁ ହୋଇଥାନ୍ତୁ । ଶରୀର, ଆତ୍ମା, ସବୁକିଛି ହିଁ ଜଡ଼ ହୋଇଥାନ୍ତା । 'ଶରୀରରେ ବାସ କରିବା', 'ଆତ୍ମାକୁ ଶରୀରରେ ଅଟକେଇ ରଖିବା' ପ୍ରଭୃତି କଥାଗୁଡ଼ିକ କେବଳ ସୁବିଧା ପାଇଁ ବ୍ୟବହୃତ ହୋଇଥାନ୍ତା; ତାହାର ଅତିରିକ୍ତ ଏହାର ଆଉ କିଛି ଅର୍ଥ ନ ଥାନ୍ତା ।

ତୁମମାନଙ୍କ ଭିତରୁ ଅନେକଙ୍କର ମନେଥିବ—ଆତ୍ମାର କି ସଂଜ୍ଞା ମୁଁ ଦେଇଛି । ପ୍ରତ୍ୟେକଟି ଆତ୍ମା ହେଉଛି ଗୋଟିଏ ଗୋଟିଏ ବୃତ୍ତ, ଗୋଟିଏ ବିନ୍ଦୁରେ ଯାହାର କେନ୍ଦ୍ର ଏବଂ ଯାହାର ପରିଧି କେଉଁଠାରେ ନାହିଁ । କେନ୍ଦ୍ର ହେଉଛି ଶରୀରରେ, ସେଠାରେ ହିଁ ସବୁ କର୍ମଶକ୍ତି ପ୍ରକାଶିତ । ତୁମେମାନେ ସର୍ବବ୍ୟାପୀ, ତେବେ ସତ୍ତା-ଚେତନା ଗୋଟିଏ ବିନ୍ଦୁରେ ଘନୀଭୂତ । ସେହି ବିନ୍ଦୁଟି କିଛି ଜଡ଼କଣା ସଂଗ୍ରହ କରି ସେଗୁଡ଼ିକୁ ଆତ୍ମପ୍ରକାଶର ଯନ୍ତ୍ରରେ ପରିଣତ କରିଛି । ଯାହା ମାଧ୍ୟମରେ ସତ୍ତା ନିଜକୁ ପ୍ରକାଶ କରେ, ତାକୁ କୁହାଯାଏ 'ଶରୀର' ।

ତା' ହେଲେ ତୁମେ ସର୍ବତ୍ର ରହିଛ । ଯେତେବେଳେ ଗୋଟିଏ ଶରୀର ବା ଯନ୍ତ୍ର ଆଉ କାର୍ଯ୍ୟ କରିପାରେ ନାହିଁ, ସେତେବେଳେ ଶରୀରର କେନ୍ଦ୍ର 'ତୁମେ' ବାହାରିଯାଅ; ପୁନର୍ବାର ନୂତନ ସ୍ଥୂଳ ବା ସୂକ୍ଷ୍ମ ଜଡ଼କଣା ସଂଗ୍ରହ କରି ସେମାନଙ୍କ ମାଧ୍ୟମରେ ପୁଣି ଥରେ କାର୍ଯ୍ୟ କରିଚାଲ । ଏହି ହେଲା ମନୁଷ୍ୟ । ତା' ହେଲେ ଈଶ୍ୱର କ'ଣ ? ଈଶ୍ୱର ହେଉଛନ୍ତି

ଗୋଟିଏ ବୃତ୍ତ, ଯାହାର ପରିଧି କେଉଁଠି ନାହିଁ ଏବଂ ଯାହାର କେନ୍ଦ୍ର ସର୍ବତ୍ର । ଏହି ବୃତ୍ତର ପ୍ରତିଟି ବିନ୍ଦୁ ଚେତନ ଓ ସକ୍ରିୟ । ସୀମାବଦ୍ଧ ଆତ୍ମା ଆମ ସଙ୍ଗେ ସମାନ କାମ କରି ଚାଲିଛନ୍ତି । ଆମର କେବଳ ଗୋଟିଏ ଚେତନବିନ୍ଦୁ, ସେହି ବିନ୍ଦୁ ଥରେ ଆଗେଇ ଚାଲିଛି ଓ ପୁଣି ଥରେ ପଛେଇ ଚାଲିଛି ।

ବିଶ୍ୱବ୍ରହ୍ମାଣ୍ଡ ତୁଳନାରେ ଶରୀର ଯେପରି ଅତି କ୍ଷୁଦ୍ର, ଈଶ୍ୱରଙ୍କ ସହ ତୁଳନାରେ ବିଶ୍ୱବ୍ରହ୍ମାଣ୍ଡ ସେହିପରି ନଗଣ୍ୟ । ଆମେ ଯେତେବେଳେ କହୁ, ଈଶ୍ୱର କଥା କହୁଛନ୍ତି, ସେତେବେଳେ ତା'ର ଅର୍ଥ—ସେ ବିଶ୍ୱବ୍ରହ୍ମାଣ୍ଡ ମାଧ୍ୟମରେ କହୁଛନ୍ତି । ଆମେ ଯେତେବେଳେ କହୁ—ସେ ଦେଶକାଳସୀମାର ଅତୀତ, ତା'ର ଅର୍ଥ—ସେ ବ୍ୟକ୍ତିତ୍ୱ-ଶୂନ୍ୟ ସତ୍ତା । ଏହି ଉଭୟ ହିଁ ଏକ ସତ୍ତା ।

ଗୋଟିଏ ଦୃଷ୍ଟାନ୍ତ ଦେଉଛି—ଆମେ ସେଠାରେ ଠିଆ ହୋଇ ସୂର୍ଯ୍ୟଙ୍କୁ ଦେଖୁଛୁ । ମନେକର, ତୁମେ ସୂର୍ଯ୍ୟ ଆଡ଼କୁ ଅଗ୍ରସର ହେଉଛ । କେତେ ହଜାର ମାଇଲ ପାଖକୁ ଯାଇ ଦେଖିବ, ଆଉ ଗୋଟିଏ ସୂର୍ଯ୍ୟ, ଅନେକ ବଡ଼ । ସର୍ବଶେଷରେ ଦେଖିବ, ପ୍ରକୃତ ସୂର୍ଯ୍ୟ ଲକ୍ଷ ଲକ୍ଷ ମାଇଲ ଦୂରରେ । ବର୍ତ୍ତମାନ ଏହି ଯାତ୍ରାଟିକୁ କେତୋଟି ସ୍ତରରେ ଭାଗ କରାଯାଉ, ପ୍ରତ୍ୟେକ ସ୍ତରରୁ ଫଟୋ ନିଆଯାଉ । ପ୍ରକୃତ ସୂର୍ଯ୍ୟଙ୍କର ବି ଫଟୋ ନେଇ ଫେରିଆସି ସବୁଗୁଡ଼ିକୁ ତୁଳନା କର—ଏବେ ମନେହେବ ପ୍ରତ୍ୟେକଟି ପୃଥକ୍ । ପ୍ରଥମେ ଦେଖାଗଲା, ଗୋଟିଏ ଛୋଟ ଲାଲ ଗୋଲାକାର ପଦାର୍ଥ ଏବଂ ଶେଷରେ ଦେଖାଗଲା ଲକ୍ଷମାଇଲ ବ୍ୟାପୀ ବିରାଟ ପ୍ରକୃତ ସୂର୍ଯ୍ୟ । ଦୁଇଟିଯାକ ଗୋଟିଏ ସୂର୍ଯ୍ୟ ।

ଈଶ୍ୱରଙ୍କ ସମ୍ବନ୍ଧରେ ମଧ୍ୟ ସେହିକଥା । ଅସୀମ ସତ୍ତାକୁ ଆମେ ବିଭିନ୍ନ ସ୍ଥାନରେ ରହି ଦେଖୁଛୁ—ମନର ବିଭିନ୍ନସ୍ତରରୁ ଦେଖୁଛୁ । ନିମ୍ନତମ ମଣିଷ ଦେଖୁଛି ତାଙ୍କୁ ପୂର୍ବ-ପୁରୁଷ ରୂପେ । ଦୃଷ୍ଟି ଯେତେବେଳେ ଆହୁରି ବଡ଼ ହେଲା, ସେତେବେଳେ ସେ ତାଙ୍କୁ ଦେଖୁଛି ଗ୍ରହମାନଙ୍କର ନିୟନ୍ତା ରୂପରେ । ଦୃଷ୍ଟି ଯେତେବେଳେ ଆଉ ବେଶୀ ବ୍ୟାପକ ହେଲା, ସେତେବେଳେ ଯାଇ ମଣିଷ ବୁଝିଲା, ଈଶ୍ୱର ହେଉଛନ୍ତି ବିଶ୍ୱର ନିୟାମକ । ସର୍ବୋଚ୍ଚ ମାନବ ଅନୁଭବ କରେ, ଈଶ୍ୱର ହେଉଛନ୍ତି ଆମର ସ୍ୱରୂପ । ଈଶ୍ୱର କିନ୍ତୁ ସର୍ବଦା ଏକ, ତାଙ୍କୁ ଯେ ବିଭିନ୍ନ ଭାବରେ ବୋଧହୁଏ, ତା'ର କାରଣ ଦୃଷ୍ଟିର ପ୍ରଭେଦ ଓ ତାରତମ୍ୟ ।

## ଭଗବତ୍‌-ପ୍ରେମ

[ ୧୫ ଫେବୃଆରି ୧୮୯୪ ଆମେରିକାର ଡେଟ୍ରଏଟ୍ ସହରର ଇଉନିଟାରିଆନ୍ ଚର୍ଚ୍ଚରେ ପ୍ରଦତ୍ତ ଭାଷଣର ସାରାଂଶ ]

ଭଗବାନଙ୍କୁ ଆମେ ମାନୁ, ଯଥାର୍ଥରେ ଆମେ ତାଙ୍କୁ ଚାହୁଁ ବୋଲି ନୁହେଁ—ନିଜର ସ୍ୱାର୍ଥସିଦ୍ଧି ଲାଗି ତାଙ୍କୁ ଦରକାର ବୋଲି ମାନୁ । ପ୍ରେମ ହେଉଛି ଏପରି କିଛି, ଯାହା ସଂପୂର୍ଣ୍ଣ ସ୍ୱାର୍ଥଶୂନ୍ୟ । ଏ ପ୍ରେମ ଯାହାକୁ ଅର୍ପିତ ହୁଏ, କେବଳ ତାହାର ମହିମା ଓ ସ୍ତୁତି ବ୍ୟତୀତ, ସେଥିରେ ଅନ୍ୟ କୌଣସି ଚିନ୍ତାର ସ୍ଥାନ ନାହିଁ । ପ୍ରେମର ସ୍ୱଭାବ ହେଲା ପ୍ରଶଂସା ଓ

ପୂଜା, ପ୍ରତିଦାନରେ ପ୍ରେମ କିଛି ଚାହେଁ ନାହିଁ । କେବଳ ଭଲପାଇବା ହିଁ ହେଲା ବିଶୁଦ୍ଧ ପ୍ରେମର ଏକମାତ୍ର ଆବେଦନ ।

ଜଣେ ହିନ୍ଦୁ ସାଧିକା ( ମୀରା ବାଈ )ଙ୍କ ସମ୍ପର୍କରେ ଏହିଭଳି ଶୁଣାଯାଏ—ବିବାହ ପରେ, ସେ ତାଙ୍କର ପତି ରାଜାଙ୍କୁ କହିଥିଲେ, 'ଏହା ପୂର୍ବରୁ ମୁଁ ବିବାହିତା ।' ରାଜା ପଚାରିଲେ, 'କାହା ସଙ୍ଗରେ ?' ସାଧିକା ଉତ୍ତର ଦେଲେ, 'ଭଗବାନଙ୍କ ସଙ୍ଗରେ ।' ଦୀନ ଦରିଦ୍ରମାନଙ୍କର ଘର ଘର ବୁଲି ସେ ସେମାନଙ୍କୁ ଶିଖାଇଥିଲେ ଈଶ୍ୱରଙ୍କୁ ଗଭୀରଭାବେ ଭଲ ପାଇବା ପାଇଁ । ତାଙ୍କ ହୃଦୟର ବ୍ୟାକୁଳତା କେତେ ଗଭୀର ଥିଲା, ତାହା ତାଙ୍କ ଲିଖିତ ଭଜନଗୁଡ଼ିକ ଭିତରୁ ଗୋଟିକରୁ ବୁଝାପଡ଼େ—'ଧନ ମାନ ଆଦି କିଛି ମୁଁ ଚାହେଁ ନାହିଁ, ଏପରି କି ମୁକ୍ତି ମଧ୍ୟ ଚାହେଁ ନାହିଁ । ପ୍ରଭୁ ! ତୁମେ ଇଚ୍ଛା କଲେ ମୋତେ ଶତ ଶତ ନରକ-ଯାତନା ମଧ୍ୟ ଦେଇପାର । ତଥାପି କେବଳ ତୁମଠାରେ ହିଁ ଯେପରି ମୋର ଅନୁରାଗ ରହେ; ସେତିକି ମାତ୍ର କୃପା କର । 'ଆମର ପ୍ରାଚୀନଭାଷା ଏହି ସାଧିକାଙ୍କର ମଧୁର ଭଜନାବଳୀରେ ପୂର୍ଣ୍ଣ । ତାଙ୍କର ମୃତ୍ୟୁ ଯେତେବେଳେ ପାଖେଇ ଆସିଲା, ସେତେବେଳେ ସେ ଗୋଟିଏ ନଦୀକୂଳକୁ ଯାଇ ସେଠାରେ ସମାଧିରେ ନିମଗ୍ନ ରହିଲେ । ଏକ ମର୍ମସ୍ପର୍ଶୀ ସଙ୍ଗୀତରେ ସେ ବ୍ୟକ୍ତ କରି ଯାଇଛନ୍ତି ଯେ, ତାଙ୍କର ପ୍ରେମାସ୍ପଦଙ୍କ ସହିତ ମିଳନ ପାଇଁ ସେ ଯାତ୍ରା କରୁଛନ୍ତି ।

ପୁରୁଷମାନେ ସାଧାରଣତଃ ଧର୍ମର ଦାର୍ଶନିକ ବିଚାରରେ ସମର୍ଥ । ନାରୀ ସ୍ୱଭାବତଃ ଭକ୍ତିପ୍ରବଣା, ସେ ଭଗବାନଙ୍କୁ ହୃଦୟର ଅନ୍ତଃସ୍ଥଳରୁ ଭଲପାଏ, ବୁଦ୍ଧି ଦେଇ ନୁହେଁ । ସଲୋମନ୍‌ଙ୍କ ପ୍ରାର୍ଥନା-ସଙ୍ଗୀତଗୁଡ଼ିକ ବାଇବେଲର ଚମତ୍କାର ଅଂଶଗୁଡ଼ିକ ମଧ୍ୟରୁ ଅନ୍ୟତମ । ଏଗୁଡ଼ିକର ଭାବ ମଧ୍ୟ ଅନେକ ପରିମାଣରେ ଏହି ହିନ୍ଦୁ ସାଧିକାଙ୍କର ଭଜନଗୀତ ସଦୃଶ ଅନୁରାଗରେ ପୂର୍ଣ୍ଣ । ତଥାପି ଶୁଣିଛି, ଏହି ଅତୁଳନୀୟ ସଙ୍ଗୀତଗୁଡ଼ିକ ଖ୍ରୀଷ୍ଟାନ୍‌ମାନେ କୁଆଡ଼େ ବାଇବେଲରୁ ବାଦ୍ ଦେବାକୁ ଚାହୁଁଛନ୍ତି । ଏହାର ଗୋଟିଏ କୈଫିୟତ ମଧ୍ୟ ମୁଁ ଶୁଣିଛି— ସଲୋମନ୍ କୁଆଡ଼େ କୌଣସି ଯୁବତୀ ପ୍ରତି ଅନୁରକ୍ତ ଥିଲେ ଏବଂ ଯୁବତୀ ନିକଟରୁ ତାଙ୍କର ସଙ୍କୋଚିତ ପ୍ରେମର ପ୍ରତିଦାନ ଚାହିଁଥିଲେ । ସେହି ଯୁବତୀଟି କିନ୍ତୁ ଅନ୍ୟ ଜଣେ ଯୁବକକୁ ଭଲ ପାଉଥିଲା, ଏବଂ ସଲୋମନଙ୍କ ସଙ୍ଗରେ କୌଣସି ସଂପର୍କ ରଖିବାକୁ ଚାହୁଁ ନ ଥିଲା । ଏହି କୈଫିୟତିଟି କାହାକାହାକୁ ହୁଏତ ବେଶ୍ ଭଲ ଲାଗିବ, କାରଣ ଏହିସବୁ ଭଜନଗୀତର ଅନ୍ତର୍ନିହିତଭାବ ଯେ ଅଲୌକିକ ଭଗବତ୍-ପ୍ରେମ, ଏକଥା ସେମାନେ ବୁଝିବାକୁ ଅକ୍ଷମ । ଭାରତର ଭଗବଦ୍‌ଭକ୍ତି ଅନ୍ୟାନ୍ୟ ଦେଶର ଭଗବଦ୍‌ଭକ୍ତିଠାରୁ କିଛି ସ୍ୱତନ୍ତ୍ର । କାରଣ ଯେଉଁ ଦେଶର ତାପମାନ-ଯନ୍ତ୍ର ଶୂନ୍ୟର ତଳେ ଚାଳିଶିଡିଗ୍ରୀ ସୂଚିତ କରେ, ସେ ଦେଶର ଲୋକଙ୍କ ପ୍ରକୃତି ମଧ୍ୟ କିଛି ଭିନ୍ନ ଧରଣର ହୁଏ । ଯେଉଁ ଜଳବାୟୁରେ ବାଇବେଲ ରଚିତ ହୋଇଥିଲା ବୋଲି ଶୁଣାଯାଏ, ସେଠିକାର ଲୋକଙ୍କର ଆଶା ଆକାଙ୍‌କ୍ଷା, ଯେଉଁମାନେ ଈଶ୍ୱରୋପାସନା ଅପେକ୍ଷା ସଙ୍ଗୀତଗୁଡ଼ିକରେ ବ୍ୟକ୍ତ ହୃଦୟାବେଗ ଦେଇ ସର୍ବସିଦ୍ଧିପ୍ରଦ ଅର୍ଥଶକ୍ତିର ପୂଜା କରିବାରେ ଅଧିକତର ଅଭ୍ୟସ୍ତ, ସେହିସବୁ ଆବେଗଶୂନ୍ୟ ପାଶ୍ଚାତ୍ୟ

ଜାତମାନଙ୍କଠାରୁ ନିଷ୍ଟୟ ପୃଥକ୍ ଥିଲା । 'ଏଥିରେ ମୋର କି ଲାଭ ?'—ଏହା ହିଁ ଯେପରି ଭଗବଦ୍‌ଭକ୍ତର ଉକ୍ତି । ପ୍ରାର୍ଥନାଦରେ ସେମାନେ କେବଳ ସ୍ୱାର୍ଥପୂର୍ତ୍ତି ବିଷୟଗୁଡ଼ିକ କାମନା କରନ୍ତି ।

ଖ୍ରୀଷ୍ଟିଆନମାନେ ସର୍ବଦା ଗ୍ଭହାଁନ୍ତି, ଭଗବାନ ସେମାନଙ୍କୁ କିଛି ନା କିଛି ଦିଅନ୍ତୁ । ସର୍ବଶକ୍ତିମାନ୍ ଈଶ୍ୱରଙ୍କ ସିଂହାସନ ସମୀପରେ ସେମାନେ ଭିକ୍ଷୁକରୂପେ ଉପସ୍ଥିତ ହୁଅନ୍ତି । ଗୋଟିଏ ଗଳ୍ପ ଅଛି—ଜଣେ ଭିକ୍ଷୁକ କୌଣସି ସମ୍ରାଟଙ୍କ ପାଖରେ ଭିକ୍ଷାପ୍ରାର୍ଥୀ ହୋଇଥିଲେ । ଭିକ୍ଷୁକ ଯେତେବେଳେ ଅପେକ୍ଷା କରିଥିଲେ, ସମ୍ରାଟଙ୍କର ସେତେବେଳେ ପ୍ରାର୍ଥନାର ସମୟ । ସମ୍ରାଟ ପ୍ରାର୍ଥନା କରୁଥାନ୍ତି—'ହେ ଜଗଦୀଶ୍ୱର, ମୋତେ ତୁମେ ଆହୁରି ଐଶ୍ୱର୍ଯ୍ୟ ଦିଅ, ଆହୁରି ଶକ୍ତି ଦିଅ, ଆହୁରି ବଡ଼ ସାମ୍ରାଜ୍ୟ ଦିଅ ।' ଭିକ୍ଷୁକ ଏହା ଶୁଣି ଗ୍ଭଲିଯାଉଥିଲେ । ସମ୍ରାଟ ପଛରୁ ଡାକିଲେ, 'ଗ୍ଭଲିଯାଉଛ କାହିଁକି ?' ସ୍ୱଜାଙ୍କୁ ଉତ୍ତର ମିଳିଲା, 'ଆଉ ଗୋଟିଏ ଭିକ୍ଷୁକଠାରୁ ମୁଁ ଭିକ୍ଷା ଗ୍ଭହେଁ ନାହିଁ ।'

## ମାତୃଭାବରେ ଉପାସନା

[ ୧୯୦୦, ଜୁନ୍ ମାସରେ ନିୟୁର୍କଠାରେ ପ୍ରଦତ୍ତ ଭାଷଣର ସଂକ୍ଷିପ୍ତ ଲିପିର ଅନୁବାଦ ]

ପ୍ରତ୍ୟେକ ଧର୍ମରେ ହିଁ ମଣିଷ ବିଭିନ୍ନ ଗୋଷ୍ଠୀ-ଦେବତାର ଭାବରୁ ସେମାନଙ୍କର ସମଷ୍ଟି-ପରମେଶ୍ୱର-ଭାବରେ ଉପନୀତ ହୋଇଅଛି । ଏକମାତ୍ର କନ୍‌ଫୁସିୟସ୍ ଚିରନ୍ତନ ଗୋଟିଏ ନୀତିର କଥା ପ୍ରକାଶ କରିଛନ୍ତି । ମନୁଦେବତା ଆର୍ଦ୍ଦିମାନ୍‌ରେ ରୂପାନ୍ତରିତ ହୋଇଛନ୍ତି । ଭାରତରେ ପୁରାଣର ଗଳ୍ପ ଗ୍ଭପା ପଡ଼ିଯାଇଛି । ତାହାର ଭାବ ରହିଯାଇଛି, ଋକ୍‌ବେଦରେ ଗୋଟିଏ ମନ୍ତ୍ର ଦେଖାଯାଏ, 'ଅହଂ ରାଷ୍ଟ୍ରୀ ସଙ୍ଗମନୀ ବସୂନାମ୍...' ( ଦେବୀସୂକ୍ତ—ଋକ୍‌ବେଦ, ୧୦।୧୦।୧୨୫) । ମାତୃ-ଉପାସନା ଗୋଟିଏ ସ୍ୱତନ୍ତ୍ର ଦର୍ଶନ । ଆମମାନଙ୍କ ଅନୁଭୂତ ବିଭିନ୍ନ ଧାରଣା ମଧ୍ୟରେ ଶକ୍ତିର ସ୍ଥାନ ସର୍ବପ୍ରଥମ । ପ୍ରତି ପଦକ୍ଷେପରେ ଏହା ଅନୁଭୂତ ହୁଏ । ଅନ୍ତରରେ ଅନୁଭୂତ ଶକ୍ତି ଆତ୍ମା । ବାହାରେ ଅନୁଭୂତ ଶକ୍ତି ପ୍ରକୃତି । ଏହି ଦୁଇଟିର ସଂଗ୍ରାମ ହିଁ ମଣିଷର ଜୀବନ । ଆମେମାନେ ଯାହା କିଛି ଜାଣୁ ବା ଅନୁଭବ କରୁ, ତାହା ଏହି ଦୁଇଶକ୍ତିର ସଂଯୁକ୍ତ ଫଳ । ମଣିଷ ଦେଖିଥିଲା, ଭଲ ଓ ମନ୍ଦ ଉଭୟ ଉପରେ ସୂର୍ଯ୍ୟଙ୍କର ଆଲୋକ ସମାନଭାବରେ ପଡ଼ୁଛି । ଈଶ୍ୱରଙ୍କ ସମ୍ବନ୍ଧରେ ଏହା ଏକ ନୂତନ ଧାରଣା—ଏକ ସାର୍ବଭୌମ ଶକ୍ତି ସବୁ କିଛିର ପଶ୍ଚାତ୍‌ରେ ରହିଛି । ଏହି ଭାବରେ ହିଁ ମାତୃଭାବ ଉଦ୍‌ଭୂତ ।

ସାଂଖ୍ୟମତରେ କ୍ରିୟା ପ୍ରକୃତିର ଧର୍ମ, ଆତ୍ମା ବା ପୁରୁଷର ନୁହେଁ । ଭାରତରେ ନାରୀର ସର୍ବବିଧ ରୂପ ଭିତରେ ମାତୃମୂର୍ତ୍ତି ସବୁରି ଉପରେ । ମା' ସର୍ବାବସ୍ଥାରେ ସନ୍ତାନର ପାଖେ ପାଖେ ରହିଥାନ୍ତି । ସ୍ତ୍ରୀ-ପୁତ୍ର ମଣିଷକୁ ତ୍ୟାଗ କରିପାରନ୍ତି । ମା' କିନ୍ତୁ କେବେ ବି ସନ୍ତାନକୁ ତ୍ୟାଗ କରିପାରେ ନାହିଁ । ଆଉ ମଧ୍ୟ, ମାତୃଶକ୍ତି ହିଁ ପକ୍ଷପାତଶୂନ୍ୟ ମହାଶକ୍ତି । ମାଆର ନିର୍ମଳ ସ୍ନେହ ପ୍ରତିଦାନରେ କିଛି ଗ୍ଭହେଁ ନାହିଁ, କିଛି କାମନା କରେ ନାହିଁ । ସନ୍ତାନର କୌଣସି

ଦୋଷ ମା' ଗ୍ରାହ୍ୟ କରେ ନାହିଁ । ସେଥିପାଇଁ ବରଂ ଆହୁରି ବେଶୀ ଭଲପାଏ । ବର୍ତ୍ତମାନ ମାତୃ-ଉପାସନା ହେଲା, ଉଚ୍ଚସ୍ତରର ହିନ୍ଦୁମାନଙ୍କର ସାଧନାର ପ୍ରଧାନ ଅଙ୍ଗ ।

ଯାହା ଏବେ ବି ମିଳି ନାହିଁ, ତାକୁ ହିଁ ଲକ୍ଷ୍ୟ ବୋଲି ବର୍ଣ୍ଣନା କରାଯାଏ । ମାତୃ-ସାଧନାରେ 'ଲକ୍ଷ୍ୟ' ବୋଲି କିଛି ନାହିଁ । ସବୁ କିଛି ମାଆର ଖେଳ । କିନ୍ତୁ ଆମେ ଏକଥା ଭୁଲିଯାଉ । ସ୍ୱାର୍ଥବୋଧ ନ ରହିଲେ, ଦୁଃଖ ମଧ୍ୟ ଆନନ୍ଦର ଅନୁଭୂତି ଆଣିପାରେ, ଯଦି ଆମେ ଆମ ଜୀବନର ସାକ୍ଷୀରୂପେ ପରିଣତ ହେଉ । ଜଗଦ୍-ବ୍ୟାପାରର ପଛପଟେ ଗୋଟିଏ ଶକ୍ତି କ୍ରିୟାଶୀଳ—ଏହି ଧାରଣା ହିଁ ଏହି ଭାବର ସାଧକକୁ ବିସ୍ମିତ କରେ । ଆମର ଧାରଣା—ଈଶ୍ୱର ମଣିଷପରି ସସୀମ ଓ ବ୍ୟକ୍ତିତ୍ୱଯୁକ୍ତ । ଶକ୍ତି ସହିତ ଏକ ବିଶ୍ୱବ୍ୟାପୀ କ୍ଷମତାର ଧାରଣା ଆସେ । ଶକ୍ତି କହୁଛନ୍ତି, 'ମୁଁ ରୁଦ୍ରଙ୍କ ପାଇଁ ଧନୁବିସ୍ତାର କରିଥାଏ, ଯାହାଦ୍ୱାରା କି ସେ ବ୍ରହ୍ମଦ୍ୱେଷୀକୁ ଧ୍ୱଂସ କରିପାରନ୍ତି ।' (ଦେବୀସୂକ୍ତ) । ଉପନିଷଦ୍‌ରେ କିନ୍ତୁ ଏହି ଭାବର ଚିନ୍ତା ନାହିଁ । ବେଦାନ୍ତ ଏ ବିଷୟରେ ବେଶୀ ଅଗ୍ରସର ହୋଇ ନାହାନ୍ତି, ଈଶ୍ୱରତତ୍ତ୍ୱ ନେଇ ମୁଣ୍ଡ ଘୂରାଉ ନାହାନ୍ତି । କିନ୍ତୁ ଗୀତାରେ ଅର୍ଜୁନଙ୍କ ପ୍ରତି ଶ୍ରୀକୃଷ୍ଣଙ୍କର ସେହି ତାତ୍ପର୍ଯ୍ୟପୂର୍ଣ୍ଣ ଉକ୍ତି, 'ସଦସଚ୍ଚାହମର୍ଜ୍ଜୁନ'—ମୁଁ ବ୍ୟକ୍ତ, ମୁଁ ମଧ୍ୟ ଅବ୍ୟକ୍ତ, ଭଲ ମନ୍ଦ—ସବୁ କିଛି ମୋର ସୃଷ୍ଟି ।

ଏହି ଭାବ କିଛି କାଳ ସୁପ୍ତ ଅବସ୍ଥାରେ ରହିଥିଲା । ପରେ ପୁଣି ଦେଖାଦେଲା ନୂତନ ଦର୍ଶନ । ଏହି ଜଗତ୍ ସତ୍ ଓ ଅସତ୍‌ର ସମ୍ମିଶ୍ରଣ—ଉଭୟର ମଧ୍ୟ ଦେଇ ଗୋଟିଏ ହିଁ ଶକ୍ତି ଆତ୍ମପ୍ରକାଶ କରୁଅଛି । ବିଶ୍ୱଜଗତରେ ଆଂଶିକ ଅନୁଭୂତିରୁ ଈଶ୍ୱରଙ୍କ ସମ୍ବନ୍ଧରେ ଯେଉଁ ଧାରଣା ହୁଏ, ତାହା ବି ଆଂଶିକମାତ୍ର । ସହାନୁଭୂତିର ଅଭାବରେ ଏହି ଧାରଣା ମଣିଷକୁ ପଶୁଭାବାପନ୍ନ ଓ ହିଂସ୍ର କରିଦିଏ । ଏହି ଭାବ ଉପରେ ପ୍ରତିଷ୍ଠିତ ନୀତି ପଶୁର ଧର୍ମ ।

ସାଧୁ ପାପୀକୁ ଘୃଣା କରେ । ପୁଣି ପୁଣ୍ୟବାନ ବିରୋଧରେ ପାପୀ ବିଦ୍ରୋହ କରେ । ଏହି ଭାବ ଅବଶ୍ୟ ତାକୁ ଅଗ୍ରସର କରାଇନିଏ । ବାରଂବାର ଆଘାତରେ ନିଷ୍ପିଷ୍ଟ ହୋଇ ଦୁଷ୍ଟ ସ୍ୱାର୍ଥପର ମନ ମରିଯାଏ, ସେତେବେଳେ ଆମେ ଜାଗିଉଠୁ ଏବଂ ମାଆଙ୍କର ସତ୍ତା ଅନୁଭବ କରୁ ।

ମାଆଙ୍କ ନିକଟରେ ପ୍ରତିନିୟତ ଅକୁଣ୍ଠ ଶରଣାଗତି ହିଁ ଆମକୁ ଶାନ୍ତି ଦେଇପାରେ । ତାଙ୍କର ପାଇଁ କେବଳ ତାଙ୍କୁ ଭଲ ପାଅ । ଭୟରେ ନୁହଁ, କିମ୍ବା କିଛି ପାଇବାର ଆଶାରେ ନୁହଁ । ତାଙ୍କୁ ଭଲ ପାଅ, କାରଣ ତୁମେ ସନ୍ତାନ । ଭଲରେ, ମନ୍ଦରେ—ସର୍ବତ୍ର ତାଙ୍କୁ ସମଭାବରେ ଦେଖ । ଯେତେବେଳେ ଆମେ ତାଙ୍କୁ ଏହି ଭାବରେ ଅନୁଭବ କରୁଁ, ସେତିକିବେଳେ ହିଁ ଆମମାନଙ୍କ ମନରେ ଆସେ ସମତ୍ୱ ଓ ଚିରଶାନ୍ତି—ଏହା ହିଁ ମା'ଙ୍କର ସ୍ୱରୂପ । ଯେତେଦିନ ଯାଏ ଏହି ଅନୁଭୂତି ନ ଆସିଛି, ସେତେଦିନଯାଏ ଦୁଃଖ ଆମର ଅନୁସରଣ କରୁଥିବ । ମାଆଙ୍କ କୋଳରେ ବିଶ୍ରାମ କରି ପାରିଲେ ହିଁ ଆମେ ନିରାପଦରେ ରହିପାରୁ ।

---

# ତଥ୍ୟପଞ୍ଜୀ

## ଭକ୍ତିଯୋଗ

ପୃଷ୍ଠା ପଙ୍‌କ୍ତି

ଗ ୭ ଲଣ୍ଡନରେ ପ୍ରଥମ ବକ୍ତୃତାମାଳା : ୧୮୯୫ ସେପ୍‌ଟେମ୍ବରରୁ ନଭେମ୍ବର ପର୍ଯ୍ୟନ୍ତ ସ୍ୱାମୀଜୀ ଲଣ୍ଡନରେ ଥିଲେ । ମିଷ୍ଟର ଷ୍ଟାର୍ଡିଙ୍କ ଉଦ୍‌ଯୋଗ କ୍ରମେ କେତେଗୁଡ଼ିଏ ବକ୍ତୃତା ପ୍ରଦାନ କଲେ ଓ ନଭେମ୍ବର ଶେଷ ଆଡ଼କୁ ନିଉୟର୍କ ଫେରିଗଲେ । ପରବର୍ଷ ( ୧୮୮୭ ଖ୍ରୀ: ) ଏପ୍ରିଲ ଶେଷରେ ପୁନର୍ବାର ଲଣ୍ଡନ ଆସିଲେ ଏବଂ ଏହିଥର ବକ୍ତୃତାମାଳା ଆରମ୍ଭ ହେଲା । ସ୍ୱାମୀ ସାରଦାନନ୍ଦ ଏହି ସମୟରେ ଉପସ୍ଥିତ ଥିଲେ ।

୨୭ ବେଦାନ୍ତ-ମାସିକ 'ବ୍ରହ୍ମବାଦିନ୍' : ଆଲସିଙ୍ଗା ପେରୁମଲଙ୍କର ବ୍ୟବସ୍ଥାପନା, ଏବଂ ଜି. ଭେଙ୍କଟରଙ୍ଗ ରାଓ ଓ ନାଙ୍ଗୁଡ଼ ରାଓ ପ୍ରଭୃତଙ୍କର ସହଯୋଗିତାରେ ୧୮୯୫ ସେପ୍‌ଟେମ୍ବର ୧୪ରେ ମାନ୍ଦ୍ରାଜ ସହରରୁ ପାକ୍ଷିକ ପତ୍ରିକା ରୂପେ 'ବ୍ରହ୍ମବାଦିନ୍' ପ୍ରକାଶିତ ହେଲା ।

୪ ୨ ଶଙ୍କର : ( ୭ମ-୮ମ ଶତାବ୍ଦୀ ) : ଅଦ୍ୱୈତବାଦୀ ଆଚାର୍ଯ୍ୟ, ବେଦାନ୍ତ-ସୂତ୍ରାଦି ପ୍ରସ୍ଥାନତ୍ରୟୀର ଭାଷ୍ୟକାର ଏବଂ ଦଶନାମୀ ବୈଦାନ୍ତିକ ସନ୍ନ୍ୟାସୀ-ସମ୍ପ୍ରଦାୟର ପ୍ରତିଷ୍ଠାତା ।

୨ ରାମାନୁଜ ( ୧୦୨୭-୧୧୩୭ ) : ବିଶିଷ୍ଟା ଦ୍ୱୈତବାଦୀ ଆଚାର୍ଯ୍ୟ ଓ ବୈଷ୍ଣବ ଧର୍ମର ପ୍ରଚାରକ ।

୭ ୨୩ ନାରଦ ତପସ୍ୱୀ 'ଭକ୍ତିସୂତ୍ର' : ଏହି ଖଣ୍ଡରେ ସ୍ୱାମୀଜୀକୃତ ନାରଦ-ଭକ୍ତି-ସୂତ୍ରର ଅନୁବାଦ ଦ୍ରଷ୍ଟବ୍ୟ ।

୧୧ 'ବ୍ୟାସସୂତ୍ର'ର ମହାନ୍ ଭାଷ୍ୟକାର : ଆଚାର୍ଯ୍ୟ ଶଙ୍କର ।

୮ ୧୧ ଜ୍ଞାନମାର୍ଗ ଓ ଭକ୍ତିମାର୍ଗର ଉପଦେଶ : ଜ୍ଞାନମାର୍ଗର ଆଚାର୍ଯ୍ୟ ଗୌଡ଼-ପାଦ, ଶଙ୍କର ପ୍ରଭୃତି; ଭକ୍ତିମାର୍ଗର ଆଚାର୍ଯ୍ୟ ରାମାନୁଜ, ମଧ୍ୱ ପ୍ରଭୃତି ।

୧୦ ୮ ଭୋଜ : ଭୋଜରାଜ ଧାର ( ଉଜ୍ଜୟିନୀ ) ନଗରର ରାଜା । ତାଙ୍କର ରାଜତ୍ୱକାଳ ୯୩୨ରୁ ୯୮୩ ଶକାବ୍ଦ ବୋଲି ନିର୍ଣ୍ଣିତ । ତାଙ୍କ ଲିଖିତ 'ରାଜ-ମାର୍ତ୍ତଣ୍ଡ-ବୃତ୍ତି' ବା 'ଭୋଜବୃତ୍ତି' ବୋଲି ପାତଞ୍ଜଳ ସୂତ୍ରର ଏକ ସହଜ ବୃତ୍ତି ଅଛି । ସେ ଶୈବମତର ଆଚାର୍ଯ୍ୟ 'ରାମାୟଣ-ଚମ୍ପୂ' ପ୍ରଭୃତି କେତେକ ଗ୍ରନ୍ଥର ରଚୟିତା ବୋଲି ପ୍ରସିଦ୍ଧ ।

ପୃଷ୍ଠା ପଙ୍କ୍ତି

୧୦ ୧୩ ଶାଣ୍ଡିଲ୍ୟ : ଶାଣ୍ଡିଲ୍ୟ ଋଷି । ଏହାଙ୍କ ପ୍ରଣୀତ ଏକ ଭକ୍ତି-ବିବୃତକାରୀ ସୂତ୍ର-ଗ୍ରନ୍ଥ ରହିଛି । ସେଥିରେ ୧୦୦ଟି ସୂତ୍ର ଅଛି ।

୧୪ ଭକ୍ତରାଜ ପ୍ରହ୍ଲାଦ : ଏହି ଗ୍ରନ୍ଥାବଳୀର ୮ମ ଖଣ୍ଡରେ ଲିପିବଦ୍ଧ 'ପ୍ରହ୍ଲାଦ-ଚରିତ' ଦ୍ରଷ୍ଟବ୍ୟ ।

୧୯-୨୦ ରାମାନୁଜ ଶ୍ରୀଭାଷ୍ୟରେ ଜଣେ ପ୍ରାଚୀନ ଆଚାର୍ଯ୍ୟଙ୍କର ଉକ୍ତି ଉଦ୍ଧୃତ କରି-ଅଛନ୍ତି : ଦ୍ରାବିଡ଼ାଚାର୍ଯ୍ୟଙ୍କର ଅଧୂନାଲୁପ୍ତ 'ବୋଧାୟନ-ଭାଷ୍ୟ' ।

୧୨ ୧୩ ମଧ୍ୱାଚାର୍ଯ୍ୟ ( ୧୧-୧୨ ଶତାବ୍ଦୀ ) : ଦାକ୍ଷିଣାତ୍ୟର ପ୍ରସିଦ୍ଧ ବେଦାନ୍ତ-ଭାଷ୍ୟକାର । ସେ ହେଉଛନ୍ତି ଦ୍ୱୈତବାଦୀ ।

୧୪ ବରାହପୁରାଣ : ଅଷ୍ଟାଦଶ ପୁରାଣର ଅନ୍ତର୍ଗତ ବିଷ୍ଣୁଙ୍କର ମାହାତ୍ମ୍ୟ ସୂଚକ ଏକ ପୁରାଣ ବିଶେଷ ।

୧୫ ୧ 'ପ୍ରକୃତିଲୀନ' : ସାଂଖ୍ୟ ଦର୍ଶନରେ ଆଧିକାରିକ ପୁରୁଷଙ୍କୁ 'ପ୍ରକୃତିଲୀନ' ପୁରୁଷ କୁହାଯାଏ । ପୂର୍ଣ୍ଣଜ୍ଞାନ ଲାଭ ହେବା ପୂର୍ବରୁ ଲୋକକଲ୍ୟାଣ-ବାସନା ରହିଥିବାରୁ ସେ ପ୍ରକୃତି ମଧ୍ୟରେ ଲୀନ ହୋଇ ଆଧିକାରିକ ପୁରୁଷ ରୂପେ ଜନ୍ମଗ୍ରହଣ କରିଥାନ୍ତି ଏବଂ ଷଡ଼ୈଶ୍ୱର୍ଯ୍ୟସମ୍ପନ୍ନ ହୋଇ ଏକ କଳ୍ପ କାଳ ପର୍ଯ୍ୟନ୍ତ ଅଶେଷ ପ୍ରକାର ଲୋକକଲ୍ୟାଣ ସାଧନପୂର୍ବକ ପରିଶେଷରେ ସ୍ୱରୂପରେ ଲୀନ ହୋଇଯାନ୍ତି । ସାଂଖ୍ୟାଚାର୍ଯ୍ୟଗଣ 'ପ୍ରକୃତି-ଲୀନ' ପୁରୁଷମାନଙ୍କ ମଧ୍ୟରେ ଦୁଇଟି ଶ୍ରେଣୀ ନିର୍ଦ୍ଦିଷ୍ଟ କରିଅଛନ୍ତି, ଯଥା— 'କଳ୍ପନସ୍ୱାମକ ଈଶ୍ୱର' ଓ ଈଶ୍ୱରକୋଟି ।

[ ଶ୍ରୀଶ୍ରୀରାମକୃଷ୍ଣ ଲୀଳାପ୍ରସଙ୍ଗର ଅବତରଣିକା ଓ ବିଜ୍ଞାନଭିକ୍ଷୁ-ରଚିତ ସାଂଖ୍ୟପ୍ରବଚନଭାଷ୍ୟ ଦ୍ରଷ୍ଟବ୍ୟ ]

୧୬ ୩୦ ଭଗବାନ କପିଳ : 'ଚତୁର୍ବିଂଶତି ତତ୍ତ୍ୱ'-ସମନ୍ୱିତ ସାଂଖ୍ୟଦର୍ଶନର ପ୍ରଥମ ଓ ପ୍ରଧାନ ଉପଦେଷ୍ଟା ବିଖ୍ୟାତ ଋଷି ।

୧୭ ୭ ବିଜ୍ଞାନବାଦ (Idealism) ଓ ବାସ୍ତବ ବାଦ (Realism) : ଯେଉଁମାନେ କହନ୍ତି ଯେ ମନୋଜଗତ ହିଁ ସତ୍ୟ, ବାହ୍ୟର କୌଣସି ଭିନ୍ନ ସତ୍ତା ନାହିଁ ଏବଂ ରୂପ, ରସ, ଗନ୍ଧ ଶବ୍ଦ ସ୍ପର୍ଶ ଯାହାକୁ ନେଇ ଆମର ବାହ୍ୟ ଜଗତ ଗଠିତ, ଏ ସମସ୍ତ ଆମର ମାନସିକ ବୃତ୍ତି ବ୍ୟତୀତ ଅନ୍ୟ କିଛି ନୁହେ, ସେମାନଙ୍କୁ ପାଶ୍ଚାତ୍ୟ ଦାର୍ଶନିକଗଣ ବିଜ୍ଞାନବାଦୀ (Idealist) କହନ୍ତି । ଜେନୋ (Zeno), ପ୍ଲେଟୋ ଓ ବର୍କଲେ ପ୍ରଭୃତି ଏହି ଶ୍ରେଣୀର ଅନ୍ତର୍ଗତ । ଫିକ୍‌ଟେ, ଶେଲିଂ, ହେଗେଲ୍‌ଙ୍କୁ ମଧ୍ୟ ବିଜ୍ଞାନବାଦୀ କୁହାଯାଏ । ଅନ୍ୟ ଯେଉଁମାନେ ଭାବନ୍ତି ଯେ ବାହ୍ୟ ଜଗତ ହିଁ ସତ୍ୟ ଏବଂ ଆମର ସମସ୍ତ ଜ୍ଞାନ ବାହ୍ୟସ୍ଥ ଇନ୍ଦ୍ରିୟ ମଧ୍ୟ ଦେଇ ହିଁ ଆସେ, ମନ

ପୃଷ୍ଠା ପଙ୍କ୍ତି

ବୋଲି ପୃଥକ୍ କୌଣସି ପଦାର୍ଥ ନାହିଁ, ପାଶ୍ଚାତ୍ୟ ଜଗତରେ ସେମାନଙ୍କୁ ବାସ୍ତବବାଦୀ (Realist) କୁହାଯାଏ । ଲକ୍, ହ୍ୟୁମ୍, ହ୍ୟାମିଲ୍ଟନ୍, ମିଲ୍ ପ୍ରଭୃତି ଏହି ଶ୍ରେଣୀର ଦାର୍ଶନିକ ।

୧୮ ୩୨ ଇଷ୍ଟାପୂର୍ତ୍ତି : ବୈଦିକ ଯଜ୍ଞାଦି କର୍ମକୁ 'ଇଷ୍ଟ' ଓ ଜନହିତାର୍ଥ ସ୍ମାର୍ତ୍ତ କର୍ମକୁ (ସ୍ମୃତିବିଧାନୋକ୍ତ) 'ପୂର୍ତ୍ତି' କୁହାଯାଏ ।

ଇଷ୍ଟ : ଅଗ୍ନିହୋତ୍ରଂ ତପଃ ସତ୍ୟଂ ବେଦାନାଂ ଚାନୁପାଳନମ୍ ।
ଆତିଥ୍ୟଂ ବୈଶ୍ୱଦେବଶ୍ଚ ଇଷ୍ଟମିତ୍ୟଭିଧୀୟତେ ॥

ପୂର୍ତ୍ତି : ବାପୀକୂପତଡ଼ାଗାଦି ଦେବତାୟତନାନି ଚ ।
ଅନ୍ନପ୍ରଦାନମାରାମଂ ପୂର୍ତ୍ତମିତ୍ୟଭିଧୀୟତେ ॥

୨୪-୨୫ ୩୧-୨ ଯେ ବିଦ୍ୱାନ୍, ନିଷ୍ପାପ ଓ କାମଗନ୍ଧହୀନ ସେ ଶ୍ରେଷ୍ଠ ବ୍ରହ୍ମବିତ୍ :
'ଶ୍ରୋତ୍ରିୟୋଽବୃଜିନୋଽକାମହତଃ'—ଗୁରୁଙ୍କର ଏହି ଲକ୍ଷଣ ଶ୍ରୁତିରେ ଉକ୍ତ ଅଛି । ବୃହ: ଉପ: ୪।୩।୩୩, ତୈତ୍ତି; ଉପ, ୨।୮

୨୯ ୧୩-୪ ଭାରତୀୟ ଦର୍ଶନ ମତରେ ସମୁଦାୟ ଜଗତ୍ ନାମରୂପାତ୍ମକ :
ବାଚାରମ୍ଭଣଂ ବିକାରୋ ନାମଧେୟଂ ମୃତ୍ତିକେତ୍ୟେବ ସତ୍ୟମ୍ ।
—ଛାନ୍ଦୋଗ୍ୟ ଉପ: ୬।୧।୪

୩୦ ୭ ବ୍ରହ୍ମା, ହିରଣ୍ୟଗର୍ଭ ବା ସମଷ୍ଟିମହତ୍ତ୍ୱ :
ହିରଣ୍ୟଗର୍ଭଃ ସମବର୍ତ୍ତତାଗ୍ରେ ଭୂତସ୍ୟ ଜାତଃ ପତିରେକ ଆସୀତ୍ । ସ ଦାଧାର ପୃଥିବୀଂ ଦ୍ୟାମୁତେମାଂ··· ॥ ହିରଣ୍ୟଗର୍ଭସୂକ୍ତମ୍ ଋଗ୍‌ବେଦ ୧୦।୧୨୧ । ଏହାକୁ ହିଁ ହିରଣ୍ୟଗର୍ଭସୂକ୍ତରେ 'ହିରଣ୍ୟଗର୍ଭ' ଓ ମୁଣ୍ଡକୋପନିଷଦ୍‌ରେ 'ବ୍ରହ୍ମା' ବେଦାନ୍ତଶାସ୍ତ୍ରରେ 'ହିରଣ୍ୟଗର୍ଭ', 'ସୂତ୍ରାତ୍ମା' ବା 'ପ୍ରାଣ' ବୋଲି ଅଭିହିତ କରାଯାଇଅଛି । ସ୍ୱାମୀଜୀ ଏହାକୁ ହିଁ 'ସମଷ୍ଟିମହତ୍ତ୍ୱ' କହିଛନ୍ତି । 'ବେଦାନ୍ତସାର' ଦ୍ରଷ୍ଟବ୍ୟ ।

୩୦ ୨୨ ସ୍ଫୋଟ : ବୈୟାକରଣ ପତଞ୍ଜଳି ପ୍ରଭୃତିଙ୍କ ମତରେ ସତ୍-ଚିତ୍-ଆନନ୍ଦ ଏକ ନିତ୍ୟ ଶବ୍ଦ ରୂପ । ବ୍ରହ୍ମ ହିଁ ଶବ୍ଦରୂପେ ଓ ଅର୍ଥରୂପେ ବିବର୍ତ୍ତିତ ହୁଏ । ଏକ ବ୍ରହ୍ମ ହିଁ ପରାପଶ୍ୟନ୍ତୀ, ମଧ୍ୟମା ଓ ବୈଖରୀ-ରୂପେ ପ୍ରସିଦ୍ଧ । ସେହି ଏକ ସତ୍ତା ଯେତେବେଳେ 'ନାଦ' ଦ୍ୱାରା (ଅର୍ଥାତ୍ କଣ୍ଠ ତାଳୁ ପ୍ରଭୃତି ସଂଯୋଗରେ ଯେଉଁ ଅନ୍ତଃସ୍ଥ ବାୟୁ ନାଦ ରୂପେ ଉତ୍ଥିତ ହୁଏ) ନାନା ପ୍ରକାରରେ ରାମକୃଷ୍ଣ ଇତ୍ୟାଦି ବର୍ଣ୍ଣ, ପଦ ଓ ବାକ୍ୟରୂପେ ଅଭିବ୍ୟକ୍ତ ହୁଏ । ଏହା ଅର୍ଥଜ୍ଞାନ ଜନ୍ମାଇଥାଏ । ଏହାକୁ ସ୍ଫୋଟ କୁହାଯାଏ । 'ଅର୍ଥଂ ସ୍ଫୋଟୟତି ଇତି ସ୍ଫୋଟଃ' ଏବଂ ବର୍ଣ୍ଣ ହିଁ 'ସ୍ଫୁଟ୍ୟତେ ଅଭିବ୍ୟଜ୍ୟତେ ଇତି' ଅର୍ଥାତ୍ ବର୍ଣ୍ଣଦ୍ୱାରା ଯାହା ଅଭିବ୍ୟକ୍ତ ହୁଏ ଏବଂ

ପୃଷ୍ଠା ପଙ୍‌କ୍ତି

ଅର୍ଥବୋଧ ଜନ୍ମାଏ, ତାହା ହିଁ ସ୍ଫୋଟ । ସ୍ୱାମୀଜୀ ଓ କାରକୁ ସ୍ଫୋଟର ବାଚକ ବୋଲି ନିର୍ଦ୍ଦେଶ କରିଅଛନ୍ତି । [ ପତଞ୍ଜଳିଙ୍କର ମହାଭାଷ୍ୟ, ତାହାର ଟୀକା କୈୟଟ, ଭର୍ତ୍ତୃହରିକୃତ 'ବାକ୍ୟପଦୀୟ' ଆଦି ଗ୍ରନ୍ଥ ଦ୍ରଷ୍ଟବ୍ୟ )

୩୧ ୧୫ ସତ୍ତ୍ୱ, ରଜଃ ଓ ତମଃ : ଗୀତା ( ଗୁଣତ୍ରୟବିଭାଗଯୋଗ, ୧୪ଶ ଅଧ୍ୟାୟ ଦ୍ରଷ୍ଟବ୍ୟ :

ଅ.୩ ,, ପ୍ରୋଟେଷ୍ଟାଣ୍ଟ ଧର୍ମ : ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀରେ ସଂସ୍କାର ଫଳରେ ଉଦ୍ଭୂତ ଖ୍ରୀଷ୍ଟଧର୍ମର ଶାଖା । ୧୫୨୦ ଖ୍ରୀ:ରେ ଜର୍ମାନୀରେ ୧୯ଟି ରାଜ୍ୟ ବ୍ୟକ୍ତିଗତ ବିଚାରବୁଦ୍ଧି ( private judgement ) ଅଧିକାର ହରଣ ବିରୋଧରେ ପ୍ରତିବାଦ ଜଣାଇଲେ । ଏହି ପ୍ରତିବାଦ-କାରୀଙ୍କୁ ପ୍ରୋଟେଷ୍ଟାଣ୍ଟ କୁହାଗଲା । ଯେଉଁମାନେ ରୋମାନ୍ କ୍ୟାଥଲିକ୍ ବା ଗ୍ରୀକ୍ ଚର୍ଚ୍ଚର ପ୍ରାଧାନ୍ୟ ସ୍ୱୀକାର କଲେ ନାହିଁ, ସେହି ସମସ୍ତ ଲୋକେ ଖ୍ରୀଷ୍ଟୀୟ ଧର୍ମମତକୁ ସାଧାରଣଭାବେ 'ପ୍ରୋଟେଷ୍ଟାଣ୍ଟ' ଧର୍ମ କହିଲେ । ମାର୍ଟିନ ଲୁଥର ହେଉଛନ୍ତି ଏହି ଧର୍ମ-ସଂସ୍କାରର ନେତା । ପ୍ରୋଟେଷ୍ଟାଣ୍ଟ ଧର୍ମ ବହୁଶାଖାରେ ବିଭକ୍ତ । ସେଥିମଧ୍ୟରୁ ପ୍ରଧାନ ହେଲେ— ମେଥଡ଼ିଷ୍ଟ, ବ୍ୟାପ୍‌ଟିଷ୍ଟ୍, ଲୁଥାରିଆନ୍, କଂଗ୍ରିଗେସନାଲ, ପ୍ରେସ୍-ବିଟେରିଆନ, ଏପିସ୍କୋପାଲ୍ ।

,, ଅଗଷ୍ଟ କୋଁତେ ( ୧୭୯୮–୧୮୫୭ ) : ଫରାସୀ ଦାର୍ଶନିକ ପ୍ରତ୍ୟକ୍ଷବାଦ ( Positivism )ର ଉଦ୍ଭାବକ । ଈଶ୍ୱରକେନ୍ଦ୍ରିକ ଧର୍ମମତ ବିରୋଧରେ ସେ ତାଙ୍କର ଦର୍ଶନ ରଚନା କରିଥିଲେ । ( ୨ୟ ଖଣ୍ଡରେ 'ଦାର୍ଶନିକ ପରିଚୟ' ଦ୍ରଷ୍ଟବ୍ୟ )

,, ଅଜ୍ଞେୟବାଦୀ ( Agnostic ) : ଈଶ୍ୱରଙ୍କ ଅସ୍ତିତ୍ୱ ସମ୍ବନ୍ଧରେ ଜାଣିବା ସମ୍ଭବ ନୁହେଁ—ଏହି ମତବାଦକୁ ଅଜ୍ଞେୟବାଦ କୁହାଯାଏ । ଅଜ୍ଞେୟବାଦୀମାନେ ସେଥିପାଇଁ ଈଶ୍ୱର ଅଛନ୍ତି କି ନାହାନ୍ତି—ଏହି ବିଚାରବିମର୍ଷରୁ ବିରତ ରହିବାର ପକ୍ଷପାତୀ । ପାଶ୍ଚାତ୍ୟର କାଣ୍ଟ ଓ ସ୍ପେନ୍‌ସର୍ ପ୍ରଭୃତି ଏହି ମତର ସମର୍ଥକ ।

୩୫ ୮ ପରମକରୁଣାପରବଶ ହୋଇ ବେଦାନ୍ତ···

ମୂଳମନ୍ତ୍ର : ଶୃଣ୍ୱନ୍ତୁ ବିଶ୍ୱେ ଅମୃତସ୍ୟ ପୁତ୍ରାଃ··· । ଶ୍ୱେ. ଉପ., ୨।୫

ବେଦାହମେତଂ ପୁରୁଷଂ ମହାନ୍ତଂ ଆଦିତ୍ୟବର୍ଣ୍ଣଂ
ତମସଃ ପରସ୍ତାତ୍ । ତମେବ ବିଦିତ୍ୱାଽତି ମୃତ୍ୟୁମେତି
ନାନ୍ୟଃ ପନ୍ଥା ବିଦ୍ୟତେଽୟନାୟ । ଶ୍ୱେ: ଉପ:, ୩।୮

ପୃଷ୍ଠା ପଙ୍କ୍ତି

୩୬ ୧ ସାଧୁ ତୁଲସୀଦାସ : ସ୍ୱନାମଧନ୍ୟ ସାଧକ ଓ କବି । ହିନ୍ଦି ରାମାୟଣ 'ରାମଚରିତମାନସ' ଏହାଙ୍କର ଅମର ରଚନା । ଏହାଙ୍କ ରଚିତ ଦୋହା ଗୁଡ଼ିକ ମଧ୍ୟ ଗମ୍ଭୀର ଉପଦେଶପୂର୍ଣ୍ଣ ।

୩୮ ୨୦ ପଞ୍ଚମହାଯଜ୍ଞ : ବ୍ରହ୍ମ, ପିତୃ, ଋଷି, ଭୂତ, ନୃ—ଏହି ପାଞ୍ଚଟିକୁ କେନ୍ଦ୍ର କରି ଅନୁଷ୍ଠିତ ।
ଅଧ୍ୟାପନଂ ବ୍ରହ୍ମଯଜ୍ଞଃ ପିତୃଯଜ୍ଞସ୍ତୁ ତର୍ପଣମ୍
ହୋମୋ ଦୈବୋ ବଲିର୍ଭୌତୋ ନୃଯଜ୍ଞୋଽତିଥିପୂଜନମ୍—ମନୁସଂହିତା ।

୪୬ ୨୮ ଏଭଳି ଭକ୍ତ ସର୍ପଦଷ୍ଟ ହେଲେ···ଦୂତ ଆସିଥିଲା : ପଓହାରି ବାବାଙ୍କୁ ସର୍ପ ଦଂଶନ କଲା । ଯେତେବେଳେ ତାଙ୍କର ଚୈତନ୍ୟ ଫେରି ଆସିଲା, ସେ କହିଲେ—ପ୍ରିୟତମଙ୍କ ନିକଟରୁ ଦୂତ ଆସିଥିଲା ।

୫୩ ୧୩-୪ ଆମେ ଶାଗୁଣା ପରି··ମାଂସ ଖଣ୍ଡ ପ୍ରତି ଆକୃଷ୍ଟ :
ତୁଳନୀୟ ଶ୍ରୀରାମକୃଷ୍ଣ କଥାମୃତରେ 'ଚିଲ, ଶାଗୁଣା ବହୁତ ଉଚ୍ଚକୁ ଉଠନ୍ତି; କିନ୍ତୁ ସେମାନଙ୍କର ନଜର ଥାଏ ଶ୍ମଶାନରେ (ମଡ଼ା ଉପରେ)' ।

୬୪ ୨୧ ଯେଉଁ ସମସ୍ତ ଧର୍ମସମ୍ପ୍ରଦାୟ ବିଶ୍ୱାସ କରନ୍ତି ଯେ ଭଗବାନ ଅବତୀର୍ଣ୍ଣ ହୁଅନ୍ତି : ଏକମାତ୍ର ହିନ୍ଦୁମାନେ ହିଁ ନରରୂପେ ଭଗବାନଙ୍କ ଅବତରଣରେ ବିଶ୍ୱାସ କରନ୍ତି । ଇସ୍‌ଲାମ ଧର୍ମମତରେ ଈଶ୍ୱରଙ୍କ ଅବତାର ଘଟେ ନାହିଁ । ମହମ୍ମଦ ଈଶ୍ୱରପ୍ରେରିତ ପୁରୁଷ । ଖ୍ରୀଷ୍ଟଧର୍ମରେ ଯୀଶୁଖ୍ରୀଷ୍ଟଙ୍କୁ 'ଭଗବାନଙ୍କ ପୁତ୍ର' ବୋଲି କୁହାଯାଏ । ରୋମାନ କ୍ୟାଥଲିକ୍‌ମାନେ ବିଶ୍ୱାସ କରନ୍ତି ଯେ ଈଶ୍ୱର ଖ୍ରୀଷ୍ଟ-ଶରୀରରେ ମାନବରୂପରେ ଆବିର୍ଭୂତ; କିନ୍ତୁ ଏମାନେ ଈଶ୍ୱରଙ୍କର ଏକାଧିକ ଅବତାରକୁ ସ୍ୱୀକାର କରନ୍ତି ନାହିଁ ।

୬୮ ୬ ଚିନି ହେବା ଭଲ ନୁହେଁ, ଚିନି ଖାଇବାକୁ ଭଲପାଏ :
ରାମପ୍ରସାଦଙ୍କର ଗୀତ ଅଛି—"ଚିନି ହଓୟା ଭାଲ ନୟ ମନ, ଚିନି ଖେତେ ଭାଲ ବାସି ।" ଶ୍ରୀରାମକୃଷ୍ଣ ବହୁବାର ଏକଥା କହିଛନ୍ତି ।

୬୮ ୧୫-୬ ମୁଁ ଜଣଙ୍କୁ ଜାଣେ ଯାହାଙ୍କୁ ଲୋକେ ପାଗଳ କହନ୍ତି :
ଏଠାରେ ଶ୍ରୀରାମକୃଷ୍ଣଙ୍କର କଥା ହିଁ କୁହାଯାଇଛି ।

## ଭକ୍ତିରହସ୍ୟ

ଗ୍ରନ୍ଥ ପରିଚୟ : ୧୮୯୫ ମସିହାରେ ଲଣ୍ଡନରେ ପ୍ରଦତ୍ତ ବକ୍ତୃତାମାଳା । ଏଗୁଡ଼ିକ 'Addresses on Bhakti Yoga' ନାମରେ ପରିଚିତ ।

୧୩୧୭-୧୮ (୧୬ ବର୍ଷର) 'ଉଦ୍‌ବୋଧନ'ର ବିଭିନ୍ନ ସଂଖ୍ୟାରେ ଏଗୁଡ଼ିକର ଅନୁବାଦ ପ୍ରକାଶିତ ହୋଇଅଛି ।

ପୃଷ୍ଠା ପଙ୍‌କ୍ତି

୮୫ ୧ ଭକ୍ତିଯୋଗର ଆଚାର୍ଯ୍ୟଗଣ : ଶାଣ୍ଡିଲ୍ୟ ଓ ନାରଦାଦି ।

୯୦ ୨୨ ଏମର୍ସନ (୧୮୦୩-୮୨) : ରାଲ୍‌ଫ୍ ଓ୍ୱାଲ୍‌ଡୋ ଏମର୍ସନ୍ ବିଖ୍ୟାତ ଆମେରିକୀୟ କବି ଓ ଲେଖକ । ଧର୍ମଯାଜକର ପୁତ୍ରରୂପେ ସେ ପ୍ରଥମ ଜୀବନକାଳରେ ହାର୍ଭାର୍ଡ଼ରେ ନିଜକୁ ଏହି କାର୍ଯ୍ୟ ଲାଗି ପ୍ରସ୍ତୁତ କରିଥିଲେ, କିନ୍ତୁ ଯଥା ଶୀଘ୍ର ଆନୁଷ୍ଠାନିକ ଧର୍ମରେ ବିଶ୍ୱାସ ହରାଇ ସେ ଏହି କାର୍ଯ୍ୟ ତ୍ୟାଗ କଲେ । ଇଉରୋପ ଭ୍ରମଣ ଫଳରେ ସେ ଓ୍ୱାର୍ଡ଼ସ୍‌ଓ୍ୱାର୍ଥ, କୋଲ୍‌ରିଜ୍ ଓ କାର୍ଲାଇଲ ପ୍ରଭୃତି କବି ଓ ମନୀଷୀମାନଙ୍କର ସାହଚର୍ଯ୍ୟରେ ଆସିଲେ ଏବଂ ଜର୍ମାନୀ ଦର୍ଶନ ସମ୍ବନ୍ଧରେ ନୂତନ ଚେତନା ଲାଭ କଲେ । ତାଙ୍କ ସମୟରେ ନିଉଇଂଲଣ୍ଡରେ ଯେଉଁ ଅତୀନ୍ଦ୍ରିୟବାଦର ସୂଚନା ଘଟିଥିଲା, ସେ ଥିଲେ ତାହାର ଜଣେ ଉତ୍ସାହୀ ପ୍ରବକ୍ତା । ତାଙ୍କର ରଚନା ଥୋରୋ ପ୍ରଭୃତିଙ୍କ ଉପରେ ପ୍ରଭାବ ବିସ୍ତାର କରିଛି ।

୯୧ ୨୯ ଯୀଶୁଖ୍ରୀଷ୍ଟଙ୍କର ଶୈଳୋପଦେଶ : ନିଉଟେଷ୍ଟାମେଣ୍ଟ ଅନ୍ତର୍ଗତ 'Sermon on the Mount'—ମ୍ୟାଥ୍ୟୁ (୫-୭), ଲ୍ୟୁକ୍ (୬: ୨୦: ୪୯)

୧୧୫ ୨୦-୧ ଯୀଶୁଖ୍ରୀଷ୍ଟ ··କ୍ରେତା-ବିକ୍ରେତାମାନଙ୍କୁ ତଡ଼ି ଦେଇଥିଲେ : ଜେରୁଜାଲେମ୍‌କୁ ଆସି ଯୀଶୁ ଯିହୋବାଙ୍କ ମନ୍ଦିରରେ ପ୍ରବେଶ କରି ଦେଖିଲେ ଯେ ସେଠାରେ ବ୍ୟବସାୟୀ ବାଣିଜ୍ୟ ଓ ଟଙ୍କା ଦିଆନିଆ କାରବାର ଚାଲିଛି । ସେ ଏଥିରେ କ୍ରୁଦ୍ଧ ହୋଇ ସମସ୍ତଙ୍କୁ ସେଠାରୁ ବାହାର କରି ଦେଇ କହିଲେ "ଶାସ୍ତ୍ରରେ ଲେଖା ହୋଇଛି ! ମୋ ମନ୍ଦିର ଏକ ପ୍ରାର୍ଥନାଭବନ, ତୁମେ ସବୁ ଏହାକୁ ଚୋରମାନଙ୍କ ଆଡ଼ଡା ସ୍ଥଳୀରେ ପରିଣତ କରିଛ ।" (ନିଉ ଟେଷ୍ଟାମେଣ୍ଟ—ମାଥ୍ୟୁ;XXX, 12)

୧୨୭ ୨୭ ହିତବାଦୀଗଣ (Utilitarians) : ଧର୍ମୀୟ ଓ ସାମାଜିକ ସମସ୍ତ ବିଷୟରେ ବ୍ୟକ୍ତିବିଶେଷ ଓ ସମାଜର ହିତସାଧନର ନୀତି ହିଁ ଏହି ତତ୍ତ୍ୱର ମୂଳକଥା । ଏହି ମତରେ ବ୍ୟକ୍ତିବିଶେଷର ଜୀବନରେ ଯାହା କିଛି ସର୍ବାପେକ୍ଷା ଅଧିକ ସୁଖ ଆଣେ, ତାହା ହିଁ ସତ୍ ଧର୍ମ ଏବଂ ସମାଜ-ଜୀବନରେ ଯାହା ସର୍ବାପେକ୍ଷା ଅଧିକ ଲୋକଙ୍କର ସର୍ବାଧିକ ସୁଖ ବିଧାନ କରେ ତାହା ହିଁ ସାମାଜିକ ସତ୍ କର୍ମ । ଜେରେମୀ, ବେନ୍ଥାମ୍, ଜେମସ ମିଲ୍, ଜନ୍ ଷ୍ଟୁଆର୍ଟ ମିଲ୍ ପ୍ରଭୃତି ଏହି ମତର ପ୍ରବକ୍ତା ।

ପୃଷ୍ଠା ପଙ୍କ୍ତି

୧୨୧ ୭ ଥିଓଜଫିଷ୍ଟମାନଙ୍କ ମତରେ ଜନୈକ 'ମହାତ୍ମା' : ଥିଓଜଫିଷ୍ଟମାନେ ବିଶ୍ୱାସ କରନ୍ତି ଯେ, ବଡ଼ ବଡ଼ ସାଧକ ମହାପୁରୁଷଗଣ ଦେହ ତ୍ୟାଗ ପରେ ମଧ୍ୟ ସୂକ୍ଷ୍ମ ଶରୀରରେ ଥାଆନ୍ତି ଏବଂ ପୃଥିବୀ ଉପରେ ପ୍ରଭାବ ବିସ୍ତାର କରନ୍ତି; ଏମାନଙ୍କୁ 'ମହାତ୍ମା' କୁହାଯାଏ ।

୧୨୨ ୧୭ ଈଶ୍ୱର ଯେଉଁ କପୋତ ରୂପ ଧାରଣ କରି ଆସିଥିଲେ :
He saw the spirit of God descending like a dove—N. T. Matt., 16

୧୮ ସେ ଯେ ଗୋ-ରୂପ ଧାରଣ କରିଥିଲେ :
ଶ୍ରୀମଦ୍ଭାଗବତ ପ୍ରଥମ ସ୍କନ୍ଧ ୨୦ ଅଧ୍ୟାୟରେ ବୃଷ ଏବଂ ଗାଭୀକୁ ଧର୍ମ ଓ ଧରଣୀ ରୂପରେ ବର୍ଣ୍ଣନା କରାଯାଇଛି । 'ଗୋ' ଶବ୍ଦର ଅର୍ଥ ବେଦ, ଧର୍ମ, ଧରଣୀ ପ୍ରଭୃତି । ଈଶ୍ୱର ବେଦମୂର୍ତ୍ତି । ପୁରାଣରେ ତାହାଙ୍କୁ ଗୋ-ରୂପରେ ବର୍ଣ୍ଣନା କରାହୋଇଅଛି । ଗାଭୀର ଶରୀରରେ ସମସ୍ତ ଦେବତାଙ୍କର କଳ୍ପନା କରାହୁଏ ।

୯-୧୦ ଦୁଇ ପାର୍ଶ୍ୱରେ ଦୁଇଟି ଦେବଦୂତ ବସାଯାଇଥିବା ସିନ୍ଦୁକ ଆକୃତିର ଗୋଟିଏ ପ୍ରତିମା : ମୁଶାଙ୍କ ନେତୃତ୍ୱରେ ମିଶରଠାରୁ ନିର୍ଗତ ହୋଇ ଇହୁଦୀମାନେ ଯେତେବେଳେ-ଗୃହହୀନ ଭାବରେ ଘୂରି ବୁଲୁଥିଲେ, ସେତେବେଳେ ସେମାନଙ୍କର ଏକ ତମ୍ବୁରେ (Tabernacletent) ଗୋଟିଏ ସିନ୍ଦୁକରେ ଈଶ୍ୱରଙ୍କ ଆଦେଶ-ଲିଖିତ ପଥରଟି ରଖୁଥିଲେ, ପରମ ପବିତ୍ର (Holy of holies) ସ୍ଥାନରେ ସେହି ଆଧାରରେ ଈଶ୍ୱରଙ୍କ ଉପସ୍ଥିତି କଳ୍ପନା କରୁଥିଲେ ଏବଂ ମନେକରୁଥିଲେ ଯେ —ଏହା ମାଧ୍ୟମରେ ଈଶ୍ୱର ସେମାନଙ୍କୁ ରକ୍ଷା କରୁଅଛନ୍ତି ।

୨୩ 'କାବା' : ମକ୍କାରେ ଅବସ୍ଥିତ ପବିତ୍ର 'କୃଷ୍ଣ ପ୍ରସ୍ତର' ।

୧୨୪ ୧୭ ଜିନ : 'ଜିନ' ଶବ୍ଦର ଅର୍ଥ ଜୟୀ । ଜୈନ ଧର୍ମର ପ୍ରବର୍ତ୍ତକ ମହାବୀରଙ୍କୁ ମଧ୍ୟ 'ଜିନ' କୁହାଯାଏ ।

୨୩ ଅରୁନ୍ଧତୀ : (ନକ୍ଷତ୍ର)—ଉତ୍ତରାକାଶରେ ସପ୍ତର୍ଷିମଣ୍ଡଳରେ ବଶିଷ୍ଠଙ୍କ ନିକଟରେ ଅବସ୍ଥିତ ଏକ କ୍ଷୁଦ୍ର ନକ୍ଷତ୍ର ।

୧୨୬ ୨୦-୧ ପରମାଣୁର ଗଠନ-ପ୍ରଣାଳୀ· ·ଜଗତର ଗଠନ-ପ୍ରଣାଳୀ ଜାଣିପାରିବେ : ଇଲେକ୍ଟ୍ରନ-ମତବାଦ ଅନୁସାରେ ପରମାଣୁର ଗଠନ ଏହିପରି : କେନ୍ଦ୍ରୀୟ ନ୍ୟୁକ୍ଲିୟସ୍‌ର ଚାରିପାଖରେ କେତେଗୁଡ଼ିଏ ଇଲେକ୍ଟ୍ରନ୍ ଘୂରୁଅଛନ୍ତି । ସୌରଜଗତ ବା ନକ୍ଷତ୍ରଜଗତର ଗଠନ-ପ୍ରଣାଳୀ ଏହି ଅନୁରୂପ—ଏକ ଘନୀଭୂତ ଶକ୍ତି-କେନ୍ଦ୍ର ର ଚାରିପାଖରେ କ୍ଷୁଦ୍ର ଶକ୍ତିପୁଞ୍ଜ

ପୃଷ୍ଠା ପଙ୍କ୍ତି

ଘୂରୁଅଛୁ । ସ୍ୱାମୀଜୀ ଅଣୁ ଓ ମହତ୍ତ୍ୱର ଏହି ସାଦୃଶ୍ୟକୁ ଇଙ୍ଗିତ କରି-ଅଛନ୍ତି । ବୈଜ୍ଞାନିକ ନୀଲ୍ସ୍ ବୋର୍ ଇଲେକ୍ଟ୍ରନ୍-ତତ୍ତ୍ୱ ଉପସ୍ଥାପନ କରି-ଅଛନ୍ତି—' ୯୧୩ ଖ୍ରୀ: ।

୧୩୧ ୫ ପ୍ରେସ୍‌ବିଟେରିଆନ : ପ୍ରୋଟେଷ୍ଟାଣ୍ଟ ଶାଖାର ପ୍ରଧାନ ସମ୍ପ୍ରଦାୟ-ଗୁଡ଼ିକରୁ ଗୋଟିଏ. ନିର୍ବାଚିତ ପ୍ରତିନିଧି ଦ୍ୱାରା ଶାସିତ । ଜୁରିକ୍‌ରେ ୧୫୧୯ ଖ୍ରୀ:ରେ ଉଦ୍ଭୂତ । କ୍ୟାଲ୍‌ଭିନ୍ କର୍ତ୍ତୃକ ବ୍ୟାଖ୍ୟାତ, ସ୍କଟଲ୍ୟାଣ୍ଡରେ ବହୁଳ ପ୍ରଚଳିତ, ପରେ ପୃଥିବୀର ନାନା ସ୍ଥାନରେ ବିସ୍ତୃତ ।

୯ କୋୟେକାର : ୧୬୫୦ ଖ୍ରୀ:ରେ ଜର୍ଜ ଫକ୍ସଙ୍କ ପ୍ରତିଷ୍ଠିତ ଏକ ଖ୍ରିଷ୍ଟିଆନ୍ ସଂପ୍ରଦାୟ । ଏହି ଗୋଷ୍ଠୀର ନାମ 'Society of friends' । ଏହି ସଂପ୍ରଦାୟ ଇଂଲଣ୍ଡ ଓ ଆମେରିକାରେ ଦ୍ରୁତ ପ୍ରସାର ଲାଭକଲା । ଏମାନଙ୍କ ଭିତରେ ଥିଲେ ଅନେକ ଉତ୍ସାହୀ ପ୍ରଚାରକ । ବୋଷ୍ଟନ ଓ ନ୍ୟୁ ଇଂଲଣ୍ଡ ଆଡ଼ୁ ବିତାଡ଼ିତ ହୋଇ ସେମାନେ ରୋଡ଼ଦ୍ୱୀପ (Rhode Island) ରେ ଆଶ୍ରୟ ଗ୍ରହଣ କଲେ । ପରେ ବିଖ୍ୟାତ କୋୟେକାର ଉଇଲ୍ୟମ୍ ପେନ୍ ନିଜ ସମ୍ପ୍ରଦାୟ ପାଇଁ 'ପେନ୍‌ସିଲ୍-ଭାନିୟା' ନାମରେ ନୂତନ ଉପନିବେଶ ସ୍ଥାପନ କଲେ ।

୧୩୨ ୨୧ ପିଟର : ସେଣ୍ଟ ପିଟର୍ ଖ୍ରୀଷ୍ଟଙ୍କର ଅନ୍ୟତମ ପ୍ରଧାନ ଶିଷ୍ୟ । ସେ 'ବ୍ୟାପ୍ଟିଷ୍ଟ' ଜନ୍‌ଙ୍କ ନିକଟରୁ ଦୀକ୍ଷା ଲାଭ କରନ୍ତି । ତାହାଙ୍କ ମାଧ୍ୟମରେ 'ଧର୍ମ ସଂସ୍ଥା' ପ୍ରତିଷ୍ଠା କରିବେ—କ୍ରୁଶବିଦ୍ଧ ହେବା ପୂର୍ବରୁ ଖ୍ରୀଷ୍ଟ ଏହିଭଳି ଜଣାନ୍ତି । (Upon this rock I will build my Church –N. T. Matt. XVI., 18) ଜେରୁଜେଲମ୍‌ରେ ପ୍ରଚାର ପରେ ସେ ରୋମ୍ ଯାଆନ୍ତି ଓ ସେଠାରେ ଧର୍ମ ସଂସ୍ଥାପନ କରନ୍ତି । ତାଙ୍କର ଶିଷ୍ୟପ୍ରଶିଷ୍ୟଗଣ ପରେ 'ପୋପ୍' ନାମରେ ପରିଚିତ ହୁଅନ୍ତି ।

୧୩୯ ୨୩ ସେଣ୍ଟ ପଲ୍ (୩-୬୭) : ପ୍ରଥମ ଜୀବନରେ ଖ୍ରୀଷ୍ଟ-ବିଦ୍ୱେଷୀ ଥିଲେ, ପରେ ଅଲୌକିକ ଭାବରେ ଖ୍ରୀଷ୍ଟଙ୍କର ଆଦେଶ ପାଇ ଏକାନ୍ତ ବିଶ୍ୱାସୀ ଓ ଭକ୍ତ ହେଲେ, ଗ୍ରୀସ୍ ଓ ରୋମ୍‌ରେ ଖ୍ରୀଷ୍ଟଙ୍କର ବାଣୀ ପ୍ରଚାର କଲେ । ରୋମ୍‌ର ସମ୍ରାଟ ନିରୋଙ୍କ ଆଦେଶରେ ଏହାଙ୍କର ପ୍ରାଣଦଣ୍ଡ ହେଲା ।

୧୪୦ ୯ 'ଜମ୍‌ଜମ୍' କୂପ : ଆବ୍ରାହାମ୍‌ଙ୍କ ପତ୍ନୀ ସାରାଙ୍କ ପ୍ରଥମେ କୌଣସି ପୁଅ ହେଲା ନାହିଁ; ଦାସୀ ହାଗାର୍ ସନ୍ତାନସମ୍ଭବା ହେବାରୁ ସାରା କ୍ରୁଦ୍ଧ ହେଲେ ଏବଂ ତାଙ୍କର ନିର୍ଦ୍ଦେଶରେ ଆବ୍ରାହାମ୍ ଦାସୀକୁ ଏହି ଅବସ୍ଥାରେ ମରୁଭୂମିରେ ଛାଡ଼ିଦେଇ ଆସିବାକୁ ବାଧ୍ୟ ହେଲେ । ସେଠାରେ ଜଳ

ପୃଷ୍ଠା ପଙ୍କ୍ତି

ଅରଣ୍ୟରେ ତୃଷାରେ ମୃତପ୍ରାୟ ହୋଇ ପଡ଼ିଲାବେଳେ ଈଶ୍ୱର ନିକଟରେ ଜଳର ସନ୍ଧାନ ଦେଲେ ଏବଂ ଆଶ୍ୱାସନା ଦେଇ କହିଲେ, "ତୋର ପୁତ୍ରକୁ ନେଇ ଗୋଟିଏ ବିରାଟ ଜାତି ଗଢ଼ି ଉଠିବ ।" ଏହି ପୁତ୍ର ହିଁ ଇସ୍‌ମାଇଲ୍ । ଏହି କୂପକୁ ମୁସଲମାନଗଣ 'ଜମ୍ ଜମ୍ କୂପ' କହିଲେ, ଏବଂ ଏହାର ଜଳକୁ ପବିତ୍ର ମନେକଲେ ।

—O T. Genesis – Ch. 16

୧୫୪ ୧୩–୪ ବୁଦ୍ଧ ଗୋଟିଏ ମୃଗ-ଶିଶୁ ପାଇଁ ପ୍ରାଣ ଦେବାକୁ ଉଦ୍ୟତ ହୋଇଥିଲେ : ବିମ୍ବିସାର ବୁଦ୍ଧଦେବଙ୍କୁ ରାଜଗୃହକୁ ଆବାହନ କରି ନେଇଗଲେ । ସେତେବେଳେ ସେ ପୁତ୍ରକାମନା କରି ଯଜ୍ଞାର୍ଥ ପଶୁବଳି ଦେବାର ଉଦ୍‌ଯୋଗ କରୁଥିଲେ । ବୁଦ୍ଧ ଏହା ଦେଖି ମର୍ମାହତ ହେଲେ ଓ କହିଲେ, "ପଶୁବଳି ନ ଦେଇ ତା' ପରିବର୍ତ୍ତେ ମୋତେ ବଳି ଦିଅ । ନିଶ୍ଚୟ ଅପେକ୍ଷାକୃତ ଭଲ ପୁତ୍ର ଲାଭ କରିବ ।" ଏହି ଆତ୍ମତ୍ୟାଗ ଭାବରେ ପ୍ରଭାବିତ ହୋଇ ବିମ୍ବିସାର ପଶୁବଳି ବନ୍ଦ କଲେ ଓ ବୁଦ୍ଧଙ୍କର ଧର୍ମ ଗ୍ରହଣ କଲେ ।

## ଦେବବାଣୀ

ଗ୍ରନ୍ଥ ପରିଚୟ : ଭୂମିକା ଓ ପଶ୍ଚାଦ୍‌ଭୂମିକା ଦ୍ରଷ୍ଟବ୍ୟ

୧୬୧ ୩ ସହସ୍ର ଦ୍ୱୀପୋଦ୍ୟାନ : ଆମେରିକାର ସେଣ୍ଟ୍ ଲରେନ୍‌ସ ନଦୀ ଉପରିସ୍ଥ ପାର୍ବତ୍ୟ ଦ୍ୱୀପପୁଞ୍ଜରେ ଅବସ୍ଥିତ ଏକ ଉଦ୍ୟାନବେଷ୍ଟିତ କୁଟୀର ।

୭ ଜନୈକ ଶିଷ୍ୟା : ମିସ୍ ଓଯ୍ୟାଲ୍‌ଡୋ ।

୧୬୩ ୨୪ ଦେବମାତା—(Sister Devamata, Miss Laura Glenn) : ୧୮୯୫ ଖ୍ରୀ: ଶେଷ ଆଡ଼କୁ ନିଯୁୟର୍କରେ ସ୍ୱାମୀଜୀଙ୍କ କ୍ଲାସରେ ଯୋଗଦାନ କରନ୍ତି । କିନ୍ତୁ ସାକ୍ଷାତ୍ ପରିଚିତ ହେଲେ ନାହିଁ । ୧୯୦୯ ଖ୍ରୀ:ରେ ବୋଷ୍ଟନ କେନ୍ଦ୍ର ଗଠନରେ ସ୍ୱାମୀ ପରମାନନ୍ଦଙ୍କୁ ବିଶେଷ ସାହାଯ୍ୟ କରନ୍ତି । ଭାରତ ଆସି ମାନ୍ଦ୍ରାଜରେ କିଛିକାଳ ସ୍ୱାମୀ ରାମକୃଷ୍ଣାନନ୍ଦଙ୍କ ନିକଟରୁ ଶିକ୍ଷା ଲାଭ କରନ୍ତି । ପରେ ଆମେରିକା ଫେରିଯାଇ ବେଦାନ୍ତ-ପ୍ରଚାର କାର୍ଯ୍ୟରେ ସ୍ୱାମୀ ପରମାନନ୍ଦଙ୍କୁ ଆଜୀବନ ସାହାଯ୍ୟ କରନ୍ତି ।

୧୬୪ ୭ କେତେକ ନିର୍ବାଚିତ ଭକ୍ତ ଶିଷ୍ୟଙ୍କ ସମ୍ମୁଖରେ : ଲଓସବର୍ଗ, ମେରି ଲୁଇ, ମିସ୍ ଓଯ୍ୟାଲ୍‌ଡ୍ରୋ, ସିଷ୍ଟର କ୍ରିଷ୍ଟିନ, ମିସେସ୍ ଫାଙ୍କି, ମିସ୍ ଡାଚ୍ଚର ପ୍ରଭୃତି ।

| ପୃଷ୍ଠା | ପଙ୍କ୍ତି | |
|---|---|---|
| ୧୬୯ | ୨୭-୮ | ତାଙ୍କର ଜନୈକ ବନ୍ଧୁଙ୍କର ମେଇନ୍ କାମ୍ପ୍ : ମିଷ୍ଟର୍ ଲେଗେଟ୍ଙ୍କର ନ୍ୟୁହାମ୍ପସାୟାର ପାର୍ଶ୍ୱବର୍ତ୍ତୀ 'Maine Camp' ନାମକ ଗୃହର କଥା ଏଠାରେ କୁହାଯାଇଛି । |
| ୧୭୧ | ୧୩-୪ | ଆଗୃଷ୍ଟିଦେବଙ୍କ ସହିତ ସାତୋଟି ସପ୍ତାହ : ୧୮୯୫ ମସିହା ଜୁନ୍ ୧୮ରୁ ଅଗଷ୍ଟ ୬—ଏହି ସାତ ସପ୍ତାହ ସ୍ୱାମୀଜୀ ସହସ୍ର ଦ୍ୱୀପୋଦ୍ୟାନରେ ଅବସ୍ଥାନ କରିଥିଲେ । |
| ୧୭୨-୩ | ୩୨ | ଦୁଇ ଜଣ ପରେ ସହସ୍ର ଦ୍ୱୀପୋଦ୍ୟାନରେ···ସନ୍ନ୍ୟାସୀ ହୋଇଥିଲେ : ଲିୟନ ଲ୍ୟାଣ୍ଡସ୍‌ବର୍ଗ (ସ୍ୱାମୀ କୃପାନନ୍ଦ) ଓ ମେରୀ ଲୁଇ (ସ୍ୱାମୀ ଅଭୟାନନ୍ଦ)ଙ୍କୁ ଏହିଠାରେ ସ୍ୱାମୀଜୀ ସନ୍ନ୍ୟାସ-ଦୀକ୍ଷା ଦେଇଥିଲେ । |
| ୧୭୩ | ୨ | ପାଞ୍ଚଜଣଙ୍କୁ ବ୍ରହ୍ମଚର୍ଯ୍ୟ ବ୍ରତରେ ଦୀକ୍ଷିତ କରିଥିଲେ । ମିସ୍ ଓୟାଲ୍‌ଡୋ ( ଭଗିନୀ ହରିଦାସୀ ), ମିସ୍ ଗ୍ରୀନ୍‌ଷ୍ଟାଇଡେଲ୍ ( ସିଷ୍ଟର କ୍ରିଷ୍ଟିନ ) ପ୍ରଭୃତି ପାଞ୍ଚଜଣଙ୍କୁ । |
| ୧୭୫ | ୧୧ | ଦେଖିରେ କୃତିତ୍ୱ ଜଣକର : ସାଙ୍କେତିକ ଲିପିକାର ଗୁଡ୍‌ଉଇନ୍ । |
| ୧୭୫ | ୧୯-୨୦ | ଯେଉଁ ତିନିଗୁଣଜଣ ଉପସ୍ଥିତ ଥିଲେ : ମିସ୍ ଓୟାଲ୍‌ଡୋ, ମିସ୍ ଡାଚ୍ଚର, ମିସ୍ ରୁଥ୍ ଏଲିସ୍, ଲାଣ୍ଡସ୍‌ବର୍ଗ ପ୍ରଥମ ଦିଗରେ ଉପସ୍ଥିତ ଥିଲେ । |
| ୧୭୬ | ୧୦ | ଜନ୍ (ସେଣ୍ଟ) : ଖ୍ରୀଷ୍ଟଙ୍କର ଦ୍ୱାଦଶ ଶିଷ୍ୟଙ୍କ ମଧ୍ୟରୁ ଜଣେ, ବିଶେଷ ପ୍ରିୟ । ଏ ହେଉଛନ୍ତି ଚତୁର୍ଥ ଗସ୍ପେଲ୍‌ର ରଚୟିତା ।<br>ଜନ୍ ଲିଖିତ ଗ୍ରନ୍ଥର ପ୍ରଥମ ପାଞ୍ଚଟି ଶ୍ଳୋକ : ପ୍ରଥମ ଅଧ୍ୟାୟର ପ୍ରଥମ ପାଞ୍ଚଟି ଶ୍ଳୋକ ବେଶ୍ ଦାର୍ଶନିକ ତତ୍ତ୍ୱପୂର୍ଣ୍ଣ :<br>1. In the beginning was the Word, and the Word was with God and the word was God.<br>2. The same was in the beginning with God.<br>3. All things were made by Him and without Him was not anything made that was made.<br>4. In Him was life; and the life was the light of men.<br>5. And the light shineth in darkness, and the darkness comprehended it not. |
| ୧୭୬ | ୨୫ | ଏକତ୍ୱବାଦୀ (Unitarian) - ଖ୍ରୀଷ୍ଟଧର୍ମର ଏକ ଶାଖା । ଏହି ମତରେ ଈଶ୍ୱର ପରମ ପିତା ରୂପେ ହିଁ ବିଦ୍ୟମାନ । ଏମାନେ ତ୍ରିତ୍ୱବାଦ |

ପୃଷ୍ଠା ପଙ୍‌କ୍ତି

(Trinity—Father, Son, Holy Ghost) ଏବଂ ଖ୍ରୀଷ୍ଟଙ୍କର ଦେବତ୍ୱକୁ ଅସ୍ୱୀକାର କରନ୍ତି । ଆନୁମାନିକ ୧୭୦୦ ଖ୍ରୀ:ରେ ପୋଲଣ୍ଡ ଓ ଟ୍ରାନ୍‌ସିଲ୍‌ଭାନିଆରୁ ଉଦ୍ଭୂତ ହୋଇ ଏହି ମତବାଦ ଇଂଲଣ୍ଡ ଓ ଆମେରିକାରେ ବିସ୍ତାର ଲାଭ କରିଛି । ଏହି ମତର ପ୍ରଧାନ ନୀତିଗୁଡ଼ିକ ହେଲା—ଈଶ୍ୱରଙ୍କର ପିତୃତ୍ୱ, ମାନବର ଭ୍ରାତୃତ୍ୱ ଓ ଖ୍ରୀଷ୍ଟଙ୍କର ନେତୃତ୍ୱ ଏବଂ ମନୁଷ୍ୟର କ୍ରମୋନ୍ନତି ।

୧୭୭ ୨୪ (କଣ୍ଟା) ଦୁଇଟାକୁହିଁ ଫୋପାଡ଼ି ଦିଅ : ଶ୍ରୀରାମକୃଷ୍ଣ ଦେବ ବହୁବାର ଏହି କଥା କହିଅଛନ୍ତି । ଏଠାରେ 'ଦୁଇଟା କଣ୍ଟା' ଅର୍ଥରେ ଜ୍ଞାନ ଓ ଅଜ୍ଞାନ ବୁଝାଯାଉଅଛି ।

୧୭୯ ୨୪ ପ୍ରବର୍ତ୍ତକ : ଯେଉଁମାନେ ପ୍ରଥମେ ସାଧନ-ପଥରେ ଚାଲିବାକୁ ଆରମ୍ଭ କରିଅଛନ୍ତି ।

୧୮୧ ୧୪-୧୯ ଭକ୍ତ ଈଶ୍ୱରେ ପରମ ପ୍ରେମ-ସ୍ୱରୂପ…ତୃପ୍ତ ହୁଏ ଓ ଆତ୍ମାରାମ ହୁଏ :
ଓଁ ଯଜ୍‌ଜ୍ଞାତ୍ୱା ମତ୍ତୋ ଭବତି ସ୍ତବ୍‌ଧୋ ଭବତି ଆତ୍ମାରାମୋ ଭବତି ।
ନାରଦ ଭକ୍ତିସୂତ୍ର, ୧।୨-୬

୧୮୨ ୧୧ ବ୍ୟାପ୍‌ଟିଜମ୍‌ (Baptism) : ଖ୍ରୀଷ୍ଟଧର୍ମରେ ଦୀକ୍ଷିତ କରାଇବା ଅନୁଷ୍ଠାନ । ଧର୍ମଯାଜକ ସମସ୍ତଙ୍କ ନିକଟରେ ଖ୍ରୀଷ୍ଟଙ୍କଠାରେ ବିଶ୍ୱାସକୁ ସ୍ୱୀକାର କରିବାକୁ ହୁଏ । ନବଦୀକ୍ଷିତ ବ୍ୟକ୍ତି 'ପବିତ୍ର ଆତ୍ମା'ଙ୍କର ଶକ୍ତି ଲାଭ କରନ୍ତି । ଜର୍ଡନ ନଦୀରେ ସ୍ନାନକରି ଯୀଶୁ ସ୍ୱୟଂ ଜନ୍-କର୍ତ୍ତୃକ ଦୀକ୍ଷିତ ହୋଇଥିଲେ । 'ପିତା, ପୁତ୍ର ଓ ପବିତ୍ରାତ୍ମାଙ୍କ ନାମରେ ଜଳ ଛିଞ୍ଚା ହୁଏ ।

୧୮୬ ୧୪-୫ ନାହଂ ନାହଂ ତୁହୁଁ ତୁହୁଁ : ବାଛୁରି ପ୍ରଥମେ ଯେପରି ଅହଂକାରରେ ହମ୍ବା ହମ୍ବା ଶବ୍ଦ କରେ, କିନ୍ତୁ ତାହାର ଶେଷ ପରିଣତି ତୁଳାଭିଣାର ତନ୍ତ୍ରର 'ତୁହୁଁ ତୁହୁଁ' ଶବ୍ଦରେ ।—ଶ୍ରୀରାମକୃଷ୍ଣକଥାମୃତ ଦ୍ରଷ୍ଟବ୍ୟ ।

୧୮୭ ୩୦ ସେହି କେଉଟୁଣୀ ପରି :
ଗଳ୍ପଟିର ବିସ୍ତୃତ ରୂପ : 'କଥାମୃତ'ରେ ଦ୍ରଷ୍ଟବ୍ୟ ।

୧୯୦ ୭ ସବୁ ଚକ୍ଷୁ ତୁମର ତ ଚକ୍ଷୁ, ଅଥଚ ତୁମର ଚକ୍ଷୁ ନାହିଁ…
ଅପାଣିପାଦୋ ଜବନୋ ଗ୍ରହୀତା
ପଶ୍ୟତ୍ୟଚକ୍ଷୁଃ ସ ଶୃଣୋତ୍ୟକର୍ଣ୍ଣଃ । —ଶ୍ୱେତାଶ୍ୱ: ଉପ: ୩।୧୯ ।

୧୯୧ ୧-୨ କଞ୍ଚା ମୁଁ ପାଚଲା ମୁଁ : ତାଙ୍କର ଦାସ ମୁଁ, ତାଙ୍କର ସନ୍ତାନ ମୁଁ, ତାଙ୍କର ଅଂଶ ମୁଁ—ଏହି ହେଉଛି ପାଚଲା ମୁଁ, ଏସବୁ 'ବିଦ୍ୟା'ର ମୁଁ । ପୁନଶ୍ଚ 'ବ୍ରାହ୍ମଣ ମୁଁ, କାୟସ୍ଥ ମୁଁ, ଅମୁକର ପୁଅ ମୁଁ, ଅମୁକର ବାପ ମୁଁ —

ପୃଷ୍ଠା ପଙ୍‌କ୍ତି

ଏସବୁ ହେଉଛି 'ଅବିଦ୍ୟା'ର ମୁଁ କଞ୍ଚା ମୁଁ ।—ଶ୍ରୀଶ୍ରୀରାମକୃଷ୍ଣ ଲୀଳାପ୍ରସଙ୍ଗ

୧୯୧ ୧୪ 'ଜ୍ଞାନ-ବୃକ୍ଷର ଫଳ' : ବାଇବେଲ୍‌ରେ ବର୍ଣ୍ଣିତ ଅଛି ଯେ, ପ୍ରଥମ ସୃଷ୍ଟ ନରନାରୀ ଆଦମ ଓ ଇଭ୍‌ଙ୍କୁ ଈଶ୍ୱର ସ୍ୱର୍ଗର ଇଡେନ-ଉଦ୍ୟାନରେ ରଖାଇଲେ ଏବଂ ସେଠାରେ ଥିବା ଜ୍ଞାନ-ବୃକ୍ଷର ଫଳ ଖାଇବାକୁ ନିଷେଧ କରିଥିଲେ । କିନ୍ତୁ ସେମାନେ ସଇତାନ୍‌ର ପ୍ରରୋଚନାରେ ଜ୍ଞାନ-ବୃକ୍ଷର ଫଳ ଖାଇଲେ ଏବଂ ସ୍ୱର୍ଗଭ୍ରଷ୍ଟ ହେଲେ । 'ଜ୍ଞାନ'ର ଅର୍ଥ ଭଲ-ମନ୍ଦ ଆପେକ୍ଷିକ ଜ୍ଞାନ—ଏହା ହିଁ ସମସ୍ତ ଦୁଃଖର ମୂଳକାରଣ ।

୧୯୧ ୧୭ 'ଆଖି ପଟିବନ୍ଧା ବଳଦ' :
"ମା ଆମାୟ ଘୁରାବ କତ, କଲୁର ଚୋଖଢାକା ବଲଦେର ମତୋ"
—ରାମପ୍ରସାଦ

୧୯୩ ୪ ମହୁମାଛି ଆପେ ଛୁଟି ଆସେ :
ତୁଳନୀୟ : କଥାମୃତ—"ଫୁଲ୍ ଫୁଟିଲେ ଭ୍ରମର ଆପେ ଆପେ ଆସେ ।"

୫ କେଶବଚନ୍ଦ୍ର ସେନ (୧୮୩୮-୧୮୮୪) : ଭାରତବର୍ଷୀୟ ବ୍ରାହ୍ମ ସମାଜର ନେତା ଓ ବିଖ୍ୟାତ ବାଗ୍ମୀ, ଦେଶବିଦେଶରେ ଧର୍ମସଂସ୍କାର ବିଷୟକ ବହୁ ବକ୍ତୃତା ଦେଇଛନ୍ତି । ସେ ଶ୍ରୀରାମକୃଷ୍ଣଙ୍କର ସାନ୍ନିଧରେ ଆସିଥିଲେ ଓ ସମ୍ବାଦପତ୍ରରେ ଶ୍ରୀରାମକୃଷ୍ଣଙ୍କର କଥା ପ୍ରଚାର କରିଥିଲେ । ପରେ 'ନବବିଧାନ' ବ୍ରାହ୍ମସମାଜ ସ୍ଥାପନ କରିଥିଲେ ।

୨୭ ଯୀଶୁଖ୍ରୀଷ୍ଟ ଯେଉଁ ଶାନ୍ତିଦାତା ପଠାଇ ଦେବାକୁ କହିଥିଲେ : ଯୀଶୁଖ୍ରୀଷ୍ଟ କହିଥିଲେ, "ମୁଁ ତୁମମାନଙ୍କ ନିକଟରୁ ଦୂରକୁ ଚାଲିଯାଉଛି ସତ, କିନ୍ତୁ ତୁମମାନଙ୍କର କଲ୍ୟାଣ ନିମିତ୍ତ ଶାନ୍ତିଦାତା (Comforter)ଙ୍କୁ ପଠାଇଦେବି ।" ଖ୍ରୀଷ୍ଟିଆନ୍‌ମାନେ ମନେକରନ୍ତି ଯେ Holy Ghost ବା ପବିତ୍ରାତ୍ମାରୂପୀ ଈଶ୍ୱର ହିଁ ସେହି ଶାନ୍ତିଦାତା ।

୧୯୪ ୭ ଆଦମ : ଇହୁଦୀ ପୁରାଣ ମତ (Old Te-tament)ରେ ସୃଷ୍ଟି ହେବାର ଷଷ୍ଠ ଦିନରେ ପ୍ରଥମ ମନୁଷ୍ୟ ସୃଷ୍ଟି ହେଲା; ପ୍ରଥମ ମାନବୀ ଇଭ୍ ତାହାର ପଞ୍ଜରାରୁ ସୃଷ୍ଟ ହେଲ । ଭଗବାନଙ୍କ ନିର୍ଦ୍ଦେଶ ଅମାନ୍ୟ କରି ନିଷିଦ୍ଧ ଫଳ ଭକ୍ଷଣ କରିବା ହେତୁ ସେମାନଙ୍କୁ ଇଡେନ ଉଦ୍ୟାନରୁ ବିତାଡ଼ିତ ହୋଇ ପୃଥିବୀକୁ ଆସିବାକୁ ହେଲା । ତା'ପରେ ଅଦମ୍ ଓ ଇଭ୍‌ଙ୍କଠାରୁ ପୃଥିବୀର ଅନ୍ୟାନ୍ୟ ମନୁଷ୍ୟମାନଙ୍କର ଜନ୍ମ ।

୧୬ ପ୍ରଥମ ସୃଷ୍ଟ ସ୍ୱରଜଣ ଋଷିଙ୍କୁ ହଂସରୂପୀ ଭଗବାନ ଶିକ୍ଷା ଦେଇଥିଲେ : ପାଦଟୀକା ଦ୍ରଷ୍ଟବ୍ୟ । ଶ୍ରୀମଦ୍‌ଭାଗବତ ୨।୭।୫ ଦ୍ରଷ୍ଟବ୍ୟ

୧୯୫ ୧୮ ଏ ଯେପରି ଲୁଣ-ପିତୁଳା ସମୁଦ୍ରରେ ପଡ଼ିଯିବାପରି : ଶ୍ରୀଶ୍ରୀରାମକୃଷ୍ଣ-

ପୃଷ୍ଠା ପଙ୍‌କ୍ତି

କଥାମୃତରେ ଅଛି :—"ଲୁଣର ପିତୁଳା ସମୁଦ୍ରର ଗଭୀରତା ମାପିବାକୁ ଯାଇଥିଲା, ଫେରି ଆଉ ଖବର ଦେବା ନୋହିଲା । ସମୁଦ୍ରରେ ମିଳାଇ ଗଲା ।"

୧୯୬ ୧୮ ମିଲ୍‌ଟ୍‌ନ (୧୬୦୮-୭୪) : ଜନ୍ ମିଲ୍‌ଟନ୍, ପ୍ରସିଦ୍ଧ ଇଂରେଜ କବି । ପ୍ରଥମ ଜୀବନରେ ଚର୍ଚ୍ଚ ପ୍ରତି ଆକୃଷ୍ଟ ହୋଇଥିଲେ, ପରେ ସାହିତ୍ୟ-ସାଧନାରେ ଆତ୍ମନିୟୋଗ କଲେ । ରାଜନୈତିକ ଓ ଧର୍ମରେ ବିପ୍ଲବ ସହିତ ମଧ୍ୟ ଜଡ଼ିତ ଥିଲେ । ୧୬୫୨ ଖ୍ରୀ:ରେ ତାଙ୍କର ଦୃଷ୍ଟିଶକ୍ତି ନଷ୍ଟ ହୋଇଗଲା । ତାଙ୍କ ରଚିତ ଦୁଇଟି ମହାକାବ୍ୟ—Paradies Lost (୧୬୬୭ ଖ୍ରୀ:) ଓ Paradise Regained (୧୬୭୧ ଖ୍ରୀ:)

୨୦୦ ୧୫ ଶ୍ରୀରାମକୃଷ୍ଣଙ୍କର ପିତା : ଶ୍ରୀଯୁକ୍ତ କ୍ଷୁଦିରାମ ଚଟ୍ଟୋପାଧ୍ୟାୟ । ତାଙ୍କର ଜଣେ ଆତ୍ମୀୟ : ଶ୍ରୀରାମକୃଷ୍ଣଙ୍କର ଭଣଜା ହୃଦୟ ମୁଖୋପାଧ୍ୟାୟ ।

୨୦୧ ୧୬ ଏକ ସନ୍ନ୍ୟାସିନୀ : ଯୋଗେଶ୍ୱରୀ ଭୈରବୀ ଶ୍ରୀରାମକୃଷ୍ଣଦେବଙ୍କୁ ତାନ୍ତ୍ରିକ ସାଧନାରେ ସହାୟତା କରନ୍ତି ।

୨୦୨ ୨୪-୧ ଏକ ସୁଦୂର ପଲ୍ଲୀରେ : ଶ୍ରୀଶ୍ରୀମା ସାରଦା ଦେବୀଙ୍କର ଜନ୍ମଭୂମି ବାଙ୍କୁଡ଼ା ଜିଲ୍ଲା ଅନ୍ତର୍ଗତ ଜୟରାମବାଟୀ ଗ୍ରାମ ।

୨୦୫-୬ ୩୨-୧ ଡେଭିଡ୍‌ଙ୍କ ହସ୍ତ ଶୋଣିତରେ କଳୁଷିତ ଥିଲା :

ଖ୍ରୀଷ୍ଟଙ୍କର ପ୍ରାୟ ସହସ୍ର ବର୍ଷ ପୂର୍ବେ ଇହୁଦୀ ଜାତିର ଦ୍ୱିତୀୟ ରାଜା, ଜୁଡ଼ୀୟ ବଂଶର ସ୍ଥାପୟିତା ଡେଭିଡ୍ ଜେରୁଜେଲମ୍‌ରେ ରାଜଧାନୀ ସ୍ଥାପନ କରନ୍ତି, କିନ୍ତୁ ମନ୍ଦିର ନିର୍ମାଣ କରିପାରନ୍ତି ନାହିଁ । କାରଣ ସେ ଗଲିୟାଥଙ୍କୁ ହତ୍ୟା କରିଥିଲେ ଏବଂ ଅନେକଙ୍କର ମୃତ୍ୟୁର କାରଣ ଥିଲେ । (O. T. Book of Samuel King. etc); ତାଙ୍କର ପୁତ୍ର — ଭକ୍ତ ରାଜା ସଲୋମନ ଜେରୁଜେଲମ୍‌ର ମନ୍ଦିର ନିର୍ମାଣ କରନ୍ତି ।

୨୧୪ ୨୫-୬ ଷଷ୍ଠ ଇନ୍ଦ୍ରିୟ : ଚକ୍ଷୁ ଆଦି ପଞ୍ଚ ଇନ୍ଦ୍ରିୟ ବ୍ୟତୀତ ଆଉ ଗୋଟିଏ ଇନ୍ଦ୍ରିୟ ଅଛି, ଯାହାଦ୍ୱାରା ଅତୀନ୍ଦ୍ରିୟ ଅନୁଭୂତି ହୁଏ । ଏହା ଶୁଦ୍ଧ ମନ; ଏହି ଶୁଦ୍ଧ ମନକୁ ହିଁ ଏଠାରେ ଷଷ୍ଠ ଇନ୍ଦ୍ରିୟ ବୋଲି କୁହାଯାଇଅଛି ।

୨୧୫ ୬ ଭାରତର ଛଅଟି ଦର୍ଶନକୁ 'ଆସ୍ତିକ ଦର୍ଶନ' କୁହାଯାଏ : ନ୍ୟାୟ, ବୈଶେଷିକ, ସାଂଖ୍ୟ, ଯୋଗ, ପୂର୍ବମୀମାଂସା ଓ ବେଦାନ୍ତ—ଏହି ଛଅଟି ଦର୍ଶନରେ ବେଦର ପ୍ରାମାଣିକତା ସ୍ୱୀକୃତ ବୋଲି ଏଗୁଡ଼ିକୁ ଆସ୍ତିକ ଦର୍ଶନ କହନ୍ତି ।

୨୧୯ ୫ 'ହାଶାଶିନ' : (Cannabis Indica) 'ହାସିଶ୍' ଏକ ପ୍ରକାର ତୀବ୍ର ମାଦକ ଦ୍ରବ୍ୟ ଏବଂ ହାଶାଶିନ୍-ଶବ୍ଦର ଅର୍ଥ 'ହାସିଶ୍-ଭକ୍ଷକ' ।

ପୃଷ୍ଠା ପଙ୍କ୍ତି

'ହାଶାଶିନ୍' ନାମକ ଏକ ଧର୍ମ-ସମ୍ପ୍ରଦାୟ ଏକାଦଶ ଶତାବ୍ଦୀରେ ସିରିଆରେ ବିଦ୍ୟମାନ ଥିଲ । ସେମାନେ ସେମାନଙ୍କର ନେତାଙ୍କ ଆଦେଶରେ ବହୁତ ଗୁପ୍ତହତ୍ୟା କରୁଥିଲେ । ହତ୍ୟାକାରୀମାନେ 'ହାଶିଶ୍' ପାନକରି ନଶାଝୁଙ୍କରେ ହତ୍ୟାକାର୍ଯ୍ୟ ଲାଗି ପ୍ରସ୍ତୁତ ହେଉଥିଲେ ବୋଲି ଏମାନଙ୍କର ଏହିପରି ନାମକରଣ ହୋଇଅଛି । (Assassin—H.shish-eater)

୨୧୯ ୧୦ ହିନ୍ଦୁମାନେ ଦଶାବତାର ବିଶ୍ୱାସ କରନ୍ତି : ମତ୍ସ୍ୟ, କୂର୍ମ, ବରାହ, ନୃସିଂହ, ବାମନ, ପରଶୁରାମ, ରାମ, ବଳରାମ ଓ ବୁଦ୍ଧ—ଏହି ନଅଜଣ ଅବତାର ଆସି ଯାଇଛନ୍ତି । କଳିଯୁଗ ଶେଷରେ ଆସିବେ କଲ୍କୀ ଅବତାର । ଚତୁର୍ବିଂଶତି ଅବତାର ଉଲ୍ଲେଖ କରି ଶ୍ରୀମଦ୍ଭାଗବତରେ କୁହାଯାଇଛି । 'ଅବତାରା ହ୍ୟସଂଖ୍ୟେୟାଃ ।'

୨୨୨ ୪ ଟମାସ୍ (Apostle Thomas) : ଖ୍ରୀଷ୍ଟଙ୍କର ଦ୍ୱାଦଶ ଶିଷ୍ୟ ମଧ୍ୟରୁ ଜଣେ । ସେହି ଯୀଶୁଙ୍କର ପୁନରୁତ୍ଥାନ-ବିଷୟରେ ସଂଶୟ ପ୍ରକାଶ କରିଥିଲେ, ପରେ ସାକ୍ଷାତ୍ ଅନୁଭବ କରି ବିଶ୍ୱାସ କଲେ । ଏହି ସେଣ୍ଟ ଥମାସ୍ (ଟମାସ୍) ହିଁ ଦକ୍ଷିଣ ଭାରତକୁ ଆସି ଖ୍ରୀଷ୍ଟଧର୍ମ ପ୍ରଚାର କରିଥିଲେ ।

୭ ଆଂଗ୍ଲୋ-ସାକ୍ସନ : ଜର୍ମାନର ଟିଉଟନିକ୍ ଜାତି; ଏଙ୍ଗଲ, ସାକ୍ସନ ଓ ଜୁଟଗଣ ବ୍ରିଟେନ୍ ଆକ୍ରମଣ କରି ରାଜ୍ୟ ସ୍ଥାପନ କଲେ । ସେମାନଙ୍କର ନାମାନୁସାରେ ଦେଶର ନାମ ହେଲା ଇଂଲଣ୍ଡ ଏବଂ ଜାତିର ନାମ ହେଲା English ବା ଇଂରେଜ । ଆମେରିକାବାସୀମାନେ ପ୍ରଧାନତଃ ଆଂଗ୍ଲୋ-ସାକ୍ସନମାନଙ୍କର ବଂଶଧର ।

୨୨୩ ୧୮ 'ପ୍ରବୋଧଚନ୍ଦ୍ରୋଦୟ ନାଟକ' : ପ୍ରାୟ ହଜାର ବର୍ଷ ପୂର୍ବେ ମଧ୍ୟଭାରତୀୟ ଜନୈକ ଭକ୍ତ-ରାଜା କୀର୍ତ୍ତିସିଂହଙ୍କ ଦରବାରରେ ବଙ୍ଗାଳୀ କବି ବର୍ଦ୍ଧମାନ-ନିବାସୀ ଶ୍ରୀକୃଷ୍ଣ ମିଶ୍ର ପ୍ରଥମ ରୂପକ-ନାଟକ 'ପ୍ରବୋଧଚନ୍ଦ୍ରୋଦୟ' ରଚନା କରିଥିଲେ । ଜ୍ଞାନ ଭକ୍ତି ଓ ବୈରାଗ୍ୟ ପ୍ରଭୃତି ଚରିତ୍ର ଅବଲମ୍ବନରେ ରୂପ-ନାଟକରେ ଦେଖାଇ ଦିଆହୋଇଛି—କି ଭାବରେ ଜୀବର ଜ୍ଞାନୋଦୟ ହୁଏ, ସେଥିରେ କି କି ବିଘ୍ନ ଘଟିପାରେ, ଇତ୍ୟାଦି । ତୁଳନୀୟ—ଆତ୍ମଦର୍ଶନ ନାଟକ ।

୨୨୪ ୨୧ ରାବିୟା : (ଆନୁମାନିକ ୭୧୭-୮୦୧ ଖ୍ରୀ:) ପାରସ୍ୟର ବସରାର ଜନୈକା ଉନ୍ନତ ସ୍ତରର ସୁଫୀ-ସାଧିକା । ବାଳିକା ବୟସରେ ସେ କ୍ରୀତଦାସୀ ରୂପେ ବିକ୍ରୀତା ହୋଇଥିଲେ । କିନ୍ତୁ ଏକଦା ପ୍ରାର୍ଥନାରତ ଅବସ୍ଥାରେ ତାଙ୍କର ଦିବ୍ୟଭାବ ଅନୁଭବ କରି ତାଙ୍କର ମୁନିବ ତାଙ୍କୁ ମୁକ୍ତ

ପୃଷ୍ଠା ପଙ୍କ୍ତି

ଦେଲେ । ସେ ଅବିବାହିତା ରହି କଠୋର ତପସ୍ୟାରେ ପ୍ରାର୍ଥନାପୂର୍ଣ୍ଣ ଜୀବନ ଯାପନ କଲେ । ଈଶ୍ୱରଙ୍କୁ ସେ ପ୍ରିୟତମ ବା ପତିରୂପେ ଭାବନା କରୁଥିଲେ ।

୨୨୭ ୨୫ ଯମେ ବୈଷ ବୃଣୁତେ : ବେଦାଧ୍ୟୟନଦ୍ୱାରା ଆତ୍ମାକୁ ଲାଭ କରାଯାଇପାରେ ନାହିଁ; ମେଧାଦ୍ୱାରା କିମ୍ବା ବହୁ ଶାସ୍ତ୍ର-ଶ୍ରବଣରେ ମଧ୍ୟ ଏହାଙ୍କୁ ଲାଭ କରାଯାଇ ପାରେ ନାହିଁ । ଏହି ଆତ୍ମା ଯାହାଙ୍କୁ ବରଣ କରନ୍ତି, ସେ ହିଁ ତାଙ୍କୁ ଲାଭ କରନ୍ତି । ତାଙ୍କ ନିକଟରେ ହିଁ ଏହି ଆତ୍ମା ନିଜ ରୂପ ପ୍ରକାଶ କରନ୍ତି । କଠ ଉପ. ୧।୨।୨୩

୨୩୦ ୩୧ କାଣ୍ଟ : ଇମାନୁଏଲ୍ କାଣ୍ଟ୍ (୧୭୨୪-୧୮୦୪ ଖ୍ରୀ:) ପ୍ରସିଦ୍ଧ ଜର୍ମାନ ଦାର୍ଶନିକ । ଏ ହ୍ୟୁମ୍‌ଙ୍କର 'ସନ୍ଦେହବାଦ' ଖଣ୍ଡନ କରି 'ସବିଚାର ବାଦ' (Criticism) ପ୍ରବର୍ତ୍ତନ କରିଛନ୍ତି । ଊନବିଂଶ ଶତାବ୍ଦୀର ଦାର୍ଶନିକ ଚିନ୍ତା-ରାଜ୍ୟରେ ଏହାଙ୍କର ପ୍ରଭାବ ଅସାମାନ୍ୟ ।

୨୩୧ ୧ ସୋପେନ୍‌ହାଓ୍ୱାର୍ (୧୭୮୮-୧୮୬୦ଖ୍ରୀ:) ବିଖ୍ୟାତ ନୈରାଶ୍ୟବାଦୀ ଜର୍ମାନ୍ ଦାର୍ଶନିକ ।

୨୩୯ ୩୦ ଓ୍ୱାଶିଂଟନ୍ : ଜର୍ଜ ଓ୍ୱାଶିଂଟନ୍ (୧୭୩୨-୯୯ଖ୍ରୀ:) ଆମେରିକା ଯୁକ୍ତ-ରାଷ୍ଟ୍ରର ପ୍ରଥମ ରାଷ୍ଟ୍ରପତି (୧୭୮୯ ଖ୍ରୀ: ୩୦ ଏପ୍ରିଲ) । ଆମେରିକା ସ୍ୱାଧୀନତା-ସଂଗ୍ରାମର ସେ ଥିଲେ ପ୍ରଧାନ ସେନାପତି । ତାହାଙ୍କୁ ଆମେରିକା ଯୁକ୍ତରାଷ୍ଟ୍ରର ଜନ୍ମଦାତା କୁହାଯାଏ ।

୨୪୩ ୧ ପତଞ୍ଜଳି : ମହାଭାଷ୍ୟକାର ଓ ଯୋଗ-ଦର୍ଶନ-ସୂତ୍ରକାର ।

୨୯-୩୦ ପ୍ରାଣ ସର୍ବମୋଟ ଦଶଟି—ତନ୍ମଧ୍ୟରେ ପାଞ୍ଚଟି ଅନ୍ତର୍ମୁଖ, ପାଞ୍ଚଟି ବହିର୍ମୁଖ :
ଅନ୍ତର୍ମୁଖ—ପ୍ରାଣ, ଅପାନ, ସମାନ, ଉଦାନ, ବ୍ୟାନ ।
ବହିର୍ମୁଖ—ନାଗ, କୂର୍ମ, କୃକର, ଦେବଦତ୍ତ ଓ ଧନଞ୍ଜୟ ।

୨୪୫ ୧୪-୫ ଯେ କାମକ୍ରୋଧର ବେଗ···ସେ ମହାଯୋଗୀ ପୁରୁଷ :
ଶକ୍ନୋତୀହୈବ ଯଃ ସୋଢ଼ୁଂ ପ୍ରାକ୍ ଶରୀର-ବିମୋକ୍ଷଣାତ୍ ।
କାମକ୍ରୋଧୋଦ୍ଭବଂ ବେଗଂ ସ ଯୁକ୍ତଃ ସ ସୁଖୀ ନରଃ, ଗୀତା—୫।୨୩

୨୪୭ ୨୭-୮ ପ୍ରତ୍ୟକ୍ଷାନୁଭୂତ କରାଇବା ପରେ ହିଁ ସେଣ୍ଟ ପଲ୍‌ଙ୍କୁ···ଖ୍ରୀଷ୍ଟଧର୍ମ ଗ୍ରହଣ କରିବାକୁ ହୋଇଥିଲା :
ପ୍ରଥମ ଜୀବନରେ ସେଣ୍ଟ ପଲ୍ ଖ୍ରୀଷ୍ଟବିଦ୍ୱେଷୀ ଥିଲେ । ସେତେବେଳେ ତାଙ୍କର ନାମ ଥିଲା ସଲ (Saul) । ଖ୍ରୀଷ୍ଟଙ୍କର ଶିଷ୍ୟ ଓ ଭକ୍ତଗଣଙ୍କ ଉପରେ ନିର୍ଯାତନ କରି ସେ ଦାମାସ୍କସ୍ ଆସିବା ବାଟରେ ଅଲୌକିକ ଭାବରେ ଖ୍ରୀଷ୍ଟଙ୍କର ଆଦେଶ ପାଇ ପୂର୍ବ ସଙ୍କଳ୍ପ ତ୍ୟାଗ କଲେ ଏବଂ

ପୃଷ୍ଠା ପଙ୍‌କ୍ତି

ଖ୍ରୀଷ୍ଟଙ୍କଠାରେ ବିଶ୍ୱାସୀ ହୋଇ (ପଲ୍) ଏହି ନାମ ଗ୍ରହଣପୂର୍ବକ ଗ୍ରୀସ୍ ଓ ରୋମ୍‌ରେ ଖ୍ରୀଷ୍ଟଧର୍ମ ପ୍ରଚାର କଲେ । ରୋମାନ୍ ଚର୍ଚ୍ଚର ଅନ୍ୟତମ ପ୍ରତିଷ୍ଠାତା; ଖ୍ରୀଷ୍ଟଙ୍କର ସାକ୍ଷାତ୍ ଶିଷ୍ୟ ନ ହୋଇ ମଧ୍ୟ ସେ ଖ୍ରୀଷ୍ଟଶିଷ୍ୟଙ୍କ ଭଳି ସମ୍ମାନିତ (Acts, XIII ଦ୍ରଷ୍ଟବ୍ୟ)

୧୪୭ ୧୨ ଯୋଗସିଦ୍ଧି ଗୁଡ଼ିକ : ଯୋଗସାଧନା ଫଳରେ ଆଠଟି ଐଶ୍ୱର୍ଯ୍ୟ ଲାଭର ବର୍ଣ୍ଣନା ମିଳେ, ଯଥା, ଅଣିମା, ଲଘିମା, ବ୍ୟାପ୍ତି, ପ୍ରାକାମ୍ୟ, ମହିମା, ଈଶିତ୍ୱ, ବଶିତ୍ୱ ଓ କାମାବସାୟିତା ।

୧୪୮ ୨ ବାସନା ରୂପକ ଅଶ୍ୱତ୍ଥ ବୃକ୍ଷଟି · · କାଟି ଫୋପାଡ଼ି ଦିଅ : 'ଅଶ୍ୱତ୍ଥମେନଂ ସୁବିରୂଢ଼ମୂଲମ୍ ଅସଙ୍ଗଶସ୍ତ୍ରେଣ ଦୃଢ଼େନ ଛିତ୍ତ୍ୱା–ଗୀତା ।। ୧୫।୩

୧୫୪ ୩ ଖ୍ରୀଷ୍ଟିଆନ୍‌ମାନଙ୍କର ଇଉକ୍ୟାରିଷ୍ଟ ନାମକ ଅନୁଷ୍ଠାନ : ବାଇବେଲ୍‌ର ନିଉଟେଷ୍ଟାମେଣ୍ଟରେ ଅଛି, ଯୀଶୁ ଖ୍ରୀଷ୍ଟ ଓ ତାଙ୍କ ଦେହତ୍ୟାଗ ପୂର୍ବରୁ ଶିଷ୍ୟଗଣଙ୍କୁ ସମବେତ କରି ରୁଟି ଓ ମଦ୍ୟ ଈଶ୍ୱରଙ୍କ ଉଦ୍ଦେଶ୍ୟରେ ନିବେଦନ କରି କହିଲେ, "ଏହି ରୁଟି ମୋର ମାଂସ ଓ ଏହି ମଦ୍ୟ ମୋର ରକ୍ତ ।" ତତ୍ପରେ ଶିଷ୍ୟଗଣଙ୍କୁ ଏହା ଖାଇବାକୁ କହିଲେ । ଖ୍ରୀଷ୍ଟିଆନମାନେ ଏବେ ମଧ୍ୟ ପ୍ରତିବର୍ଷ ଏହି ଉପଲକ୍ଷରେ Eucharist of the Lord's Supper ପାଳନ କରନ୍ତି ।

୧୫୪ ୧୪ ସତ୍ୟମେବ ଜୟତେ ନାନୃତମ୍ : ମୁଣ୍ଡକୋପନିଷଦ୍, ୩।୧।୬

୧୫୫ ୪ ଅବଧୂତ-ଗୀତା : ଅବଧୂତ ଏକ ପ୍ରକାର ସନ୍ନ୍ୟାସୀ, ଅବଧୂତ ଦତ୍ତାତ୍ରେୟ ବିଷ୍ଣୁଙ୍କର ଅବତାର (ଶ୍ରୀମଦ୍ଭାଗବତ ୧।୩।୬, ୨।୭।୪) । ଦତ୍ତାତ୍ରେୟ-ବିରଚିତ ଅବଧୂତ ଗୀତା ଆଠଟି ଅଧ୍ୟାୟରେ ବିଭକ୍ତ, ଚରମ ଜ୍ଞାନର ଏକ ଗ୍ରନ୍ଥ ।

୧୫୮ ୨୮-୨୯ ହୃଦୟର ଗ୍ରନ୍ଥି ସବୁ ଛିନ୍ନ ହୋଇଯାଏ :
ଭିଦ୍ୟତେ ହୃଦୟଗ୍ରନ୍ଥି ଶ୍ଛିଦ୍ୟନ୍ତେ ସର୍ବସଂଶୟାଃ ।
କ୍ଷୀୟନ୍ତେ ଚାସ୍ୟ କର୍ମାଣି ତସ୍ମିନ୍ ଦୃଷ୍ଟେ ପରାବରେ ।। ମୁ: ଉପ:, ୨।୨।୮

୧୫୯ ୨୭-୮ ବାଇବେଲ୍‌ରେ ଅଛି, 'ମନୁଷ୍ୟ ଈଶ୍ୱରଙ୍କ ପ୍ରତିମୂର୍ତ୍ତି ସ୍ୱରୂପ' :
And God said, Let us make man in our image, after our likeness···O. T. Genesis, 1,26

୧୬୦ ୯ ଇଙ୍ଗାରସୋଲ : ରବର୍ଟ ଇଙ୍ଗାରସୋଲ୍ (୧୮୩୩–୯୯ ଖ୍ରୀ.) ଆମେରିକାର ବିଖ୍ୟାତ ଅଜ୍ଞେୟବାଦୀ ଲେଖକ ଓ ବକ୍ତା । ସ୍ୱାମୀଜୀଙ୍କ ସହିତ ଏହାଙ୍କର ତର୍କବିତର୍କ ହୋଇଥିଲା ।

ପୃଷ୍ଠା ପଙ୍କ୍ତି

୨୬୩ ୮ ସୁନାରଙ୍ଗର ଦୁଇଟି ପକ୍ଷୀ ଗୋଟିଏ ବୃକ୍ଷରେ ବସିଅଛନ୍ତି :
ଦ୍ୱା ସୁପର୍ଣ୍ଣା ସଯୁଜା ସଖାୟା ସମାନଂ ବୃକ୍ଷଂ ପରିଷସ୍ୱଜାତେ
ତୟୋରନ୍ୟଃ ପିପ୍ପଳଂ ସ୍ୱାଦ୍ୱତ୍ତ୍ୟନଶ୍ନନ୍ନନ୍ୟୋଽଭିଚାକଶୀତି ॥
ମୁଣ୍ଡକ. ଉପ., ୩/୧; ଶ୍ୱେତାଶ୍ୱ., ଉପ., ୪।୬

୨୬୪ ୧୨ ଲୁଥାର (୧୪୮୩–୧୫୪୬ଖ୍ରୀ:) : ପ୍ରୋଟେଷ୍ଟାଣ୍ଟ ଧର୍ମ-ସଂସ୍ଥାପକ, ପ୍ରସିଦ୍ଧ ଜର୍ମାନ ଧର୍ମସଂସ୍କାରକ ଏବଂ ଓଲ୍ଡଟେଷ୍ଟାମେଣ୍ଟର ଅନୁବାଦକ ।

୨୦ ମୀରାବାଈ (୧୬ଶ ଶତକ) : କୃଷ୍ଣପ୍ରେମରେ ସଂସାରତ୍ୟାଗିନୀ ସାଧିକା । ସେ ଥିଲେ ରାଜସ୍ଥାନର ରତ୍ନସିଂହ-ରାଣାଙ୍କର କନ୍ୟା ଏବଂ କିମ୍ବଦନ୍ତୀ ଅନୁସାରେ ରାଣା କୁମ୍ଭଙ୍କର ପତ୍ନୀ ଥିଲେ । ରାଣୀ ହେଲେ ହେଁ ସେ ଭିଖାରିଣୀ ବେଶରେ ତୀର୍ଥତୀର୍ଥ ଯାଇ କୃଷ୍ଣ-ବିଷୟକ ଗୀତ ଗାଇ ବୁଲୁଥିଲେ । ତାଙ୍କ ରଚିତ ଭଜନାବଳୀ ଆଜି ମଧ୍ୟ ସାରା ଭାରତରେ ଅତ୍ୟନ୍ତ ସମାଦରର ବସ୍ତୁ ।

୨୭୦ ୧୦ ସେହି ସତୀଦାହ-ପ୍ରଥା ବନ୍ଦ କଲେ :
ରାମମୋହନ ରାୟଙ୍କ ଚେଷ୍ଟାରେ (୧୮୨୯ ଖ୍ରୀ:ରେ) ଲର୍ଡ ବେଣ୍ଟିକ୍ ଆଇନ୍ ପ୍ରଣୟନ କରି ସତୀଦାହ-ପ୍ରଥା ବନ୍ଦ କଲେ ।

୨୭୭ ପା.ଟୀ. ସାଧନଚତୁଷ୍ଟୟ : ନିତ୍ୟାନିତ୍ୟ-ବସ୍ତୁ-ବିବେକ; ଐହିକ ଓ ପାରଲୌକିକ ବିଷୟ-ବିରାଗ; ଶମଦମାଦି ଷଟ୍‌ସମ୍ପତ୍ତି (ଶମ, ଦମ, ଉପରତି, ତିତିକ୍ଷା, ଶ୍ରଦ୍ଧା, ସମାଧାନ) ଏବଂ ମୁମୁକ୍ଷୁତ୍ୱ ।

୨୮୦ ୧ ମହାଯାନ ସମ୍ପ୍ରଦାୟ : ବୈଶାଳୀ ନଗରରେ ଆହୂତ ଦ୍ୱିତୀୟ ଧର୍ମସଙ୍ଗୀତିର ଅଧିବେଶନରେ ଦଳେ ଭିକ୍ଷୁ 'ଥେରବାଦ' ସମର୍ଥନ କଲେ ଏବଂ ଏହାର ବିରୁଦ୍ଧବାଦୀଗଣଙ୍କ ଦ୍ୱାରା 'ମହାସାଙ୍ଘିକ' ମତବାଦ ପ୍ରବର୍ତ୍ତିତ ହେଲା । ପରବର୍ତ୍ତୀ କାଳରେ ଥେରବାଦ ମଧ୍ୟରୁ ହୀନଯାନ ଏବଂ ମହାସାଙ୍ଘିକ ମଧ୍ୟରୁ ମହାଯାନ ସମ୍ପ୍ରଦାୟ ଉଦ୍ଭୂତ ହେଲା । ବ୍ୟକ୍ତିଗତ ନିର୍ବାଣ ହିଁ ହୀନଯାନପନ୍ଥୀଙ୍କର କାମ୍ୟ; କିନ୍ତୁ ମହାଯାନପନ୍ଥୀଗଣ ସମସ୍ତଙ୍କର ନିର୍ବାଣ ବା ମୋକ୍ଷ କାମନା କରନ୍ତି ।

୨୮୧ ୧୩ କନ୍‌ଫ୍ୟୁସିୟସ (Confucious) : ୧ମ ଖଣ୍ଡ ତଥ୍ୟପଞ୍ଜୀ ଦ୍ରଷ୍ଟବ୍ୟ, ୪୦୧ପୃ.

୧୪ ଜରାଥୃଷ୍ଟ୍ର (Zoraster) : ୧ମ ଖଣ୍ଡ, ତଥ୍ୟପଞ୍ଜୀ, ୪୦୪ ପୃ. ଦ୍ରଷ୍ଟବ୍ୟ ।

୨୧ ଲାଓସେ (Lautse) : ୧ମ ଖଣ୍ଡ, ୪୦୧ ପୃ., ତାଓ ଧର୍ମ ଦ୍ରଷ୍ଟବ୍ୟ ।

୨୮୪ ୨୮ ମାନବର ପତନ (Fall of man) ଏବଂ ପୁନରୁତ୍ଥାନ (Resurrection) : ଖ୍ରୀଷ୍ଟିଆନ୍‌ମାନଙ୍କର ବିଶ୍ୱାସ, ଈଶ୍ୱରାଦେଶ ଲଙ୍ଘନ କରି

ପୃଷ୍ଠା ପଙ୍କ୍ତି

ଆଦମ୍ ଓ ଇଭ୍‌ଙ୍କର ସ୍ୱର୍ଗରୁ ପତନ ହେଲା ଏବଂ ଈଶ୍ୱରେଚ୍ଛା ପୂର୍ତ୍ତିକରି ଯୀଶୁଖ୍ରୀଷ୍ଟ ଯେଉଁ ଆତ୍ମଦାନ କଲେ, ସେଥିଯୋଗୁଁ ମାନବଜାତି ପୁନର୍ବାର ସ୍ୱର୍ଗ ଫେରିଯିବାର ଅଧିକାର ଲାଭକଲା । ଏହି ପ୍ରସଙ୍ଗରେ ମିଲ୍‌ଟନ୍‌ଙ୍କର ଅମର ଗ୍ରନ୍ଥଦ୍ୱୟ Paradise Lost ଓ Paradise Regained ସ୍ମରଣୀୟ ।

୨୮୫ ୨୩ ତ୍ରିତ୍ୱବାଦ ( Trinity ) : ଖ୍ରୀଷ୍ଟଧର୍ମ ଅନୁସାରେ ଏକମାତ୍ର ଈଶ୍ୱରଙ୍କଠାରେ ତିନୋଟି ବ୍ୟକ୍ତିତ୍ୱ ରହିଛି—ପିତା-ଈଶ୍ୱର, ପୁତ୍ର-ଈଶ୍ୱର ଓ ପବିତ୍ରାତ୍ମା-ଈଶ୍ୱର, ଏ ହେଉଛନ୍ତି ବ୍ୟକ୍ତି ଭାବରେ ପୃଥକ୍ ଓ ସତ୍ତା ଭାବରେ ଏକ । ସମସ୍ତଙ୍କର ମହିମା ସମାନ । ପିତା-ଈଶ୍ୱର ବିଶ୍ୱସ୍ରଷ୍ଟା, ପୁତ୍ର-ଈଶ୍ୱର ମାନବଜାତିର ପରିତ୍ରାତା, ପବିତ୍ରାତ୍ମା-ଈଶ୍ୱର ବିଶ୍ୱାସୀମାନଙ୍କର ଚରିତ୍ରକୁ ପବିତ୍ର କରନ୍ତି ।

୨୮୭ ୧୫-୭ ଯୀଶୁଙ୍କର ବାରଜଣ ଧୀବର ଶିଷ୍ୟ : ସାଇମନ୍ (ପିଟର) ଓ ତାହାର ଭ୍ରାତା ଏଣ୍ଡ୍ରୁ, ଜେମ୍‌ସ୍ ଓ ତା'ର ଭ୍ରାତା ଜନ୍ ଫିଲିପ୍, ବାର୍ଥୋଲୋମିଉ, ଟମାସ୍ (Doubting Thomas), ମାଥ୍ୟୁ, ଜେମ୍‌ସ୍, ଥ୍ୟାଡିୟୁସ୍, ସାଇମନ୍, ଜୁଡ଼ାସ (Iscariot), Matt.X. 25. ଏମାନେ ସମସ୍ତେ ପ୍ରାୟ ଧୀବର ଏବଂ ଅଶିକ୍ଷିତ ଥିଲେ ।

୨୯୦ ୧୪-୫ ଚୋର କ୍ରୁଶରେ ବିଦ୍ଧ ହୋଇ···ଫଳ ଲାଭ କଲା : ଯୀଶୁଖ୍ରୀଷ୍ଟଙ୍କୁ କ୍ରୁଶରେ ବିଦ୍ଧ କରିବା ସମୟରେ ତାଙ୍କ ସହିତ ଜଣେ ଚୋରକୁ କ୍ରୁଶରେ ବିଦ୍ଧ କରିହୋଇଥିଲା । ଖ୍ରୀଷ୍ଟଙ୍କ ଉପରେ ବିଶ୍ୱାସ ସ୍ଥାପନ କରି ସେ ମୁକ୍ତ ହୋଇଗଲା ବୋଲି ବାଇବେଲ୍‌ରେ ଲେଖାଅଛି । ହିନ୍ଦୁ ମତରେ କିନ୍ତୁ ଚୋର ଜନ୍ମାନ୍ତରରୂପେ ପୂର୍ବର କୌଣସି ସୁକୃତି ଫଳରେ ଏହିଭଳି କୃପା ଲାଭ କରିଥିଲା । Matt. XXVII, 38 ।

୨୦ ବୁଦ୍ଧ ତାଙ୍କର ପ୍ରବଳତମ ଶତ୍ରୁକୁ ମଧ୍ୟ ମୁକ୍ତି ଦେଇଥିଲେ : ଅନ୍ୟତମ ଶାକ୍ୟକୁମାର ଦେବଦତ୍ତ ପ୍ରଥମ ଜୀବନରେ ବୁଦ୍ଧଙ୍କ ପ୍ରତି ବୈରିଭାବ ପୋଷଣ କରନ୍ତି । ପରବର୍ତ୍ତୀକାଳରେ ସେ ବୁଦ୍ଧଙ୍କର ଭିକ୍ଷୁସଙ୍ଘରେ ପ୍ରବେଶ କରି ଏଥିରେ ମଧ୍ୟ ବିଶୃଙ୍ଖଳା ସୃଷ୍ଟିର ଚେଷ୍ଟା କରନ୍ତି ଏବଂ ବିମ୍ବିସାରଙ୍କ ପୁତ୍ର ଅଜାତଶତ୍ରୁର ସାହାଯ୍ୟ ନେଇ ବୁଦ୍ଧଙ୍କର ପ୍ରାଣନାଶର ଚେଷ୍ଟା କରନ୍ତି । କିନ୍ତୁ ପ୍ରତିଥର ତ ସେ ବିଫଳ ହେଲେ, ଅବଶେଷରେ ହଠାତ୍ ତାଙ୍କ ମୁଖରୁ ଉତ୍ତପ୍ତ ରକ୍ତ ବାହାରିବାରୁ ତାଙ୍କର ଜୀବନନାଶ ଘଟିଲା । ଏହାପରେ ଅନୁତପ୍ତ ଅଜାତଶତ୍ରୁ ବୁଦ୍ଧଙ୍କର ଶରଣାପନ୍ନ ହେଲେ ଓ ସେ ତାଙ୍କୁ କ୍ଷମା କରି ମୁକ୍ତିମାର୍ଗ ଶିକ୍ଷା ଦେଲେ ।

## ଭକ୍ତପ୍ରସଙ୍ଗ

ପୃଷ୍ଠା ପଙ୍କ୍ତି

୩୦୮ ୬ ପ୍ରେମିକ ଇଥିଓପ୍‌ର ଲଲାଟରେ ହେଲେନ୍‌ର ସୌନ୍ଦର୍ଯ୍ୟ ଦେଖିଥାଏ : ସୌନ୍ଦର୍ଯ୍ୟ ଲାଗି ହେଲେନ୍ ବିଖ୍ୟାତ; ଇଥିଓପ୍ କୃଷ୍ଣବର୍ଣ୍ଣ ( ହାବସୀ ) କୁରୂପା । ତୁଳନୀୟ : ଡେସ୍‌ଡିମୋନା ଓ ଓଥେଲୋ ।

୩୧୦ ୫ ଇଗ୍‌ନେସିୟସ୍ ଲୟୋଲ ( Ignatius Loyla, Saint, ୧୪୯୧-୧୫୫୬) : ସ୍ପେନ୍‌ର ଅଭିଜାତ ବଂଶରେ ଜନ୍ମ । ପ୍ରଥମ ଜୀବନରେ ସୈନ୍ୟ-ବିଭାଗରେ କାର୍ଯ୍ୟ କରୁଥିଲେ; ସେହି ସମୟରେ ଗୁରୁତର ଭାବରେ ଆଘାତ ପାଇବା ଫଳରେ ଧର୍ମପଥରେ ତାଙ୍କ ଜୀବନର ମୋଡ଼ ଘୂରିଗଲା । ନଅଜଣ ସଙ୍ଗୀଙ୍କୁ ନେଇ ସେ ୧୫୩୪ ଖ୍ରୀ:ରେ ପ୍ୟାରିସ୍‌ରେ ଗୋଟିଏ Society of Jesus (Jesuits)ର ପରିକଳ୍ପନା କଲେ । ୧୫୪୦ ଖ୍ରୀ:ରେ ଏହି ସମ୍ପ୍ରଦାୟଟି ପୋପଙ୍କ ଅନୁମୋଦନ ଲାଭ କଲା । ଲୟୋଲଙ୍କ ମୃତ୍ୟୁ ପୂର୍ବରୁ ହିଁ ଏହି ସୋସାଇଟି ନାନାସ୍ଥାନରେ ବିଛେଇ ହୋଇ ଯାଇଥିଲା ।

୩୨୧ ୨–୩ ଆଇଡା ଆନ୍‌ସେଲ (ଉକ୍ତ ଲା) : ୧୯୦୦ ଖ୍ରୀ:ର ପ୍ରଥମ ଭାଗରେ ଓକ୍‌ଲାଣ୍ଡର ଏକତତ୍ତ୍ୱବାଦୀ (Unitarian) ଗୀର୍ଜାଠାରେ ସ୍ୱାମୀଜୀଙ୍କ ବକ୍ତୃତା ଶୁଣି ତାଙ୍କ ପ୍ରତି ଆକୃଷ୍ଟ ହେଲେ, ପରେ ସ୍ୱାମୀଜୀଙ୍କ ସାନ୍ନିଧ୍ୟରେ ଆସିଲେ । ସେ ସାଙ୍କେତିକ ଲିପି ଜାଣିଥିଲେ ଏବଂ ସ୍ୱାମୀଜୀଙ୍କର ଅନେକ ବକ୍ତୃତାର ନୋଟ୍ ନେଇଥିଲେ । Reminiscences of Vivekananda ଗ୍ରନ୍ଥରେ ସ୍ୱାମୀଜୀଙ୍କ ସମ୍ବନ୍ଧରେ ତାଙ୍କର ଗୋଟିଏ ବଡ଼ ପ୍ରବନ୍ଧ ମିଳେ ।

୩୩୬ ୧୦ ଜଣେ ଯୋଗୀ ଥିଲେ : ଏଠାରେ ଶ୍ରୀରାମକୃଷ୍ଣଙ୍କର କଥା ହିଁ କୁହାଯାଇଅଛି ।

୩୪୦ ୨୫ ସେଣ୍ଟ୍ ଟେରେସା (୧୫୧୫-୮୨) : ମାତ୍ର ୧୮ ବର୍ଷ ବୟସରେ ସିଗ୍ୱାୟ ଖ୍ରୀଷ୍ଟାନ୍ ସନ୍ନ୍ୟାସିନୀ-ସମ୍ପ୍ରଦାୟରେ ଯୋଗଦାନ କରିଥିଲେ । ୧୫୬୨ ଖ୍ରୀ: ଠାରୁ ସେ ଅନେକଗୁଡ଼ିଏ ମଠ ସ୍ଥାପନ କଲେ । ଅବଶ୍ୟ ସାଧାରଣ ଚର୍ଚ୍ଚ ଭକ୍ତ ବହୁ ଲୋକ ଏହା ବିରୋଧରେ ପ୍ରତିବାଦ କଲେ । ସେ ଅତୀନ୍ଦ୍ରିୟବାଦ ସମ୍ପର୍କିତ ବହୁ ଅଲୌକିକ କାହାଣୀ ଲେଖିଅଛନ୍ତି । ବିଚକ୍ଷଣତା, କୌତୁକପ୍ରିୟତା ଓ ଉଚ୍ଚ-ଆଦର୍ଶପ୍ରୀତି ପ୍ରଭୃତି ବହୁଗୁଣର ସେ ଅଧିକାରିଣୀ ଥିଲେ ।

୩୪୪ ବିଲ୍ୱମଙ୍ଗଳ : 'ଭକ୍ତମାଳ' ଗ୍ରନ୍ଥରୁ ବିଲ୍ୱମଙ୍ଗଳ କାହାଣୀ ପ୍ରାପ୍ତ ହୁଏ ।

ପୃଷ୍ଠା ପଙ୍କ୍ତି

ଶ୍ରୀରାମକୃଷ୍ଣ ଗିରିଶଚନ୍ଦ୍ରଙ୍କୁ ବିଲ୍ୱମଙ୍ଗଳର ଉଦାହରଣ ଦେଇଥିଲେ । ସେଥିରେ ଉଦ୍‌ବୁଦ୍ଧ ହୋଇ ସେ 'ବିଲ୍ୱମଙ୍ଗଳ' ନାଟକ ରଚନା କରିଥିଲେ । ନାଟକଟିର ଭାବ ଓ ଭାଷା ସ୍ୱାମୀଜୀଙ୍କର ଖୁବ୍ ପ୍ରିୟ । କିମ୍ବଦନ୍ତୀ ଅନୁସାରେ ଅନ୍ଧ ସାଧକ-କବି ସୁର ଦାସ ହିଁ ବିଲ୍ୱମଙ୍ଗଳ; 'କୃଷ୍ଣ କର୍ଣ୍ଣାମୃତ' ବିଲ୍ୱମଙ୍ଗଳଙ୍କ ରଚନା ।

୩୪୪ ୧୫ 'ଭକ୍ତମାଳ' : ଅର୍ଥାତ 'ଭକ୍ତଜୀବନୀମାଳା'—ନାଭାଜୀଙ୍କ ଲିଖିତ ହିନ୍ଦୀ କାବ୍ୟଗ୍ରନ୍ଥ । ଏଥିରେ ପ୍ରଧାନତଃ ମଧ୍ୟଯୁଗର ବହୁ ଭକ୍ତଙ୍କର କାହାଣୀ ବର୍ଣ୍ଣିତ ଅଛି । ଏହି ପୁସ୍ତକଟିର ବଙ୍ଗାନୁବାଦ ହୋଇଛି । 'କଥାମୃତ'ରେ ଶ୍ରୀରାମକୃଷ୍ଣ କହିଛନ୍ତି—"ଭକ୍ତମାଳ ବଡ଼ ସରସ ।"

୩୪୮ ବାଳଗୋପାଳର କାହାଣୀ : ଗଳ୍ପଟି ସ୍ୱାମୀଜୀ ବହୁବାର କହିଛନ୍ତି; ମିସ୍ ଫାଲ୍କିଙ୍କର ସ୍ମୃତିକଥା(In pired Talks : The Master)ରେ ଗଳ୍ପଟି ସଂକ୍ଷିପ୍ତ ଭାବରେ ଲିପିବଦ୍ଧ ଅଛି । ମହେନ୍ଦ୍ରନାଥ ଦତ୍ତଙ୍କର ଲିଖିତ ସ୍ୱାମୀଜୀଙ୍କ 'ବାଲ୍ୟଜୀବନୀ'ରେ ଅଛି । ଗଳ୍ପଟି ନରେନ୍ଦ୍ର ନାଥ ତାଙ୍କ ଧାଈ ନିକଟରୁ ପ୍ରଥମେ ଶୁଣିଥିଲେ ଏବଂ ବାଲ୍ୟକାଳରେ ଏହାକୁ ଅନ୍ୟ ଭାଇମାନଙ୍କୁ ଶୁଣାଇବାକୁ ଭଲପାଉଥିଲେ ।

୩୫୫ 'ଶିଷ୍ୟତ୍ୱ' ବା 'ଶିଷ୍ୟର ସାଧନା' ବକ୍ତୃତାରେ ପ୍ରଧାନତଃ 'ସାଧନ-ଚତୁଷ୍ଟୟ' ଆଲୋଚିତ ହୋଇଛି । ତଥାପି କ୍ରମରେ କେତେକ ପାର୍ଥକ୍ୟ ଲକ୍ଷିତ ହୁଏ; ଏଠାରେ ପ୍ରଥମେ 'ବୈରାଗ୍ୟ', ତା'ପରେ 'ଷଟ୍‌ସମ୍ପତ୍ତି' ଓ 'ମୁମୁକ୍ଷୁତ୍ୱ' ଏବଂ ଶେଷରେ 'ବିବେକ' ଆଲୋଚିତ ହୋଇଛି ।

୩୬୮ ୨୪ ଚାରି ପ୍ରକାର ଲୋକ ମୋତେ ଭଜନା କରନ୍ତି : ଗୀତାର ଶ୍ଳୋକ : ଆର୍ତ୍ତ, ଜିଜ୍ଞାସୁ, ଅର୍ଥାର୍ଥୀ ଓ ଜ୍ଞାନୀ । ଗୀତା, ୭।୧୬

୩୭୪ ୨୪ ସଲୋମନ (ଖ୍ରୀ: ପୂ: ୧୦୧୫-୯୭୫) : ଡେଭିଡ୍‌ଙ୍କର ପୁତ୍ର ରାଜା ସଲୋମନ୍ ଜେରୁଜେଲମର ମନ୍ଦିର ପ୍ରତିଷ୍ଠା କରିଥିଲେ । ଈଶ୍ୱରଙ୍କୁ ପ୍ରେମିକ ଭାବରେ ଦେଖୁଥିଲେ । ଏହାଙ୍କ ଭଜନ 'Song of Solomon' ନାମରେ ବିଖ୍ୟାତ ।

୩୭୫ ୧୮ ମାତୃ-ଉପାସନା ଏକ ସ୍ୱତନ୍ତ୍ର ଦର୍ଶନ : ଏହାର କିଛି ଆଭାସ 'ଶାକ୍ତାଦ୍ୱୈତ-ଦର୍ଶନ'ରେ ମିଳିଥାଏ; ବିଭିନ୍ନ ତନ୍ତ୍ରରେ ଏହା ଆଲୋଚିତ । ଶ୍ରୀରାମକୃଷ୍ଣ କହୁଚନ୍ତି : ମାତୃଭାବ ଶୁଦ୍ଧଭାବ, ମୋର ମାତୃଭାବ । ବ୍ରହ୍ମ ଓ ଶକ୍ତି ଅଭେଦ ।

# ନିର୍ଦ୍ଦେଶିକା